ପ୍ରକାଶକ
ସ୍ୱାମୀ ଆତ୍ମପ୍ରଭାନନ୍ଦ
ଅଧ୍ୟକ୍ଷ, ରାମକୃଷ୍ଣ ମଠ
ବିବେକାନନ୍ଦ ମାର୍ଗ
ଭୁବନେଶ୍ୱର—୭୫୧ ୦୦୨
ଓଡ଼ିଶା



ଦ୍ୱିତୀୟ ସଂସ୍କରଣ : ଜାନୁୟାରୀ ୧୯୭୮
**ତୃତୀୟ ପୁନର୍ମୁଦ୍ରଣ : ୨୮ ଅଗଷ୍ଟ ୨୦୧୩**
ଶ୍ରୀକୃଷ୍ଣ ଜନ୍ମାଷ୍ଟମୀ
୫୦୦

ମୂଲ୍ୟ– ଟ. ୧୪୦.୦୦

ମୁଦ୍ରାକର :
ହିନ୍ଦୁସ୍ଥାନ ପ୍ରିଣ୍ଟିଙ୍ଗ୍ ଏଣ୍ଡ୍ ବାଇଣ୍ଡିଂ ୱାର୍କ୍ସ୍
ଏ/୪୮, ରାମେଶ୍ୱର ପାଟଣା
ଭୁବନେଶ୍ୱର—୭୫୧ ୦୦୨

***SWAMI VIVEKANANDANKA VANI O RACHANA Vol. - II :*** by Swami Vivekananda; Published by Ramakrishna Math, Vivekananda Marg, Bhubaneswar - 751 002; 3rd Reprint on 28th August 2013; **Price : ₹ One Hundred Fourty only.**

# ପ୍ରଥମ ସଂସ୍କରଣର ନିବେଦନ

ସ୍ୱାମୀ ବିବେକାନନ୍ଦଙ୍କ ଜନ୍ମଶତବାର୍ଷିକୀ ସ୍ମରଣରେ ଏହି "ସ୍ୱାମୀ ବିବେକାନନ୍ଦଙ୍କ ବାଣୀ ଓ ରଚନା" ପ୍ରକାଶ କରିବାର ଆୟୋଜନ ପ୍ରାୟ ବର୍ଷେ କାଳ ଧରି ଚାଲି ଆସୁଅଛି । ଦ୍ୱିତୀୟ ଖଣ୍ଡ ଆଜି ସମ୍ପୂର୍ଣ୍ଣରୂପେ ସର୍ବସାଧାରଣଙ୍କ ନିକଟରେ ପରିବେଷିତ ହେଲା ।

ଶ୍ରୀଭଗବାନଙ୍କ କୃପା ଓ ଆଶୀର୍ବାଦ ମସ୍ତକରେ ଧାରଣ କରି ଆମେ ନାନା ପ୍ରତିକୂଳ ଅବସ୍ଥା ମଧ୍ୟ ଦେଇ କାର୍ଯ୍ୟକ୍ଷେତ୍ରରେ ଅଗ୍ରସର ହୋଇଅଛୁଁ । ସ୍ୱାମୀଜୀଙ୍କ ବକ୍ତୃତା ଓ କାହାଣୀ ଭକ୍ତ, ସାଧକ ଓ ସମସ୍ତ ଶ୍ରେଣୀର ପାଠକମାନଙ୍କ ହୃଦୟରେ ଯେ ଏକ ନବୀନ ଓ ଉଜ୍ଜ୍ୱଳ ଆଲୋକପାତ କରିବ, ସେ ବିଷୟରେ ସନ୍ଦେହ ନାହିଁ । ଆମେମାନେ ତାହାଙ୍କର ନିତାନ୍ତ ଅକିଞ୍ଚନ ସନ୍ତାନ, ଆମମାନଙ୍କର କେତେ ଟିକେ ବା ସାମର୍ଥ୍ୟ ଓ କ୍ଷମତା, ଯଦ୍ୱାରା ତାଙ୍କର ପବିତ୍ର ଓ ଅଗ୍ନିମୟୀ ବାଣୀ ଯଥାଯଥ-ଭାବରେ ଓଡ଼ିଆ ଭାଷାରେ ତର୍ଜମା ସହକାରେ ପରିବେଷଣ କରିବୁଁ !

ଶ୍ରୀରାମକୃଷ୍ଣ କହୁଥିଲେ, "ନରଲୀଳାରେ ଅବତାରଙ୍କୁ ଠିକ୍ ମଣିଷ ଭଳି ଆଚରଣ କରିବାକୁ ହୁଏ ।" ଆଚାର୍ଯ୍ୟ ମଧ୍ୟ ଅବତାରଙ୍କ ଲୀଳାପାର୍ଷଦ । ଯେତେବେଳେ ଭଗବାନ ମାନବ-ଦେହ ପରିଗ୍ରହ କରି ଏହି ଧରିତ୍ରୀରେ ଅବତୀର୍ଣ୍ଣ ହୁଅନ୍ତି, ସେତେବେଳେ ଆଚାର୍ଯ୍ୟ ମଧ୍ୟ ତାଙ୍କର ଲୀଳାର ସହାୟକରୂପେ ଅବତୀର୍ଣ୍ଣ ହୋଇଥାଆନ୍ତି । ସେହି ନରରୂପୀ ନାରାୟଣ ଆମମାନଙ୍କର ଶତ ଅପରାଧ କ୍ଷମା କରି ଆମମାନଙ୍କୁ ସତ୍ସାହସ ଓ ଶୁଭ ପ୍ରେରଣା ଦେବେ ନିଶ୍ଚିତ ।

ବିନୀତ

ଜାନୁଆରି ୧୯୬୩ ପ୍ରକାଶକ

# ପ୍ରକାଶକଙ୍କ ନିବେଦନ

ଶ୍ରୀଶ୍ରୀଭଗବାନଙ୍କର ଅଶେଷ ଆଶୀର୍ବାଦରୁ ଦଶଖଣ୍ଡରେ ପରିକଳ୍ପିତ 'ସ୍ୱାମୀ ବିବେକାନନ୍ଦଙ୍କ ବାଣୀ ଓ ରଚନା'ର ଦ୍ୱିତୀୟ ଖଣ୍ଡ ସ୍ୱାମୀଜୀଙ୍କର ୧୨୫ତମ ଜନ୍ମ-ବର୍ଷରେ ଓଡ଼ିଶାବାସୀଙ୍କ ହସ୍ତରେ ଅର୍ପଣ କରିବା ପାଇଁ ଆମେମାନେ ସମର୍ଥ ହୋଇଛୁ ।

ଏହି ଖଣ୍ଡର ବିଷୟବସ୍ତୁ 'ଜ୍ଞାନଯୋଗ', 'ଜ୍ଞାନଯୋଗ-ପ୍ରସଙ୍ଗ' ଓ 'ହାର୍ଭାର୍ଡ ବିଶ୍ୱବିଦ୍ୟାଳୟରେ ବେଦାନ୍ତ'—ଏହିପରି ତିନିଭାଗରେ ବିଭକ୍ତ ହୋଇଥିଲେ ମଧ୍ୟ ଏଥିରେ ପ୍ରଧାନତଃ ଜ୍ଞାନଯୋଗ-ସମ୍ବନ୍ଧୀୟ ବକ୍ତୃତା, ଆଲୋଚନା ଓ ଲେଖା ସନ୍ନିବେଶିତ ହୋଇଛି । ଅଦ୍ୱୈତ-ବେଦାନ୍ତର ଅମୃତତତ୍ତ୍ୱ ଏଥିରେ ସ୍ୱାମୀଜୀଙ୍କ ଦ୍ୱାରା ସରଳ ସ୍ପଷ୍ଟ ଓ ବିଜ୍ଞାନ-ସମ୍ମତ ଭାବରେ ବ୍ୟାଖ୍ୟାତ ହୋଇଛି । ଏଥିରେ ବ୍ରହ୍ମ, ଆତ୍ମା, ଈଶ୍ୱର, ମାୟା, ଜଗତ୍, ପ୍ରକୃତି, ପରିଣାମବାଦ ପ୍ରଭୃତି ଉପରେ ସ୍ୱାମୀଜୀ ଅଭିନବ ଆଲୋକପାତ କରିଛନ୍ତି । ଦୈନନ୍ଦିନ ଜୀବନରେ ବେଦାନ୍ତକୁ କିପରି କାର୍ଯ୍ୟକାରୀ କରାଯାଇପାରିବ ସେ ବିଷୟରେ 'କର୍ମ-ଜୀବନରେ ବେଦାନ୍ତ' ନାମକ ଗୋଟିଏ ବକ୍ତୃତାରେ ସ୍ୱାମୀଜୀ ବିଶଦ ଆଲୋଚନା କରିଛନ୍ତି ।

ତଥ୍ୟପଞ୍ଜୀରେ ଭାରତୀୟ ଓ ପାଶ୍ଚାତ୍ୟ ଦର୍ଶନ ଏବଂ ଦାର୍ଶନିକମାନଙ୍କ ସମ୍ବନ୍ଧରେ ବିଶେଷ ଭାବରେ ଓ ଅନ୍ୟାନ୍ୟ ପ୍ରୟୋଜନୀୟ ଟୀକା ସଂକ୍ଷିପ୍ତ ଭାବରେ ଦିଆଯାଇଛି । ପ୍ରଥମ ଖଣ୍ଡ ଭଳି ଏଥିରେ ମଧ୍ୟ ନିର୍ଦ୍ଦେଶିକା ସଂଯୋଜନ କରାଯାଇଛି ।

ଏହି ଖଣ୍ଡର ପାଣ୍ଡୁଲିପି ସଂଶୋଧନ ଓ ସଂପାଦନାରେ ଶ୍ରୀ ଅଜିତ୍ କୁମାର ମହାନ୍ତି, ଶ୍ରୀ କିଶୋର ମୋହନ ପଟ୍ଟନାୟକ, ଡକ୍ଟର ଶ୍ରୀନିବାସ ସାହୁ, ଶ୍ରୀ ନିହାର-ରଞ୍ଜନ ପାଣିଗ୍ରାହୀ ଓ ଶ୍ରୀ ଉମେଶଚନ୍ଦ୍ର ଦାଶଙ୍କର ବିଶେଷ ଅବଦାନ ଉଲ୍ଲେଖ-ଯୋଗ୍ୟ । ଅଧ୍ୟାପକ ଶ୍ରୀ ତତ୍ତ୍ୱକନ୍ଦର ମିଶ୍ର ପ୍ରଥମ ଖଣ୍ଡ ଭଳି ଏହାର ସମ୍ପାଦନାରେ ଅଂଶ ଗ୍ରହଣ କରିବା ସଙ୍ଗେ ସଙ୍ଗେ ମୁଦ୍ରଣର ସମସ୍ତ ଦାୟିତ୍ୱ ନିଃସ୍ୱାର୍ଥପର ଭାବରେ ତୁଲାଇଛନ୍ତି । ଏମାନଙ୍କୁ ଆମେ ଆମର ଆନ୍ତରିକ କୃତଜ୍ଞତା ଜ୍ଞାପନ କରୁଛୁ । ଏହାର ପ୍ରକାଶନରେ ସ୍ୱାମୀ ବୈରାଗ୍ୟାନନ୍ଦଙ୍କର ଅପରିହାର୍ଯ୍ୟ ଭୂମିକା ଉଲ୍ଲେଖ-ଯୋଗ୍ୟ ।

ଏହି ରଚନାବଳୀର ସଫଳ ରୂପାୟନ ନିମନ୍ତେ ଲୋକସେବକମଣ୍ଡଳର ଅଧ୍ୟକ୍ଷ ଡକ୍ଟର ରାଧାନାଥ ରଥ, ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ଜାନକୀବଲ୍ଲଭ ପଟ୍ଟନାୟକ, ବାଚସ୍ପତି ଶ୍ରୀଯୁକ୍ତ ପ୍ରସନ୍ନ କୁମାର ଦାଶ, କେ. କେ. ପେପର୍‌ମିଲ୍‌ର ସ୍ୱତ୍ୱାଧିକାରୀ ଶ୍ରୀଯୁକ୍ତ ହରଣଙ୍କର ସିଂହାଣିଆ ଓ ରାଜ୍ୟସଭା ସଦସ୍ୟା ତଥା ମହିଳା କଂଗ୍ରେସର ସଭାନେତ୍ରୀ ଶ୍ରୀମତୀ ଜୟନ୍ତୀ ପଟ୍ଟନାୟକଙ୍କର ସାହାଯ୍ୟ ସହଯୋଗ ଓ ପ୍ରେରଣା ଆମମାନଙ୍କୁ ବହୁ ପରିମାଣରେ ଉତ୍ସାହିତ କରିଛି । ସେଥିପାଇଁ ସେମାନଙ୍କୁ ଆମେ ଅଜସ୍ର ଧନ୍ୟବାଦ ଅର୍ପଣ କରୁଛୁ ।

ସ୍ୱାମୀ ରାମକୃଷ୍ଣାନନ୍ଦଙ୍କର ଆବିର୍ଭାବ ତିଥି,
୧୦ ଅଗଷ୍ଟ ୧୯୮୮

ସ୍ୱାମୀ ସ୍ତୁତ୍ୟାନନ୍ଦ
ଅଧ୍ୟକ୍ଷ, ରାମକୃଷ୍ଣ ମଠ, ଭୁବନେଶ୍ୱର

# ସୂଚୀପତ୍ର

# ମାୟା

## [ଲଣ୍ଡନରେ ପ୍ରଦତ୍ତ ବକ୍ତୃତା]

'ମାୟା' ଶବ୍ଦଟି ଆପଣମାନେ ପ୍ରାୟ ସମସ୍ତେ ଶୁଣିଛନ୍ତି । ଏହା ସାଧାରଣତଃ ଭ୍ରମଦୃଷ୍ଟି କିମ୍ବା କୁହୁକ ବା ଏହିପରି କୌଣସି ଅର୍ଥରେ ବ୍ୟବହୃତ ହୋଇଥାଏ; କିନ୍ତୁ ତାହା ଏହାର ପ୍ରକୃତ ଅର୍ଥ ନୁହେଁ । ଅଥଚ ମାୟାବାଦରୂପକ ଅନ୍ୟତମ ସ୍ତମ୍ଭ ଉପରେ ବେଦାନ୍ତ ସ୍ଥାପିତ । ତେଣୁ ଏହାର ଯଥାର୍ଥ ତାତ୍ପର୍ଯ୍ୟ ବୁଝିବା ଆବଶ୍ୟକ । ମାୟାବାଦ ବୁଝାଇବାକୁ ହେଲେ ତାହା ସହସା ହୃଦୟଙ୍ଗମ ନ ହେବାର ଆଶଙ୍କା ଅଛି, ଏହି କାରଣରୁ ଆପଣମାନେ ମନୋଯୋଗପୂର୍ବକ ଶ୍ରବଣ କରିବେ, ଏହା ହିଁ ମୋର ପ୍ରାର୍ଥନା ।

ବୈଦିକ ସାହିତ୍ୟରେ କୁହୁକ ଅର୍ଥରେ ହିଁ 'ମାୟା' ଶବ୍ଦର ପ୍ରୟୋଗ ଦେଖାଯାଏ । ଏହା ହିଁ 'ମାୟା' ଶବ୍ଦର ପ୍ରାଚୀନତମ ଅର୍ଥ । କିନ୍ତୁ ସେହି ସମୟରେ ପ୍ରକୃତ ମାୟାବାଦତତ୍ତ୍ୱର ଅଭ୍ୟୁଦୟ ହୋଇ ନାହିଁ । ଆମେମାନେ ବେଦରେ ଏହି ପ୍ରକାର ବାକ୍ୟ ଦେଖିବାକୁ ପାଉ—'ଇନ୍ଦ୍ରୋ ମାୟାଭିଃ ପୁରୁରୂପ ଈୟତେ', ଇନ୍ଦ୍ର ମାୟାଦ୍ୱାରା ନାନା ରୂପ ଧାରଣ କରିଥିଲେ । ଏ ସ୍ଥଳରେ 'ମାୟା' ଶବ୍ଦ ଇନ୍ଦ୍ରଜାଲ ବା ତତ୍ତୁଲ୍ୟାର୍ଥରେ ବ୍ୟବହୃତ ହୋଇଛି । ବେଦର ଅନେକ ସ୍ଥଳରେ 'ମାୟା' ଶବ୍ଦ ତାଦୃଶ ଅର୍ଥରେ ପ୍ରଯୁକ୍ତ ହେବାର ଦେଖାଯାଏ । ତା'ପରେ କିଛିଦିନ ପାଇଁ 'ମାୟା' ଶବ୍ଦର ବ୍ୟବହାର ସମ୍ପୂର୍ଣ୍ଣ ଲୁପ୍ତ ହୋଇଗଲା । ମାତ୍ର ସେହି ଅବକାଶରେ ତତ୍‌ଶବ୍ଦ-ପ୍ରତିପାଦ୍ୟ ଭାବ କ୍ରମଶଃ ହିଁ ପରିପୁଷ୍ଟ ହେଉଥିଲା । ପରବର୍ତ୍ତୀ ସମୟରେ ଦେଖାଯାଏ, ପ୍ରଶ୍ନ ହେଉଛି, 'ଆମେମାନେ ଜଗତର ଗୁପ୍ତ ରହସ୍ୟ ଜାଣିପାରୁ ନାହୁଁ କାହିଁକି ?' ଏହାର ଏ ପ୍ରକାର ନିଗୂଢ଼ଭାବବ୍ୟଞ୍ଜକ ଉତ୍ତର ପ୍ରାପ୍ତ ହୁଏ—'ଆମେମାନେ ଜଳ୍ପକ, ଇନ୍ଦ୍ରିୟସୁଖରେ ପରିତୃପ୍ତ ଓ ବାସନାପର ବୋଲି ଏହି ସତ୍ୟକୁ ନୀହାରାବୃତ କରି ରଖିଛୁ'—'ନୀହାରେଣ ପ୍ରାବୃତା ଜଲ୍ପ୍ୟା ଅସୁତୃପ ଉକ୍‌ଥଶାସଶ୍ଚରନ୍ତି ।'* ଏ ସ୍ଥଳରେ 'ମାୟା' ଶବ୍ଦ ଆଦୌ ବ୍ୟବହୃତ ହୋଇ ନାହିଁ; କିନ୍ତୁ ସେଥିରେ ଏହି ଭାବଟି ପରିବ୍ୟକ୍ତ ହେଉଛି ଯେ, ଆମମାନଙ୍କର ଅଜ୍ଞତାର କାରଣ ହେଲା, ଏହି ସତ୍ୟ ଓ ଆମମାନଙ୍କ ମଧ୍ୟରେ କୁଜ୍ଝଟିକା ବର୍ତ୍ତମାନ । ଅନେକ ପରବର୍ତ୍ତୀ ସମୟରେ ଅପେକ୍ଷାକୃତ ଆଧୁନିକ ଉପନିଷଦ୍‌ରେ 'ମାୟା' ଶବ୍ଦର ପୁନରାବିର୍ଭାବ ଦେଖାଯାଏ । କିନ୍ତୁ ଏହା ମଧ୍ୟରେ ଏହାର ପ୍ରଭୂତ ରୂପାନ୍ତର ସଂଘଟିତ ହୋଇଛି, ନୂତନ ଅର୍ଥରାଶି ଏହା ସହିତ ସଂଯୋଜିତ ହୋଇଛି, ନାନାବିଧ ମତବାଦ ପ୍ରଚାରିତ ଓ ପୁନରୁକ୍ତ ହୋଇଛି; ଅବଶେଷରେ ମାୟାବିଷୟକ ଧାରଣା ଗୋଟିଏ ସ୍ଥିରଭାବ ପ୍ରାପ୍ତ ହୋଇଛି ।

* ଋଗ୍‌ବେଦ—୧୦ମ ମଣ୍ଡଳ, ୮୨ ସୂକ୍ତ, ୭ମ ଋକ୍ ।

ଆମେମାନେ ଶ୍ୱେତାଶ୍ୱତର ଉପନିଷଦ୍‌ରେ ପାଠ କରୁଁ—

'ମାୟାନ୍ତୁ ପ୍ରକୃତିଂ ବିଦ୍ୟାନ୍ମାୟିନନ୍ତୁ ମହେଶ୍ୱରମ୍ ।'

—ମାୟାକୁ ହିଁ ପ୍ରକୃତି ବୋଲି ଜାଣିବ ଏବଂ ମାୟୀଙ୍କୁ ମହେଶ୍ୱର ବୋଲି ଜାଣିବ । ମହାତ୍ମା ଶଙ୍କରାଚାର୍ଯ୍ୟଙ୍କ ପୂର୍ବବର୍ତ୍ତୀ ଦାର୍ଶନିକ ପଣ୍ଡିତଗଣ ଏହି 'ମାୟା' ଶବ୍ଦକୁ ବିଭିନ୍ନ ଅର୍ଥରେ ବ୍ୟବହାର କରିଛନ୍ତି । ବୋଧହୁଏ,'ମାୟା'ଶବ୍ଦ ବା ମାୟାବାଦ ବୌଦ୍ଧମାନଙ୍କଦ୍ୱାରା ମଧ୍ୟ କଥଞ୍ଚିତ୍ ରଞ୍ଜିତ ହୋଇଛି । କିନ୍ତୁ ବୌଦ୍ଧମାନଙ୍କ ହସ୍ତରେ ଏହା ଅନେକାଂଶରେ ବିଜ୍ଞାନବାଦରେ (idealism)* ପରିଣତ ହୋଇଥିଲା ଏବଂ ମାୟା କଥାଟି ଏହି ପ୍ରକାର ଅର୍ଥରେ ହିଁ ବର୍ତ୍ତମାନ ସାଧାରଣତଃ ବ୍ୟବହୃତ ହେଉଛି । ହିନ୍ଦୁ ଯେତେବେଳେ 'ଜଗତ୍ ମାୟାମୟ' ବୋଲି କହେ, ସାଧାରଣ ମାନବ ମନରେ ଏହି ଭାବ ଉଦିତ ହୁଏ ଯେ, 'ଜଗତ୍ କଳ୍ପନା ମାତ୍ର' । ବୌଦ୍ଧ-ଦାର୍ଶନିକମାନଙ୍କର ଇତ୍ଥଂଭୂତ ବ୍ୟାଖ୍ୟାର କିଛି ଭିତ୍ତି ଅଛି; କାରଣ ଏକ ଶ୍ରେଣୀର ଦାର୍ଶନିକମାନେ ବାହ୍ୟ ଜଗତ୍‌ର ଅସ୍ତିତ୍ୱରେ ଆଦୌ ବିଶ୍ୱାସ କରୁ ନ ଥିଲେ । କିନ୍ତୁ ବେଦାନ୍ତୋକ୍ତ ମାୟାର ଶେଷ ପରିପୁଷ୍ଟାକୃତି—ବିଜ୍ଞାନବାଦ, ବାସ୍ତବବାଦ (realism)** ବା କୌଣସି ପ୍ରକାର ମତବାଦ ନୁହେଁ । ଆମେମାନେ କିଅଣ ଏବଂ ସବୁକିଛି କିଅଣ ପ୍ରତ୍ୟକ୍ଷ କରୁଛୁ, ଏ ସମ୍ବନ୍ଧରେ ପ୍ରକୃତ ଘଟଣାର ଏହା ସହଜ ବର୍ଣ୍ଣନା ମାତ୍ର । ମୁଁ ଆପଣମାନଙ୍କୁ ପୂର୍ବେ କହିଅଛି, ବେଦ ଯେଉଁମାନଙ୍କର ଅନ୍ତରନିଃସୃତ, ସେମାନଙ୍କର ଚିନ୍ତାଶକ୍ତି ମୂଳତତ୍ତ୍ୱ ଅନୁଧାବନରେ ଓ ଆବିଷ୍କରଣରେ ହିଁ ଅଭିନିବିଷ୍ଟ ଥିଲା । ସେମାନେ ଯେପରି କି ଏ ସକଳ ତତ୍ତ୍ୱର ବିସ୍ତାରିତ ଅନୁଶୀଳନ କରିବାକୁ ଅବସର ପାଇ ନାହାନ୍ତି ଏବଂ ସେଥିପାଇଁ ଅପେକ୍ଷା ମଧ୍ୟ କରି ନାହାନ୍ତି । ସେମାନେ ବସ୍ତୁର ଅନ୍ତରତମ ପ୍ରଦେଶରେ ଉପନୀତ ହେବା ଲାଗି ହିଁ ବ୍ୟଗ୍ର ଥିଲେ । ଏହି ଜଗତର ଅତୀତ କିଛି ଯେପରି କି ସେମାନଙ୍କୁ ଆକର୍ଷଣ କରୁଥିଲା, ସେମାନେ ଯେପରି କି ଆଉ ଅପେକ୍ଷା କରିପାରୁ ନ ଥିଲେ । ବସ୍ତୁତଃ ଉପନିଷଦ୍ ମଧ୍ୟରେ ଇତସ୍ତତୋବିକ୍ଷିପ୍ତ ଆଧୁନିକ ବିଜ୍ଞାନର ବିଷୟୀଭୂତ ବିଶେଷ ପ୍ରତିପତ୍ତି ସବୁ ଅନେକ ସମୟରେ ଭ୍ରମାତ୍ମକ ହେଲେ ମଧ୍ୟ ତାହାର ମୂଳ ତତ୍ତ୍ୱଗୁଡ଼ିକ ସହିତ ବିଜ୍ଞାନର ମୂଳ ତତ୍ତ୍ୱର କୌଣସି ପ୍ରଭେଦ ନାହିଁ । ଗୋଟିଏ ଦୃଷ୍ଟାନ୍ତ ଦେଖାଇ ଦିଆଯାଉଛି । ଆଧୁନିକ ବିଜ୍ଞାନର ଇଥର (ether) ବା ଆକାଶବିଷୟକ ଅଭିନବ ତତ୍ତ୍ୱ ଉପନିଷଦ୍ ମଧ୍ୟରେ ରହିଛି । ଏହି ଆକାଶତତ୍ତ୍ୱ ଆଧୁନିକ ବୈଜ୍ଞାନିକମାନଙ୍କର

---

* ଆମର ଇନ୍ଦ୍ରିୟଗ୍ରାହ୍ୟ ସମୁଦାୟ ଜଗତ୍ ଆମ ମନର ହିଁ ବିଭିନ୍ନ ଅନୁଭୂତି ମାତ୍ର, ସେମାନଙ୍କର ବାସ୍ତବ ସତ୍ତା ନାହିଁ—ଏହି ମତକୁ ବିଜ୍ଞାନବାଦ ବା idealism କୁହାଯାଏ । ଏହାକୁ କେହି କେହି ଭାବବାଦୀ ଦର୍ଶନ ବୋଲି ମଧ୍ୟ କହନ୍ତି ।

** ଜଗତ୍ କେବଳ ଆମମାନଙ୍କ ମନର ଅନୁଭୂତିମାତ୍ର ନୁହେଁ, ତାହାର ବାସ୍ତବ ସତ୍ତା ଅଛି—ଏହି ମତକୁ ବାସ୍ତବବାଦ ବା realism କୁହାଯାଏ ।

ଇଥର ଅପେକ୍ଷା ସମଧିକ ପରିସ୍ଫୁଟ ଭାବରେ ବିଦ୍ୟମାନ । କିନ୍ତୁ ଏହା ମୂଳତତ୍ତ୍ୱରେ ହିଁ ପର୍ଯ୍ୟବସିତ ଥିଲା । ସେମାନେ ଏହି ଆକାଶ-ତତ୍ତ୍ୱର କାର୍ଯ୍ୟକୁ ବ୍ୟାଖ୍ୟା କରିବାକୁ ଯାଇ ଅନେକ ଭ୍ରମରେ ପତିତ ହୋଇଥିଲେ । ଜଗତର ଯାବତୀୟ ଜୀବନୀଶକ୍ତି ଯାହାର ବିଭିନ୍ନ ବିକାଶମାତ୍ର, ସେହି ସର୍ବବ୍ୟାପୀ ଜୀବନୀଶକ୍ତି ତତ୍ତ୍ୱ ବେଦର ବ୍ରାହ୍ମଣାଂଶରେ ହିଁ ପ୍ରାପ୍ତ ହୋଇଥାଏ । ସଂହିତାରେ ଗୋଟିଏ ଦୀର୍ଘ ମନ୍ତ୍ରରେ ସବୁ ଜୀବନୀଶକ୍ତିର ବିକାଶକ ପ୍ରାଣର ପ୍ରଶଂସାବାଦ ଅଛି । ଏ ଉପଲକ୍ଷ୍ୟରେ ଆପଣମାନଙ୍କ ମଧ୍ୟରୁ କାହାର କାହାର ହୁଏତ ଜାଣିବାରେ ଆନନ୍ଦ ହୋଇପାରେ ଯେ, ଆଧୁନିକ ୟୁରୋପୀୟ ବୈଜ୍ଞାନିକମାନଙ୍କ ମତାନୁଯାୟୀ ଏହି ପୃଥିବୀର ଜୀବୋଦ୍ଭବ ତତ୍ତ୍ୱ ବୈଦିକ ଦର୍ଶନରେ ମିଳିଥାଏ । ଆପଣମାନେ ନିଶ୍ଚୟ ସମସ୍ତେ ହିଁ ଜାଣନ୍ତି ଯେ, ଜୀବ ଅନ୍ୟ ଗ୍ରହାଦିରୁ ପୃଥିବୀକୁ ସଂକ୍ରମିତ ହୋଇଥିଲା—ଏପରି ଗୋଟିଏ ମତ ପ୍ରଚଳିତ ଅଛି । 'ଜୀବ ଚନ୍ଦ୍ରଲୋକରୁ ପୃଥିବୀକୁ ଆଗମନ କରିଥିଲା'—କୌଣସି କୌଣସି ବୈଦିକ ଦାର୍ଶନିକଙ୍କର ଏହା ହିଁ ସ୍ଥିର ମତ ।

ମୂଳତତ୍ତ୍ୱ ସମ୍ବନ୍ଧରେ ଆମେମାନେ ଦେଖିବାକୁ ପାଉଁ, ସେମାନେ ସାଧାରଣ ତତ୍ତ୍ୱସବୁ ବିସ୍ତୃତ ଭାବରେ ବିବୃତ କରିବାରେ ଅତିଶୟ ସାହସୀ ଓ ଆଶ୍ଚର୍ଯ୍ୟ ନିର୍ଭୀକତା ଦେଖାଇଛନ୍ତି । ବାହ୍ୟଜଗତରୁ ସେମାନେ ଏହି ବିଶ୍ୱରହସ୍ୟର ମର୍ମୋଦ୍‌ଘାଟନ କରିବାରେ ଯଥାସମ୍ଭବ ଉତ୍ତର ପାଇଥିଲେ । ଆଉ ସେମାନେ ସେହିପରି ଯେଉଁସବୁ ମୂଳତତ୍ତ୍ୱ ଆବିଷ୍କାର କରିଥିଲେ, ସେଥିରେ ଯେତେବେଳେ ଜଗଦ୍ରହସ୍ୟର ପ୍ରକୃତ ମୀମାଂସା ହେଲା ନାହିଁ, ସେତେବେଳେ ଆଧୁନିକ ବିଜ୍ଞାନର ବିଶେଷ ପ୍ରତିପତ୍ତିଗୁଡ଼ିକ ସେଗୁଡ଼ିକର ମୀମାଂସାରେ ଯେ ଅଧିକତର ସହାୟତା କରିବ ନାହିଁ ତାହା କହିବା ବାହୁଲ୍ୟ । ଯଦ୍ୟପି ପୁରାକାଳରେ ଆକାଶ-ତତ୍ତ୍ୱ ବିଶ୍ୱରହସ୍ୟ ଭେଦ କରିବାରେ ଅକ୍ଷମ ହୋଇଥାଏ, ତାହାହେଲେ ତାହାର ବିସ୍ତାରିତ ଅନୁଶୀଳନ ଆମମାନଙ୍କୁ ସତ୍ୟାଭିମୁଖରେ ଅଧିକ ଅଗ୍ରସର କରାଇପାରିବ ନାହିଁ । ଯଦି ବିଶ୍ୱତତ୍ତ୍ୱର ନିର୍ଣ୍ଣୟ ପାଇଁ ଏହି ସର୍ବବ୍ୟାପୀ ପ୍ରାଣତତ୍ତ୍ୱ ଅକ୍ଷମ ହୋଇଥାଏ, ତାହାହେଲେ ଏହାର ବିସ୍ତାରିତ ଅନୁଶୀଳନ ନିରର୍ଥକ; କାରଣ ତାହା ବିଶ୍ୱତତ୍ତ୍ୱ ସମ୍ବନ୍ଧରେ କୌଣସି ପରିବର୍ତ୍ତନ କରିପାରିବ ନାହିଁ । ମୁଁ ଏହା ହିଁ କହିବାକୁ ଚାହେଁ, ତତ୍ତ୍ୱାନୁଶୀଳନରେ ହିନ୍ଦୁ ଦାର୍ଶନିକମାନେ ଆଧୁନିକ ପଣ୍ଡିତମାନଙ୍କ ପରି ଏବଂ କେବେ କେବେ ସେମାନଙ୍କ ଅପେକ୍ଷା ମଧ୍ୟ ଅଧିକତର ସାହସୀ ଥିଲେ । ସେମାନେ ଏପରି ଅନେକ ସୁବିସ୍ତୃତ ସାଧାରଣ ନିୟମ ଆବିଷ୍କାର କରିଛନ୍ତି ଯାହା ଆଜି ମଧ୍ୟ ସମ୍ପୂର୍ଣ୍ଣ ନୂତନ ଏବଂ ସେମାନଙ୍କ ଗ୍ରନ୍ଥରେ ଏପରି ଅନେକ ମତବାଦ ବିଦ୍ୟମାନ ଅଛି, ଯାହା ବର୍ତ୍ତମାନର ବିଜ୍ଞାନ ଅଦ୍ୟାପି ମତବାଦରୂପରେ ମଧ୍ୟ ପ୍ରାପ୍ତ ହୋଇପାରି ନାହିଁ । ଦୃଷ୍ଟାନ୍ତସ୍ୱରୂପ ଦେଖାଇ ଦିଆଯାଇପାରେ ଯେ, ସେମାନେ କେବଳ ଆକାଶତତ୍ତ୍ୱରେ ଅଧିରୋହଣ କରି ହିଁ କ୍ଷାନ୍ତ ହୋଇ ନାହାନ୍ତି; କିନ୍ତୁ ସମଧିକ ଅଗ୍ରସର ହୋଇ ସମଷ୍ଟି ମନକୁ ମଧ୍ୟ

ଗୋଟିଏ ସୂକ୍ଷ୍ମତର ଆକାଶରୂପରେ କଳ୍ପନା କରିଛନ୍ତି ଏବଂ ତାହାର ସଙ୍ଗରେ ଅଧିକ-ତର ସୂକ୍ଷ୍ମ ଆକାଶ ପ୍ରାପ୍ତ ହୋଇଛନ୍ତି । କିନ୍ତୁ ଏଥିରେ ବି କୌଣସି କଥାର ମୀମାଂସା ହେଲ ନାହିଁ । ରହସ୍ୟର ଉତ୍ତର ଦେବା ପାଇଁ ଏସବୁ ତତ୍ତ୍ୱ ଅକ୍ଷମ । ବାହ୍ୟ ଜଗତ୍-ବିଷୟକ ଜ୍ଞାନ ଯେତେଦୂର ବିସ୍ତୃତ ହେଉ ନା କାହିଁକି, ଏହି ରହସ୍ୟର ଉତ୍ତର ଦାନ କରିପାରିବ ନାହିଁ । ମନେହୁଏ, ଯେପରି କଥଞ୍ଚିତ୍ ଜାଣିପାରିଛୁ । ଆଉ କେତେ ସହସ୍ର ବର୍ଷ ମଧ୍ୟ ଅପେକ୍ଷା କରାଯାଉ, ଏହାର ମୀମାଂସା ହେବ । ବେଦାନ୍ତବାଦୀ ମନର ସସୀମତା ନିଃସଂଶୟ ଭାବରେ ପ୍ରତିପନ୍ନ କରିଛନ୍ତି; ଅତଏବ ଉତ୍ତର ଦିଅନ୍ତି— 'ନା, ଆମମାନଙ୍କର ସୀମାବହିର୍ଭୂତ ହେବାର ଶକ୍ତି ନାହିଁ । ଆମେମାନେ ଏହି ଦେଶକାଳ ନିମିତ୍ତର ବାହାରକୁ ଯାଇପାରିବୁ ନାହିଁ ।' ଯେପରି କେହି ମଧ୍ୟ ସ୍ୱକୀୟ ସତ୍ତାରୁ ଉଲ୍ଲଙ୍ଘନ କରିବାକୁ କ୍ଷମ ନୁହନ୍ତି, ସେହିପରି ଦେଶ ଓ କାଳର ନିୟମ ଯେଉଁ ସୀମାବନ୍ଧନୀ ସ୍ଥାପନ କରିଛି, ତାହା ଅତିକ୍ରମ କରିବାକୁ କାହାର ମଧ୍ୟ ସାଧ ନାହିଁ । ଦେଶକାଳନିମିତ୍ତ ସମ୍ବନ୍ଧୀୟ ରହସ୍ୟାବଧାରଣପ୍ରଯତ୍ନ ବିଫଳ; ଯେହେତୁ ଏପରି ଚେଷ୍ଟା କରିବାକୁ ଗଲେ ହିଁ ଏହି ତିନୋଟିର ସତ୍ତା ଅବଶ୍ୟ ସ୍ୱୀକାର କରିବାକୁ ହେବ । ଅତଏବ ଏହା କିପରି ସମ୍ଭବ ? ଜଗତର ଅସ୍ତିତ୍ୱବାଦ ତାହାହେଲେ କି ପ୍ରକାର ଭାବ ଧାରଣ କରୁଛି ?—'ଏହି ଜଗତର ଅସ୍ତିତ୍ୱ ନାହିଁ ।' ଜଗତ୍ ମିଥ୍ୟା— ଏହାର ଅର୍ଥ କଅଣ ? ଏହାର ନିରପେକ୍ଷ ଅସ୍ତିତ୍ୱ ନାହିଁ, ଏହା ହିଁ ଅର୍ଥ । ମୋର, ତୁମର ଓ ଅନ୍ୟ ସମସ୍ତଙ୍କର ମନ ସମ୍ବନ୍ଧରେ ଏହାର କେବଳ ଆପେକ୍ଷିକ ଅସ୍ତିତ୍ୱ ଅଛି । ଆମେମାନେ ପଞ୍ଚେନ୍ଦ୍ରିୟଦ୍ୱାରା ଏହି ଜଗତକୁ ଯେପରି ପ୍ରତ୍ୟକ୍ଷ କରୁଛୁଁ, ଯଦି ଆମମାନଙ୍କର ଆଉ ଗୋଟିଏ ଅଧିକ ଇନ୍ଦ୍ରିୟ ଥାଆନ୍ତା, ତାହାହେଲେ ଆମେମାନେ ଆହୁରି କିଛି ଅଭିନବ ପ୍ରତ୍ୟକ୍ଷ କରନ୍ତୁ ଏବଂ ତତୋଧିକ ଇନ୍ଦ୍ରିୟସମ୍ପନ୍ନ ହେଲେ ଏହା ଆହୁରି ବିଭିନ୍ନ ରୂପରେ ମଧ୍ୟ ପ୍ରତୀୟମାନ ହୁଅନ୍ତା । ଅତଏବ ଏହାର ବାସ୍ତବ ସତ୍ତା ନାହିଁ—ସେହି ଅପରିବର୍ତ୍ତନୀୟ, ଅଚଳ, ଅନନ୍ତ ସତ୍ତା ଏହାର ନାହିଁ । କିନ୍ତୁ ଏହାକୁ ଅସ୍ତିତ୍ୱଶୂନ୍ୟ କୁହାଯାଇପାରିବ ନାହିଁ; କାରଣ ଏହାର ବର୍ତ୍ତମାନତା ରହିଛି ଏବଂ ଏହା ସହିତ ମିଶ୍ରିତ ହୋଇ ହିଁ ଆମମାନଙ୍କୁ କାର୍ଯ୍ୟ କରିବାକୁ ହେବ । ଏହା ସତ୍ ଓ ଅସତ୍‌ର ମିଶ୍ରଣ ।

ସୂକ୍ଷ୍ମତତ୍ତ୍ୱଠାରୁ ଆରମ୍ଭ କରି ଜୀବନର ସାଧାରଣ ଦୈନନ୍ଦିନ ସ୍ଥୂଳକାର୍ଯ୍ୟ ପର୍ଯ୍ୟନ୍ତ ପର୍ଯ୍ୟାଲୋଚନା କଲେ ଆମେମାନେ ଦେଖିବାକୁ ପାଉ ଯେ ଆମମାନଙ୍କର ସମସ୍ତ ଜୀବନ ହିଁ ଏହି ସତ୍ ଓ ଅସତ୍‌ରୂପକ ବିରୁଦ୍ଧ ଭାବର ସମ୍ମିଶ୍ରଣ । ଜ୍ଞାନା-ଧିକାରରେ ମଧ୍ୟ ଏହି ବିରୁଦ୍ଧ ଭାବ ବର୍ତ୍ତମାନ ରହିଛି । ଏପରି ମନେହୁଏ, ଯେପରି ମନୁଷ୍ୟ ଜିଜ୍ଞାସୁ ହେଲେ ସମଗ୍ର ଜ୍ଞାନ ଲାଭ କରିବାକୁ କ୍ଷମ ହେବ; କିନ୍ତୁ କେତେକ ପାଦ ଅଗ୍ରସର ନ ହେଉଣୁ ଏପରି ଅଭେଦ୍ୟ ବ୍ୟବଧାନ ଦେଖିବାକୁ ପାଏ, ଯାହା ଅତିକ୍ରମ କରିବା ତାହାର ସାଧ୍ୟାତୀତ । ତାହାର ସମସ୍ତ କାର୍ଯ୍ୟ ଗୋଟିଏ ବୃତ୍ତର ସୀମା

ଭିତରେ ରହି ଭ୍ରାମ୍ୟମାଣ ଏବଂ ସେହି ବୃତ୍ତସୀମା ତାହା ପକ୍ଷରେ ଅଲଙ୍ଘନୀୟ । ତାହାର ଅନ୍ତରତମ ଓ ପ୍ରିୟତମ ରହସ୍ୟଗୁଡ଼ିକ ମୀମାଂସିତ ହେବା ପାଇଁ ତାକୁ ଦିନରାତି ଉତ୍ତେଜିତ ଓ ଆହ୍ୱାନ କରୁଛନ୍ତି; କିନ୍ତୁ ଏହାର ଉତ୍ତର ଦେବା ପାଇଁ ସେ ଅକ୍ଷମ, କାରଣ ତାହାର ନିଜ ବୁଦ୍ଧିର ସୀମାକୁ ଉଲ୍ଲଙ୍ଘନ କରିବାର ସାଧ୍ୟ ନାହିଁ । ତଥାପି ସେହି ବାସନା ତାହାର ଅନ୍ତରରେ ଦୃଢ଼ଭାବରେ ପ୍ରୋତ୍ଥିତ ରହିଛି । କିନ୍ତୁ ଏହିସବୁ ଉତ୍ତେଜନାର ଦମନ ହିଁ ଯେ କେବଳମାତ୍ର ମଙ୍ଗଳକର, ତାହା ମଧ୍ୟ ଆମେମାନେ ଅବଗତ ଅଛୁ ।

ଆମମାନଙ୍କ ହୃତ୍ପିଣ୍ଡର ପ୍ରତ୍ୟେକ ସ୍ପନ୍ଦନ ପ୍ରତ୍ୟେକ ନିଃଶ୍ୱାସ ସହିତ ଆମ-ମାନଙ୍କୁ ସ୍ୱାର୍ଥପର ହେବାକୁ ଆଦେଶ ଦେଉଛି । ଅପର ଦିଗରେ ଗୋଟାଏ ଅମାନୁଷୀ ଶକ୍ତି କହୁଛି ଯେ, ନିଃସ୍ୱାର୍ଥତା ହିଁ ଏକମାତ୍ର ମଙ୍ଗଳକର । ଜନ୍ମାବଧି ପ୍ରତ୍ୟେକ ବାଳକ ହିଁ ସୁଖାଶାବାଦୀ **(Optimist)**; ସେ କେବଳ ସୁଖର ସ୍ୱପ୍ନ ହିଁ ଦର୍ଶନ କରେ । ଯୌବନ ସମୟରେ ସେ ଅଧିକତର ସୁଖାଶାବାଦୀ ହୁଏ । ମୃତ୍ୟୁ, ପରାଜୟ ବା ଅପମାନ ବୋଲି ଯେ କିଛି ଅଛି, ଏହା କୌଣସି ଯୁବକ ପକ୍ଷରେ ବିଶ୍ୱାସ କରିବା କଠିନ । ବୃଦ୍ଧାବସ୍ଥା ଆସିଲା—ଜୀବନ ଗୋଟାଏ ଧ୍ୱଂସରାଶି ହୋଇଛି, ସୁଖସ୍ୱପ୍ନ ଆକାଶରେ ବିଲୀନ ହୋଇଛି; ବୃଦ୍ଧ ନିରାଶାବାଦ ଅବଲମ୍ବନ କରିଛନ୍ତି । ଏହିପରି ଆମେମାନେ ପ୍ରକୃତି-ତାଡ଼ିତ ହୋଇ ଆଶାଶୂନ୍ୟ, ଅନ୍ତଶୂନ୍ୟ ସୀମା ଓ ଗନ୍ତବ୍ୟହୀନ-ଶୂନ୍ୟ ପରି ଗୋଟିଏ ପ୍ରାନ୍ତରୁ ଅପର ପ୍ରାନ୍ତକୁ ଧାବିତ ହେଉଛୁଁ । 'ଲଳିତ ବିସ୍ତର'ରେ ଲିଖିତ ବୁଦ୍ଧଚରିତର ଗୋଟିଏ ପ୍ରସିଦ୍ଧ ସଙ୍ଗୀତ ଏ ସମ୍ବନ୍ଧରେ ଆମମାନଙ୍କ ସ୍ମରଣ ହେଉଅଛି । ସେଥିରେ ବର୍ଣ୍ଣିତ ଅଛି, 'ବୁଦ୍ଧଦେବ ମାନବର ପରିତ୍ରାତା ରୂପରେ ଜନ୍ମ ପରିଗ୍ରହ କରିଥିଲେ; କିନ୍ତୁ ସେ ରାଜବାଟୀର ବିଳାସରେ ଆତ୍ମବିସ୍ମୃତ ହେବାରୁ, ତାଙ୍କର ପ୍ରବୋଧାର୍ଥେ ଦେବକନ୍ୟାଗଣକର୍ତ୍ତୃକ ଗୋଟିଏ ସଙ୍ଗୀତ ଗୀତ ହୋଇଥିଲା । ସେ ସଙ୍ଗୀତର ମର୍ମାର୍ଥ ଏହିପରି—'ଆମେମାନେ ସ୍ରୋତରେ ଭାସି-ଯାଉଛୁ, ଅବିରତ ପରିବର୍ତ୍ତିତ ହେଉଛୁ—ନିବୃତ୍ତି ନାହିଁ, ବିରାମ ନାହିଁ ।' ଏହିପରି ଆମମାନଙ୍କର ଜୀବନ ବିରାମ ଜାଣେ ନାହିଁ—ଅବିରତ ହିଁ ଚାଲିଛି । ବର୍ତ୍ତମାନ ଉପାୟ କଅଣ ? ଯାହାଙ୍କର ଅନ୍ନପାନର ପ୍ରାଚୁର୍ଯ୍ୟ ରହିଛି, ସେ ସୁଖାଶାବାଦୀ ହୋଇ କହନ୍ତି, 'ଭୀତିପ୍ରଦ ଦୁଃଖର କଥା କୁହ ନାହିଁ । ସାଂସାରିକ ଦୁଃଖ ଓ କ୍ଲେଶର କଥା ଶୁଣାଅ ନାହିଁ ।' ତାଙ୍କ ନିକଟକୁ ଯାଇ କହ—'ସବୁ ହିଁ ମଙ୍ଗଳ ।' ସେ କହନ୍ତି 'ସତରେ ମୁଁ ନିରାପଦରେ ଅଛି । ଏହି ଦେଖ, କିପରି ସୁନ୍ଦର ଅଟ୍ଟାଳିକାରେ ମୁଁ ବାସ କରୁଛି ! ମୋର ଶୀତର ଭୟ ନାହିଁ, ଅନ୍ନର ଅଭାବ ନାହିଁ ! ଅତଏବ ମୋ ସମ୍ମୁଖକୁ ଏ ଭୟାବହ ଚିତ୍ର ଆଣ ନାହିଁ ।' କିନ୍ତୁ ଅପର ଦିଗରେ ଶୀତ ଓ ଅନାହାରରେ କେତେ ଲୋକ ମରୁଛନ୍ତି ! ଯାଅ, ସେମାନଙ୍କୁ ଶିକ୍ଷା ଦିଅ ଯେ, 'ସମସ୍ତ ହିଁ ମଙ୍ଗଳ'; କିନ୍ତୁ ସେହି ଯେ ଜଣେ ଏ ଜୀବନରେ ଭୀଷଣ କ୍ଲେଶ ପାଇଛି, ସେ ତ ସୁଖ,

ସୌନ୍ଦର୍ଯ୍ୟ ଓ ମଙ୍ଗଳର କଥା ଶୁଣିବ ନାହିଁ । ସେ କହୁଛି—'ସମସ୍ତଙ୍କୁ ହିଁ ଭୟ ଦେଖାଅ; ମୁଁ ଯେତେବେଳେ କାନ୍ଦୁଛି, ଅପର ଲୋକେ କାହିଁକି ହସିବେ ? ମୁଁ ସମସ୍ତଙ୍କୁ ହିଁ ମୋ ସହିତ କ୍ରନ୍ଦନ କରାଇବି, କାରଣ, ମୁଁ ଦୁଃଖ-ପ୍ରପୀଡ଼ିତ, ସମସ୍ତେ ହିଁ ଦୁଃଖ-ପ୍ରପୀଡ଼ିତ ହୁଅନ୍ତୁ, ଏଥିରେ ହିଁ ମୋର ଶାନ୍ତି ।' ଆମେମାନେ ଏହିପରି ଭାବରେ ସୁଖାଶାବାଦରୁ ନିରାଶାବାଦକୁ ଯାଉଛୁ । ଅତଃପର ମୃତ୍ୟୁରୂପକ ଭୟାବହ ବ୍ୟାପାର—ସମଗ୍ର ସଂସାର ହିଁ ମୃତ୍ୟୁମୁଖକୁ ଯାଉଛି; ସମସ୍ତେ ହିଁ ମରୁଛନ୍ତି । ଆମ-ମାନଙ୍କର ଉନ୍ନତି, ବୃଥା ଆଡ଼ମ୍ବରପୂର୍ଣ୍ଣ କାର୍ଯ୍ୟକଳାପ, ସମାଜସଂସ୍କାର, ବିଳାସିତା, ଐଶ୍ୱର୍ଯ୍ୟ, ଜ୍ଞାନ—ମୃତ୍ୟୁ ହିଁ ସବୁର ଗୋଟିଏ ଗତି । ଏକମାତ୍ର ଏହା ହିଁ ସୁନିଶ୍ଚିତ । ନଗରାଦି ହେଉଛି, ଯାଉଛି; ସାମ୍ରାଜ୍ୟର ଉତ୍ଥାନ ଓ ପତନ ହେଉଛି—ଗ୍ରହାଦି ଖଣ୍ଡ ଖଣ୍ଡ ହୋଇ ଧୂଳିବତ୍ ଚୂର୍ଣ୍ଣ ହୋଇ ବିଭିନ୍ନ ଗ୍ରହସ୍ଥିତ ବାୟୁପ୍ରବାହରେ ଇତସ୍ତତଃ ବିକ୍ଷିପ୍ତ ହେଉଛି । ଏହିପରି ଅନାଦି କାଳ ଚାଲିଛି । ଏହାର ଲକ୍ଷ୍ୟ କ'ଣ ? ମୃତ୍ୟୁ ହିଁ ସବୁର ଲକ୍ଷ୍ୟ, ମୃତ୍ୟୁ ଜୀବନର ଲକ୍ଷ୍ୟ, ସୌନ୍ଦର୍ଯ୍ୟର ଲକ୍ଷ୍ୟ, ଐଶ୍ୱର୍ଯ୍ୟର ଲକ୍ଷ୍ୟ, ଶକ୍ତିର ଲକ୍ଷ୍ୟ, ଏପରିକି ଧର୍ମର ମଧ୍ୟ ଲକ୍ଷ୍ୟ । ସାଧୁ ଓ ପାପୀ ମରୁଛନ୍ତି, ରାଜା ଓ ଭିକ୍ଷୁକ ମରୁଛନ୍ତି—ସମସ୍ତେ ହିଁ ମୃତ୍ୟୁକୁ ପ୍ରାପ୍ତ ହେଉଛନ୍ତି । ତଥାପି ଜୀବନ ପ୍ରତି ଏହି ବିଷମ ମମତା ଅତୁଟ ରହିଛି । କାହିଁକି ଆମେ ଏ ଜୀବନର ମମତା କରୁ ? କାହିଁକି ଏହା ପରିତ୍ୟାଗ କରିପାରୁ ନାହିଁ ? ଏହା ଆମେ ଜାଣୁ ନାହିଁ । ଏହା ହିଁ ମାୟା ।

ଜନନୀ ସନ୍ତାନକୁ ସଯତ୍ନରେ ଲାଳନପାଳନ କରୁଛନ୍ତି; ତାଙ୍କର ସମସ୍ତ ମନ, ସମସ୍ତ ଜୀବନ ସେହି ସନ୍ତାନପ୍ରତି ରହିଛି । ବାଳକ ବର୍ଦ୍ଧିତ ହୋଇ ବୟଃପ୍ରାପ୍ତ ହେଲା ଏବଂ ହୁଏତ କୁଚରିତ୍ର ଓ ପଶୁବତ୍ ହୋଇ ପ୍ରତ୍ୟହ ମାତାଙ୍କୁ ପଦାଘାତ ଓ ତାଡ଼ନା କରିବାକୁ ଲାଗିଲା । ଜନନୀ ତଥାପି ପୁତ୍ର ପ୍ରତି ଆସକ୍ତ । ତାଙ୍କର ଯେତେ-ବେଳେ ବିଚାରଶକ୍ତି ଜାଗରିତ ହୁଏ, ସେତେବେଳେ ସେ ତାକୁ ସ୍ନେହାବରଣରେ ଆବୃତ କରି ରଖନ୍ତି । ସେ କିନ୍ତୁ ଜାଣନ୍ତି ନାହିଁ ଯେ ଏହା ସ୍ନେହ ନୁହେଁ—ଗୋଟିଏ ଅପରିଜ୍ଞେୟ ଶକ୍ତି ତାଙ୍କର ସ୍ନାୟୁମଣ୍ଡଳୀକୁ ଅଧିକାର କରିଛି । ସେ ଏହାକୁ ଦୂରୀଭୂତ କରିପାରନ୍ତି ନାହିଁ । ସେ ଯେତେ ଚେଷ୍ଟା କଲେ ମଧ୍ୟ ଏ ବନ୍ଧନ ଛିନ୍ନ କରିପାରନ୍ତି ନାହିଁ, ଏହା ହିଁ ମାୟା ।

ଆମେମାନେ ସମସ୍ତ କଳ୍ପିତ ସୁବର୍ଣ୍ଣ-ଲୋମର* ଅନ୍ୱେଷଣରେ ଧାବିତ ହେଉଛୁ; ପ୍ରତ୍ୟେକେ ଭାବୁଛନ୍ତି ଯେ ଏହା ମୋର ପ୍ରାପ୍ତବ୍ୟ, କିନ୍ତୁ ଜ୍ଞାନବାନ୍

---

* **Golden fleece** : ଗ୍ରୀକ୍ ପୌରାଣିକ ସାହିତ୍ୟରେ ଉଲ୍ଲିଖିତ ଅଛି ଯେ, ଗ୍ରୀସ୍‌ର ଅନ୍ତର୍ଗତ ଥେସାଲି ଦେଶର ରାଜବଂଶୀୟ ଆଥାମାସ୍‌ଙ୍କର ପତ୍ନୀ ନେଫେଲଙ୍କ ଗର୍ଭରେ ଫ୍ରିକ୍‌ସାସ ନାମକ ପୁତ୍ର ଓ ହେଲ୍ ନାମ୍ନୀ କନ୍ୟା ଜନ୍ମିଥିଲେ । କିଛିଦିନ ପରେ ନେଫେଲଙ୍କର ମୃତ୍ୟୁ ହେବାରୁ ଆଥାମାସ୍ କ୍ୟାଡ଼ମସ୍‌କନ୍ୟା ଇନୋଙ୍କୁ ବିବାହ କରିଥିଲେ । ଇନୋ ସପତ୍ନୀସନ୍ତାନଗଣଙ୍କ ପ୍ରତି ବିଦ୍ୱେଷବଶତଃ ଫ୍ରିକ୍‌ସାସ୍‌ଙ୍କୁ

ବ୍ୟକ୍ତି ମାନେ ହିଁ ବୁଝିପାରନ୍ତି, ଏହି ସୁବର୍ଣ୍ଣ-ଲୋମ ପ୍ରାପ୍ତ ହେବାର ଦୁଇକୋଟିରୁ ଏକାଂଶର ଅଧିକ ସମ୍ଭାବନା ନାହିଁ । ତଥାପି ପ୍ରତ୍ୟେକ ଲୋକ ହିଁ ତାହା ପାଇଁ କଠୋର ଚେଷ୍ଟା କରନ୍ତି; କିନ୍ତୁ ଅଧିକାଂଶ ହିଁ କିଛି ପାଆନ୍ତି ନାହିଁ, ଏହା ହିଁ ମାୟା ।

ଇହ ସଂସାରରେ ମୃତ୍ୟୁ ଦିବାରାତ୍ର ସଗର୍ବରେ ଭ୍ରମଣ କରୁଛି; ଆମର ବିଶ୍ୱାସ —ଆମେ ଚିରଦିନ ଜୀବିତ ଥିବୁଁ । କୌଣସି ସମୟରେ ରାଜା ଯୁଧିଷ୍ଠିରଙ୍କୁ ଏହି ପ୍ରଶ୍ନ ପଚରା ଯାଇଥିଲା—"ଏ ପୃଥିବୀରେ ଅତ୍ୟନ୍ତ ଆଶ୍ଚର୍ଯ୍ୟ କଅଣ ?" ରାଜା ଉତ୍ତର ଦେଇଥିଲେ, "ଲୋକସବୁ ପ୍ରତ୍ୟହ ଚତୁର୍ଦ୍ଦିଗରେ ମରୁଛନ୍ତି; କିନ୍ତୁ ଜୀବିତମାନେ ମନେକରନ୍ତି, ସେମାନେ କେବେହେଁ ମରିବେ ନାହିଁ ।" ଏହା ହିଁ ମାୟା ।

ଆମମାନଙ୍କର ବୁଦ୍ଧି, ଜ୍ଞାନ ଓ ଜୀବନର ପ୍ରତ୍ୟେକ ଘଟଣା ମଧ୍ୟରେ ସର୍ବଦା ଏହି ବିଷମ ବିରୁଦ୍ଧଭାବ ରହିଛି । ସୁଖ ଦୁଃଖର ଓ ଦୁଃଖ ସୁଖର ଅନୁଗାମୀ ହେଉଛି । ଜଣେ ସଂସ୍କାରକ ଆବିର୍ଭୂତ ହୋଇ ଜାତିବିଶେଷର ଦୋଷସମୂହ ପ୍ରତିକାରାର୍ଥେ ଯତ୍ନବାନ୍ ହେଲେ; ସଙ୍ଗେ ସଙ୍ଗେ ଅପର ଦିଗରେ ସହସ୍ର ଦୋଷ ତତ୍ ପ୍ରତିକାର ପୂର୍ବରୁ ହିଁ ଉତ୍ଥିତ ହେଲା । ପତନୋନ୍ମୁଖ ପୁରାତନ ଅଟ୍ଟାଳିକା ପରି ଗୋଟିଏ ସ୍ଥାନରେ ଜୀର୍ଣ୍ଣସଂସ୍କାର କରିବାକୁ ଗଲେ ଜୀର୍ଣ୍ଣତା ଆସି ଅନ୍ୟ ସ୍ଥାନକୁ ଆକ୍ରମଣ କରେ । ଭାରତୀୟ ନାରୀମାନଙ୍କର ବାଧ୍ୟତାମୂଳକ ବୈଧବ୍ୟଜନିତ ଦୋଷର ପ୍ରତିକାରାର୍ଥେ ଆମର ସଂସ୍କାରକଗଣ ଚିତ୍କାର ଓ ପ୍ରଚାର କରୁଛନ୍ତି । ପାଶ୍ଚାତ୍ୟ ପ୍ରଦେଶସମୂହରେ ଅବିବାହିତ ରହିବା ହିଁ ପ୍ରଧାନ ଦୋଷ । ଏକ ସ୍ଥାନରେ ଅପରିଣୀତାମାନଙ୍କର ଯନ୍ତ୍ରଣା ମୋଚନ ପାଇଁ ସହାୟତା କରିବାକୁ ହେବ; ଅନ୍ୟ ସ୍ଥାନରେ ବିଧବାମାନଙ୍କ

---

ଦେବୋଦ୍ଦେଶ୍ୟରେ ବଳି ଦେବା ପାଇଁ ନାନା କୌଶଳରେ ତଦୀୟ ପତିଙ୍କୁ ସମ୍ମତ କରାଇଥିଲେ । କିନ୍ତୁ ବଳିଦାନ ପୂର୍ବରୁ ହିଁ ଫ୍ରିକ୍ସାସଙ୍କ ସ୍ୱର୍ଗୀୟ ଗର୍ଭଧାରିଣୀଙ୍କର ଆତ୍ମା ତାଙ୍କ ନିକଟରେ ଆବିର୍ଭୂତ ହୋଇ ତାଙ୍କ ନିକଟକୁ ସୁବର୍ଣ୍ଣଲୋମଯୁକ୍ତ ଗୋଟିଏ ମେଷ ନେଇଆସିଲେ ଏବଂ ତାହା ଉପରେ ଆରୋହଣ କରି ସମୁଦ୍ର ପାର ହୋଇ ପଳାୟନ କରିବାଲାଗି ଆଦେଶ ଦେଲେ । ବାଟରେ ଭଗିନୀ ହେଲ୍ ପଡ଼ିଯାଇ ବୁଡ଼ିଗଲେ—ଫ୍ରିକ୍ସାସ କୃଷ୍ଣସାଗରସ୍ଥ ପୂର୍ବଦିଗସ୍ଥ କଲ୍‌ଚିସ୍ ନାମକ ସ୍ଥାନରେ ଉପନୀତ ହୋଇ, ସେଠାରେ ଜିଉସ୍‌ଦେବଙ୍କ ଉଦ୍ଦେଶ୍ୟରେ ସେହି ମେଷଟିକୁ ବଳି ଦେଇ ତାହାର ଚର୍ମଟି ମାର୍ସଦେବଙ୍କ କୁଞ୍ଜରେ ଟାଙ୍ଗି ରଖିଲେ । ଗୋଟିଏ ଦୈତ୍ୟ ତାହାର ରକ୍ଷଣାବେକ୍ଷଣରେ ନିଯୁକ୍ତ ରହିଲା । କିଛିଦିନ ପରେ ସେହି ସୁବର୍ଣ୍ଣଲୋମ ଆନୟନ ପାଇଁ ଆଥାମାସଙ୍କର ଭ୍ରାତୁଷ୍ପୁତ୍ର ଜ୍ୟାସନ୍ ତଦୀୟ ପ୍ରତିଦ୍ୱନ୍ଦ୍ୱୀ ପେଲିୟାସ-କର୍ତ୍ତୃକ ନିଯୁକ୍ତ ହୋଇଥିଲେ ଏବଂ ସେ ଆର୍ଗୋ ନାମକ ଗୋଟିଏ ସୁବୃହତ୍ ଅର୍ଣ୍ଣବ-ଯାନରେ ଅନେକ ପ୍ରସିଦ୍ଧ ବୀରପୁରୁଷବର୍ଗଙ୍କଦ୍ୱାରା ପରିବେଷ୍ଟିତ ହୋଇ ନାନା ବାଧା-ବିଘ୍ନ ଅତିକ୍ରମ କରି ଉକ୍ତ ସୁବର୍ଣ୍ଣଲୋମ ଆନୟନ କରିବାରେ କୃତକାର୍ଯ୍ୟ ହୋଇଥିଲେ । ଗ୍ରୀକ୍ ପୁରାଣରେ ଏହା **Argonautic Expedition** ନାମରେ ବିଖ୍ୟାତ ।

ଦାଷ୍ଟ ଅପସାରଣ ପାଇଁ ଯତ୍ନବାନ୍ ହେବାକୁ ହେବ; ଦେହର ପୁରାତନ ବାତବ୍ୟାଧି ଯେଉଁ ପରି ଶିରସ୍ଥାନରୁ ବିତାଡ଼ିତ ହୋଇ ଏହା ଦେହର ଅନ୍ୟ ସ୍ଥାନ ଆଶ୍ରୟ କରୁଛି; ପୁଣି ସେଠାରୁ ପାଦଦେଶକୁ ଅଧିକାର କରୁଛି । ସଂସ୍କାରକ ଆସିଲେ ଏବଂ ସାଧାରଣଙ୍କ ଭିତରେ ପ୍ରଚାର କଲେ—ବିଦ୍ୟା, ଧନ, କୃଷି ଅଳ୍ପସଂଖ୍ୟକ ଲୋକଙ୍କ ମଧ୍ୟରେ ସୀମାବଦ୍ଧ ହୋଇ ରହିବ ନାହିଁ । ସେମାନେ ଏଗୁଡ଼ିକୁ ସମସ୍ତଙ୍କର ଆୟତ୍ତ ଭିତରେ ଆଣିବାକୁ ଚେଷ୍ଟା କଲେ । ଏଥିରେ ଜନସାଧାରଣ ଗୋଟିଏ ହିସାବରେ କେତେକ ପରିମାଣରେ ସୁଖୀ ହେଲେ ସତ, କିନ୍ତୁ ଜ୍ଞାନାନୁଶୀଳନ ଯେତେ ଅଧିକ ହେବାକୁ ଲାଗିଲା, ହୁଏତ ଶାରୀରିକ ସୁଖ ସେତେ ହିଁ ଅନ୍ତର୍ହିତ ହେବାକୁ ଲାଗିଲା । ବର୍ତ୍ତମାନ କେଉଁ ବାଟ ଅବଲମ୍ବନ କରିବାକୁ ହେବ ? ସୁଖର ଜ୍ଞାନରୁ ଅସୁଖର ଜ୍ଞାନ ଯେ ଆସୁଛି ! ଆମେମାନେ ଯେଉଁ ଯତ୍‌ସାମାନ୍ୟ ସୁଖ ଭୋଗ କରୁଛୁ, ଅନ୍ୟ କେଉଁଠି ତାହା ସେହି ପରିମାଣରେ ଅସୁଖ ଉତ୍ପାଦନ କରୁଛି । ସବୁ ବସ୍ତୁର ହିଁ ଏହି ଅବସ୍ଥା । ଯୁବକମାନେ ହୁଏତ ଏହା ସ୍ପଷ୍ଟଭାବରେ ବୁଝିପାରିବେ ନାହିଁ । କିନ୍ତୁ ଯେଉଁମାନେ ବହୁଦିନ ଜୀବିତ ଅଛନ୍ତି, ଅନେକ ଯନ୍ତ୍ରଣା ଅନୁଭବ କରିଛନ୍ତି, ସେମାନେ ଉପଲବ୍‌ଧି କରିପାରିବେ । ଏହା ହିଁ ମାୟା ।

ଦିବାରାତ୍ର ଏହିସବୁ ବ୍ୟାପାର ସଂଘଟିତ ହେଉଛି; କିନ୍ତୁ ଏହାର ସୁମୀମାଂସା ଅସମ୍ଭବ । ଏପରି ହେବାର କାରଣ କ'ଣ ? ଏ ବିଷୟରେ ନ୍ୟାୟସଙ୍ଗତ କୌଣସି ପ୍ରଶ୍ନ ହିଁ ହୋଇପାରେ ନାହିଁ; ଏହି କାରଣରୁ ଏ ପ୍ରଶ୍ନର ଉତ୍ତର ମଧ୍ୟ ଅସମ୍ଭବ । ଏହାର କାରଣାବଧାରଣ ହୋଇପାରେ ନାହିଁ । ଉତ୍ତର ଦେବା ପୂର୍ବରୁ ଏହାର ତାତ୍ପର୍ଯ୍ୟବୋଧ ହିଁ ହେବ ନାହିଁ—ଏହା କ'ଣ, ତାହା ମଧ୍ୟ ଜାଣି ହେବ ନାହିଁ । ଆମେମାନେ ଏହାକୁ ଗୋଟିଏ ମୁହୂର୍ତ୍ତ ପାଇଁ ମଧ୍ୟ ସ୍ଥିର ରଖିପାରୁ ନାହିଁ—ପ୍ରତି ମୁହୂର୍ତ୍ତରେ ହିଁ ଏହା ଆମମାନଙ୍କର ହସ୍ତବହିର୍ଭୂତ ହେଉଅଛି । ଆମେମାନେ ଅନ୍ଧଯନ୍ତ୍ରବତ୍ ପରିଚାଳିତ ହେଉଛୁଁ । ଆମେମାନେ ଯେଉଁ କାର୍ଯ୍ୟ କେବେ କେବେ ନିଃସ୍ୱାର୍ଥ ଭାବରେ କରିଛୁ, ପରୋପକାର ଚେଷ୍ଟାରେ କରିଛୁ, ସେଗୁଡ଼ିକୁ ସ୍ମରଣ କରି ଭାବିପାରୁ—କାହିଁକି, ସେହି କାର୍ଯ୍ୟଗୁଡ଼ିକ ତ ଆମେ ବୁଝିଶୁଝି, ଭାବିଚିନ୍ତି କରିଥିଲୁ; କିନ୍ତୁ ପ୍ରକୃତ ପକ୍ଷରେ ଆମେମାନେ ତାହା ନ କରି ରହିପାରୁ ନାହିଁ ବୋଲି ସେହିପରି କରିଥିଲୁଁ । ମୋତେ ଏହି ସ୍ଥାନରେ ଦଣ୍ଡାୟମାନ ହୋଇ ଆପଣମାନଙ୍କୁ ବକ୍ତୃତାଦ୍ୱାରା ଉପଦେଶ ଦେବାକୁ ହେଉଛି ଏବଂ ଆପଣମାନେ ଉପବେଶନପୂର୍ବକ ତାହା ଶ୍ରବଣ କରୁଛନ୍ତି; ଏହା ମଧ୍ୟ ଆମେମାନେ ନ କରି ରହିପାରୁ ନାହିଁ ବୋଲି କରୁଛୁଁ । ଆପଣମାନେ ହୁଏତ ମୋ ବକ୍ତୃତା ପରେ ଗୃହକୁ ପ୍ରତ୍ୟାବୃତ୍ତ ହେବେ । କେହି ଏଥିରୁ ଯତ୍‌ସାମାନ୍ୟ ଶିକ୍ଷାଲାଭ କରିବେ—ଅନ୍ୟମାନେ ମଧ୍ୟ ମନେକରିବେ ଲୋକଟା ଅନର୍ଥକ ବକୁଛି; ମୁଁ ଘରକୁ ଯାଇ ଭାବିବି, ମୁଁ ବକ୍ତୃତା ଦେଇଛି—ଏହା ହିଁ ମାୟା ।

ଅତଏବ, ଏହି ସଂସାରଗତ ବର୍ତ୍ତନାର ନାମ ହିଁ ମାୟା । ସାଧାରଣତଃ ଲୋକେ ଏ କଥା ଶୁଣିଲେ ଭୀତ ହୁଅନ୍ତି । ଆମମାନଙ୍କୁ ସାହସୀ ହେବାକୁ ହେବ । ଅବସ୍ଥାର ବିଷୟ ଗୋପନ କଲେ ରୋଗର ପ୍ରତିକାର ହେବ ନାହିଁ । ଶଶକ ଯେପରି କୁକୁରଦ୍ୱାରା ଅନୁସୃତ ହୋଇ ମାଟିରେ ମସ୍ତକ ଗୋପନ କରି ନିଜକୁ ନିରାପଦ ଜ୍ଞାନ କରିଥାଏ, ଆମେମାନେ ସୁଖାଶାବାଦୀ **(optimist)** ହୋଇ ଅବିକଳ ସେହି ଶଶକ ପରି କାର୍ଯ୍ୟ କରୁଛୁ । ଏହା ରୋଗମୁକ୍ତ ହେବାର ଔଷଧ ନୁହେଁ ।

ଅପର ପକ୍ଷରେ ଇହଜୀବନର ପ୍ରାଚୁର୍ଯ୍ୟ, ସୁଖ ଓ ସ୍ୱାଚ୍ଛନ୍ଦ୍ୟଭୋଗୀମାନେ ଏହି ମାୟାବାଦ ବିରୋଧରେ ଅଜସ୍ର ଆପତ୍ତି ଉତ୍ଥାପିତ କରନ୍ତି । ଏ ଦେଶରେ —ଇଂଲଣ୍ଡରେ ନିରାଶାବାଦୀ ହେବା କଠିନ । ସମସ୍ତେ ହିଁ ମୋତେ କହୁଛନ୍ତି— ଜଗତ୍-କାର୍ଯ୍ୟ କି ସୁନ୍ଦରରୂପରେ ସମ୍ପନ୍ନ ହେଉଛି । ଏହା କିପରି ଉନ୍ନତିଶୀଳ ! କିନ୍ତୁ ସେମାନେ ସ୍ୱକୀୟ ଜୀବନକୁ ହିଁ ସେମାନଙ୍କର ଜଗତ୍ ବୋଲି ଜାଣନ୍ତି । ପୁରାତନ ପ୍ରଶ୍ନ ଉତ୍ଥିତ ହେଉଛି—ଖ୍ରୀଷ୍ଟଧର୍ମ ହିଁ ପୃଥିବୀ ମଧ୍ୟରେ ଏକମାତ୍ର ଧର୍ମ, କାରଣ ଖ୍ରୀଷ୍ଟଧର୍ମାବଲମ୍ବୀ ଜାତିମାନେ ହିଁ ସମୃଦ୍ଧିଶାଳୀ । କିନ୍ତୁ ଏ ପ୍ରକାର ଉକ୍ତି ସ୍ୱବିରୋଧୀ, ଯେହେତୁ ଅଣଖ୍ରୀଷ୍ଟିୟାନ ଜାତିମାନଙ୍କର ଦୁର୍ଭାଗ୍ୟ ହିଁ ଖ୍ରୀଷ୍ଟିୟାନ୍ ଜାତିର ସୌଭାଗ୍ୟ-ଶାଳିତାର କାରଣ । ଜଣକର ସୌଭାଗ୍ୟବର୍ଦ୍ଧନ ଆଉ ଜଣଙ୍କର ଶୋଣିତ-ପାରଣାକୁ ଅପେକ୍ଷା ରଖେ । ସମସ୍ତ ପୃଥିବୀ ଖ୍ରୀଷ୍ଟଧର୍ମାବଲମ୍ବୀ ହେଲେ ଶିକାରସ୍ୱରୂପ ଅଣଖ୍ରୀଷ୍ଟିୟାନ ଜାତିର ଅସ୍ତିତ୍ୱ ନ ରହିଲେ ଖ୍ରୀଷ୍ଟିୟାନ୍ ଜାତି ସ୍ୱତଃ ହିଁ ଦରିଦ୍ର ହେବ । ସୁତରାଂ ଏ ଯୁକ୍ତି ନିଜକୁ ହିଁ ଖଣ୍ଡନ କରୁଛି । ଉଦ୍ଭିଦ ପଶ୍ୱାଦିଙ୍କର ଅନ୍ନସ୍ୱରୂପ, ମନୁଷ୍ୟ ପଶ୍ୱାଦିର ଭୋକ୍ତା ଏବଂ ସର୍ବାପେକ୍ଷା ଗର୍ହିତ ବ୍ୟାପାର—ମନୁଷ୍ୟ ପରସ୍ପରର, ଦୁର୍ବଳ ବଳବାନ୍‌ର ଭକ୍ଷ୍ୟ ହୋଇ ରହିଛି । ଏହିପରି ସର୍ବତ୍ର ହିଁ ବିଦ୍ୟମାନ । ଏହା ହିଁ ମାୟା ।

ଏ ରହସ୍ୟର ତୁମେ କି ମୀମାଂସା କରିବ ? ଆମେମାନେ ପ୍ରତ୍ୟହ ହିଁ ଅଭିନବ ଯୁକ୍ତି ଶ୍ରବଣ କରୁ । କେହି କହୁଛନ୍ତି, ଚରମରେ କେବଳ ମଙ୍ଗଳ ହିଁ ରହିବ । ଏ ପ୍ରକାର ସମ୍ଭାବନା ଅତ୍ୟନ୍ତ ସନ୍ଦେହସଙ୍କୁଳ ହେଲେ ମଧ୍ୟ ଆମେମାନେ ସ୍ୱୀକାର କରି-ନେଲୁ । କିନ୍ତୁ ଏପ୍ରକାର ପୈଶାଚିକ ଉପାୟରେ ମଙ୍ଗଳ ହେବାର କାରଣ କଅଣ ? ପୈଶାଚିକ ରୀତି ଅବଲମ୍ବନ ବ୍ୟତୀତ ମଙ୍ଗଳ ମଧ୍ୟଦେଇ କଅଣ ମଙ୍ଗଳସାଧନ ହୁଏ ନାହିଁ ? ବର୍ତ୍ତମାନ ମାନବଗଣଙ୍କ ବଂଶୋଦ୍ଭବମାନେ ସୁଖୀ ହେବେ, କିନ୍ତୁ ସେଥିରେ ମୋର କି ଫଳ ଲାଭ ହେଉଛି ? ମୁଁ ଯେ ବର୍ତ୍ତମାନ ଏ ଭୟାନକ ଯନ୍ତ୍ରଣା ଉପଭୋଗ କରୁଛି । ଏହା ହିଁ ମାୟା ।

ଦୋଷାଂଶର କ୍ରମପରିହାର କ୍ରମବିକାଶବାଦର **(Darwin's Theory of Evolution)** ଗୋଟିଏ ବିଶେଷତ୍ୱ ବୋଲି ଶୁଣିବାକୁ ମିଳେ; ସଂସାରରୁ ଏହିଭଳି କ୍ରମେ ଦୋଷକୁ ପରିତ୍ୟାଗ କରାଗଲେ ଅବଶେଷରେ କେବଳ ମଙ୍ଗଳ ହିଁ ବିଦ୍ୟମାନ ରହିବ । ଶୁଣିବାକୁ ଏହା ଖୁବ୍ ସୁନ୍ଦର । ଏହି ସଂସାରରେ ଯେଉଁମାନଙ୍କର

ଭଣ୍ଡାର ପରିପୂର୍ଣ୍ଣ ରହିଅଛି, ପ୍ରତିଦିନ ଯେଉଁମାନଙ୍କୁ କଠୋର ଯନ୍ତ୍ରଣା ସହିବାକୁ ପଡ଼େ ନାହିଁ, ତଥାକଥିତ କ୍ରମବିକାଶର ଘୂର୍ଣ୍ଣିନରେ ଯେଉଁମାନେ ନିଷ୍ପେଷିତ ହୁଅନ୍ତି ନାହିଁ, ଏ ପ୍ରକାର ସିଦ୍ଧାନ୍ତ ସେମାନଙ୍କ ଦାମ୍ଭିକତାକୁ ବଢ଼ାଇ ଦେଇପାରେ । ବାସ୍ତବିକ ଏହା ସେମାନଙ୍କ ପକ୍ଷେ ଅତ୍ୟନ୍ତ ହିତକର ଓ ଶାନ୍ତିପ୍ରଦ । ସାଧାରଣ ଲୋକେ ଦଳକୁ ଦଳ ଯନ୍ତ୍ରଣା ଭୋଗ କରନ୍ତୁ—ସେଥିରେ ସେମାନଙ୍କର କ୍ଷତି କଅଣ ? ସେମାନେ ଧନେ ମରିବେ—ସେଥିପାଇଁ ସେମାନଙ୍କର ଆଜିଠାରୁ ଭାବିବା କଣ ଦରକାର ? ଭଲ କଥା, କିନ୍ତୁ ଏ ଯୁକ୍ତି ଆମୂଳଚୂଳ ଭ୍ରମପୂର୍ଣ୍ଣ । ପ୍ରଥମତଃ ବିନା ପ୍ରମାଣରେ ଏମାନେ ଅବଧାରଣ କରିଅଛନ୍ତି ଯେ ଏ ଜଗତରେ ଅଭିବ୍ୟକ୍ତ ମଙ୍ଗଳ ଓ ଅମଙ୍ଗଳର ପରିମାଣ ନିର୍ଦ୍ଦିଷ୍ଟ ହୋଇ ରହିଛି । ଦ୍ୱିତୀୟତଃ ଏହା ଅପେକ୍ଷା ଦୋଷାବହ ନିର୍ଦ୍ଧାରଣ ଏହିପରି କରା-ଯାଇପାରେ ଯେ ମଙ୍ଗଳର ପରିମାଣ କ୍ରମବୃଦ୍ଧିଶୀଳ ଏବଂ ଅମଙ୍ଗଳ ନିର୍ଦ୍ଦିଷ୍ଟ ପରିମାଣରେ ବିଦ୍ୟମାନ ରହିଛି । ଅତଏବ ଏପରି ସମୟ ଆସି ଉପସ୍ଥିତ ହେବ, ଯେତେବେଳେ କ୍ରମବିକାଶଦ୍ୱାରା ପରିତ୍ୟକ୍ତ ହୋଇ ଅମଙ୍ଗଳ କ୍ରମେ ଶେଷ ହୋଇଯିବ । ପରି-ଶେଷରେ ମଙ୍ଗଳ ହିଁ କେବଳ ରହିବ—ଏହା ଅତି ସହଜ ଉକ୍ତି । କିନ୍ତୁ ଅମଙ୍ଗଳର ପରିମାଣ ଯେ କ୍ରମଶଃ ହିଁ କମିଯାଉଛି ବୋଲି କୁହାଯାଉଛି, ତାହା କ'ଣ ପ୍ରମାଣ କରାଯାଇପାରିବ ? ଏହା କଅଣ କ୍ରମବୃଦ୍ଧିପ୍ରାପ୍ତ ହେଉ ନାହିଁ ? ଅରଣ୍ୟବାସୀ ଜଣେ ମନୁଷ୍ୟ, ମନୋବୃତ୍ତି ପରିଚାଳନା କରିବାରେ ଯେ ଅନଭିଜ୍ଞ, ଖଣ୍ଡିଏ ବହି ପଢ଼ିବାରେ ଅସମର୍ଥ, ହସ୍ତାକ୍ଷର କାହାକୁ କୁହାଯାଏ ସେ ଜୀବନରେ କେବେ ଶୁଣି ନାହିଁ, ଆଜି ଛୁରିରେ ତାହାକୁ କ୍ଷତବିକ୍ଷତ କର, କାଲି ସେ ସୁସ୍ଥ ହୋଇ ଉଠିବ । ତୀକ୍ଷ୍ଣ ଅସ୍ତ୍ର ତାହାର ଶରୀର ଭିତରେ ପ୍ରବେଶ କରାଇ ବାହାର କରି ଆଣ, ତଥାପି ସେ ଆରୋଗ୍ୟ ଲାଭ କରିବ । କିନ୍ତୁ ଆମେ ଅଧିକ ସଭ୍ୟ ହେଲେ ବି ବାଟରେ ଯାଉ ଯାଉ ଯଦି ଟିକିଏ ଆଞ୍ଚୁଡ଼ି ହୋଇଗଲା ତ ଆମେ ମରିଯିବୁ । ଶିଳ୍ପ ଯନ୍ତ୍ରପାତି ବିଭିନ୍ନ ଦ୍ରବ୍ୟର ସୁଲଭ ପ୍ରାପ୍ତି ଘଟାଇଛି; କ୍ରମବିକାଶ ଫଳରେ ତାହାର ଉନ୍ନତି ମଧ୍ୟ ଘଟୁଛି; କିନ୍ତୁ ଜଣେ ଲୋକ ଧନୀ ହେବ ବୋଲି ଲକ୍ଷ ଲକ୍ଷ ଲୋକଙ୍କୁ ଶୋଷଣ କରୁଛି । ଜଣକୁ ଧନଶାଳୀ କରିବାକୁ ହେଲେ ହଜାର ହଜାର ଲୋକଙ୍କୁ ଦରିଦ୍ରରୁ ଦରିଦ୍ରତର ହେବାକୁ ପଡୁଛି । ଅସଂଖ୍ୟ ମନୁଷ୍ୟଙ୍କୁ କ୍ରୀତଦାସ କରାଯାଉଛି । ଜଗତର ଧାରା ହିଁ ଏହିପରି । ମଣିଷର ସୁଖଭୋଗାନ୍ୱେଷୀ ଇନ୍ଦ୍ରିୟମାନଙ୍କ ଭିତରେ ପାଶବ ପ୍ରକୃତି ଆବଦ୍ଧ; ତାହାର ସୁଖ ଓ ଦୁଃଖ ସେହି ଇନ୍ଦ୍ରିୟ ମଧ୍ୟରେ ହିଁ ସନ୍ନିବିଷ୍ଟ । ଯଦି ତାହାକୁ ପ୍ରଚୁର ଆହାର ନ ମିଳେ କିମ୍ବା ଶାରୀରିକ ଅସୁସ୍ଥତା ଘଟେ, ସେ ନିଜକୁ ହତଭାଗ୍ୟ ବୋଲି ମନେକରେ । ଇନ୍ଦ୍ରିୟମାନଙ୍କ ଭିତରେ ତାହାର ସୁଖଦୁଃଖର ଉତ୍ଥାନ ଓ ଅବସାନ ଘଟେ । ଏହି ପ୍ରକାର ବ୍ୟକ୍ତିର ଉନ୍ନତି ଘଟିବାବେଳେ ସୁଖର ବିସ୍ତୃତି ଯେଉଁ ପରିମାଣରେ ବଢ଼େ, ଦୁଃଖ ମଧ୍ୟ ଅନୁରୂପ ପରିମାଣରେ ବଢ଼ିଥାଏ । ଅରଣ୍ୟବାସୀ ମନୁଷ୍ୟ ଈର୍ଷାପରବଶ ହେବା ଜାଣେ ନାହିଁ, କୋର୍ଟ କଚେରିକୁ ଯିବା

ଜାଣେ ନାହିଁ, ନୟମିତଭାବେ ଖଜଣା ଦେବା କଥା ଜାଣେ ନାହିଁ, ସମାଜଦ୍ୱାର ନନ୍ଦିତ ହେବା କଥା ଜାଣେ ନାହିଁ, ପରସ୍ପର ହୃଦୟର ଅନ୍ତରତମ ଭାବନା ଜାଣିବା ପାଇଁ ପୈଶାଚକୀ ମାନବପ୍ରକୃତ-ସମ୍ଭୂତ ଯେଉଁ ଘୃଷଣ ଅତ୍ୟାଗ୍ରହ ବନଯୁକ୍ତ ହୋଇ ରହିଛି, ତଦ୍ୱାର ବାରମ୍ବାର ପର୍ଯ୍ୟବେକ୍ଷିତ ହେବା କଥା ସେ ଜାଣେ ନାହିଁ । ସେ ଜାଣେ ନାହିଁ, ଭ୍ରାନ୍ତଜ୍ଞାନସମ୍ପନ୍ନ ଗର୍ବିତ ମନୁଷ୍ୟ କପରି ପଶୁ ଅପେକ୍ଷା ସହସ୍ର ଗୁଣରେ ପୈଶାଚକ ସ୍ୱଭାବ ପ୍ରାପ୍ତ ହୁଏ । ଏହିପରି ଭାବରେ ଆମେ ଯେତେବେଳେ ଇନ୍ଦ୍ରିୟପରାୟଣତାରୁ ମୁକ୍ତ ହୋଇଯାଉ, ସେତେବେଳେ ଆମର ସୁଖାନୁଭବର ଉଚ୍ଚତର ଶକ୍ତିର ଉନ୍ମେଷ ଘଟିବା ସଙ୍ଗେ ସଙ୍ଗେ ଯନ୍ତ୍ରଣା-ଅନୁଭବ-ଶକ୍ତିର ମଧ୍ୟ ପୁଷ୍ଟି ଘଟେ । ସ୍ନାୟୁମଣ୍ଡଳ ସୂକ୍ଷ୍ମତର ହେବା ଫଳରେ ଅଧିକ ଯନ୍ତ୍ରଣା ଅନୁଭବ କରେ । ମୂଢ଼ ସାଧାରଣ ମନୁଷ୍ୟ ତିରସ୍କୃତ ହେଲେ ଅଧିକ ଦୁଃଖ ଅନୁଭବ କରେ ନାହିଁ— ଏ କଥା ସବୁ ସମାଜରେ ପ୍ରତ୍ୟକ୍ଷ ହେଉଛି; କିନ୍ତୁ ପ୍ରହାରର ଆତିଶଯ୍ୟ ଘଟିଲେ କ୍ଳିଷ୍ଟ ହୋଇଯାଏ । ମାତ୍ର ଭଦ୍ରଲୋକ ପଦେ ହେଲେ ତିରସ୍କାରର କଥା ସହିପାରେ ନାହିଁ । କାରଣ ତାହାର ସ୍ନାୟୁମଣ୍ଡଳ ଅତି ବେଶୀ ସୂକ୍ଷ୍ମ ସ୍ୱଭାବାପନ୍ନ ହୋଇପଡ଼ିଛି । ତାହାର ସୁଖାନୁଭୂତି ସହଜ ହୋଇପଡ଼ିଥିବାରୁ ଦୁଃଖର ମଧ୍ୟ ବୃଦ୍ଧି ଘଟିଛି । ଦାର୍ଶନିକ ପଣ୍ଡିତମଣ୍ଡଳୀର କ୍ରମବିକାଶବାଦ ଏହାଦ୍ୱାର ଅଧିକ ସମର୍ଥିତ ହୁଏ ନାହିଁ । ଆମର ସୁଖଭୋଗର ଶକ୍ତି ଯେତିକି ବଢ଼େ, ଯନ୍ତ୍ରଣାଭୋଗର ଶକ୍ତି ମଧ୍ୟ ସେହି ପରିମାଣରେ ବଢ଼ିଥାଏ । ମୋର ବିନୀତ ଅଭିମତ ଏତିକି ଯେ, ଆମର ସୁଖୀ ହେବାର ଶକ୍ତି ଯଦି ସମଯୁକ୍ତାନ୍ତର ଶ୍ରେଣୀ (ଯୋଗଖଣ୍ଡ—Arithmetical Progression) ନିୟମରେ ଅଗ୍ରସର ହୁଏ, ଅପର ଦିଗରେ ଆମର ଦୁଃଖୀ ହେବାର ଶକ୍ତି ସମ-ଗୁଣିତାନ୍ତର ଶ୍ରେଣୀର (ଗୁଣଖଣ୍ଡ—Geometrical Progression)* ନିୟମାନୁଯାୟୀ ବର୍ଦ୍ଧିତ ହେବ । ବଣଜଙ୍ଗଲର ଅଧିବାସୀମାନେ ମାନବସମାଜ ସମ୍ବନ୍ଧରେ ଅଧିକ ଅଭିଜ୍ଞ ନୁହନ୍ତି । ଉନ୍ନତଶୀଳ ହୋଇ ଆମେମାନେ ଜାଣିଛୁ ଯେ, ଯିଏ ଯେତେ ଉନ୍ନତ, ତା'ଠାରେ ସୁଖଦୁଃଖାନୁଭବ-ଶକ୍ତି ସେହି ପରିମାଣରେ ତୀବ୍ର ହୋଇଥାଏ । ସଂସାରର ଅଧିକାଂଶ ଲୋକ ଆଜନ୍ମ ଉନ୍ମାଦଗ୍ରସ୍ତ, ଏ କଥା ଜାଣିଛ ତ ? ଏହା ହିଁ ମାୟା ।

ଅତଏବ ଆମେ ଦେଖିବାକୁ ପାଉଁ ଯେ, ସଂସାର ରହସ୍ୟର ବ୍ୟାଖ୍ୟା ପାଇଁ ମାୟା ଏକ ବିଶେଷ ମତବାଦ ନୁହେଁ । ସଂସାରର ଘଟଣାବଳୀ ଯେଉଁଭଳିଭାବେ ବିଦ୍ୟମାନ ରହିଛି, ଏହା ତାହାର ବର୍ଣ୍ଣନାମାତ୍ର । ବିରୁଦ୍ଧଭାବ ହିଁ ଆମମାନଙ୍କର

---

* ଯୋଗଖଣ୍ଡ ଓ ଗୁଣଖଣ୍ଡ । ଯୋଗଖଣ୍ଡ—୩।୫।୭।୯ ଇତ୍ୟାଦି; ଏଠାରେ ଏହି ଶ୍ରେଣୀଟିର ମଧ୍ୟରେ ପ୍ରତ୍ୟେକ ପରବର୍ତ୍ତୀ ଅଙ୍କ ପ୍ରତ୍ୟେକ ପୂର୍ବବର୍ତ୍ତୀ ଅଙ୍କଠାରୁ ଦୁଇ ଦୁଇ ଅଧିକ । ଗୁଣଖଣ୍ଡ—୩।୬।୧୨।୨୪ ଇତ୍ୟାଦି; ଏଠାରେ ପ୍ରତ୍ୟେକ ପରବର୍ତ୍ତୀ ଅଙ୍କ ପ୍ରତ୍ୟେକ ପୂର୍ବବର୍ତ୍ତୀ ଅଙ୍କର ଦୁଇ ଗୁଣ ।

ଅସ୍ତିତ୍ୱର ଭିତ୍ତି, ଏହି ଭୟାନକ ବିରୁଦ୍ଧ ଭାବ ମଧ୍ୟ ଦେଇ ଆମେମାନେ ସର୍ବଦା ଚଳପ୍ରଚଳ ହେଉ । ଯେଉଁଠି ମଙ୍ଗଳ, ସେଠାରେ ଅମଙ୍ଗଳ ରହିଛି; ଯେଉଁଠି ଅମଙ୍ଗଳ ସେଠାରେ ମଙ୍ଗଳ ମଧ୍ୟ ରହିଛି । ଯେଉଁଠି ଜୀବନ ଅଛି, ମୃତ୍ୟୁ ସେଠାରେ ଛାୟା ପରି ତାହାକୁ ଅନୁସରଣ କରୁଛି । ଯେ ହସୁଛି, ତାକୁ କାନ୍ଦିବାକୁ ହିଁ ପଡ଼ିବ; ଯେ କାନ୍ଦୁଛି, ସେ ପୁଣି ହସିବ । ଏହି ବ୍ୟାପାର ପରିବର୍ତ୍ତିତ ହେବାର ନୁହେଁ । ଆମେ ଅବଶ୍ୟ ଏହିପରି ସ୍ଥାନ କଳ୍ପନା କରିପାରିବା, ଯେଉଁଠାରେ କେବଳ ମଙ୍ଗଳ ଥିବ, ଅମଙ୍ଗଳ ନ ଥିବ, ଯେଉଁଠାରେ ଆମେ କେବଳ ହସିବା ସିନା, କାନ୍ଦିବା ନାହିଁ; କିନ୍ତୁ ଯେତେବେଳେ ଏହିସବୁ କାରଣ ସର୍ବଦା ସମଭାବରେ ବିଦ୍ୟମାନ, ସେପରି ସ୍ଥାନରେ ଏଭଳି ଘଟଣା ସ୍ୱତଃ ଅସମ୍ଭବ । ଯେଉଁଠାରେ ଆମମାନଙ୍କୁ ହସାଇବାର ଶକ୍ତି ରହିଛି, କନ୍ଦାଇବାର ଶକ୍ତି ମଧ୍ୟ ସେଠାରେ ପ୍ରଚ୍ଛନ୍ନ ଭାବରେ ରହିଛି । ଯେଉଁଠାରେ ସୁଖୋଦ୍ଦୀପିକା ଶକ୍ତି ବର୍ତ୍ତମାନ, ସେଠାରେ ଦୁଃଖଦାୟିକା ଶକ୍ତି ମଧ୍ୟ ଲୁକ୍କାୟିତ ।

ଅତଏବ ବେଦାନ୍ତଦର୍ଶନ ସୁଖାଶାବାଦୀ ବା ନିରାଶାବାଦୀ ନୁହେଁ । ଏହା ଉଭୟବାଦର ପ୍ରଚାର କରୁଛି; ଘଟଣାପ୍ରବାହର ଧାରା ଯେଉଁଭଳି ଭାବରେ ପ୍ରବାହିତ, ଏହା ତାହା ହିଁ ଗ୍ରହଣ କରିନେଇଛି, ଅର୍ଥାତ୍ ଏହାର ମତରେ ଏ ସଂସାର ସୁଖ ଓ ଦୁଃଖ, ମଙ୍ଗଳ ଓ ଅମଙ୍ଗଳର ମିଶ୍ରଣ; ଗୋଟିକର ବୃଦ୍ଧି ଘଟିଲେ, ଅପରଟିର ବୃଦ୍ଧି ଅନିବାର୍ଯ୍ୟ । ସଂସାରଟା ଖାଲି ସୁଖର ବା ଖାଲି ଦୁଃଖର ହୋଇପାରେ ନାହିଁ; ଏ ପ୍ରକାର ଧାରଣା ହିଁ ସ୍ୱବିରୋଧୀ । କିନ୍ତୁ ବେଦାନ୍ତ ଏହି ପ୍ରକାର ମତ ବ୍ୟକ୍ତ କରି ବା ଏହି ପ୍ରକାର ବିଶ୍ଳେଷଣ କରିବା ଫଳରେ ଗୋଟିଏ ବିରାଟ ରହସ୍ୟର ମର୍ମ ଅବଧାରଣ କରିପାରିଛି । ତାହା ହେଉଛି—ମଙ୍ଗଳ ଓ ଅମଙ୍ଗଳ ଦୁଇଟି ସମ୍ପୂର୍ଣ୍ଣ ବିଭିନ୍ନ ସତ୍ତା ନୁହେଁ । ଏହି ସଂସାରରେ ଏପରି କୌଣସି ଗୋଟିଏ ହେଲେ ବସ୍ତୁ ନାହିଁ, ଯାହାକୁ କେବଳ ମଙ୍ଗଳମୟ ବା କେବଳ ଅମଙ୍ଗଳମୟ ବୋଲି ଅଭିହିତ କରା-ଯାଇପାରେ । ସେହି ଏକ ଘଟଣା ଯାହା ଆଜି ଶୁଭଜନକ ବୋଲି ବୋଧହୁଏ, କାଲି ତାହା ଅଶୁଭ ବୋଲି ବୋଧ ହୋଇପାରେ । ସେହି ଗୋଟିଏ ବସ୍ତୁ, ଯାହା ଜଣକୁ ଅସୁଖୀ କରାଏ ଅନ୍ୟ ଜଣକୁ ତାହା ସୁଖୀ କରାଇଥାଏ । ଯେଉଁ ଅଗ୍ନି ଗୋଟିଏ ଶିଶୁକୁ ପୋଡ଼ିଦେଇପାରେ, ସେହି ଅଗ୍ନି ପୁଣି କ୍ଷୁଧାର୍ତ୍ତ ପାଇଁ ଉତ୍ତମ ଭୋଜନ ପ୍ରସ୍ତୁତ କରାଇଥାଏ । ଯେଉଁ ସ୍ନାୟୁମଣ୍ଡଳୀଦ୍ୱାରା ହୃଦୟରେ ଦୁଃଖବୋଧ ପ୍ରବାହିତ ହୁଏ, ସୁଖବୋଧ ମଧ୍ୟ ସେହି ସ୍ନାୟୁମଣ୍ଡଳୀଦ୍ୱାରା ହୃଦୟ ମଧ୍ୟରେ ପ୍ଲାବିତ ହୁଏ । ଅମଙ୍ଗଳକୁ ଦୂର କରିବାକୁ ହେଲେ ମଙ୍ଗଳର ନିବାରଣ ହିଁ ଏକମାତ୍ର ଉପାୟ; ଏହି ବିଷୟରେ ଅନ୍ୟ ଉପାୟ ନାହିଁ, ଏହା ନିଶ୍ଚିତ । ମୃତ୍ୟୁକୁ ବନ୍ଦ କରିଦେବାକୁ ହେଲେ ଜୀବନକୁ ମଧ୍ୟ ବନ୍ଦ କରିବାକୁ ହେବ । ମୃତ୍ୟୁହୀନ ଜୀବନ ଓ ଦୁଃଖହୀନ ସୁଖ ବିରୁଦ୍ଧଭାବାପନ୍ନ; ଉଭୟ ମଧ୍ୟରେ କେଉଁଟି ହେଲେ ସତ୍ୟ ନୁହେଁ । କାରଣ ଉଭୟେ ଗୋଟିଏ ବସ୍ତୁର ବିକାଶ । ଗତ କାଲି ଯାହା ଶୁଭଦାୟକ ମନେକରୁଥିଲ, ଆଜି

ତାହା କରୁ ନାହିଁ । ଆମେ ଆମର ଅତୀତ ଜୀବନର ଯେତେବେଳେ ପର୍ଯ୍ୟାଲୋଚନା କରୁ, ବିଭିନ୍ନ ସମୟର ଆଦର୍ଶଗୁଡ଼ିକୁ ଯେତେବେଳେ ଦେଖୁ, ସେତିକିବେଳେ ଏହାର ସତ୍ୟତା ଉପଲବ୍ଧି କରୁ । ସମୟ ଥିଲା, ଯେତେବେଳେ ଖୁବ୍ ବେଗବାନ୍ ଅଶ୍ୱ ଦୁଇଟି ପରିଚାଳନା କରିବା ମୋର ଆଦର୍ଶ ଥିଲା; ବର୍ତ୍ତମାନ ଆଉ ସେ ସମସ୍ତ ନାହିଁ । ପିଲାଦିନେ ମନେକରୁଥିଲି, ଯଦି ଗୋଟିଏ ପ୍ରକାର ମିଠାଇ ମୁଁ ତିଆରି କରିପାରିବି, ତାହାହେଲେ ସମ୍ପୂର୍ଣ୍ଣ ସୁଖୀ ହେବି । ଅନେକ ସମୟରେ ମନେ-ହେଉଥିଲା, ସ୍ତ୍ରୀପୁତ୍ରପରିବୃତ ହୋଇ ଖୁବ୍ ବିଭବଶାଳୀ ହେଲେ ସମ୍ପୂର୍ଣ୍ଣ ସୁଖୀ ହୋଇ-ପାରିବି । କିନ୍ତୁ ଏ କଥା ବର୍ତ୍ତମାନ ବାଲୋଚିତ ବୁଦ୍ଧିହୀନତା ଜାଣି ହସ ଲାଗେ ।

ବେଦାନ୍ତ କହେ—ଯେଉଁ ସବୁ ଆଦର୍ଶ ଆମମାନଙ୍କର ଦୈହିକ ବ୍ୟକ୍ତିତ୍ୱ ପରିହାର କରିବାରେ ଭୟ ଦେଖାଏ, କାଳକ୍ରମେ ସେଗୁଡ଼ିକୁ ଦେଖି ଆମେ ହସୁ । ସମସ୍ତେ ନିଜ ନିଜ ଦେହ ରକ୍ଷା କରିବାରେ ବ୍ୟଗ୍ର । କେହି ଏ ଦେହ ପରିତ୍ୟାଗ କରିବାକୁ ଇଚ୍ଛା କରେ ନାହିଁ । ଆମେ ଭାବୁ ଯେ ଇଚ୍ଛାନୁଯାୟୀ ଏ ଦେହକୁ ରକ୍ଷା କରିପାରିଲେ ଆମେ ଖୁବ୍ ସୁଖୀ ହୋଇପାରିବା । କିନ୍ତୁ ସମୟ ଆସିବ, ଏ କଥା ଭାବିଲେ ହସ ଲାଗିବ । ଅତଏବ ଯଦି ଆମର ବର୍ତ୍ତମାନ ଅବସ୍ଥା ସତ୍ୟ ନୁହେଁ କି ଅସତ୍ୟ ନୁହେଁ, ସେଥିରେ ସୁଖ ନାହିଁ କି ଦୁଃଖ ନାହିଁ, କିନ୍ତୁ ଉଭୟର ସମ୍ମିଶ୍ରଣ ହୋଇ ବିଷମ ବିରୁଦ୍ଧଭାବାପନ୍ନ ହେଲା, ତାହାହେଲେ ବେଦାନ୍ତର ଆବଶ୍ୟକତା କେଉଁଠି ? ବିଶେଷତଃ, ଶୁଭକାର୍ଯ୍ୟାଦି କରିବାରେ ବା ପ୍ରୟୋଜନ କ'ଣ ? ଏହି ପ୍ରଶ୍ନ ସ୍ୱତଃ ମନରେ ଆସେ, କାରଣ ସାଧାରଣତଃ ଲୋକେ ପଚାରିବେ ଯେ ଯଦି ଶୁଭକାର୍ଯ୍ୟ ସମ୍ପାଦନ କଲେ ସେଥିରେ ଅମଙ୍ଗଳ ନିଶ୍ଚୟ ହେବ ଏବଂ ସୁଖର ସୃଷ୍ଟି ପାଇଁ ଯତ୍ନବାନ୍ ହେଲେ ସର୍ବଦା ଦୁଃଖ ଉପସ୍ଥିତ ହେବ, ତାହାହେଲେ ଏସବୁ କରିବାର ଆବଶ୍ୟକତା କେଉଁଠି ? ଏହିସବୁ ପ୍ରଶ୍ନର ଉତ୍ତରରେ ଏତିକି କୁହାଯାଇପାରିବ ଯେ ପ୍ରଥମତଃ ଦୁଃଖର ମୋଚନ ପାଇଁ ତୁମକୁ କାର୍ଯ୍ୟ କରିବାକୁ ହେବ । କାରଣ ନିଜେ ସୁଖୀ ହେବାକୁ ହେଲେ ଏହା ହିଁ ଏକମାତ୍ର ବାଟ । ଶୀଘ୍ର ହେଉ ବା ବିଳମ୍ବରେ ହେଉ, ଆମେ ପ୍ରତ୍ୟେକେ ନିଜ ନିଜ ଜୀବନରେ ଏହି କଥାର ଯଥାର୍ଥତା ଉପଲବ୍ଧି କରିଥାଉ । ତୀକ୍ଷ୍ଣ-ବୁଦ୍ଧି ଲୋକେ ଟିକିଏ ଶୀଘ୍ର ଏ କଥା ବୁଝନ୍ତି । ମୋଟାବୁଦ୍ଧିଆ ଲୋକେ ଟିକିଏ ଡେରିରେ ବୁଝନ୍ତି । ମୋଟାବୁଦ୍ଧିଆ ଲୋକେ ଅତି ଉତ୍କଟ ଯନ୍ତ୍ରଣା ଭୋଗ କଲେ ଯାଇ ଏହା ବୁଝନ୍ତି । ତୀକ୍ଷ୍ଣ-ବୁଦ୍ଧି ଲୋକେ ଅଳ୍ପ ଯନ୍ତ୍ରଣାରେ ଏହା ବୁଝିଯାଆନ୍ତି । ଦ୍ୱିତୀୟତଃ ଆମମାନଙ୍କୁ ଆମର କର୍ତ୍ତବ୍ୟ କରିଯିବାକୁ ହେବ, କାରଣ ସୁଖଦୁଃଖମୟ ବିପରୀତଭାବପୂର୍ଣ୍ଣ ଜୀବନର ବାହାରକୁ ଯିବାର ଏହା ହିଁ ଏକମାତ୍ର ପଥ । ଯେତେଦିନ ଯାଏ ଆମେ ଆମର ସ୍ୱପ୍ନରାଜ୍ୟର ବାସ୍ତବତାକୁ ଫେରି ନ ଆସିଛୁ, ଯେତେଦିନ ଯାଏ ମାଟିର ପିତୁଳା ଗଢ଼ିବା ଅଭ୍ୟାସ ଆମେ ପରିତ୍ୟାଗ ନ କରିଛୁ, ସେତେଦିନ ପର୍ଯ୍ୟନ୍ତ ସୁଖ ଓ ଦୁଃଖ ଏହି ଉଭୟ ଶକ୍ତି ଜଗତକୁ ଜୀବନ୍ତ ରଖିଥିବ ।

ତେଣୁ ଆମମାନଙ୍କୁ ଏ ଶିକ୍ଷା ଲାଭ କରିବାକୁ ହେବ । ଏହି ଶିକ୍ଷା ପାଇବାକୁ ଦୀର୍ଘକାଳ ବିତିଯାଇପାରେ ।

'ଅନନ୍ତ ହିଁ ସାନ୍ତ ହୋଇଛନ୍ତି'—ଜର୍ମାନୀ ଦେଶରେ ଏହାକୁ ଭିତ୍ତି କରି ଦର୍ଶନଶାସ୍ତ୍ର ପ୍ରଣୟନ କରିବା ପାଇଁ ଚେଷ୍ଟା ହୋଇଥିଲା । ବର୍ତ୍ତମାନ ଇଂଲଣ୍ଡରେ ମଧ୍ୟ ଏହିଭଳି ଚେଷ୍ଟା ହେଉଛି । କିନ୍ତୁ ଏହିସବୁ ଦାର୍ଶନିକମାନଙ୍କ ମତ ବିଶ୍ଳେଷଣ କଲେ ଏହା ହିଁ ଦେଖିବାକୁ ମିଳେ ଯେ ଅନନ୍ତସ୍ୱରୂପ (Hegel's Absolute Mind) ଜଗତରେ ନିଜକୁ ବ୍ୟକ୍ତ କରିବା ପାଇଁ ଚେଷ୍ଟା କରୁଛନ୍ତି । ଏହା ସତ୍ୟ ହେଲେ ଯଥାସମୟରେ ଅନନ୍ତ ନିଜକୁ ବ୍ୟକ୍ତ କରିବାକୁ ସମର୍ଥ ହେବେ । ଏହା ଶୁଣିବାକୁ ଅତି ଶ୍ରୁତିମଧୁର ଏବଂ ଆମେ ଅନନ୍ତ, ବିକାଶ, ବ୍ୟକ୍ତ ପ୍ରଭୃତି ଦାର୍ଶନିକ ଶବ୍ଦ ମଧ୍ୟ ବ୍ୟବହାର କରୁ । କିନ୍ତୁ ସାନ୍ତ କିପରି ଅନନ୍ତ ହୋଇପାରେ, ଏହି ସିଦ୍ଧାନ୍ତର ନ୍ୟାୟାନୁଗତ ମୂଳଭିତ୍ତି କ'ଣ ତାହା ଦାର୍ଶନିକ ପଣ୍ଡିତମାନେ ସ୍ୱଭାବତଃ ହିଁ ପଚାରିପାରନ୍ତି । ନିରପେକ୍ଷ ଏବଂ ଅନନ୍ତସତ୍ତା ସୋପାଧିକ ହୋଇ ଏହି ଜଗତ-ରୂପେ ପ୍ରକାଶିତ ହୋଇଛନ୍ତି । ଏପରି ସ୍ଥଳେ ସମସ୍ତେ ସୀମାବଦ୍ଧିତ ହୋଇ ରହିବେ । ଇନ୍ଦ୍ରିୟ-ମନ-ବୁଦ୍ଧି ମଧ୍ୟଦେଇ ଯାହା କିଛି ଆସିବ, ସେ ସବୁକୁ ସ୍ୱତଃ ସୀମାବଦ୍ଧ ହେବାକୁ ପଡ଼ିବ; ଅତଏବ ସସୀମର ଅସୀମତ୍ୱ-ପ୍ରାପ୍ତି ନିତାନ୍ତ ମିଥ୍ୟା । ଏହା ହୋଇପାରେ ନାହିଁ ।

ପକ୍ଷାନ୍ତରେ ବେଦାନ୍ତ କହିଛନ୍ତି, ନିରପେକ୍ଷ-ଅନନ୍ତସତ୍ତା ନିଜକୁ ସାନ୍ତରୂପେ ବ୍ୟକ୍ତ କରିବା ପାଇଁ ଚେଷ୍ଟା କରୁଛନ୍ତି—ଏହା ସତ୍ୟ; କିନ୍ତୁ ଏପରି ସମୟ ଆସିବ, ଯେତେବେଳେ ଏହି ଉଦ୍‌ଯୋଗ ଅସମ୍ଭବ ବୋଲି ବୁଝି ଏ ବାଟରୁ ପଶ୍ଚାତ୍ପଦ ହେବାକୁ ପଡ଼ିବ । ଏହି ପଶ୍ଚାତ୍ପଦ ହେବା ହିଁ ଯଥାର୍ଥ ଧର୍ମର ଆରମ୍ଭ । ବୈରାଗ୍ୟ ହେଉଛି ଧର୍ମର ସୂଚନା । ଆଧୁନିକ ଲୋକଙ୍କୁ ବୈରାଗ୍ୟ ବିଷୟରେ କିଛି କହିବା ହିଁ ବଡ଼ କଷ୍ଟ । ଆମେରିକାରେ ମତେ କହିଲେ, ମୁଁ ଯେପରି ପାଞ୍ଚ ହଜାରବର୍ଷ ପୂର୍ବରୁ ବିଲୁପ୍ତ ହୋଇଥିବା କୌଣସି ଏକ ଗ୍ରହରୁ ଆସି ବୈରାଗ୍ୟ ବିଷୟରେ ଉପଦେଶ ଦାଉଛି । ଇଂଲଣ୍ଡର ଦାର୍ଶନିକ ପଣ୍ଡିତମାନେ ମଧ୍ୟ ସେହିଭଳି କିଛି କହିବେ । କିନ୍ତୁ ବୈରାଗ୍ୟ ଓ ତ୍ୟାଗ ଏହି ଜୀବନରେ ହେଉଛି ଏକମାତ୍ର ସତ୍ୟ ବସ୍ତୁ । ପ୍ରାଣପଣେ ଚେଷ୍ଟା କରି ଦେଖ, ଯଦି ଉପାୟାନ୍ତର ପ୍ରାପ୍ତ ହୋଇପାରି । ତାହା କେବେ ହୋଇ-ପାରେ ନାହିଁ । ଏପରି ସମୟ ଆସିବ, ଯେତେବେଳେ ଅନ୍ତରାତ୍ମା ଜାଗରିତ ହେବେ—ଏହି ଦୀର୍ଘ ବିଷାଦମୟ ସ୍ୱପ୍ନଦର୍ଶନରୁ ଜାଗରିତ ହୋଇ ଉଠିବେ, ଖେଳ ଛାଡ଼ି ପିଲା ଯେପରି ନିଜ ମା ନିକଟକୁ ଫେରିଯିବାକୁ ଉଦ୍ୟତ ହୁଏ । ବୁଝାଯାଏ—

ନ ଜାତୁ କାମଃ କାମାନାଂ ଉପଭୋଗେନ ଶାମ୍ୟତି ।
ହବିଷା କୃଷ୍ଣବର୍ତ୍ମେ୍ୟବ ଭୂୟ ଏବାଭିବର୍ଦ୍ଧତେ ॥*

* ବିଷ୍ଣୁପୁରାଣ—୪।୧୦।୯

—'କାମନାର ଉପଭୋଗରେ ବାସନାର ନିବୃତ୍ତି ହୁଏ ନାହିଁ, ଘୃତାହୁତି-ପ୍ରାପ୍ତ ଅଗ୍ନି ସଦୃଶ ଏହାର ବୃଦ୍ଧିପ୍ରାପ୍ତି ହିଁ ସାର ହୁଏ ।' ଏହିଭଳି ଇନ୍ଦ୍ରିୟ-ବିଳାସ ହେଉ ବା ବୁଦ୍ଧିବୃତ୍ତିର ପରିଚାଳନାଜନିତ ଆନନ୍ଦ ହେଉ ବା ମାନବାତ୍ମା-ଉପଭୋଗ୍ୟ ସର୍ବପ୍ରକାର ସୁଖ ହେଉ, ସବୁ ମିଥ୍ୟା, ସବୁ ମାୟାଧୀନ । ସବୁ ଏହି ସଂସାର-ପାଶର ଅନ୍ତର୍ଗତ । ଆମେ ଏସବୁକୁ ଅତିକ୍ରମ କରିପାରୁ ନାହିଁ । ଏହାର ମଧ୍ୟଦେଇ ଅନନ୍ତ କାଳ ଆମେ ଧାବିତ ହୋଇପାରୁ, କିନ୍ତୁ ଏସବୁର ଶେଷ ହୁଏ ନାହିଁ । ଏହାର ଭିତରେ ଯେତେବେଳେ ଟିକିଏ ସୁଖ ପାଇବା ପାଇଁ ଚେଷ୍ଟା କରିବା, ସେତିକିବେଳେ ଦୁଃଖ-ରାଶି ଆମମାନଙ୍କ ପିଠିରେ ଚଢ଼ି ବସିବ । ଏହା କି ଭୟାନକ ଅବସ୍ଥା; ଯେତେବେଳେ ମୁଁ ଏ ବିଷୟରେ ଭାବିବାକୁ ଚେଷ୍ଟା କରେ, ମୁଁ ନିଃସନ୍ଦେହଭାବରେ ବୁଝିପାରେ ଯେ ଏହା ହିଁ ହେଉଛି ମାୟାବାଦ; ସବୁ ହିଁ ମାୟା—ଏହି ବାକ୍ୟଟି ଏହାର କେବଳ ଏକମାତ୍ର ସମୀଚୀନ ବ୍ୟାଖ୍ୟା । ଏ ସଂସାରରେ କେତେ ଯେ ଦୁଃଖ ବର୍ତ୍ତମାନ ରହିଛି ! ଯଦି ପୃଥିବୀର ବିଭିନ୍ନ ଜାତି ସମ୍ପର୍କରେ ଆପଣ ଆସନ୍ତି, ଆପଣ ବୁଝିପାରିବେ ଯେ ଗୋଟିଏ ଜାତି ନିଜ ଦୋଷର ପ୍ରତିକାର ପାଇଁ ଗୋଟିଏ ଉପାୟ ଅବଲମ୍ବନ କରୁଥିବା ବେଳେ ଆଉ ଗୋଟିଏ ଜାତି ଏକ ସ୍ୱତନ୍ତ୍ର ଉପାୟ ଅବଲମ୍ବନ କରୁଛି । ଦୋଷ ଏକ ପ୍ରକାର ହେଲେ ବି ବିଭିନ୍ନ ଜାତି ତାହାକୁ ବିଭିନ୍ନ ଉପାୟରେ ପ୍ରତିରୋଧ କରିବା ପାଇଁ ଚେଷ୍ଟା କରିଛନ୍ତି; କିନ୍ତୁ କେହି କୃତକାର୍ଯ୍ୟ ହୋଇପାରିନାହାନ୍ତି । ଯଦି ଏହାକୁ କ୍ରମେ ସ୍ୱଳ୍ପ କରି ଏକାଂଶରେ ନିବଦ୍ଧ କରାଯାଏ, ତାହା ହେଲେ ଅପରାଂଶରେ ରାଶି ରାଶି ଅଶୁଭ ସଞ୍ଚିତ ହୋଇଯିବ । ଏହାର ଏହି ପ୍ରକାର ଗତି । ଜାତୀୟ ଜୀବନରେ ସତୀତ୍ୱ-ଧର୍ମକୁ କିୟତ୍ ପରିମାଣରେ ରକ୍ଷା କରିବାକୁ ଯାଇ ବାଲ୍ୟବିବାହ ପ୍ରଚଳନ କରିବା ଫଳରେ ହିନ୍ଦୁମାନେ ସମଗ୍ର ଜାତିକୁ ଅଧୋଗାମୀ କରିପକାଇଛନ୍ତି; ମାତ୍ର ବାଲ୍ୟବିବାହ ହିନ୍ଦୁଜାତିକୁ ପବିତ୍ରତାରେ ଭୂଷିତ କରିପାରିଛି—ଏ କଥାକୁ ଆମେ ଅସ୍ୱୀକାର କରିପାରିବା ନାହିଁ । ତୁମେ ତାହାହେଲେ କ'ଣ ଇଚ୍ଛା କର ? ଯଦି ଜାତିକୁ ସତୀତ୍ୱଧର୍ମରେ ସମଧିକ ଭୂଷିତ କରିବାକୁ ଚାହିଁ, ତା'ହେଲେ ଏହି ଭୟାନକ ବାଲ୍ୟ-ବିବାହଦ୍ୱାରା ସମସ୍ତ ସ୍ତ୍ରୀ ଓ ପୁରୁଷମାନଙ୍କୁ ଶରୀର ସମ୍ବନ୍ଧରେ ଅଧୋଗାମୀ କରାଇବାକୁ ପଡ଼ିବ । ଅନ୍ୟ ଦିଗରୁ ଇଂଲଣ୍ଡରେ ତୁମେ କଅଣ ବିପଦଶୂନ୍ୟ ? କଦାପି ନୁହେଁ । କାରଣ ପବିତ୍ରତା ହେଉଛି ଜାତିର ଜୀବନୀ-ଶକ୍ତି । ଅପବିତ୍ରତା ମଧ୍ୟ ଦେଇ ଜାତିର ବିନାଶ ସମ୍ଭବ—ଏହା କଅଣ ଇତିହାସରେ ତୁମେ ଦେଖି ନାହିଁ ? ଯେତେବେଳେ ଜାତୀୟ ଜୀବନରେ ଏହା ପ୍ରବେଶ କରେ, ଜାତିର ସମ୍ମୁଖରେ ଅଧଃପତନ ଦେଖା-ଦିଏ । ଏସବୁ ଦୁଃଖର ମୀମାଂସା କେଉଁଠି ? ଯଦି ପିତା ଓ ମାତା ନିଜ ନିଜ ସନ୍ତାନମାନଙ୍କ ପାଇଁ ପାତ୍ର ବା ପାତ୍ରୀ ନିର୍ବାଚନ କରନ୍ତି, ତାହାହେଲେ ଏହି ଦୋଷ ନିବାରିତ ହେବ । ଭାରତର କନ୍ୟାମାନେ ଭାବୁକ ନ ହୋଇ ଅଧିକ କାର୍ଯ୍ୟକୁଶଳା । ସେମାନଙ୍କ ଜୀବନରେ କଳ୍ପନାପ୍ରିୟତା ଅଧିକ ସ୍ଥାନ ପାଏ ନାହିଁ । ଏସବୁ ସତ୍ତ୍ୱେ ବ

ଲୋକେ ନିଜ ନିଜର ସ୍ୱାମୀ ବା ସ୍ତ୍ରୀ ନିଜେ ନିଜେ ନିର୍ବାଚନ କରନ୍ତି, ତଦ୍ୱାରା କଦାପି ଅଧିକ ସୁଖ ମିଳେ ନାହିଁ । ଭାରତର ନାରୀମାନେ ବେଶ୍ ସୁଖୀ । ସ୍ତ୍ରୀ ଓ ସ୍ୱାମୀ— ପରସ୍ପର ଭିତରେ ପ୍ରାୟ କଳହ କରନ୍ତି ନାହିଁ । ପକ୍ଷାନ୍ତରେ ଯୁକ୍ତରାଜ୍ୟରେ ଯେଉଁଠାରେ ସ୍ୱାଧୀନତାର ପ୍ରାଚୁର୍ଯ୍ୟ ବିଦ୍ୟମାନ, ସେଠାରେ ସୁଖୀ ପରିବାର ପ୍ରାୟ ନାହିଁ ବୋଲି କହିଲେ ଚଳେ । ସୁଖୀ ପରିବାର ଅତି ସାମାନ୍ୟ ପରିମାଣରେ ଥିଲେ ସୁଦ୍ଧା ଅସୁଖୀ ପରିବାର ଓ ଅସୁଖିକର ବିବାହର ସଂଖ୍ୟା ଏତେ ଅଧିକ ଯେ ତାହା ବର୍ଣ୍ଣନାତୀତ । ମୁଁ ଯେଉଁ ସଭାକୁ ଯାଇଛି, ସେଠାରେ ଉପସ୍ଥିତ ଥିବା ଏକତୃତୀୟାଂଶ ସ୍ତ୍ରୀଲୋକ ନିଜ ନିଜ ସ୍ୱାମୀ ଓ ପିଲାମାନଙ୍କୁ ପରିତ୍ୟାଗ କରିଥିବାର ଦେଖିଛି । ଏହିପରି ସର୍ବତ୍ର । ଏହାଦ୍ୱାରା କ'ଣ ପ୍ରକାଶ ପାଉଛି ? ଏତିକି ପ୍ରକାଶ ପାଉଛି ଯେ ଏସବୁ ଆଦର୍ଶଦ୍ୱାରା ଅଧିକ ସୁଖ ମିଳେ ନାହିଁ । ସୁଖ ପାଇଁ ଆମେ ସମସ୍ତେ ଆପ୍ରାଣ ଚେଷ୍ଟା କରୁଛୁ; କିନ୍ତୁ ଗୋଟିଏ ପାଖରେ କିଛି ସୁଖ ନ ମିଳୁଣୁ ଅପର ପାଖରେ ଦୁଃଖ ଆସି ପହଞ୍ଚିଯାଉଛି ।

ତାହାହେଲେ କ'ଣ ଆମେ ଶୁଭଦ କାର୍ଯ୍ୟ କରିବା ନାହିଁ ? ହଁ, ପୂର୍ବାପେକ୍ଷା ଅଧିକ ଉତ୍ସାହିତ ହୋଇ ଆମମାନଙ୍କୁ କାର୍ଯ୍ୟ କରିବାକୁ ପଡ଼ିବ । ଏହି ଶିକ୍ଷା ଆମମାନଙ୍କର ଉତ୍କଟ କଳହପ୍ରିୟତା ଓ ଏକବାଗିଆ (fanaticism) ମନୋ-ବୃତ୍ତିକୁ ଦୂର କରିବ । ଇଂରେଜମାନେ ଉତ୍ତେଜିତ ହୋଇ ହିନ୍ଦୁମାନଙ୍କୁ—'ହେ ପୈଶାଚିକ ହିନ୍ଦୁ ! ନାରୀମାନଙ୍କ ପ୍ରତି କି ଅସତ୍ ବ୍ୟବହାର କରୁଛ !' ବୋଲି ଆଉ ଅଭିଶାପ ଦେବେ ନାହିଁ । ସେମାନେ ବିଭିନ୍ନ ଜାତିର ପ୍ରଥାଗୁଡ଼ିକୁ ସମ୍ମାନ ଦେଖାଇବା ପାଇଁ ଶିକ୍ଷା କରିବେ । ଏକଦେଶଦର୍ଶିତା ଅଳ୍ପ ହେବ । ଅଧିକ କାର୍ଯ୍ୟ ହେବ । ଏକଦେଶଦର୍ଶୀ ଲୋକ ବେଶୀ କାର୍ଯ୍ୟ କରିପାରେ ନାହିଁ । ସେମାନଙ୍କର ତିନି-ଚତୁର୍ଥାଂଶ ଶକ୍ତିର ବୃଥା ଅପଚୟ ଘଟେ । ଧୀର, ପ୍ରଶାନ୍ତଚିତ୍ତ, ବାସ୍ତବଜ୍ଞାନ-ସମ୍ପନ୍ନ ବ୍ୟକ୍ତିମାନେ ହିଁ କାର୍ଯ୍ୟ କରନ୍ତି । ଅତଏବ ଏହି ଜ୍ଞାନ ଯୋଗୁଁ କାର୍ଯ୍ୟକାରିଣୀ ଶକ୍ତି ବୃଦ୍ଧିପ୍ରାପ୍ତ ହେବ । ଘଟଣାଚକ୍ରକୁ ଏହିଭଳି ଜାଣିଲେ ତିତିକ୍ଷା ଅଧିକ ହେବ । ଦୁଃଖ ଓ ଅମଙ୍ଗଳର ଦୃଶ୍ୟ ଆମମାନଙ୍କୁ ସମତା-ପଥରୁ ବିଚ୍ୟୁତ କରିପାରିବ ନାହିଁ କି ଛାୟାପଛରେ ଅନୁସରଣ କରିବାକୁ ଛାଡ଼ିଦେବ ନାହିଁ । ସୁତରାଂ ସଂସାରର ଗତି ଏହିଭଳି ଜାଣି ଆମେମାନେ ସହିଷ୍ଣୁ ହେବା । ଉଦାହରଣସ୍ୱରୂପ କୁହାଯାଇପାରେ ଯେ ସମସ୍ତ ମାନବଜାତି ଦୋଷଶୂନ୍ୟ ହେବ, ତା'ପରେ ପଶୁକୁଳ କ୍ରମେ ମାନବତ୍ୱ ପ୍ରାପ୍ତ ହେବେ ଏବଂ ସେହି ସମସ୍ତ ଅବସ୍ଥା ଭିତର ଦେଇ ତାକୁ ଅଗ୍ରସର ହେବାକୁ ପଡ଼ିବ । ଉଦ୍ଭିଦମାନଙ୍କ ଗତି ମଧ୍ୟ ଠିକ୍ ଏହିପରି ହେବ । ଏହା ହିଁ ସୁନିଶ୍ଚିତ ଯେ ଏହି ମହତୀ ନଦୀ ସମୁଦ୍ରାଭିମୁଖେ ପ୍ରବଳ ବେଗରେ ପ୍ରବାହିତ ହେଉଛି, ଏହାର ପ୍ରତ୍ୟେକ ଜଳବିନ୍ଦୁ ଅନନ୍ତ ସାଗରବକ୍ଷରେ ମିଳିତ ହେବ । ଅତଏବ ଯେ କେହି ହେଉନା କାହିଁକି ସେ ତା'ର ଜୀବନ ସହିତ ସମସ୍ତ ଦୁଃଖ କ୍ଳେଶ ଆନନ୍ଦ ନିରାନନ୍ଦ, ହସ ଓ କାନ୍ଦକୁ ନେଇ ସେହି ଅନନ୍ତ ସମୁଦ୍ରାଭିମୁଖେ ପ୍ରବଳ ବେଗରେ ଧାବିତ ହେଉଛି । ତୁମେ, ମୁଁ, ଏ

ଜୀବଜଗତ୍, ଉଦ୍ଭିଦଜଗତ୍ ଓ ସାମାନ୍ୟ ଜୀବାଣୁକଣା ପର୍ଯ୍ୟନ୍ତ ଯେ ଯେଉଁଠି ବିଦ୍ୟମାନ ରହିଛି ସମସ୍ତେ ସେହି ଅନନ୍ତ ଜୀବନ-ସମୁଦ୍ରରେ ମୁକ୍ତ ଓ ଈଶ୍ୱରଙ୍କ ମଧ୍ୟରେ ଆସି ପହଞ୍ଚିବେ, ଏହା ନିଶ୍ଚିତ ଓ କେବଳ ସମୟସାପେକ୍ଷ ।

ମୁଁ ପୁନରାୟ କହୁଛି ଯେ ବେଦାନ୍ତ ସୁଖାଶାବାଦୀ ବା ନିରାଶାବାଦୀ ନୁହେଁ । ଏହି ସଂସାର କେବଳ ମଙ୍ଗଳମୟ ବା କେବଳ ଅମଙ୍ଗଳମୟ—ଏହା ଏଭଳି ମତ ବ୍ୟକ୍ତ କରେ ନାହିଁ । ଏହା କହେ—ମଙ୍ଗଳ ଓ ଅମଙ୍ଗଳର ମୂଲ୍ୟ ଆମ ନିକଟରେ ସମାନ । ଏ ଦୁହେଁ ଏହି ଭାବରେ ପରସ୍ପର ସଂଲଗ୍ନ ହୋଇ ରହିଛନ୍ତି । ସଂସାରକୁ ଏହିଭଳି ଜାଣି ତୁମେ ସହିଷ୍ଣୁତାର ସହିତ କାର୍ଯ୍ୟ କର । କାହିଁକି କାର୍ଯ୍ୟ କରିବ ? ଯଦି ଘଟଣାଚକ୍ର ଏହିଭଳି, ଆମେ ତାହାହେଲେ କଅଣ କରିବା ? ଅଜ୍ଞେୟବାଦୀ ହେଉ ନାହିଁ କାହିଁକି ? ବର୍ତ୍ତମାନ ଅଜ୍ଞେୟବାଦୀମାନେ ମଧ୍ୟ ଜାଣନ୍ତି ଯେ ଏରହସ୍ୟର ମୀମାଂସା ନାହିଁ; ବେଦାନ୍ତ ଭାଷାରେ କହିବାକୁ ଗଲେ ଏହି ମାୟାପାଶରୁ ଅବ୍ୟାହତି ନାହିଁ । ଅତଏବ ସର୍ବଦା ସନ୍ତୁଷ୍ଟ ରହି ସବୁକଥା ଉପଭୋଗ କର । ଏ ସ୍ଥଳରେ ମଧ୍ୟ ଅତି ଅସଙ୍ଗତ ମହାଭ୍ରମ ରହିଛି । ତୁମେ ଯେଉଁ ଜୀବନଦ୍ୱାରା ପରିବୃତ ହୋଇ ରହିଛ, ତୁମର ସେହି ଜୀବନବିଷୟକ ଜ୍ଞାନର ସ୍ୱରୂପ କଅଣ ? ତୁମେ କଅଣ ଜୀବନକୁ ପଞ୍ଚେନ୍ଦ୍ରିୟବଦ୍ଧ ଜୀବନ ବୋଲି ବୁଝ ? ଇନ୍ଦ୍ରିୟାତ୍ମକ ଜ୍ଞାନ ଦୃଷ୍ଟିରୁ ଆମେ ପଶୁଠାରୁ ସାମାନ୍ୟ ଭିନ୍ନ । ମୋର ବିଶ୍ୱାସ ଯେ ଏଠାରେ ଯେତେ ଲୋକ ଉପସ୍ଥିତ ଅଛନ୍ତି, ସେମାନଙ୍କ ମଧ୍ୟରୁ କାହାର ଜୀବନ ଇନ୍ଦ୍ରିୟମାନଙ୍କଦ୍ୱାରା ଆବଦ୍ଧ ନୁହେଁ । ଅତଏବ ଆମମାନଙ୍କର ବର୍ତ୍ତମାନ ଜୀବନ ଇନ୍ଦ୍ରିୟ ଅପେକ୍ଷା ଆଉକିଛି ଅଧିକ ବୋଲି ବୁଝିବାକୁ ହେବ । ଆମମାନଙ୍କର ସୁଖଦୁଃଖର ଅନୁଭବ ଉଚ୍ଚାକାଙ୍କ୍ଷା ଓ ଚିନ୍ତାଶକ୍ତି ଆମମାନଙ୍କ ଜୀବନର ପ୍ରଧାନ ଅଙ୍ଗସ୍ୱରୂପ; ତାହାହେଲେ ସେହି ମହା-ଆଦର୍ଶ ଓ ପୂର୍ଣ୍ଣତାର ଅଭିମୁଖୀ କଠୋର ଚେଷ୍ଟା କଅଣ ଆମମାନଙ୍କ ଜୀବନର ଉପାଦାନ ନୁହେଁ ? ଅଜ୍ଞେୟବାଦୀମାନଙ୍କ (Spencer's Agnosticism) ମତାନୁଯାୟୀ ଜୀବନ ଯେପରି ଅଛି ତାହାକୁ ସେହିପରି ଉପଭୋଗ କରିବା ଆମମାନଙ୍କର କର୍ତ୍ତବ୍ୟ । ଆଦର୍ଶ ଅନ୍ୱେଷଣ ଓ ପୂର୍ଣ୍ଣତାଭିମୁଖୀ ପ୍ରବଳ ଚେଷ୍ଟାକୁ ହିଁ ଜୀବନ ବୋଲି ବୁଝାଯାଏ । ଏହି ଆଦର୍ଶକୁ ଆମମାନଙ୍କୁ ପାଇବାକୁ ହେବ । ଅତଏବ ଆମେମାନେ ଅଜ୍ଞେୟବାଦୀ ହୋଇପାରିବା ନାହିଁ କି ଅଜ୍ଞେୟବାଦୀର ପ୍ରତ୍ୟକ୍ଷ ସଂସାରକୁ ଗ୍ରହଣ କରିପାରିବା ନାହିଁ । ଅଜ୍ଞେୟବାଦୀ ଜୀବନର ଆଦର୍ଶଭାଗ ପରିତ୍ୟାଗ କରି ଅବଶିଷ୍ଟ ଅଂଶକୁ ଜୀବନର ସର୍ବସ୍ୱ ବୋଲି ଗ୍ରହଣ କରେ । ଏହି ଆଦର୍ଶକୁ ଅସମ୍ଭବ ବୋଲି ଜାଣି ଅଜ୍ଞେୟବାଦୀ ଏହାର ଅନ୍ୱେଷଣକୁ ପରିତ୍ୟାଗ କରିଥାଆନ୍ତି । ଏହା ସ୍ୱଭାବ, ଏହା ଜଗତ୍—ଏହାକୁ ହିଁ ମାୟା କୁହାଯାଏ ।

ବେଦାନ୍ତ ମତାନୁଯାୟୀ ଏହା ହିଁ ପ୍ରକୃତ । ଯେକୌଣସି ଧର୍ମ ଯେକୌଣସି ଆଦର୍ଶରେ ଅନୁପ୍ରାଣିତ ହେଉ ନା କାହିଁକି, ତାହା ଦେବୋପାସନା ହେଉ,

ପ୍ରତୀକୋପାସନା ହେଉ, ବା ଦାର୍ଶନିକ ଚିନ୍ତାପ୍ରସୂତ ବା ଦେବଚରିତ, ପିଶାଚଚରିତ, ପ୍ରେତଚରିତ, ସାଧୁଚରିତ, ଋଷିଚରିତ,ମହାତ୍ମାଚରିତ ବା ଅବତାରଚରିତ ସାହାଯ୍ୟରେ ଅନୁଷ୍ଠିତ, ଅପରିଣତ ବା ଉନ୍ନତ ଯାହା ହେଉନା କାହିଁକି ସବୁ ଧର୍ମମତର ଉଦ୍ଦେଶ୍ୟ ଏକ । ସବୁ ଧର୍ମ ଏହି ମାୟାକୁ, ଏହି ବନ୍ଧନକୁ ଅତିକ୍ରମ କରିବା ପାଇଁ ଅଳ୍ପ ବହୁତ ଚେଷ୍ଟା କରିଆସିଛି । ଗୋଟିଏ କଥାରେ କହିବାକୁ ଗଲେ ସ୍ୱାଧୀନତା ବାଟରେ ଅଗ୍ରସର ହେବା ପାଇଁ ସମସ୍ତେ କଠୋର ଚେଷ୍ଟା କରିଛନ୍ତି । ଜ୍ଞାନପୂର୍ବକ ହେଉ ବା ଅଜ୍ଞାନପୂର୍ବକ ହେଉ, ମନୁଷ୍ୟ ଜାଣିଛି ଯେ ସେ ବନ୍ଦୀ । ସେ ଯାହା ହେବାକୁ ଇଚ୍ଛା କରେ, ସେ ତାହା ନୁହେଁ । ଯେଉଁ ସମୟରେ, ଯେଉଁ ମୂହୂର୍ତ୍ତରେ ସେ ଚାରିଆଡ଼କୁ ଦୃଷ୍ଟି ପକାଇଛନ୍ତି, ସେତିକିବେଳେ ସେ ଏହା ଶିକ୍ଷା କରିଛନ୍ତି । ସେତିକିବେଳେ ହିଁ ସେ ଅନୁଭବ କରିଛନ୍ତି ଯେ ସେ ବନ୍ଦୀ । ସେ ଆହୁରି ବୁଝିପାରିଛନ୍ତି ଯେ ଏହିଭଳି ସୀମା-ଶୃଙ୍ଖଳିତ ହୋଇ ସୁଦ୍ଧା ତାଙ୍କର ଅନ୍ତର ଭିତରେ ଏପରି କିଏ ଜଣେ ରହି-ଛନ୍ତି, ଯେ କି ଦେହର ଅଗମ୍ୟ ସ୍ଥାନକୁ ଉଡ଼ିଯିବାକୁ ଚାହୁଁଛନ୍ତି । ଦୁର୍ଦ୍ଧାନ୍ତ, ନୃଶଂସ, ଆତ୍ମୀୟ ଗୃହ ନିକଟରେ ଗୁପ୍ତଭାବରେ ଅବସ୍ଥିତ, ହତ୍ୟାପ୍ରିୟ,ଅତିମାତ୍ରାରେ ମଦ୍ୟପ୍ରିୟ, ମୃତ ପିତୃ ବା ଅନ୍ୟ ଭୂତଯୋନିରେ ଶ୍ରଦ୍ଧାବାନ୍, ଅତି ନିମ୍ନତମ ଧର୍ମମତ ମଧ୍ୟରେ ଆମେମାନେ ସେହି ଗୋଟିଏ ପ୍ରକାର ମୁକ୍ତିର ଭାବ ଦେଖିବାକୁ ପାଉ । ଯେଉଁମାନେ ଦେବତାମାନଙ୍କ ଉପାସନାପ୍ରିୟ, ସେମାନେ ସେହିସବୁ ଦେବତାମାନଙ୍କ ଭିତରେ ନିଜଠାରୁ ଅଧିକ ସ୍ୱାଧୀନତା ଦେଖିପାରନ୍ତି । ଦ୍ୱାର ରୁଦ୍ଧ ଥିଲେ ମଧ୍ୟ ଦେବତାମାନେ ଘରର ପ୍ରାଚୀର ମଧ୍ୟଦେଇ ଆସିପାରନ୍ତି; ପ୍ରାଚୀର ସେମାନଙ୍କୁ ବାଧା ଦେଇପାରେ ନାହିଁ । ଏହି ସ୍ୱାଧୀନତାଭାବ କ୍ରମେ ବର୍ଦ୍ଧିତ ହୋଇ ଅବଶେଷରେ ସଗୁଣ ଈଶ୍ୱର-ଆଦର୍ଶରେ ଉପନୀତ ହୁଏ । ଈଶ୍ୱର ମାୟାତୀତ—ଏହା ହିଁ ଆଦର୍ଶର କେନ୍ଦ୍ରସ୍ୱରୂପ ।

ଆମେ ଯେପରି ସମ୍ମୁଖରେ କୌଣସି ଏକ ସ୍ୱର ଉତ୍ଥିତ ହେବାର ଶୁଣି-ପାରୁଛୁ, ଆମେମାନେ ଅନୁଭବ କରୁଛୁ ଯେପରି ଭାରତର ପ୍ରାଚୀନ ଆର୍ଯ୍ୟଗଣ ଅରଣ୍ୟମଧ୍ୟସ୍ଥ ଆଶ୍ରମରେ ରହି ଏହିସବୁ ପ୍ରଶ୍ନର ବିଚାର କରୁଛନ୍ତି । ବୃଦ୍ଧ ଓ ପବିତ୍ରତମ ଶ୍ରେଷ୍ଠ ଋଷିବୃନ୍ଦ ଏହାର ମୀମାଂସା କରିବାକୁ ଅକ୍ଷମ ହୋଇଛନ୍ତି—କିନ୍ତୁ ଜଣେ ବାଳକ ସେହି ସଭାମଧ୍ୟରେ ଦଣ୍ଡାୟମାନ ହୋଇ କହୁଛନ୍ତି—'ହେ ଦିବ୍ୟଧାମବାସୀ ଅମୃତର ପୁତ୍ରଗଣ ! ଶ୍ରବଣ କର ! ମୁଁ ପଥ ପାଇଛି, ଯେ ଅନ୍ଧକାରର ଅତୀତ, ତାହାଙ୍କୁ ଜାଣିଲେ ଅନ୍ଧକାର ବାହାରକୁ ଯିବାର ପଥ ମିଳିଯିବ ।'—

ଶୃଣ୍ୱନ୍ତୁ ବିଶ୍ୱେ ଅମୃତସ୍ୟ ପୁତ୍ରାଃ ।
ଆ ଯେ ଧାମାନି ଦିବ୍ୟାନି ତସ୍ଥୁଃ ॥
ବେଦାହମେତଂ ପୁରୁଷଂ ମହାନ୍ତମ୍
ଆଦିତ୍ୟବର୍ଣ୍ଣଂ ତମସଃ ପରସ୍ତାତ୍ ।

ତମେବ ବିଦିତ୍ୱାଽତିମୃତ୍ୟୁମେତି
ନାନ୍ୟଃ ପନ୍ଥା ବିଦ୍ୟତେଽୟନାୟ ॥ —ଶ୍ୱେ. ଉ., ୨।୫,୩।୮

ସେହି ଉପନିଷଦ୍‌ରୁ ଆମ୍ଭେମାନେ ଏହି ଶିକ୍ଷା ପାଉଛୁ ଯେ ଆମମାନଙ୍କ ଚତୁର୍ଦ୍ଦିଗରେ ମାୟା ରହିଛି ଏବଂ ତାହା ଅତି ଭୟଙ୍କର । ତଥାପି ମାୟା ଭିତରେ ରହି କାର୍ଯ୍ୟ କରିବାକୁ ହେବ । ଯେ କହେ, 'ମୁଁ ଏହି ନଦୀତଟରେ ବସି ରହିଛି, ଯେତେବେଳେ ସମସ୍ତ ଜଳ ପ୍ରବାହିତ ହୋଇ ସମୁଦ୍ରରେ ଯାଇ ମିଶିଯିବ, ସେତେବେଳେ ମୁଁ ନଦୀ ପାର ହେବି'—ତାହାର ଏହି ବାକ୍ୟ ଯେପରି ଅସମ୍ଭବ, ଯେ କହେ 'ପୃଥିବୀ ପୂର୍ଣ୍ଣ ମଙ୍ଗଳମୟ ହେଲେ କାର୍ଯ୍ୟ କରିବି ଓ ଜୀବନ ଉପଭୋଗ କରିବି,' ତାହାର କଥା ମଧ୍ୟ ଅନୁରୂପ ମିଥ୍ୟା । ମାୟାର ଅନୁକୂଳରେ କୌଣସି ପଥ ନାହିଁ । ମାୟାର ବିପକ୍ଷିତ ଗତି ହେଉଛି ପଥ—ଏ କଥାକୁ ମଧ୍ୟ ଶିକ୍ଷା କରିବାକୁ ହେବ । ପ୍ରକୃତିର ସାହାଯ୍ୟକାରୀ ହୋଇ ଆମ୍ଭେମାନେ ଜନ୍ମଗ୍ରହଣ କରିନାହୁଁ, ତାହାର ପ୍ରତିବାଦୀ ହୋଇ ଆମ୍ଭେମାନେ ଜନ୍ମଗ୍ରହଣ କରିଛୁଁ । ଆମ୍ଭେ ନିଜେ ନିଜେ ବନ୍ଧନର କର୍ତ୍ତା ହୋଇ ନିଜକୁ ବନ୍ଦୀ କରିଛୁଁ । ଏହି ଗୃହ କେଉଁଠାରୁ ଆସିଲା ? ଏହା ପ୍ରକୃତି-ପ୍ରଦତ୍ତ ନୁହେଁ । ପ୍ରକୃତି କହୁଅଛି—'ଯାଅ, ଅରଣ୍ୟରେ ଯାଇ ବାସ କର ।' ମନୁଷ୍ୟ କହୁଛି—'ମୁଁ ଗୃହ ନିର୍ମାଣ କରି ରହିବି ଓ ପ୍ରକୃତି ସହିତ ଯୁଦ୍ଧ କରିବି ।' ସେ ତାହା ହିଁ କରୁଛି । ପ୍ରକୃତିର ନିୟମ ସହିତ ଯୁଦ୍ଧ ପ୍ରଦର୍ଶନ କରିବା ହେଉଛି ମନୁଷ୍ୟଜାତିର ଇତିହାସ । ଆଉ ଏହି ଯୁଦ୍ଧରେ ମନୁଷ୍ୟ ହିଁ ଅବଶେଷରେ ବିଜୟୀ ହୁଏ । ଅନ୍ତର୍ଜଗତ ଭିତରକୁ ଆସି ଦେଖ, ସେଠାରେ ମଧ୍ୟ ସେହିଭଳି ଯୁଦ୍ଧ ଚାଲିଛି । ଏହି ଯୁଦ୍ଧ ପାଶବିକ ମନୁଷ୍ୟ ଓ ଆଧ୍ୟାତ୍ମିକ ମନୁଷ୍ୟ ମଧ୍ୟରେ ଯୁଦ୍ଧ, ଆଲୋକ ଏବଂ ଅନ୍ଧକାର ମଧ୍ୟରେ ଯୁଦ୍ଧ, ଏଠାରେ ମଧ୍ୟ ମନୁଷ୍ୟ ବିଜୟୀ ହୁଏ । ପ୍ରକୃତି ମଧ୍ୟଦେଇ ମନୁଷ୍ୟ ନିଜର ମୁକ୍ତିର ପଥ ପରିଷ୍କାର କରିନିଏ ।

ବେଦାନ୍ତବିଦ୍ ପଣ୍ଡିତମାନେ ଏହି ମାୟାକୁ ଅତିକ୍ରମ କରି ଏପରି କିଛି ଜାଣି ପାରିଛନ୍ତି, ଯାହା ମାୟାଧୀନ ନୁହେଁ । ଯଦି ଆମ୍ଭେମାନେ ସେହି ଅବସ୍ଥାରେ ଉପସ୍ଥିତ ହୋଇପାରୁ, ତାହାହେଲେ ଆମ୍ଭେମାନେ ମଧ୍ୟ ମାୟାର ଚତୁଃସୀମାର ବହିର୍ଦ୍ଦେଶକୁ ଯାଇପାରିବୁ । ଈଶ୍ୱରବାଦୀ ସମସ୍ତ ଧର୍ମର ଏହା ସାଧାରଣ ସମ୍ପତ୍ତି; କିନ୍ତୁ ବେଦାନ୍ତ-ମତାନୁସାରୀ ଏହା ଧର୍ମର ଆରମ୍ଭ ମାତ୍ର, ପର୍ଯ୍ୟବସାନ ନୁହେଁ । ଯେ ବିଶ୍ୱର ସୃଷ୍ଟି ଓ ପାଳନକର୍ତ୍ତା, ଯେ ମାୟାଧୀଶ, ଯାହାଙ୍କୁ ମାୟା ବା ପ୍ରକୃତିର କର୍ତ୍ତା ବୋଲି ଅଭିହିତ କରାହୋଇଛି, ସେହି ସଗୁଣ-ଈଶ୍ୱର-ବିଜ୍ଞାନ ଏହି ବେଦାନ୍ତମତର ଶେଷ ନୁହେଁ । ଏହି ଜ୍ଞାନ କ୍ରମଶଃ ବର୍ଦ୍ଧିତ ହୋଇଛି; ଅବଶେଷରେ ବୈଦାନ୍ତିକ ଦେଖି-ପାରିଛି ଯେ, ଯାହାଙ୍କୁ ବହିଃସ୍ଥିତ ବୋଲି ବୋଧକରାଯାଉଥିଲା ସେ ନିଜେ ହେଉଛନ୍ତି ସେହି, ସେ ପ୍ରକୃତପକ୍ଷେ ଅନ୍ତର ମଧ୍ୟରେ ଥିଲେ । ଯେ ନିଜକୁ ବଦ୍ଧଭାବାପନ୍ନ ବୋଲି ମନେ କରୁଥିଲେ ସେ ନିଜେ ହିଁ ସେହି ମୁକ୍ତସ୍ୱରୂପ ।

# ମନୁଷ୍ୟର ଯଥାର୍ଥ ସ୍ୱରୂପ (୧)

[ ଲଣ୍ଡନରେ ପ୍ରଦତ୍ତ ବକ୍ତୃତା ]

ଏହି ପଞ୍ଚେନ୍ଦ୍ରିୟଗ୍ରାହ୍ୟ ଜଗତ୍ ପ୍ରତି ମନୁଷ୍ୟ ଏତେଦୂର ଆସକ୍ତ ଯେ ସହଜରେ ଏହାକୁ ଛାଡ଼ିବାକୁ ସେ ଚାହେଁ ନାହିଁ; କିନ୍ତୁ ସେ ଏହି ବାହ୍ୟ ଜଗତକୁ ଯେତେଦୂର ସତ୍ୟ ଓ ସାର ବୋଲି ମନେ କରୁନା କାହିଁକି, ପ୍ରତ୍ୟେକ ବ୍ୟକ୍ତି ଓ ପ୍ରତ୍ୟେକ ଜାତିର ଜୀବନରେ ଏପରି ଏକ ସମୟ ଆସେ, ଯେତେବେଳେ ସେମାନଙ୍କୁ ଅନିଚ୍ଛାସତ୍ତ୍ୱେ ପ୍ରଶ୍ନ କରିବାକୁ ହୁଏ—'ଜଗତଟା କ'ଣ ସତ୍ୟ ?' ଯେଉଁ ବ୍ୟକ୍ତି ତାହାର ପଞ୍ଚେନ୍ଦ୍ରିୟମାନଙ୍କ ସାକ୍ଷ୍ୟକୁ ଅବିଶ୍ୱାସ କରିବା ଲାଗି ମୁହୂର୍ତ୍ତେ ମାତ୍ର ସମୟ ପାଏ ନାହିଁ, ଯାହାର ଜୀବନର ପ୍ରତ୍ୟେକ ମୁହୂର୍ତ୍ତ କୌଣସି ନା କୌଣସି ବିଷୟବାସନା-ଭୋଗରେ ନିଯୁକ୍ତ ଥାଏ, ତାହା ନିକଟରେ ମଧ୍ୟ ମୃତ୍ୟୁ ଦିନେ ନା ଦିନେ ଆସି ଉପସ୍ଥିତ ହୁଏ ଏବଂ ସେହି ସମୟରେ ସେ ବାଧ୍ୟ ହୋଇ ପ୍ରଶ୍ନ କରେ—'ଜଗତଟା କ'ଣ ସତ୍ୟ ?' ଏହି ପ୍ରଶ୍ନରେ ହିଁ ହେଉଛି ଧର୍ମର ଆରମ୍ଭ ଏବଂ ଏହାର ଉତ୍ତରରେ ହିଁ ହୁଏ ସମାପ୍ତି । ଏପରିକି ସୁଦୂର ଅତୀତରେ ଯେଉଁଠି ଧାରାବାହିକ ଇତିହାସର ଅନଧିକାର, ସେହି ରହସ୍ୟମୟ ପୌରାଣିକ ଯୁଗରେ ବି ସେହି ସଭ୍ୟତାର ଅସ୍ପଷ୍ଟ ଉଷାକାଳରେ ମଧ୍ୟ ଆମେମାନେ ଦେଖିବାକୁ ପାଉଁ; ଏହି ପ୍ରଶ୍ନଟି ସେତେବେଳେ ମଧ୍ୟ ଜିଜ୍ଞାସିତ ହୋଇଛି—'ଜଗତ୍ କ'ଣ ସତ୍ୟ ?'

କବିତ୍ୱମୟ କଠୋପନିଷଦ୍‌ର ପ୍ରାରମ୍ଭରେ ଆମେମାନେ ଏହି ପ୍ରଶ୍ନ ଦେଖିବାକୁ ପାଉଁ, 'ମନୁଷ୍ୟ ମରିଗଲେ କେହି କେହି କହନ୍ତି ତା'ର ଆଉ ଅସ୍ତିତ୍ୱ ରହେ ନାହିଁ, ପୁଣି କେହି କେହି କହନ୍ତି—ନା, ସେତେବେଳେ ମଧ୍ୟ ତାହାର ଅସ୍ତିତ୍ୱ ରହିଥାଏ । ଏହି ଦୁଇଟି ମଧ୍ୟରୁ କେଉଁଟି ସତ୍ୟ ?'

—ଯେୟମ୍ ପ୍ରେତେ ବିଚିକିତ୍ସା ମନୁଷ୍ୟେ,
ଅସ୍ତୀତ୍ୟେକେ ନାୟମସ୍ତୀତି ଚୈକେ । —କଠ ଉ., ୧।୧।୨୦

ଜଗତରେ ଏ ସମ୍ବନ୍ଧରେ ବହୁ ପ୍ରକାର ଉତ୍ତର ବିଦ୍ୟମାନ । ଜଗତରେ ଯେତେ ପ୍ରକାର ଦର୍ଶନ ବା ଧର୍ମ ରହିଅଛି, ବାସ୍ତବିକ ସେସମସ୍ତ ଏହି ପ୍ରଶ୍ନର ବିଭିନ୍ନରୂପ ଉତ୍ତରରେ ପରିପୂର୍ଣ୍ଣ । ଅନେକେ ପୁଣି ଏହି ପ୍ରଶ୍ନକୁ—ପ୍ରାଣର ଏହି ଗଭୀର ଆକାଙ୍କ୍ଷାକୁ, ଏହି ଜଗଦାତୀତ ପରମାର୍ଥ ସତ୍ତାର ଅନ୍ୱେଷଣକୁ ବୃଥା ବୋଲି କହି ଉଡ଼ାଇ ଦେବାକୁ ଚେଷ୍ଟା କରିଅଛନ୍ତି; କିନ୍ତୁ ଯେତେଦିନ ପର୍ଯ୍ୟନ୍ତ ମୃତ୍ୟୁ ବୋଲି ଜଗତରେ କିଛି ରହିଥିବ, ସେତେଦିନ ପର୍ଯ୍ୟନ୍ତ ଏହି ସକଳ ପ୍ରଶ୍ନକୁ ଉଡ଼ାଇଦେବାର ଚେଷ୍ଟା ବିଫଳ ହେବ । ଆମେମାନେ ମୁହଁରେ ଖୁବ୍ ସହଜରେ କହିପାରୁ—ଆମେ ଜଗତର ଅତୀତାନ୍ତ ସତ୍ତାର ଅନ୍ୱେଷଣ କରିବୁ ନାହିଁ, ଆମମାନଙ୍କର ସମସ୍ତ ଆଶା,

ସମସ୍ତ ଆକାଙ୍‌କ୍ଷାକୁ ବର୍ତ୍ତମାନ ମୁହୂର୍ତ୍ତ ଭିତରେ ହିଁ ଆବଦ୍ଧ ରଖିବୁ; ଏବଂ 'ଆମେ ଇନ୍ଦ୍ରିୟାତୀତ ବସ୍ତୁର ଚିନ୍ତା କରିବୁ ନାହିଁ ବୋଲି ଖୁବ୍ ଚେଷ୍ଟା କରିପାରୁଁ ଏବଂ ବହିର୍ଜଗତର ସକଳ ବସ୍ତୁ ହିଁ ଆମମାନଙ୍କୁ ଇନ୍ଦ୍ରିୟର ସୀମା ମଧ୍ୟରେ ଆବଦ୍ଧ କରି ରଖିପାରେ; ସମଗ୍ର ଜଗତ୍ ମିଳି ବର୍ତ୍ତମାନର କ୍ଷୁଦ୍ର ସୀମାର ବାହାରକୁ ଦୃଷ୍ଟିପ୍ରସାରଣ କରିବାକୁ ନିବାରଣ କରିପାରେ; କିନ୍ତୁ ଯେତେ ଦିନ ପର୍ଯ୍ୟନ୍ତ ଜଗତରେ ମୃତ୍ୟୁ ରହିଥିବ, ସେତେ ଦିନ ପର୍ଯ୍ୟନ୍ତ ଏହି ପ୍ରଶ୍ନ ପୁନଃପୁନଃ ଆସିବ । 'ଆମେ ଏହି ଯେଉଁ ସବୁ ବସ୍ତୁକୁ ସତ୍ୟର ସତ୍ୟସାରର ସାର ବୋଲି ମନେକରି ସେଥିପ୍ରତି ଯେପରି ଅତ୍ୟନ୍ତ ଆସକ୍ତ ହୋଇ ରହିଅଛୁଁ, ମୃତ୍ୟୁ କ'ଣ ଏସବୁର ଚରମ ପରିଣାମ ?' ଗୋଟିଏ ମୁହୂର୍ତ୍ତରେ ତ ଜଗତଟା ଧ୍ୱଂସ ପାଇ କେଉଁଆଡ଼େ ଚାଲିଯାଏ । ଅତ୍ୟୁଚ୍ଚ ଗଗନସ୍ପର୍ଶୀ ପର୍ବତ—ନିମ୍ନରେ ଗଭୀର ଗହ୍ୱର, ଯେପରିକି ମୁଖ ବ୍ୟାଦାନ କରି ଜୀବକୁ ଗ୍ରାସ କରିବାକୁ ଆସୁଛି । ଯେତେ କଠୋର-ହୃଦୟ ହେଉନା କାହିଁକି, ଏହି ପର୍ବତର ପାର୍ଶ୍ୱଦେଶରେ ସେ ଦଣ୍ଡାୟମାନ ହୋଇ ରହିଲେ ଦେହ ତା'ର ନିଶ୍ଚୟ ଶିହରି ଉଠିବ । ସେ ନିଶ୍ଚୟ ପ୍ରଶ୍ନ କରିବ—'ଏସବୁ କ'ଣ ସତ୍ୟ ?' କୌଣସି ତେଜସ୍ୱୀ ହୃଦୟବାନ୍ ବ୍ୟକ୍ତି ମହାନ୍ ଆଗ୍ରହ ସହକାରେ ସାରା ଜୀବନ ଧରି ହୃଦୟରେ ଯେଉଁ ଆଶା ଆକାଙ୍‌କ୍ଷା ପୋଷଣ କଲେ, ଗୋଟିଏ ମାତ୍ର ମୁହୂର୍ତ୍ତରେ ତାହାସବୁ କେଉଁଆଡ଼େ ବିଲୀନ ହୋଇଗଲା । ତାହାହେଲେ ଏହିସବୁ ଆଶା ଆକାଙ୍‌କ୍ଷାକୁ କ'ଣ ସତ୍ୟ ବୋଲି କହିବା ? ଏହି ପ୍ରଶ୍ନର ଉତ୍ତର ଦେବାକୁ ହେବ । ପ୍ରାଣର ଏହି ଆକାଙ୍‌କ୍ଷା, ହୃଦୟର ଏହି ଗଭୀର ପ୍ରଶ୍ନର ଶକ୍ତି କାଳକ୍ରମେ ହ୍ରାସ ପାଇବ ନାହିଁ । ବରଂ କାଳସ୍ରୋତ ଯେତେ ପ୍ରବାହିତ ହେବ ସେତେ ଏହାର ଶକ୍ତି ବୃଦ୍ଧିପ୍ରାପ୍ତ ହେବ, ହୃଦୟ ଉପରେ ଏହା ସେତିକି ଅଧିକ ଗଭୀରଭାବରେ ଆଘାତ କରିବ ।

ସୁଖୀ ହେବାକୁ ମନୁଷ୍ୟର ଇଚ୍ଛା । ଦ୍ୱିତୀୟ କଥା ହେଉଛି ନିଜକୁ ସୁଖୀ କରିବା ନିମିତ୍ତ ମନୁଷ୍ୟ ସର୍ବଦା ହିଁ ଧାବମାନ ହୁଏ । ଇନ୍ଦ୍ରିୟମାନଙ୍କ ପଛେ ପଛେ ଦୌଡ଼ିଥାଏ । ଉନ୍ମତ୍ତ ପରି ବାହ୍ୟଜଗତରେ କାର୍ଯ୍ୟ କରିଯାଏ । ଯେଉଁ ଯୁବକ ଜୀବନ-ସଂଗ୍ରାମରେ କୃତକାର୍ଯ୍ୟ ହୋଇଅଛନ୍ତି, ତାଙ୍କୁ ଯଦି ପଚାରି, ସେ କହିବେ—'ଏହି ଜଗତ୍ ସତ୍ୟ—ତାହାର ସମସ୍ତ ହିଁ ସତ୍ୟ ବୋଲି ପ୍ରତୀତ ହୁଏ ।' ହୁଏତ ସେହି ବ୍ୟକ୍ତି ଯେତେବେଳେ ବୃଦ୍ଧାବସ୍ଥା ପ୍ରାପ୍ତ ହେବେ ଏବଂ ଭାଗ୍ୟଲକ୍ଷ୍ମୀ ତାଙ୍କୁ ବାରମ୍ବାର ବଞ୍ଚନା କରୁଥିବେ, ସେତେବେଳେ ସେହି ବ୍ୟକ୍ତିଙ୍କୁ ହୁଏତ ପଚାରିଗଲେ ସେ କହିବେ—'ସବୁ ହିଁ ଅଦୃଷ୍ଟ' । ସେ ଏତେ ଦିନେ ଦେଖିବାକୁ ପାଇଲେ ବାସନାର ପୂରଣ ହୋଇନାହିଁ । ସେ ଯେଉଁଠାକୁ ଯାଆନ୍ତି ସେଠାରେ ହିଁ ଯେପରିକି ଏକ ବ୍ରଜପରି ଦୃଢ଼ ପ୍ରାଚୀର ଦେଖିବାକୁ ପାଆନ୍ତି । ତାହାକୁ ଅତିକ୍ରମ କରିବାକୁ ତାଙ୍କର ସାଧ୍ୟ ନାହିଁ । ଇନ୍ଦ୍ରିୟ-ଶୃଙ୍ଖଳାମାନର ହିଁ ପ୍ରତିକ୍ରିୟା ହୁଏ । ସୁଖଦୁଃଖ ଉଭୟେ ହିଁ କ୍ଷଣସ୍ଥାୟୀ । ବିଳାସ, ବିଭବ, ଶକ୍ତି, ଦାରିଦ୍ର୍ୟ ଏପରିକି ଜୀବନ ପର୍ଯ୍ୟନ୍ତ କ୍ଷଣସ୍ଥାୟୀ ।

ଏହି ପ୍ରଶ୍ନର ଦୁଇଟି ଉତ୍ତର ଅଛି । ପ୍ରଥମଟି ହେଉଛି—ଶୂନ୍ୟବାଦୀମାନଙ୍କ ମତ ଅନୁଯାୟୀ ବିଶ୍ୱାସ କର ଯେ ସମସ୍ତ ଶୂନ୍ୟ । ଆମେମାନେ କିଛିମାତ୍ର ଜାଣିପାରୁ ନାହିଁ । ଭୂତ, ଭବିଷ୍ୟତ ଓ ବର୍ତ୍ତମାନ ସମ୍ବନ୍ଧରେ ମଧ୍ୟ ଆମେ କିଛି ଜାଣିପାରୁ ନାହିଁ । କାରଣ, ଯେଉଁ ବ୍ୟକ୍ତି ଭୂତ ଭବିଷ୍ୟତକୁ ଅସ୍ୱୀକାର କରି କେବଳ ବର୍ତ୍ତମାନର ଅସ୍ତିତ୍ୱ ସ୍ୱୀକାର କରି ସେଥିରେ ଦୃଷ୍ଟି ଆବଦ୍ଧ କରି ରଖିବାକୁ ଚାହେଁ, ସେ ବ୍ୟକ୍ତି ବାତୁଳ । ତାହାହେଲେ ସେ ପିତାମାତାଙ୍କୁ ଅସ୍ୱୀକାର କରି ସନ୍ତାନର ଅସ୍ତିତ୍ୱକୁ ହିଁ ସ୍ୱୀକାର କରିପାରେ । କିନ୍ତୁ ଭୂତ ଓ ଭବିଷ୍ୟତକୁ ଅସ୍ୱୀକାର କଲେ ବର୍ତ୍ତମାନକୁ ମଧ୍ୟ ଅସ୍ୱୀକାର କରିବାକୁ ହେବ । ଏହା ଏକ ସିଦ୍ଧାନ୍ତ—ଏହା ଶୂନ୍ୟବାଦୀମାନଙ୍କ ମତ; କିନ୍ତୁ ମୁଁ ଏପରି ଜଣେ ସୁଦ୍ଧା ଦେଖିବାକୁ ପାଇନି ନାହିଁ, ଯେ ମୁହୂର୍ତ୍ତିକ ପାଇଁ ବି ଶୂନ୍ୟବାଦୀ ହୋଇପାରେ—ମୁହଁରେ କହିବା ଅବଶ୍ୟ ଖୁବ୍ ସହଜ ।

ଦ୍ୱିତୀୟ ଉତ୍ତର ହେଉଛି—ଏହି ପ୍ରଶ୍ନର ପ୍ରକୃତ ଉତ୍ତର ଅନ୍ୱେଷଣ କର । ସତ୍ୟର ଅନ୍ୱେଷଣ କର, ଏହି ନିତ୍ୟ ପରିଣାମଶୀଳ ନଶ୍ୱର ଜଗତ୍ ଭିତରେ କ'ଣ କ'ଣ ସତ୍ୟ ରହିଅଛି, ତାହାର ଅନ୍ୱେଷଣ କର । ଏହି ଦେହ, ଯାହା କେତେଗୁଡ଼ିଏ ଭୌତିକ ଅଣୁର ସମଷ୍ଟିମାତ୍ର, ଏହା ମଧ୍ୟରେ କି କିଛି ସତ୍ୟ ନିହିତ ଅଛି ? ମାନବ-ଜୀବନର ଇତିହାସରେ ସର୍ବଦା ହିଁ ଏହି ତତ୍ତ୍ୱ ଅନ୍ୱେଷିତ ହୋଇଛି । ଆମେମାନେ ଦେଖିବାକୁ ପାଉଁ ଯେ, ଅତି ପ୍ରାଚୀନ କାଳରୁ ମଧ୍ୟ ମନୁଷ୍ୟ ମନରେ ଏହି ତତ୍ତ୍ୱର ଅସ୍ଫୁଟ ଆଲୋକ ପ୍ରତିଭାତ ହେବାକୁ ଆରମ୍ଭ କରିଅଛି । ଆମେ ଦେଖିବାକୁ ପାଉଁ ଯେ ସେହି ସମୟରୁ ହିଁ ମନୁଷ୍ୟ ସ୍ଥୂଳ ଦେହର ଅତୀତ ଆଉ ଗୋଟିଏ ଦେହ ସମ୍ବନ୍ଧରେ ଜ୍ଞାନଲାଭ କରିଅଛି—ସେହି ଦେହଟି ଅନେକାଂଶରେ ଏହି ସ୍ଥୂଳ ଦେହସଦୃଶ ହେଲେ ମଧ୍ୟ ତାହା ସମ୍ପୂର୍ଣ୍ଣ ସ୍ଥୂଳଦେହ ନୁହେଁ । ଏହା ସ୍ଥୂଳ ଦେହଠାରୁ ଶ୍ରେଷ୍ଠ । ଶରୀରର ଧ୍ୱଂସ ହେଲେ ମଧ୍ୟ ଏହା ଧ୍ୱଂସ ପାଇବ ନାହିଁ । ଋଗ୍‌ବେଦର ସୂକ୍ତରେ ମୃତ-ଶରୀର-ଦହନକାରୀ ଅଗ୍ନିଦେବଙ୍କ ଉଦ୍ଦେଶ୍ୟରେ ଲିଖିତ ନିମ୍ନୋଦ୍ଧୃତ ଶ୍ଳୋକଟି ଆମେମାନେ ଦେଖିବାକୁ ପାଉଁ—'ହେ ଅଗ୍ନି, ତୁମେ ଏହାକୁ ସ୍ୱହସ୍ତରେ ଧୀରେ ଧୀରେ ନେଇଯାଅ —ଏହାକୁ ସର୍ବାଙ୍ଗସୁନ୍ଦର ଜ୍ୟୋତିର୍ମୟ ଦେହସମ୍ପନ୍ନ କର । ଯେଉଁଠାରେ ପିତୃଗଣ ବାସ କରନ୍ତି, ଯେଉଁଠି ଦୁଃଖ ନାହିଁ, ଯେଉଁଠି ମୃତ୍ୟୁ ନାହିଁ, ସେହି ଧାମକୁ ଏହାକୁ ନେଇଯାଅ ।' ତୁମେ ଦେଖିବ, ସବୁ ଧର୍ମରେ ଏହି ଗୋଟିଏ ଭାବ ବିଦ୍ୟମାନ । ତା' ଛଡ଼ା ଆମେ ଆଉ ଗୋଟିଏ ତତ୍ତ୍ୱ ମଧ୍ୟ ପାଇଥାଉଁ । ଆଶ୍ଚର୍ଯ୍ୟର କଥା ସବୁ ଧର୍ମ ହିଁ ସମସ୍ୱରରେ ଘୋଷଣା କରୁଛନ୍ତି—ମନୁଷ୍ୟ ପ୍ରଥମେ ପବିତ୍ର ଓ ନିଷ୍ପାପ ଥିଲା । ବର୍ତ୍ତମାନ ସେ ଅବନତ ହୋଇ ପଡ଼ିଅଛି । ଏହି ଭାବକୁ ସେମାନେ ରୂପକ ଭାଷାରେ ହେଉ ବା ଦର୍ଶନର ସୁସ୍ପଷ୍ଟ ଅଭିବ୍ୟକ୍ତି ମାଧ୍ୟମରେ ହେଉ ଅଥବା କବିତାର ସୁନ୍ଦର ଭାଷାରେ ହେଉ, ଯେ କୌଣସି ମାଧ୍ୟମରେ ପ୍ରକାଶ କରନ୍ତୁନା କାହିଁକି, ସମସ୍ତେ କିନ୍ତୁ ଏହି ଗୋଟିଏ ତତ୍ତ୍ୱକୁ ଘୋଷଣା କରନ୍ତି । ସକଳ ଶାସ୍ତ୍ର ଓ ସକଳ ପୁରାଣରେ

ମଧ୍ୟ ଏହି ଏକ ତତ୍ତ୍ୱ ଦେଖିବାକୁ ମିଳେ ଯେ ମନୁଷ୍ୟ ପୂର୍ବେ ଯାହା ଥିଲା, ବର୍ତ୍ତମାନ ସେ ତାହା ତୁଳନାରେ ଅବନତଭାବାପନ୍ନ ହୋଇପଡ଼ିଛି । ଇହୁଦୀ-ମାନଙ୍କର ଧର୍ମ-ଶାସ୍ତ୍ର ବାଇବେଲର ପୁରାତନ ଭାଗରେ ଆଦମ୍‌ଙ୍କ ପତନ ସମ୍ବନ୍ଧରେ ଯେଉଁ ଗଳ୍ପଟି ଅଛି, ତାହାର ଏହା ହିଁ ହେଉଛି ସାରମର୍ମ । ହିନ୍ଦୁଶାସ୍ତ୍ରରେ ଏହା ପୁନଃ ପୁନଃ ଉଲ୍ଲିଖିତ ହୋଇଅଛି । ସେମାନେ ସତ୍ୟଯୁଗର ଯେଉଁ ବର୍ଣ୍ଣନା କରିଅଛନ୍ତି, ସେ ଯୁଗରେ ମୃତ୍ୟୁ ମନୁଷ୍ୟର ଇଚ୍ଛାଧୀନ ଥିଲା, ମନୁଷ୍ୟ ସେତେବେଳେ ଯେତେ ଦିନ ଇଚ୍ଛା ସେତେ ଦିନ ନିଜର ଶରୀର ରକ୍ଷା କରିପାରୁଥିଲା, ସେତେବେଳେ ଲୋକଙ୍କ ମନ ଶୁଦ୍ଧ ଓ ଦୃଢ଼ ଥିଲା । ସେଥିରେ ବି ଏହି ସାର୍ବଭୌମ ସତ୍ୟର ଇଙ୍ଗିତ ଦେଖା-ଯାଏ । ସେହି ଶାସ୍ତ୍ରମାନଙ୍କରେ ପୁଣି କୁହାଯାଇଛି, ସେହି ଯୁଗରେ ମୃତ୍ୟୁ ନ ଥିଲା କି କୌଣସି ଅଶୁଭ କି ଦୁଃଖ ମଧ୍ୟ ନ ଥିଲା ଏବଂ ବର୍ତ୍ତମାନର ଏହି ଯୁଗ ସେହି ଉନ୍ନତ ଯୁଗର ଅବନତିପ୍ରାପ୍ତ ଅବସ୍ଥା ମାତ୍ର । ଏହି ବର୍ଣ୍ଣନା ସହିତ ଆମେ ସବୁ ଶାସ୍ତ୍ରରେ ଜଳପ୍ଲାବନର ବର୍ଣ୍ଣନା ଦେଖିବାକୁ ପାଉଁ । ଏହି ଜଳପ୍ଲାବନ ଗଳ୍ପରେ ପ୍ରମାଣିତ ହୋଇଛି ଯେ, ସକଳ ଧର୍ମ ବର୍ତ୍ତମାନ ଯୁଗକୁ ପ୍ରାଚୀନ ଯୁଗର ଅବନତ ଅବସ୍ଥା ବୋଲି ସ୍ୱୀକାର କରିଛନ୍ତି । ଜଗତ୍ କ୍ରମଶଃ ମନ୍ଦରୁ ମନ୍ଦତର ହେବାକୁ ଲାଗିଲା । ଅବଶେଷରେ ଜଳପ୍ଲାବନ ଘଟି ଅଧିକାଂଶ ଲୋକ ଜଳମଗ୍ନ ହେଲେ । ତା'ପରେ ପୁଣି ଉନ୍ନତିର ଆରମ୍ଭ ହେଲା । ଜଗତ୍ ପୁଣି ସେହି ପୂର୍ବ ପବିତ୍ର ଅବସ୍ଥା ଲାଭ ନିମିତ୍ତ ଧୀରେ ଧୀରେ ଅଗ୍ରସର ହେଉଛି ।

ଆପଣମାନେ ସମସ୍ତେ ଓଲ୍ଡ୍ ଟେଷ୍ଟାମେଣ୍ଟ୍‌ର ଜଳପ୍ଲାବନର ଗଳ୍ପ ଜାଣନ୍ତି । ପ୍ରାଚୀନ ବାବିଲୋନ, ମିଶର, ଚୀନ ଏବଂ ହିନ୍ଦୁମାନଙ୍କ ମଧ୍ୟରେ ବି ଏହି ଏକ ପ୍ରକାର ଗଳ୍ପ ପ୍ରଚଳିତ ଥିଲା । ହିନ୍ଦୁଶାସ୍ତ୍ରରେ ଜଳପ୍ଲାବନର ବର୍ଣ୍ଣନା ନିମ୍ନଲିଖିତ ଭାବେ ଦେଖିବାକୁ ମିଳେ—

ମହର୍ଷି ମନୁ ଦିନେ ଗ ।ତୀରରେ ସନ୍ଧ୍ୟା ତର୍ପଣ କରୁଥିଲେ । ଏହି ସମୟରେ ଏକ କ୍ଷୁଦ୍ର ମତ୍ସ୍ୟ ଆସି କହିଲା—'ଆପଣ ମୋତେ ଆଶ୍ରୟ ଦିଅନ୍ତୁ ।' ମନୁ ତତ୍‌କ୍ଷଣାତ୍ ସନ୍ନିହିତ ଏକ ଜଳପାତ୍ରରେ ତାହାକୁ ରଖି ପଚାରିଲେ—'ତୁମେ କ'ଣ ଚାହଁ ?' ମତ୍ସ୍ୟଟି ଉତ୍ତର ଦେଲା—'ଏକ ବୃହତ୍ ମତ୍ସ୍ୟ ମୋର ବିନାଶାଭିପ୍ରାୟରେ ମୋତେ ଅନୁସରଣ କରୁଛି, ଆପଣ ମୋତେ ସେଥିରୁ ରକ୍ଷା କରନ୍ତୁ ।' ମନୁ ତାହାକୁ ଘରକୁ ଘେନିଗଲେ, ପରଦିନ ପ୍ରତ୍ୟୁଷରେ ଦେଖନ୍ତି ତ ସେହି ମତ୍ସ୍ୟଟି ଯେଉଁ ପାତ୍ର ମଧ୍ୟରେ ଥିଲା, ତାହାର ଆକାର ସେହି ପାତ୍ର ପରି ହୋଇ ଯାଇଛି । ସେ କହିଲା—'ମୁଁ ଆଉ ଏହି ପାତ୍ର ମଧ୍ୟରେ ରହିପାରିବି ନାହିଁ ।' ମନୁ ତହୁଁ ତାହାକୁ ନେଇ ଏକ କୁଣ୍ଡରେ ଛାଡ଼ିଲେ । ପରଦିନ ମତ୍ସ୍ୟଟି ସେହି କୁଣ୍ଡପ୍ରମାଣ ଆକାର ଧାରଣ କଲା ଏବଂ ମନୁଙ୍କୁ ଦେଖି କହିଲା—'ମୁଁ ଆଉ ଏଥିରେ ବି ରହିପାରୁ ନାହିଁ ।' ତହୁଁ ମନୁ ତାହାକୁ ନେଇ ଏକ ନଦୀରେ ଛାଡ଼ିଦେଲେ । ପରଦିନ ପ୍ରଭାତରେ ଯେତେବେଳେ ଦେଖିଲେ

ତା'ର କଳେବରରେ କଣ୍ଟା ପୂର୍ଣ୍ଣ ହୋଇଯାଇଛି, ସେତେବେଳେ ସେ ତାହାକୁ ନେଇ ସମୁଦ୍ର ମଧ୍ୟରେ ଛାଡ଼ିଦେଲେ । ସେତେବେଳେ ମତ୍ସ୍ୟଟି କହିଲା—'ମନୁ, ମୁଁ ହେଉଛି ଜଗତର ସୃଷ୍ଟିକର୍ତ୍ତା । ଜଳପ୍ଲାବନଦ୍ୱାରା ଏହି ଜଗତକୁ ମୁଁ ଧ୍ୱଂସ କରିବି । ତୁମକୁ ସାବଧାନ କରିବା ନିମିତ୍ତ ମୁଁ ଏହି ମତ୍ସ୍ୟରୂପ ଧାରଣ କରି ଆସିଅଛି । ତୁମେ ଗୋଟିଏ ସୁବୃହତ୍ ନୌକା ନିର୍ମାଣ କରି ସେଥିରେ ସବୁ ପ୍ରାଣୀମାନଙ୍କ ମଧ୍ୟରୁ ଏକ ଏକ ଯୋଡ଼ା ରକ୍ଷା କର ଏବଂ ତୁମେ ସ୍ୱୟଂ ସପରିବାର ସେଥିରେ ପ୍ରବେଶ କର । ସବୁ ସ୍ଥାନ ଜଳପ୍ଲାବିତ ହେବା ପରେ ତାହା ମଧ୍ୟରେ ତୁମେ ମୋ ଶୃଙ୍ଗକୁ ଦେଖିବାକୁ ପାଇବ । ସେଥିରେ ତୁମର ନୌକାଟିକୁ ବାନ୍ଧିବ, ତାହା ପରେ ଜଳ କମି ଆସିଲେ ତୁମେ ନୌକାରୁ ଅବତରଣ କରି ପୁନର୍ବାର ପ୍ରଜା ବୃଦ୍ଧି କର ।' ଏହିରୂପେ ଭଗବାନଙ୍କ ଆଦେଶାନୁସାରେ ଜଳପ୍ଲାବନ ଘଟିଲା, ଏବଂ ମନୁ ନିଜ ପରିବାର ସମେତ ସବୁବିଧ ଜନ୍ତୁମାନଙ୍କ ମଧ୍ୟରୁ ଏକ ଏକ ଯୋଡ଼ା ଓ ସବୁପ୍ରକାର ଉଦ୍ଭିଦ ବୀଜ ନେଇ ଜଳପ୍ଲାବନରୁ ସୃଷ୍ଟିକୁ ରକ୍ଷା କଲେ ଏବଂ ଏହାର ଅବସାନ ଘଟିବା ପରେ ସେ ଏହି ନୌକାରୁ ଅବତରଣ କରି ଜଗତରେ ପ୍ରଜାସୃଷ୍ଟି କରିବାକୁ ଲାଗିଲେ । ତେଣୁ ଆମେମାନେ ସମସ୍ତେ ମନୁଙ୍କ ବଂଶଧର ହୋଇଥିବାରୁ ମାନବ ନାମରେ ଅଭିହିତ ହେଉଛୁ । (ମନ୍ ଧାତୁରୁ ମନୁ ଶବ୍ଦ ସିଦ୍ଧ; ମନ୍ ଧାତୁର ଅର୍ଥ ମନନ ଅର୍ଥାତ୍ ଚିନ୍ତା କରିବା) ।

ବର୍ତ୍ତମାନ ଦେଖ—ମାନବର ଭାଷା ସେହି ଅନ୍ତର୍ନିହିତ ସତ୍ୟକୁ ପ୍ରକାଶ କରିବାର ଚେଷ୍ଟା ମାତ୍ର । ମୋର ଦୃଢ଼ ବିଶ୍ୱାସ—ଏହି ସମସ୍ତ ଗଳ୍ପ ଅନ୍ୟ କିଛି ନୁହେଁ, ଗୋଟିଏ ଛୋଟ ବାଳକ—ଅସ୍ପଷ୍ଟ ଏବଂ ଅସ୍ଫୁଟ ଶବ୍ଦରାଶି ଯାହାର ଏକମାତ୍ର ଭାଷା —ସେ ଯେପରି କି ସେହି ଭାଷାରେ ଗଭୀରତମ ଦାର୍ଶନିକ ସତ୍ୟ ପ୍ରକାଶ କରିବାକୁ ଚେଷ୍ଟା କରୁଛି, କେବଳ ଶିଶୁର ତାହା ପ୍ରକାଶ କରିବାର ଉପଯୁକ୍ତ ଇନ୍ଦ୍ରିୟ ବା ଅନ୍ୟ କୌଣସି ଉପାୟ ନାହିଁ । ଉଚ୍ଚତମ ଦାର୍ଶନିକ ଏବଂ ଶିଶୁ, ଉଭୟଙ୍କ ଭାଷା ମଧ୍ୟରେ କୌଣସି ପ୍ରକାରଗତ ଭେଦ ନାହିଁ, କେବଳ ଗ୍ରାମଗତ ଭେଦ ଅଛି । ଆଜିକାଲିର ବିଶୁଦ୍ଧ, ପ୍ରଣାଳୀବଦ୍ଧ ଗଣିତସଦୃଶ ସଠିକ କାଟ୍‌ଛାଣ୍ଟ ଭାଷା ଏବଂ ପ୍ରାଚୀନ ଯୁଗର ଅସ୍ଫୁଟ, ରହସ୍ୟମୟ ପୌରାଣିକୀ ଭାଷା ମଧ୍ୟରେ ଥିବା ପ୍ରଭେଦ ହେଉଛି, କେବଳ ସେହି ଗ୍ରାମଗତ ଉଚ୍ଚତା ଏବଂ ନିମ୍ନତା । ଏହି ସବୁ ଗଳ୍ପର ପଶ୍ଚାତ୍-ଦେଶରେ ଏକ ମହତ୍ ସତ୍ୟ ରହିଛି । ପ୍ରାଚୀନ ଯୁଗର ଲୋକେ ଏହାକୁ ହିଁ ପ୍ରକାଶ କରିବାକୁ ଚେଷ୍ଟା କରିଛନ୍ତି । ଅନେକ ସମୟରେ ଏହି ସବୁ ପ୍ରାଚୀନ ପୌରାଣିକ ଗଳ୍ପଗୁଡ଼ିକରେ ହିଁ ମହାମୂଲ୍ୟ ସତ୍ୟ ଥାଏ; କିନ୍ତୁ ଦୁଃଖର ସହିତ କହିବାକୁ ହେଉଛି ଯେ ଆଧୁନିକ କାଣ୍ଟ୍‌ଛାଣ୍ଟ ଭାଷା ଭିତରେ ଅନେକ ସମୟରେ କେବଳ ଅସାରତା ଦେଖିବାକୁ ମିଳେ । ଅତଏବ ପ୍ରାଚୀନ ଗଳ୍ପ ସବୁ ରୂପକର ଆବରଣରେ ଆବୃତ ଏବଂ ଆଧୁନିକ ରାମ ଶ୍ୟାମଙ୍କ ମନକୁ ପାଉ ନାହିଁ ବୋଲି ତାହା ବର୍ଜନୀୟ, ଏ କଥାର କୌଣସି ଅର୍ଥ ନାହିଁ ।

'ଅମୁକ ମହାପୁରୁଷ ଏହି କଥା କହିଛନ୍ତି, ଅତଏବ ଏହାକୁ ବିଶ୍ୱାସ କର'—ସବୁଧର୍ମ ଏଭଳି ଭାବରେ କହୁଥିବାରୁ ସେସବୁ ଯଦି ଉପହାସର ଯୋଗ୍ୟ ହେଲ, ତେବେ ଆଧୁନିକମାନେ ଅଧିକ ଉପହାସର ଯୋଗ୍ୟ । ଆଧୁନିକ ଯୁଗରେ ଯଦି କେହି ମୁଶା, ବୁଦ୍ଧ ବା ଈଶାଙ୍କ ଉକ୍ତି ଉଦ୍ଧୃତ କରେ, ସେ ହାସ୍ୟାସ୍ପଦ ହୁଏ; କିନ୍ତୁ ହକ୍ସଲେ (Huxley), ଟିଣ୍ଡଲ (Tyndall) ବା ଡାର୍ଉଇନ୍ (Darwin) ନାମ ଉଲ୍ଲେଖ କଲେ, ତାହା ଏକାବେଳକେ ଅକାଟ୍ୟ ବୋଲି ଲୋକମାନେ ଗ୍ରହଣ କରିଯାନ୍ତି । ଅନେକଙ୍କ ପକ୍ଷରେ 'ହକ୍ସଲେ ଏହି କଥା କହିଛନ୍ତି' ବୋଲି କହିଦେଲେ ହିଁ ଯଥେଷ୍ଟ ! ସତେ ତେବେ ଆମେମାନେ କୁସଂସ୍କାରରୁ ମୁକ୍ତ ହୋଇଛୁଁ ! ଆଗେ ଥିଲା ଧର୍ମର କୁସଂସ୍କାର, ବର୍ତ୍ତମାନ ହୋଇଅଛି ବିଜ୍ଞାନର କୁସଂସ୍କାର; ତେବେ ପ୍ରାଚୀନ କାଳର କୁସଂସ୍କାର ଭିତର ଦେଇ ଆସୁଥିଲା ଜୀବନପ୍ରଦ ଆଧ୍ୟାତ୍ମିକ ଭାବ, ବର୍ତ୍ତମାନ ଏହି ଆଧୁନିକ କୁସଂସ୍କାର ମାଧ୍ୟମରେ କେବଳ କାମ ଆଉ ଲୋଭ ଆସୁଅଛି । ସେ କୁସଂସ୍କାର ଥିଲା ଈଶ୍ୱରଙ୍କ ଉପାସନା ନେଇ, ଆଉ ଆଧୁନିକ କୁସଂସ୍କାର—ଅତି-ଘୃଣିତ ଧନ, ଯଶ ବା ଶକ୍ତିର ଉପାସନା, ଏହା ହିଁ ପ୍ରଭେଦ ।

ବର୍ତ୍ତମାନ ପୂର୍ବୋକ୍ତ ପୌରାଣିକ ଗଳ୍ପଗୁଡ଼ିକ ସମ୍ବନ୍ଧରେ ପୁନର୍ବାର ଆଲୋଚନା କରାଯାଉ । ଏହି ସମସ୍ତ ଗଳ୍ପର ସାରାଂଶ ଏହି ଯେ ମନୁଷ୍ୟ ପୂର୍ବେ ଯାହା ଥିଲା, ବର୍ତ୍ତମାନ ତାହା ଅପେକ୍ଷା ଅବନତ ହୋଇ ପଡ଼ିଅଛି । ଆଧୁନିକ ଯୁଗର ତତ୍ତ୍ୱାନ୍ୱେଷୀଗଣ ବୋଧହୁଏ ଯେପରି କି ତତ୍ତ୍ୱକୁ ଏକାବେଳେକେ ଅସ୍ୱୀକାର କରି-ଥାନ୍ତି । କ୍ରମବିକାଶବାଦୀ ପଣ୍ଡିତଗଣ ବୋଧହୁଏ ଯେପରିକି ଏହି ସତ୍ୟକୁ ସମ୍ପୂର୍ଣ୍ଣଭାବେ ଖଣ୍ଡନ କରୁଅଛନ୍ତି । ସେମାନଙ୍କ ମତରେ ମନୁଷ୍ୟ ଏକ କ୍ଷୁଦ୍ର ମାଂସଳ ଜନ୍ତୁ-ବିଶେଷର (Mollusc) କ୍ରମବିକାଶ ମାତ୍ର, ଅତଏବ ପୂର୍ବୋକ୍ତ ପୌରାଣିକ ସିଦ୍ଧାନ୍ତ ସତ୍ୟ ହୋଇ ନ ପାରେ । ଭାରତୀୟ ପୁରାଣ କିନ୍ତୁ ଉଭୟ ମତର ସମନ୍ୱୟ ଆଣିବାକୁ ସମର୍ଥ । ଭାରତୀୟ ପୁରାଣମତରେ ସକଳ ଉନ୍ନତି ତରଙ୍ଗାକାରରେ ହୋଇ-ଥାଏ । ପ୍ରତ୍ୟେକ ତରଙ୍ଗ ହିଁ ଥରେ ଉଠେ, ପୁଣି ପଡ଼େ । ପଡ଼ି ପୁଣି ଥରେ ଉଠେ, ପୁଣି ପଡ଼େ—ଏହିପରି କ୍ରମାଗତ ଭାବେ ଚାଲିଥାଏ । ପ୍ରତ୍ୟେକ ଗତି ହିଁ ଚକ୍ରାକାରରେ ହୋଇଥାଏ । ଆଧୁନିକ ବିଜ୍ଞାନଦୃଷ୍ଟିରୁ ଦେଖିଲେ ଦେଖାଯିବ, ମନୁଷ୍ୟ କେବଳ କ୍ରମବିକାଶ-ପ୍ରଣାଳୀରେ ଉତ୍ପନ୍ନ, ଏହି ପ୍ରତିଜ୍ଞା ସିଦ୍ଧ ହୁଏ ନାହିଁ । କ୍ରମବିକାଶ କହିବା ମାତ୍ରେ ତାହା ସଙ୍ଗେ ସଙ୍ଗେ କ୍ରମସଂକୋଚ ପ୍ରକ୍ରିୟାକୁ ଧରି ନେବାକୁ ପଡ଼ିବ । ବିଜ୍ଞାନବିତ୍ ହିଁ ତୁମକୁ କହିବେ, କୌଣସି ଯନ୍ତ୍ରରେ ତୁମେ ଯେଉଁ ପରିମାଣରେ ଶକ୍ତି ପ୍ରୟୋଗ କରିବ, ତହିଁରୁ ତୁମେ ସେହି ପରିମାଣରେ ଶକ୍ତି ପାଇ ପାରିବ । ଅସତ୍ (କିଛି ନୁହେଁ)ରୁ ସତ୍ (କିଛି) କଦାପି ସମ୍ଭବ ହୋଇପାରିବ ନାହିଁ । ଯଦି ମାନବ, ପୂର୍ଣ୍ଣ-ମାନବ, ବୁଦ୍ଧ-ମାନବ, ଖ୍ରୀଷ୍ଟ-ମାନବ, କ୍ଷୁଦ୍ର ମାଂସଳ ଜନ୍ତୁବିଶେଷର କ୍ରମବିକାଶ ହୁଏ, ତାହାହେଲେ ଏହି ଜନ୍ତୁକୁ ବି କ୍ରମ-ସଙ୍କୁଚିତ ବୁଦ୍ଧ କହିବାକୁ ହେବ । ଯଦି

ତାହା ନ ହୁଏ, ତାହାହେଲେ ଏହି ମହାପୁରୁଷଗଣ କେଉଁଠାରୁ ଉତ୍ପନ୍ନ ହେଲେ ? ଅସତ୍‌ରୁ କଦାପି ସତ୍‌ର ଉଦ୍ଭବ ହୁଏ ନାହିଁ । ଏହିପରି ଆମେମାନେ ଶାସ୍ତ୍ର ସହିତ ଆଧୁନିକ ବିଜ୍ଞାନର ସମନ୍ୱୟ କରିପାରୁଁ । ଯେଉଁ ଶକ୍ତି ଧୀରେ ଧୀରେ ନାନା ସୋପାନ ଦେଇ କ୍ରମେ ପୂର୍ଣ୍ଣ ମନୁଷ୍ୟରୂପରେ ପରିଣତ ହୁଏ, ତାହା କେବେହେଲେ ଶୂନ୍ୟରୁ ଉତ୍ପନ୍ନ ହୋଇପାରିବ ନାହିଁ । ତାହା କୌଣସି ନା କୌଣସି ସ୍ଥାନରେ ବିଦ୍ୟମାନ ଥିଲି । ପୁଣି ତୁମେ ଯଦି ବିଶ୍ଳେଷଣ କରିବାକୁ ଯାଇ ସେହି କ୍ଷୁଦ୍ର ମାଂସଲ ଜନ୍ତୁବିଶେଷ ବା ଜୀବାଣୁ (Protoplasm) ପର୍ଯ୍ୟନ୍ତ ଯାଇ ତାହାକୁ ଆଦି କାରଣ ବୋଲି ସ୍ଥିର କରିଥାଅ, ତେବେ ଏହା ନିଶ୍ଚିତ ଯେ, ଏହି ଜୀବାଣୁ ଭିତରେ ଏହି ଶକ୍ତି କୌଣସି ନା କୌଣସି ରୂପରେ ଅବସ୍ଥିତ ଥିଲି ।

ଅଧୁନା ଏହି କଥାର ବିଚାର ଚାଲିଅଛି ଯେ : ଏହି ଭୂତସମଷ୍ଟି ଦେହ କଅଣ ଆତ୍ମା, ଚିନ୍ତା ପ୍ରଭୃତି ରୂପରେ ପରିଚିତ ଶକ୍ତିର ବିକାଶର କାରଣ, ନା ଚିନ୍ତାଶକ୍ତି ଦେହୋତ୍ପତ୍ତିର କାରଣ ? ଅବଶ୍ୟ ଜଗତର ସମସ୍ତ ଧର୍ମରେ କୁହାଯାଇଛି, ଚିନ୍ତା ବୋଲି ପରିଚିତ ଶକ୍ତିଟି ଶରୀରର ପ୍ରକାଶକ—ଏହାର ବିପରୀତ ମତରେ ସେମାନେ ବିଶ୍ୱାସ କରନ୍ତି ନାହିଁ; କିନ୍ତୁ ଆଧୁନିକ ଅନେକ ସଂପ୍ରଦାୟର ମତ (Comte's Positivism)—ଚିନ୍ତାଶକ୍ତି କେବଳ ଶରୀର ନାମକ ଯନ୍ତ୍ରର ବିଭିନ୍ନ ଅଂଶ-ଗୁଡ଼ିକର କୌଣସି ବିଶେଷପ୍ରକାର ସନ୍ନିବେଶରେ ଉତ୍ପନ୍ନ । ଯଦି ଏହି ଦ୍ୱିତୀୟ ମତଟି ସ୍ୱୀକାର କରିନେଇ କୁହାଯାଏ—ଏହି ଆତ୍ମା ବା ମନ ବା ତାହାକୁ ଯେଉଁ ଆଖ୍ୟା ଦିଅନା କାହିଁକି, ତାହା ଏହି ଜଡ଼ ଦେହରୂପ ଯନ୍ତ୍ରର ହିଁ ଫଳସ୍ୱରୂପ; ଯେଉଁ ସବୁ ଜଡ଼ ପରମାଣୁ ମସ୍ତିଷ୍କ ଓ ଶରୀର ଗଠନ କରୁଅଛନ୍ତି, ସେଗୁଡ଼ିକର ରାସାୟନିକ ବା ଭୌତିକ ଯୋଗରେ ଉତ୍ପନ୍ନ—ତାହାଦ୍ୱାରା ଏହି ପ୍ରଶ୍ନ ଅମୀମାଂସିତ ହୋଇ ରହିଯାଏ । ଶରୀରକୁ ଗଠନ କରେ କିଏ ? କେଉଁ ଶକ୍ତି ଏହି ଭୌତିକ ଅଣୁଗୁଡ଼ିକୁ ଶରୀରରୂପେ ପରିଣତ କରେ ? କେଉଁ ଶକ୍ତି ପ୍ରକୃତି ଭିତରେ ଥିବା ଜଡ଼ ବସ୍ତୁଗୁଡ଼ିକରୁ କିଛି ଅଂଶ ନେଇ ତୁମ ଦେହକୁ ଗୋଟିଏ ପ୍ରକାରରେ, ମୋ ଦେହକୁ ଆଉ ଗୋଟିଏ ପ୍ରକାରରେ ଗଠନ କରେ ? ଏହିସବୁ ବିଭିନ୍ନତା କିପରି ସମ୍ଭବ ହୁଏ ? ଶରୀରସ୍ଥ ଭୌତିକ ପରମାଣୁ-ଗୁଡ଼ିକର ବିଭିନ୍ନ ପ୍ରକାର ସନ୍ନିବେଶରୁ ଆତ୍ମାନାମକ ଶକ୍ତିର ଉଦ୍ଭବ ବୋଲି ଯଦି କୁହାଯାଏ, ତାହା 'ଗାଡ଼ି ପଛରେ ଘୋଡ଼ାକୁ' ବାନ୍ଧିବା ପରି ହେବ । କିପରି ଏହି ସନ୍ନିବେଶ ଉତ୍ପନ୍ନ ହେଲା ? କେଉଁ ଶକ୍ତି ତାହା କଲା ? ଯଦି ତୁମେ କୁହ ଅନ୍ୟ କୌଣସି ଶକ୍ତି ଏହି ସଂଯୋଗ ସାଧନ କରିଅଛି, ଆଉ ଆତ୍ମା—ଯାହା ବର୍ତ୍ତମାନ ଜଡ଼ରାଶି ସହିତ ସଂଯୁକ୍ତ ଦୃଷ୍ଟିଗୋଚର ହେଉଛି, ତାହା ହିଁ ପୁନଶ୍ଚ ଏହି ଜଡ଼ ପରମାଣୁଗୁଡ଼ିକର ସଂଯୋଗର ଫଳସ୍ୱରୂପ, ତାହା କୌଣସି ଉତ୍ତର ହେଲା ନାହିଁ । ଯେଉଁ ମତ ଅନ୍ୟାନ୍ୟ ମତକୁ ଖଣ୍ଡନ ନ କରି, ସମୁଦାୟ ନ ହେଉ ପଛକେ, ଅଧିକାଂଶ ଘଟଣା—ଅଧିକାଂଶ ବିଷୟକୁ ବ୍ୟାଖ୍ୟା କରିପାରେ, ତାହା

ହିଁ ଗ୍ରହଣୀୟ । ସୁତରାଂ ଏହା ଅଧିକ ଯୁକ୍ତିସଙ୍ଗତ ଯେ, ଯେଉଁ ଶକ୍ତି ଜଡ଼ରାଶି ଗ୍ରହଣ କରି ତନ୍ମଧ୍ୟରୁ ଶରୀର ଗଠନ କରେ, ପୁଣି ଯେଉଁ ଶକ୍ତି ଶରୀର ମଧ୍ୟରେ ପ୍ରକାଶିତ ରହିଛନ୍ତି—ଏ ଉଭୟେ ଅଭେଦ । ଅତଏବ ଯେଉଁ ଚିନ୍ତାଶକ୍ତି ଆମ ଦେହରେ ପ୍ରକାଶିତ ହେଉଛି ତାହା କେବଳ ଜଡ଼ାଣୁର ସଂଯୋଗୋତ୍ପନ୍ନ; ସୁତରାଂ ତାହାର ଦେହ ନିରପେକ୍ଷ ଅସ୍ତିତ୍ୱ ନାହିଁ—ଏହି କଥା ନିରର୍ଥକ । ପୁଣି ଶକ୍ତି କୌଣସି ସମୟରେ ଜଡ଼ରୁ ଉତ୍ପନ୍ନ ହୋଇପାରେ ନାହିଁ; ବରଂ ଏହା ପ୍ରମାଣ କରିବା ଅଧିକ ସମ୍ଭବ ଯେ, ଯାହାକୁ ଆମେ ଜଡ଼ ବୋଲି କହୁଁ, ତାହାର ଅସ୍ତିତ୍ୱ ନାହିଁ । ତାହା କେବଳ ଶକ୍ତିର ଏକ ବିଶେଷ ଅବସ୍ଥା ମାତ୍ର । ଏ କଥା ପ୍ରମାଣ କରାଯାଇପାରେ ଯେ କାଠିନ୍ୟ ପ୍ରଭୃତି ଜଡ଼ର ଗୁଣଗୁଡ଼ିକ ବିଭିନ୍ନ ପ୍ରକାର ସ୍ପନ୍ଦନର ଫଳ । ଜଡ଼ ପରମାଣୁ ଭିତରେ ପ୍ରବଳ କମ୍ପନ ଉତ୍ପାଦନ କଲେ ଏହା ଖୁବ୍ କଠିନ ପଦାର୍ଥ ପରି ଶକ୍ତି ଲାଭ କରିବ । ଯଦି ବାୟୁରାଶି ଘୂର୍ଣ୍ଣାବର୍ତ୍ତିରେ ପରିଣତ ହୁଏ, ତାହାହେଲେ ତାହା କଠିନ ପଦାର୍ଥ ପରି ହେବ, କଠିନ ପଦାର୍ଥ ଭେଦ କରି ଚାଲିଯିବ । ବିଚାର କଲେ ଏହା ବରଂ ପ୍ରମାଣ କରିବା ସହଜ ହେବ ଯେ, ଆମେ ଯାହାକୁ ଭୂତ ବୋଲି କହୁଛୁଁ, ତାହାର କୌଣସି ଅସ୍ତିତ୍ୱ ନାହିଁ, କିନ୍ତୁ ଅପର ମତଟିକୁ ପ୍ରମାଣ କରାଯାଇପାରିବ ନାହିଁ ।

ଶରୀର ଭିତରେ ଏହି ଯେଉଁ ଶକ୍ତିର ବିକାଶ ଦେଖା ଯାଉଅଛି, ତାହା କ'ଣ ? ଆମେ ସମସ୍ତେ ହିଁ ଏହା ସହଜରେ ବୁଝିପାରୁ—ଏହି ଶକ୍ତି ଯାହା ହେଉନା କାହିଁକି, ଏହା ଜଡ଼-ପରମାଣୁଗୁଡ଼ିକୁ ନେଇ ତହିଁରୁ ଆକୃତି-ବିଶେଷ ମଣିଷ-ଦେହ ଗଠନ କରୁଅଛି । ଆଉ କେହି ଆସି ତୁମ ପାଇଁ କି ମୋ ପାଇଁ ଶରୀର ଗଢ଼ି ଦିଏ ନାହିଁ । ଅନ୍ୟ ଜଣେ ମୋ ପାଇଁ ଖାଉଛି—ଏହା ମୁଁ କେବେହେଲେ ଦେଖୁନାହିଁ । ମୋତେ ଏହି ଖାଦ୍ୟର ସାର ଶରୀରରେ ଗ୍ରହଣ କରି ତହିଁରୁ ରକ୍ତ, ମାଂସ, ଅସ୍ଥି ପ୍ରଭୃତି ସମୁଦାୟ ହିଁ ଗଠନ କରିବାକୁ ହୁଏ । ଏହି ଅଦ୍ଭୁତ ଶକ୍ତିଟି କ'ଣ ? ଭୂତ, ଭବିଷ୍ୟତ ସମ୍ବନ୍ଧରେ କୌଣସି ପ୍ରକାର ସିଦ୍ଧାନ୍ତ ମନୁଷ୍ୟ ପକ୍ଷରେ ଭୟାବହ ବୋଧହୁଏ; ଅନେକଙ୍କ ପକ୍ଷରେ ତାହା କେବଳ ଆନୁମାନିକ ବ୍ୟାପାର ବୋଲି ପ୍ରତୀତ ହୁଏ । ସୁତରାଂ ବର୍ତ୍ତମାନ କାଳରେ କ'ଣ ହୁଏ, ଆମେମାନେ ତାହା ହିଁ ବୁଝିବାକୁ ଚେଷ୍ଟା କରିବା ।

ଆମେ 'ବର୍ତ୍ତମାନ' ବିଷୟଟିକୁ ଗ୍ରହଣ କରିବୁଁ । ଏବେ ଯେଉଁ ଶକ୍ତି ଏହିକ୍ଷଣି ମୋର ଭିତରଦେଇ କାର୍ଯ୍ୟ କରୁଛି ସେ ଶକ୍ତିଟା କ'ଣ ? ଆମେମାନେ ଦେଖି-ଅଛୁ, ସବୁ ପ୍ରାଚୀନ ଶାସ୍ତ୍ରରେ ଏହି ଶକ୍ତିକୁ ଲୋକେ ଏହି ଶରୀର ସଦୃଶ ଏକ ଜ୍ୟୋତିର୍ମୟ ପଦାର୍ଥ ବୋଲି ମନେ କରୁଥିଲେ । ସେମାନେ ବିଶ୍ୱାସ କରୁଥିଲେ ଯେ ତାହା ଏହି ଶରୀର ନଷ୍ଟ ହେଲେ ମଧ୍ୟ ରହିବ । କ୍ରମଶଃ ଆମେ ଦେଖିବାକୁ ପାଉଁ, ଏହି ଜ୍ୟୋତିର୍ମୟ ଦେହମାତ୍ର ବୋଲି କହିଲେ ସନ୍ତୋଷ ହେଉନାହିଁ, ଆଉ ଏକ ଉଚ୍ଚତର ଭାବ ଲୋକଙ୍କ ମନକୁ ଅଧିକାର କରୁଅଛି—ତାହା ଏହି ଯେ, କୌଣସି ପ୍ରକାର ଜ୍ୟୋତିର୍ମୟ ଶରୀର ଶକ୍ତିର ସ୍ଥଳାଭିଷିକ୍ତ ହୋଇପାରେ ନାହିଁ । ଯାହାର ଆକୃତି

ଅଛି ତାହା ହିଁ କେତେକ ପରମାଣୁର ସଂହତି ମାତ୍ର । ସୁତରାଂ ତାହାକୁ ପରିଚାଳିତ କରିବାକୁ ଆଉରି କିଛିର ପ୍ରୟୋଜନ । ଯଦି ଏହି ଶରୀରକୁ ଗଠନ ଓ ପରିଚାଳନ କରିବାରେ ଏହି ଶରୀରାତିରିକ୍ତ କିଛିର ପ୍ରୟୋଜନ ହୁଏ, ତାହାହେଲେ ସେହି କାରଣରୁ ଜ୍ୟୋତିର୍ମୟ ଦେହର ଗଠନ ପରିଚାଳନାରେ ସେହି ତଦ୍ଦେହାତିରିକ୍ତ ଆଉ କିଛିର ପ୍ରୟୋଜନ ହେବ । ଏହି 'ଆଉ କିଛି' ହିଁ ଆତ୍ମା ନାମରେ ଅଭିହିତ ହେଲା । ଆତ୍ମା ହିଁ ଯେପରିକି ଏହି ଜ୍ୟୋତିର୍ମୟ ଦେହର ମଧ୍ୟଦେଇ ସ୍ଥୂଳ ଶରୀର ଉପରେ କାର୍ଯ୍ୟ କରୁଅଛନ୍ତି । ଏହି ଜ୍ୟୋତିର୍ମୟ ଦେହ ହିଁ ମନର ଆଧାର ବୋଲି ବିବେଚିତ ହୁଏ, ଆଉ ଆତ୍ମା ତାହାର ଅତୀତ । ଆତ୍ମା ମନ ନୁହଁନ୍ତି; ସେ ମନ ଉପରେ କାର୍ଯ୍ୟ କରନ୍ତି ଏବଂ ମନ ମଧ୍ୟଦେଇ ଶରୀର ଉପରେ କାର୍ଯ୍ୟ କରନ୍ତି । ତୁମର ଗୋଟିଏ ଆତ୍ମା ଅଛି । ମୋର ମଧ୍ୟ ଗୋଟିଏ ଆତ୍ମା ଅଛି । ପ୍ରତ୍ୟେକର ପୃଥକ୍ ଆତ୍ମା ଅଛି ଏବଂ ଗୋଟିଏ ଗୋଟିଏ ସୂକ୍ଷ୍ମ ଶରୀର ମଧ୍ୟ ଅଛି । ଏହି ସୂକ୍ଷ୍ମ ଶରୀର ସାହାଯ୍ୟରେ ଆମେମାନେ ସ୍ଥୂଳ ଶରୀର ଉପରେ କାର୍ଯ୍ୟ କରିଥାଉଁ । ବର୍ତ୍ତମାନ ଏହି ଆତ୍ମା ଓ ତା'ର ସ୍ୱରୂପ ସମ୍ବନ୍ଧରେ ପ୍ରଶ୍ନ ଘଟିବା ହେବାକୁ ଲଗିଲା । ଶରୀର ଓ ମନଠାରୁ ପୃଥକ୍ ହୋଇଥିବା ଏହି ଆତ୍ମାର ସ୍ୱରୂପ କ'ଣ ? ଅନେକ ବାଦ ପ୍ରତିବାଦ ହେବାକୁ ଲଗିଲା । ନାନାବିଧ ସିଦ୍ଧାନ୍ତ ଓ ଅନୁମାନ ହେବାକୁ ଲଗିଲା । ନାନାପ୍ରକାର ଦାର୍ଶନିକ ଅନୁସନ୍ଧାନ ଚାଲିଲା । ମୁଁ ଆପଣମାନଙ୍କ ସମକ୍ଷରେ ଏହି ଆତ୍ମା ସମ୍ବନ୍ଧରେ ସେମାନେ ଯେଉଁ କେତେକ ସିଦ୍ଧାନ୍ତରେ ଉପନୀତ ହୋଇଥିଲେ, ତାହା ବର୍ଣ୍ଣନା କରିବାକୁ ଚେଷ୍ଟା କରିବି । ଭିନ୍ନ ଭିନ୍ନ ଦର୍ଶନର ଏହି ଏକ ବିଷୟରେ ମତୈକ୍ୟ ଦେଖାଯାଏ ଯେ, ଆତ୍ମାର ସ୍ୱରୂପ ଯାହା ହେଉ ନା କାହିଁକି, ତାହାର କୌଣସି ଆକୃତି ନାହିଁ ଏବଂ ଯାହାର ଆକୃତି ନାହିଁ, ତାହା ନିଶ୍ଚୟ ସର୍ବବ୍ୟାପୀ ହେବ । କାଳ ମନର ଅନ୍ତର୍ଗତ—ଦେଶ ମଧ୍ୟ ମନର ଅନ୍ତର୍ଗତ । କାଳ ବ୍ୟତୀତ କାର୍ଯ୍ୟ-କାରଣ ଭାବ ରହି ପାରିବ ନାହିଁ । କ୍ରମବର୍ତ୍ତିତାର ଭାବ ବ୍ୟତୀତ କାର୍ଯ୍ୟ-କାରଣ ଭାବ ମଧ୍ୟ ରହିପାରିବ ନାହିଁ । ଅତଏବ ଦେଶକାଳନିମିତ୍ତ ମନର ଅନ୍ତର୍ଗତ । ପୁଣି ଏହି ଆତ୍ମା ମନର ଅତୀତ ଓ ନିରାକାର ହୋଇଥିବାରୁ ତାହା ବି ଦେଶକାଳନିମିତ୍ତର ଅତୀତ । ଆଉ ଏହା ଯଦି ଦେଶକାଳନିମିତ୍ତର ଅତୀତ ହୁଏ, ତାହାହେଲେ ତାହା ନିଶ୍ଚୟ ଅନନ୍ତ ହେବ । ଏଥର ହିନ୍ଦୁ ଦର୍ଶନର ଚୂଡ଼ାନ୍ତ ବିଚାର ଆସିଲା । ଅନନ୍ତ କଦାପି ଦୁଇଟି ହୋଇପାରେ ନାହିଁ । ଯଦି ଆତ୍ମା ଅନନ୍ତ ହୁଏ, ତେବେ କେବଳ ଗୋଟିଏ ମାତ୍ର ଆତ୍ମା ରହିପାରେ; ଆଉ ଏହି ଯେ ଅନେକ ଆତ୍ମା ବୋଲି ବିଭିନ୍ନ ଧାରଣା ରହିଛି—ତୁମର ଗୋଟିଏ ଆତ୍ମା ଏବଂ ମୋର ଆଉ ଗୋଟିଏ ଆତ୍ମା—ଏହା ସତ୍ୟ ନୁହେଁ ।

ଅତଏବ ମନୁଷ୍ୟର ପ୍ରକୃତ ସ୍ୱରୂପ ଏକମାତ୍ର, ଅନନ୍ତ ଓ ସର୍ବବ୍ୟାପୀ । ଆଉ ଏହି ବ୍ୟାବହାରିକ ଜୀବ ମନୁଷ୍ୟର ଏହି ପ୍ରକୃତ ସ୍ୱରୂପର ସୀମାବଦ୍ଧ ଭାବମାତ୍ର । ଏହି ଦୃଷ୍ଟିରୁ ପୂର୍ବୋକ୍ତ ପୌରାଣିକ ତତ୍ତ୍ୱଗୁଡ଼ିକ ସତ୍ୟ ହୋଇପାରେ ଯେ, ଏହି

ବ୍ୟାବହାରିକ ଜୀବ, ସେ ଯେତେଦୂର ବଡ଼ ହେଉନା କାହିଁକି, ମନୁଷ୍ୟର ଏହି ଅତୀନ୍ଦ୍ରିୟ ପ୍ରକୃତ ସ୍ୱରୂପର ଅସ୍ପଷ୍ଟ ପ୍ରତିବିମ୍ବ ମାତ୍ର । ଅତଏବ ମନୁଷ୍ୟର ପ୍ରକୃତ ସ୍ୱରୂପ—ଆତ୍ମା—କାର୍ଯ୍ୟକାରଣର ଅତୀତ ବୋଲି, ଦେଶକାଳର ଅତୀତ ବୋଲି, ଅବଶ୍ୟ ହିଁ ମୁକ୍ତସ୍ୱଭାବ । ସେ କଦାପି ବଦ୍ଧ ନ ଥିଲେ । ତାହାଙ୍କୁ ବଦ୍ଧ କରିବାର ଶକ୍ତି କାହାରି ନ ଥିଲା । ଏହି ବ୍ୟାବହାରିକ ଜୀବ, ଏହି ପ୍ରତିବିମ୍ବ ଦେଶକାଳନିମିତ୍ତ-ଦ୍ୱାରା ସୀମାବଦ୍ଧ, ସୁତରାଂ ସେ ବନ୍ଧନଗ୍ରସ୍ତ, ଆବଦ୍ଧ । ଅଥବା ଆମମାନଙ୍କର କୌଣସି କୌଣସି ଦାର୍ଶନିକଙ୍କ ଭାଷାରେ କହିବାକୁ ହୁଏ, 'ବୋଧହୁଏ ସେ ଯେପରି ବଦ୍ଧ ହୋଇ ରହିଛନ୍ତି; କିନ୍ତୁ ବାସ୍ତବିକ ସେ ବଦ୍ଧ ନୁହନ୍ତି ।' ଆମମାନଙ୍କ ଆତ୍ମା ଭିତରେ ଯଥାର୍ଥ ସତ୍ୟ ଏହିତକି—ଏହି ସର୍ବବ୍ୟାପୀ, ଅନନ୍ତ, ଚୈତନ୍ୟସ୍ୱଭାବ; ଆମେମାନେ ସ୍ୱଭାବତଃ ହିଁ ତାହା—ଚେଷ୍ଟା କରି ଆଉ ଆମମାନଙ୍କୁ ତାହା ହେବାକୁ ହୁଏ ନାହିଁ । ପ୍ରତ୍ୟେକ ଆତ୍ମା ହିଁ ଅନନ୍ତ—ସୁତରାଂ ଜନ୍ମମୃତ୍ୟୁର ପ୍ରଶ୍ନ ମଧ୍ୟ ଆସି ପାରେ ନାହିଁ । କେତେଗୁଡ଼ିଏ ପିଲା ପରୀକ୍ଷା ଦେଉଥିଲେ । ପରୀକ୍ଷକ କଠିନ କଠିନ ପ୍ରଶ୍ନ ପଚାରୁଥିଲେ । ତା ମଧ୍ୟରେ ଏହି ପ୍ରଶ୍ନଟି ଥିଲା—'ପୃଥିବୀ କାହିଁକି ପଡ଼ିଯାଏ ନାହିଁ ?' ପରୀକ୍ଷକ ମାଧ୍ୟାକର୍ଷଣର ନିୟମ ପ୍ରଭୃତି ଉତ୍ତର ପାଇବାକୁ ଇଚ୍ଛା କରୁଥିଲେ । ଅଧିକାଂଶ ବାଳକ ବାଳିକା କୌଣସି ଉତ୍ତର ଦେଇପାରି ନ ଥିଲେ । କେହି କେହି ମାଧ୍ୟାକର୍ଷଣ ବା ଆଉ କିଛି କହି ଉତ୍ତର ଦେବାକୁ ଲାଗିଲେ । ସେମାନଙ୍କ ମଧ୍ୟରେ ଜଣେ ବୁଦ୍ଧିମତୀ ବାଳିକା ଆଉ ଗୋଟିଏ ପ୍ରଶ୍ନ କରି ଏହି ପ୍ରଶ୍ନର ଉତ୍ତର ଦେଲେ—'ତାହା କେଉଁଠି ପଡ଼ିବ ?' ଏହି ପ୍ରଶ୍ନଟି ଭୁଲ, ପୃଥିବୀ ପଡ଼ିବ କେଉଁଠି ? ପୃଥିବୀ ପକ୍ଷରେ ପତନ ବା ଉତ୍ଥାନ କିଛି ହିଁ ନାହିଁ । ଅନନ୍ତ ଦେଶ ପକ୍ଷରେ ଉଚ୍ଚ ନୀଚ ବୋଲି କିଛି ନାହିଁ । ଏହା କେବଳ ଆପେକ୍ଷିକ । ଅନନ୍ତ କେଉଁଆଡ଼େ ବା ଯିବ, କେଉଁଆଡ଼ୁ ବା ଆସିବ ?

ଯେତେବେଳେ ମନୁଷ୍ୟ ଭୂତ ଭବିଷ୍ୟତର ଚିନ୍ତା—ବା ତା ନିଜ ବିଷୟରେ କଅଣ କଅଣ ହେବ, ଏହି ଚିନ୍ତା ତ୍ୟାଗ କରିପାରେ, ଯେତେବେଳେ ସେ ଦେହକୁ ସୀମାବଦ୍ଧ, ତେଣୁ ଉତ୍ପତ୍ତି-ବିନାଶଶୀଳ ବୋଲି ଜାଣି ଦେହାଭିମାନ ତ୍ୟାଗ କରିପାରେ, ସେତେବେଳେ ହିଁ ସେ ଏକ ଉଚ୍ଚତର ଅବସ୍ଥାରେ ଉପନୀତ ହୁଏ । ଆତ୍ମା ଦେହ ବି ନୁହନ୍ତି, ମନ ବି ନୁହନ୍ତି । କାରଣ ସେମାନଙ୍କର ହ୍ରାସ ବୃଦ୍ଧି ଅଛି । ଜଡ଼ ଜଗତର ଅତୀତ ଆତ୍ମା ହିଁ କେବଳ ଅନନ୍ତକାଳ ରହିପାରନ୍ତି । ଶରୀର ଓ ମନ ପ୍ରତିନିୟତ ପରିବର୍ତ୍ତନଶୀଳ । ଏମାନେ ପରିବର୍ତ୍ତନଶୀଳ କେତେଗୁଡ଼ିଏ ଘଟଣାବଳୀର ନାମମାତ୍ର । ଏମାନେ ଯେପରି କି ନଦୀ ସ୍ୱରୂପ । ତାହାର ପ୍ରତ୍ୟେକ ଜଳ-ପରମାଣୁ ନିୟତ ପରିବର୍ତ୍ତନଶୀଳ ପ୍ରବାହର ଅନ୍ତର୍ଗତ । ତଥାପି ଆମେ ଦେଖୁଛୁଁ, ତାହା ସେହି ଏକ ନଦୀ । ଏହି ଦେହର ପ୍ରତ୍ୟେକ ପରମାଣୁ ହିଁ ନିୟତ ପରିଣାମଶୀଳ; କୌଣସି ବ୍ୟକ୍ତିର କେତେକ ମୁହୂର୍ତ୍ତ ପାଇଁ ସୁଦ୍ଧା ଏକପ୍ରକାର ଶରୀର ରହେ ନାହିଁ । ତଥାପି ମନ

ଉପରେ ଏକପ୍ରକାର ସଂସ୍କାରବଶତଃ ଆମେ ତାହାକୁ ଏକ ଶରୀର ବୋଲି ବିବେଚନା କରୁଁ । ମନସମ୍ବନ୍ଧରେ ବି ଏହିପରି, କ୍ଷଣେ ସୁଖୀ, କ୍ଷଣେ ଦୁଃଖୀ, କ୍ଷଣେ ସବଳ, କ୍ଷଣେ ଦୁର୍ବଳ; କ୍ରମାଗତ ପରିଣାମଶୀଳ ଘୂର୍ଣ୍ଣିବିଶେଷ ! ତେଣୁ ତାହା ମଧ୍ୟ ଆତ୍ମା ହୋଇପାରେ ନାହିଁ, ଆତ୍ମା ଅନନ୍ତ । ପରିବର୍ତ୍ତନ କେବଳ ସସୀମ ବସ୍ତୁରେ ହିଁ ସମ୍ଭବ । ଅନନ୍ତର କୌଣସି ପରିବର୍ତ୍ତନ ହୁଏ, ତାହା ଅସମ୍ଭବ କଥା, ତାହା କଦାପି ହୋଇ ନ ପାରେ । ଶରୀର ଦୃଷ୍ଟିରୁ ତୁମେ ଓ ମୁଁ ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ଯାଇପାରିବା । ଜଗତର ପ୍ରତ୍ୟେକ ଅଣୁ ପରମାଣୁ ହିଁ ନିତ୍ୟ ପରିଣାମଶୀଳ; କିନ୍ତୁ ଜଗତକୁ ସମଷ୍ଟିରୂପରେ ଧରିଲେ ସେଥିରେ ଗତି ବା ପରିବର୍ତ୍ତନ ଅସମ୍ଭବ । ଗତି ସର୍ବଦା ହିଁ ଆପେକ୍ଷିକ । ମୁଁ ଯେତେବେଳେ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ଯାଏ, ତାହା ଅନ୍ୟ କୌଣସି ଗୋଟିଏ ସ୍ଥିର ବସ୍ତୁ ସହିତ ତୁଳନା କରି ବୁଝିବାକୁ ହେବ, ଜଗତ୍ର କୌଣସି ଏକ ପରମାଣୁ ଅନ୍ୟ ଏକ ପରମାଣୁ ତୁଳନାରେ ପରିଣାମ-ପ୍ରାପ୍ତ ହୋଇପାରେ, କିନ୍ତୁ ସମସ୍ତ ଜଗତ୍କୁ ସମଷ୍ଟିଭାବେ ଧରିଲେ କାହା ସହିତ ତୁଳନାରେ ତାହା ସ୍ଥାନ ପରିବର୍ତ୍ତନ କରିବ ? ଏହି ସମଷ୍ଟିରୁ ଅତିରିକ୍ତ ଆଉ କିଛି ନାହିଁ । ଅତଏବ ଏହି ଅନନ୍ତ, 'ଏକମେବାଦ୍ୱିତୀୟଂ' ଅପରିଣାମୀ, ଅଚଳ ଓ ପୂର୍ଣ୍ଣ ଏବଂ ତାହା ହିଁ ପାରମାର୍ଥିକ ସତ୍ତା । ସୁତରାଂ ସର୍ବବ୍ୟାପୀଙ୍କ ଭିତରେ ହିଁ ସତ୍ୟ ଅଛି, ସାନ୍ତ ଭିତରେ ନୁହେଁ । ଯେତେ ଆରାମପ୍ରଦ ହେଉନା କାହିଁକି, ଆମେମାନେ କ୍ଷୁଦ୍ର, ସଦା ପରିଣାମୀ ଜୀବ—ଏହି ଧାରଣା ପ୍ରାଚୀନ ଭ୍ରମ ଜ୍ଞାନ ମାତ୍ର । ଯଦି କୌଣସି ବ୍ୟକ୍ତିବିଶେଷକୁ କୁହାଯାଏ—ତୁମେ ସର୍ବବ୍ୟାପୀ ଅନନ୍ତ ପୁରୁଷ, ତାହାହେଲେ ସେ ଭୟବିହ୍ୱଳ ହୋଇପଡ଼େ । ପ୍ରତ୍ୟେକଙ୍କ ଭିତରଦେଇ ତୁମେ କାର୍ଯ୍ୟ କରୁଛ, ପ୍ରତ୍ୟେକଙ୍କ ଚରଣଦ୍ୱାରା ତୁମେ ଚାଲୁଛ, ପ୍ରତ୍ୟେକଙ୍କ ମୁଖଦେଇ ତୁମେ କଥା କହୁଛ, ପ୍ରତ୍ୟେକଙ୍କ ନାସିକାଦ୍ୱାରା ତୁମେ ଶ୍ୱାସ ପ୍ରଶ୍ୱାସ କାର୍ଯ୍ୟ ନିର୍ବାହ କରୁଛ—ଏହି କଥା ଲୋକଙ୍କୁ କହିଲେ ସେମାନେ ଭୟ ପାଇଥାନ୍ତି । ସେମାନେ ତୁମକୁ ବାରମ୍ବାର କହିବେ—ଏହି 'ଅହଂ' ଜ୍ଞାନ କେତେବେଳେ ହେଲେ ଯିବ ନାହିଁ । ଲୋକମାନଙ୍କର ଏହି 'ମୁଁ ତ୍ୱ'ଟି କଅଣ, ତାହା ଦେଖିବାକୁ ପାଇଲେ ସୁଖୀ ହୁଅନ୍ତି ।

ଛୋଟ ଶିଶୁର ଦାଢ଼ି ନ ଥାଏ, ବଡ଼ ହେଲେ ସେମାନଙ୍କର ଦାଢ଼ିଦାଢ଼ି ହୁଏ । ଯଦି 'ମୁଁ ତ୍ୱ' ଶରୀରଗତ ହୁଏ, ତାହାହେଲେ ତ ବାଳକର 'ମୁଁ ତ୍ୱ' ନଷ୍ଟ ହୋଇଗଲା । ଯଦି 'ମୁଁ ତ୍ୱ' ଶରୀରଗତ, ତେବେ ମୋର ଗୋଟିଏ ଚକ୍ଷୁ ବା ଗୋଟିଏ ହସ୍ତ ନଷ୍ଟ ହୋଇଗଲେ 'ମୁଁ ତ୍ୱ' ମଧ୍ୟ ନଷ୍ଟ ହୋଇଗଲା ! ମଦ୍ୟପର ମଦ ଛାଡ଼ିବା ଉଚିତ ନୁହେଁ । କାରଣ ତଦ୍ୱାରା ତାହାର 'ମୁଁ ତ୍ୱ' ନଷ୍ଟ ହୋଇଯିବ । ଚୋରର ସାଧୁ ହେବା ଉଚିତ ନୁହେଁ । ତାହା ହେବା ଫଳରେ ତା'ର 'ମୁଁ ତ୍ୱ' ଚାଲିଯିବ ! କାହାର ବି ଏହି ଭୟରେ ନିଜର ଅଭ୍ୟାସ ତ୍ୟାଗ କରିବା ଉଚିତ ନୁହେଁ । ଅନନ୍ତ ବ୍ୟତୀତ ଆଉ କାହାର ହେଲେ 'ମୁଁ ତ୍ୱ' ନାହିଁ । ଏହି ଅନନ୍ତର ହିଁ କେବଳ ପରିଣାମ ହୁଏ ନାହିଁ । ଅନ୍ୟସବୁ କ୍ରମାଗତ

ପରିଣାମଶୀଳ । 'ମୁଁ ତ୍ୱ' ସ୍ମୃତିରେ ବି ନାହିଁ । ଯଦି ସ୍ମୃତିରେ 'ମୁଁ ତ୍ୱ' ଆଆନ୍ତା, ତାହାହେଲେ ମସ୍ତକରେ ପ୍ରବଳ ଆଘାତ ଲଗିବା ଫଳରେ ଅତୀତ ସ୍ମୃତି ବିଲୁପ୍ତ ହୋଇଗଲେ ଆମର 'ମୁଁ ତ୍ୱ' ନଷ୍ଟ ହୁଅନ୍ତା, ତାହାହେଲେ 'ମୁଁ' ମଧ୍ୟ ଏକାବେଳକେ ଲୋପ ପାଆନ୍ତା । ପିଲାଦିନର ଦୁଇ ତିନି ବର୍ଷ ବେଳର କଥା ମୋର ମନେ ନାହିଁ । ଯଦି ସ୍ମୃତି ଉପରେ ଆମମାନଙ୍କର ଅସ୍ତିତ୍ୱ ନିର୍ଭର କରେ, ତାହାହେଲେ ଏହି ଦୁଇ ତିନି ବର୍ଷ ପର୍ଯ୍ୟନ୍ତ ଆମମାନଙ୍କର ଅସ୍ତିତ୍ୱ ନ ଥିଲି ବୋଲି କହିବାକୁ ହେବ । ତାହା ହେଲେ ଜୀବନର ଯେଉଁ ଅଂଶତକ ମୋର ମନେ ନାହିଁ, ସେହି ସମୟରେ ହିଁ ମୁଁ ଜୀବିତ ଥିଲି ବୋଲି କହିହେବ ନାହିଁ ।

ଏହା ଅବଶ୍ୟ 'ମୁଁ ତ୍ୱ' ସମ୍ବନ୍ଧୀୟ ଖୁବ୍ ସଙ୍କୀର୍ଣ୍ଣ ଧାରଣା । ବର୍ତ୍ତମାନ ବି ଆମେ 'ମୁଁ' ନାହୁଁ । ଆମେ ଏହି 'ମୁଁ ତ୍ୱ' ଲାଭ ନିମିତ୍ତ ଚେଷ୍ଟା କରୁଅଛୁ—ତାହା ଅନନ୍ତ, ତାହା ହିଁ ମନୁଷ୍ୟର ପ୍ରକୃତ ସ୍ୱରୂପ । ଯାହାର ଜୀବନ ସମଗ୍ର ଜଗତବ୍ୟାପୀ ସେ ପ୍ରକୃତ ଜୀବିତ; ଯେତେ ପରିମାଣରେ ଆମେ ଆମର ଜୀବନକୁ ଶରୀରରୂପକ କ୍ଷୁଦ୍ର କ୍ଷୁଦ୍ର ସାନ୍ତ ପଦାର୍ଥ ମଧ୍ୟରେ ଆବଦ୍ଧ କରି ରଖୁ, ସେତିକ ବେଗରେ ଆମେମାନେ ମୃତ୍ୟୁ ଆଡ଼କୁ ଅଗ୍ରସର ହେଉ । ଯେଉଁ ମୁହୂର୍ତ୍ତରେ ଆମ ଜୀବନ ସମଗ୍ର ଜଗତରେ ବ୍ୟାପ୍ତ ଥାଏ, ଯେଉଁ ମୁହୂର୍ତ୍ତରେ ତାହା ଅନ୍ୟମାନଙ୍କ ମଧ୍ୟରେ ବ୍ୟାପ୍ତ ଥାଏ, ସେହି ମୁହୂର୍ତ୍ତରେ ହିଁ ଆମେମାନେ ଜୀବିତ । ପୁଣି ଯେଉଁ ସମୟତକ ଆମେ ନିଜକୁ କ୍ଷୁଦ୍ର ଜୀବନର ପରିସର ଭିତରେ ଆବଦ୍ଧ କରି ରଖୁ, ସେହି ମୁହୂର୍ତ୍ତରେ ହିଁ ମୃତ୍ୟୁ ଏବଂ ଏଇଥିପାଇଁ ଆମର ମୃତ୍ୟୁଭୟ ଆସିଥାଏ । ମୃତ୍ୟୁଭୟ ସେତିକବେଳେ ହିଁ ଜୟ କରି-ଯାଇପାରେ, ଯେତେବେଳେ ମନୁଷ୍ୟ ଉପଲବ୍ଧି କରିବ ଯେ, ଯେତେଦିନ ଏହି ଜଗତରେ ଗୋଟିଏ ମାତ୍ର ଜୀବନ ରହିଛି, ସେତେଦିନ ସେ ମଧ୍ୟ ଜୀବିତ । ଲୋକେ ଏଭଳି ବି ଉପଲବ୍ଧି କରିଥାଆନ୍ତି ଯେ, 'ମୁଁ ସକଳ ବସ୍ତୁରେ, ସକଳ ଦେହରେ ବିଦ୍ୟମାନ; ସମସ୍ତ ଜନ୍ତୁ ମଧ୍ୟରେ ମୁଁ ବିଦ୍ୟମାନ, ମୁଁ ହିଁ ଏହି ଜଗତ୍ । ସମଗ୍ର ଜଗତ୍ ହିଁ ମୋର ଶରୀର । ଯେତେଦିନ ଗୋଟିଏ ମାତ୍ର ପରମାଣୁ ରହିଅଛି, ସେତେଦିନ ମୋର ମୃତ୍ୟୁର ସମ୍ଭାବନା ଅଛି କି ?' ସେତେବେଳେ ଏଭଳି ବ୍ୟକ୍ତି ନିର୍ଭୟ ହୋଇଯାଆନ୍ତି । ସେହି ସମୟରେ ହିଁ ନିର୍ଭୀକତା ଆସି ଉପସ୍ଥିତ ହୁଏ । ନିୟତ ପରିଣାମଶୀଳ କ୍ଷୁଦ୍ର କ୍ଷୁଦ୍ର ବସ୍ତୁ ମଧ୍ୟରେ ଅବିନାଶିତ୍ୱ ଅଛି ବୋଲି କହିବା ବାତୁଳତା ମାତ୍ର । ଜଣେ ପ୍ରାଚୀନ ଭାରତୀୟ ଦାର୍ଶନିକ କହିଛନ୍ତି—'ଆତ୍ମା ଅନନ୍ତ । ସୁତରାଂ ଆତ୍ମା ହିଁ କେବଳ 'ମୁଁ' ହୋଇପାରେ । ଅନନ୍ତକୁ କଦାପି ଭାଗ କରାଯାଇ ନ ପାରେ । ଅନନ୍ତକୁ ଖଣ୍ଡ ଖଣ୍ଡ କରାଯାଇପାରିବ ନାହିଁ ।' ଏହି ଏକ ଅବିଭକ୍ତ ସମଷ୍ଟି-ସ୍ୱରୂପ ଅନନ୍ତ ଆତ୍ମା ରହିଛନ୍ତି, ସେହି ହିଁ ମନୁଷ୍ୟର ଯଥାର୍ଥ 'ମୁଁ'; ସେ 'ପ୍ରକୃତ ମନୁଷ୍ୟ' । ମନୁଷ୍ୟ ବୋଲି ଯାହା ବୁଝାଯାଏ, ତାହା କେବଳ ଏହି 'ମୁଁ'କୁ ବ୍ୟକ୍ତଜଗତ୍ ଭିତରେ ପ୍ରକାଶ କରିବାର ଚେଷ୍ଟାର ଫଳମାତ୍ର । ପୁଣି ଆତ୍ମା ଭିତରେ

କଦାପି 'ଜନ୍ମବକାଶ' ରହି ନ ପାରେ । ଅସାଧୁ ସାଧୁ ହେଉଅଛୁ, ପଶୁ ମନୁଷ୍ୟ ହେଉଅଛୁ, ଏସବୁ କଦାପି ଆତ୍ମାରେ ହୁଏ ନାହିଁ । ମନେକର, ଯେପରକ ଗୋଟିଏ ଯବନକା ରହିଛି ଏବଂ ତା ମଧ୍ୟରେ ଏକ କ୍ଷୁଦ୍ର ଛିଦ୍ର ରହିଛି । ତାହାର ଭିତରଦେଇ ମୋର ସମ୍ମୁଖସ୍ଥ କେତେଗୁଡ଼ିଏ ମୁଖମଣ୍ଡଳ ଦେଖିବାକୁ ପାଉଛି । ଏହି ଛିଦ୍ର ଯେତେ ବଡ଼ ହେଉଥାଏ ସମ୍ମୁଖସ୍ଥ ଦୃଶ୍ୟ ମୋ ନକଟରେ ସେତେ ଅଧିକରୁ ଅଧିକ ସ୍ପଷ୍ଟ ହେଉଥାଏ । ପୁଣି ଯେତେବେଳେ ଏହି ଛିଦ୍ରଟି ସମସ୍ତ ଯବନକାଟିକୁ ବ୍ୟାପିଯାଏ ସେତେବେଳେ ମୁଁ ତୁମମାନଙ୍କୁ ସ୍ପଷ୍ଟ ଦେଖିବାକୁ ପାଇଥାଏଁ । ଏଠାରେ ତୁମର କୌଣସି ପରବର୍ତ୍ତନ ଘଟି ନାହିଁ—ତୁମେ ଯାହା ତାହା ହିଁ ଥିଲ, ଛିଦ୍ରଟିର ହିଁ ଜନ୍ମବକାଶ ହେଉଥିଲା, ଆଉ ତା ସଙ୍ଗେ ସଙ୍ଗେ ତୁମର ପ୍ରକାଶ ହେଉଥିଲା । ଆତ୍ମା ସମ୍ବନ୍ଧରେ ବ ଠିକ୍ ଏହିପର । ତୁମେ ମୁକ୍ତସ୍ୱଭାବ ଓ ପୂର୍ଣ୍ଣ ହୋଇ ରହିଛ । ଚେଷ୍ଟା କର ଏହାକୁ ପାଇବାକୁ ହୁଏ ନାହିଁ; ଧର୍ମ, ଈଶ୍ୱର ବା ପରକାଳ—ଏହି ସବୁର ଧାରଣା କେଉଁଠୁ ଆସିଲା ? ମନୁଷ୍ୟ 'ଈଶ୍ୱର ଈଶ୍ୱର' ଡାକ ଖୋଜିବୁଲେ କାହିଁକି ? କାହିଁକି ସବୁ ଜାତ ମଧ୍ୟରେ, ସବୁ ସମାଜ ଭିତରେ ମଣିଷ ପୂର୍ଣ୍ଣ ଆଦର୍ଶର ଅନ୍ୱେଷଣ କରେ—ତାହା ମନୁଷ୍ୟଠାରେ ହେଉ ବା ଈଶ୍ୱରଙ୍କଠାରେ ହେଉ ବା ଅନ୍ୟ ଯେ-କୌଣସିଠାରେ ହେଉ, ତାହାର କାରଣ ପୂର୍ଣ୍ଣ ଆଦର୍ଶ ତୁମର ଭିତରେ ହିଁ ବର୍ତ୍ତମାନ ଅଛି । ତୁମ ନଜ ହୃଦୟ ଭିତରଟା ଧକ୍ ଧକ୍ କରୁଅଛି । ତୁମେ ମନେକରୁଅଛ, ବାହାରର କୌଣସି ବସ୍ତୁ ଏଭଳି ଶବ୍ଦ କରୁଛି । ତୁମ ନଜ ଅଭ୍ୟନ୍ତରସ୍ଥ ଈଶ୍ୱର ହିଁ ତୁମକୁ ତାଙ୍କର ଅନୁସନ୍ଧାନ କରିବା ପାଇଁ, ତାଙ୍କୁ ଉପଲବ୍ଧି କରିବା ପାଇଁ ପ୍ରେରଣା ଦେଉଛନ୍ତି । ଏଠାରେ ସେଠାରେ, ମନ୍ଦିରରେ ଗୀର୍ଜାରେ, ସ୍ୱର୍ଗରେ ମର୍ତ୍ତ୍ୟରେ, ନାନା ସ୍ଥାନରେ ଏବଂ ନାନା ଉପାୟରେ ଅନ୍ୱେଷଣ କରିବା ପରେ ଅବଶେଷରେ ଆମେ ଯେଉଁଠୁ ଆରମ୍ଭ କରିଥିଲୁ—ଅର୍ଥାତ୍ ଆମମାନଙ୍କ ଆତ୍ମାରେ ହିଁ ବୃତ୍ତାକାରରେ ଘୂରି ଆସିବା ପରେ ଦେଖିବାକୁ ପାଉଁ ଯେ ଯାହାଙ୍କ ପାଇଁ ଆମେ ସମଗ୍ରଜଗତକୁ ଅନ୍ୱେଷଣ କରୁଥିଲୁ, ଯାହାଙ୍କ ପାଇଁ ମନ୍ଦିର ଗୀର୍ଜା ପ୍ରଭୃତିରେ କାତର ପ୍ରାର୍ଥନା ଏବଂ ଅଶ୍ରୁବସର୍ଜନ କରୁଥିଲୁ, ଯାହାଙ୍କୁ ସୁଦୂର ଆକାଶସ୍ଥ ମେଘମାଳାର ପଶ୍ଚାଦ୍ଦେଶରେ ଲୁକ୍କାୟିତ ଅବ୍ୟକ୍ତ ରହସ୍ୟମୟ ବୋଲି ମନେକରିଥିଲୁ, ସେ ଆମର ନକଟରୁ ନକଟତମ, ପ୍ରାଣର ପ୍ରାଣ, ସେହି ହିଁ ଆମର ଦେହ, ସେହି ହିଁ ଆମର ଆତ୍ମା । 'ତୁମେ ହିଁ ମୁଁ, —ମୁଁ ହିଁ ତୁମେ' ଏହା ହିଁ ତୁମର ସ୍ୱରୂପ; ତାହାକୁ ପ୍ରକାଶ କର । ତୁମକୁ ପବିତ୍ର ହେବାକୁ ପଡ଼ିବ ନାହିଁ; ତୁମେ ପବିତ୍ର-ସ୍ୱରୂପ ହୋଇ ରହିଅଛ । ତୁମକୁ ଆଉ ପୂର୍ଣ୍ଣସ୍ୱରୂପ ହେବାକୁ ପଡ଼ିବ ନାହିଁ, ତୁମେ ପୂର୍ଣ୍ଣସ୍ୱରୂପ ହିଁ ଅଛ । ସମୁଦାୟ ପ୍ରକୃତି ଯବନକା ପରି ତାଙ୍କର ଅନ୍ତରାଳବର୍ତ୍ତୀ ସତ୍ୟକୁ ଆବୃତ କରି ରଖିଅଛନ୍ତି । ତୁମେ ଯେକୌଣସି ସତ୍‌ଚିନ୍ତା ବା ସତ୍‌କାର୍ଯ୍ୟ କରୁଛ, ତାହା ଯେପରି କେବଳ ଆବରଣଟିକୁ

ଧୀରେ ଧୀରେ ଛିନ୍ନ କରୁଅଛୁ ଏବଂ ସେହି ପ୍ରକୃତିର ଅନ୍ତରାଳରୁ ଶୁଦ୍ଧସ୍ୱରୂପ ଅନନ୍ତ ଈଶ୍ୱର ପ୍ରକାଶିତ ହେଉଛନ୍ତି ।

ଏହା ହିଁ ମନୁଷ୍ୟର ସମଗ୍ର ଇତିହାସ । ଏହି ଆବରଣଟି କ୍ରମେ ସୂକ୍ଷ୍ମରୁ ସୂକ୍ଷ୍ମତର ହେଉଥାଏ । ସେତେବେଳେ ପ୍ରକୃତିର ଅନ୍ତରାଳସ୍ଥ ଆଲୋକ ନିଜ ସ୍ୱଭାବବଶତଃ କ୍ରମେ ଅଧିକରୁ ଅଧିକତର ପରିମାଣରେ ଦୀପ୍ତ ହେଉଥାଆନ୍ତି, କାରଣ ତାଙ୍କର ସ୍ୱଭାବ ଏହିପରି ଭାବରେ ଦୀପ୍ତିମାନ୍ ହେବା । ତାଙ୍କୁ ଜାଣି ହୁଏ ନାହିଁ, ତାଙ୍କୁ ଜାଣିବା ପାଇଁ ଆମେମାନେ ବୃଥା ଚେଷ୍ଟା କରିଥାଉଁ । ଯଦି ସେ ଜ୍ଞେୟ ହୁଅନ୍ତେ, ତାହାହେଲେ ତାଙ୍କର ବିଲୋପ ଅତି ସ୍ୱାଭାବିକ ହୁଅନ୍ତା, କାରଣ ସେ ନିତ୍ୟଜ୍ଞାତା । ଜ୍ଞାନ ମଧ୍ୟ ସସୀମ; କୌଣସି ବସ୍ତୁ ସମ୍ପର୍କରେ ଜ୍ଞାନ ଲାଭ କରିବାକୁ ହେଲେ ତାହାକୁ ଜ୍ଞେୟବସ୍ତୁରୂପେ, ବିଷୟରୂପେ, ଚିନ୍ତା କରିବାକୁ ହେବ । ସେ ତ ସକଳ ବସ୍ତୁର ଜ୍ଞାତାସ୍ୱରୂପ, ସକଳ ବିଷୟର ବିଷୟୀସ୍ୱରୂପ, ଏହି ବିଶ୍ୱବ୍ରହ୍ମାଣ୍ଡର ସାକ୍ଷୀସ୍ୱରୂପ, ତୁମର ହିଁ ଆତ୍ମାସ୍ୱରୂପ । ବିଷୟ-ଜ୍ଞାନ ଯେପରି ଏକ ନିମ୍ନତର ଅବସ୍ଥା—ଅବନତି ଭାବ ମାତ୍ର । ଆମେମାନେ ତ ସେହି ଆତ୍ମା । ଏହାକୁ ପୁଣି ଜାଣିବା କିପରି ? ପ୍ରତ୍ୟେକ ବ୍ୟକ୍ତି ସେହି ଆତ୍ମା ଏବଂ ସମସ୍ତେ ହିଁ ଏହି ଆତ୍ମାକୁ ଜୀବନରେ ପ୍ରକାଶିତ କରିବାପାଇଁ ବିଭିନ୍ନ ଉପାୟରେ ଚେଷ୍ଟା କରୁଛନ୍ତି; ତାହା ନ ହେଲେ, ଏତେ ନୀତିପ୍ରଣାଳୀ କେଉଁଠାରୁ ଆସିଲା ? ସମୁଦାୟ ନୀତିପ୍ରଣାଳୀର ତାତ୍ପର୍ଯ୍ୟ କଅଣ ? ସକଳ ନୀତି-ପ୍ରଣାଳୀରେ ଗୋଟିଏ ଭାବ ହିଁ ବିଭିନ୍ନ ଆକାରରେ ପ୍ରକାଶିତ ହୋଇ ରହିଛି ଏବଂ ତାହା ହେଉଛି—ପରର ଉପକାର କରିବା । ମାନବଜାତିର ସର୍ବବିଧ ସତ୍‌କାର୍ଯ୍ୟର ମୂଳ ଅଭିସନ୍ଧି ହେଉଛି—ମନୁଷ୍ୟ ହେଉ ବା ଜନ୍ତୁ ହେଉ ସମସ୍ତଙ୍କ ପ୍ରତି ଦୟା । କିନ୍ତୁ ଏହି ସମସ୍ତ—'ମୁଁ ହିଁ ଜଗତ୍ । ଏହି ଜଗତ୍ ଏକ ଅଖଣ୍ଡ ସ୍ୱରୂପ'—ଏହି ସନାତନ ସତ୍ୟର ବିଭିନ୍ନ ଭାବ ମାତ୍ର । ତାହା ନ ହେଲେ ଅନ୍ୟର ହିତ ସାଧନ କରିବାରେ ଯୁକ୍ତି କଅଣ ? କାହିଁକି ମୁଁ ଅପରର ଉପକାର କରିବି ? କି କାରଣରୁ ମୁଁ ଅନ୍ୟର ଉପକାର କରିବା ଲାଗି ବାଧ୍ୟ ହୁଏ ? ଏହି ସର୍ବତ୍ର ସମଦର୍ଶନଜନିତ ସହାନୁଭୂତିର ଭାବରୁ ହିଁ ଏହା ହୋଇଥାଏ । ଅତି କଠୋର ଅନ୍ତଃକରଣ ମଧ୍ୟ ସମୟେ ସମୟେ ଅନ୍ୟ ପ୍ରତି ସହାନୁଭୂତିସମ୍ପନ୍ନ ହୋଇଥାଏ । ଏପରି କି, ଯେଉଁ ବ୍ୟକ୍ତି ଏହି ଆପାତ-ପ୍ରତୀୟମାନ 'ଅହଂ'କୁ ପ୍ରକୃତରେ ଭ୍ରମମାତ୍ର ବୋଲି ମନେକରେ ଏବଂ ଏହି ଭ୍ରମାତ୍ମକ 'ଅହଂ'ରେ ଆସକ୍ତ ରହିବା ଅତି ନୀଚ କାର୍ଯ୍ୟ ବୋଲି ଭାବେ—ସେ ଏହିସବୁ କଥା ଶୁଣିଲେ ଭୟ ପାଏ, ସେହି ବ୍ୟକ୍ତି ହିଁ ତୁମକୁ କହିବ—ସମ୍ପୂର୍ଣ୍ଣ ଆତ୍ମତ୍ୟାଗ ହିଁ ସମସ୍ତ ନୀତିର ଭିତ୍ତି । କିନ୍ତୁ ପୂର୍ଣ୍ଣ ଆତ୍ମତ୍ୟାଗ କଅଣ ? ସମ୍ପୂର୍ଣ୍ଣ ଆତ୍ମ-ତ୍ୟାଗ ହେଲା ପରେ କଅଣ ଅବଶିଷ୍ଟ ରହେ ? ଆତ୍ମତ୍ୟାଗର ଅର୍ଥ ଏହି ଆପାତ-ପ୍ରତୀୟମାନ ଅହଂର ତ୍ୟାଗ—ସର୍ବପ୍ରକାର ସ୍ୱାର୍ଥପରତାର ପରିତ୍ୟାଗ । ଏହି ଅହଂକାର ଓ ମମତା ପୂର୍ବ କୁସଂସ୍କାରର ଫଳସ୍ୱରୂପ ଏବଂ ଏହି ଅହଂଭାବକୁ ଯେତେ ଅଧିକ ତ୍ୟାଗ

କରାଯାଏ, ଆତ୍ମା ସେତେ ନିତ୍ୟସ୍ୱରୂପରେ, ନିଜର ପୂର୍ଣ୍ଣ ମହିମାରେ ପ୍ରକାଶିତ ହୁଅନ୍ତି । ଏହା ହିଁ ପ୍ରକୃତ ଆତ୍ମତ୍ୟାଗ—ଏହା ହିଁ ସମୁଦାୟ ନୀତି-ଶିକ୍ଷାର ଭିତ୍ତିସ୍ୱରୂପ—କେନ୍ଦ୍ର-ସ୍ୱରୂପ । ମନୁଷ୍ୟ ଏହା ଜାଣୁ ବା ନ ଜାଣୁ ସମଗ୍ର ଜଗତ୍ ତେହି ଦିଗରେ ଧୀରେ ଧୀରେ ଚାଲିଅଛି । ଅଳ୍ପାଧିକ ପରିମାଣରେ ତାହା ହିଁ ଅଭ୍ୟାସ କରୁଛି । କେବଳ ଅଧିକାଂଶ ଲୋକେ ଏହା ଅଜ୍ଞାତସାରରେ କରିଥାଆନ୍ତି ମାତ୍ର । ସେମାନେ ଏବେ ଏହା ଜ୍ଞାତସାରରେ କରନ୍ତୁ । ସେମାନେ ଏହି ତ୍ୟାଗଯଜ୍ଞ ଆଚରଣକରନ୍ତୁ । ଏହି ବ୍ୟାବହାରିକ ଜୀବ ସୀମାବଦ୍ଧ । ବର୍ତ୍ତମାନ ଯାହାକୁ ମନୁଷ୍ୟ ବୋଲି କୁହାଯାଉଛି, ସେ ଏହି ଜଗତର ଅତୀତ ଅନନ୍ତ ସତ୍ତାର ସାମାନ୍ୟ ଆଭାସ ମାତ୍ର; ସେହି ସର୍ବସ୍ୱରୂପ ଅନନ୍ତ ଅନଳର ଏକ କଣା ମାତ୍ର; କିନ୍ତୁ ସେହି ଅନନ୍ତ ହିଁ ତାହାର ପ୍ରକୃତ ସ୍ୱରୂପ ।

ଏହି ଜ୍ଞାନର ଫଳ—ଏହି ଜ୍ଞାନର ଉପକାରିତା କଅଣ ? ଆଜିକାଲି ସବୁ ବିଷୟରେ ଏହି ଫଳ ଦେଖି, ଉପକାର ଦେଖି ପରିମାଣ କରାଯାଏ । ଅର୍ଥାତ୍ ସ୍ଥୂଳତଃ କହିବାକୁ ଗଲେ, ସେଥିରେ କେତେ ଟଙ୍କା, କେତେ ଅଣା, କେତେ ପଇସା ଆସୁ ହେଲା—ଲୋକଙ୍କ ଏ ପ୍ରକାର ପ୍ରଶ୍ନ କରିବାର ଦେଖାଯାଏ । କିନ୍ତୁ ସତ୍ୟ କଅଣ ଉପକାର ବା ଅର୍ଥର ମାପକାଠିରେ ବିଚାର୍ଯ୍ୟ ହେବ ? ମନେକର ସେଥିରେ କୌଣସି ଉପକାର ନାହିଁ; ତାହା କ'ଣ କମ୍ ସତ୍ୟ ହୋଇଯିବ ? ଉପକାର ବା ପ୍ରୟୋଜନ ସତ୍ୟର ନିର୍ଣ୍ଣାୟକ ହୋଇପାରିବ ନାହିଁ (**Bentham's Utilitarianism and James' Pragmatism**) । ଯାହାହେଉ ଏହି ଜ୍ଞାନର ମହତ୍ ଉପକାର ଓ ପ୍ରୟୋଜନ ମଧ୍ୟ ରହିଛି । ଆମେମାନେ ଦେଖିଅଛୁଁ, ସମସ୍ତେ ହିଁ ସୁଖର ଅନ୍ୱେଷଣ କରିଥାଆନ୍ତି; କିନ୍ତୁ ଅଧିକାଂଶ ଲୋକେ ନଶ୍ୱର ମିଥ୍ୟା ବସ୍ତୁରେ ତାହା ଅନ୍ୱେଷଣ କରିଥାଆନ୍ତି । ଇନ୍ଦ୍ରିୟମାନଙ୍କଦ୍ୱାରା କେହି କଦାପି ସୁଖ ଲାଭ କରେ ନାହିଁ । ସୁଖ କେବଳ ଆତ୍ମାରେ ହିଁ ମିଳେ । ଅତଏବ ଏହି ଆତ୍ମାରେ ସୁଖଲାଭ କରିବା ହିଁ ମନୁଷ୍ୟର ସର୍ବୋଚ୍ଚ ପ୍ରୟୋଜନ । ଆଉ ଗୋଟିଏ କଥା ହେଲା—ଅଜ୍ଞାନ ହିଁ ସକଳ ଦୁଃଖର ଜନକ । ମୂଳ ଅଜ୍ଞାନଟି ହେଲା—ଆମେମାନେ ସେହି ଅନନ୍ତସ୍ୱରୂପ ହୋଇ ମଧ୍ୟ ନିଜକୁ ସାନ୍ତ ଭାବି କାନ୍ଦୁ । ସମସ୍ତ ଅଜ୍ଞାନର ମୂଳଭିତ୍ତି ଏହି । ଆମେ ଅବିନାଶୀ ନିତ୍ୟଶୁଦ୍ଧ ପୂର୍ଣ୍ଣ ଆତ୍ମା ହୋଇ ମଧ୍ୟ ନିଜକୁ କ୍ଷୁଦ୍ର କ୍ଷୁଦ୍ର ଦେହ ମାତ୍ର ବୋଲି ଭାବୁଁ । ଏହା ହିଁ ସକଳ ପ୍ରକାର ସ୍ୱାର୍ଥପରତାର ମୂଳ । ଯେତେବେଳେ ମୁଁ ନିଜକୁ ଏକ କ୍ଷୁଦ୍ର ଦେହ ବୋଲି ବିବେଚନା କରେ, ସେତେବେଳେ ଜଗତର ଅନ୍ୟ ଶରୀରର ସୁଖଦୁଃଖ ଦିଗକୁ କୌଣସି ଦୃଷ୍ଟି ନ ଦେଇ ମୁଁ ତାହାକୁ ରକ୍ଷାକରିବାକୁ ଓ ତାହାର ସୌନ୍ଦର୍ଯ୍ୟ ସମ୍ପାଦନ କରିବାକୁ ଇଚ୍ଛା କରିଥାଏ; ସେତେବେଳେ ତୁମେ ଆଉ ମୁଁ ଭିନ୍ନ ହୋଇଯାଉଁ । ଯେତେବେଳେ ଏହି ଭେଦଜ୍ଞାନ ଆସେ, ସେତେବେଳେ ଏହା ସର୍ବପ୍ରକାର ଅମଙ୍ଗଳର ଦ୍ୱାର ଖୋଲିଦିଏ ଏବଂ ସର୍ବବିଧ ଦୁଃଖ ପ୍ରସବ କରେ । ସୁତରାଂ ପୂର୍ବୋକ୍ତ ଜ୍ଞାନଲାଭରେ ଏହି ଉପକାର ହେବ ଯେ, ଯଦି ବର୍ତ୍ତମାନ କାଳରେ ମାନବଜାତିର

ଅତି ସାମାନ୍ୟ ଅଂଶ ବା କ୍ଷୁଦ୍ର ଭାବ ତ୍ୟାଗ କରିପାରେ, ତାହାହେଲେ କାଲି ହିଁ ଏହି ଜଗତ ସ୍ୱର୍ଗରେ ପରିଣତ ହେବ; କିନ୍ତୁ ନାନାବିଧ ଯନ୍ତ୍ର ଏବଂ ବାହ୍ୟ ଜଗତସମ୍ବନ୍ଧୀୟ ଜ୍ଞାନର ଉନ୍ନତରେ ଏହା କଦାପି ହେବ ନାହିଁ—ଯେପରି ଅଗ୍ନିରେ ଘୃତ ନିକ୍ଷେପ କଲେ ଅଗ୍ନିଶିଖା ଆହୁରି ବର୍ଦ୍ଧିତ ହୁଏ, ସେହିପରି ତାହାଦ୍ୱାରା ଦୁଃଖ ହିଁ ବୃଦ୍ଧି ପାଇ-ଥାଏ । ଆତ୍ମଜ୍ଞାନ ବ୍ୟତୀତ ଯେତେ ଭୌତିକ ଜ୍ଞାନ ଉପାର୍ଜିତ ହେଉ ନା କାହିଁକି, ତାହା କେବଳ ଅଗ୍ନିରେ ଘୃତାହୁତି ମାତ୍ର । ସେଥିରେ ସ୍ୱାର୍ଥପର ଲୋକର ହାତକୁ ଅପରର କିଛି ନେଇଯିବା ନିମିତ୍ତ, ପର ପାଇଁ ନିଜ ଜୀବନ ନ ଦେଇ ପରକୁ ଶୋଷଣ କରିବା ଲାଗି ଆଉ ଗୋଟିଏ ଯନ୍ତ୍ର ସ୍ୱାର୍ଥପର ଲୋକଙ୍କୁ ଦିଆଯାଇଥାଏ ମାତ୍ର ।

ଆହୁରି ଏକ ପ୍ରଶ୍ନ—ଏହା କ'ଣ କାର୍ଯ୍ୟରେ ପରିଣତ ହେବା ସମ୍ଭବ ? ଆଧୁନିକ ସମାଜରେ ଏହାକୁ କ'ଣ କାର୍ଯ୍ୟରେ ପରିଣତ କରାଯାଇପାରେ ? ତାହାର ଉତ୍ତର ଏହି ଯେ ସତ୍ୟ ପ୍ରାଚୀନ ବା ଆଧୁନିକ, କୌଣସି ସମାଜକୁ ସମ୍ମାନ ପ୍ରଦର୍ଶନ କରେ ନାହିଁ । ସମାଜକୁ ହିଁ ସତ୍ୟ ପ୍ରତି ସମ୍ମାନ ପ୍ରଦର୍ଶନ କରିବାକୁ ହେବ । ତାହା ନ ହେଲେ ସମାଜ ଧ୍ୱଂସ ହେଉ, କିଛି କ୍ଷତି ନାହିଁ । ସତ୍ୟ ହିଁ ସକଳ ସମାଜର ମୂଳଭିତ୍ତିସ୍ୱରୂପ । ସୁତରାଂ ସତ୍ୟ କଦାପି ସମାଜର ଅନୁଗାମୀ ହୋଇ ନିଜକୁ ଗଠିତ କରିବ ନାହିଁ । ଯଦି ନିଃସ୍ୱାର୍ଥପରତା ଭଳି ମହତ୍ ସତ୍ୟ ସମାଜରେ କାର୍ଯ୍ୟରେ ପରିଣତ କରା ନ ଯାଏ, ତାହାହେଲେ ସମାଜ ତ୍ୟାଗ କରି ବନରେ ଯାଇ ବାସ କର; ତାହାହେଲେ ସାହସୀ ଭଳି କାର୍ଯ୍ୟ କଲ । ସାହସ ଦୁଇ ପ୍ରକାର । ଏକ ପ୍ରକାରର ସାହସ କମାଣର ମୁହଁକୁ ଯିବା । ଆଉ ଏକ ପ୍ରକାର ସାହସ ଅଛି, ତାହାକୁ ଆଧ୍ୟାତ୍ମିକ ଦୃଢ଼ ପ୍ରତ୍ୟୟର ସାହସ କୁହାଯାଇପାରେ । ଜଣେ ଦିଗ୍‌ବିଜୟୀ ସମ୍ରାଟ ଥରେ ଭାରତବର୍ଷକୁ ଆଗମନ କରି-ଥିଲେ । ତାଙ୍କର ଗୁରୁ ତାଙ୍କୁ ଭାରତୀୟ ସାଧୁମାନଙ୍କ ସହିତ ସାକ୍ଷାତ୍ କରିବାକୁ କହି-ଦେଇଥିଲେ । ଅନେକ ଅନୁସନ୍ଧାନ ପରେ ସେ ଦେଖିଲେ, ଜଣେ ବୃଦ୍ଧ ସାଧୁ ଏକ ପ୍ରସ୍ତର-ଖଣ୍ଡ ଉପରେ ଉପବେଶନ କରିଛନ୍ତି । ସମ୍ରାଟ ତାଙ୍କ ସହିତ କିଛି ସମୟ କଥା-ବାର୍ତ୍ତା କରି ବଡ଼ ସନ୍ତୁଷ୍ଟ ହେଲେ । ତେଣୁ ସେ ଏହି ସାଧୁଙ୍କୁ ନିଜ ଦେଶକୁ ସଙ୍ଗରେ ନେଇ ଯିବାପାଇଁ ଇଚ୍ଛା ପ୍ରକାଶ କଲେ । ସାଧୁ ସେଥିରେ ଅସ୍ୱୀକୃତ ହୋଇ କହିଲେ, 'ମୁଁ ଏହି ବନରେ ବେଶ୍ ଆନନ୍ଦରେ ଅଛି ।' ସମ୍ରାଟ କହିଲେ, 'ମୁଁ ସମୁଦାୟ ପୃଥିବୀର ସମ୍ରାଟ । ମୁଁ ଆପଣଙ୍କୁ ଅସୀମ ଐଶ୍ୱର୍ଯ୍ୟ ଓ ଉଚ୍ଚ ପଦମର୍ଯ୍ୟାଦା ପ୍ରଦାନ କରିବି ।' ସାଧୁ କହିଲେ, 'ଐଶ୍ୱର୍ଯ୍ୟ ବା ପଦମର୍ଯ୍ୟାଦା କୌଣସିଥିରେ ମୋର ଆକାଙ୍କ୍ଷା ନାହିଁ ।' ତହୁଁ ସମ୍ରାଟ କହିଲେ, 'ଆପଣ ଯଦି ମୋ ସହିତ ନ ଯାନ୍ତି, ମୁ ଆପଣଙ୍କର ବିନାଶ ସାଧନ କରିବି ।' ସାଧୁ ଏ କଥାରେ ଉଚ୍ଚ ହାସ୍ୟ କରି କହିଲେ, 'ମହାରାଜ, ତୁମେ ଯେତେ କଥା କହିଲ, ତା'ମଧ୍ୟରେ ସବୁଠୁ ବଳି ହିଁ ମୂର୍ଖର କଥା ହେଲା ଏହି । ମୋତେ ସଂହାର କରିବାର ସାଧ୍ୟ ତୁମର ଅଛି କି ? ସୂର୍ଯ୍ୟ ମୋତେ ଶୁଷ୍କ କରିପାରେ ନାହିଁ, ଅଗ୍ନି ମୋତେ ପୋଡ଼ିପାରେ ନାହିଁ, କୌଣସି ଯନ୍ତ୍ର ମଧ୍ୟ ମୋତେ ସଂହାର କରିପାରେ

ନାହିଁ । କାରଣ, ମୁଁ ଜନ୍ମରହିତ, ଅବିନାଶୀ, ନିତ୍ୟବିଦ୍ୟମାନ, ସର୍ବବ୍ୟାପୀ ଓ ସର୍ବଶକ୍ତିମାନ୍ ଆତ୍ମା ।' ଏହା ଆଉ ଏକ ପ୍ରକାରର ସାହସିକତା । ୧୮୫୭ ମସିହାର ସିପାହୀବିଦ୍ରୋହ ସମୟରେ ଜଣେ ମୁସଲମାନ ସୈନିକ ଜନୈକ ମହାତ୍ମାସନ୍ନ୍ୟାସୀଙ୍କୁ ପ୍ରଚଣ୍ଡଭାବରେ ଅସ୍ତ୍ରାଘାତ କରିଥିଲା । ହିନ୍ଦୁବିଦ୍ରୋହୀଗଣ ସ୍ୱାମୀଜୀଙ୍କ ନିକଟକୁ ଏହି ମୁସଲମାନକୁ ଧରିଆଣି କହିଲେ, 'ଯଦି ଅନୁମତି ଦେବେ, ଆମେମାନେ ଏହାକୁ ହତ୍ୟା କରିବୁ ।' କିନ୍ତୁ ସ୍ୱାମୀ ତାହା ଆଡ଼କୁ ଚାହିଁ କହିଲେ, 'ଭାଇ ! ତୁମେ ହିଁ ସେହି ତୁମେ ହିଁ ସେହି ।' ଏହା କହୁ କହୁ ଦେହ ତ୍ୟାଗ କଲେ । ଏହା ମଧ୍ୟ ଏକପ୍ରକାର ସାହସିକତା । ଯଦି ତୁମେ ସତ୍ୟର ଆଦର୍ଶରେ ଏପରି ଭାବରେ ସମାଜ ଗଠନ କରି ନ ପାର, ଯହିଁରେ ସେହି ସର୍ବୋଚ୍ଚ ସତ୍ୟ ସ୍ଥାନ ପାଇପାରେ, ତାହାହେଲେ ତୁମେ ବାହୁବଳର କି ଗୌରବ କରିବ ? ତାହାହେଲେ ତୁମେ ତୁମମାନଙ୍କର ବା ତୁମ ପାଶ୍ଚାତ୍ୟ ପ୍ରତିଷ୍ଠାନଗୁଡ଼ିକର କି ଗୌରବ କରିବ ? ଯଦି ତୁମେ ଦିନରାତି କହୁଥାଅ—ଏହା କାର୍ଯ୍ୟରେ ପରିଣତ କରିବା ଅସମ୍ଭବ, ତାହାହେଲେ ତୁମର ମହତ୍ତ୍ୱ ଓ ଶ୍ରେଷ୍ଠତ୍ୱ ସମ୍ବନ୍ଧରେ କି ଗୌରବ କର ? ପଇସା କଉଡ଼ି ଛଡ଼ା ଆଉ କିଛି କଅଣ କାର୍ଯ୍ୟକାରୀ ନୁହେଁ ? ଯଦି ତା ହୁଏ, ତାହାହେଲେ ତୁମେ ସମାଜର ଏତେ ଗର୍ବ କର କାହିଁକି ? ଯେଉଁ ସମାଜରେ ସର୍ବୋଚ୍ଚ ସତ୍ୟ କାର୍ଯ୍ୟରେ ପରିଣତ କରାଯାଇପାରେ ତାହା ହିଁ ହେଉଛି ସର୍ବଶ୍ରେଷ୍ଠ ସମାଜ—ଏହା ହିଁ ମୋର ମତ । ଆଉ ଯଦି ସମାଜ ବର୍ତ୍ତମାନ ଉଚ୍ଚତମ ସତ୍ୟକୁ ସ୍ଥାନ ଦେବାରେ ଅପାରଗ ହୁଏ, ତାହାହେଲେ ତାହାକୁ ଉପଯୁକ୍ତ କରାଇ ନିଅ; ଆଉ ଯେତେ ଶୀଘ୍ର ତୁମେ କୃତକାର୍ଯ୍ୟ ହେବ, ସେତେ ହିଁ ମଙ୍ଗଳ । ହେ ନରନାରୀଗଣ, ଏହି ଭାବ ଗ୍ରହଣ କରି ଜାଗ୍ରତ ହୋଇ ଉଠ, ସତ୍ୟରେ ବିଶ୍ୱାସୀ ହେବାକୁ ସାହସୀ ହୁଅ, ସତ୍ୟକୁ ଅଭ୍ୟାସ କରିବାରେ ସାହସୀ ହୁଅ । ଜଗତରେ କେତେଗୁଡ଼ିଏ ସାହସୀ ନରନାରୀଙ୍କର ପ୍ରୟୋଜନ । ସାହସୀ ହେବା ଭାରି କଠିନ । ସେହି ସାହସିକତା ଅଭ୍ୟାସ କର, ଯାହା ମୃତ୍ୟୁ ସମ୍ମୁଖରେ ମଧ୍ୟ ଭୟ ପାଏ ନାହିଁ, ଯାହା ମୃତ୍ୟୁକୁ ସ୍ୱାଗତ କରିପାରେ, ଯାହାଦ୍ୱାରା ମନୁଷ୍ୟ ଜାଣିପାରେ ଯେ ସେ ଆତ୍ମା, ଆଉ ସମଗ୍ର ଜଗତ୍ ମଧ୍ୟରେ ଏଭଳି କୌଣସି ଅସ୍ତ୍ରର ସାଧ୍ୟ ନାହିଁ, ଯାହା ତାହାକୁ ସଂହାର କରିବ, ସମୁଦାୟ ବଜ୍ର ମଧ୍ୟ ତାହାକୁ ସଂହାର କରିପାରେ ନାହିଁ, ଜଗତର ସମୁଦାୟ ଅଗ୍ନିର ସାଧ୍ୟ ନାହିଁ ତାହାକୁ ଦଗ୍ଧ କରିପାରେ—ଯେଉଁ ସାହସିକତାରେ ସତ୍ୟକୁ ଜାଣିବାର ସାହସ ହୁଏ ଏବଂ ଜୀବନରେ ସେହି ସତ୍ୟକୁ ଦେଖାଯାଇପାରେ । ତେବେ ଯାଇ ତୁମେ ମୁକ୍ତ ପୁରୁଷ, ତେବେ ଯାଇ ତୁମେ ତୁମର ପ୍ରକୃତ ସ୍ୱରୂପ ଜାଣିପାରିବ । ଏହା ଏହି ସମାଜରେ—ପ୍ରତ୍ୟେକ ସମାଜରେ ମଧ୍ୟ ଅଭ୍ୟାସ କରିବାକୁ ହେବ । 'ଆତ୍ମା ସମ୍ବନ୍ଧରେ ପ୍ରଥମେ ଶ୍ରବଣ, ତତ୍ପରେ ମନନ ଏବଂ ତତ୍ପରେ ନିଦିଧ୍ୟାସନ କରିବାକୁ ହେବ ।'

ଆଜକାଲକାର ସମାଜରେ ଗୋଟାଏ ଗତି ଦେଖା ଦେଇଛି—କାର୍ଯ୍ୟପ୍ରତି ଖୁବ୍ ଅନୁରକ୍ତ ହେବା—ଏବଂ ମନନ ଧ୍ୟାନଧାରଣାଦିକୁ ଏକାବେଳକେ ଉଡ଼ାଇ-ଦେବା । କାର୍ଯ୍ୟ ଖୁବ୍ ଭଲ ସତ, କିନ୍ତୁ ତାହା ମଧ୍ୟ ଚିନ୍ତାପ୍ରସୂତ । ଶରୀର ଭିତର ଦେଇ ମାନସିକ ଶକ୍ତିର ପ୍ରକାଶକୁ ହିଁ କାର୍ଯ୍ୟ କୁହାଯାଏ । ଚିନ୍ତା ବ୍ୟତୀତ କୌଣସି କାର୍ଯ୍ୟ ହୋଇପାରେ ନାହିଁ । ମସ୍ତିଷ୍କକୁ ଉଚ୍ଚ ଉଚ୍ଚ ଚିନ୍ତା, ଉଚ୍ଚ ଉଚ୍ଚ ଆଦର୍ଶରେ ପୂର୍ଣ୍ଣ କର । ଦିବାରାତ୍ର ଏଗୁଡ଼ିକୁ ମନ ମଧ୍ୟରେ ସ୍ଥାପନ କରି ରଖ । ତାହାହେଲେ ତହିଁରୁ ହିଁ ମହତ୍ କାର୍ଯ୍ୟ ସାଧିତ ହେବ । ଅପବିତ୍ରତା ସମ୍ବନ୍ଧରେ କୌଣସି କଥା କହ ନାହିଁ, କିନ୍ତୁ ମନକୁ କହ—ଆମେ ଶୁଦ୍ଧ ଆତ୍ମାସ୍ୱରୂପ । ଆମେ କ୍ଷୁଦ୍ର, ଆମେ ଜନ୍ମଲାଭ କରୁଛୁଁ, ଆମର ମୃତ୍ୟୁ ହେବ—ଏହି ଚିନ୍ତାରେ ଆମେମାନେ ନିଜକୁ ଏକାବେଳକେ ଅଭିଭୂତ କରିପକାଇଛୁ ଏବଂ ସେଥିଲାଗି ସର୍ବଦା ହିଁ ଏକପ୍ରକାର ଭୟରେ ସଙ୍କୁଚିତ ହୋଇ ରହିଅଛୁ ।

ଏକ ଆସନ୍ନପ୍ରସବା ସିଂହୀ ଥରେ ଶିକାର ଉଦ୍ଦେଶ୍ୟରେ ବହିର୍ଗତ ହୋଇଥିଲା । ସେ ଦୂରରେ ଦଳେ ମେଷ ବିଚରଣ କରୁଥିବାର ଦେଖିବାମାତ୍ରେ ଯେମିତି ସେମାନଙ୍କୁ ଆକ୍ରମଣ କରିବା ନିମିତ୍ତ ଲମ୍ଫ ପ୍ରଦାନ କଲା ସେମିତି ତାହାର ପ୍ରାଣତ୍ୟାଗ ହେଲା । ଗୋଟିଏ ମାତୃହୀନ ସିଂହଶାବକ ଜନ୍ମଗ୍ରହଣ କଲା । ସେହି ମେଷଦଳ ଏହି ସିଂହ-ଶାବକଟିର ରକ୍ଷଣାବେକ୍ଷଣ କରିବାକୁ ଲାଗିଲେ । ସିଂହଶିଶୁଟି ମଧ୍ୟ ମେଷପଲ ମଧ୍ୟରେ ଏକତ୍ର ରହି କ୍ରମେ ବର୍ଦ୍ଧିତ ହେବାକୁ ଲାଗିଲା । ସେ ମେଷପଲ ପରି ଘାସ ଖାଇ ଜୀବନ ଧାରଣ କରିବାକୁ ଲାଗିଲା, ମେଷ ପରି ଚିତ୍କାର କରିବାକୁ ଲାଗିଲା; ସେ ଏକ ପୂର୍ଣ୍ଣବୟସ୍କ ସିଂହ ହୋଇଯାଇଥିଲେ ମଧ୍ୟ ନିଜକୁ ମେଷ ବୋଲି ଭାବିବାକୁ ଲାଗିଲା । ଏହିଭଳି କିଛି ଦିନ ଗଲା । ଏପରି ସମୟରେ ଆଉ ଗୋଟିଏ ପ୍ରକାଣ୍ଡକାୟ ସିଂହ ଶିକାର ଅନ୍ୱେଷଣରେ ସେଠାରେ ଉପସ୍ଥିତ ହେଲା; କିନ୍ତୁ ସେ ଦେଖି ଆଶ୍ଚର୍ଯ୍ୟ ହେଲା ଯେ, ଉକ୍ତ ମେଷଦଳ ମଧ୍ୟରେ ଗୋଟିଏ ସିଂହ ରହିଛି, ଆଉ ସେ ମେଷଧର୍ମୀ ହୋଇ ବିପଦର ଆଗମନ-ସମ୍ଭାବନାରେ ହିଁ ପଳାଇଯାଉଛି । ସେ ତାହା ନିକଟକୁ ଯାଇ 'ସେ ଯେ ସିଂହ, ମେଷ ନୁହେଁ' ଏହା ବୁଝାଇବାକୁ ଚେଷ୍ଟା କଲା । ଯେମିତି ସେ ଅଗ୍ରସର ହେବାକୁ ଲାଗିଲା, ସଙ୍ଗେ ସଙ୍ଗେ ମେଷପଲ ପଳାଇଗଲେ । ସଙ୍ଗେ ସଙ୍ଗେ ମେଷ-ସିଂହଟି ମଧ୍ୟ ପଳାଇଲା । ଯାହାହେଉ, ସେହି ସିଂହଟି ଉକ୍ତ ମେଷ-ସିଂହଟିକୁ ତାହାର ଯଥାର୍ଥ ସ୍ୱରୂପ ବୁଝାଇ ଦେବାର ସଂକଳ୍ପ ଛାଡ଼ିପାରିଲା ନାହିଁ । ସେ ଏହି ମେଷସିଂହଟି କେଉଁଠି କଅଣ କରେ, ଲକ୍ଷ୍ୟ କରିବାକୁ ଲାଗିଲା । ଦିନେ ଦେଖିଲା, ସେ ଗୋଟିଏ ସ୍ଥାନରେ ପଡ଼ିରହି ଶୋଇଛି । ଏହା ଦେଖିବା ସଙ୍ଗେ ସଙ୍ଗେ ସେ ତାହା ଉପରକୁ ଡେଇଁପଡ଼ି କହିଲା, 'ଆରେ, ତୁ ମେଷପଲ ସଙ୍ଗରେ ରହି ନିଜର ସ୍ୱଭାବ ଭୁଲିଲୁ କାହିଁକି ? ତୁ ତ ମେଷ ନୋହୁ, ତୁ ଯେ ସିଂହ ।' ମେଷ-ସିଂହଟି କହିଉଠିଲା, 'କଅଣ କହୁଛ ? ମୁଁ ତ ମେଷ, ସିଂହ କିପରି ହେବି ?'

କୌଣସି ପ୍ରକାରେ ସେ ନିଜକୁ ସିଂହ ବୋଲି ବିଶ୍ୱାସ କରିପାରିଲା ନାହିଁ । ବରଂ ସେ ମେଷ ପରି ଚିତ୍କାର କରିବାକୁ ଲାଗିଲା । ସିଂହ ତାକୁ ଟାଣି ଟାଣି ଗୋଟିଏ ହ୍ରଦ ନିକଟକୁ ନେଇଗଲା; କହିଲା, 'ଏଇ ଦେଖ୍ ତୋର ପ୍ରତିବିମ୍ବ, ଏଇ ଦେଖ୍ ମୋର ପ୍ରତିବିମ୍ବ ।' ତହୁଁ ସେ ସେହି ଦୁଇଟିର ହିଁ ତୁଳନା କରିବାକୁ ଲାଗିଲା । ସେ ଥରେ ସେହି ସିଂହ ଆଡ଼କୁ, ଥରେ ନିଜ ପ୍ରତିବିମ୍ବ ଆଡ଼କୁ ଚାହିଁ ଦେଖିବାକୁ ଲାଗିଲା । ସେତେବେଳେ ମୁହୂର୍ତ୍ତିକ ମଧ୍ୟରେ ତା'ର ଏହି ଜ୍ଞାନୋଦୟ ହେଲା ଯେ, ସତରେ ମୁଁ ତ ସିଂହ ଅଟେ । ସେତେବେଳେ ସେ ସିଂହ ପରି ଗର୍ଜନ କରିବାକୁ ଲାଗିଲା; ତାହାର ମେଷ ଭଳି ଚିତ୍କାର କେଉଁଆଡ଼େ ଚାଲିଗଲା । ତୁମେମାନେ ସିଂହସ୍ୱରୂପ, ତୁମେମାନେ ଆତ୍ମା, ଶୁଦ୍ଧ-ସ୍ୱରୂପ, ଅନନ୍ତ ଓ ପୂର୍ଣ୍ଣ । ଜଗତର ମହାଶକ୍ତି ତୁମମାନଙ୍କ ଭିତରେ । 'ହେ ସଖେ ! କାହିଁକି ତୁମେ ରୋଦନ କରୁଅଛ ? ଜନ୍ମମୃତ୍ୟୁ ତୁମର ବି ନାହିଁ କି ମୋର ବି ନାହିଁ । କାହିଁକି କାନ୍ଦୁଛ ? ତୁମର ରୋଗ, ଦୁଃଖ କିଛି ହିଁ ନାହିଁ । ତୁମେ ଅନନ୍ତ-ଆକାଶ-ସ୍ୱରୂପ, ନାନା ବର୍ଣ୍ଣର ମେଘ ଏହା ଉପରେ ଆସୁଛି । ମୁହୂର୍ତ୍ତେ ଖେଳାକରି ପୁନର୍ବାର କେଉଁଆଡ଼େ ଅନ୍ତର୍ହିତ ହେଉଛି, କିନ୍ତୁ ଆକାଶ ଯେଉଁଭଳି ନୀଳବର୍ଣ୍ଣ, ସେହିଭଳି ନୀଳବର୍ଣ୍ଣ ହିଁ ରହିଅଛି ।' ଏହିପରି ଜ୍ଞାନର ଅଭ୍ୟାସ କରିବାକୁ ହେବ । ଜଗତରେ ଆମେମାନେ ଅସତ୍ ଭାବ ଦେଖୁ କାହିଁକି ? କାରଣ ଆମେମାନେ ନିଜେ ନିଜେ ହିଁ ଅସତ୍ । ରାସ୍ତାକଡ଼ରେ ଗୋଟିଏ ସ୍ଥାଣୁ ରହିଛି । ଗୋଟିଏ ଚୋର ସେହି ପଥଦେଇ ଯାଉଥିଲା । ସେ ଭାବିଲା—ଏ ଜଣେ ପହରାବାଲା । ଜଣେ ନାୟକ ତାହାକୁ ନିଜର ନାୟିକା ବୋଲି ଭାବିଲା । ଗୋଟିଏ ଶିଶୁ ତାହାକୁ ଦେଖି ଭୂତ ବୋଲି ମନେକରି ଚିତ୍କାର କରିବାକୁ ଲାଗିଲା । ଭିନ୍ନଭିନ୍ନ ବ୍ୟକ୍ତି ଏହିପରି ତାହାକୁ ବିଭିନ୍ନ ରୂପରେ ଦେଖିଲେ ମଧ୍ୟ ଏହା ସ୍ଥାଣୁ ବ୍ୟତୀତ ଅନ୍ୟ କିଛି ନ ଥିଲା ।

ଆମେମାନେ ନିଜେ ଯେପରି, ଜଗତକୁ ମଧ୍ୟ ସେହିପରି ଦେଖିଥାଉଁ । ଗୋଟିଏ ଟେବୁଲ୍ ଉପରେ ଅଳ୍ପଏ ମୋହର ରଖିଦିଅ ଏବଂ ମନେକର, ସେ ଅଳ୍ପ ପାଖରେ ଶିଶୁଟିଏ ରହିଛି । ଜଣେ ଚୋର ଆସି ଏହି ସ୍ୱର୍ଣ୍ଣମୁଦ୍ରାଗୁଡ଼ିକୁ ଗ୍ରହଣ କଲା । ଶିଶୁଟି କଅଣ ବୁଝିପାରିବ ଏହା ଅପହୃତ ହେଲା ବୋଲି ? ଆମମାନଙ୍କ ଭିତରେ ଯାହା, ବାହାରେ ମଧ୍ୟ ତାହା ଦେଖିଥାଉଁ । ଶିଶୁଟିର ମନ ଭିତରେ ଚୋରର ଧାରଣା ନାହିଁ, ତେଣୁ ସେ ବାହାରେ କାହାକୁ ମଧ୍ୟ ଚୋର ବୋଲି ଭାବେ ନାହିଁ । ସବୁପ୍ରକାର ଜ୍ଞାନ ତଦ୍ରୂପ । ଜଗତର ପାପ ଓ ଅତ୍ୟାଚାରର କଥା କହ ନାହିଁ, ବରଂ ତୁମକୁ ଯେ ଜଗତରେ ଏବେ ବି ସୁଦ୍ଧା ପାପ ଦେଖିବାକୁ ହେଉଛି, ସେଥିପାଇଁ ରୋଦନ କର । ତୁମେ ନିଜେ କାନ୍ଦ ଯେ ତୁମକୁ ଏବେ ମଧ୍ୟ ସର୍ବତ୍ର ପାପ ଦେଖିବାକୁ ପଡ଼ୁଛି । ଆଉ ଯଦି ତୁମେ ଜଗତ୍ର ଉପକାର କରିବାକୁ ଚାହଁ ତାହାହେଲେ ଆଉ ଜଗତ୍ ଉପରେ ଦୋଷାରୋପ କର ନାହିଁ । ତାହାକୁ ଆହୁରି ଅଧିକ ଦୁର୍ବଳ କର ନାହିଁ । ଏହିସବୁ ପାପ ଦୁଃଖ ପ୍ରଭୃତି ପୁଣି କଅଣ ? ଏଗୁଡ଼ିକ ତ ଦୁର୍ବଳତାର ହିଁ ଫଳ । ଲୋକ

ପିଲାଙ୍କଠାରୁ ଶିକ୍ଷା ପାଏ ଯେ, ସେ ଦୁର୍ବଳ ଓ ପାପୀ । ଜଗତ୍ ଏତଦ୍ରୂପ ଶିକ୍ଷାଦ୍ୱାରା ଦିନକୁ ଦିନ ଦୁର୍ବଳରୁ ଦୁର୍ବଳତର ହୋଇଛି । ସେମାନଙ୍କୁ ଶିଖାଅ ଯେ, ସେମାନେ ସମସ୍ତେ ହିଁ ସେହି ଅମୃତର ସନ୍ତାନ—ଏପରିକି ଯେଉଁମାନଙ୍କ ଭିତରେ ଆତ୍ମାର ପ୍ରକାଶ ଅତି କ୍ଷୀଣ, ସେମାନଙ୍କୁ ମଧ୍ୟ ତାହା ଶିଖାଅ । ବାଲ୍ୟକାଳରୁ ହିଁ ସେମାନଙ୍କ ମସ୍ତିଷ୍କରେ ଏହିଭଳି ଚିନ୍ତାସବୁ ପ୍ରବେଶ କରୁ, ଯାହା ସେମାନଙ୍କୁ ଯଥାର୍ଥ ସାହାଯ୍ୟ କରିବ, ଯାହା ସେମାନଙ୍କୁ ସବଳ କରିବ, ଯାହାଦ୍ୱାରା ସେମାନଙ୍କର ଗୋଟାଏ ଯଥାର୍ଥ ହିତ ସାଧିତ ହେବ । ଦୁର୍ବଳତା ଓ ଅବସାଦଦାୟକ ଚିନ୍ତା ଯେପରି ସେମାନଙ୍କ ମସ୍ତିଷ୍କରେ ପ୍ରବେଶ ନ କରେ । ସତ୍‌ଚିନ୍ତାରୂପକ ସ୍ରୋତରେ ନିଜକୁ ଭସାଇଦିଅ । ନିଜ ମନକୁ ସର୍ବଦା କହି 'ମୁଁ ସେହି' 'ମୁଁ ହିଁ ସେହି', ତୁମ ମନ ଭିତରେ ଦିନରାତି ଏହା ସଙ୍ଗୀତ ପରି ବାଜୁଥାଉ ଏବଂ ମୃତ୍ୟୁ ସମୟରେ ମଧ୍ୟ 'ସୋଽହଂ' 'ସୋଽହଂ' କହି ଦେହତ୍ୟାଗ କର । ଏହା ହିଁ ସତ୍ୟ ଯେ, ଜଗତର ଅନନ୍ତ ଶକ୍ତି ତୁମରି ଭିତରେ । ଯେଉଁ କୁସଂସ୍କାର ତୁମ ମନକୁ ଆବୃତ କରି ରଖିଛି, ତାହାକୁ ତଡ଼ିଦିଅ । ସାହସୀ ହୁଅ, ସତ୍ୟକୁ ବୁଝି ତାହା ଜୀବନରେ ପରିଣତ କର । ଚରମ ଲକ୍ଷ୍ୟ ଅନେକ ଦୂର ହୋଇପାରେ । କିନ୍ତୁ 'ଉତ୍ତିଷ୍ଠତ ଜାଗ୍ରତ ପ୍ରାପ୍ୟ ବରାନ୍ ନିବୋଧତ ।'

# ମନୁଷ୍ୟର ଯଥାର୍ଥ ସ୍ୱରୂପ (୨)

[ ନ୍ୟୁୟର୍କରେ ପ୍ରଦତ୍ତ ବକ୍ତୃତା ]

ଆମେମାନେ ଏଠାରେ ଛିଡ଼ା ହୋଇ ରହିଛୁଁ; କିନ୍ତୁ ଆମମାନଙ୍କର ଦୃଷ୍ଟି ସମ୍ମୁଖକୁ ପ୍ରସାରିତ। ଅନେକ ସମୟରେ ଆମେମାନେ ବହୁ ଦୂରକୁ ଦୃଷ୍ଟି ନିକ୍ଷେପ କରୁ। ମନୁଷ୍ୟ ଯେଉଁଦିନଠାରୁ ଚିନ୍ତା କରିବାକୁ ଆରମ୍ଭ କଲାଣି ସେହି ଦିନଠାରୁ ସେ ଏହିପରି କରୁଛି। ମନୁଷ୍ୟ ସର୍ବଦା ହିଁ ସମ୍ମୁଖକୁ—ଭବିଷ୍ୟତକୁ ଦୃଷ୍ଟି ନିକ୍ଷେପ କରୁଛି। ମନୁଷ୍ୟ ଜାଣିବାକୁ ଚାହେଁ—ଏହି ଶରୀରର ଧ୍ୱଂସ ପରେ ସେ କେଉଁଆଡ଼କୁ ଯାଏ? ଏହି ରହସ୍ୟୋଦ୍‌ଘାଟନ ନିମିତ୍ତ ଅନେକ ମତବାଦ ପ୍ରଚଳିତ ହୋଇଛି, ଗୋଟିଏ ପରେ ଗୋଟିଏ ମତ ସ୍ଥାପିତ ହୋଇଛି, ପୁଣି ଶତଶତ ମତ ଖଣ୍ଡିତ ହୋଇ ପରିତ୍ୟକ୍ତ ହୋଇଛି। କେବଳମାତ୍ର କେତେଗୁଡ଼ିଏ ଗୃହୀତ ହୋଇଅଛି। ଆଉ ଯେତେଦିନ ମନୁଷ୍ୟ ଏହି ଜଗତରେ ବାସ କରିବ, ଯେତେଦିନ ସେ ଚିନ୍ତା କରୁଥିବ, ସେତେଦିନ ଏହିଭଳି ଚାଲିଥିବ। ଏହିସବୁ ମତଗୁଡ଼ିକର କିଛି ନା କିଛି ସତ୍ୟତା ଅଛି, ପୁଣି ଅନେକ ଅସତ୍ୟ ବି ଅଛି। ଏହି ସମ୍ବନ୍ଧରେ ଭାରତରେ ଯେଉଁସବୁ ଅନୁସନ୍ଧାନ ହୋଇଛି, ସେଗୁଡ଼ିକର ସାର ସିଦ୍ଧାନ୍ତ ମୁଁ ଆପଣମାନଙ୍କୁ କହିବାକୁ ଚେଷ୍ଟା କରିବି। ଭାରତୀୟ ଦାର୍ଶନିକମାନଙ୍କର ଏହିସବୁ ବିଭିନ୍ନ ମତର ସମନ୍ୱୟ କରିବାକୁ ଏବଂ ଯଦି ସମ୍ଭବ ହୁଏ, ସେମାନଙ୍କ ସହିତ ଆଧୁନିକ ବୈଜ୍ଞାନିକ ସିଦ୍ଧାନ୍ତ-ଗୁଡ଼ିକର ସମନ୍ୱୟ ସାଧନ କରିବାକୁ ଚେଷ୍ଟା କରିବି।

ବେଦାନ୍ତଦର୍ଶନର ଗୋଟିଏ ଉଦ୍ଦେଶ୍ୟ—ଏକତ୍ୱର ଅନୁସନ୍ଧାନ। ହିନ୍ଦୁମାନେ ବିଶେଷ* ପ୍ରତି ସେତେ ଦୃଷ୍ଟି ଦିଅନ୍ତି ନାହିଁ, ସେମାନେ ସର୍ବଦା ହିଁ ସାମାନ୍ୟ**ର—ଖାଲି ସେତିକି ନୁହେଁ, ସର୍ବବ୍ୟାପୀ ସାର୍ବଭୌମ ବସ୍ତୁର ଅନ୍ୱେଷଣ କରିଛନ୍ତି। ଦେଖାଯାଏ, ସେମାନେ 'ଏପରି କି ପଦାର୍ଥ ଅଛି, ଯାହାକୁ ଜାଣିଲେ ସମୁଦାୟକୁ ଜାଣି ହୁଏ'— ଏହି ପ୍ରଶ୍ନର ହିଁ ପୁନଃ ପୁନଃ ଅନୁସନ୍ଧାନ କରିଛନ୍ତି। 'ଯେପରି ପିଣ୍ଡୁଳାଏ ମାଟିକୁ ଜାଣିପାରିଲେ ସମୁଦାୟ ମାଟିକୁ ଜାଣିହୁଏ, ସେହିଭଳି ଏପରି କେଉଁ ବସ୍ତୁ ଅଛି, ଯାହାକୁ ଜାଣିଲେ ସମୁଦାୟ ଜଗତ୍ ସମ୍ପର୍କରେ ଜ୍ଞାନଲାଭ ହେବ?' ଏହା ହିଁ ସେମାନଙ୍କର ଏକମାତ୍ର ଅନୁସନ୍ଧାନ, ଏହା ସେମାନଙ୍କର ଏକମାତ୍ର ଜିଜ୍ଞାସା।***

---

* Particular

** General.

*** ଛାନ୍ଦୋଗ୍ୟ ଉପ., ୬।୧।୪

ସେମାନଙ୍କ ମତରେ ସମୁଦାୟ ଜଗତକୁ ବିଶ୍ଳେଷଣ କରି ଏକମାତ୍ର ଆକାଶତତ୍ତ୍ୱରେ ପର୍ଯ୍ୟବସିତ କରାଯାଇପାରେ । ଚତୁର୍ଦ୍ଦିଗରେ ଆମେ ଯାହା କିଛି ଦେଖିବାକୁ ପାଉଁ, ସ୍ପର୍ଶ କରିପାରୁଁ ବା ଆସ୍ୱାଦନ କରିପାରୁଁ, ଏପରି କି, ଆମେ ଯାହା କିଛି ଅନୁଭବ କରିପାରୁଁ—ସମସ୍ତ ହିଁ କେବଳ ଏହି ଆକାଶର ବିଭିନ୍ନ ବିକାଶମାତ୍ର । ଏହି ଆକାଶ ସୂକ୍ଷ୍ମ ଓ ସର୍ବବ୍ୟାପୀ । କଠିନ, ତରଳ, ବାଷ୍ପୀୟ ସକଳ ପଦାର୍ଥ, ସର୍ବପ୍ରକାର ଆକୃତି ଓ ଶରୀର, ପୃଥିବୀ, ସୂର୍ଯ୍ୟ, ଚନ୍ଦ୍ର, ତାରା—ସକଳ ହିଁ ଏହି ଆକାଶରୁ ଉତ୍ପନ୍ନ ।

କେଉଁ ଶକ୍ତି ଏହି ଆକାଶ ଉପରେ କାର୍ଯ୍ୟ କରି ସେଥିରୁ ଜଗତକୁ ସୃଷ୍ଟି କଲା ? ଆକାଶ ସଙ୍ଗରେ ଗୋଟିଏ ସର୍ବବ୍ୟାପୀ ଶକ୍ତି ରହିଛି । ଜଗତ୍ ମଧ୍ୟରେ ଯେତେ ପ୍ରକାର ଭିନ୍ନ ଭିନ୍ନ ଶକ୍ତି ଅଛି—ଆକର୍ଷଣ, ବିକର୍ଷଣ, ଏପରିକି ଚିନ୍ତାଶକ୍ତି ପର୍ଯ୍ୟନ୍ତ ସବୁ—'ପ୍ରାଣ' ନାମକ ଏକ ମହାଶକ୍ତିର ବିକାଶ । ଏହି ପ୍ରାଣ ଆକାଶ ଉପରେ କାର୍ଯ୍ୟ କରି ଏହି ଜଗତ-ପ୍ରପଞ୍ଚକୁ ରଚନା କରିଛି । କଳ୍ପପ୍ରାରମ୍ଭରେ ଏହି ପ୍ରାଣ ଯେପରି କି ଅନନ୍ତ ଆକାଶ-ସମୁଦ୍ରରେ ପ୍ରସୁପ୍ତ ରହିଥାଏ । ପ୍ରାରମ୍ଭରେ ଏହି ଆକାଶ ଗତିହୀନରୂପେ ଅବସ୍ଥିତ ଥିଲା । ପରେ ପ୍ରାଣର ପ୍ରଭାବରେ ଏହି ଆକାଶ ସମୁଦ୍ରରେ ଗତିର ଉତ୍ପନ୍ନ ହୁଏ । ପୁନଶ୍ଚ ଏହି ପ୍ରାଣର ଗତି ଯେମିତି ହୋଇଥାଏ, ସେମିତି ଏହି ଆକାଶ-ସମୁଦ୍ରରୁ ନାନା ବ୍ରହ୍ମାଣ୍ଡ, ନାନା ଜଗତ୍—କେତେ ସୂର୍ଯ୍ୟ, କେତେ ଚନ୍ଦ୍ର, କେତେ ତାରା, ପୃଥିବୀ, ମନୁଷ୍ୟ, ଜନ୍ତୁ, ଉଦ୍ଭିଦ ଏବଂ ନାନାଶକ୍ତି ଉତ୍ପନ୍ନ ହୋଇଥାଏ । ଅତଏବ ହିନ୍ଦୁମାନଙ୍କ ମତରେ, ସର୍ବପ୍ରକାର ଶକ୍ତି ପ୍ରାଣର ଏବଂ ସର୍ବପ୍ରକାର ଭୂତ ଆକାଶର ବିଭିନ୍ନ ରୂପ ମାତ୍ର । କଳ୍ପ ଶେଷରେ ସମୁଦାୟ କଠିନ ପଦାର୍ଥ ଦ୍ରବ ହୋଇଯିବ, ସେତେବେଳେ ସେହି ତରଳ ପଦାର୍ଥଟି ବାଷ୍ପୀୟ ଆକାରରେ ପରିଣତ ହେବ । ତାହା ପୁଣି ତେଜୋରୂପ ଧାରଣ କରିବ । ଅବଶେଷରେ ସମୁଦାୟ ଯେଉଁଥିରୁ ଉତ୍ପନ୍ନ ହୋଇଥିଲା, ସେହି ଆକାଶରେ ପୁଣି ଲୀନ ହେବ । ପୁଣି ଆକର୍ଷଣ, ବିକର୍ଷଣ, ଗତି ପ୍ରଭୃତି ସମୁଦାୟ ଶକ୍ତି ଧୀରେ ଧୀରେ ମୂଳ ପ୍ରାଣରେ ପରିଣତ ହେବ । କିଛିକାଳ ପାଇଁ ଏହି ପ୍ରାଣ ଯେପରି କି ନିଦ୍ରିତ ଅବସ୍ଥାରେ ରହିବ, କଳ୍ପାରମ୍ଭ ହେଲେ ପୁନରାୟ ଜାଗ୍ରତ ହୋଇ ନାନାବିଧ ରୂପ ପ୍ରକାଶ କରିବ, ପୁଣି କଳ୍ପାବସାନରେ ସମୁଦାୟର ବିଲୟ ଘଟିବ । ଏହିପରି ସୃଷ୍ଟିପ୍ରଣାଳୀ ଚାଲୁଅଛି; ଆସୁଅଛି, ଯାଉଅଛି—ଥରେ ପଶ୍ଚାତ୍‌ଗତ ହେଲେ ପୁନର୍ବାର ଯେପରି କି ସମ୍ମୁଖ ଆଡ଼କୁ ଗତିକରୁଛି । ଆଧୁନିକ ବିଜ୍ଞାନର ଭାଷାରେ କହିବାକୁ ଗଲେ କୁହାଯିବ, ଥରେ ଏହା ସ୍ଥିତିଶୀଳ ହେଲେ ପୁଣି ଏହା ଗତିଶୀଳ ହେଉଛି; ଥରେ ପ୍ରସୁପ୍ତ ହେଉଛି ତ ଆଉ ଥରେ କ୍ରିୟାଶୀଳ ହେଉଛି । ଏହିଭଳି ଅନନ୍ତକାଳ ଧରି ଚାଲିଛି ।

କିନ୍ତୁ ଏହି ବିଶ୍ଳେଷଣ ବି ଆଂଶିକ ହେଲା । ଆଧୁନିକ ପଦାର୍ଥବିଜ୍ଞାନ ମଧ୍ୟ ଏହି ପର୍ଯ୍ୟନ୍ତ ଜାଣିଛି । ଏହାର ଉପରକୁ ଭୌତିକ ବିଜ୍ଞାନର ଅନୁସନ୍ଧାନ ଆଉ

ଯାଇପାରେ ନାହିଁ । କିନ୍ତୁ ଏହି ଅନୁସନ୍ଧାନ ଯେ ଏଠାରେ ଶେଷ ହୋଇଗଲା, ତାହା ମଧ୍ୟ ନୁହେଁ । ଆମେମାନେ ଏପରି କିଛି ପାଇଲୁ ନାହିଁ, ଯାହାକୁ ଜାଣିଲେ ସମୁଦାୟକୁ ଜାଣି ହେବ । ଆମେ ସମୁଦାୟ ଜଗତ୍‌କୁ ଭୂତ ଓ ଶକ୍ତିରେ କିମ୍ବା ପ୍ରାଚୀନ ଭାରତୀୟ ଦାର୍ଶନିକମାନଙ୍କ ଭାଷାରେ କହିବାକୁ ଗଲେ, ଆକାଶ ଓ ପ୍ରାଣରେ ପର୍ଯ୍ୟବସିତ କରିଛୁ । ବର୍ତ୍ତମାନ ଆକାଶ ଓ ପ୍ରାଣକୁ ଏମାନଙ୍କ ଆଦିକାରଣରେ ପର୍ଯ୍ୟବସିତ କରିବାକୁ ହେବ । ସେମାନଙ୍କୁ 'ମନ' ନାମକ ଉଚ୍ଚତର କ୍ରିୟାଶକ୍ତିରେ ପର୍ଯ୍ୟବସିତ କରାଯାଇ-ପାରେ । 'ମହତ୍' ଅର୍ଥାତ୍ ଚିନ୍ତାଶକ୍ତି-ସମଷ୍ଟିରୁ ପ୍ରାଣ ଓ ଆକାଶ, ଉଭୟର ଉତ୍ପତ୍ତି । ଚିନ୍ତାଶକ୍ତି ହିଁ ଏହି ଦୁଇଟି ଶକ୍ତିରୂପେ ବିଭକ୍ତ ହୋଇଥାଏ; ପ୍ରଥମେ ଏହି ସର୍ବବ୍ୟାପୀ ମନ ଥିଲା, ତାହା ପରିଣତ ହୋଇ ଆକାଶ ଓ ପ୍ରାଣରୂପ ଧାରଣ କଲା, ଆଉ ଏହି ଦୁଇଟିର ସଂଯୋଗରେ ସମୁଦାୟ ଜଗତ୍ ଉତ୍ପନ୍ନ ହୋଇଛି ।

ବର୍ତ୍ତମାନ ମନସ୍ତତ୍ତ୍ୱ ଆଲୋଚନା କରାଯାଉ । ମୁଁ ତୁମକୁ ଦେଖୁଛି । ଚକ୍ଷୁଦ୍ୱାରା ବିଷୟ ଗୃହୀତ ହେଉଛି । ତାହା ଅନୁଭୂତିଜନକ ସ୍ନାୟୁଦ୍ୱାରା ମସ୍ତିଷ୍କକୁ ପ୍ରେରିତ ହେଉଛି । ଏହି ଚକ୍ଷୁ ଦର୍ଶନର ସାଧନ ନୁହେଁ, ତାହା ବାହାରର ଯନ୍ତ୍ର ମାତ୍ର । କାରଣ, ଦର୍ଶନର ପ୍ରକୃତ ସାଧନ—ଯାହା ମସ୍ତିଷ୍କକୁ ବିଷୟଜ୍ଞାନର ସମ୍ବାଦ ବହନ କରେ, ତାହା ଯଦି ନଷ୍ଟ ହୋଇଯାଏ, ତେବେ ମୋର କୋଡ଼ିଏଟି ଚକ୍ଷୁ ରହିଲେ ମଧ୍ୟ ତୁମମାନଙ୍କ ମଧ୍ୟରୁ କାହାରିକୁ ବି ଦେଖିବାକୁ ପାଇବି ନାହିଁ । ଅକ୍ଷିଜାଲ (retina) ଉପରେ ସମ୍ପୂର୍ଣ୍ଣ ଛବି ପଡ଼ିପାରେ, ତଥାପି ମୁଁ ତୁମମାନଙ୍କୁ ଦେଖିବାକୁ ପାଇବି ନାହିଁ । ସୁତରାଂ ପ୍ରକୃତ ଦର୍ଶନେନ୍ଦ୍ରିୟ ଏହି ଚକ୍ଷୁଠାରୁ ପୃଥକ୍ । ପ୍ରକୃତ ଚକ୍ଷୁରିନ୍ଦ୍ରିୟ ଅବଶ୍ୟ ଚକ୍ଷୁଯନ୍ତ୍ରର ପଶ୍ଚାତ୍‌ରେ ଅବସ୍ଥିତ । ସକଳ ପ୍ରକାର ବିଷୟାନୁଭୂତି ସମ୍ବନ୍ଧରେ ଏହା ବୁଝିବାକୁ ହେବ । ନାସିକା ଘ୍ରାଣେନ୍ଦ୍ରିୟ ନୁହେଁ; ତାହା ଯନ୍ତ୍ରମାତ୍ର, ଘ୍ରାଣେନ୍ଦ୍ରିୟ ତା'ର ପଶ୍ଚାତ୍‌ରେ । ପ୍ରତ୍ୟେକ ଇନ୍ଦ୍ରିୟ ସମ୍ବନ୍ଧରେ ଏହା ହିଁ ବୁଝିବାକୁ ହେବ, ପ୍ରଥମେ ଏହି ସ୍ଥୂଳ ଶରୀରରେ ବାହ୍ୟ ଯନ୍ତ୍ରଗୁଡ଼ିକ ଅବସ୍ଥିତ; ତତ୍ ପଶ୍ଚାତ୍‌ରେ ଇନ୍ଦ୍ରିୟଗଣ ମଧ୍ୟ ଅବସ୍ଥିତ, ତଥାପି ପର୍ଯ୍ୟାପ୍ତ ହେଲା ନାହିଁ । ମନେକର, ମୁଁ ତୁମ ସହିତ କଥା କହୁଛି, ଆଉ ତୁମେ ଅତିଶୟ ମନୋଯୋଗପୂର୍ବକ ମୋ କଥା ଶୁଣୁଛ; ଏପରି ସମୟରେ ସେଠାରେ ଗୋଟିଏ ଘଣ୍ଟା ବାଜିଲା, ତୁମେ ହୁଏତ ସେହି ଘଣ୍ଟାଧ୍ୱନି ଶୁଣିବାକୁ ପାଇବ ନାହିଁ । ଏହି ଶବ୍ଦ-ତରଙ୍ଗ ତୁମ କର୍ଣ୍ଣଗହ୍ୱରରେ ପ୍ରବେଶ କରି କର୍ଣ୍ଣପଟ୍ଟରେ ବାଜିଲା, ସ୍ନାୟୁଦ୍ୱାରା ଏହି ସମ୍ବାଦ ମସ୍ତିଷ୍କରେ ପହଞ୍ଚିଲା; ତଥାପି ତୁମେ ଶୁଣିବାକୁ ପାଇଲ ନାହିଁ କାହିଁକି ? ଯଦି ମସ୍ତିଷ୍କକୁ ସମ୍ବାଦ ବହନ ପର୍ଯ୍ୟନ୍ତ ସମସ୍ତ ଶ୍ରବଣ-ପ୍ରକ୍ରିୟାଟି ସମ୍ପୂର୍ଣ୍ଣ ହୋଇଥାଏ, ତେବେ ତୁମେ ଶୁଣିବାକୁ ପାଇଲ ନାହିଁ କାହିଁକି ? ତାହାହେଲେ ଦେଖାଗଲା ଏହି ଶ୍ରବଣ-ପ୍ରକ୍ରିୟା ନିମିତ୍ତ ଆଉ କିଛି ଆବଶ୍ୟକ—ତାହା ମନ ସହିତ ଇନ୍ଦ୍ରିୟର ଯୋଗ । ଯେତେବେଳେ ମନ ଇନ୍ଦ୍ରିୟଠାରୁ ପୃଥକ୍ ରହିଥାଏ, ଇନ୍ଦ୍ରିୟ ଏହାକୁ କୌଣସି ସମ୍ବାଦ ଆଣିଦେଲେ ମଧ୍ୟ ମନ ତାହା ଗ୍ରହଣ କରିବ ନାହିଁ ।

ଯେତେବେଳେ ମନ ସେଥିରେ ଯୁକ୍ତ ହୁଏ, କେବଳ ସେତେବେଳେ ତା' ପକ୍ଷରେ କୌଣସି ସମ୍ବାଦ ଗ୍ରହଣ କରିବା ସମ୍ଭବ; କିନ୍ତୁ ସେଥିରେ ବି ବିଷୟାନୁଭୂତି ସମ୍ପୂର୍ଣ୍ଣ ହେବ ନାହିଁ । ବାହାରର ଯନ୍ତ୍ର ସମ୍ବାଦ ବହନ କରିପାରେ; ଇନ୍ଦ୍ରିୟଗୁଡ଼ିକ ତାହା ଭିତରକୁ ବହନ କରିପାରନ୍ତି,ମନ ମଧ୍ୟ ଇନ୍ଦ୍ରିୟମାନଙ୍କ ସହିତ ସଂଯୁକ୍ତ ହୋଇପାରେ; ତଥାପି ବିଷୟାନୁଭୂତି ସମ୍ପୂର୍ଣ୍ଣ ହେବ ନାହିଁ । ଏଥିପାଇଁ ଆଉ ଗୋଟିଏ ଜିନିଷ ଆବଶ୍ୟକ । ଆମ ଭିତରୁ ପ୍ରତିକ୍ରିୟା ଆବଶ୍ୟକ । ପ୍ରତିକ୍ରିୟାରୁ ଜ୍ଞାନ ଉତ୍ପନ୍ନ ହେବ । ବାହାରର ବସ୍ତୁ ଯେମିତି ଭିତରକୁ ସମ୍ବାଦ-ପ୍ରବାହ ପ୍ରେରଣ କଲା, ମୋର ମନ ତାହା ଗ୍ରହଣ କରିନେଇ ବୁଦ୍ଧି ନିକଟକୁ ପ୍ରେରଣ କଲା, ବୁଦ୍ଧି ମନର ପୂର୍ବ-ସଂସ୍କାର-ନୁଯାୟୀ ଏହାକୁ ସଜାଇଲା ଏବଂ ବାହାରକୁ ପ୍ରତିକ୍ରିୟା-ପ୍ରବାହ ପ୍ରେରଣ କଲା । ଏହି ପ୍ରତିକ୍ରିୟା ସଙ୍ଗେ ସଙ୍ଗେ ବିଷୟାନୁଭୂତି ହୋଇଥାଏ । ମନରେ ଯେଉଁ ଶକ୍ତି ଏହି ପ୍ରତିକ୍ରିୟା ପ୍ରେରଣ କରେ, ତାହାକୁ ହିଁ ବୁଦ୍ଧି କୁହାଯାଏ । ତଥାପି ଏହି ବିଷୟାନୁଭୂତି ସମ୍ପୂର୍ଣ୍ଣ ହେଲା ନାହିଁ । ମନେକର—ଗୋଟିଏ ମ୍ୟାଜିକ୍ ଲଣ୍ଠନ (magic lantern) ରହିଛି, ଆଉ ଗୋଟିଏ ବସ୍ତ୍ରଖଣ୍ଡ ରହିଛି । ମୁଁ ଏହି ବସ୍ତ୍ରଖଣ୍ଡ ଉପରେ ଗୋଟିଏ ଛବି ପକାଇବାକୁ ଚେଷ୍ଟା କରୁଅଛି । ମୁଁ କ'ଣ କରୁଛି ? ମୁଁ ମ୍ୟାଜିକ୍ ଲଣ୍ଠନର ନାନା ପ୍ରକାର ଆଲୋକ-କିରଣ ଏହି ବସ୍ତ୍ରଖଣ୍ଡ ଉପରେ ପକାଇବାକୁ ଏବଂ ଏହି ସ୍ଥାନରେ ଏକତ୍ରିତ କରିବାକୁ ଚେଷ୍ଟା କରୁଅଛି । ଏକ ଅଚଳ ବସ୍ତୁ ଆବଶ୍ୟକ, ଯାହା ଉପରେ ଛବି ପକା ଯାଇପାରେ । କୌଣସି ସଚଳ ବସ୍ତୁ ଉପରେ ଛବି ପକାଇବା ଅସମ୍ଭବ—କୌଣସି ଏକ ସ୍ଥିର ବସ୍ତୁର ହିଁ ପ୍ରୟୋଜନ । କାରଣ ମୁଁ ଯେଉଁ ଆଲୋକକିରଣଗୁଡ଼ିକୁ ପକାଇବାର ଚେଷ୍ଟା କରୁଛି, ସେଗୁଡ଼ିକ ସଚଳ, ଏହି ସଚଳ ଆଲୋକକିରଣଗୁଡ଼ିକୁ କୌଣସି ଅଚଳ ବସ୍ତୁ ଉପରେ ଏକତ୍ରିତ—ଏକୀଭୂତ କରି ମିଳିତ କରିବାକୁ ହେବ । ଯେଉଁସବୁ ଅନୁଭୂତିଗୁଡ଼ିକୁ ଇନ୍ଦ୍ରିୟମାନେ ଭିତରେ ଗ୍ରହଣ କରି ମନ ନିକଟରେ ଏବଂ ମନ ତାହା ନେଇ ବୁଦ୍ଧି ନିକଟରେ ସମର୍ପଣ କରୁଛି, ସେମାନଙ୍କ ସମ୍ବନ୍ଧରେ ମଧ୍ୟ ଏହିପରି । ଛବିର ପ୍ରତିଫଳନ ପାଇଁ ଯେପର୍ଯ୍ୟନ୍ତ ଏପରି କୌଣସି ବସ୍ତୁ ନ ମିଳିଛି, ଯାହା ଉପରେ ଏହି ଛବି ପକାଯାଇପାରେ, ଯେଉଁଥିରେ ଏହି ଭିନ୍ନ ଭିନ୍ନ ଭାବଗୁଡ଼ିକ ଏକତ୍ର ମିଳିତ ହୋଇପାରେ, ସେପର୍ଯ୍ୟନ୍ତ ଏହି ବିଷୟାନୁଭୂତି ସମ୍ପୂର୍ଣ୍ଣ ହେଉ ନାହିଁ । କ'ଣ ସେ ବସ୍ତୁ, ଯାହା ଆମର ପରିବର୍ତ୍ତିନଶୀଳ ସତ୍ତାକୁ ଗୋଟିଏ ଏକତ୍ୱ ଭାବ ପ୍ରଦାନ କରେ ? କ'ଣ ସେ ବସ୍ତୁ ଯାହା ବିଭିନ୍ନ ଗତି ମଧ୍ୟରେ ବି ପ୍ରତି ମୁହୂର୍ତ୍ତରେ ଏକତ୍ୱ ରକ୍ଷା କରିଥାଏ ? କ'ଣ ସେ ବସ୍ତୁ, ଯାହା ଉପରେ ଭିନ୍ନ ଭିନ୍ନ ଭାବଗୁଡ଼ିକ ଯେପରି କି ଏକତ୍ର ଗ୍ରଥିତ ଥାଏ, ଯାହା ଉପରେ ବିଷୟଗୁଡ଼ିକ ଆସି ଯେପରି କି ଏକତ୍ର ବାସ କରେ ଏବଂ ଏକ ଅଖଣ୍ଡଭାବ ଧାରଣ କରେ ? ଆମେମାନେ ଦେଖିଲୁଁ ଏପରି କିଛି ଆବଶ୍ୟକ ଯାହା ଶରୀର ଓ ମନ ତୁଳନାରେ ଅଚଳ ହେବା ଆବଶ୍ୟକ । ଯେଉଁ ବସ୍ତ୍ରଖଣ୍ଡ ଉପରେ ଏହି କାମେରା ଛବି ପ୍ରକ୍ଷେପ,

କରୁଛି, ତାହା ଏହି ଆଲୋକକରଣଗୁଡ଼ିକ ତୁଳନାରେ ଅଚଳ । ତାହା ନ ହେଲେ କୌଣସି ଚିତ୍ର ପ୍ରକ୍ଷିପ୍ତ ହେବ ନାହିଁ । ଅର୍ଥାତ୍ ଅନୁଭବିତା ଗୋଟିଏ 'ବ୍ୟକ୍ତି' ହେବା ଆବଶ୍ୟକ । ଏହି ବସ୍ତୁ ଯାହା ଉପରେ ମନ ଏହିସବୁ ଚିତ୍ରାଙ୍କନ କରୁଅଛି—ଯାହା ଉପରେ ମନ ଓ ବୁଦ୍ଧିଦ୍ୱାରା ବାହିତ ହୋଇ ଆମମାନଙ୍କର ସମସ୍ତ ବିଷୟାନୁଭୂତି ସ୍ଥାପିତ, ଶ୍ରେଣୀବଦ୍ଧ ଓ ଏକତ୍ରୀଭୂତ ହୁଏ, ତାହାକୁ ହିଁ ମନୁଷ୍ୟର ଆତ୍ମା କହିନ୍ତି ।

ଆମେ ଦେଖିଲୁ ସମଷ୍ଟି-ମନ ବା ମହତ୍—ଆକାଶ ଓ ପ୍ରାଣ ଏହି ଦୁଇ ଭାଗରେ ବିଭକ୍ତ ହୋଇଅଛି । ପୁଣି ମନର ପଶ୍ଚାତ୍-ଦେଶରେ ଆତ୍ମା ରହିଛି । ସମଷ୍ଟି-ମନର ପଶ୍ଚାତ୍-ଦେଶରେ ଥିବା ଆତ୍ମାକୁ 'ଈଶ୍ୱର' କୁହାଯାଏ । ବ୍ୟଷ୍ଟି ହିସାବରେ ଏହା ମାନବର ଆତ୍ମା ମାତ୍ର । ଯେପରି ଜଗତରେ ସମଷ୍ଟି-ମନ ଆକାଶ ଓ ପ୍ରାଣରୂପେ ପରିଣତ ହୋଇଛି, ସେହିପରି ସମଷ୍ଟି-ଆତ୍ମା ମଧ୍ୟ ମନରୂପେ ପରିଣତ ହୋଇଛି । ବର୍ତ୍ତମାନ ପ୍ରଶ୍ନ ଏହି—ବ୍ୟଷ୍ଟିମାନବ ସମ୍ବନ୍ଧରେ ବି କ'ଣ ସେହିପରି ? ମନୁଷ୍ୟର ମନ କ'ଣ ତା'ର ଶରୀରର ସ୍ରଷ୍ଟା, ଆଉ ତାର ଆତ୍ମା ତାର ମନର ସ୍ରଷ୍ଟା—ଅର୍ଥାତ୍ ମନୁଷ୍ୟର ଶରୀର, ମନ ଓ ଆତ୍ମା ଏହି ତିନୋଟି ବିଭିନ୍ନ ବସ୍ତୁ ଅଥବା ଏମାନେ ଗୋଟିଏ ଭିତରେ ହିଁ ତିନୋଟି, କିମ୍ବା ଏମାନେ ଏକ ପଦାର୍ଥ ମଧ୍ୟରେ ବିଭିନ୍ନ ଅବସ୍ଥା ମାତ୍ର ? ଆମେମାନେ କ୍ରମଶଃ ଏହି ପ୍ରଶ୍ନଗୁଡ଼ିକର ଉତ୍ତର ଦେବା ପାଇଁ ଚେଷ୍ଟା କରିବୁ । ଯାହାହେଉ, ଆମେ ଏତେବେଳେ ଏହା ଜାଣିବାକୁ ପାଇଲୁ—ପ୍ରଥମତଃ ଏହି ସ୍ଥୂଳ ଦେହ, ତତ୍ପଶ୍ଚାତ୍ତରେ ଇନ୍ଦ୍ରିୟଗଣ, ମନ, ବୁଦ୍ଧି ଏବଂ ପଛରେ ଆତ୍ମା । ପ୍ରଥମେ ଆମେ ବୁଝିପାରିଲୁ ଯେ, ଆତ୍ମା ଶରୀରଠାରୁ ପୃଥକ୍, ମନଠାରୁ ମଧ୍ୟ ପୃଥକ୍ । ଏହିଠାରୁ ହିଁ ଧର୍ମଜଗତରେ ମତଭେଦ ଦେଖାଯାଏ । ଦ୍ୱୈତବାଦୀ କହନ୍ତି —ଆତ୍ମା ସଗୁଣ ଅର୍ଥାତ୍ ଭୋଗ, ସୁଖ, ଦୁଃଖର ସବୁ ଅନୁଭୂତିଗୁଡ଼ିକ ଯଥାର୍ଥରେ ଆତ୍ମାର ଧର୍ମ; ମାତ୍ର ଅଦ୍ୱୈତବାଦୀ କହନ୍ତି—ଆତ୍ମା ନିର୍ଗୁଣ ।

ଆମେମାନେ ପ୍ରଥମେ ଦ୍ୱୈତବାଦୀମାନଙ୍କର ମତ—ଆତ୍ମା ଓ ତାହାର ଗତି ସମ୍ବନ୍ଧରେ ସେମାନଙ୍କର ମତ ବର୍ଣ୍ଣନା କରି ତତ୍ପରେ ଯେଉଁ ମତ ତାହାକୁ ସମ୍ପୂର୍ଣ୍ଣ-ରୂପେ ଖଣ୍ଡନ କରେ, ତାହାର ବର୍ଣ୍ଣନା କରିବୁ । ପରିଶେଷରେ ଅଦ୍ୱୈତବାଦଦ୍ୱାରା ଉଭୟ ମତର ସାମଞ୍ଜସ୍ୟ ପ୍ରତିପାଦନ କରିବା ପାଇଁ ଚେଷ୍ଟା କରିବୁ । ଶରୀର ଓ ମନଠାରୁ ପୃଥକ୍ ଏବଂ ଆକାଶ ଓ ପ୍ରାଣଦ୍ୱାରା ଗଠିତ ନୁହେଁ ବୋଲି ଏହି ମାନବାତ୍ମା ହେଉଛି ଅମର । କାହିଁକି ? ମରିତ୍ୱ ବା ନଶ୍ୱରତ୍ୱର ଅର୍ଥ କ'ଣ ? ଯାହା ବିଶ୍ଳିଷ୍ଟ ହୋଇଯାଏ, ତାହା ହିଁ ନଶ୍ୱର । ପୁଣି କେତେଗୁଡ଼ିଏ ପଦାର୍ଥ ସଂଯୋଗରୁ ଯେଉଁ ଦ୍ରବ୍ୟ ଲବ୍ଧ ତାହା ହିଁ ବିଶ୍ଳିଷ୍ଟ ହେବ । କେବଳ ଯେଉଁ ପଦାର୍ଥ ଅନ୍ୟ ପଦାର୍ଥ ସଂଯୋଗରୁ ଉତ୍ପନ୍ନ ନୁହେଁ, ତାହା ହିଁ ବିଶ୍ଳିଷ୍ଟ ହୁଏ ନାହିଁ । ସୁତରାଂ ତାହାର ବିନାଶ କଦାପି ହୋଇପାରେ ନାହିଁ, ତାହା ଅବିନାଶୀ । ତାହା ଅନନ୍ତ କାଳ ଧରି ରହିଛି, ତାହାର କଦାପି ସୃଷ୍ଟି ହୋଇ ନାହିଁ । ସୃଷ୍ଟି କେବଳ ସଂଯୋଗ ମାତ୍ର । ଶୂନ୍ୟରୁ ସୃଷ୍ଟି କେହି

କେବେ ଦେଖି ନାହିଁ । ସୃଷ୍ଟି ସମ୍ବନ୍ଧରେ ଆମେମାନେ କେବଳ ଏତିକମାତ୍ର ଜାଣୁ ଯେ ଏହା ପୂର୍ବରୁ ଅବସ୍ଥିତ କେତେଗୁଡ଼ିଏ ବସ୍ତୁର ନୂତନ ନୂତନ ରୂପରେ ଏକତ୍ର ମିଳନ ମାତ୍ର । ତାହା ଯଦି ହେଲା, ତାହାହେଲେ ଏହି ମାନବାତ୍ମା ଭିନ୍ନ ଭିନ୍ନ ବସ୍ତୁର ସଂଯୋଗରୁ ଉତ୍ପନ୍ନ ନୁହେଁ ବୋଲି ଅବଶ୍ୟ ଅନନ୍ତ କାଳଧରି ରହିଥିଲା ଏବଂ ଅନନ୍ତ-କାଳ ଧରି ରହିବ । ଏହି ଶରୀର ବିନଷ୍ଟ ହେଲେ ମଧ୍ୟ ଆତ୍ମା ରହିଥିବ । ବେଦାନ୍ତବାଦୀ-ମାନଙ୍କ ମତରେ ଏହି ଶରୀରର ଯେତେବେଳେ ପତନ ଘଟେ, ସେତେବେଳେ ମାନବର ଇନ୍ଦ୍ରିୟମାନେ ମନରେ ଓ ପ୍ରାଣରେ ଲୀନ ହୁଅନ୍ତି; ମନ ପ୍ରାଣରେ ଲୀନ ହୁଏ, ପ୍ରାଣ ଆତ୍ମାରେ ପ୍ରବେଶ କରେ । ସେତେବେଳେ ସେହି ମାନବାତ୍ମା ଯେପରି କି ସୂକ୍ଷ୍ମ ଶରୀର ବା ଲିଙ୍ଗଶରୀରରୂପେ ବସନ ପରିଧାନ କରି ଚାଲିଯାଆନ୍ତି ।

ଏହି ସୂକ୍ଷ୍ମ ଶରୀରରେ ହିଁ ମନୁଷ୍ୟର ସମସ୍ତ ସଂସ୍କାର ବାସ କରେ । ସଂସ୍କାର କଅଣ ? ମନ ଯେପରି କି ହ୍ରଦ ତୁଲ୍ୟ ଏବଂ ଆମମାନଙ୍କର ପ୍ରତ୍ୟେକ ଚିନ୍ତା ଯେପରି କି ସେହି ହ୍ରଦର ତରଙ୍ଗ ସଦୃଶ । ହ୍ରଦରେ ଯେପରି ତରଙ୍ଗ ଉଠେ, ପୁଣି ପଡ଼େ, ପଡ଼ି ଅନ୍ତର୍ହିତ ହୋଇଯାଏ, ସେହିପରି ମନରେ ଏହି ଚିନ୍ତା-ତରଙ୍ଗଗୁଡ଼ିକ କ୍ରମାଗତ ଉଠୁଛି, ପୁଣି ଅନ୍ତର୍ହିତ ହେଉଛି; କିନ୍ତୁ ଏଗୁଡ଼ିକ ଏକାବେଳକେ ଅନ୍ତର୍ହିତ ହୁଅନ୍ତି ନାହିଁ । ସେମାନେ କ୍ରମଶଃ ସୂକ୍ଷ୍ମତର ହୋଇଯାଆନ୍ତି, କିନ୍ତୁ ବିଦ୍ୟମାନ ରହନ୍ତି । ଆବଶ୍ୟକ ହେଲେ ପୁଣି ଉଠନ୍ତି । ଯେଉଁ ଚିନ୍ତାଗୁଡ଼ିକ ସୂକ୍ଷ୍ମତର ରୂପ ଧାରଣ କରିଛନ୍ତି, ସେମାନଙ୍କ ମଧ୍ୟରୁ କେତେଗୁଡ଼ିକୁ ପୁଣି ତରଙ୍ଗାକାରରେ ଆନୟନ କରିବାକୁ ହିଁ 'ସ୍ମୃତି' କୁହାଯାଏ । ଏହିପରି ଆମେମାନେ ଯାହା କିଛି ଚିନ୍ତା କରିଛୁଁ, ଯେକୌଣସି କାର୍ଯ୍ୟ ଆମେମାନେ କରିଛୁଁ, ସେଗୁଡ଼ିକ ସବୁ ମନ ମଧ୍ୟରେ ଅବସ୍ଥିତ ଅଛି । ସବୁ-ଗୁଡ଼ିକ ସୂକ୍ଷ୍ମଭାବରେ ଅବସ୍ଥାନ କରେ ଏବଂ ମନୁଷ୍ୟର ମୃତ୍ୟୁ ହେଲେ ବି ଏହି ସଂସ୍କାର-ଗୁଡ଼ିକ ତା'ର ମନ ମଧ୍ୟରେ ବିଦ୍ୟମାନ ଥାଏ—ସୂକ୍ଷ୍ମ ଶରୀର ଉପରେ କାର୍ଯ୍ୟ କରି-ଥାଏ । ଆତ୍ମା ଏହିସବୁ ସଂସ୍କାର ଏବଂ ସୂକ୍ଷ୍ମଶରୀରରୂପୀ ବସନ ପରିଧାନ କରି ଚାଲି-ଯାଏ । ଏହି ବିବିଧ ସଂସ୍କାରରୂପକ ବିଭିନ୍ନ ଶକ୍ତିମାନଙ୍କର ସମବେତ ଫଳ ହିଁ ଆତ୍ମାର ଗତି ନିୟନ୍ତ୍ରିତ କରେ । ସେମାନଙ୍କ ମତରେ ଆତ୍ମାର ତିନି ପ୍ରକାର ଗତି ହୋଇଥାଏ ।

ଯେଉଁମାନେ ଅତ୍ୟନ୍ତ ଧାର୍ମିକ, ମୃତ୍ୟୁ ଘଟିଲା ପରେ ସେମାନେ ସୂର୍ଯ୍ୟରଶ୍ମିର ଅନୁସରଣ କରନ୍ତି । ସୂର୍ଯ୍ୟରଶ୍ମିର ଅନୁସରଣ କରି ସେମାନେ ସୂର୍ଯ୍ୟଲୋକରେ ଉପନୀତ ହୁଅନ୍ତି । ସେଠାରୁ ଚନ୍ଦ୍ରଲୋକ ଏବଂ ଚନ୍ଦ୍ରଲୋକରୁ ବିଦ୍ୟୁଲ୍ଲୋକରେ ଉପସ୍ଥିତ ହୁଅନ୍ତି । ସେଠାରେ ସେମାନଙ୍କ ସହିତ ଆଉ ଜଣେ ମୁକ୍ତାତ୍ମାଙ୍କର ସାକ୍ଷାତ୍ ଘଟେ । ସେ ଏହି ଜୀବାତ୍ମାମାନଙ୍କୁ ସର୍ବୋଚ୍ଚ ବ୍ରହ୍ମଲୋକକୁ ନେଇଯାନ୍ତି । ଏଠାରେ ସେମାନେ ସର୍ବଜ୍ଞତା ଓ ସର୍ବଶକ୍ତିମତ୍ତା ଲାଭ କରନ୍ତି । ସେମାନଙ୍କ ଶକ୍ତି ଓ ଜ୍ଞାନ ପ୍ରାୟ ଈଶ୍ୱରଙ୍କ ସଦୃଶ ହୋଇଥାଏ, ପୁଣି ଦ୍ୱୈତବାଦୀମାନଙ୍କ ମତରେ ସେମାନେ ସେଠାରେ ଅନନ୍ତ କାଳ ଧରି ବାସ କରନ୍ତି; ଅଥବା ଅଦ୍ୱୈତବାଦୀମାନଙ୍କ ମତରେ କଳ୍ପାବସାନ

ପରେ ସେମାନେ ବ୍ରହ୍ମ ସହିତ ଏକତ୍ୱ ଲାଭ କରନ୍ତି । ଯେଉଁମାନେ ସକାମଭାବେ ସତ୍‌କାର୍ଯ୍ୟ କରନ୍ତି ସେମାନେ ମୃତ୍ୟୁ ପରେ ଚନ୍ଦ୍ରଲୋକକୁ ଗମନ କରନ୍ତି । ଏଠାରେ ନାନାବିଧ ସ୍ୱର୍ଗ ରହିଅଛି । ସେମାନେ ଏଠାରେ ସୂକ୍ଷ୍ମଶରୀର—ଦେବଶରୀର ଲାଭ କରନ୍ତି । ସେମାନେ ଦେବତା ହୋଇ ସେଠାରେ ବାସ କରନ୍ତି ଓ ଦୀର୍ଘକାଳ ପର୍ଯ୍ୟନ୍ତ ସ୍ୱର୍ଗସୁଖ ଉପଭୋଗ କରନ୍ତି । ଏହି ଭୋଗ ଶେଷ ହେବା ପରେ ପୁଣି ସେମାନଙ୍କର ପ୍ରାଚୀନ କର୍ମ ବଳବାନ୍ ହୋଇ ଉଠେ । ସୁତରାଂ ପୁନର୍ବାର ସେମାନଙ୍କର ମର୍ତ୍ତ୍ୟଲୋକରେ ଜନ୍ମ ହୁଏ । ସେମାନେ ବାୟୁଲୋକ, ମେଘଲୋକ ପ୍ରଭୃତି ଲୋକ ଭିତରଦେଇ ଅବଶେଷରେ ବୃଷ୍ଟିଧାରା ସହିତ ପୃଥିବୀରେ ପତିତ ହୁଅନ୍ତି । ବୃଷ୍ଟିଧାରା ସହିତ ପୃଥିବୀରେ ପଡ଼ି ସେମାନେ କୌଣସି ଏକ ଶସ୍ୟର ଆଶ୍ରୟ ଗ୍ରହଣ କରନ୍ତି । ତତ୍ପରେ ସେହି ଶସ୍ୟକୁ କୌଣସି ବ୍ୟକ୍ତି ଭୋଜନ କଲେ, ଉକ୍ତ ବ୍ୟକ୍ତିର ଔରସରୁ ସେହି ଜୀବାତ୍ମା ପୁନର୍ବାର କଳେବର ପରିଗ୍ରହ କରେ । ଯେଉଁମାନେ ଅତିଶୟ ଦୁର୍ବୃତ୍ତ, ସେମାନଙ୍କର ମୃତ୍ୟୁ ହେଲେ ସେମାନେ ଭୂତ ବା ଦାନବ ହୁଅନ୍ତି ଏବଂ ଚନ୍ଦ୍ରଲୋକ ଏବଂ ପୃଥିବୀ-ମଧ୍ୟବର୍ତ୍ତୀ କୌଣସି ଏକ ସ୍ଥାନରେ ବାସ କରନ୍ତି । ସେମାନଙ୍କ ମଧ୍ୟରୁ କେହି କେହି ମନୁଷ୍ୟମାନଙ୍କ ଉପରେ ନାନାବିଧ ଅତ୍ୟାଚାର କରିଥାନ୍ତି । ପୁଣି କେହି କେହି ମନୁଷ୍ୟମାନଙ୍କ ପ୍ରତି ମିତ୍ରଭାବାପନ୍ନ ହୁଅନ୍ତି । ସେମାନେ କିଛିକାଳ ଏ ସ୍ଥାନରେ ରହି ପୁନର୍ବାର ପୃଥିବୀକୁ ଆସି ପଶୁଜନ୍ମ ଗ୍ରହଣ କରନ୍ତି । ପଶୁଦେହରେ କିଛି କାଳ ନିବାସ କରିବା ପରେ ସେମାନେ ପୁଣି ମନୁଷ୍ୟଜନ୍ମ ଲାଭ କରନ୍ତି, ପୁଣି ଥରେ ମୁକ୍ତିଲାଭ କରିବାର ଉପଯୋଗୀ ଅବସ୍ଥା ପ୍ରାପ୍ତ ହୁଅନ୍ତି । ତାହାହେଲେ ଆମେମାନେ ଦେଖିଲୁ, ଯେଉଁମାନେ ମୁକ୍ତିର ନିକଟତମ ସୋପାନରେ ପହଞ୍ଚିଅଛନ୍ତି, ଯେଉଁମାନଙ୍କ ଭିତରେ ଖୁବ୍ ଅଳ୍ପ ପରିମାଣରେ ଅପବିତ୍ରତା ଅବଶିଷ୍ଟ ରହିଛି, ସେହିମାନେ ହିଁ ସୂର୍ଯ୍ୟରଶ୍ମି ଧରି ବ୍ରହ୍ମଲୋକକୁ ଗମନ କରନ୍ତି । ଯେଉଁମାନେ ମଧ୍ୟମ ଧରଣର ଲୋକ, ଯେଉଁମାନେ ସ୍ୱର୍ଗକୁ ଯିବାର କାମନା ରଖି କିଛି ସତ୍‌କାର୍ଯ୍ୟ କରନ୍ତି, ସେହିସବୁ ଲୋକେ ଚନ୍ଦ୍ରଲୋକକୁ ଯାଇ ସେଠାରେ ଥିବା ସ୍ୱର୍ଗରେ ବାସ କରନ୍ତି, ସେଠାରେ ସେମାନେ ଦେବଦେହ ପ୍ରାପ୍ତ ହୁଅନ୍ତି । ମାତ୍ର ମୁକ୍ତିଲାଭ ନିମିତ୍ତ ସେମାନଙ୍କୁ ପୁନର୍ବାର ମନୁଷ୍ୟଦେହ ଧାରଣ କରିବାକୁ ପଡ଼େ । ପୁଣି ଯେଉଁମାନେ ଅତ୍ୟନ୍ତ ଅସତ୍ ସେମାନେ ଭୂତ, ଦାନବ ପ୍ରଭୃତି ରୂପରେ ପରିଣତ ହୁଅନ୍ତି । ତତ୍ପରେ ସେମାନେ ପଶୁ ହୁଅନ୍ତି । ତତ୍ପରେ ମୁକ୍ତିଲାଭ ନିମିତ୍ତ ସେମାନଙ୍କୁ ପୁଣି ମନୁଷ୍ୟ ଜନ୍ମ ଗ୍ରହଣ କରିବାକୁ ପଡ଼େ । ଏହି ପୃଥିବୀକୁ 'କର୍ମଭୂମି' କୁହାଯାଏ । ଭଲ ମନ୍ଦ ସର୍ବବିଧ କର୍ମ ଏଠାରେ କରିବାକୁ ହୁଏ । ମନୁଷ୍ୟ ସ୍ୱର୍ଗଲାଭର କାମନା ରଖି ସତ୍‌କାର୍ଯ୍ୟ କଲେ ସ୍ୱର୍ଗକୁ ଯାଇ ଦେବତା ହୁଅନ୍ତି । ଏହି ଅବସ୍ଥାରେ ସେ ଆଉ କୌଣସି ନୂତନ କାର୍ଯ୍ୟ କରନ୍ତି ନାହିଁ, କେବଳ ସେ ପୃଥିବୀରେ କରିଥିବା ସତ୍‌କର୍ମର ଫଳ ଉପଭୋଗ କରନ୍ତି । ପୁଣି ଏହି ସତ୍‌କର୍ମ ଯେଉଁ ମୁହୂର୍ତ୍ତରେ ଶେଷ ହୋଇଯାଏ, ସେହି ମୁହୂର୍ତ୍ତରେ

ପୃଥିବୀରେ ସାରା ଜୀବନ ଧରି କରିଥିବା ଅସତ୍ କର୍ମଗୁଡ଼ିକର ସମବେତ ଫଳ ତାଙ୍କ ନିକଟରେ ଆସି ପହଞ୍ଚିଯାଏ । ତଦ୍ଦ୍ୱାରା ସେ ପୁନର୍ବାର ପୃଥିବୀକୁ ଟାଣି ହୋଇ ଆସନ୍ତି । ଏହିପରି ଯେଉଁମାନେ ଭୂତ-ପ୍ରେତ ହୁଅନ୍ତି, ସେମାନେ ସେହି ଅବସ୍ଥାରେ କୌଣସି ପ୍ରକାର ନୂତନ କର୍ମ ନ କରି କେବଳ ଅତୀତ କର୍ମର ଫଳ ଭୋଗ କରନ୍ତି । ତତ୍ପରେ ପଶୁ-ଜନ୍ମ ଗ୍ରହଣ କରନ୍ତି ଓ ସେଠାରେ ମଧ୍ୟ କୌଣସି ନୂତନ କର୍ମ କରନ୍ତି ନାହିଁ । ତାହା ପରେ ସେମାନେ ପୁଣି ମନୁଷ୍ୟ ଜନ୍ମ ଲାଭ କରନ୍ତି ।

ମନେକର, କୌଣସି ବ୍ୟକ୍ତି ଜୀବନସାରା ମନ୍ଦ କାମ କଲା; କିନ୍ତୁ ତା' ସହିତ ଗୋଟିଏ ଖୁବ୍ ଭଲ କାମ ମଧ୍ୟ କଲା । ତାହାହେଲେ ସେହି ସତ୍କାର୍ଯ୍ୟର ଫଳ ତତ୍କ୍ଷଣାତ୍ ପ୍ରକାଶ ପାଇବ ଏବଂ ଏହି ଭଲ କାର୍ଯ୍ୟର ଫଳ ଶେଷ ହେବା ମାତ୍ରେ ଅସତ୍ କାର୍ଯ୍ୟଗୁଡ଼ିକ ତାହାକୁ ଫଳ ପ୍ରଦାନ କରିବେ । ଯେଉଁ ସବୁ ଲୋକେ କେତେଗୁଡ଼ିଏ ଭଲ ଓ ମହତ୍ କର୍ମ କରିଛନ୍ତି, ମାତ୍ର ସେମାନଙ୍କ ସାରାଜୀବନର ଗତି ଭଲ ନୁହେଁ, ସେମାନେ ଦେବତା ହେବେ । ଦେବଦେହସମ୍ପନ୍ନ ହୋଇ ଦେବତା-ମାନଙ୍କ ଶକ୍ତି କିଛିକାଳ ସମ୍ଭୋଗ କରିବା ପରେ ପୁଣି ସେମାନଙ୍କୁ ମଣିଷ-ଜନ୍ମ ଗ୍ରହଣ କରିବାକୁ ହେବ । ଯେତେବେଳେ ସତ୍ କାର୍ଯ୍ୟଗୁଡ଼ିକର ଶକ୍ତି କ୍ଷୟ ହୋଇଯିବ, ସେତେବେଳେ ପୁଣି ସେହି ପୁରାତନ ଅସତ୍ କାର୍ଯ୍ୟଗୁଡ଼ିକର ଫଳ ଆରମ୍ଭ ହୋଇଯିବ । ଯେଉଁମାନେ ଅତିଶୟ ଅସତ୍ କର୍ମ କରନ୍ତି, ସେମାନଙ୍କୁ ଭୂତ-ଶରୀର, ରାକ୍ଷସ-ଶରୀର ଗ୍ରହଣ କରିବାକୁ ହେବ । ପୁଣି ସେମାନଙ୍କର ଅସତ୍ କାର୍ଯ୍ୟଗୁଡ଼ିକର ଫଳ ଶେଷ ହୋଇଯିବା ପରେ ଯେଉଁ ଟିକିଏ ସତ୍ କର୍ମ ଅବଶିଷ୍ଟ ରହିଥାଏ, ତାହାର ଫଳରେ ସେମାନେ ପୁନରାୟ ମନୁଷ୍ୟ ହେବେ । ଯେଉଁ ପଥ ଦେଇ ବ୍ରହ୍ମଲୋକକୁ ଯିବାକୁ ହୁଏ, ଯହିଁରୁ ପତନ ବା ପ୍ରତ୍ୟାବର୍ତ୍ତନର ସମ୍ଭାବନା ନାହିଁ, ସେହି ପଥକୁ ଦେବଯାନ କୁହାଯାଏ । ଆଉ ଚନ୍ଦ୍ରଲୋକକୁ ଯାଇଥିବା ପଥକୁ ପିତୃଯାନ କୁହାଯାଏ ।

ଅତଏବ ବେଦାନ୍ତଦର୍ଶନ ମତରେ ମନୁଷ୍ୟ ହିଁ ଜଗତ୍ ମଧ୍ୟରେ ସର୍ବଶ୍ରେଷ୍ଠ ପ୍ରାଣୀ ଏବଂ ଏହି ପୃଥିବୀ ହିଁ ସର୍ବଶ୍ରେଷ୍ଠ ସ୍ଥାନ, କାରଣ ଏହିଠାରେ ହିଁ ମୁକ୍ତ ହେବାର ଏକମାତ୍ର ସମ୍ଭାବନା ରହିଛି । ଦେବତା ପ୍ରଭୃତିଙ୍କୁ ବି ମୁକ୍ତ ହେବାକୁ ହେଲେ ମାନବଜନ୍ମ ଗ୍ରହଣ କରିବାକୁ ହେବ । ଏହି ମାନବଜନ୍ମରେ ହିଁ ମୁକ୍ତିର ସର୍ବାପେକ୍ଷା ଅଧିକ ସୁବିଧା ରହିଛି ।

ବର୍ତ୍ତମାନ ଏହି ମତର ବିରୋଧୀ ମତର ଆଲୋଚନା କରାଯାଉ । ବୌଦ୍ଧମାନେ ଏହି ଆତ୍ମାର ଅସ୍ତିତ୍ୱକୁ ସମ୍ପୂର୍ଣ୍ଣରୂପେ ଅସ୍ୱୀକାର କରିଥାଆନ୍ତି । ବୌଦ୍ଧଗଣ କହନ୍ତି ଯେ ଏହି ଶରୀର-ମନର ପଶ୍ଚାତ୍-ଦେଶରେ ଆତ୍ମା ବୋଲି ଗୋଟିଏ ପଦାର୍ଥ ଅଛି ବୋଲି ମାନିବାର ଆବଶ୍ୟକତା କଅଣ ? 'ଏହି ଶରୀର ଓ ମନରୂପକ ଯନ୍ତ୍ରକୁ ସ୍ୱତଃସିଦ୍ଧ' ବୋଲି କହିଲେ କଅଣ ଯଥେଷ୍ଟ ବ୍ୟାଖ୍ୟା ହେଲି ନାହିଁ କି ? ଆଉ ଏକ ତୃତୀୟ ପଦାର୍ଥକୁ କଳ୍ପନା କରିବାର ପ୍ରୟୋଜନ କଅଣ ? ଏହି ଯୁକ୍ତିଗୁଡ଼ିକ ଖୁବ୍ ପ୍ରବଳ ।

ଯେତେଦୂର ଆମେ ଅନୁସନ୍ଧାନ କରିପାରୁ, ସେତେଦୂର ଜଣାଯାଏ ଯେ ଏହି ଶରୀର ଓ ମନୋଯନ୍ତ୍ର ସ୍ୱତଃସିଦ୍ଧ । ଅନ୍ତତଃ ଆମମାନଙ୍କ ମଧ୍ୟରୁ ଅନେକେ ଏହି ତତ୍ତ୍ୱଟିକୁ ଏହି ଭାବରେ ହିଁ ବୁଝିଥାଉଁ । ତାହାହେଲେ ଶରୀର ଓ ମନର ଅତିରିକ୍ତ ଅଥଚ ଶରୀର ଓ ମନର ଆଶ୍ରୟଭୂମିସ୍ୱରୂପ ଆତ୍ମାନାମକ ଗୋଟିଏ ପଦାର୍ଥର ଅସ୍ତିତ୍ୱ କଳ୍ପନା କରିବାର ଆବଶ୍ୟକତା କଅଣ ? ଖାଲି ଶରୀର ଓ ମନ କହିଲେ ତ ଯଥେଷ୍ଟ ହେବ । ନିୟତ ପରିଣାମଶୀଳ ଜଡ଼ସ୍ରୋତର ନାମ ଶରୀର ଏବଂ ନିୟତ ପରିଣାମଶୀଳ ଚିନ୍ତାସ୍ରୋତର ନାମ ମନ । ତେବେ ଏ ଦୁଇଟିର ଯେଉଁ ଏକତ୍ୱ ପ୍ରତୀତ ହେଉଛି, ତାହା କିପରି ହେଲା ? ବୌଦ୍ଧମାନେ କହନ୍ତି—ବାସ୍ତବରେ ଏଭଳି ଏକତ୍ୱ ନାହିଁ । ଗୋଟିଏ ଜ୍ୱଳନ୍ତ ମଶାଲ ନେଇ ଘୂରାଅ । ଏହାକୁ ଘୂରାଇବାବେଳେ ଏହା ଅଗ୍ନିର ଏକ ବୃତ୍ତ ପରି ଦେଖାଯିବ; କିନ୍ତୁ ପ୍ରକୃତପକ୍ଷେ କୌଣସି ବୃତ୍ତ ହୋଇ ନ ଥାଏ । କିନ୍ତୁ ମଶାଲର ନିୟତ ଘୂର୍ଣ୍ଣନ ଫଳରେ ତାହା ଏହି ବୃତ୍ତର ଆକାର ଧାରଣ କରିଥାଏ । ଏହିଭଳି ଆମମାନଙ୍କ ଜୀବନରେ ମଧ୍ୟ ଏକତ୍ୱ ନାହିଁ । ଜଡ଼ବସ୍ତୁଗୁଡ଼ିକ ସ୍ରୋତ ପରି କ୍ରମାଗତ ଚାଲିଅଛି । ସମୁଦାୟ ଜଡ଼ରାଶିକୁ ଏକ ବୋଲି କହିବାକୁ ଇଚ୍ଛା ହୁଏତ କହ, କିନ୍ତୁ ତଦତିରିକ୍ତ ବାସ୍ତବିକ କୌଣସି ଏକତ୍ୱ ନାହିଁ । ମନ ସମ୍ବନ୍ଧରେ ମଧ୍ୟ ସେହିପରି, ପ୍ରତ୍ୟେକ ଚିନ୍ତା ଅପର ଚିନ୍ତାଠାରୁ ପୃଥକ୍ । ଏହି ପ୍ରବଳ ଚିନ୍ତାସ୍ରୋତ ହିଁ ଏହି ଭ୍ରମାତ୍ମକ ଏକତ୍ୱଭାବ ରଖି ଯାଉଅଛି । ତେଣୁ ତୃତୀୟ ପଦାର୍ଥର ଆଉ ଆବଶ୍ୟକତା କଅଣ ? ଏହି ଜଡ଼ସ୍ରୋତ ଓ ଚିନ୍ତାସ୍ରୋତ—କେବଳ ଏହିମାନଙ୍କର ହିଁ ଅସ୍ତିତ୍ୱ ଅଛି; ଏମାନଙ୍କ ପଶ୍ଚାଦ୍ଦେଶରେ ଆଉ କିଛି ଅଛି ବୋଲି ଭାବିବାର ଆବଶ୍ୟକତା କ'ଣ ? ଅନେକ ଆଧୁନିକ ସମ୍ପ୍ରଦାୟ ବୌଦ୍ଧମାନଙ୍କର ଏହି ମତକୁ ଗ୍ରହଣ କରିଛନ୍ତି, ଏବଂ ଏହି ମତକୁ ନିଜ ଆବିଷ୍କୃତ ମତ ବୋଲି ପ୍ରତିପନ୍ନ କରିବା ପାଇଁ ସେମାନେ ଇଚ୍ଛା କରନ୍ତି । ଅଧିକାଂଶ ବୌଦ୍ଧ-ଦର୍ଶନର ମୋଟାମୋଟି ସାର କଥା ଏହି ଯେ, ଏହି ପରିଦୃଶ୍ୟମାନ ଜଗତ୍ ହିଁ ପର୍ଯ୍ୟାପ୍ତ । ଏହା ପଛରେ ଆଉ କିଛି ଅଛି କି ନାହିଁ, ତାହା ଅନୁସନ୍ଧାନ କରିବାର କୌଣସି ଆବଶ୍ୟକତା ନାହିଁ । ଏହି ଇନ୍ଦ୍ରିୟଗ୍ରାହ୍ୟ ଜଗତ୍ ହିଁ ସର୍ବସ୍ୱ । କୌଣସି ବସ୍ତୁକୁ ଜଗତ୍ର ଆଶ୍ରୟରୂପେ କଳ୍ପନା କରିବାର ଆବଶ୍ୟକତା କଅଣ ? ସମସ୍ତ ହିଁ ଗୁଣସମଷ୍ଟି । ଏପରି ଏକ ଆନୁମାନିକ ପଦାର୍ଥ କଳ୍ପନା କରିବାର ଆବଶ୍ୟକତା କଅଣ, ଯାହାକୁ ସେଗୁଡ଼ିକ ଆଶ୍ରୟ କରି ରହିବେ ! ପଦାର୍ଥର ଜ୍ଞାନ ହୁଏ କେବଳ ଗୁଣରାଶିର ଦ୍ରୁତ ଆଦାନପ୍ରଦାନବଶତଃ, ସେମାନଙ୍କ ପଛରେ ବାସ୍ତବିକ କୌଣସି ଅପରିଣାମୀ ପଦାର୍ଥ ଥିବା ଯୋଗୁଁ ନୁହେଁ । ଆମେମାନେ ଦେଖିଲୁ, ଏହି ଯୁକ୍ତିଗୁଡ଼ିକ ଅତ୍ୟନ୍ତ ପ୍ରବଳ ଏବଂ ତାହା ମାନବର ସାଧାରଣ ଅନୁଭୂତି ସପକ୍ଷରେ ଯଥେଷ୍ଟ ସାକ୍ଷ୍ୟ ଦେଇଥାଏ । ବାସ୍ତବିକ ପକ୍ଷରେ ଜଣେ କି ଏହି ଦୃଶ୍ୟ ଜଗତ୍ର ଅତୀତ କୌଣସି କଥାର ଧାରଣା କରିପାରିବ କି ନାହିଁ ସନ୍ଦେହ । ଅଧିକାଂଶ ଲୋକଙ୍କ ପକ୍ଷେ ପ୍ରକୃତି ନିତ୍ୟ-ପରିଣାମଶୀଳ । ଆମମାନଙ୍କ

ମଧ୍ୟରୁ ଖୁବ୍ ଅଳ୍ପ ଲୋକ ସୃଷ୍ଟିର ପଛରେ ଥିବା ସେହି ସ୍ଥିର ସମୁଦ୍ରର ସାମାନ୍ୟ ଆଭାସ ପାଇଅଛନ୍ତି । ଆମମାନଙ୍କ ପକ୍ଷେ ଏହି ଜଗତ୍ କେବଳ ଏକ ତରଙ୍ଗମୟ ବସ୍ତୁ । ତାହାହେଲେ ଆମେ ଦୁଇଟି ମତ ପାଇଲୁଁ । ପ୍ରଥମଟି ହେଉଛି—ଏହି ଶରୀର-ମନର ପଛରେ ଏକ ଅପରିଣାମୀ ସତ୍ତା ରହିଅଛି । ଅନ୍ୟ ମତଟି ହେଉଛି—ଏହି ଜଗତ୍‌ରେ ଅଚଳ ବା ଅପରିଣାମୀ ବୋଲି କିଛି ନାହିଁ, ସମସ୍ତ ହିଁ ପରିବର୍ତ୍ତନଶୀଳ—ପରିଣାମୀ; ସମସ୍ତ ହିଁ କେବଳ ପରିଣାମ । ଯାହାହେଉ, ଅଦ୍ୱୈତବାଦରେ ହିଁ ଏହି ଦୁଇ ମତର ସାମଞ୍ଜସ୍ୟ ମିଳିଥାଏ ।

ଅଦ୍ୱୈତବାଦୀ କହନ୍ତି ଯେ 'ଜଗତ୍‌ର ଏକ ଅପରିଣାମୀ ଆଶ୍ରୟ ରହିଛି'—ଅଦ୍ୱୈତବାଦୀଙ୍କର ଏହି ବାକ୍ୟ ସତ୍ୟ; ଅପରିଣାମୀ କୌଣସି ବସ୍ତୁର କଳ୍ପନା ନ କଲେ ପରିଣାମର କଳ୍ପନା ଆମେମାନେ କରିପାରିବା ନାହିଁ । ଅପେକ୍ଷାକୃତ କୌଣସି ଅଳ୍ପ ପରିଣାମୀ ପଦାର୍ଥର ତୁଳନାରେ କୌଣସି ପଦାର୍ଥକୁ ପରିଣାମୀରୂପେ ଚିନ୍ତା କରାଯାଇପାରେ । ପୁଣି ତାହା ଅପେକ୍ଷା ଅଳ୍ପ ପରିଣାମୀ ପଦାର୍ଥ ସହିତ ତୁଳନା କରି ଏହାକୁ ଆହୁରି ପରିଣାମୀରୂପେ ନିର୍ଦ୍ଦେଶ କରାଯାଇପାରେ—ଯେପର୍ଯ୍ୟନ୍ତ କୌଣସି ଏକ ସମ୍ପୂର୍ଣ୍ଣ ଅପରିଣାମୀ ପଦାର୍ଥକୁ ବାଧ୍ୟ ହୋଇ ଆମେ ସ୍ୱୀକାର ନ କରୁ । ଏକ ସମୟରେ ଏହି ଜଗତ୍-ପ୍ରପଞ୍ଚ ଅବ୍ୟକ୍ତ ଅବସ୍ଥାରେ ଥିଲା; ତାହା ସେତେବେଳେ ଶାନ୍ତ ଥିଲା ଓ ବିପରୀତ ଶକ୍ତିଦ୍ୱୟର ସାମଞ୍ଜସ୍ୟରୂପେ ଥିଲା, ଅର୍ଥାତ୍ କୌଣସି ଶକ୍ତି ସେତେବେଳେ କ୍ରିୟାଶୀଳ ନ ଥିଲା । କାରଣ, ବୈଷମ୍ୟ ନ ଥିଲେ କୌଣସି ଶକ୍ତିର ବିକାଶ ସମ୍ଭବ ହୁଏ ନାହିଁ । ଏହି ବ୍ରହ୍ମାଣ୍ଡ ପୁଣି ସେହି ସାମ୍ୟାବସ୍ଥାର ପ୍ରାପ୍ତି ନିମିତ୍ତ ଦ୍ରୁତବେଗରେ ଚାଲିଛି । ଯଦି କୌଣସି ବିଷୟ ସମ୍ପର୍କରେ ଆମର ନିଶ୍ଚିତ ଜ୍ଞାନ ଥାଏ, ତେବେ ତାହା ଏହି । ଦ୍ୱୈତବାଦୀମାନେ ଯେତେବେଳେ କହନ୍ତି, କୌଣସି ଅପରି-ଣାମୀ ପଦାର୍ଥ ଅଛି, ଏହା ଠିକ୍ କଥା । କିନ୍ତୁ ଏହା ଯେ ଶରୀର-ମନର ସମ୍ପୂର୍ଣ୍ଣ ଅତୀତ, ଶରୀର-ମନଠାରୁ ସମ୍ପୂର୍ଣ୍ଣ ପୃଥକ୍—ଏ କଥା କହିବା ଭୁଲ । ବୌଦ୍ଧମାନେ ଯେ କହନ୍ତି ସମଗ୍ର ଜଗତ କେବଳ ପରିଣାମପ୍ରବାହ ମାତ୍ର, ତାହା ମଧ୍ୟ ସତ୍ୟ; କାରଣ ଯେତେଦିନ ପର୍ଯ୍ୟନ୍ତ ମୁଁ ଜଗତ୍‌ଠାରୁ ପୃଥକ୍, ଯେତେଦିନ ଯାଏ ମୁଁ ମୋର ଅତିରିକ୍ତ ଆଉ କିଛି ଦେଖେ, ମୋଟକଥା, ଯେତେଦିନ ପର୍ଯ୍ୟନ୍ତ ଦ୍ୱୈତଭାବ ଥାଏ, ସେତେଦିନ ପର୍ଯ୍ୟନ୍ତ ଏହି ଜଗତ୍ ପରିଣାମଶୀଳ ବୋଲି ପ୍ରତୀତ ହେବ । କିନ୍ତୁ ପ୍ରକୃତ କଥା, ଏହି ଜଗତ୍ ପରିଣାମୀ ଅଟେ, ପୁଣି ଅପରିଣାମୀ ମଧ୍ୟ ଅଟେ । ଆତ୍ମା, ମନ ଓ ଶରୀର—ତିନୋଟି ପୃଥକ୍ ବସ୍ତୁ ନୁହନ୍ତି, ସେମାନେ ଏକ । ଏକ ବସ୍ତୁ କେତେବେଳେ ଦେହ, କେତେବେଳେ ମନ, କେତେବେଳେ ବା ଦେହମନର ଅତୀତ ଆତ୍ମା ବୋଲି ପ୍ରତୀତ ହୁଏ । ଯେଉଁ ବ୍ୟକ୍ତି ଶରୀରକୁ ହିଁ ଦେଖନ୍ତି, ସେ ମନକୁ ଦେଖିପାରନ୍ତି ନାହିଁ; ଯେ ମନକୁ ଦେଖନ୍ତି, ସେ ଆତ୍ମା ଦେଖିବାକୁ ପାଆନ୍ତି ନାହିଁ; ପୁଣି ଯେ ଆତ୍ମାକୁ ଦେଖନ୍ତି, ତାଙ୍କ ପକ୍ଷେ ଶରୀର ମନ ଉଭୟ କେଉଁଆଡ଼େ

ଅନ୍ତର୍ହିତ ହୁଅନ୍ତି ! ଯେ କେବଳ ଗତି ଦେଖନ୍ତି, ସେ ସମ୍ପୂର୍ଣ୍ଣ ସ୍ଥିରଭାବ ଦେଖିବାକୁ ପାଆନ୍ତି ନାହିଁ । ପୁଣି ଯେ ସେହି ସମ୍ପୂର୍ଣ୍ଣ ଶାନ୍ତଭାବକୁ ଦେଖନ୍ତି, ତାଙ୍କ ପକ୍ଷେ ଗତି ଆଉ ରହେ ନାହିଁ । ସର୍ପରେ ରଜ୍ଜୁଭ୍ରମ ହେଲା । ଯେଉଁ ବ୍ୟକ୍ତି ରଜ୍ଜୁକୁ ସର୍ପ ବୋଲି ଦେଖୁଛି ତାହା ପକ୍ଷେ ରଜ୍ଜୁ କେଉଁଆଡ଼େ ଚାଲିଯାଏ; କିନ୍ତୁ ଯେତେବେଳେ ଭ୍ରାନ୍ତି ଦୂର ହୋଇଯାଏ, ସେ ବ୍ୟକ୍ତି ରଜ୍ଜୁ ହିଁ ଦେଖିଥାଏ, ତାହା ପକ୍ଷେ ସର୍ପ ଆଉ ରହେ ନାହିଁ ।

ତାହାହେଲେ ଦେଖାଗଲା, ଗୋଟିଏ ମାତ୍ର ବସ୍ତୁ ଅଛି, ତାହା ହିଁ ନାନାରୂପେ ପ୍ରତୀତ ହେଉଛି । ଏହାକୁ ଆତ୍ମା କହ, ଅନ୍ୟ କୌଣସି ବସ୍ତୁ ବୋଲି କହ ବା ଅନ୍ୟ କିଛି କହ, ଜଗତରେ କେବଳ ଏକମାତ୍ର ଏହାର ଅସ୍ତିତ୍ୱ ରହିଛି । ଅଦ୍ୱୈତବାଦର ଭାଷାରେ କହିବାକୁ ଗଲେ ଏହି ଆତ୍ମା ହିଁ ବ୍ରହ୍ମ, କେବଳ ନାମ-ରୂପ ଉପାଧିବଶତଃ ବହୁରୂପେ ପ୍ରତୀତ ହେଉଛନ୍ତି । ସମୁଦ୍ରର ତରଙ୍ଗଗୁଡ଼ିକ ପ୍ରତି ଦୃଷ୍ଟିପାତ କର, ଗୋଟିଏ ତରଙ୍ଗ ବି ସମୁଦ୍ରଠାରୁ ପୃଥକ୍ ନୁହେଁ । ତେବେ ତରଙ୍ଗଗୁଡ଼ିକ ପୃଥକ୍‌ଭାବେ ଦେଖାଯାଉଅଛି କାହିଁକି ? ନାମରୂପ ଯୋଗୁଁ—ତରଙ୍ଗର ଆକୃତି ଏବଂ ଆମେମାନେ ଏହାକୁ 'ତରଙ୍ଗ' ଏହି ଯେଉଁ ନାମ ପ୍ରଦାନ କରିଛୁଁ ତଦ୍ୱାରା ତାହାକୁ ସମୁଦ୍ରଠାରୁ ପୃଥକ୍ କରାହୋଇଛି; ନାମରୂପ ଚାଲିଯିବା ପରେ ଏହା ଯେଉଁ ସମୁଦ୍ର ଥିଲା ସେହି ସମୁଦ୍ର ହିଁ ରହିବ । ତରଙ୍ଗ ଏବଂ ସମୁଦ୍ର ଭିତରେ କଅଣ ପ୍ରଭେଦ ସମ୍ଭବ ? ଅତଏବ ଏହି ସମୁଦାୟ ଜଗତ ଏକ ସତ୍ତା । ନାମରୂପ ହିଁ ଯାବତୀୟ ପାର୍ଥକ୍ୟ ରଚନା କରିଛି । ଯେଉଁଭଳି ସୂର୍ଯ୍ୟ ଲକ୍ଷ ଲକ୍ଷ ଜଳକଣା ଉପରେ ପ୍ରତିବିମ୍ବିତ ହୋଇ ପ୍ରତ୍ୟେକ ଜଳକଣା ଉପରେ ସୂର୍ଯ୍ୟର ଗୋଟିଏ ଗୋଟିଏ ସମ୍ପୂର୍ଣ୍ଣ ପ୍ରତିକୃତି ସୃଷ୍ଟି କରେ, ସେହିଭଳି ସେହି ଗୋଟିଏ ଆତ୍ମା, ସେହି ଗୋଟିଏ ସତ୍ତା ଭିନ୍ନ ଭିନ୍ନ ବସ୍ତୁରେ ପ୍ରତିବିମ୍ବିତ ହୋଇ ନାନାରୂପେ ଉପଲବ୍ଧ ହେଉଛି । କିନ୍ତୁ ସ୍ୱରୂପତଃ ଏହା ଏକ, ବାସ୍ତବିକ 'ମୁଁ ଆଉ ତୁମେ' ବୋଲି କିଛି ନାହିଁ, ସବୁ ଏକ । ହୁଏତ କହ, ସମସ୍ତ ହିଁ ମୁଁ—ନଚେତ କହ ସମସ୍ତ ହିଁ ତୁମେ । ଏହି ଦ୍ୱୈତଜ୍ଞାନ ସମ୍ପୂର୍ଣ୍ଣ ମିଥ୍ୟା ଏବଂ ସମୁଦାୟ ଜଗତ ଏହି ଦ୍ୱୈତଜ୍ଞାନର ଫଳ । ଯେତେବେଳେ ବିବେକର ଉଦୟ ଘଟେ, ମନୁଷ୍ୟ ଦେଖିବାକୁ ପାଏ ଯେ ଦୁଇଟି ବସ୍ତୁ ନାହିଁ, କେବଳ ଗୋଟିଏ ବସ୍ତୁ ଅଛି । ସେତେବେଳେ ସେ ଉପଲବ୍ଧି କରେ ଯେ, ସେ ନିଜେ ଏହି ଅନନ୍ତ ବ୍ରହ୍ମାଣ୍ଡସ୍ୱରୂପ—ମୁଁ ଏହି ପରିବର୍ତ୍ତନଶୀଳ ଜଗତ୍, ମୁଁ ପୁଣି ଅପରିଣାମୀ, ନିର୍ଗୁଣ, ନିତ୍ୟପୂର୍ଣ୍ଣ, ନିତ୍ୟାନନ୍ଦମୟ ।

ଅତଏବ ନିତ୍ୟଶୁଦ୍ଧ, ନିତ୍ୟପୂର୍ଣ୍ଣ, ଅପରିଣାମୀ, ଅପରିବର୍ତ୍ତନୀୟ ଏକ ଆତ୍ମା ରହିଅଛି; ତାହାର କଦାପି ପରିଣାମ ହୁଏ ନାହିଁ ଏବଂ ଏହି ସକଳ ବିଭିନ୍ନ ପରିଣାମ ସେହି ଏକମାତ୍ର ଆତ୍ମାରେ ହିଁ ପ୍ରତୀତ ହେଉଛି ମାତ୍ର । ଏହା ଉପରେ ନାମରୂପ ଏହି ସକଳ ବିଭିନ୍ନ ସ୍ୱପ୍ନଚିତ୍ର ଅଙ୍କିତ କରିଛି । ରୂପ ବା ଆକୃତି ହିଁ ତରଙ୍ଗକୁ ସମୁଦ୍ରଠାରୁ

ପୃଥକ୍ କରୁଛୁ । ମନେକର, ତରଙ୍ଗଟି ମିଳାଇଗଲା, ସେତେବେଳେ କ'ଣ ଏହି ଆକୃତି ରହିବ ? ନା, ଏହା ଏକାଥରକେ ଚାଲିଯିବ । ତରଙ୍ଗର ଅସ୍ତିତ୍ୱ ସମ୍ପୂର୍ଣ୍ଣରୂପେ ସାଗରର ଅସ୍ତିତ୍ୱ ଉପରେ ନିର୍ଭର କରେ, କିନ୍ତୁ ସାଗରର ଅସ୍ତିତ୍ୱ ତରଙ୍ଗର ଅସ୍ତିତ୍ୱ ଉପରେ ନିର୍ଭର କରେ ନାହିଁ । ଯେପର୍ଯ୍ୟନ୍ତ ତରଙ୍ଗ ରହିଅଛି, ସେପର୍ଯ୍ୟନ୍ତ ରୂପ ରହିବ; କିନ୍ତୁ ତରଙ୍ଗ ନିବୃତ୍ତ ହେଲେ ଏହି ରୂପ ଆଉ ରହିପାରିବ ନାହିଁ । ଏହି ନାମ-ରୂପକୁ ହିଁ ମାୟା କୁହାଯାଏ । ଏହି ମାୟା ଭିନ୍ନ ଭିନ୍ନ ବ୍ୟକ୍ତି ସୃଜନ କରି ଜଣକୁ ଅନ୍ୟ ଜଣକଠାରୁ ପୃଥକ୍ ବୋଧ କରାଇ ପାରୁଛି; କିନ୍ତୁ ଏହାର ଅସ୍ତିତ୍ୱ ନାହିଁ । ମାୟାର ଅସ୍ତିତ୍ୱ ଅଛି ବୋଲି କୁହାଯାଇ ପାରିବ ନାହିଁ । ରୂପ ବା ଆକୃତିର ଅସ୍ତିତ୍ୱ ଅଛି, କୁହାଯାଇ ପାରିବ ନାହିଁ । କାରଣ ଏହା ଅନ୍ୟର ଅସ୍ତିତ୍ୱ ଉପରେ ନିର୍ଭର କରେ । ପୁଣି ଏହା ନାହିଁ, ତାହା ବି କୁହାଯାଇ ପାରିବ ନାହିଁ, କାରଣ ଏହା ହିଁ ଏ ସକଳ ଭେଦର ସୃଷ୍ଟି କରୁଛି । ଅଦ୍ୱୈତବାଦୀଙ୍କ ମତରେ ଏହି ମାୟା ବା ଅଜ୍ଞାନ ବା ନାମରୂପ, ଅଥବା ୟୁରୋପୀୟମାନଙ୍କ ମତରେ ଦେଶକାଳନିମିତ୍ତ, ଏହି ଏକ ଅନନ୍ତ ସତ୍ତାରୁ ଆମ ବିଭିନ୍ନ ରୂପ ଜଗତ୍‌ସତ୍ତା ଦେଖାଯାଉଛି; ପରମାର୍ଥତଃ ଏହି ଜଗତ୍ ଏକ ଅଖଣ୍ଡସ୍ୱରୂପ । ଯେଉଁ ପର୍ଯ୍ୟନ୍ତ କୌଣସି ବ୍ୟକ୍ତି ଦୁଇଟି ବସ୍ତୁର କଳ୍ପନା କରୁଥିବ, ସେତେଦିନ ସେ ଭ୍ରାନ୍ତ; ଯେତେବେଳେ ସେ ଜାଣିପାରିବ ଯେ କେବଳ ଗୋଟିଏ ସତ୍ତା ଅଛି, ସେତେବେଳେ ସେ ଯଥାର୍ଥ ବିଷୟ ଜାଣିଛି ବୋଲି କୁହାଯିବ । ଯେତେଦିନ ଯାଉଛି, ସେତେ ଆମମାନଙ୍କ ନିକଟରେ ଏହି ସତ୍ୟ ପ୍ରମାଣିତ ହେଉଛି । କି ଜଡ଼-ଜଗତ୍, କି ମନୋଜଗତ୍, କି ଅଧ୍ୟାତ୍ମ-ଜଗତ୍, ସବୁଠି ହିଁ ଏହି ସତ୍ୟ ପ୍ରମାଣିତ ହେଉଛି । ତେଣୁ ପ୍ରମାଣିତ ହେଲା ଯେ, ତୁମେ, ମୁଁ, ସୂର୍ଯ୍ୟ, ଚନ୍ଦ୍ର, ତାରା—ଏ ସମସ୍ତେ ଏକ ଜଡ଼ ସମୁଦ୍ରର ବିଭିନ୍ନ ଅଂଶର ନାମମାତ୍ର । ଏହି ଜଡ଼ରାଶି କ୍ରମାଗତ ପରିଣାମପ୍ରାପ୍ତ ହେଉଅଛି । ଯେଉଁ ଶକ୍ତିକଣା କେତେ ମାସ ପୂର୍ବେ ସୂର୍ଯ୍ୟ ମଧ୍ୟରେ ଥିଲା, ତାହା ଆଜି ହୁଏତ ମନୁଷ୍ୟ ଭିତରକୁ ଆସିଅଛି, କାଲି ହୁଏତ ତାହା ପଶୁ ଭିତରେ, ପୁଣି ପର ଦିନ ହୁଏତ ଉଦ୍ଭିଦ ମଧ୍ୟରେ ପ୍ରବେଶ କରିବ । ସର୍ବଦା ଆସୁଛି, ଯାଉଛି । ଏହା ଅଖଣ୍ଡ ଜଡ଼ରାଶି—କେବଳ ନାମରୂପ ଦ୍ୱାରା ପୃଥକ୍ । ଏହାର ଏକ ବିନ୍ଦୁର ନାମ ସୂର୍ଯ୍ୟ, ଏକ ବିନ୍ଦୁର ନାମ ଚନ୍ଦ୍ର, ଏକ ବିନ୍ଦୁ ତାରା, ଏକ ବିନ୍ଦୁ ମନୁଷ୍ୟ, ଏକ ବିନ୍ଦୁ ପଶୁ, ଏକ ବିନ୍ଦୁ ଉଦ୍ଭିଦ, ଏହିଭଳି । ଆଉ ଏହି ଯେଉଁ ବିଭିନ୍ନ ନାମ, ଏହା ଭ୍ରମାତ୍ମକ, କାରଣ ଏହି ଜଡ଼ରାଶିର କ୍ରମାଗତ ପରିବର୍ତ୍ତନ ଘଟୁଛି । ଏହି ଜଗତକୁ ଅନ୍ୟ ଏକ ଭାବରେ ଦେଖିଲେ ଏହା ଚିନ୍ତା-ସମୁଦ୍ରରୂପେ ପ୍ରତୀୟମାନ ହେବ । ଏହାର ଗୋଟିଏ ଗୋଟିଏ ବିନ୍ଦୁ ଗୋଟିଏ ଗୋଟିଏ ମନ ପରି—ତୁମେ ଗୋଟିଏ ମନ, ମୁଁ ଗୋଟିଏ ମନ, ପ୍ରତ୍ୟେକେ ହିଁ ଗୋଟିଏ ଗୋଟିଏ ମନ । ପୁଣି ଜ୍ଞାନଚକ୍ଷୁରେ ଏହି ଜଗତକୁ ଦେଖିଲେ, ଅର୍ଥାତ୍ ଯେତେବେଳେ ଚକ୍ଷୁରୁ ମୋହାବରଣ ଅପସାରିତ ହୋଇଯାଏ, ଯେତେବେଳେ ମନ ଶୁଦ୍ଧ ହୋଇଯାଏ, ସେତେବେଳେ ଏହା ହିଁ ନିତ୍ୟଶୁଦ୍ଧ,

ଅପରିଣାମୀ, ଅବିନାଶୀ, ଅଖଣ୍ଡ, ପୂର୍ଣ୍ଣସ୍ୱରୂପ ପୁରୁଷରୂପେ ପ୍ରତୀତ ହେବ ।

ତେବେ ଦ୍ୱୈତବାଦୀର ପରଲୋକବାଦ—ମନୁଷ୍ୟ ମଲେ ସ୍ୱର୍ଗକୁ ଯାଏ, ଅଥବା ଅମୁକ ଅମୁକ ଲୋକ ଯାଆନ୍ତି, ଅସତ୍ ଲୋକମାନେ ଭୂତ ହୁଅନ୍ତି, ପରେ ପଶୁ ହୁଅନ୍ତି, ଏସବୁ କଥାର କଅଣ ଅର୍ଥ ? ଅଦ୍ୱୈତବାଦୀମାନେ କହନ୍ତି, କେହି ଆସନ୍ତି ନାହିଁ, କି କେହି ଯାଆନ୍ତି ନାହିଁ । ତୁମମାନଙ୍କ ପକ୍ଷେ ଯିବାଆସିବା କିପରି ସମ୍ଭବ ହେବ ? ତୁମେ ଅନନ୍ତସ୍ୱରୂପ । ତୁମ ପକ୍ଷେ ଯିବାର ସ୍ଥାନ ପୁଣି କେଉଁଠି ?

କୌଣସି ବିଦ୍ୟାଳୟରେ କେତେଗୁଡ଼ିଏ ଛୋଟ ବାଳକ-ବାଳିକାମାନଙ୍କର ପରୀକ୍ଷା ହୋଇଥିଲା । ପରୀକ୍ଷକ ଏହି ଛୋଟ ପିଲାଗୁଡ଼ିକୁ ନାନାବିଧ କଠିନ ପ୍ରଶ୍ନ ପଚାରିଥିଲେ । ଅନ୍ୟାନ୍ୟ ପ୍ରଶ୍ନଗୁଡ଼ିକ ମଧ୍ୟରେ ଗୋଟିଏ ପ୍ରଶ୍ନ ଥିଲା—ପୃଥିବୀ ପଡ଼ିଯାଏ ନାହିଁ କାହିଁକି ? ପିଲାମାନଙ୍କ ମଧ୍ୟରୁ ଅନେକେ ପ୍ରଶ୍ନଟି ବୁଝିପାରିଲେ ନାହିଁ; ସୁତରାଂ ଯାହାର ଯାହା ମନରେ ଆସିଲା, ସେ ସେହିଭଳି ଉତ୍ତର ଦେବାକୁ ଲାଗିଲା । ଜଣେ ବୁଦ୍ଧିମତୀ ବାଳିକା ଆଉ ଗୋଟିଏ ପ୍ରଶ୍ନ କରି ଏହି ପ୍ରଶ୍ନଟିର ଉତ୍ତର ଦେଲା—'କେଉଁଠି ଏହା ପଡ଼ିବ ?' କାରଣ ପ୍ରଶ୍ନଟି ତ ଭୁଲ୍ । ଜଗତରେ ଉଚ୍ଚନୀଚ ବୋଲି କିଛି ନାହିଁ । ଉଚ୍ଚନୀଚ କହିବା କେବଳ ଆପେକ୍ଷିକ ଜ୍ଞାନ ମାତ୍ର । ଆତ୍ମା ସମ୍ବନ୍ଧରେ ମଧ୍ୟ ତଦ୍ରୂପ, ଜନ୍ମମୃତ୍ୟୁ ସମ୍ବନ୍ଧରେ ପ୍ରଶ୍ନ କରିବା ଭୁଲ୍ । କିଏ ଯାଏ, କିଏ ଆସେ ? ତୁମେ କେଉଁଠି ନାହଁ ? ଏପରି ସ୍ୱର୍ଗ କେଉଁଠି ଅଛି, ଯେଉଁଠାରେ ତୁମେ ପୂର୍ବେ ଅବସ୍ଥିତ ନ ଥିଲ ? ମନୁଷ୍ୟର ଆତ୍ମା ସର୍ବବ୍ୟାପୀ । ତୁମେ କେଉଁଆଡ଼େ ଯିବ ? କେଉଁଆଡ଼େ ଯିବ ନାହିଁ ? ଆତ୍ମା ତ ସର୍ବତ୍ର ବିଦ୍ୟମାନ । ସୁତରାଂ ସମ୍ପୂର୍ଣ୍ଣ ଜ୍ଞାନୀ ବା ସିଦ୍ଧପୁରୁଷ ପକ୍ଷରେ ଏହି ବାଳକସୁଲଭ ସ୍ୱପ୍ନ, ଏହି ଜନ୍ମମୃତ୍ୟୁରୂପ ବାଳକସୁଲଭ ଭ୍ରମ, ସ୍ୱର୍ଗ ନରକ ପ୍ରଭୃତି ସ୍ୱପ୍ନ—ସବୁ ଏକାବେଳକେ ଅନ୍ତର୍ହିତ ହୋଇଯାଏ; ଯେଉଁମାନେ ପ୍ରାୟ ସିଦ୍ଧ, ସେହିମାନଙ୍କ ପାଇଁ ଏହା ବ୍ରହ୍ମଲୋକ ପର୍ଯ୍ୟନ୍ତ ନାନାବିଧ ଦୃଶ୍ୟ ଦେଖାଇ ଅନ୍ତର୍ହିତ ହୁଏ । କିନ୍ତୁ ଅଜ୍ଞାନୀମାନଙ୍କ ପାଇଁ ଏହା ରହିଯାଇଥାଏ ।

ସ୍ୱର୍ଗକୁ ଯିବ, ମରିବ, ଜନ୍ମିବ—ଏ କଥା ତୁମେ ବିଶ୍ୱାସ କର କାହିଁକି ? ମୁଁ ଗୋଟିଏ ଗ୍ରନ୍ଥ ପାଠ କରୁଛି । ଏହାର ପୃଷ୍ଠା ପରେ ପୃଷ୍ଠା ପଠିତ ହେଉଛି ଏବଂ ଓଲଟା ହେଉଛି । ଆଉ ଗୋଟିଏ ପୃଷ୍ଠା ଆସିଲା—ଏହା ମଧ୍ୟ ଓଲଟା ହୋଇଗଲା । କିଏ ପରିଣାମପ୍ରାପ୍ତ ହେଲା ? କିଏ ଯାଏ ଆସେ ? ମୁଁ ନୁହେଁ, ଏହି ପୁସ୍ତକର ପୃଷ୍ଠାଗୁଡ଼ିକ ଓଲଟା ହେଉଛି । ସମୁଦାୟ ପ୍ରକୃତି ହିଁ ଆତ୍ମାସମ୍ମୁଖସ୍ଥ ଏକ ଖଣ୍ଡ ପୁସ୍ତକସ୍ୱରୂପ । ଏହାର ଅଧ୍ୟାୟ ପରେ ଅଧ୍ୟାୟ ପଢ଼ା ହେଉଅଛି ଏବଂ ଓଲଟା ହୋଇଯାଉଅଛି, ନୂତନ ଦୃଶ୍ୟ ପୁଣି ଆସି ସମ୍ମୁଖରେ ଉପସ୍ଥିତ ହେଉଅଛି । ଏହା ମଧ୍ୟ ପଠିତ ହୋଇଗଲା ଏବଂ ଓଲଟା ହୋଇଗଲା । ପୁଣି ନୂତନ ଅଧ୍ୟାୟ ଆସି ଉପସ୍ଥିତ ହେଲା; କିନ୍ତୁ ଆତ୍ମା ଯେଉଁଭଳି ଥିଲା ସେହିଭଳି ରହିଲା—ଅନନ୍ତସ୍ୱରୂପ । ପ୍ରକୃତି ହିଁ

ପରିଣାମପ୍ରାପ୍ତ ହେଉଛି, ଆତ୍ମା ନୁହେଁ । ଆତ୍ମାର ପରିଣାମ ନାହିଁ : ଜନ୍ମମୃତ୍ୟୁ ପ୍ରକୃତିର, ତୁମର ନୁହେଁ । ତଥାପି ଅଜ୍ଞ ଲୋକେ ଭ୍ରାନ୍ତ ହୋଇ ମନେକରନ୍ତି, ଆମେମାନେ ଜନ୍ମ ନେଉଛୁ, ମରୁଛୁ—ପ୍ରକୃତ ନୁହେଁ; ଭ୍ରାନ୍ତିବଶତଃ ଯେଉଁଭଳି ଆମେମାନେ ମନେ କରୁ—ସୂର୍ଯ୍ୟ ଗତି କରୁଛି, ପୃଥିବୀ ନୁହେଁ । ସୁତରାଂ ଏ ସବୁ ଭ୍ରାନ୍ତି ମାତ୍ର । ଆମେମାନେ ଯେଉଁଭଳି ଭ୍ରମବଶତଃ ରେଳଗାଡ଼ି ପରିବର୍ତ୍ତେ ପାର୍ଶ୍ୱସ୍ଥ ବୃକ୍ଷସକଳକୁ ସଚଳ ବୋଲି ମନେ କରିଥାଉ, ଜନ୍ମମୃତ୍ୟୁ-ଭ୍ରାନ୍ତି ଠିକ୍ ଏହିଭଳି । ଯେତେବେଳେ ମନୁଷ୍ୟ କୌଣସି ବିଶେଷ ଅବସ୍ଥାରେ ରହିଥାଏ, ସେତେବେଳେ ସେ ଏହାକୁ ହିଁ ପୃଥିବୀ, ସୂର୍ଯ୍ୟ, ଚନ୍ଦ୍ର, ତାରା ପ୍ରଭୃତି ବୋଲି ଦେଖେ, ପୁଣି ଯେଉଁମାନେ ଏହିଭଳି ମନୋଭାବାପନ୍ନ, ସେମାନେ ମଧ୍ୟ ଠିକ୍ ତାହା ଦେଖିଥାଆନ୍ତି । ତୁମ ଆମ ମଧ୍ୟରେ ବିଭିନ୍ନ ସ୍ତରରେ ଲକ୍ଷ ଲକ୍ଷ ଲୋକ ଅଛନ୍ତି ଯେଉଁମାନେ ଭିନ୍ନ ଭି... ପ୍ରକୃତିସମ୍ପନ୍ନ । ସେମାନେ ଆମମାନଙ୍କୁ କଦାପି ଦେଖିବାକୁ ପାଇବେ ନାହିଁ, ଆମେମାନେ ମଧ୍ୟ ସେମାନଙ୍କୁ କଦାପି ଦେଖିବାକୁ ପାଇବୁ ନାହିଁ । ଆମେମାନେ କେବଳ ଏକ ପ୍ରକାର ଚିତ୍ତବୃତ୍ତିସମ୍ପନ୍ନ ପ୍ରାଣୀଙ୍କୁ ହିଁ ଦେଖିବାକୁ ପାଉ । ଯେଉଁ ଯନ୍ତ୍ରଗୁଡ଼ିକ ଏକପ୍ରକାର କମ୍ପନବିଶିଷ୍ଟ, ସେଗୁଡ଼ିକ ମଧ୍ୟରୁ ଗୋଟିଏ ବାଜିଲେ ଅନ୍ୟଗୁଡ଼ିକ ବାଜି ଉଠିବ । ମନେ କର, ଆମେମାନେ ବର୍ତ୍ତମାନ ଯେଉଁଭଳି ପ୍ରାଣକମ୍ପନସମ୍ପନ୍ନ, ତାହାକୁ ଆମେମାନେ 'ମାନବକମ୍ପନ' ନାମ ପ୍ରଦାନ କରିପାରୁ; ଯଦି ଏହା ପରିବର୍ତ୍ତିତ ହୋଇଯାଏ, ତେବେ ଆଉ ମନୁଷ୍ୟ ଦେଖାଯିବେ ନାହିଁ; ଏହା ପରିବର୍ତ୍ତିରେ ଅନ୍ୟ ଏକ ପ୍ରକାର ଦୃଶ୍ୟ ଆମମାନଙ୍କ ସମ୍ମୁଖକୁ ଆସିବ—ହୁଏତ ଦେବତା ଓ ଦେବଜଗତ୍ କିମ୍ବା ଅସତ୍ ଲୋକମାନଙ୍କ ପକ୍ଷେ ଦାନବ ଓ ଦାନବଜଗତ୍; କିନ୍ତୁ ଏହିସବୁ ଜଗତ୍‌ଗୁଡ଼ିକ ଗୋଟିଏ ମାତ୍ର ଜଗତ୍‌ର ବିଭିନ୍ନ ଭାବମାତ୍ର । ମାନବଦୃଷ୍ଟିରେ ଏହି ଜଗତ୍ ପୃଥିବୀ, ସୂର୍ଯ୍ୟ, ଚନ୍ଦ୍ର, ତାରା ପ୍ରଭୃତିରୂପେ, ପୁଣି ଦାନବଦୃଷ୍ଟିରେ ଦେଖିଲେ ଏହା ହିଁ ନରକ ବା ଶାସ୍ତିର ସ୍ଥାନରୂପେ ପ୍ରତୀତ ହେବ । ପୁଣି ଯେଉଁମାନେ ସ୍ୱର୍ଗକୁ ଯିବାକୁ ଚାହାଁନ୍ତି, ସେମାନେ ଏହି ସ୍ଥାନକୁ ହିଁ ସ୍ୱର୍ଗରୂପେ ଦେଖିବେ । ଯେଉଁମାନେ ଜୀବନସାରା ଭାବୁଛନ୍ତି, ଆମେମାନେ ସ୍ୱର୍ଗସିଂହାସନାରୂଢ଼ ଈଶ୍ୱରଙ୍କ ନିକଟକୁ ଯାଇ ଜୀବନସାରା ତାଙ୍କର ଉପାସନା କରିବୁ, ସେମାନଙ୍କର ମୃତ୍ୟୁ ହେଲେ ସେମାନେ ସେମାନଙ୍କ ଚିତ୍ତସ୍ଥ ଏହି ବିଷୟକୁ ହିଁ ଦେଖିବେ । ଏହି ଜଗତ୍ ଗୋଟିଏ ବୃହତ୍ ସ୍ୱର୍ଗରେ ପରିଣତ ହୋଇଯିବ; ସେମାନେ ଦେଖିବେ, ନାନା ପ୍ରକାର ପକ୍ଷଯୁକ୍ତ ଦେବଦୂତ ଚତୁର୍ଦ୍ଦିଗରେ ଉଡ଼ି ବୁଲୁଛନ୍ତି ଏବଂ ଈଶ୍ୱର ସିଂହାସନରେ ଉପବିଷ୍ଟ ଅଛନ୍ତି । ସ୍ୱର୍ଗାଦି ସମୁଦାୟ ମନୁଷ୍ୟର କୃତ । ଅତଏବ ଅଦ୍ୱୈତବାଦୀମାନେ କହନ୍ତି, ଦ୍ୱୈତବାଦୀମାନଙ୍କ କଥା ସତ୍ୟ; କିନ୍ତୁ ଏସବୁ ସେମାନଙ୍କ ନିଜଦ୍ୱାରା ରଚିତ । ଏହିସବୁ ଲୋକ, ଏହିସବୁ ଦୈତ୍ୟ, ପୁନର୍ଜନ୍ମ ପ୍ରଭୃତି ସବୁ ରୂପକ ମାତ୍ର, ମାନବଜୀବନ ମଧ୍ୟ ତାହା । ଏଗୁଡ଼ିକ କେବଳ ରୂପକ ହେଲେ ମାନବଜୀବନକୁ ମଧ୍ୟ ସତ୍ୟ ବୋଲି କୁହାଯାଇ ପାରେ

ନାହିଁ । ମନୁଷ୍ୟ ଏହି ଭୁଲ ସର୍ବଦା ହିଁ କରୁଅଛି । ଅନ୍ୟାନ୍ୟ ଜିନିଷ, ଯଥା, ସ୍ୱର୍ଗ, ନରକ ପ୍ରଭୃତିକୁ ରୂପକ କହିଲେ ତାହା ବେଶ୍ ବୁଝାଯାଇପାରେ; କିନ୍ତୁ ସେମାନେ ନିଜ ନିଜର ଅସ୍ତିତ୍ୱକୁ ରୂପକ ବୋଲି ମାନିନେବାକୁ, କୌଣସି ପ୍ରକାରେ ସ୍ୱୀକାର କରିବାକୁ ଚାହାଁନ୍ତି ନାହିଁ । ଏହି ଆପାତପ୍ରତୀୟମାନ ସମୁଦାୟ ହିଁ ରୂପକମାତ୍ର, ପୁଣି ସର୍ବାପେକ୍ଷା ମିଥ୍ୟା ହେଉଛି 'ଆମେ ନିଜକୁ ଶରୀର ବୋଲି ଭାବିବା' । ତାହା ଆମେମାନେ କଦାପି ନୋହୁଁ ବା କଦାପି ହେବୁ ନାହିଁ । ଆମେମାନେ ମଧ୍ୟ ମନୁଷ୍ୟ, ଏହା ଏକ ଭୟାନକ ମିଥ୍ୟା । ଆମେମାନେ ହିଁ ଜଗତ୍‌ର ଈଶ୍ୱର । ଈଶ୍ୱରଙ୍କ ଉପାସନା କରିବାକୁ ଯାଇ ଆମେମାନେ ନିଜ ନିଜର ଅବ୍ୟକ୍ତ ଆତ୍ମାକୁ ହିଁ ଉପାସନା କରିଆସୁଛୁ । ତୁମେ ଜନ୍ମହେବା ମୁହୂର୍ତ୍ତରୁ ପାପୀ ବା ଅସତ୍ ପୁରୁଷ ଏହା ଭାବିବା ହିଁ ସର୍ବାପେକ୍ଷା ମିଥ୍ୟା କଥା । ନିଜେ ଯେଉଁମାନେ ପାପୀ, ସେହିମାନେ ହିଁ କେବଳ ଅପରକୁ ପାପୀରୂପେ ଦେଖିଥାଆନ୍ତି । ମନେକର, ଏଠାରେ ଗୋଟିଏ ଶିଶୁ ରହିଅଛି ଏବଂ ତୁମେ ଟେବୁଲ୍ ଉପରେ ଗୋଟିଏ ମୋହରର ଥଳି ରଖିଲ । ମନେକର, ଜଣେ ଦସ୍ୟୁ ଆସି ଏ ମୋହର ନେଇଗଲା । ଶିଶୁ ପାଇଁ ଏହି ମୋହର ଥଳିର ଅବସ୍ଥାନ ଓ ଅନ୍ତର୍ଦ୍ଧାନ ଉଭୟ ହିଁ ସମାନ; ତା' ଭିତରେ ଚୋର ନାହିଁ, ସୁତରାଂ ବାହାରେ ମଧ୍ୟ ସେ ଚୋର ଦେଖେ ନାହିଁ । ପାପୀ ଓ ଅସତ୍ ଲୋକମାନେ ହିଁ ବାହାରେ ପାପ ଦେଖିଥାଆନ୍ତି; କିନ୍ତୁ ସାଧୁ ଲୋକମାନଙ୍କ ପକ୍ଷେ ସେପରି ବୋଧ ହୁଏ ନାହିଁ । ଅତ୍ୟନ୍ତ ଅସାଧୁ ଲୋକେ ଏହି ଜଗତକୁ ନରକତୁଲ୍ୟ ଦେଖିଥାନ୍ତି; ଯେଉଁମାନେ ମଝିମଝିକିଆ ଲୋକ ସେମାନେ ଏହାକୁ ସ୍ୱର୍ଗଭଳି ଦେଖନ୍ତି, ଆଉ ଯେଉଁମାନେ ସିଦ୍ଧପୁରୁଷ, ସେମାନେ ଏହାକୁ ସାକ୍ଷାତ୍ ଭଗବାନରୂପରେ ଦର୍ଶନ କରିଥାଆନ୍ତି । କେବଳ ସେତିକିବେଳେ ତାଙ୍କ ଚକ୍ଷୁରୁ ଆବରଣ ଚାଲିଯାଏ ଏବଂ ସେତେବେଳେ ସେହି ବ୍ୟକ୍ତି ପବିତ୍ର ଓ ଶୁଦ୍ଧ ହୋଇ ଦେଖିପାରନ୍ତି ଏବଂ ତାଙ୍କର ଦୃଷ୍ଟି ସମ୍ପୂର୍ଣ୍ଣ ପରିବର୍ତ୍ତିତ ହୋଇଯାଏ । ଯେଉଁସବୁ ଦୁଃସ୍ୱପ୍ନ ତାଙ୍କୁ ଲକ୍ଷ ଲକ୍ଷ ବର୍ଷ ଧରି ଉତ୍ପୀଡ଼ିତ କରିଆସୁଥିଲା, ତାହା ଏକାଥରକେ ଚାଲିଯାଏ; ଆଉ ଯେଉଁ ଲୋକ ନିଜକୁ ଏତେଦିନ ଧରି ମଣିଷ, ଦେବତା, ଦାନବ ପ୍ରଭୃତି ବୋଲି ମନେକରିଆସୁଥିଲା ଯେଉଁ ଲୋକ ନିଜକୁ କେତେବେଳେ ଉର୍ଦ୍ଧ୍ୱରେ, କେତେବେଳେ ନିମ୍ନରେ, କେତେବେଳେ ପୃଥିବୀରେ, କେତେବେଳେ ସ୍ୱର୍ଗରେ, କେତେବେଳେ ଅବା ଅନ୍ୟ କୌଣସି ସ୍ଥାନରେ ଅବସ୍ଥିତ ବୋଲି ଭାବୁଥିଲେ—ସେ ଦେଖିପାରନ୍ତି ଯେ ସେ ବାସ୍ତବିକ ସର୍ବବ୍ୟାପୀ—ସେ କାଳର ଅଧୀନ ନୁହନ୍ତି, କାଳ ତାଙ୍କର ଅଧୀନ, ସମୁଦାୟ ସ୍ୱର୍ଗ ତାଙ୍କ ଭିତରେ, ସେ କୌଣସି ସ୍ୱର୍ଗରେ ଅବସ୍ଥିତ ନୁହନ୍ତି । ମନୁଷ୍ୟ ଯେକୌଣସି ଦେବତାର ଉପାସନା କରୁନା କାହିଁକି, ସମସ୍ତେ ତା' ନିଜ ଭିତରେ । ସେ କୌଣସି ଦେବତା ମଧ୍ୟରେ ଅବସ୍ଥିତ ନୁହେଁ, ସେ ହିଁ ଦେବାସୁର, ମନୁଷ୍ୟ, ପଶୁ, ଉଦ୍ଭିଦ, ପ୍ରସ୍ତର ପ୍ରଭୃତିର ସୃଷ୍ଟିକର୍ତ୍ତା । ସେତେବେଳେ ତା' ନିକଟରେ ମନୁଷ୍ୟର ପ୍ରକୃତ ସ୍ୱରୂପ ଏହି

ଜଗତଠାରୁ ପରିପୂର୍ଣ୍ଣ, ସ୍ୱର୍ଗଠାରୁ ଶ୍ରେଷ୍ଠତର, ଅନନ୍ତକାଳ ଅପେକ୍ଷା ସୀମାହୀନ ଏବଂ ସର୍ବବ୍ୟାପୀ ଆକାଶଠାରୁ ଅଧିକ ସର୍ବବ୍ୟାପୀ ରୂପେ ପ୍ରକାଶ ପାଏ, ସେତେବେଳେ ମନୁଷ୍ୟ ନିର୍ଭୟ ହୋଇଯାଏ, ସେତେବେଳେ ମନୁଷ୍ୟ ମୁକ୍ତ ହୋଇଯାଏ । ସେତେବେଳେ ସବୁ ଭ୍ରାନ୍ତି ଚାଲିଯାଏ, ସବୁ ଦୁଃଖ ଦୂର ହୋଇଯାଏ, ସବୁ ଭୟ ଏକାଥରକେ ଚିରକାଳ ନିମିତ୍ତ ଶେଷ ହୋଇଯାଏ । ସେତେବେଳେ ଜନ୍ମ କେଉଁଆଡ଼େ ଚାଲିଯାଏ, ତା' ସହିତ ମୃତ୍ୟୁ ମଧ୍ୟ ଚାଲିଯାଏ; ଦୁଃଖ ଚାଲିଯାଏ, ତା' ସଙ୍ଗେ ସଙ୍ଗେ ସୁଖ ମଧ୍ୟ ଚାଲିଯାଏ; ପୃଥିବୀ ଉଡ଼ିଯାଏ, ତା'ସଙ୍ଗେ ସ୍ୱର୍ଗ ମଧ୍ୟ ଉଡ଼ିଯାଏ; ଶରୀର ଚାଲିଯାଏ, ତା ସଙ୍ଗେ ମନ ମଧ୍ୟ ଚାଲିଯାଏ । ତାହା ପକ୍ଷରେ ସମୁଦାୟ ଜଗତ୍ ଯେପରି ଏକ ଅବ୍ୟକ୍ତ ଭାବ ଧାରଣ କରେ । ଏହି ଯେ ଶକ୍ତିରାଶିର ନିୟତ ସଂଗ୍ରାମ, ନିୟତ ସଂଘର୍ଷ, ଏହା ଏକାବେଳକେ ସ୍ଥଗିତ ହୋଇଯାଏ । ଯାହା ଶକ୍ତି ଓ ଭୂତରୂପେ, ପ୍ରକୃତିର ବିଭିନ୍ନ ଚେଷ୍ଟା ରୂପେ ପ୍ରକାଶ ପାଇଥିଲା, ଯାହା ସ୍ୱୟଂ ପ୍ରକୃତି ରୂପେ ପ୍ରକାଶ ପାଇଥିଲା, ଯାହା ସ୍ୱର୍ଗ, ପୃଥିବୀ, ଉଦ୍ଭିଦ, ପଶୁ, ମନୁଷ୍ୟ, ଦେବତା ପ୍ରଭୃତି ରୂପେ ପ୍ରକାଶ ପାଇଥିଲା, ସେ ସମସ୍ତ ଏକ ଅନନ୍ତ, ଅଚ୍ଛେଦ୍ୟ, ଅପରିଣାମୀ ସତ୍ତାରେ ପରିଣତ ହୋଇଯାଏ । ଆଉ ଜ୍ଞାନୀ ପୁରୁଷ ଦେଖିପାରନ୍ତି, ସେହି ସତ୍ତା ସହିତ ସେ ଅଭେଦ । ଯେଉଁଭଳି ଆକାଶରେ ନାନା ବର୍ଣ୍ଣର ମେଘ ଉଠି କେତେକ କ୍ଷଣ ଖେଳା କରି ପରେ ଅନ୍ତର୍ହିତ ହୋଇଯାଏ, ସେହିଭଳି ଏହି ଆତ୍ମା ସମ୍ମୁଖରେ ପୃଥିବୀ, ସ୍ୱର୍ଗ, ଚନ୍ଦ୍ରଲୋକ, ଦେବତା, ସୁଖଦୁଃଖ ପ୍ରଭୃତି ଆସେ କିନ୍ତୁ ଏମାନେ ଆମମାନଙ୍କ ସମ୍ମୁଖରେ ସେହି ଏକ ଅନନ୍ତ ଅପରିଣାମୀ ନୀଳ ବର୍ଣ୍ଣ ଆକାଶକୁ ରଖି ଅନ୍ତର୍ହିତ ହୋଇଯାନ୍ତି । ଆକାଶ କୌଣସି ସମୟରେ ପରିଣାମପ୍ରାପ୍ତ ହୁଏ ନାହିଁ, ମେଘ ହିଁ କେବଳ ପରିଣାମପ୍ରାପ୍ତ ହୁଏ । ଆମେମାନେ ଭ୍ରମବଶତଃ ମନେକରୁଥାଉ, ଆମେମାନେ ଅପବିତ୍ର, ଆମେମାନେ ସସୀମ, ଜଗତ୍‌ଠାରୁ ଆମେମାନେ ପୃଥକ୍ ବୋଲି, କିନ୍ତୁ ମନୁଷ୍ୟ ପ୍ରକୃତିରେ ଏକ ଅଖଣ୍ଡ ସତ୍ତାସ୍ୱରୂପ ।

ବର୍ତ୍ତମାନ ଦୁଇଟି ପ୍ରଶ୍ନ ଆସୁଛି । ପ୍ରଥମଟି ହେଉଛି—ଏହି ଅଦ୍ୱୈତ ଜ୍ଞାନ ଉପଲବ୍ଧି କରିବା କଅଣ ସମ୍ଭବ ? ଏପର୍ଯ୍ୟନ୍ତ କେବଳ ମତବାଦ ସମ୍ପର୍କରେ ଆଲୋଚନା ହେଲା; କିନ୍ତୁ ଏହାର ଅପରୋକ୍ଷାନୁଭୂତି କଅଣ ସମ୍ଭବ ? ହଁ, ସମ୍ପୂର୍ଣ୍ଣ ସମ୍ଭବ । ସଂସାରରେ ଏଭଳି ଅନେକ ଲୋକ ଏବେ ମଧ୍ୟ ଅଛନ୍ତି, ଯେଉଁମାନଙ୍କ ପାଇଁ ଚିରକାଳ ନିମିତ୍ତ ଅଜ୍ଞାନ ଦୂର ହୋଇଯାଇଅଛି । ଏମାନେ କଅଣ ଏହି ସତ୍ୟ ଉପଲବ୍ଧି କରିବାର ପରକ୍ଷଣରେ ହିଁ ମରିଯାଆନ୍ତି ? ଅବଶ୍ୟ ଆମେମାନେ ଯେତେ ଶୀଘ୍ର ମନେକରୁ ସେତେ ଶୀଘ୍ର ନୁହେଁ । ଏକ କାଷ୍ଠଖଣ୍ଡ ସଂଯୋଜିତ ଦୁଇଟି ଚକ୍ର ଏକତ୍ର ଚାଲୁଛି । ଆମେ ଯଦି ଗୋଟିଏ ଚକ୍ରକୁ ଧରି ତାହାର ସଂଯୋଜକ କାଷ୍ଠଖଣ୍ଡିକୁ କାଟିଦେଉ, ତେବେ ଆମେ ଧରିଥିବା ଚକ୍ରଟି ସ୍ଥିର ହୋଇଯିବ; କିନ୍ତୁ ଅପର ଚକ୍ରଟି ଉପରେ ପୂର୍ବପ୍ରଦତ୍ତ ବେଗ ରହିଅଛି, ସୁତରାଂ ଏହା କିଛିକ୍ଷଣ ଯାଏ ଚାଲିବ ।

ପୂର୍ଣ୍ଣ ଶୁଦ୍ଧସ୍ୱରୂପ ଆତ୍ମା ଯେପରି ଗୋଟିଏ ଚକ୍ର ଏବଂ ଏହି ଶରୀର-ମନରୂପକ ଭ୍ରାନ୍ତି ଆଉ ଗୋଟିଏ ଚକ୍ର, କର୍ମରୂପକ କାଷ୍ଠଦଣ୍ଡଦ୍ୱାରା ଏହା ସଂଯୋଜିତ । ଜ୍ଞାନ ହିଁ ସେହି କୁଠାର ଯାହା ଏହି ଦୁଇଟିର ସଂଯୋଜକ ଦଣ୍ଡକୁ ଛେଦନ କରିଦିଏ । ଯେତେବେଳେ ଆତ୍ମାରୂପକ ଚକ୍ର ସ୍ଥଗିତ ହୋଇଯିବ ଆତ୍ମା ସେତେବେଳେ ଆସୁଛୁ ଯାଉଛୁ, କିମ୍ବା ତାହାର ଜନ୍ମମୃତ୍ୟୁ ହେଉଛୁ, ଏହିସବୁ ଅଜ୍ଞାନଭାବ ପରିତ୍ୟାଗ ହେବ, ପ୍ରକୃତି ସହିତ ତାହାର ମିଶ୍ରିତ ଭାବ, ଅଭାବ, ବାସନା ସବୁ ଚାଲିଯିବ; ସେତେବେଳେ ଆତ୍ମା ଦେଖିପାରିବ ଯେ ସେ ପୂର୍ଣ୍ଣ—ବାସନାରହିତ । କିନ୍ତୁ ଶରୀର ମନରୂପକ ଅପର ଚକ୍ରରେ ପ୍ରାକ୍ତନ କର୍ମର ବେଗ ରହିବ । ସୁତରାଂ ଯେତେଦିନ ପର୍ଯ୍ୟନ୍ତ ଏହି ପ୍ରାକ୍ତନ କର୍ମର ବେଗ ନିବୃତ୍ତି ନ ହେବ ସେତେଦିନ ପର୍ଯ୍ୟନ୍ତ ଏହା ଚାଲିଥିବ । ଏହି ବେଗର ନିବୃତ୍ତି ଘଟିଲେ ଶରୀର-ମନର ପତନ ହେବ, ସେତେବେଳେ ଆତ୍ମା ମୁକ୍ତ ହେବ । ସେତେବେଳେ ସ୍ୱର୍ଗକୁ ଯିବା କି ସ୍ୱର୍ଗରୁ ଜଗତକୁ ଫେରିଆସିବା, ଏପରିକି ବ୍ରହ୍ମଲୋକ ଗମନ ପର୍ଯ୍ୟନ୍ତ ସ୍ଥଗିତ ହୋଇଯିବ; କାରଣ ସେ କେଉଁଠାରୁ ଆସିବ, ପୁଣି କେଉଁଠାକୁ ବା ଯିବ ? ଯେଉଁ ବ୍ୟକ୍ତି ଏହି ଜୀବନକାଳ ମଧ୍ୟରେ ଏହି ଅବସ୍ଥା ଲାଭ କରିପାରିଛନ୍ତି, ଅନ୍ତତଃ ଗୋଟିଏ ମୁହୂର୍ତ୍ତ ପାଇଁ ଯେଉଁମାନଙ୍କ ପକ୍ଷେ ଏହି ସଂସାରଦୃଶ୍ୟ ପରିବର୍ତ୍ତିତ ହୋଇ ସତ୍ୟ ପ୍ରତିଭାତ ହୋଇଛି ସେ ଜୀବନ୍ମୁକ୍ତ ବୋଲି କଥିତ ହୁଅନ୍ତି । ଏହି ଜୀବନ୍ମୁକ୍ତ ଅବସ୍ଥା ଲାଭ କରିବା ହିଁ ବେଦାନ୍ତୀର ଲକ୍ଷ୍ୟ ।

ଏକଦା ଭାରତ ମହାସାଗର-ଉପକୂଳରେ ଭାରତର ପଶ୍ଚିମ ଦିଗସ୍ଥ ମରୁଭୂମିରେ ମୁଁ ଭ୍ରମଣ କରୁଥିଲି । ଅନେକ ଦିନ ଧରି ଚାଲି ଚାଲି ମରୁଭୂମିରେ ମୁଁ ଭ୍ରମଣ କଲି; କିନ୍ତୁ ପ୍ରତିଦିନ ଏକ ଘଟଣା ଦେଖି ଆଶ୍ଚର୍ଯ୍ୟ ହେଲି ଯେ, ଚତୁର୍ଦ୍ଦିଗରେ ସୁନ୍ଦର ସୁନ୍ଦର ହ୍ରଦ ରହିଅଛି, ସେହି ହ୍ରଦଗୁଡ଼ିକର ଚତୁର୍ଦ୍ଦିଗରେ ବୃକ୍ଷରାଜି ବିରାଜିତ ଏବଂ ହ୍ରଦର ଜଳରେ ବୃକ୍ଷସମୂହର ଛାୟା ବିପରୀତ ଭାବରେ ପଡ଼ି ଦୋଲାୟମାନ ହେଉଅଛି । କି ଅଦ୍ଭୁତ ଦୃଶ୍ୟ ! ଆମ ଲୋକେ ପୁଣି ଏହାକୁ ମରୁଭୂମି କହନ୍ତି ? ମୁଁ ଗୋଟିଏ ମାସ କାଳ ଭ୍ରମଣ କଲି; ଭ୍ରମଣ କରି ଏହି ଅଦ୍ଭୁତ ହ୍ରଦସକଳ ଓ ବୃକ୍ଷରାଜି ଦେଖିବାକୁ ଲାଗିଲି । ଦିନେ ଅତିଶୟ ତୃଷାର୍ତ୍ତ ହୋଇ ଟିକିଏ ଜଳପାନ କରିବାକୁ ମୋର ଇଚ୍ଛା ହେଲା । ସୁତରାଂ ମୁଁ ଏହି ସକଳ ସୁନ୍ଦର ନିର୍ମଳ ହ୍ରଦଗୁଡ଼ିକ ମଧ୍ୟରୁ ଗୋଟିକ ନିକଟକୁ ଅଗ୍ରସର ହେଲି । ଅଗ୍ରସର ହେବା ମାତ୍ରେ ହଠାତ୍ ଏହା ଅଦୃଶ୍ୟ ହେଲା, ଆଉ ସେତେବେଳେ ମୋ ମନରେ ଏହି ଜ୍ଞାନର ଉଦୟ ହେଲା—'ଯେଉଁ ମରୀଚିକା ସମ୍ବନ୍ଧରେ ଜୀବନସାରା ପୁସ୍ତକମାନଙ୍କରେ ପଢ଼ି ଆସିଛି, ଏ ସେହି ମରୀଚିକା ।' ପୁଣି ତାହା ସହିତ ଏହି ଜ୍ଞାନ ମଧ୍ୟ ଆସିଲା, 'ଏହି ସାରା ମାସଟିଯାକ ପ୍ରତ୍ୟହ ମୁଁ ମରୀଚିକା ହିଁ ଦେଖିଆସିଛି, କିନ୍ତୁ ଜାଣିପାରି ନାହିଁ ଯେ ଏହା ମରୀଚିକା ।' ତତ୍ପର ଦିନ ପୁଣି ଚାଲିବାକୁ ଆରମ୍ଭ କଲି । ପୂର୍ବ ପରି ହ୍ରଦ ଦେଖାଗଲା; କିନ୍ତୁ ଏହା ସଙ୍ଗେ ସଙ୍ଗେ ଏହି ଜ୍ଞାନ ମଧ୍ୟ ଆସିଲା ଯେ, ଏହା ମରୀଚିକା, ସତ୍ୟ ହ୍ରଦ ନୁହେଁ ।

ଏହି ଜଗତ୍ ସମ୍ବନ୍ଧରେ ମଧ୍ୟ ତଦ୍ରୂପ । ଆମେମାନେ ପ୍ରତିଦିନ, ପ୍ରତିମାସ, ପ୍ରତିବର୍ଷ ଏହି ଜଗତରୂପ ମରୁଭୂମିରେ ଭ୍ରମଣ କରୁଅଛୁ; କିନ୍ତୁ ମରୀଚିକାକୁ ମରୀଚିକା ବୋଲି ବୁଝିପାରୁ ନାହୁଁ । ଦିନେ ଏହି ମରୀଚିକା ଅଦୃଶ୍ୟ ହେବ, କିନ୍ତୁ ଏହା ପୁଣି ଆସିବ । ଶରୀର ପ୍ରାକ୍ତନ କର୍ମର ଅଧୀନ, ସୁତରାଂ ସେହି ମରୀଚିକା ଫେରିଆସିବ । ଯେତେଦିନ ପର୍ଯ୍ୟନ୍ତ ଆମେମାନେ କର୍ମବଦ୍ଧ, ସେତେଦିନ ପର୍ଯ୍ୟନ୍ତ ଏହି ଜଗତ ଆମମାନଙ୍କ ସମ୍ମୁଖକୁ ଆସୁଥିବ । ନରନାରୀ, ପଶୁ, ଉଦ୍ଭିଦ, ଆସକ୍ତି କର୍ତ୍ତବ୍ୟ ସବୁ ଆସିବ; କିନ୍ତୁ ଏମାନେ ପୂର୍ବ ପରି ଆମମାନଙ୍କ ଉପରେ ଶକ୍ତି ବିସ୍ତାର କରିବାକୁ ସମର୍ଥ ହେବେ ନାହିଁ । ଏହି ନୂତନ ଜ୍ଞାନର ପ୍ରଭାବରେ କର୍ମର ଶକ୍ତି ନାଶ ହେବ; ଏହାର ବିଷ ଦୂରୀଭୂତ ହେବ । ଜଗତ୍ ଆମମାନଙ୍କ ପକ୍ଷେ ସମ୍ପୂର୍ଣ୍ଣ ପରିବର୍ତ୍ତିତ ହୋଇଯିବ, କାରଣ ଜଗତ ଯେପରି ଦେଖାଯିବ, ସେହିପରି ଏହା ସହିତ ସତ୍ୟ ଓ ମରୀଚିକାର ପ୍ରଭେଦଜନିତ ଜ୍ଞାନ ମଧ୍ୟ ଆସିବ ।

ସେତେବେଳେ ଏହି ଜଗତ ଆଉ ସେହି ପୂର୍ବର ଜଗତ ହୋଇ ରହିବ ନାହିଁ । ତେବେ ଗୋଟିଏ ବିପଦ ଅଛି । ଅମେମାନେ ଦେଖିବାକୁ ପାଉ, ପ୍ରତି ଦେଶରେ ଲୋକେ ଏହି ବେଦାନ୍ତ ଦର୍ଶନର ମତ ଗ୍ରହଣ କରି କହନ୍ତି, 'ମୁଁ ଧର୍ମାଧର୍ମର ଅତୀତ, ମୁଁ ବିଧିନିଷେଧର ଅତୀତ; ସୁତରାଂ ମୁଁ ଯାହା ଇଚ୍ଛା ତାହା କରିପାରିବି ।' ଏହି ଦେଶରେ ମଧ୍ୟ ଦେଖିବ, ଅନେକ ଅଜ୍ଞାନୀ ଲୋକେ କହୁଥାଆନ୍ତି, 'ମୁଁ ବଦ୍ଧ ନୁହେଁ, ମୁଁ ସ୍ୱୟଂ ଈଶ୍ୱରସ୍ୱରୂପ; ମୁଁ ଯାହା ଇଚ୍ଛା ତାହା କରିବି ।' ଏହା ଠିକ୍ ନୁହେଁ, ଯଦିଓ ଏହା ସତ୍ୟ ଯେ, ଆତ୍ମା ଭୌତିକ, ମାନସିକ ବା ନୈତିକ, ସର୍ବପ୍ରକାର ନିୟମର ଅତୀତ । ଏହା ସତ୍ୟ ଯେ ନିୟମ ମଧ୍ୟରେ ବନ୍ଧନ ନିୟମର ବାହାରେ ମୁକ୍ତି । ଏହା ମଧ୍ୟ ସତ୍ୟ ଯେ, ମୁକ୍ତି ଆତ୍ମାର ଜନ୍ମଗତ ସ୍ୱଭାବ, ଏହା ତାହାର ଜନ୍ମପ୍ରାପ୍ତ ସ୍ୱତ୍ୱ ଏବଂ ଆତ୍ମାର ଯଥାର୍ଥ ମୁକ୍ତ ସ୍ୱଭାବ ଭୌତିକ ଆବରଣର ମଧ୍ୟ ଦେଇ ମନୁଷ୍ୟର ଆପାତ-ପ୍ରତୀୟମାନ ମୁକ୍ତସ୍ୱଭାବରୂପେ ପ୍ରତୀତ ହୋଇଥାଏ । ତୁମ ଜୀବନର ପ୍ରତି ମୁହୂର୍ତ୍ତରେ ନିଜକୁ ତୁମେ ମୁକ୍ତ ବୋଲି ଅନୁଭବ କରୁଅଛ । ଆମେମାନେ ନିଜକୁ ମୁକ୍ତ ବୋଲି ଅନୁଭବ ନ କରି ଗୋଟିଏ ମୁହୂର୍ତ୍ତ ସୁଦ୍ଧା ଜୀବିତ ରହିପାରିବା ନାହିଁ, କଥା କହି-ପାରିବା ନାହିଁ କିମ୍ବା ଶ୍ୱାସପ୍ରଶ୍ୱାସ ତ୍ୟାଗ କରିପାରିବା ନାହିଁ । କିନ୍ତୁ ସାମାନ୍ୟ ଚିନ୍ତା କଲେ ଏହା ମଧ୍ୟ ପ୍ରମାଣିତ ହୁଏ ଯେ, ଆମେମାନେ ଯନ୍ତ୍ର ପରି ମୁକ୍ତ ନୋହୁଁ । ତାହାହେଲେ କେଉଁଟି ସତ୍ୟ ? ଏହି ଯେଉଁ 'ମୁଁ ମୁକ୍ତ', ଏହି ଧାରଣାଟି କେତେ ଭ୍ରମାତ୍ମକ ! ଦଳେ କହନ୍ତି, 'ମୁଁ ମୁକ୍ତସ୍ୱଭାବ' ଏହି ଧାରଣା ଭ୍ରମାତ୍ମକ; ପୁଣି ଆଉ ଦଳେ କହନ୍ତି, 'ମୁଁ ବଦ୍ଧଭାବାପନ୍ନ' ଏହି ଧାରଣା ଭ୍ରମାତ୍ମକ । ଏହା କିପରି ସମ୍ଭବ ? ମନୁଷ୍ୟ ପ୍ରକୃତ ପକ୍ଷେ ମୁକ୍ତ; ମନୁଷ୍ୟ ପରମାର୍ଥତଃ ଯାହା—ତାହା ମୁକ୍ତ ବ୍ୟତୀତ ଆଉ କିଛି ହୋଇପାରେ ନାହିଁ; କିନ୍ତୁ ଯେତେବେଳେ ସେ ମାୟାର ଜଗତକୁ ଆସିଯାଏ, ଯେତେବେଳେ ସେ ନାମରୂପ ମଧ୍ୟରେ ପଡ଼େ, ସେତେବେଳେ ସେ ବଦ୍ଧ ହୋଇ-

ଯାଏ । 'ସ୍ୱାଧୀନ ଇଚ୍ଛା'—ଏହା କହିବା ହିଁ ଭୁଲ । ଇଚ୍ଛା କଦାପି ସ୍ୱାଧୀନ ହୋଇ-ପାରେ ନାହିଁ । କିପରି ହେବ ? ଯେ ପ୍ରକୃତ ମନୁଷ୍ୟ, ସେ ଯେତେବେଳେ ବଦ୍ଧ ହୋଇଯାଏ, ସେତେବେଳେ ତାହାର ଇଚ୍ଛାର ଉଦ୍‌ଭବ ହୁଏ, ତାହା ପୂର୍ବରୁ ନୁହେଁ । ମନୁଷ୍ୟର ଇଚ୍ଛା ବଦ୍ଧସ୍ୱଭାବାପନ୍ନ; କିନ୍ତୁ ଏହାର ମୂଳ ଯାହା, ତାହା ନିତ୍ୟକାଳ ମୁକ୍ତ । ସୁତରାଂ ଏହି ବନ୍ଧନର ଅବସ୍ଥାରେ ବି—ଏହି ମନୁଷ୍ୟ-ଜୀବନରେ ହେଉ, ଦେବ-ଜୀବନରେ ହେଉ, ସ୍ୱର୍ଗରେ ଅବସ୍ଥାନ କାଳରେ ହେଉ କିମ୍ବା ମର୍ତ୍ତ୍ୟରେ ଅବସ୍ଥାନ କାଳରେ ହେଉ, ଆମମାନଙ୍କର ବିଧିଦତ୍ତ ଅଧିକାରସ୍ୱରୂପ ଏହି ମୁକ୍ତିର ସ୍ମୃତି ରହି-ଥାଏ । ଆଉ ଜ୍ଞାତସାରରେ ବା ଅଜ୍ଞାତସାରରେ ଆମେମାନେ ସମସ୍ତେ ଏହି ମୁକ୍ତି ଦିଗକୁ ପ୍ରଧାବିତ । ଯେତେବେଳେ ମନୁଷ୍ୟ ମୁକ୍ତି ଲାଭ କରେ, ସେତେବେଳେ ସେ ପୁଣି ନିୟମଦ୍ୱାରା କିପରି ବଦ୍ଧ ହୋଇପାରିବ ? ଜଗତ୍‌ର କୌଣସି ନିୟମ ତାହାକୁ ବଦ୍ଧ କରିପାରିବ ନାହିଁ, କାରଣ ଏହି ବିଶ୍ୱବ୍ରହ୍ମାଣ୍ଡ ସେତେବେଳେ ତାହାର ହୋଇଯିବ ।

ସେ ନିଜେ ସେତେବେଳେ ବିଶ୍ୱବ୍ରହ୍ମାଣ୍ଡ ସ୍ୱରୂପ । କିମ୍ବା ସେହି ସମୁଦାୟ ଜଗତ୍, ନଚେତ୍ କହି ତାଙ୍କ ପକ୍ଷେ ଜଗତ୍‌ର ଅସ୍ତିତ୍ୱ ନାହିଁ । ତେବେ ତାହାଙ୍କର ଲିଙ୍ଗ, ଦେଶ ଇତ୍ୟାଦିର କ୍ଷୁଦ୍ର କ୍ଷୁଦ୍ର ଭାବ କେଉଁଭଳି ରହିବ ? ସେ କିପରି କହିବେ, ମୁଁ ପୁରୁଷ, ମୁଁ ସ୍ତ୍ରୀ ଅଥବା ମୁଁ ବାଳକ ? ଏଗୁଡ଼ାକ କ'ଣ ମିଥ୍ୟା କଥା ନୁହେଁ ? ସେ ଜାଣିଛନ୍ତି, ସେଗୁଡ଼ିକ ମିଥ୍ୟା । ସେତେବେଳେ ସେ ଏଗୁଡ଼ିକ ପୁରୁଷର ଅଧିକାର, ଏ ଗୁଡ଼ିକ ସ୍ତ୍ରୀର ଅଧିକାର ଏହା କିପରି କହିବେ ? କାହାର ହେଲେ କିଛି ଅଧିକାର ନାହିଁ, କାହାର ହେଲେ କୌଣସି ସ୍ୱତନ୍ତ୍ର ଅସ୍ତିତ୍ୱ ନାହିଁ । ପୁରୁଷ ନାହିଁ, ସ୍ତ୍ରୀ ମଧ୍ୟ ନାହିଁ; ଆତ୍ମା ଲିଙ୍ଗହୀନ, ନିତ୍ୟଶୁଦ୍ଧ । ମୁଁ ନିଜକୁ ପୁରୁଷ ବା ସ୍ତ୍ରୀ ବୋଲି କହିବା, ଅଥବା ମୁଁ ଅମୁକ ଦେଶବାସୀ କହିବା ମିଥ୍ୟାବାଦ ମାତ୍ର । ସମୁଦାୟ ଜଗତ୍ ହିଁ ମୋର ଦେଶ, ସମୁଦାୟ ଜଗତ୍ ହିଁ ମୋର, ସମୁଦାୟ ଜଗତ୍‌ଦ୍ୱାରା ଯେପରି ମୁଁ ନିଜକୁ ଆବୃତ କରିଛି, ଜଗତ୍ ମୋର ଶରୀର ହୋଇଛି । କିନ୍ତୁ ଆମେମାନେ ଦେଖି-ବାକୁ ପାଉ, ଅନେକ ଲୋକ ବିଚାର ବେଳେ ଏହି ସବୁ କଥା କହି କାର୍ଯ୍ୟବେଳରେ ଅପବିତ୍ର କାର୍ଯ୍ୟସବୁ କରିଥାଆନ୍ତି । ପୁଣି ଆମେମାନେ ଯଦି ସେମାନଙ୍କୁ ପଚାରିବା, କାହିଁକି ସେମାନେ ଏଭଳି କରୁଛନ୍ତି, ସେମାନେ ଉତ୍ତର ଦେବେ, 'ଏହା ତୁମ-ମାନଙ୍କର ବୁଝିବାର ଭ୍ରମ । ଆମମାନଙ୍କଦ୍ୱାରା କୌଣସି ଅନ୍ୟାୟ କାର୍ଯ୍ୟ ହେବା ଅସ-ମ୍ଭବ ।' ଏହିସବୁ ଲୋକଙ୍କୁ ପରୀକ୍ଷା କରିବାର ଉପାୟ କ'ଣ ? ଉପାୟ ଏହି—

ଯଦିଓ ସଦସତ୍ ଉଭୟ ହିଁ ଆତ୍ମାର ଖଣ୍ଡ ପ୍ରକାଶ ମାତ୍ର, ତଥାପି ଅସଦ୍‌ଭାବ ହିଁ ଆତ୍ମାର ବାହ୍ୟ ଆବରଣ ଏବଂ ସତ୍-ଭାବ—ମନୁଷ୍ୟର ପ୍ରକୃତ ସ୍ୱରୂପ ଯେ ଆତ୍ମା, ତାହାର ଅପେକ୍ଷାକୃତ ନିକଟତର ଆବରଣ । ଯେତେଦିନ ପର୍ଯ୍ୟନ୍ତ ମନୁଷ୍ୟ ଅସତ୍‌ର ସ୍ତର ଭେଦ କରିପାରି ନାହିଁ, ସେପର୍ଯ୍ୟନ୍ତ ସେ ସତ୍ୟର ସ୍ତରରେ ପହଞ୍ଚିପାରିବ ନାହିଁ;

ପୁଣି ଯେତେଦିନ ଯାଏ ସେ ସଦସତ୍ ଉଭୟର ସ୍ତର ଭେଦ କରିପାରି ନାହିଁ, ସେତେଦିନ ଯାଏ ସେ ଆତ୍ମା ନିକଟରେ ପହଞ୍ଚିପାରିବ ନାହିଁ । ଆତ୍ମା ନିକଟରେ ପହଞ୍ଚିଲେ ତାହାର ଆଉ କ'ଣ ଅବଶିଷ୍ଟ ରହେ ? ଅତି ସାମାନ୍ୟ କର୍ମ ଭୂତ-ଜୀବନର କାର୍ଯ୍ୟର ଅତି ସାମାନ୍ୟ ବେଗ ହିଁ ଅବଶିଷ୍ଟ ରହେ, କିନ୍ତୁ ଏ ବେଗ—ଶୁଭ କର୍ମର ହିଁ ବେଗ । ଯେତେଦିନ ଅସଦ୍ ବେଗ ଏକାବେଳକେ ରହିତ ହୋଇ ନାହିଁ,ଯେତେଦିନ ଯାଏ ପୂର୍ବ ଅପବିତ୍ରତା ଏକାବେଳକେ ଦଗ୍ଧ ହୋଇନାହିଁ, ସେତେଦିନ ପର୍ଯ୍ୟନ୍ତ କୌଣସି ବ୍ୟକ୍ତି ପକ୍ଷରେ ସତ୍ୟକୁ ପ୍ରତ୍ୟକ୍ଷ ଏବଂ ଉପଲବ୍‌ଧି କରିବା ଅସମ୍ଭବ ହେବ । ସୁତରାଂ ଯେ ଆତ୍ମା ନିକଟରେ ପହଞ୍ଚିପାରିଛି, ସେ ସତ୍ୟକୁ ପ୍ରତ୍ୟକ୍ଷ କରିପାରିଛି, ତାହାର କେବଳ ଭୂତ-ଜୀବନର ଶୁଭ ସଂସ୍କାର, ଶୁଭ ବେଗଗୁଡ଼ିକ ଅବଶିଷ୍ଟ ରହିଛି । ଶରୀରରେ ବାସ କଲେ ହେଁ ଏବଂ ଅନବରତ କର୍ମ କଲେ ମଧ୍ୟ ସେ କେବଳ ସତ୍ କର୍ମ କରନ୍ତି, ତାଙ୍କର ମୁଖ ସମସ୍ତଙ୍କ ପ୍ରତି କେବଳ ଆଶୀର୍ବାଦ ବର୍ଷଣ କରେ । ତାଙ୍କର ହସ୍ତ କେବଳ ସତ୍ କାର୍ଯ୍ୟ ହିଁ କରିଥାଏ, ତାଙ୍କର ମନ କେବଳ ସତ୍‌ଚିନ୍ତା କରିବାରେ ସମର୍ଥ, ତାଙ୍କର ଉପସ୍ଥିତି, ସେ ଯେଉଁଠିକି ଯାଆନ୍ତୁ ନା କାହିଁକି, ସର୍ବତ୍ର ହିଁ ମାନବ-ଜାତିର ମହାକଲ୍ୟାଣକର । ଏଭଳି ବ୍ୟକ୍ତିଦ୍ୱାରା କି କୌଣସି ଅସତ୍‌କାର୍ଯ୍ୟ ସମ୍ଭବ ହେବ ?

ତୁମମାନଙ୍କର ସ୍ମରଣ ରଖିବା ଉଚିତ, 'ପ୍ରତ୍ୟକ୍ଷାନୁଭୂତି' ଏବଂ 'ଖାଲି ମୁହଁରେ କହିବା' ଭିତରେ ଅଛି ବିରାଟ ବ୍ୟବଧାନ । ଅଜ୍ଞାନ ବ୍ୟକ୍ତି ମଧ୍ୟ ନାନା ଜ୍ଞାନର କଥା କହିଥାଏ । ଶୁକପକ୍ଷୀ ମଧ୍ୟ ଏହିଭଳି ବକର ବକର ହୁଏ । ମୁହଁରେ କହିବା ଏକ କଥା ଏବଂ ଉପଲବ୍‌ଧି କରିବା ଅନ୍ୟ ଏକ କଥା । ଦର୍ଶନ, ମତାମତ, ବିଚାର, ଶାସ୍ତ୍ର, ମନ୍ଦିର, ସମ୍ପ୍ରଦାୟ ପ୍ରଭୃତି କିଛି ମନ୍ଦ ନୁହେଁ; କିନ୍ତୁ ଏହି ପ୍ରତ୍ୟକ୍ଷାନୁଭୂତି ହେଲେ ଏ ସବୁ ଆଉ ରହେ ନାହିଁ । ମାନଚିତ୍ର ଅବଶ୍ୟ ଉପକାରୀ, କିନ୍ତୁ ମାନଚିତ୍ରରେ ଅଙ୍କିତ ଦେଶ ସ୍ୱୟଂ ପ୍ରତ୍ୟକ୍ଷ କରି ଆସି, ତା'ପରେ ପୁଣି ସେହି ମାନଚିତ୍ର ପ୍ରତି ଦୃଷ୍ଟିପାତ କର, ସେତେବେଳେ ତୁମେ କେତେ ପ୍ରଭେଦ ଦେଖିବାକୁ ପାଇବ । ସୁତରାଂ ଯେଉଁମାନେ ସତ୍ୟ ଉପଲବ୍‌ଧି କରିଅଛନ୍ତି, ସେମାନଙ୍କୁ ଏହା ବୁଝିବା ନିମିତ୍ତ ନ୍ୟାୟଯୁକ୍ତି ତର୍କବିତର୍କ ପ୍ରଭୃତି ମାନସିକ ବ୍ୟାୟାମର ଆଉ ଆଶ୍ରୟ ନେବାକୁ ପଡ଼େ ନାହିଁ । ଏହା ସେମାନଙ୍କର ଅନ୍ତରାତ୍ମାର ମର୍ମେ ମର୍ମେ ପ୍ରବିଷ୍ଟ ହୋଇ ଯାଇଛି, ଜୀବନର ଜୀବନ ହୋଇଯାଇଛି । ବେଦାନ୍ତବାଦୀମାନଙ୍କ ଭାଷାରେ କହିବାକୁ ଗଲେ କୁହାଯିବ, ଏହା ଯେପରି ସେମାନଙ୍କର କରାମଲକବତ୍ ହୋଇଛି । ପ୍ରତ୍ୟକ୍ଷ ଉପଲବ୍ଧିକାରୀମାନେ ଅସଙ୍କୋଚିତ ଚିତ୍ତରେ କହିପାରନ୍ତି, 'ଏହି ଯେ ଆତ୍ମା ରହିଅଛି ।' ତୁମେ ସେମାନଙ୍କ ସହିତ ଯେତେ ତର୍କ କରନା କାହିଁକି, ସେମାନେ ତୁମ କଥାରେ କେବଳ ହସିବେ ଏବଂ ତାହା ଶିଶୁର ପ୍ରଳାପ ବୋଲି ମନେ କରିବେ । ଶିଶୁ ଯାହା କହୁନା କାହିଁକି, ସେ କୌଣସି ବାଧା ଦେବେ ନାହିଁ । କାରଣ ସେମାନେ ସତ୍ୟ ଉପଲବ୍‌ଧି କରି 'ପରିପୂର୍ଣ୍ଣ' ହୋଇଛନ୍ତି । ମନେକର, ତୁମେ ଗୋଟିଏ ଦେଶ

ଦେଖିବାକୁ ଆସିଛ; ଆଉ ଜଣେ ବ୍ୟକ୍ତି ତୁମ ନିକଟକୁ ଆସି ତର୍କ କରିବାକୁ ଆରମ୍ଭ କଲା ଯେ, ଏହି ଦେଶର କେବେହେଲେ ଅସ୍ତିତ୍ୱ ନ ଥିଲା; ଏହିଭଳି ସେ କ୍ରମାଗତ ତର୍କ କରିଯାଇପାରେ, କିନ୍ତୁ ତାହା ପ୍ରତି ତୁମ ମନରେ ଏହି ଭାବର ଉଦୟ ହେବ ଯେ ସେ ବ୍ୟକ୍ତି ବାତୁଳାଳୟର ଉପଯୁକ୍ତ । ଏହିଭଳି ଯେ ଧର୍ମକୁ ପ୍ରତ୍ୟକ୍ଷ ଉପଲବ୍ଧି କରିଅଛନ୍ତି, ସେ କହିବେ, 'ଜଗତ୍‌ରେ ଧର୍ମ ସମ୍ବନ୍ଧରେ ଯେଉଁସବୁ କଥା ଶୁଣାଯାଏ, ତାହା କେବଳ ବାଳକର କଥାମାତ୍ର । ପ୍ରତ୍ୟକ୍ଷାନୁଭୂତି ଧର୍ମର ସାରକଥା ।' ଧର୍ମ ଉପଲବ୍ଧି କରାଯାଇପାରେ । ପ୍ରଶ୍ନ ହେଉଛି, ତୁମେ କଅଣ ପ୍ରସ୍ତୁତ ଅଛ ? ତୁମର କଅଣ ଧର୍ମର ପ୍ରୟୋଜନ ଅଛି ? ଯେବେ ତୁମେ ଯଥାର୍ଥ ଚେଷ୍ଟା କର, ତେବେ ତୁମର ପ୍ରତ୍ୟକ୍ଷ ଉପଲବ୍ଧି ହେବ, ସେତେବେଳେ ହିଁ ତୁମେ ପ୍ରକୃତପକ୍ଷେ ଧାର୍ମିକ ହେବ । ଯେତେଦିନ ତୁମେ ଏହି ଉପଲବ୍ଧି କରିପାର ନାହିଁ, ସେତେଦିନ ତୁମ ଭିତରେ ଏବଂ ନାସ୍ତିକ ଭିତରେ କୌଣସି ପ୍ରଭେଦ ନାହିଁ । ନାସ୍ତିକମାନେ ତ ଅକପଟ, କିନ୍ତୁ ଯେ କହେ 'ମୁଁ ଧର୍ମ ବିଶ୍ୱାସ କରେ', ଅଥଚ କଦାପି ଏହା ପ୍ରତ୍ୟକ୍ଷ ଉପଲବ୍ଧି କରିବାକୁ ଚେଷ୍ଟା କରିନାହିଁ, ସେ କପଟୀ ।

ତା'ପରେ ପ୍ରଶ୍ନ ହେଉଛି—ଏହି ଉପଲବ୍ଧି ପରେ କ'ଣ ହୁଏ ? ମନେକର, ମୁଁ ଜଗତ୍‌ର ଏହି ଅଖଣ୍ଡ ସତ୍ତା, ମୁଁ ଯେ ସେହି ଏକମାତ୍ର ଅନନ୍ତ ପୁରୁଷ—ଏହା ଉପଲବ୍ଧି କଲି; ମନେକର, ମୁଁ ଜାଣିପାରିଲି, କେବଳ ଆତ୍ମା ହିଁ ବିଦ୍ୟମାନ, ଆଉ ସେ ବିଭିନ୍ନ ଭାବରେ ପ୍ରକାଶ ପାଇଅଛନ୍ତି; ଏହିଭଳି ଜାଣିପାରିଲେ, ମୋର କଅଣ ହେବ୍? ତାହା ହେଲେ ମୁଁ କ'ଣ ନିଶ୍ଚେଷ୍ଟ ହୋଇ ଗୋଟିଏ କୋଣରେ ବସି ରହିବି ? ଜଗତ୍‌ର ଏହାଦ୍ୱାରା କି ଉପକାର ହେବ ? ସେହି ପ୍ରାଚୀନ ପ୍ରଶ୍ନ ପୁଣି ଘୂରି ଘୂରି ଫେରି ଆସିଲା । ପ୍ରଥମତଃ, ଏହାଦ୍ୱାରା ଜଗତର ଉପକାର ହେବ କାହିଁକି ? ଏହାର କ'ଣ କିଛି ଯୁକ୍ତି ଅଛି ? ଲୋକମାନଙ୍କର ଏହି ପ୍ରଶ୍ନ କରିବାର କି ଅଧିକାର ଅଛି— 'ଏହାଦ୍ୱାରା ଜଗତର କି ଉପକାର ହେବ ?' ଏହାର ଅର୍ଥ କଅଣ ? ଛୋଟ ପିଲା ମିଠା ଦ୍ରବ୍ୟକୁ ଭଲ ପାଏ । ମନେକର ତୁମେ ତଡ଼ିତ୍ ସମ୍ପର୍କରେ କିଛି ଗବେଷଣା କରୁଅଛ । ପିଲା ତୁମକୁ ପଚାରୁଅଛି, 'ଏହାଦ୍ୱାରା କ'ଣ ମିଠା କିଣାଯାଇ ପାରିବ ?' ତୁମେ କହିଲ, 'ନା ।' 'ତେବେ ଏହାଦ୍ୱାରା କି ଉପକାର ହେବ ?' ଲୋକମାନେ ମଧ୍ୟ ଠିକ୍ ଏହିଭଳି ପଚାରିଥାନ୍ତି, 'ଏଥିରେ ଜଗତର କି ଉପକାର ହେବ ? ଏଥିରେ କ'ଣ ଆମେମାନେ ଟଙ୍କା ପାଇବୁ ?' 'ନା ।' ତେବେ ଏଥିରେ ଆଉ ଉପକାର କ'ଣ ? ମନୁଷ୍ୟ ଜଗତର ହିତ କରିବାର ଅର୍ଥ ଏହିଭଳି ହିଁ ବୁଝିଥାଏ । ତଥାପି ଧର୍ମର ଏହି ପ୍ରତ୍ୟକ୍ଷାନୁଭୂତି ହିଁ ଜଗତର ଯଥାର୍ଥ ଉପକାର କରିଥାଏ । ଲୋକ ଭୟ କରେ, ଯେତେବେଳେ ସେ ଏହି ଅବସ୍ଥା ଲାଭ କରିବ, ଯେତେବେଳେ ସେ ଉପଲବ୍ଧି କରିବ ଯେ ସମସ୍ତେ ଏକ, ସେତେବେଳେ ପ୍ରେମର ପ୍ରସ୍ରବଣ ଶୁଖିଯିବ । ଜୀବନରେ ମୂଲ୍ୟବାନ୍ ବୋଲି ଯାହା ଅଛି ସବୁ ଚାଲିଯିବ, ଏହି ଜୀବନରେ ଓ ପରଜୀବନରେ ସେ

ଯାହା କିଛି ଭଲ ପାଉଥିଲ, ସବୁ ତା' ପାଇଁ ଉଡ଼ିଯିବ । ଲୋକମାନେ ଏ ବିଷୟରେ ଥରେ ହେଲେ ଭାବି ଦେଖନ୍ତି ନାହିଁ ଯେ, ଯେଉଁସବୁ ବ୍ୟକ୍ତି ସେମାନଙ୍କ ନିଜ ସମ୍ବନ୍ଧେ ଉଦାସୀନ, ସେହିମାନେ ହିଁ ଜଗତର ସର୍ବଶ୍ରେଷ୍ଠ କର୍ମୀ ହୋଇପାରନ୍ତି । ସେତେବେଳେ ଯାଇ ମନୁଷ୍ୟ ଯଥାର୍ଥ ଭଲ ପାଏ, ଯେତେବେଳେ ମନୁଷ୍ୟ ଦେଖିପାରେ, ତାହାର ଭଲ ପାଇବାର ଜିନିଷ କୌଣସି କ୍ଷୁଦ୍ର ମର୍ତ୍ତ୍ୟ ଜୀବ ନୁହେଁ । ସେତେବେଳେ ଯାଇ ମନୁଷ୍ୟ ଯଥାର୍ଥ ଭଲ ପାଇପାରେ, ଯେତେବେଳେ ସେ ଦେଖିପାରେ, ତାହାର ଭଲ ପାଇବାର ପାତ୍ର—ରକ୍ତମାଂସବିଶିଷ୍ଟ କେହି ନୁହେଁ, ତାହାର ପ୍ରେମାସ୍ପଦ ସ୍ୱୟଂ ଭଗବାନ ! ସ୍ତ୍ରୀ ସ୍ୱାମୀକୁ ଆହୁରି ଭଲ ପାଇପାରିବ, ଯଦି ସେ ସ୍ୱାମୀକୁ ସାକ୍ଷାତ୍ ବ୍ରହ୍ମସ୍ୱରୂପ ବୋଲି ଚିନ୍ତା କରିବ । ସ୍ୱାମୀ ମଧ୍ୟ ସ୍ତ୍ରୀକୁ ଅଧିକ ଭଲ ପାଇପାରିବ, ଯଦି ସେ ଜାଣିପାରିବ ଯେ ସ୍ତ୍ରୀ ସ୍ୱୟଂ ବ୍ରହ୍ମସ୍ୱରୂପ । ସେହି ମା ମଧ୍ୟ ସନ୍ତାନମାନଙ୍କୁ ବେଶୀ ଭଲ ପାଇପାରେ, ଯେ ସନ୍ତାନମାନଙ୍କୁ ବ୍ରହ୍ମସ୍ୱରୂପ ଦେଖେ । ସେହି ବ୍ୟକ୍ତି ତାହାର ମହାଶତ୍ରୁକୁ ବି ପ୍ରୀତି କରିପାରେ, ଯେ ଜାଣେ ଯେ ଏହି ଶତ୍ରୁ ସାକ୍ଷାତ୍ ବ୍ରହ୍ମସ୍ୱରୂପ; ସେହି ଲୋକ ସାଧୁ ବ୍ୟକ୍ତିଙ୍କୁ ଭଲପାଇବ, ଯେ ଜାଣେ ଯେ ସେହି ସାଧୁ ବ୍ୟକ୍ତି ସାକ୍ଷାତ୍ ବ୍ରହ୍ମସ୍ୱରୂପ । ସେହି ବ୍ୟକ୍ତି ହିଁ ପୁଣି ଅତିଶୟ ଅସାଧୁ ଲୋକକୁ ବି ଭଲ ପାଇପାରିବ, ଯେ ଜାଣେ ଯେ ସେହି ଅସାଧୁତମ ପୁରୁଷର ପଶ୍ଚାତ୍‌ରେ ସେହି ପ୍ରଭୁ ବିରାଜ କରୁଅଛନ୍ତି । ଯାହା ପକ୍ଷେ ଏହି କ୍ଷୁଦ୍ର ଅହଂ ସମ୍ପୂର୍ଣ୍ଣ ମରି ଯାଇଅଛି ଏବଂ ସେହି ସ୍ଥାନକୁ ଈଶ୍ୱର ଅଧିକାର କରି ବସିଛନ୍ତି, ସେହି ବ୍ୟକ୍ତି ହିଁ ଜଗତକୁ ଇଙ୍ଗିତଦ୍ୱାରା ପରିଚାଳନା କରିପାରେ । ତା' ପକ୍ଷେ ସମୁଦାୟ ଜଗତ୍ ସମ୍ପୂର୍ଣ୍ଣ ଅନ୍ୟ ଆକାର ଧାରଣ କରେ । ତା' ପାଇଁ ଦୁଃଖକର ବା କ୍ଳେଶକର ବୋଲି ଆଉ କିଛି ରହେ ନାହିଁ; ସବୁ ପ୍ରକାର ଗୋଳମାଳ, ଦ୍ୱନ୍ଦ୍ୱ ମେଣ୍ଟିଯାଏ । ଯେଉଁ ଜଗତରେ ଆମେମାନେ ପ୍ରତିଦିନ ଖଣ୍ଡେ ରୁଟି ପାଇଁ ଝଗଡ଼ା କରି ମରାମରି ହେଉଅଛୁ, ସେହି ଜଗତ ସେତେବେଳେ ତା'ପକ୍ଷେ କାରାଗାର ସ୍ୱରୂପ ନ ରହି କ୍ରୀଡ଼ାକ୍ଷେତ୍ରରେ ପରିଣତ ହେବ । ସେତେବେଳେ ଜଗତ୍ ଅତି ସୁନ୍ଦର ବୋଲି ଦୃଶ୍ୟମାନ ହେବ । ଏହିଭଳି ବ୍ୟକ୍ତିର ହିଁ କେବଳ କହିବାର ଅଧିକାର ଅଛି 'ଏହି ଜଗତ୍ କି ସୁନ୍ଦର !' ତାହାର ହିଁ କେବଳ କହିବାର ଅଧିକାର ଅଛି ଯେ, ସବୁ ହିଁ ମଙ୍ଗଳସ୍ୱରୂପ । ଏହିପରି ପ୍ରତ୍ୟକ୍ଷ ଉପଲବ୍ଧିରୁ ଜଗତର ଏହି ମହାନ୍ ହିତ ସାଧନ ହେବ ଯେ, ଜଗତର ସବୁ ବାଦ-ବିବାଦ ଗଣ୍ଡଗୋଳ ଦୂର ହୋଇ ଜଗତରେ ଶାନ୍ତିର ରାଜ୍ୟ ସ୍ଥାପିତ ହେବ—ଯଦି ଜଗତର ସବୁ ମନୁଷ୍ୟ ଏହି ମହାନ୍ ସତ୍ୟର ମାତ୍ର ଗୋଟିଏ ବିନ୍ଦୁ ଉପଲବ୍ଧି କରି-ପାରନ୍ତି, ତାହାହେଲେ ସେମାନଙ୍କ ପକ୍ଷେ ଏହି ସମଗ୍ର ଜଗତ୍ ଅନ୍ୟ ଏକ ରୂପଧାରଣ କରିବ; ଅନ୍ୟାୟ ଭାବରେ ଅତିଶୀଘ୍ର ସମସ୍ତଙ୍କୁ ଅତିକ୍ରମ କରିଯିବାର ପ୍ରବୃତ୍ତି ଜଗତ୍‌ରୁ ଲୁପ୍ତ ହୋଇଯିବ । ଏହା ସଙ୍ଗେ ସଙ୍ଗେ ସବୁପ୍ରକାର ଅଶାନ୍ତି, ସବୁପ୍ରକାର ଘୃଣା ଏବଂ ସର୍ବବିଧ ଈର୍ଷା ଏବଂ ସବୁ ପ୍ରକାର ଅଶୁଭ ଚିରକାଳ ନିମିତ୍ତ ଜଗତରୁ

ଯାଉଥିବ । ସେତେବେଳେ ଦେବତାମାନେ ଏହି ଜଗତରେ ବାସ କରିବେ । ଏହି ଜଗତଟା ସେତେବେଳେ ସ୍ୱର୍ଗ ପାଲଟି ଯିବ । ଯେଉଁଠି ଦେବତାମାନେ ଦେବତାମାନଙ୍କ ସହିତ ଖେଳାଖେଳି କରିବେ, ଯେଉଁଠି ଦେବତାମାନେ ଦେବତାଙ୍କ ସହିତ କାର୍ଯ୍ୟ କରିବେ, ଆଉ ଯେଉଁଠି ଦେବତାମାନେ ଦେବତାଙ୍କୁ ଭଲ ପାଇବେ, ସେଠାରେ ଆଉ କ'ଣ ଅଶୁଭ ରହିପାରିବ ? ଈଶ୍ୱରଙ୍କ ପ୍ରତ୍ୟକ୍ଷ ଉପଲବ୍ଧିର ଏହା ହିଁ ହେଉଛି ମହା ସୁଫଳ । ସମାଜରେ ତୁମେମାନେ ଯାହା କିଛି ଦେଖୁଛ, ସବୁ ସେତେବେଳେ ପରିବର୍ତ୍ତିତ ହୋଇଯାଇ ଭିନ୍ନ ରୂପ ଧାରଣ କରିବ । ସେତେବେଳେ ତୁମେମାନେ ମନୁଷ୍ୟକୁ ଆଉ ଖରାପ ହିସାବରେ ଦେଖିବ ନାହିଁ,ଏହା ହିଁ ଏକ ମହାନ୍ ଲାଭ । ସେତେବେଳେ ତୁମେ କୌଣସି ଅନ୍ୟାୟ କାର୍ଯ୍ୟ କରୁଥିବା ଦରିଦ୍ର ନରନାରୀମାନଙ୍କ ପ୍ରତି ଘୃଣାପୂର୍ବକ ଦୃଷ୍ଟିପାତ କରିବ ନାହିଁ । ହେ ମହିଳାଗଣ, ଯେଉଁ ଦୁଃଖିନୀ ନାରୀମାନେ ରାତିରେ ରାସ୍ତାରେ ଘୂରି ବୁଲନ୍ତି, ସେମାନଙ୍କ ପ୍ରତି ତୁମେମାନେ ଆଉ ଘୃଣାବ୍ୟଞ୍ଜକ ଦୃଷ୍ଟିପାତ କରିବ ନାହିଁ; କାରଣ ସେଠାରେ ମଧ୍ୟ ତୁମେ ସାକ୍ଷାତ୍ ଈଶ୍ୱରଙ୍କୁ ଦେଖିପାରିବ, ସେତେବେଳେ ତୁମଠାରେ ଆଉ ଈର୍ଷା ବା ଅନ୍ୟକୁ ଶାସ୍ତି ଦେବାର ଭାବନା ଉଦିତ ହେବ ନାହିଁ । ଏହାସବୁ ଚାଲିଯିବ, ସେତେବେଳେ ପ୍ରେମ ଏତେ ପ୍ରବଳ ହେବ ଯେ, ମାନବଜାତିକୁ ସତ୍ ପଥରେ ପରିଚାଳିତ କରିବା ନିମିତ୍ତ ଚାବୁକ୍‌ର ପ୍ରୟୋଜନ ହେବ ନାହିଁ ।

ଜଗତରେ ନରନାରୀମାନଙ୍କର ଲକ୍ଷେ ଭାଗରୁ ଭାଗେ ଯଦି କେବଳ ଚୁପ୍‌କରି ବସି କିଛିକ୍ଷଣ ପାଇଁ କହନ୍ତି, 'ତୁମେମାନେ ସମସ୍ତେ ଈଶ୍ୱର; ହେ ମାନବଗଣ, ହେ ପଶୁଗଣ, ହେ ସର୍ବପ୍ରକାର ଜୀବିତ ପ୍ରାଣୀଗଣ, ତୁମେମାନେ ସମସ୍ତେ ଏକ ଜୀବନ୍ତ ଈଶ୍ୱରଙ୍କ ପ୍ରକାଶ', ତାହାହେଲେ ଅଧଘଣ୍ଟା ମଧ୍ୟରେ ହିଁ ସମଗ୍ର ଜଗତ ପରିବର୍ତ୍ତିତ ହୋଇଯିବ । ସେତେବେଳେ ଚତୁର୍ଦ୍ଦିଗକୁ ଘୃଣାର ବୀଜ ପ୍ରକ୍ଷେପ ନ କରି, ଈର୍ଷା ଏବଂ ଅସତ୍ ଚିନ୍ତାର ପ୍ରବାହ ବିସ୍ତାର ନ କରି ସବୁ ଦେଶର ଲୋକମାନେ ଚିନ୍ତା କରିବେ, ସମସ୍ତେ ହିଁ ସେହି । ଯାହାକିଛି ଦେଖୁଛ ବା ଅନୁଭବ କରୁଛ, ସବୁ ହିଁ ସେହି । ତୁମ ଭିତରେ ଅଶୁଭ ନ ରହିଲେ, ତୁମେ ଅଶୁଭ ଦେଖିବ କିପରି ? ତୁମ ମଧ୍ୟରେ ଚୋର ନ ଥିଲେ, ତୁମେ ଚୋର ଦେଖିବ କିପରି ? ତୁମେ ନିଜେ ଖୁନୀ ନ ହେଲେ ଖୁନୀ ଦେଖିବ କିପରି ? ସାଧୁ ହୁଅ, ତାହାହେଲେ ଅସାଧୁ ଭାବ ଏକାଥରେ ଚାଲିଯିବ; ଏହିଭଳି ସମଗ୍ର ଜଗତ୍ ପରିବର୍ତ୍ତିତ ହୋଇଯିବ । ଏହା ହିଁ ସମାଜର ମହତ୍‌ଲାଭ । ମନୁଷ୍ୟ ପକ୍ଷରେ ଏହା ହିଁ ମହତ୍ ଲାଭ ।

ଭାରତରେ ପ୍ରାଚୀନ କାଳରେ ଏହିସବୁ ଭାବ ଗମ୍ଭୀର ଚିନ୍ତାକରି ବହୁ ବ୍ୟକ୍ତି ତାଙ୍କ ନିଜ ଜୀବନରେ ତାହା କାର୍ଯ୍ୟରେ ପରିଣତ କରିଥିଲେ । ନାନାବିଧ କାରଣ ଯୋଗୁଁ ଏହି ଚିନ୍ତାଗୁଡ଼ିକ ଚତୁର୍ଦ୍ଦିଗରେ ପ୍ରଚାରିତ ହୋଇପାରି ନାହିଁ । ତାହା ନ ହେଲେ ମଧ୍ୟ ଏଗୁଡ଼ିକ ମହାସତ୍ୟ, ଯେଉଁଠାରେ ଏଗୁଡ଼ିକ ସେମାନଙ୍କର ପ୍ରଭାବ

ବିସ୍ତାର କରିପାରିଛନ୍ତି, ସେଠାରେ ମନୁଷ୍ୟ ଦେବଭାବାପନ୍ନ ହୋଇଯାଇଛି । ଏହିଭଳି ଜଣେ ଦେବପ୍ରକୃତି ମନୁଷ୍ୟଦ୍ୱାରା ମୋର ସମଗ୍ର ଜୀବନଟି ପରିବର୍ତ୍ତିତ ହୋଇ-ଯାଇଛି । ଆଗାମୀ ରବିବାର ଦିନ ତାଙ୍କ ସମ୍ପର୍କରେ ମୁଁ ତୁମମାନଙ୍କ ନିକଟରେ କହିବି । ବର୍ତ୍ତମାନ ଏହିସବୁ ଭାବ ସମଗ୍ର ଜଗତରେ ପ୍ରଚାରିତ ହେବାର ସମୟ ଆସିଛି । ମଠ ଭିତରେ ଆବଦ୍ଧ ନ ରହି, କେବଳ ପଣ୍ଡିତମାନଙ୍କର ଅଧ୍ୟୟନ ନିମିତ୍ତ ଦର୍ଶନ ସମ୍ବନ୍ଧୀୟ ପୁସ୍ତକାବଳୀରେ ଆବଦ୍ଧ ନ ରହି, କେବଳ କେତେଗୁଡ଼ିଏ ସମ୍ପ୍ର-ଦାୟ ଏବଂ କେତେକ ପଣ୍ଡିତମାନଙ୍କ ଏକଚାଟିଆ ଅଧିକାରରେ ନ ରହି ଏହା ସମଗ୍ର ଜଗତରେ ପ୍ରଚାରିତ ହେବ । ତଦ୍ୱାରା ଏହା ସାଧୁ, ପାପୀ, ଆବାଳବୃଦ୍ଧବନିତା, ଶିକ୍ଷିତ, ଅଶିକ୍ଷିତ ସମସ୍ତଙ୍କର ସାଧାରଣ ସମ୍ପତ୍ତି ହୋଇପାରିବ । ସେତେବେଳେ ଏହିସବୁ ଭାବ ଜଗତର ବାୟୁମଣ୍ଡଳରେ ଖେଳି ବୁଲିବ ଏବଂ ଆମେମାନେ ଯେଉଁ ବାୟୁକୁ ଶ୍ୱାସପ୍ରଶ୍ୱାସଦ୍ୱାରା ଗ୍ରହଣ କରୁଛୁ, ତାହାର ପ୍ରତ୍ୟେକ ତାଳେ ତାଳେ ଧ୍ୱନିତ ହେବ 'ତତ୍ତ୍ୱମସି' । ଏହି ଅସଂଖ୍ୟ ଚନ୍ଦ୍ରସୂର୍ଯ୍ୟପୂର୍ଣ୍ଣ ସମୁଦାୟ ବ୍ରହ୍ମାଣ୍ଡ, ବାକ୍ୟ-ଉଚ୍ଚାରଣକାରୀ ପ୍ରତ୍ୟେକ ପଦାର୍ଥର ଭିତର ଦେଇ ଧ୍ୱନିତ ହେବ, 'ତତ୍ତ୍ୱମସି' ।

# ମାୟା ଓ ଈଶ୍ୱରଧାରଣାର କ୍ରମବିକାଶ

[ ଲଣ୍ଡନରେ ପ୍ରଦତ୍ତ ବକ୍ତୃତା : ୨୦ ଅକ୍ଟୋବର, ୧୮୯୬ ]

ଅଦ୍ୱୈତବାଦର ଅନ୍ୟତମ ମୂଳଭିତ୍ତିସ୍ୱରୂପ ସଂହିତାମାନଙ୍କରେ ମାୟାବାଦ ଅସ୍ପଷ୍ଟଭାବେ ଦେଖିବାକୁ ମିଳେ । ପୁନଶ୍ଚ ଉପନିଷଦ୍‌ରେ ଯେଉଁସବୁ ତତ୍ତ୍ୱ ଖୁବ୍ ପରିସ୍ଫୁଟଭାବ ଧାରଣ କରିଛି, ସଂହିତାରେ ସେଗୁଡ଼ିକ ଅସ୍ଫୁଟଭାବେ ବିଦ୍ୟମାନ ଥିବା କଥା ଦେଖିବାକୁ ମିଳେ । ଆପଣମାନଙ୍କ ଭିତରୁ ଅନେକେ ବର୍ତ୍ତମାନ ମାୟାବାଦର ତତ୍ତ୍ୱ ସମ୍ପୂର୍ଣ୍ଣରୂପେ ଅବଗତ ହୋଇଛନ୍ତି ଏବଂ ବୁଝି ପାରିଛନ୍ତି । ଅନେକ ସମୟରେ ଲୋକମାନେ ଭ୍ରାନ୍ତିବଶତଃ ମାୟାକୁ 'ଭ୍ରମ' ବୋଲି ବ୍ୟାଖ୍ୟା କରିଥାଆନ୍ତି, ଅତଏବ ସେମାନେ ଯେତେବେଳେ ଜଗତକୁ ମାୟା କହନ୍ତି, ସେତେବେଳେ ଏହାକୁ 'ଭ୍ରମ' ବୋଲି ବ୍ୟାଖ୍ୟା କରିବାକୁ ହୁଏ । 'ଭ୍ରମ'—ମାୟାର ଏହି ଅର୍ଥ ଠିକ୍ ନୁହେଁ । ମାୟା କୌଣସି ବିଶେଷ ମତ ନୁହେଁ, ଏହା କେବଳ ବିଶ୍ୱବ୍ରହ୍ମାଣ୍ଡର ବର୍ଣ୍ଣନା ମାତ୍ର । ଏହି ମାୟାକୁ ବୁଝିବାକୁ ହେଲେ ଆମମାନଙ୍କୁ ସଂହିତା ପର୍ଯ୍ୟନ୍ତ ଯିବାକୁ ହେବ ଏବଂ ପ୍ରଥମେ ମାୟାସମ୍ବନ୍ଧରେ କି ଧାରଣା ଥିଲା ତାହା ମଧ୍ୟ ଦେଖିବାକୁ ହେବ । ଲୋକମାନଙ୍କର ଦେବତା-ଜ୍ଞାନ କିଭଳି ଆସିଲା, ଆମେ ତାହା ଦେଖିଅଛୁ । ଆମେ ଜାଣୁ ଯେ ଏହି ଦେବତାମାନେ ପ୍ରଥମେ କେବଳ ଶକ୍ତିଶାଳୀ ପୁରୁଷ ମାତ୍ର ଥିଲେ । ଗ୍ରୀକ୍, ହିବ୍ରୁ, ପାରସୀ ବା ଅନ୍ୟାନ୍ୟ ଜାତିମାନଙ୍କର ପ୍ରାଚୀନ ଶାସ୍ତ୍ରମାନଙ୍କରେ ଆମଦୃଷ୍ଟିରେ ଯେଉଁସବୁ କାର୍ଯ୍ୟ ଅତ୍ୟନ୍ତ ଘୃଣ୍ୟ, ଦେବତାମାନେ ସେହିସବୁ କାର୍ଯ୍ୟ କରିଅଛନ୍ତି । ଏହିଭଳି ବର୍ଣ୍ଣନା ଆପଣମାନଙ୍କ ଭିତରୁ ଅନେକେ ଦେଖି ଭୀତ ହୋଇଥାଆନ୍ତି; କିନ୍ତୁ ଆମେମାନେ ସମ୍ପୂର୍ଣ୍ଣରୂପେ ଭୁଲିଯାଉ ଯେ ଆମେମାନେ ଊନବିଂଶଶତାବ୍ଦୀର ଲୋକ, ଆଉ ଏହି ସବୁ ଦେବତା ଅନେକ ସହସ୍ର ବର୍ଷ ପୂର୍ବର ଜୀବ । ପୁନଶ୍ଚ ଆମେମାନେ ଏହା ମଧ୍ୟ ଭୁଲିଯାଉ ଯେ, ଏହିସବୁ ଦେବତାମାନଙ୍କର ଉପାସକମାନେ ସେମାନଙ୍କ ଚରିତ୍ରରେ କିଛି ଅସଙ୍ଗତି ଦେଖିବାକୁ ପାଇନାହାନ୍ତି ବା ସେମାନେ ତାଙ୍କ ଦେବତାମାନଙ୍କର ଯେଉଁଭଳି ବର୍ଣ୍ଣନା କରିଛନ୍ତି, ସେଥିରେ ସେମାନେ କିଛି ମାତ୍ର ଭୟ ପାଇନାହାନ୍ତି; କାରଣ ସେହିସବୁ ଦେବତାମାନେ ସେମାନଙ୍କ ଭଳି ଥିଲେ । ଜୀବନରେ ଆମମାନଙ୍କୁ ଏହି ଶିକ୍ଷା କରିବାକୁ ହେବ ଯେ, ପ୍ରତ୍ୟେକ ବ୍ୟକ୍ତିକୁ ତାହାର ନିଜ ନିଜ ଆଦର୍ଶାନୁସାରେ ବିଚାର କରିବାକୁ ହେବ, ଅନ୍ୟର ଆଦର୍ଶାନୁସାରେ ନୁହେଁ । ତାହା ନ କରି ଆମେମାନେ ନିଜ ଆଦର୍ଶଦ୍ୱାରା ଅପରର ବିଚାର କରିଥାଉ । ଏଭଳି କରିବା ଉଚିତ ନୁହେଁ । ଚତୁଃପାର୍ଶ୍ୱବର୍ତ୍ତୀ ଲୋକମାନଙ୍କ ସହିତ ବ୍ୟବହାର

କରିବା ସମୟରେ ଆମେମାନେ ସର୍ବଦା ଏହି ଭୁଲରେ ପଡ଼ିଥାଉ ଏବଂ ଆମର ଧାରଣା ଅପର ସହିତ ଆମର ଯାହା କିଛି ବିବାଦ ବିସମ୍ବାଦ ହୁଏ, ତାହା କେବଳ ଏହି ଗୋଟିଏ କାରଣରୁ ହୁଏ ଯେ ଆମେମାନେ ଅନ୍ୟର ଦେବତାଙ୍କୁ ଆମମାନଙ୍କ ନିଜ ଦେବତାଙ୍କଦ୍ୱାରା, ଅପରାପର ଆଦର୍ଶକୁ ଆମମାନଙ୍କ ଆଦର୍ଶଦ୍ୱାରା ଏବଂ ଅନ୍ୟର ଅଭିସନ୍ଧିକୁ ଆମ ନିଜର ଅଭିସନ୍ଧିଦ୍ୱାରା ବିଚାରକରିବାକୁ ଚେଷ୍ଟା କରିଥାଉ । ବିଶେଷ ବିଶେଷ ଅବସ୍ଥାରେ ଆମେମାନେ ହୁଏତ କୌଣସି ବିଶେଷ କାର୍ଯ୍ୟ କରିପାରୁ, ଆଉ ଯେତେବେଳେ ଆମେ ଦେଖୁ ଅନ୍ୟ ଜଣେ ଲୋକ ସେହିଭଳି କାର୍ଯ୍ୟ କରୁଛି, ଆମେମାନେ ଧରିନେଉ, ତାହାର ମଧ୍ୟ ସେହି ଅଭିସନ୍ଧି ଅଛି । ଆମ ମନରେ ଏ କଥା ଥରକ ପାଇଁ ସୁଦ୍ଧା ଆସେ ନାହିଁ ଯେ, ଯଦିଓ ଫଳ ସମାନ ହୋଇପାରେ, ତଥାପି ଭିନ୍ନ ଭିନ୍ନ କାରଣ ସେହି ଗୋଟିଏ ଫଳ ପ୍ରସବ କରିପାରେ । ଆମେ ଯେଉଁ କାରଣରୁ ସେହି କାର୍ଯ୍ୟ କରିବାକୁ ପ୍ରେରିତ ହୋଇଅଛୁ, ସେ ସେହି କାର୍ଯ୍ୟ ଅନ୍ୟ ଅଭିସନ୍ଧିରୁ କରିପାରେ । ସୁତରାଂ ଏହିସବୁ ପ୍ରାଚୀନ ଧର୍ମ ବିଚାର କରିବା ସମୟରେ ଆମେମାନେ ଯେପରି ଆମମାନଙ୍କର ମାନସିକ ପ୍ରବଣତାଦ୍ୱାରା ବିଚାର ନ କରୁ; ବରଂ ଆମେ ଯେପରି ସେହି ପ୍ରାଚୀନ କାଳର ଜୀବନ ଓ ଚିନ୍ତାପ୍ରଣାଳୀ ଅନୁସାରେ ଚିନ୍ତା କରୁ ।

ଓଲ୍ଡ ଟେଷ୍ଟାମେଣ୍ଟର ନିଷ୍ଠୁର ଜିହୋଭାଙ୍କର ବର୍ଣ୍ଣନାରେ ଅନେକେ ଭୀତ ହୋଇଥାନ୍ତି; କିନ୍ତୁ ଭୀତ ହେବାର କାରଣ କ'ଣ ? ଲୋକମାନଙ୍କର ଏହା କଳ୍ପନା କରିବାର କିଅଣ ଅଧିକାର ଅଛି ଯେ, ପ୍ରାଚୀନ ଇହୁଦୀମାନଙ୍କର ଜିହୋଭା ଆଜିକାଲିର ଈଶ୍ୱରଙ୍କ ଭଳି ହେବେ ? ପୁନଶ୍ଚ ଆମମାନଙ୍କର ଏହା ବିସ୍ମୃତ ହେବା ଉଚିତ ନୁହେଁ ଯେ, ଆମମାନଙ୍କ ପରେ ଯେଉଁମାନେ ଆସିବେ, ସେମାନେ— ଆମେମାନେ ଯେଉଁଭଳି ପ୍ରାଚୀନମାନଙ୍କର ଧର୍ମ ବା ଈଶ୍ୱରଧାରଣା ପ୍ରତି ପରିହାସ କରିଥାଉ—ଆମମାନଙ୍କ ଧର୍ମ ବା ଈଶ୍ୱରଧାରଣା ପ୍ରତି ସେହିଭଳି ପରିହାସ କରିବେ । ତାହାହେଲେ ମଧ୍ୟ ଏହିସବୁ ବିଭିନ୍ନ ଈଶ୍ୱରଧାରଣା ମଧ୍ୟରେ ସଂଯୋଗସାଧକ ଗୋଟିଏ ସୁବର୍ଣ୍ଣସୂତ୍ର ବିଦ୍ୟମାନ ଏବଂ ବେଦାନ୍ତର ଉଦ୍ଦେଶ୍ୟ ଏହି ସୂତ୍ର ଆବିଷ୍କାର କରିବା । ଶ୍ରୀକୃଷ୍ଣ କହିଅଛନ୍ତି, 'ଭିନ୍ନ ଭିନ୍ନ ମଣି ଯେପରି ଗୋଟିଏ ସୂତ୍ରରେ ଗ୍ରଥିତ, ସେହିଭଳି ଏହିସବୁ ବିଭିନ୍ନ ଭାବର ମଧ୍ୟଦେଇ ଏକ ସୂତ୍ର ରହିଅଛି ।'* ଆଉ ଆଧୁନିକ ଧାରଣାନୁସାରେ ସେଗୁଡ଼ିକ ଯେତେ ବୀଭତ୍ସ, ଭୟାନକ ବା ଘୃଣିତ ବୋଲି ପ୍ରତୀୟମାନ ହେଉ ନା କାହିଁକି, ବେଦାନ୍ତର କର୍ତ୍ତବ୍ୟ ଏହିସବୁ ଧାରଣା ଏବଂ ବର୍ତ୍ତମାନର ଧାରଣାସମୂହ ଭିତରେ ଏହି ସଂଯୋଗସୂତ୍ରଟିକୁ ଆବିଷ୍କାର କରିବା । ଅତୀତର ଅବସ୍ଥାକୁ ନେଇ ବିଚାର କଲେ ସେଗୁଡ଼ିକ ବେଶ୍ ସଙ୍ଗତ ମନେହୁଏ ଏବଂ ବୋଧହୁଏ, ଆମମାନଙ୍କର ବର୍ତ୍ତମାନ ଧାରଣାଗୁଡ଼ିକ ଅପେକ୍ଷା ଅଧିକ ବୀଭତ୍ସ ନ ଥିଲା । ଯେତେ-

* ଗୀତା, ୭।୭

ବେଳେ ଆମେମାନେ ସେହି ପ୍ରାଚୀନ କାଳର ପରିବେଶଠାରୁ ପୃଥକ୍ କରି ସେହି ଭାବଗୁଡ଼ିକୁ ଦେଖିବାକୁ ଯାଉ, ସେତେବେଳେ ହିଁ ସେଗୁଡ଼ିକର ବିଭତ୍ସତା ପ୍ରକାଶିତ ହୋଇପଡ଼େ । ପ୍ରାଚୀନକାଳର ସମାଜର ଅବସ୍ଥା ବର୍ତ୍ତମାନ ତ ଆଉ ନାହିଁ । ପ୍ରାଚୀନ ଇହୁଦୀ ଯେଉଁଭଳି ବର୍ତ୍ତମାନର ତୀକ୍ଷ୍ଣବୁଦ୍ଧି ଇହୁଦୀରେ ପରିଣତ ହୋଇଯାଇଅଛି, ଯେପରି ପ୍ରାଚୀନ ଆର୍ଯ୍ୟମାନେ ଆଧୁନିକ ବୁଦ୍ଧିମାନ ହିନ୍ଦୁରେ ପରିଣତ ହୋଇଛନ୍ତି, ସେହିଭଳି ଜିହୋଭାର କ୍ରମୋନ୍ନତି ହୋଇଛି, ଦେବତାମାନଙ୍କର ମଧ୍ୟ ହୋଇଛି । ଆମେମାନେ ଭୁଲ୍‌କ୍ରମେ ଉପାସକର କ୍ରମୋନ୍ନତିକୁ ସ୍ୱୀକାର କରୁ, କିନ୍ତୁ ଉପାସ୍ୟର କ୍ରମୋନ୍ନତିକୁ ସ୍ୱୀକାର କରୁନାହିଁ । ଉନ୍ନତି କରିଥିବାରୁ ଉପାସକମାନଙ୍କୁ ଯେଉଁ ଟିକିଏ ପ୍ରଶଂସା ଆମେମାନେ ଦେଉ, ଈଶ୍ୱରଙ୍କୁ ସେତିକ ଦେଉନାହୁଁ । କଥାଟା ହେଉଛି ଏହି—ତୁମେ ମୁଁ ଯେଉଁଭଳି କୌଣସି ବିଶେଷ ଭାବର ପ୍ରକାଶକ ରୂପେ ସେହି ଭାବର ଉନ୍ନତି ସଙ୍ଗେ ସଙ୍ଗେ ବିଶେଷ ଉନ୍ନତ ହୋଇଅଛୁଁ, ସେହିଭଳି ଦେବତାମାନେ ମଧ୍ୟ ବିଶେଷ ବିଶେଷ ଭାବର ଦ୍ୟୋତକ ବୋଲି ଭାବର ଉନ୍ନତି ସଙ୍ଗେ ସଙ୍ଗେ ସେମାନଙ୍କର ମଧ୍ୟ ଉନ୍ନତି ସାଧିତ ହୋଇଅଛି । ତୁମମାନଙ୍କ ପକ୍ଷରେ ଏହା ଆଶ୍ଚର୍ଯ୍ୟବୋଧ ହୋଇପାରେ ଯେ, ଦେବତା ବା ଈଶ୍ୱରଙ୍କର ପୁଣି କଅଣ ଉନ୍ନତି ହୁଏ ? ତୁମେମାନେ ଭାବ ଯେ ଈଶ୍ୱରଙ୍କର ଉନ୍ନତି ହୁଏ ନାହିଁ, ସେ ଅପରିବର୍ତ୍ତିନୀୟ । ଏଭଳିଭାବେ ବିଚାର କଲେ ଏହା ବି ତ କୁହାଯାଇପାରେ ଯେ ମନୁଷ୍ୟର ମଧ୍ୟ କେତେବେଳେ ହେଲେ ଉନ୍ନତି ହୋଇ ନାହିଁ । ଆମେମାନେ ପରେ ଦେଖିବାକୁ ପାଇବା ଯେ, ଏହି ମନୁଷ୍ୟ ଭିତରେ ଯେଉଁ ପ୍ରକୃତ ମନୁଷ୍ୟ ରହିଛି, ସେ ଅଚଳ, ଅପରିଣାମୀ, ଶୁଦ୍ଧ ଓ ନିତ୍ୟମୁକ୍ତ । ସେହି ମନୁଷ୍ୟ ଯେପରି ପ୍ରକୃତ ମନୁଷ୍ୟର ଛାୟାମାତ୍ର, ସେହିଭଳି ଆମମାନଙ୍କର ଈଶ୍ୱରଧାରଣା ଆମମାନଙ୍କ ମନର ସୃଷ୍ଟିମାତ୍ର —ଏଗୁଡ଼ିକ ସେହି ପ୍ରକୃତ ଈଶ୍ୱରଙ୍କର ଆଂଶିକ ପ୍ରକାଶ, ଆଭାସ ମାତ୍ର । ଏହିସବୁ ଆଂଶିକ ପ୍ରକାଶର ପଶ୍ଚାତ୍ତରେ ପ୍ରକୃତ ଈଶ୍ୱର ରହିଛନ୍ତି, ସେ ନିତ୍ୟଶୁଦ୍ଧ, ଅପରିଣାମୀ; କିନ୍ତୁ ଏହିସବୁ ଆଂଶିକ ପ୍ରକାଶ ସର୍ବଦା ହିଁ ପରିଣାମଶୀଳ—ଏଗୁଡ଼ିକ ଭିନ୍ନଧିସ୍ଥ ସତ୍ୟର କ୍ରମାଭିବ୍ୟକ୍ତି । ଯେତେବେଳେ ଏଗୁଡ଼ିକ ସେହି ସତ୍ୟକୁ ଅଧିକ ପରିମାଣରେ ପ୍ରକାଶ କରେ, ସେତେବେଳେ ଏହାକୁ ଉନ୍ନତି କୁହାଯାଏ; ଆଉ ଯେତେବେଳେ ଏହା ଏହି ସତ୍ୟର ଅଧିକାଂଶକୁ ଆବୃତ ବା ଅପ୍ରକାଶିତ କରି ରଖେ, ସେତେ-ବେଳେ ଏହାକୁ ଅବନତି କୁହାଯାଏ । ଏହିଭଳି ଆମମାନଙ୍କର ଯେପରି ଉନ୍ନତି ହୁଏ, ଦେବତାମାନଙ୍କର ମଧ୍ୟ ସେହିଭଳି ଉନ୍ନତି ହୋଇଥାଏ । ମୋଟାମୋଟି କହିବାକୁ ଗଲେ, ଆମମାନଙ୍କର ଯେପରି ଉନ୍ନତି ହୁଏ, ଆମମାନଙ୍କର ସ୍ୱରୂପର ଯେପରି ପ୍ରକାଶ ଘଟେ, ସେହିଭଳି ଦେବତାମାନେ ମଧ୍ୟ ସେମାନଙ୍କର ସ୍ୱରୂପ ପ୍ରକାଶ କରିଥାଆନ୍ତି ।

ବର୍ତ୍ତମାନ ଆମେମାନେ ମାୟାବାଦ ବୁଝିବାକୁ ସମର୍ଥ ହୋଇପାରିବା ।

ଜଗତର ସବୁ ଧର୍ମ ଏହି ଗୋଟିଏ ପ୍ରଶ୍ନ ଉତ୍ଥାପିତ କରିଛି, ଜଗତରେ ଏହି ଅସାମଞ୍ଜସ୍ୟ କାହିଁକି ? ଜଗତରେ ଏହି ଅଶୁଭ କାହିଁକି ? ଧର୍ମଭାବର ପ୍ରଥମ ଉନ୍ମେଷ କାଳରେ ଆମେମାନେ ଏହି ପ୍ରଶ୍ନ ଉଠିବା ଜାଣିନାହୁଁ ; ତାହାର କାରଣ, ଆଦିମ ମନୁଷ୍ୟ ପକ୍ଷରେ ଜଗତ ଅସାମଞ୍ଜସ୍ୟପୂର୍ଣ୍ଣ ବୋଧ ହୋଇନାହିଁ । ସେମାନଙ୍କ ଚତୁର୍ଦ୍ଦିଗରେ କୌଣସି ଅସାମଞ୍ଜସ୍ୟ ନ ଥିଲା, କୌଣସି ପ୍ରକାର ମତବିରୋଧ ନ ଥିଲା, ଭଲମନ୍ଦର କୌଣସି ପ୍ରତିଦ୍ୱନ୍ଦ୍ୱିତା ନ ଥିଲା । ସେମାନଙ୍କ ହୃଦୟରେ କେବଳ ଦୁଇଟି ଜିନିଷର ସଂଗ୍ରାମ ଲାଗିରହିଥିଲା । ଗୋଟିଏ କହୁଥିଲା, ଏହା କର; ଅନ୍ୟଟି ତାହା କରିବାକୁ ନିଷେଧ କରୁଥିଲା । ଆଦିମମାନବ ଆବେଗପ୍ରବଣ ଥିଲା । ତାହାର ମନରେ ଯାହା ଉଦିତ ହେଉଥିଲା, ତାହା ହିଁ ସେ କରୁଥିଲା । ସେ ନିଜର ଏହି ଭାବ ସମ୍ବନ୍ଧରେ ବିଚାର କରିବା ବା ଏହାକୁ ସଂଯମ କରିବାର ଚେଷ୍ଟା ଆଦୌ କରୁ ନ ଥିଲା । ଏସବୁ କଥା ଦେବତାମାନଙ୍କ ସମ୍ବନ୍ଧରେ ମଧ୍ୟ ତଦ୍ରୂପ । ଏମାନେ ମଧ୍ୟ ଆବେଗର ଅଧୀନ ଥିଲେ । ଇନ୍ଦ୍ର ଆସିଲେ ଏବଂ ଦୈତ୍ୟବଳକୁ ଛିନ୍ନଭିନ୍ନ କରିଦେଲେ । ଜିହୋଭା କାହାପ୍ରତି ସନ୍ତୁଷ୍ଟ, କାହାପ୍ରତି ଅବା ରୁଷ୍ଟ ହେଲେ; କାହିଁକି ଏପରି ହେଲେ କେହି ତାହା ଜାଣେ ନାହିଁ, ସେ ବିଷୟ ମଧ୍ୟ ପଚାରେ ନାହିଁ । ଏହାର କାରଣ, ସେତେବେଳେ ଲୋକଙ୍କର ଅନୁସନ୍ଧାନପ୍ରବୃତ୍ତି ଜାଗରିତ ହୋଇ ନ ଥିଲା । ସୁତରାଂ ସେ ଯାହା କଲେ ତାହା ହିଁ ଭଲ । ସେତେବେଳେ ଭଲମନ୍ଦର କୌଣସି ଧାରଣା ନ ଥିଲା । ଆମେ ଯାହାକୁ ମନ୍ଦ କହୁ, ଦେବତାମାନେ ସେହିଭଳି ଅନେକ କାର୍ଯ୍ୟ କରିଛନ୍ତି; ବେଦରେ ଦେଖିବାକୁ ପାଉ, ଇନ୍ଦ୍ର ଓ ଅନ୍ୟାନ୍ୟ ଦେବତାମାନେ ଅନେକ ମନ୍ଦ କାର୍ଯ୍ୟ କରିଛନ୍ତି; କିନ୍ତୁ ଇନ୍ଦ୍ରଙ୍କ ଉପାସକମାନଙ୍କ ଦୃଷ୍ଟିରେ ପାପ ବା ଅସତ୍ କାର୍ଯ୍ୟ କିଛି ନ ଥିଲା, ସୁତରାଂ ସେମାନେ ସେ ସମ୍ବନ୍ଧରେ କୌଣସି ପ୍ରଶ୍ନ କରୁ ନ ଥିଲେ ।

ନୈତିକଭାବର ଉନ୍ନତି ସହିତ ମନୁଷ୍ୟ ମନରେ ଏକ ଦ୍ୱନ୍ଦ୍ୱ ଜାଗିଲା । ମନୁଷ୍ୟ ଭିତରେ ଯେପରି ଗୋଟିଏ ନୂତନ ଇନ୍ଦ୍ରିୟର ଆବିର୍ଭାବ ହେଲା । ଭିନ୍ନଭିନ୍ନ ଭାଷା, ଭିନ୍ନ ଭିନ୍ନ ଜାତି ଏହାକୁ ବିଭିନ୍ନ ନାମରେ ଅଭିହିତ କରିଛନ୍ତି; କେହି କେହି କହନ୍ତି, ଏହା ଈଶ୍ୱରଙ୍କର ବାଣୀ; କେହି କେହି କହନ୍ତି, ଏହା ପୂର୍ବ ଶିକ୍ଷାର ଫଳ; ଯାହା ହେଉ ନା କାହିଁକି, ଏହା ପ୍ରବୃତ୍ତିଦମନକାରୀ ଶକ୍ତିରୂପେ କାର୍ଯ୍ୟ କରିଥିଲା । ଆମମାନଙ୍କ ମନର ଗୋଟିଏ ପ୍ରବୃତ୍ତି କହେ, ଏହି କାର୍ଯ୍ୟ କର; ଆଉ ଗୋଟିଏ କହେ କର ନାହିଁ । ଆମମାନଙ୍କ ଭିତରେ କେତେଗୁଡ଼ିଏ ପ୍ରବୃତ୍ତି ଅଛି, ସେଗୁଡ଼ିକ ଇନ୍ଦ୍ରିୟମାନଙ୍କ ମଧ୍ୟ ଦେଇ ବାହାରକୁ ଯିବାର ଚେଷ୍ଟାକରୁଛନ୍ତି, ଆଉ ସେମାନଙ୍କ ପଶ୍ଚାତ୍‌ରେ, ଯେତେ କ୍ଷୀଣ ହେଉ ନା କାହିଁକି, ଆଉ ଗୋଟିଏ ସ୍ୱର କହେ ବାହାରକୁ ଯାଅ ନାହିଁ । ଏହି ଦୁଇଟି ଭାବ ଦୁଇଟି ସୁନ୍ଦର ସଂସ୍କୃତ ଶବ୍ଦଦ୍ୱାରା ବ୍ୟକ୍ତ ହୋଇଛି—ପ୍ରବୃତ୍ତି ଓ ନିବୃତ୍ତି । ପ୍ରବୃତ୍ତି ହେଉଛି ଆମମାନଙ୍କର ସବୁ କର୍ମର ମୂଳ । ନିବୃତ୍ତିରୁ ଧର୍ମର ଉଦ୍‌ଭବ । ଏହା 'କର ନାହିଁ'—ଏହିଠାରୁ ଧର୍ମ ଆରମ୍ଭ ହୁଏ, ଆଧ୍ୟାତ୍ମିକତା

ମଧ୍ୟ ଏହି 'କର ନାହିଁ'—ଠାରୁ ଆରମ୍ଭ ହୋଇଥାଏ । ଏହି 'କର ନାହିଁ' ଯେଉଁଠାରେ ନାହିଁ, ସେଠାରେ ଧର୍ମର ଆରମ୍ଭ ମଧ୍ୟ ହୋଇନାହିଁ, ଏ କଥା ବୁଝିବାକୁ ହେବ । 'କର ନାହିଁ'—ଏହି ନିବୃତ୍ତି-ଭାବରୁ ହିଁ ମନୁଷ୍ୟର ଧାରଣା, ତାହାର ଯୁଦ୍ଧଶୀଳ ପାଶବ ପ୍ରକୃତି ଦେବତାମାନଙ୍କର ଉପାସନା ସତ୍ତ୍ୱେ, ଉନ୍ନତ ହେବାକୁ ଲାଗିଲା ।

ବର୍ତ୍ତମାନ ମନୁଷ୍ୟହୃଦୟରେ ଟିକିଏ ପ୍ରେମ ପ୍ରବେଶ କଲା । ଅବଶ୍ୟ ଏହି ଗୁଣଟି ଖୁବ୍ ଅଳ୍ପ ପରିମାଣରେ ଆସିଥିଲା ଏବଂ ବର୍ତ୍ତମାନ ସୁଦ୍ଧା ଯେ ତାହା ଖୁବ୍ ବେଶୀ, ତାହା ମଧ୍ୟ ନୁହେଁ । ପ୍ରଥମେ ଏହା ଜାତି ଭିତରେ ସୀମାବଦ୍ଧ ଥିଲା; ଏହି ଦେବଗଣ କେବଳ ସେମାନଙ୍କର ସମ୍ପ୍ରଦାୟକୁ ହିଁ ଭଲ ପାଉଥିଲେ । ପ୍ରତ୍ୟେକ ଦେବତା ହିଁ ଜାତୀୟ ଦେବତାରୂପେ ଥିଲେ, କେବଳ ସେହି ବିଶେଷ ଜାତିର ରକ୍ଷକ ମାତ୍ର ଥିଲେ । ଆଉ ଅନେକ ସମୟରେ ଏହି ଜାତିର ଅନ୍ତର୍ଗତ ଲୋକେ ନିଜକୁ ଏହି ଦେବତାଙ୍କ ବଂଶଧର ବୋଲି ବିବେଚନା କରିବାକୁ ଲାଗିଲେ, ଯେଉଁଭଳି ଭିନ୍ନ ଭିନ୍ନ ଦେଶର ବିଭିନ୍ନ ବଂଶୀୟ ଲୋକେ ନିଜ ନିଜକୁ ସେମାନଙ୍କର ଏକ ସାଧାରଣ ଗୋଷ୍ଠୀପତିର ବଂଶଧର ବୋଲି ବିବେଚନାକରିଥାନ୍ତି । ପ୍ରାଚୀନ କାଳରେ କେତେଗୁଡ଼ିଏ ଜାତି ଥିଲେ, ବର୍ତ୍ତମାନ ମଧ୍ୟ ଅଛନ୍ତି, ଯେଉଁମାନେ ନିଜକୁ ସୂର୍ଯ୍ୟ ଓ ଚନ୍ଦ୍ରଙ୍କ ବଂଶଧର ବୋଲି ବିବେଚନା କରନ୍ତି । ପ୍ରାଚୀନ ସଂସ୍କୃତ ଗ୍ରନ୍ଥଗୁଡ଼ିକରେ ଆପଣମାନେ ସୂର୍ଯ୍ୟବଂଶର ବଡ଼ ବଡ଼ ବୀର ସମ୍ରାଟଗଣଙ୍କ କଥା ପାଠ କରିଛନ୍ତି । ଏମାନେ ପ୍ରଥମେ ଚନ୍ଦ୍ର-ସୂର୍ଯ୍ୟଙ୍କର ଉପାସକ ଥିଲେ । କ୍ରମଶଃ ନିଜ ନିଜକୁ ଏହି ଚନ୍ଦ୍ର ସୂର୍ଯ୍ୟଙ୍କର ବଂଶଧର ବିବେଚନା କରିବାରେ ଲାଗିଲେ । ସୁତରାଂ ଯେତେବେଳେ ଏହି ଜାତୀୟଭାବ ଆସିବାରେ ଲାଗିଲା, ସେତେବେଳେ ଟିକିଏ ଭଲପାଇବା ମଧ୍ୟ ଆସିଲା, ପରସ୍ପର ପ୍ରତି ଟିକିଏ କର୍ତ୍ତବ୍ୟର ଭାବ ଆସିଲା, ଟିକିଏ ସାମାଜିକ ଶୃଙ୍ଖଳାର ଉତ୍ପତ୍ତି ହେଲା; ପୁଣି ଏ ଭାବ ମଧ୍ୟ ଆସିବାକୁ ଲାଗିଲା, ଆମେ ପରସ୍ପରର ଦୋଷ ସହ୍ୟ ଓ କ୍ଷମା ନ କରି, କିଭଳି ଏକତ୍ର ବାସ କରିପାରିବା ? ଅନ୍ତତଃ କୌଣସି ନା କୌଣସି ସମୟରେ ମନର ପ୍ରବୃତ୍ତିକୁ ସଂଯମ ନ କରି ମନୁଷ୍ୟ ଅନ୍ୟମାନଙ୍କ ସହିତ ଏପରି କି ଅନ୍ୟ ଜଣକ ସହିତ ବାସ କରିପାରେ ? ଏହା ଅସମ୍ଭବ । ଏହିରୂପେ ହିଁ ସଂଯମର ଭାବ ଆସେ । ଏହି ସଂଯମର ଭାବ ଉପରେ ସମୁଦାୟ ସମାଜ ପ୍ରତିଷ୍ଠିତ । ପୁଣି ଆମେମାନେ ଜାଣୁ, ଯେଉଁ ନର ବା ନାରୀ ଏହି ସହନଶୀଳତା ବା କ୍ଷମାରୂପକ ମହତ୍ତ୍ୱ ଶିକ୍ଷା ଲାଭ କରି ନାହାନ୍ତି, ସେ ଅତି କଷ୍ଟକର ଜୀବନ ଯାପନ କରନ୍ତି ।

ଅତଏବ ଯେତେବେଳେ ଏହିଭଳି ଧର୍ମର ଭାବ ଆସିଲା, ସେତେବେଳେ ମନୁଷ୍ୟ ମନରେ ଉଚ୍ଚତର, ଅପେକ୍ଷାକୃତ ଅଧିକ ନୀତିସଙ୍ଗତ ଭାବର ଆଭାସ ଆସିଲା । ସେତେବେଳେ ଚଞ୍ଚଳ, ସମରପରାୟଣ, ମଦ୍ୟପାୟୀ, ଗୋମାଂସଭକ୍ଷୀ ଦେବଗଣଙ୍କୁ ଯେଉଁମାନଙ୍କର ଦଗ୍ଧ ମାଂସଗନ୍ଧରେ ଏବଂ ତୀବ୍ର ସୁରାର ଆହୁତିରେ ହିଁ ପରମ ଆନନ୍ଦ

ଥିଲା—ତାଙ୍କୁ କେମିତ ଅସାମଞ୍ଜସ୍ୟ ବୋଧ ହେବାକୁ ଲାଗିଲା । ଦୃଷ୍ଟାନ୍ତସ୍ୱରୂପ— ବେଦରେ ବର୍ଣ୍ଣିତ ଅଛି ଯେ, ସମୟେ ସମୟେ ଇନ୍ଦ୍ର ହୁଏତ ଏତେ ମଦ୍ୟପାନ କରୁଥିଲେ ଯେ ସେ ମାଟିରେ ପଡ଼ି ଅବୋଧ ଭାବରେ କହିବାକୁ ଆରମ୍ଭ କରୁଥିଲେ । ଏଭଳି ଦେବତାମାନଙ୍କ ଉପରେ ଲୋକଙ୍କର ବିଶ୍ୱାସ-ସ୍ଥାପନ ଅସମ୍ଭବ ହୋଇ ଉଠିଲା । ତା'ପରେ ସମସ୍ତଙ୍କର ଅଭିସନ୍ଧି ଅନ୍ୱେଷିତ ଓ ଜିଜ୍ଞାସିତ ହେବାକୁ ଆରମ୍ଭ କଲା, ଏପରିକି ଦେବତାମାନଙ୍କ କାର୍ଯ୍ୟର ଅଭିସନ୍ଧି ମଧ୍ୟ ଜିଜ୍ଞାସିତ ହେବାକୁ ଲାଗିଲା । ଅମୁକ ଦେବତାର ଅମୁକ କାର୍ଯ୍ୟର ହେତୁ କ'ଣ ? କୌଣସି ହେତୁ ମିଳିଲା ନାହିଁ । ସୁତରାଂ ଲୋକେ ଏହିସବୁ ଦେବତାଙ୍କୁ ପରିତ୍ୟାଗ କଲେ ଏବଂ ଦେବତା ସମ୍ବନ୍ଧରେ ଆହୁରି ଉଚ୍ଚତର ଧାରଣା କରିବାକୁ ଲାଗିଲେ । ଦେବତାମାନଙ୍କ କାର୍ଯ୍ୟାବଳୀ ମଧ୍ୟରେ ଯେଉଁଗୁଡ଼ିକ ଭଲ, ଯେଉଁଗୁଡ଼ିକ ସେମାନେ ବୁଝିପାରିଲେ, ସେଗୁଡ଼ିକୁ ସବୁ ଏକତ୍ର କଲେ ଏବଂ ଯେଉଁଗୁଡ଼ିକ ବୁଝିପାରିଲେ ନାହିଁ ବା ଯେଉଁଗୁଡ଼ିକ ସେମାନଙ୍କୁ ଭଲ ବୋଲି ବୋଧ ହେଲା ନାହିଁ, ସେଗୁଡ଼ିକୁ ମଧ୍ୟ ପୃଥକ୍ କରିଦେଲେ । ଏହି ଭଲଗୁଡ଼ିକର ସମଷ୍ଟିକୁ ସେମାନେ 'ଦେବଦେବ' ଆଖ୍ୟା ପ୍ରଦାନ କଲେ । ସେମାନଙ୍କ ଉପାସ୍ୟ ଦେବତା ସେତେବେଳେ କେବଳ ଶକ୍ତିର ପରିଚାୟକ ହୋଇ ରହିଲେ ନାହିଁ, ଶକ୍ତିଠାରୁ ଆହୁରି କିଛି ଅଧିକ ସେମାନଙ୍କ ପକ୍ଷେ ଆବଶ୍ୟକ ହେଲା । ସେମାନେ ନୀତିପରାୟଣ ଦେବତା ହେଲେ, ସେମାନେ ମନୁଷ୍ୟକୁ ଭଲ ପାଇବାକୁ ଲାଗିଲେ । ମନୁଷ୍ୟର ହିତ କରିବାରେ ଲାଗିଲେ; କିନ୍ତୁ ଦେବତାର ଧାରଣା ସେତେବେଳେ ମଧ୍ୟ ଅକ୍ଷୁଣ୍ଣ ରହିଲା । ସେମାନେ ତାଙ୍କର ନୀତିପରାୟଣତା ଓ ଶକ୍ତି ବୃଦ୍ଧି କଲେ ମାତ୍ର । ଜଗତରେ ସେମାନେ ସର୍ବଶ୍ରେଷ୍ଠ ନୀତିପରାୟଣ ପୁରୁଷ ଏବଂ ଏକପ୍ରକାର ସର୍ବଶକ୍ତିମାନ୍ ମଧ୍ୟ ହେଲେ ।

କିନ୍ତୁ ଜୋଡ଼ାତାଳି ଦେଇ କୌଣସି କଥା ବେଶୀ ଦିନ ଚଳେ ନାହିଁ । ଯେମିତ ଜଗଦ୍ରହସ୍ୟର ସୂକ୍ଷ୍ମାନୁସୂକ୍ଷ୍ମ ବ୍ୟାଖ୍ୟା ହେବାକୁ ଲାଗିଲା, ସେମିତ ଏ ରହସ୍ୟ ଯେପରି ଆହୁରି ରହସ୍ୟମୟ ହେବାକୁ ଲାଗିଲା । ଦେବତା ବା ଈଶ୍ୱରଙ୍କ ଗୁଣ ଯେପରି ବର୍ଦ୍ଧିତ ହେବାକୁ ଲାଗିଲା, ସନ୍ଦେହ ମଧ୍ୟ ତଦପେକ୍ଷା ବହୁ ଗୁଣ ବୃଦ୍ଧି ପାଇଲା । ଲୋକଙ୍କର ଯେତେବେଳେ ଜିହୋଭା ନାମକ ନିଷ୍ଠୁର ଈଶ୍ୱରଙ୍କର ଧାରଣା ଥିଲା, ସେତେବେଳେ ସେହି ଈଶ୍ୱରଙ୍କ ସହିତ ଜଗତର ସାମଞ୍ଜସ୍ୟ ବିଧାନ କରିବାରେ ଯେଉଁଭଳି କଷ୍ଟ ପାଇବାକୁ ହେଉଥିଲା, ତାହା ଅପେକ୍ଷା ବର୍ତ୍ତମାନ ଯେଉଁଭଳି ଈଶ୍ୱରସମ୍ପର୍କୀୟ ଧାରଣା ଉପସ୍ଥିତ ହେଲା, ତାହା ସହିତ ଜଗତର ସାମଞ୍ଜସ୍ୟସାଧନ କଠିନତର ହୋଇପଡ଼ିଲା । ସର୍ବଶକ୍ତିମାନ୍ ଏବଂ ପ୍ରେମମୟ ଈଶ୍ୱରଙ୍କ ରାଜ୍ୟରେ ଏଭଳି ପୈଶାଚିକ ଘଟଣା କାହିଁକି ଘଟେ ? କାହିଁକି ସୁଖ ଅପେକ୍ଷା ଦୁଃଖ ଏତେ ବେଶୀ ? ସାଧୁଭାବ ଯେତେ ଅଛି, ତାହା ଅପେକ୍ଷା ଅସାଧୁଭାବ ଏତେ ବେଶୀ କାହିଁକି ? କିଛି ଖରାପ ଦେଖିବୁ ନାହିଁ ବୋଲି ଆମମାନେ ଆଖି ବୁଜି ରହିପାରୁ; କିନ୍ତୁ

ଏହାଦ୍ୱାରା ଜାଗତିକ ବୀଭତ୍ସତାର କିଛି ପରିବର୍ତ୍ତନ ହୁଏ ନାହିଁ । ଖୁବ୍ ଭଲ କହିଲେ କହିବାକୁ ହେବ, ଏହି ଜଗତ ଟାଣ୍ଟାଲସଙ୍କର* ନରକସ୍ୱରୂପ; ତାହାଠାରୁ ଏହା କୌଣସି ଅଂଶରେ ଉତ୍କୃଷ୍ଟ ନୁହେଁ । ପ୍ରବଳ ପ୍ରବୃତ୍ତିସବୁ ରହିଛି, ଇନ୍ଦ୍ରିୟ ଚରିତାର୍ଥ କରିବାର ପ୍ରବଳ ବାସନା, ପୂରଣ କରିବାର କିନ୍ତୁ ଉପାୟ ନାହିଁ । ଆମ ଇଚ୍ଛା ବିରୋଧରେ ଆମ ହୃଦୟରେ ଏକ ତରଙ୍ଗ ଉଠିଲା—ତାହା ଆମକୁ କୌଣସି କାର୍ଯ୍ୟରେ ଅଗ୍ରସର କଲା, ଆଉ ଆମେ ପାଦେ ଯେମିତି ଅଗ୍ରସର ହୋଇଛୁ, ସେମିତି ଧକ୍କା ଆସିଲା । ଆମେ ସମସ୍ତେ ଯେପରି ଟାଣ୍ଟାଲସ୍ଙ୍କର ଏହି ଜଗତ୍ରେ ଅଭିଶପ୍ତ ଜୀବନ ଧାରଣ କରିବା ପାଇଁ ବାଧ୍ୟ ।

ଅତୀନ୍ଦ୍ରିୟ ଆଦର୍ଶ ଆମମାନଙ୍କର ମସ୍ତିଷ୍କକୁ ଆସୁଅଛି; କିନ୍ତୁ ଆମେମାନେ ଯଦି ସେଗୁଡ଼ିକୁ କାର୍ଯ୍ୟରେ ପରିଣତ କରିବାକୁ ଚେଷ୍ଟା କରୁ, ଆମେ ଦେଖିପାରିବା, ସେଗୁଡ଼ିକୁ କାର୍ଯ୍ୟରେ ପରିଣତ କରାଯାଇପାରେ ନାହିଁ । ବରଂ ଆମେମାନେ ଚତୁର୍ଦ୍ଦିଗସ୍ଥ ଅବସ୍ଥାଚକ୍ରରେ ପେଷି ହୋଇ ଚୂର୍ଣ୍ଣ ବିଚୂର୍ଣ୍ଣ ହୋଇଯାଇ ପରମାଣୁରେ ପରିଣତ ହେଉ । ପୁଣି ଯଦି ଆମେମାନେ ଏହି ଆଦର୍ଶ ନିମିତ୍ତ ଚେଷ୍ଟା ପରିତ୍ୟାଗ କରି କେବଳ ସାଂସାରିକ ଭାବରେ ରହିବାକୁ ଚାହୁଁ, ତାହାହେଲେ ଆମମାନଙ୍କୁ ପଶୁଜୀବନ ଯାପନ କରିବାକୁ ହେବ—ଆହୁରି ଆମେ ଅବନତ ହୋଇଯାଉ । କେଉଁଠି ହେଲେ ସୁଖ ନାହିଁ । ଯେଉଁମାନେ ଜନ୍ମ ଗ୍ରହଣ କରି ଜାଗତିକ ସୁଖରେ ସନ୍ତୁଷ୍ଟ ରହିବାକୁ ଚାହାନ୍ତି, ସେମାନଙ୍କର ମଧ୍ୟ ଅଦୃଷ୍ଟରେ ଦୁଃଖ । ଯେଉଁମାନେ ପୁଣି ସତ୍ୟ ପାଇଁ—ଏହି ପାଶବ ଜୀବନଠାରୁ କିଞ୍ଚିତ୍ ଉନ୍ନତ ଜୀବନ ନିମିତ୍ତ ଅଗ୍ରସର ହୁଅନ୍ତି, ସେମାନଙ୍କର ଆହୁରି ସହସ୍ର ଗୁଣ ଦୁଃଖ । ଏହା ବାସ୍ତବ ଘଟଣା, ଏହାର ଆଉ କିଛି ବ୍ୟାଖ୍ୟା ନାହିଁ । ଏହାର କୌଣସି ବ୍ୟାଖ୍ୟା ହୋଇପାରେ ନାହିଁ; କିନ୍ତୁ ବେଦାନ୍ତ ବାହାରିକୁ ଯିବାର ପଥ ଦେଖାଇଦିଏ । ମତେ ଏପରି ଅନେକ କଥା କହିବାକୁ ହେବ, ଯେଉଁଥିରେ ତୁମେମାନେ ଭୟ ପାଇବ; କିନ୍ତୁ ମୁଁ ଯାହା କହୁଛି, ତାହା ସ୍ମରଣ ରଖ, ଏହା ଭଲକରି ହଜମ କର, ଦିବାରାତ୍ର ଏହା ସମ୍ବନ୍ଧରେ ଚିନ୍ତା

* ଗ୍ରୀକ୍ମାନଙ୍କ ମଧ୍ୟରେ ଗୋଟିଏ ପୌରାଣିକ ଗଳ୍ପ ଅଛି । ସେଥିରେ ବର୍ଣ୍ଣିତ ଅଛି ଯେ, ଟାଣ୍ଟାଲସ ନାମକ ଜଣେ ରାଜା ଅମୃତ ଚୋରି ଅପରାଧରେ ପାତାଳର ଏକ ହ୍ରଦରେ ନିକ୍ଷିପ୍ତ ହୋଇଥିଲେ । ଏହି ହ୍ରଦର ଜଳ ତାଙ୍କର ଓଷ୍ଠ ପର୍ଯ୍ୟନ୍ତ ଆସେ ଏବଂ ଯେତେବେଳେ ସେ ତୃଷ୍ଣା ମେଣ୍ଟାଇବା ନିମିତ୍ତ ଜଳ ପାନ କରିବାକୁ ଉଦ୍ୟତ ହୁଅନ୍ତି, ସଙ୍ଗେ ସଙ୍ଗେ ଜଳ ତଳକୁ ଚାଲିଯାଏ । ତାଙ୍କର ମୁଣ୍ଡ ଉପରେ ନାନାବିଧ ଫଳ ଝୁଲୁଥାଏ ଏବଂ ସେ ଯେତେବେଳେ କ୍ଷୁଧା ନିବାରଣ ପାଇଁ ଏହି ଫଳ ଆଣିବାକୁ ହାତ ବଢ଼ାନ୍ତି, ସଙ୍ଗେ ସଙ୍ଗେ ଏହା ଘୁଞ୍ଚିଯାଏ । ଏହା ଅତୃପ୍ତ ଓ ଅପୂରଣୀୟ ବାସନାର ଦୃଷ୍ଟାନ୍ତ ।

କର । ତାହାହେଲେ ଏହା ତୁମମାନଙ୍କ ଅନ୍ତରରେ ପ୍ରବେଶ କରିବ, ଏହା ତୁମ-ମାନଙ୍କୁ ଉନ୍ନତ କରିବ ଏବଂ ତୁମମାନଙ୍କୁ ସତ୍ୟ ବୁଝିବାରେ ଏବଂ ସତ୍ୟରେ ବାସ କରିବାରେ ସମର୍ଥ କରିବ ।

ଏହି ଜଗତ୍ ଯେ ଟାଣ୍ଟାଲସଙ୍କର ନରକସ୍ୱରୂପ, ଏହା ବାସ୍ତବିକ ସତ୍ୟ କଥା । ଆମେ ଏହି ଜଗତ୍ ସମ୍ବନ୍ଧରେ କିଛି ଜାଣିପାରୁ ନାହିଁ; ପୁଣି ଆମେ ଯେ ଜାଣୁ ନାହିଁ, ଏ କଥା ମଧ୍ୟ କହିହେବ ନାହିଁ । ଯେତେବେଳେ ମୁଁ ମନେକରେ—ମୁଁ ଜାଣି ନାହିଁ, ସେତେବେଳେ ମୁଁ କହିପାରିବି ନାହିଁ ଯେ ଏହି ଶୃଙ୍ଖଳର ଅସ୍ତିତ୍ୱ ଅଛି । ତାହା ମୋର ମସ୍ତିଷ୍କର ସମ୍ପୂର୍ଣ୍ଣ ଭ୍ରମ ହୋଇପାରେ । ମୁଁ ହୁଏତ କେବଳ ସ୍ୱପ୍ନ ଦେଖୁଛି—ମୁଁ ତୁମମାନଙ୍କ ସହିତ କଥା କହୁଛି ପୁଣି ତୁମେମାନେ ମୋ କଥା ଶୁଣୁଛ । କେହି ହେଲେ ଏହାର ବିପରୀତ ପ୍ରମାଣ କରିପାରନ୍ତି ନାହିଁ । 'ମୋର ମସ୍ତିଷ୍କ', ଏହା ମଧ୍ୟ ଗୋଟିଏ ସ୍ୱପ୍ନ ହୋଇପାରେ, ଆଉ ବାସ୍ତବିକ୍ କେହି ନିଜର ମସ୍ତିଷ୍କକୁ କଦାପି ଦେଖି ନାହିଁ । ଆମେମାନେ ଏହାକୁ କେବଳ ମାନି ନେଇଛୁ ମାତ୍ର । ସବୁ ବିଷୟ ସେହିପରି । ମୋର ନିଜ ଶରୀରକୁ ମଧ୍ୟ ମୁଁ କେବଳ ମାନି ନେଇଛି । ପୁଣି ମୁଁ ଜାଣେ ନାହିଁ, ତାହା ମଧ୍ୟ କହିପାରିବି ନାହିଁ । ଜ୍ଞାନ ଓ ଅଜ୍ଞାନ ମଝିରେ ଏହି ଅବସ୍ଥାନ, ଏହି ରହସ୍ୟମୟ କୁହେଳିକା—ଏହି ସତ୍ୟ ମିଥ୍ୟାର ମିଶ୍ରଣ—କେଉଁଠି ମିଶିଛି, କିଏ ଜାଣେ ? ମୁଁ ସ୍ୱପ୍ନ ମଧ୍ୟରେ ବିଚରଣ କରୁଛି, ଅର୍ଦ୍ଧନିଦ୍ରିତ, ଅର୍ଦ୍ଧଜାଗ୍ରତ—ସାରା ଜୀବନ ଏକ କୁହେଳିକାରେ ଆବଦ୍ଧ—ଏହା ହିଁ ଆମମାନଙ୍କର ପ୍ରତ୍ୟେକଙ୍କର ଦଶା । ସବୁ ଇନ୍ଦ୍ରିୟଜ୍ଞାନର ଏହି ଦଶା । ସବୁ ଦର୍ଶନର, ସବୁ ଗର୍ବିତ ବିଜ୍ଞାନର, ସବୁ ପ୍ରକାର ଗର୍ବିତ ମାନବଜ୍ଞାନର ମଧ୍ୟ ଏହି ଦଶା—ଏହି ପରିଣାମ । ଏହା ହିଁ ବ୍ରହ୍ମାଣ୍ଡ—ଦୃଶ୍ୟଜଗତ୍ ।

ଭୂତ କହ, ଆତ୍ମା କହ, ମନ କହ, ଆଉ ଯାହା କହନା କାହିଁକି, ଯେ କୌଣସି ନାମ ଏହାକୁ ଦିଅନା କାହିଁକି, ସେହି ଗୋଟିଏ କଥା—ଆମେ କହିପାରୁ ନାହିଁ, ଏମାନଙ୍କର ଅସ୍ତିତ୍ୱ ଅଛି, କିମ୍ବା କହିପାରୁ ନାହିଁ ଯେ, ଏହାର ଅସ୍ତିତ୍ୱ ନାହିଁ । ଆମେମାନେ ଏମାନଙ୍କୁ ଏକ କହିପାରିବା ନାହିଁ, ପୁଣି ବହୁ ମଧ୍ୟ କହିପାରିବା ନାହିଁ । ଏହି ଆଲୁଅ ଅନ୍ଧାରର ଖେଳ—ବିଶୃଙ୍ଖଳ, ଅବିଚ୍ଛେଦ୍ୟ ଭାବ ସର୍ବଦା ରହିଛି । ବାସ୍ତବିକ ମନେହୁଏ ଅଥଚ ବାସ୍ତବିକ ନୁହେଁ, ଜାଗ୍ରତ ପୁଣି ଯେପରି ନିଦ୍ରିତ । ଏହା ପ୍ରକୃତ ଘଟଣା—ଏହାକୁ ହିଁ ମାୟା କୁହାଯାଏ । ଆମେମାନେ ଏହି ମାୟାରେ ଜନ୍ମିଛୁ, ଆମେ ଏଥିରେ ହିଁ ଜୀବିତ ରହିଛୁ, ଆମେ ଏଥିରେ ଚିନ୍ତା କରୁଛୁ । ଆମେ ଏଥିରେ ମଧ୍ୟ ସ୍ୱପ୍ନ ଦେଖୁଛୁ । ଆମେମାନେ ଏହି ମାୟାରେ ହିଁ ଦାର୍ଶନିକ, ଆମେ ମାୟାରେ ହିଁ ସାଧୁ; କେବଳ ତାହା ହିଁ ନୁହେଁ, ଆମେ ଏହି ମାୟାରେ ହିଁ କେତେବେଳେ ଦାନବ, ପୁଣି କେତେବେଳେ ଦେବତା ହେଉଛୁ । ଚିନ୍ତା-ରଥରେ ଆରୋହଣ କରି

ଯେତେ ଦୂର ଯାଅ, ତୁମ ଧାରଣାକୁ ଉଚ୍ଚରୁ ଉଚ୍ଚତର କର, ଏହାକୁ ଅନନ୍ତ ଅଥବା ଯେକୌଣସି ନାମ ଦେବାକୁ ଇଚ୍ଛା କର ଦିଅ, କିନ୍ତୁ ତାହା ମଧ୍ୟ ସେହି ମାୟା ଭିତରେ । ଏହାର ବ୍ୟତିକ୍ରମ ହୋଇପାରେ ନାହିଁ, ଆଉ ମନୁଷ୍ୟର ସମସ୍ତ ଜ୍ଞାନ କେବଳ ଏହି ମାୟାର ସାଧାରଣ ଭାବକୁ ଆବିଷ୍କାର କରିବା, ଏହାର ପ୍ରତୀୟମାନ ସ୍ୱରୂପ ଜାଣିବା । ଏହି ମାୟା ନାମରୂପର ହିଁ କାର୍ଯ୍ୟ । ଯେକୌଣସି ବସ୍ତୁର ଆକୃତି ଅଛି, ଯାହା କିଛି ତୁମ ମନ ମଧ୍ୟରେ କୌଣସି ପ୍ରକାର ଭାବର ଉଦ୍ଦୀପନା କରିଦିଏ, ତାହା ହିଁ ମାୟାର ଅନ୍ତର୍ଗତ । କାରଣ, ଯେପରି ଜର୍ମାନ ଦାର୍ଶନିକଗଣ କହନ୍ତି, ଯାହା କିଛି ଦେଶକାଳନିମିତ୍ତର ଅଧୀନ, ତାହା ହିଁ ମାୟାର ଅନ୍ତର୍ଗତ ।

ବର୍ତ୍ତମାନ ପୁଣି ସେହି ଈଶ୍ୱର ସମ୍ବନ୍ଧୀୟ ପ୍ରାଚୀନ ଧାରଣାର ବିଚାର କରିଯାଉ । ପୂର୍ବେ ସଂସାରର ଯେଉଁ ଅବସ୍ଥା ଚିତ୍ରିତ ହୋଇଛି ସେଥିରେ ଅନାୟାସରେ ଦେଖିବାକୁ ମିଳେ, ଜଣେ ଈଶ୍ୱର ଆମମାନଙ୍କୁ ଅନନ୍ତକାଳ ଧରି ଭଲପାଉଛନ୍ତି —ଜଣେ ଅନନ୍ତ ସର୍ବଶକ୍ତିମାନ୍ ଓ ନିଃସ୍ୱାର୍ଥ ପୁରୁଷ ଏହି ଜଗତ ଶାସନ କରୁଛନ୍ତି । ପୂର୍ବୋକ୍ତ ଏହି ଈଶ୍ୱର-ଧାରଣା ମନୁଷ୍ୟକୁ ସନ୍ତୁଷ୍ଟ କରିପାରିଲା ନାହିଁ । ତୁମର ଈଶ୍ୱର କ'ଣ ନ୍ୟାୟପର ଓ ଦୟାମୟ ? ଦାର୍ଶନିକ ପଚାରନ୍ତି, ସେ କ'ଣ ମନୁଷ୍ୟ-ରୂପୀ ଓ ପଶୁରୂପୀ ତାଙ୍କର ଲକ୍ଷ ଲକ୍ଷ ସନ୍ତାନଙ୍କର ବିନାଶ ଦେଖୁନାହାନ୍ତି ? କାରଣ ଏପରି କିଏ ଅଛି, ଯେ ମୁହୂର୍ତ୍ତିକ ପାଇଁ ସୁଦ୍ଧା ଅନ୍ୟକୁ ନ ମାରି ଜୀବନ ଧାରଣ କରିପାରେ ? ତୁମେ କ'ଣ ସହସ୍ର ସହସ୍ର ଜୀବନ ସଂହାର ନ କରି ଗୋଟିଏ ନିଃଶ୍ୱାସ ସୁଦ୍ଧା ଗ୍ରହଣ କରିପାରିବ ? ତୁମେ ବଞ୍ଚି ରହିଛ, ଲକ୍ଷ ଲକ୍ଷ ଜୀବ ମରୁଛନ୍ତି ବୋଲି । ତୁମ ଜୀବନର ପ୍ରତି ମୁହୂର୍ତ୍ତରେ ପ୍ରତ୍ୟେକ ନିଃଶ୍ୱାସରେ ଯାହା ତୁମେ ଗ୍ରହଣ କରୁଛ, ତାହା ସହସ୍ର ସହସ୍ର ଜୀବର ମୃତ୍ୟୁସ୍ୱରୂପ, ଆଉ ତୁମର ପ୍ରତ୍ୟେକ ଗତି ଲକ୍ଷ ଲକ୍ଷ ଜୀବର ମୃତ୍ୟୁସ୍ୱରୂପ । କାହିଁକି ସେମାନେ ମରିବେ ? ଏହା ସମ୍ବନ୍ଧରେ ଗୋଟିଏ ଅତି ପ୍ରାଚୀନ ଅଯୌକ୍ତିକ କଥା ପ୍ରଚଳିତ ଅଛି—'ଏମାନେ ତ ଅତି ନୀଚ ଜୀବ ।' ମନେକର ଯେପରି ତାହା ଠିକ୍—କିନ୍ତୁ ଏହା ଗୋଟିଏ ଅମୀମାଂସିତ ବିଷୟ । କିଏ କହିପାରେ, କୀଟ ମନୁଷ୍ୟଠାରୁ ଶ୍ରେଷ୍ଠ, କି ମନୁଷ୍ୟ କୀଟଠାରୁ ଶ୍ରେଷ୍ଠ ? କିଏ ପ୍ରମାଣ କରିପାରେ ଏଟା ଠିକ୍ କି ସେଟା ଠିକ୍ ? ସେ କଥା ଯାଉ, ଏମାନେ ଅତି ହୀନ ଜୀବ ବୋଲି ଧରିଲେ ସୁଦ୍ଧା ସେମାନେ ମରିବେ କାହିଁକି ? ଯଦି ସେମାନେ ହୀନ ଜୀବ ହୁଅନ୍ତି, ସେମାନଙ୍କ ବଞ୍ଚିବା ଆହୁରି ବେଶୀ ଦରକାର । କାହିଁକି ସେମାନେ ବଞ୍ଚିବେ ନାହିଁ ? ସେମାନଙ୍କ ଜୀବନ ଇନ୍ଦ୍ରିୟ ଭିତରେ ହିଁ ବେଶୀ ଆବଦ୍ଧ, ସୁତରାଂ ସେମାନେ ତୁମ ଆମ ଅପେକ୍ଷା ସହସ୍ର ଗୁଣ ସୁଖଦୁଃଖ ବୋଧ କରନ୍ତି । କୁକୁର ବ୍ୟାଘ୍ର ଯେଉଁଭଳି ସ୍ଫୂର୍ତ୍ତିର ସହିତ ଭୋଜନ କରନ୍ତି, କୌଣସି ମନୁଷ୍ୟ ସେହିଭଳି ସ୍ଫୂର୍ତ୍ତିର ସହିତ ଭୋଜନ କରିପାରେ ? ଏହାର କାରଣ, ଆମ-ମାନଙ୍କର ସମୁଦାୟ କାର୍ଯ୍ୟପ୍ରବୃତ୍ତି ଇନ୍ଦ୍ରିୟରେ ନୁହେଁ—ତାହା ଆମର ବୁଦ୍ଧିରେ ଓ

ଅମ୍ଭାରେ । କିନ୍ତୁ ପଶୁର ଇନ୍ଦ୍ରିୟରେ ହିଁ ପ୍ରାଣ ପଡ଼ି ରହିଛି, ସେ ଇନ୍ଦ୍ରିୟସୁଖ-ନିମିତ୍ତ ଉନ୍ମତ୍ତ ହୁଏ । ସେମାନେ ଯେତେ ଆନନ୍ଦର ସହିତ ଇନ୍ଦ୍ରିୟସୁଖ ଭୋଗ କରିବେ, ଆମେ ମନୁଷ୍ୟମାନେ ତାହା କଳ୍ପନା କରିପାରୁ ନାହିଁ ଏବଂ ଏହି ସୁଖ ଯେତିକି, ଦୁଃଖ ମଧ୍ୟ ତାହାର ସମପରିମାଣ ।

ଯେତିକି ସୁଖ, ସେତିକି ଦୁଃଖ । ଯଦି ମନୁଷ୍ୟେତର ପ୍ରାଣୀମାନେ ଏତେ ତୀବ୍ରଭାବେ ସୁଖ ଅନୁଭବ କରୁଛନ୍ତି, ତେବେ ଏହା ମଧ୍ୟ ସତ୍ୟ ଯେ ସେମାନଙ୍କର ଦୁଃଖବୋଧ ମଧ୍ୟ ସେହିଭଳି ଭାବରେ ତୀବ୍ର—ମନୁଷ୍ୟ ଅପେକ୍ଷା ସହସ୍ରଗୁଣରେ ତୀବ୍ରତର—ତଥାପି ସେମାନଙ୍କୁ ମରିବାକୁ ହେବ । ତାହାହେଲେ ଏହା ହିଁ ସାବ୍ୟସ୍ତ ହେଲା ଯେ, ମନୁଷ୍ୟ ମରଣରେ ଯେତେ କଷ୍ଟ ଅନୁଭବ କରିବ, ଅନ୍ୟ ପ୍ରାଣୀମାନେ ତାହାର ଶହେ ଗୁଣ ଭୋଗ କରିବେ; ତଥାପି ଆମମାନଙ୍କୁ ସେମାନଙ୍କ କଷ୍ଟ ବିଷୟ ନ ଭାବି ସେମାନଙ୍କୁ ମାରିବାକୁ ହୁଏ । ଏହା ହିଁ ମାୟା । ପୁଣି ଯଦି ଆମେମାନେ ମନେକରୁ, ଜଣେ ସଗୁଣ ଈଶ୍ୱର ଅଛନ୍ତି, ଯେ ଠିକ୍ ମନୁଷ୍ୟ ଭଳି, ଯେ ସବୁ ସୃଷ୍ଟି କରିଛନ୍ତି, ତାହାହେଲେ ଏହି ଯେଉଁସବୁ ବ୍ୟାଖ୍ୟା ମତ ପ୍ରଭୃତି, ଯାହାକୁ କୁହାଯାଏ ମନ୍ଦ ଭିତରେ ଭଲ ହୋଇଛି, ତାହା ପର୍ଯ୍ୟାପ୍ତ ହୁଏ ନାହିଁ । ହେଉ ପଛେ ଶତ ଶତ ସହସ୍ର ସହସ୍ର ଉପକାର—ମନ୍ଦର ଭିତର ଦେଇ ଏହା କାହିଁକି ଆସିବ ? ଏହି ସିଦ୍ଧାନ୍ତ ଅନୁସାରେ ତେବେ ମୁଁ ମଧ୍ୟ ନିଜେ ପଞ୍ଚେନ୍ଦ୍ରିୟର ସୁଖ ନିମିତ୍ତ ଅନ୍ୟର ଗଳା କାଟିବି । ସୁତରାଂ ଏହା କୌଣସି ଯୁକ୍ତି ହେଲା ନାହିଁ । କାହିଁକି ମନ୍ଦର ଭିତରଦେଇ ଭଲ ହେବ ? ଏହି ପ୍ରଶ୍ନର ଉତ୍ତର ଦେବାକୁ ହେବ; କିନ୍ତୁ ଏହି ପ୍ରଶ୍ନର ଉତ୍ତର ଦିଆଯାଏ ନାହିଁ—ଭାରତୀୟ ଦର୍ଶନ ଏହା ସ୍ୱୀକାର କରିବାକୁ ବାଧ୍ୟ ହୋଇଥିଲା ।

ବେଦାନ୍ତ ସବୁପ୍ରକାର ଧର୍ମ ଓ ଦର୍ଶନ ମଧ୍ୟରେ ଅଧିକତର ସାହସର ସହିତ ସତ୍ୟ ଅନ୍ୱେଷଣରେ ଅଗ୍ରସର ହୋଇଛି । ବେଦାନ୍ତ ମଝିରେ ଏକ ସ୍ଥାନକୁ ଯାଇ ତାହାର ଅନୁସନ୍ଧାନ ସ୍ଥଗିତ ରଖି ନାହିଁ, ଆଉ ତାହା ପକ୍ଷରେ ଅଗ୍ରସର ହେବାର ଏକ ସୁବିଧା ମଧ୍ୟ ଥିଲା । ବେଦାନ୍ତଧର୍ମର ବିକାଶ ସମୟରେ ପୁରୋହିତ ସଂପ୍ରଦାୟ ସତ୍ୟାନ୍ୱେଷିଗଣଙ୍କ ମୁଖ ବନ୍ଦ କରି ରଖିବାର ଚେଷ୍ଟା କରି ନାହାନ୍ତି । ଧର୍ମରେ ସମ୍ପୂର୍ଣ୍ଣ ସ୍ୱାଧୀନତା ଥିଲା । ଭାରତରେ ସଙ୍କୀର୍ଣ୍ଣତା ଥିଲା ସାମାଜିକ ପ୍ରଣାଳୀରେ । ଏଠାରେ (ଇଂଲଣ୍ଡରେ) ସମାଜ ଖୁବ୍ ସ୍ୱାଧୀନ । ଭାରତରେ ସାମାଜିକ ବିଷୟରେ ସ୍ୱାଧୀନତା ନ ଥିଲା, କିନ୍ତୁ ଧର୍ମମତ ସମ୍ବନ୍ଧରେ ଥିଲା । ଏଠାରେ ଲୋକେ ଯେଉଁଭଳି ପୋଷାକ ପିନ୍ଧନ୍ତୁ ନା କାହିଁକି, କିମ୍ବା ଯାହା ଇଚ୍ଛା ତାହା କରନ୍ତୁ ନା କାହିଁକି, କେହି କିଛି କହେ ନାହିଁ କି ଆପତ୍ତି କରେ ନାହିଁ; କିନ୍ତୁ ଚର୍ଚ୍ଚକୁ ଗୋଟିଏ ଦିନ ଯିବା ବନ୍ଦ ହେଲେ, ନାନା କଥା ଉଠେ । ସତ୍ୟର ଚିନ୍ତାବେଳେ ତାହାକୁ ଆଗେ ହଜାର ଥର ଭାବିବାକୁ ପଡ଼େ, ସମାଜ କ'ଣ କହେ । ଅପରପକ୍ଷରେ ଭାରତବର୍ଷରେ ଯଦି ଜଣେ

ଲୋକ ଅନ୍ୟ ଜାତିର ହାତରେ ଖାଏ, ସଙ୍ଗେ ସଙ୍ଗେ ସମାଜ ତାକୁ ଜାତିଚ୍ୟୁତ କରିବାକୁ ଅବସର ହୋଇଥାଏ । ପୂର୍ବପୁରୁଷମାନେ ଯେଉଁଭଳି ପୋଷାକ ପିନ୍ଧୁଥିଲେ, ତାହାଠାରୁ ଟିକିଏ ଭିନ୍ନ ଧରଣର ପୋଷାକ ପିନ୍ଧିଲ ତ ସର୍ବନାଶ । ମୁଁ ଶୁଣିଛି, ପ୍ରଥମ ରେଲଗାଡ଼ି ଦେଖିବାକୁ ଯାଇଥିଲା ବୋଲି ଜଣେ ଜାତିଚ୍ୟୁତ ହୋଇଥିଲା । ହୋଇପାରେ, ଏହା ସତ୍ୟ ନୁହେଁ । କିନ୍ତୁ ଧର୍ମ ବିଷୟରେ ପୁଣି ଦେଖିବାକୁ ପାଏ, ନାସ୍ତିକ, ଜଡ଼ବାଦୀ, ବୌଦ୍ଧ, ସକଳ ପ୍ରକାରର ମତ, ଅଦ୍ଭୁତ ପ୍ରକାରର ଭୟାନକ ମତ ଲୋକମାନେ ପ୍ରଚାର କରୁଛନ୍ତି, ଶିକ୍ଷା ମଧ୍ୟ ପାଉଛନ୍ତି—ଏପରି କି ଦେବପୂଜିତ ମନ୍ଦିରର ଦ୍ୱାରଦେଶରେ ବ୍ରାହ୍ମଣମାନେ ଜଡ଼ବାଦୀମାନଙ୍କୁ ଛିଡ଼ା ହୋଇ ତାଙ୍କ ଦେବତାଙ୍କୁ ନିନ୍ଦା କରିବାକୁ ଅନୁମତି ଦେଉଛନ୍ତି । ଏହା ଅବଶ୍ୟ ସେମାନଙ୍କ ଧର୍ମର ଉଦାରଭାବ ଓ ମହତ୍ତ୍ୱର ପରିଚାୟକ ।

ବୁଦ୍ଧ ଖୁବ୍ ବୃଦ୍ଧ ବୟସରେ ଦେହରକ୍ଷା କରିଥିଲେ । ମୋର ଜଣେ ଆମେରିକାନ୍ ବୈଜ୍ଞାନିକ ବନ୍ଧୁ ବୁଦ୍ଧଦେବଙ୍କ ଜୀବନୀ ପଢ଼ିବାକୁ ଭାରି ଭଲ ପାଉ-ଥିଲେ । କିନ୍ତୁ ସେ ବୁଦ୍ଧଦେବଙ୍କ ମୃତ୍ୟୁର ରୀତିକୁ ପସନ୍ଦ କରୁ ନ ଥିଲେ । କାରଣ ବୁଦ୍ଧଦେବ କ୍ରୁଶବିଦ୍ଧ ହୋଇ ନାହାନ୍ତି । କି ଭ୍ରମାତ୍ମକ ଧାରଣା ! ବଡ଼ ଲୋକ ହେବାକୁ ହେଲେ ହତ ହେବାକୁ ପଡ଼ିବ ! ଭାରତରେ ଏଭଳି ଧାରଣା ପ୍ରଚଳିତ ନ ଥିଲା । ବୁଦ୍ଧଦେବ ତାଙ୍କର ଦେବତା, ଏପରି କି ଜଗଦୀଶ୍ୱରଙ୍କୁ ପର୍ଯ୍ୟନ୍ତ ଅସ୍ୱୀକାର କରି ସର୍ବତ୍ର ଭ୍ରମଣ କରି ବୃଦ୍ଧ ବୟସ ପର୍ଯ୍ୟନ୍ତ ବଞ୍ଚିଥିଲେ । ସେ ଅଶୀ ବର୍ଷ ବଞ୍ଚିଥିଲେ ଏବଂ ଦେଶର ଅର୍ଦ୍ଧେକ ଅଂଶ ସେ ତାଙ୍କର ଧର୍ମରେ ଦୀକ୍ଷିତ କରାଇଥିଲେ ।

ଚାର୍ବାକପନ୍ଥୀମାନେ ଅତ୍ୟନ୍ତ ସାଂଘାତିକ ମତ ପ୍ରଚାର କରୁଥିଲେ—ଊନବିଂଶ ଶତାବ୍ଦୀରେ ମଧ୍ୟ ଲୋକେ ଏଭଳି ସ୍ପଷ୍ଟ ଜଡ଼ବାଦ ପ୍ରଚାରରେ ସାହସ କରିବେ ନାହିଁ । ଏହି ଚାର୍ବାକପନ୍ଥୀମାନେ ପ୍ରତ୍ୟେକ ମନ୍ଦିର ତଥା ନଗରମାନ ବୁଲି ପ୍ରଚାର କରୁଥିଲେ—ଧର୍ମ ମିଥ୍ୟା, ଏହା ପୁରୋହିତମାନଙ୍କ ସ୍ୱାର୍ଥ ଚରିତାର୍ଥ କରିବାର ଉପାୟ ମାତ୍ର, ଭଣ୍ଡ ଧୂର୍ତ୍ତ ନିଶାଚରମାନଙ୍କର ବେଦ ରଚନା—ଈଶ୍ୱର ମଧ୍ୟ ନାହାନ୍ତି, ଆତ୍ମା ବି ନାହିଁ । ଯଦି ଆତ୍ମା ଥାଆନ୍ତା, ତେବେ ସ୍ତ୍ରୀ-ପୁତ୍ରମାନଙ୍କର ପ୍ରଣୟାକୃଷ୍ଟ ହୋଇ କାହିଁକି ସେ ଫେରିଆସନ୍ତା ନାହିଁ ? ସେମାନଙ୍କର ଏହି ଧାରଣା ଥିଲା ଯେ, ଯଦି ଆତ୍ମା ଥାଆନ୍ତା, ତେବେ ମୃତ୍ୟୁପରେ ମଧ୍ୟ ତାହାର ଭଲପାଇବା ରହନ୍ତା, ସେ ଭଲ ଖାଇବାକୁ, ଭଲ ପିନ୍ଧିବାକୁ ଚାହାଁନ୍ତା । ଏହିଭଳି ଧାରଣାସମ୍ପନ୍ନ ହେଲେ ମଧ୍ୟ କେହି ଚାର୍ବାକପନ୍ଥୀମାନଙ୍କ ଉପରେ କୌଣସି ଅତ୍ୟାଚାର କରି ନାହାନ୍ତି ।

ଆମେମାନେ ଧର୍ମ ବିଷୟରେ ସ୍ୱାଧୀନତା ଦେଇଥିଲୁ, ତାହାର ଫଳସ୍ୱରୂପ ଏବେ ମଧ୍ୟ ଧର୍ମ-ଜଗତରେ ଆମମାନଙ୍କର ମହାଶକ୍ତି ବିରାଜିତ । ତୁମେମାନେ ସାମାଜିକ ସମ୍ବନ୍ଧରେ ସେହି ସ୍ୱାଧୀନତା ଦେଇଛ, ତାହାର ଫଳ—ତୁମମାନଙ୍କର ଅତି ସୁନ୍ଦର ସାମାଜିକ ପ୍ରଣାଳୀ । ଆମେମାନେ ସାମାଜିକ ଉନ୍ନତି ସମ୍ପର୍କରେ କିଛି

ସ୍ୱାଧୀନତା ଦେଇନାହୁଁ, ସୁତରାଂ ଆମର ସମାଜ ସଂକୀର୍ଣ୍ଣ । ତୁମେମାନେ ଧର୍ମ ସମ୍ବନ୍ଧରେ ସ୍ୱାଧୀନତା ଦିଅ ନାହିଁ, ଧର୍ମ ବିଷୟରେ ପ୍ରଚଳିତ ମତର ବ୍ୟତିକ୍ରମ କରିବା ମାତ୍ରେ ସଙ୍ଗେ ସଙ୍ଗେ ବନ୍ଧୁକ, ତରବାରି ବାହାର ହୁଏ; ତାହାର ଫଳ ୟୁରୋପୀୟ ଧର୍ମଭାବ ସଂକୀର୍ଣ୍ଣ । ଭାରତରେ ସମାଜର ଶୃଙ୍ଖଳ ଖୋଲିଦେବାକୁ ହେବ ଏବଂ ୟୁରୋପରେ ଧର୍ମର ଶୃଙ୍ଖଳ ଖୋଲି ଦେବାକୁ ପଡ଼ିବ । ତେବେ ଯାଇ ଉନ୍ନତି ହେବ । ଯଦି ଆମେମାନେ ଏହି ଆଧ୍ୟାତ୍ମିକ, ନୈତିକ ବା ସାମାଜିକ ଉନ୍ନତି ଭିତରେ ଯେଉଁ ଏକତ୍ୱ ରହିଛି, ତାହା ଧରିପାରୁ, ଯଦି ଜାଣିପାରୁ—ଏହା ଏକ ପଦାର୍ଥର ବିଭିନ୍ନ ବିକାଶ ମାତ୍ର, ତେବେ ଧର୍ମ ଆମମାନଙ୍କ ସମାଜ ଭିତରେ ପ୍ରବେଶ କରିବ, ଆମମାନଙ୍କ ଜୀବନର ପ୍ରତିମୁହୂର୍ତ୍ତ ମଧ୍ୟ ଧର୍ମଭାବରେ ପୂର୍ଣ୍ଣ ହେବ । ଧର୍ମ ଆମମାନଙ୍କ ଜୀବନର ପ୍ରତ୍ୟେକ କାର୍ଯ୍ୟରେ ପ୍ରବେଶ କରିବ—ଧର୍ମ କହିଲେ ଯାହା କିଛି ବୁଝାଏ, ସେ ସମୁଦାୟ ଆମମାନଙ୍କ ଜୀବନ ଉପରେ ତାହାର ପ୍ରଭାବ ବିସ୍ତାର କରିବ । ବେଦାନ୍ତର ଆଲୋକରେ ତୁମେମାନେ ବୁଝିବ ଯେ ସର୍ବବିଧ ବିଜ୍ଞାନ କେବଳ ଧର୍ମର ହିଁ ବିଭିନ୍ନ ବିକାଶ ମାତ୍ର, ଜଗତର ଆଉ ସବୁ ଜିନିଷ ମଧ୍ୟ ଏହିପରି ।

ତେବେ ଆମେମାନେ ଦେଖିଲୁ ଯେ ସ୍ୱାଧୀନତା ରହିବା ଫଳରେ ୟୁରୋପରେ ଏହିସବୁ ବିଜ୍ଞାନର ଉତ୍ପତ୍ତି ଓ ଶ୍ରୀବୃଦ୍ଧି ହୋଇଛି । ସବୁ ସମାଜରେ ଦୁଇଟି ଦଳ ବିଭିନ୍ନ ଦେଖିବାକୁ ମିଳେ । ଗୋଟିଏ ଦଳ ଜଡ଼ବାଦୀ ବିରୁଦ୍ଧବାଦୀ, ଅନ୍ୟ ଦଳଟି ନିଶ୍ଚିତବାଦୀ ସଙ୍ଗଠନକାରୀ । ମନେକର, ସମାଜରେ କୌଣସି ଦୋଷ ଅଛି, ସଙ୍ଗେ ସଙ୍ଗେ ଗୋଟିଏ ଦଳ ଉଠି ଗାଳିଗୁଲଜ କରିବାକୁ ଆରମ୍ଭ କରିଦେଲେ । ଏମାନେ ଅନେକ ସମୟରେ ଧର୍ମୋନ୍ମତ୍ତ ହୋଇଥାଆନ୍ତି । ସବୁ ସମାଜରେ ତୁମେ ଏମାନଙ୍କୁ ଦେଖିବାକୁ ପାଇବ ଏବଂ ସ୍ତ୍ରୀ-ଲୋକମାନେ ହିଁ ଅଧିକାଂଶ ସ୍ଥଳରେ ଏହି ଚିତ୍କାରରେ ଯୋଗ ଦେଇଥାଆନ୍ତି, କାରଣ ସେମାନେ ସ୍ୱଭାବତଃ ଭାବପ୍ରବଣ । ଯେକୌଣସି ବ୍ୟକ୍ତି ଛିଡ଼ା ହୋଇ କୌଣସି ବିଷୟର ବିରୋଧରେ ଯଦି ବକ୍ତୃତା ଦିଏ, ତାହାର ଦଳ-ବୃଦ୍ଧି ହୋଇଥାଏ । ଭାଙ୍ଗିବା ସହଜ; ଜଣେ ପାଗଳ ସହଜରେ ଯାହା ଇଚ୍ଛା କରେ ଭାଙ୍ଗିଦେଇପାରେ; କିନ୍ତୁ ତା' ପକ୍ଷରେ କିଛି ଗଢ଼ିବା କଠିନ ।

ସବୁ ଦେଶରେ ଏହିପରି ଲୋକ ଦେଖିବାକୁ ମିଳନ୍ତି ଏବଂ ସେମାନେ ମନେକରନ୍ତି, ଖାଲି ଗାଳିଗୁଲଜ କରି, ଖାଲି ଦୋଷ ପ୍ରକାଶ କରିଦେଇ ସେମାନେ ଲୋକଙ୍କ ଭଲ କରିଦେବେ । ସେହିମାନଙ୍କ ଦୃଷ୍ଟିରୁ ଦେଖିଲେ ମନେହୁଏ, ସେମାନେ କିଛି ଉପକାର କରୁଛନ୍ତି; କିନ୍ତୁ ବାସ୍ତବିକ ସେମାନେ ଅଧିକ ଅନିଷ୍ଟ ହିଁ କରିଥାଆନ୍ତି । କୌଣସି ଜିନିଷ ତ ଗୋଟିଏ ଦିନରେ ହୁଏ ନାହିଁ, ସମାଜ ଦିନକ ଭିତରେ ନିର୍ମିତ ହୁଏ ନାହିଁ, ଆଉ ପରିବର୍ତ୍ତନର ଅର୍ଥ—କାରଣ ଦୂର କରିବା । ମନେକର ଏଠାରେ ଅନେକ ଦୋଷ ଅଛି । କେବଳ ଗାଳିଗୁଲଜ କଲେ କିଛି ହେବ ନାହିଁ; ବରଂ

ମୂଳକୁ ଯିବାକୁ ହେବ । ପ୍ରଥମେ ଏହି ଦୋଷର ହେତୁ କ'ଣ ନିର୍ଣ୍ଣୟ କର, ତାପରେ ଏହାକୁ ଦୂର କର, ତାହା ହେଲେ ଏହାର ଫଳସ୍ୱରୂପ ଦୋଷ ଆପଣାଛାଏଁ ଚାଲିଯିବ । ପାଟିତୁଣ୍ଡ କଲେ କିଛି ଫଳ ହେବ ନାହିଁ, ତଦ୍ୱାରା ବରଂ ଅନିଷ୍ଟ ହିଁ ସୃଷ୍ଟି କରିବ ।

ଅନ୍ୟ ଦଳର—ଯାହାଙ୍କ କଥା କୁହାଯାଇଛି—ସେମାନଙ୍କ ହୃଦୟରେ ସହାନୁଭୂତି ଥିଲା । ସେମାନେ ବୁଝିପାରିଥିଲେ ଯେ ଦୋଷ ନିବାରଣ କରିବାକୁ ହେଲେ, ଏହାର କାରଣ କ'ଣ ନିର୍ଦ୍ଧାରଣ କରିବାକୁ ହେବ । ଏମାନେ ବଡ଼ ବଡ଼ ସାଧୁଜନ । ଗୋଟିଏ କଥା ତୁମର ସ୍ମରଣ ରଖିବା ଆବଶ୍ୟକ ଯେ, ଜଗତର ସବୁ ଶ୍ରେଷ୍ଠ ଆଚାର୍ଯ୍ୟଗଣ କହିଛନ୍ତି, ଆମେମାନେ ବିନାଶ କରିବାକୁ ଆସି ନାହୁଁ, ପୂର୍ବେ ଯାହା ଥିଲା, ତାହାକୁ ସମ୍ପୂର୍ଣ୍ଣ କରିବାକୁ ଆସିଛୁ । ଅନେକ ସମୟରେ ଲୋକେ ଆଚାର୍ଯ୍ୟମାନଙ୍କର ଏଭଳି ମହତ୍ତ୍ୱ ଉଦ୍ଦେଶ୍ୟ ବୁଝି ନ ପାରି ସେମାନେ ସାଧାରଣ ଲୋକଙ୍କ ମତରେ ମତ ଦେଇ ଆଚାର୍ଯ୍ୟଗଣ ଅନୁପଯୁକ୍ତ କାର୍ଯ୍ୟ କରିଛନ୍ତି ବୋଲି କହନ୍ତି । ବର୍ତ୍ତମାନ ମଧ୍ୟ ଅନେକ କହିଥାନ୍ତି ଯେ ସେମାନେ ଯାହା ସତ୍ୟ ବୋଲି ଭାବୁଥିଲେ, ତାହା ପ୍ରକାଶ କରି କହିବାକୁ ସାହସ କରୁ ନ ଥିଲେ, ସେମାନେ କେତେକ ପରିମାଣରେ କାପୁରୁଷ ଥିଲେ; କିନ୍ତୁ ବାସ୍ତବିକ ତାହା ନୁହେଁ । ଏହିସବୁ ଏକଦେଶଦର୍ଶୀମାନେ ଏପରି ମହାପୁରୁଷମାନଙ୍କ ହୃଦୟସ୍ଥ ପ୍ରେମର ଅନନ୍ତ ଶକ୍ତି ଅତି ଅଳ୍ପ ବୁଝିପାରନ୍ତି । ସେମାନେ ଜଗତର ନରନାରୀଙ୍କୁ ସେମାନଙ୍କ ସନ୍ତାନସ୍ୱରୂପ ଦେଖୁଥିଲେ । ସେହିମାନେ ହିଁ ଯଥାର୍ଥ ପିତା, ସେହିମାନେ ହିଁ ଯଥାର୍ଥ ଦେବତା, ପ୍ରତ୍ୟେକଙ୍କ ପାଇଁ ସେମାନଙ୍କର ଅନନ୍ତ ସହାନୁଭୂତି ଓ କ୍ଷମା ଥିଲା, ସେମାନେ ସର୍ବଦା ସହ୍ୟ ଏବଂ କ୍ଷମା କରିବାକୁ ପ୍ରସ୍ତୁତ ଥିଲେ । ସେମାନେ ଜାଣୁଥିଲେ କ'ଣ କଲେ ମନୁଷ୍ୟସମାଜ ସଂଗଠିତ ହେବ । ସୁତରାଂ ସେମାନେ ଅତି ଧୀରଭାବେ, ଅତ୍ୟନ୍ତ ସହନଶୀଳତାର ସହିତ ସେମାନଙ୍କର ସଞ୍ଜୀବନୀ-ଔଷଧ ପ୍ରୟୋଗ କରିବାରେ ଲାଗିଲେ । ଲୋକଙ୍କୁ ସେମାନେ ଗାଳିଗୁଲଜ ଦେଇ ନାହାନ୍ତି ବା ଭୟ ଦେଖାଇ ନାହାନ୍ତି; କିନ୍ତୁ ଅତି ଧୀରଭାବେ ସେମାନଙ୍କୁ ଏକ ଏକ ପାଦ ପଥ ଦେଖାଇ ଚାଳନା କରିଛନ୍ତି । ଏହିମାନେ ହିଁ ଉପନିଷଦ୍‌ର ରଚୟିତା । ସେମାନେ ଭଲଭାବରେ ଜାଣିଥିଲେ, ଈଶ୍ୱର-ସମ୍ବନ୍ଧୀୟ ପ୍ରାଚୀନ ଧାରଣା ସବୁ ଉନ୍ନତ-ନୀତି-ସଙ୍ଗତ ଧାରଣା ସହିତ ମିଳେ ନାହିଁ । ସେମାନେ ସମ୍ପୂର୍ଣ୍ଣରୂପେ ଜାଣିଥିଲେ, ବୌଦ୍ଧ ଓ ନାସ୍ତିକଗଣ ଯାହା ପ୍ରଚାର କରିଥିଲେ, ସେସବୁ ଭିତରେ ଅନେକ ମହତ୍ତ୍ୱ ସତ୍ୟ ଅଛି; କିନ୍ତୁ ସେମାନେ ଏହା ମଧ୍ୟ ଜାଣିଥିଲେ, ଯେଉଁମାନେ ପୂର୍ବ ମତ ସହିତ କୌଣସି ସମ୍ପର୍କ ନ ରଖି ନୂତନ ମତ ସ୍ଥାପନ କରିବାକୁ ଚାହାଁନ୍ତି; ଯେଉଁମାନେ ଯେଉଁ ସୂତ୍ରରେ ମାଳା ଗ୍ରଥିତ ହୋଇଛି ତାହାକୁ ଛିନ୍ନ କରିବାକୁ ଚାହାଁନ୍ତି, ଯେଉଁମାନେ ଶୂନ୍ୟ ଉପରେ ନୂତନ ସମାଜ ଗଠନ କରିବାକୁ ଚାହାଁନ୍ତି, ସେମାନେ ସମ୍ପୂର୍ଣ୍ଣ ରୂପେ ଅକୃତକାର୍ଯ୍ୟ ହେବେ ।

ଆମେମାନେ କଦାପି ନୂତନ କିଛି ନିର୍ମାଣ କରିପାରୁ ନାହିଁ, ଆମେମାନେ କେବଳ ବସ୍ତୁର ସ୍ଥାନ ପରିବର୍ତ୍ତନ କରିପାରୁ ମାତ୍ର । ବୀଜ ହିଁ ବୃକ୍ଷରୂପେ ପରିଣତ ହୁଏ, ସୁତରାଂ ଆମମାନଙ୍କୁ ଧୈର୍ଯ୍ୟର ସହିତ ଶାନ୍ତଭାବରେ ଲୋକମାନଙ୍କ ସତ୍ୟା- ନୁସନ୍ଧାନ ନିମିତ୍ତ ନିଯୁକ୍ତ ଶକ୍ତିକୁ ପରିଚାଳନା କରିବାକୁ ହେବ; ଯେଉଁ ସତ୍ୟ ପୂର୍ବରୁ ବିଦ୍ୟମାନ, ତାହାର ପୂର୍ଣ୍ଣ ବିକାଶ ସାଧନ କରିବାକୁ ହେବ, ନୂତନ ସତ୍ୟର ସୃଷ୍ଟି ପାଇଁ ଚେଷ୍ଟା କରିବାକୁ ହେବ ନାହିଁ । ସୁତରାଂ ଏହି ପ୍ରାଚୀନ ଈଶ୍ୱରଧାରଣା ବର୍ତ୍ତମାନ କାଳରେ ଅନୁପଯୁକ୍ତ ବୋଲି ସମ୍ପୂର୍ଣ୍ଣ ଉଡ଼ାଇ ନ ଦେଇ, ସେମାନେ ଏହା ମଧ୍ୟରେ ଯାହା ସତ୍ୟ ଅଛି, ତାହାର ଅନ୍ୱେଷଣ କରିବାକୁ ଲାଗିଥିଲେ; ତାହାର ଫଳ ବେଦାନ୍ତଦର୍ଶନ । ସେମାନେ ପ୍ରାଚୀନ କାଳରୁ ପ୍ରତିଷ୍ଠିତ ବହୁ ଦେବଦେବୀ ଏବଂ ଏହି ବିଶ୍ୱର ଏକମାତ୍ର ଶାସନକର୍ତ୍ତାରୂପୀ ଜଣେ ଈଶ୍ୱରଙ୍କ ଭାବଠାରୁ ଉଚ୍ଚତର ଭାବସବୁ ଆବିଷ୍କାର କରିବାକୁ ଲାଗିଲେ, ଯାହା ନିର୍ଗୁଣ ପରବ୍ରହ୍ମ ନାମରେ ଅଭିହିତ । ଏହି ନିର୍ଗୁଣ ବ୍ରହ୍ମଙ୍କର ଧାରଣାରେ ସେମାନେ ଜଗତ୍ ମଧ୍ୟରେ ଏକ ଅଖଣ୍ଡ ସତ୍ତା ଦେଖିବାକୁ ପାଇଥିଲେ ।

'ଯେ ଏହି ବହୁତ୍ୱପୂର୍ଣ୍ଣ ଜଗତରେ ସେହି ଏକ ଅଖଣ୍ଡ ସ୍ୱରୂପକୁ ଦେଖିବାକୁ ପାଏ, ଯେ ଏହି ମରଜଗତରେ ସେହି ଏକ ଅନନ୍ତ ଜୀବନ ଦେଖିବାକୁ ପାଏ, ଯେ ଏହି ଜଡ଼ତା ଓ ଅଜ୍ଞତାପୂର୍ଣ୍ଣ ଜଗତରେ ସେହି ଏକ ସ୍ୱରୂପକୁ ଦେଖିବାକୁ ପାଏ, ତାକୁ ହିଁ ଶାଶ୍ୱତ ଶାନ୍ତି ମିଳେ, ଆଉ କାହାକୁ ନୁହେଁ ।'*

* କଠ ଉପ., ୨।୨।୧୩

# ମାୟା ଓ ମୁକ୍ତି

[ ଲଣ୍ଡନରେ ପ୍ରଦତ୍ତ ବକ୍ତୃତା, ୨୨ ଅକ୍ଟୋବର, ୧୮୯୬ ]

କବି କହନ୍ତି, "ଆମେ ଜଗତରେ ପ୍ରବେଶ କରିବା ସମୟରେ ଆମର ପଶ୍ଚାତ୍ତରେ ହିରଣ୍ମୟ ଜଳଦଜାଳ ନେଇ ଯେପରି ପ୍ରବେଶ କରୁ ।" କିନ୍ତୁ ସତ୍ୟକଥା କହିବାକୁ ଗଲେ, ଆମେ ସମସ୍ତେ ଏହିଭଳି ମହିମାମଣ୍ଡିତ ହୋଇ ସଂସାର ମଧ୍ୟରେ ପ୍ରବେଶକରୁ ନାହିଁ; ଆମମାନଙ୍କ ମଧ୍ୟରୁ ଅନେକେ କୁଜ୍ଝଟିକାର କାଳିମା ପଶ୍ଚାତ୍ତରେ ନେଇ ଜଗତରେ ପ୍ରବେଶ କରିଥାଉ; ଏଥିରେ କୌଣସି ସନ୍ଦେହ ନାହିଁ । ଆମେ ସମସ୍ତେ ହିଁ ଯେପରି ଯୁଦ୍ଧକ୍ଷେତ୍ରକୁ ଯୁଦ୍ଧ କରିବା ନିମିତ୍ତ ପ୍ରେରିତ ହୋଇଛୁ । କାନ୍ଦି କାନ୍ଦି ଆମମାନଙ୍କୁ ଏହି ଜଗତ ମଧ୍ୟରେ ପ୍ରବେଶ କରିବାକୁ ହେବ—ଯଥାସାଧ୍ୟ ଚେଷ୍ଟା କରି ଏହି ଅନନ୍ତ ଜୀବନ-ସମୁଦ୍ର ମଧ୍ୟରେ ପଥ କରି ନେବାକୁ ହେବ; ଆଗକୁ ଆମେମାନେ ଅଗ୍ରସର ହେଉ, ପଛରେ ଅନନ୍ତଯୁଗ ପଡ଼ିରହିଛି, ସମ୍ମୁଖରେ ମଧ୍ୟ ଅନନ୍ତ । ଏହିଭଳି ଆମେମାନେ ଚାଲିଥାଉ, ଅବଶେଷରେ ମୃତ୍ୟୁ ଆସି ଆମମାନଙ୍କୁ ଏହି କ୍ଷେତ୍ରରୁ ଅପସାରିତ କରିଦିଏ । ଏ ଯୁଦ୍ଧରେ ଆମର ଜୟ ହେଲା କି ପରାଜୟ ହେଲା—କିଛି ଠିକ୍ ନାହିଁ—ଏହା ହିଁ ତ ମାୟା !

ବାଳକହୃଦୟରେ ଆଶା ବଳବତୀ । ବାଳକର ବିସ୍ଫାରିତ ନୟନ ସମକ୍ଷରେ ସମୁଦାୟ ଜଗତ ଯେପରି ଗୋଟିଏ ସୁନାର ଛବି ବୋଲି ପ୍ରତିଭାତ ହୁଏ । ସେ ଭାବେ 'ମୁଁ ଯାହା ଇଚ୍ଛା ତାହା ହିଁ ହେବ'; କିନ୍ତୁ ଯେମିତି ସେ ଅଗ୍ରସର ହୁଏ, ସେମିତି ତା'ର ପ୍ରତି ପଦକ୍ଷେପରେ ପ୍ରକୃତି ବଜ୍ରଦୃଢ଼ ପ୍ରାଚୀରରୂପେ ଗତିରୋଧ କରି ଦଣ୍ଡାୟମାନ ହୁଏ । ବାରମ୍ବାର ଏହି ପ୍ରାଚୀର ଭଙ୍ଗ କରିବା ନିମିତ୍ତ ସେ ବେଗରେ ଏହା ଉପରେ ପତିତ ହୋଇପାରେ । ସାରା ଜୀବନ ଯେତେ ସେ ଅଗ୍ରସର ହୁଏ, ସେତେ ତାହାର ଆଦର୍ଶ ଯେପରି ତାହାର ସମ୍ମୁଖରୁ ଘୁଞ୍ଚି ଘୁଞ୍ଚି ଯାଏ—ଶେଷରେ ମୃତ୍ୟୁ ଆସିଲେ ହୁଏତ ନିସ୍ତାର; ଏହା ହିଁ ମାୟା ।

ବୈଜ୍ଞାନିକ ଉଠିଲେ—ସେ ଜ୍ଞାନପିପାସୁ । ତାଙ୍କ ପକ୍ଷରେ ଏମିତି କିଛି ନାହିଁ ଯାହା ସେ ତ୍ୟାଗ କରି ନ ପାରନ୍ତି; କୌଣସି ସଂଗ୍ରାମ ତାଙ୍କୁ ନିରୁତ୍ସାହିତ କରିପାରିବ ନାହିଁ । ସେ କ୍ରମାଗତ ଅଗ୍ରସର ହୋଇ ପ୍ରକୃତିର ଗୋଟିକ ପରେ ଗୋଟିଏ ଗୁପ୍ତତତ୍ତ୍ୱ ଆବିଷ୍କାର କରୁଛନ୍ତି—ପ୍ରକୃତିର ଅନ୍ତଃସ୍ଥଳରୁ ଆଭ୍ୟନ୍ତରୀଣ ଗୂଢ଼ ରହସ୍ୟ ଉଦ୍‌ଘାଟନ କରୁଛନ୍ତି—କିନ୍ତୁ କାହିଁକି ! ଏସବୁ କରିବାର ଉଦ୍ଦେଶ୍ୟ କଅଣ ? ଆମେମାନେ ଏହି ବୈଜ୍ଞାନିକଙ୍କର ଗୌରବ କରିବା କାହିଁକି ? କାହିଁକି ସେ

ସନ୍ତୋଳ୍ଭ କରିବେ ? ମନୁଷ୍ୟ ଯାହା କରିପାରେ, ତଦପେକ୍ଷା ପ୍ରକୃତି କଣ ଅନନ୍ତଗୁଣ ଅଧିକ କରିପାରେ ନାହିଁ ? ତାହାହେଲେ ମଧ୍ୟ ପ୍ରକୃତି ଜଡ଼ । ଜଡ଼ର ଅନୁକରଣରେ ଗୌରବ କ'ଣ ? ବଜ୍ର ଯେତେ ପ୍ରଭୂତ ପରିମାଣରେ ତଡ଼ିତ୍-ଶକ୍ତି-ସନ୍ନିବିଷ୍ଟ ହେଉ ନା କାହିଁକି, ପ୍ରକୃତି ଏହାକୁ ଯେତେ ଦୂର ଇଚ୍ଛା ସେତେ ଦୂରକୁ ନିକ୍ଷେପ କରିପାରେ । ଯଦି କୌଣସି ମନୁଷ୍ୟ ତାହାର ଶତାଂଶର ଏକାଂଶ କରିପାରେ, ତେବେ ଆମେମାନେ ତାହାକୁ ଏକାଥରକେ ଆକାଶରେ ନେଇ ଥୋଇଦେଉ ! କିନ୍ତୁ ଏହାର କାରଣ କ'ଣ ? ପ୍ରକୃତିର ଅନୁକରଣ, ମୃତ୍ୟୁର ଅନୁକରଣ, ଜଡ଼ର ଅନୁକରଣ, ଅଚେତନର ଅନୁକରଣ ନିମିତ୍ତ କାହିଁକି ତାହାର ପ୍ରଶଂସା କରିବୁ ?

ମାଧ୍ୟାକର୍ଷଣ ଶକ୍ତି ଅତି ବୃହତ୍ତମ ପଦାର୍ଥକୁ ମଧ୍ୟ ଟାଣିଆଣି ଖଣ୍ଡବିଖଣ୍ଡ କରିଦେଇପାରେ, ତଥାପି ଏହା ଜଡ଼ଶକ୍ତି । ଜଡ଼ର ଅନୁକରଣରେ କି ଗୌରବ ? ତଥାପି ଆମେମାନେ ଜୀବନସାରା କେବଳ ଏଥିପାଇଁ ଚେଷ୍ଟା କରୁ—ଏହା ହିଁ ମାୟା ।

ଇନ୍ଦ୍ରିୟଗଣ ମନୁଷ୍ୟକୁ ଟାଣି ବାହାରକୁ ନେଇଯାଆନ୍ତି । ଯେଉଁଠାରେ କୌଣସି ପ୍ରକାରେ ସୁଖ ମିଳେ ନାହିଁ, ମନୁଷ୍ୟ ସେଠାରେ ସୁଖର ଅନ୍ୱେଷଣ କରିଥାଏ । ଅନନ୍ତ ଯୁଗ ଧରି ଆମେ ସମସ୍ତେ ଏହି ଉପଦେଶ ପାଇଛୁ ଯେ—ଏ ସବୁ ବୃଥା; କିନ୍ତୁ ଆମେ ଶିକ୍ଷା କରିପାରୁ ନାହିଁ । ନିଜ ଅଭିଜ୍ଞତା ଛଡ଼ା ଶିଖିବା ମଧ୍ୟ ଅସମ୍ଭବ । ଉପଦେଶଗୁଡ଼ିକୁ କାମରେ ଲଗାଇବାକୁ ହେବ, ହୁଏତ ଖୁବ୍ ଆଘାତ ପାଇବା । ସେଥିରୁ ବି ଆମେ କଅଣ ଶିଖିବା ? ନା, ସେତେବେଳେ ବି ନୁହେଁ । ପତଙ୍ଗ ଯେପରି ପୁନଃ ପୁନଃ ଅଗ୍ନି ଅଭିମୁଖରେ ଧାବମାନ ହୁଏ, ଆମେମାନେ ମଧ୍ୟ ସେହିପରି ବିଷୟସମୂହ ଆଡ଼କୁ ବେଗରେ ଯାଉଛୁଁ—ଯଦି ବା କିଛି ସୁଖ ମିଳେ । ଫେରି ଫେରି ପୁଣି ନୂତନ ଉତ୍ସାହରେ ଦୌଡ଼ୁଛୁଁ । ଏହିରୂପେ ଆମେମାନେ ଅଗ୍ରସର ହେଉ । ଶେଷରେ ପ୍ରତାରିତ, ଭଗ୍ନମନୋରଥ ଓ ଜୀର୍ଣ୍ଣକ ହୋଇ ଅବଶେଷରେ ମରିଯାଉ—ଏହା ହିଁ ମାୟା ।

ଆମମାନଙ୍କ ବୁଦ୍ଧିବୃତ୍ତି ସମ୍ବନ୍ଧରେ ମଧ୍ୟ ତଦ୍ରୂପ । ଆମେମାନେ ଜଗତର ରହସ୍ୟ-ମୀମାଂସା ନିମିତ୍ତ ଚେଷ୍ଟା କରୁଛୁଁ । ଆମେ ଏହି ଜିଜ୍ଞାସା, ଏହି ଅନୁସନ୍ଧାନ-ପ୍ରବୃତ୍ତିକୁ ବନ୍ଦ କରି ରଖିପାରୁ ନାହିଁ; କିନ୍ତୁ ଆମମାନଙ୍କର ଏହା ଜାଣିରଖିବା ଉଚିତ ଯେ ଜ୍ଞାନ ଲବ୍ଧବ୍ୟ ବସ୍ତୁ ନୁହେଁ—କେତେ ପଦ ଅଗ୍ରସର ହେବା ମାତ୍ରେ ହିଁ ଅନାଦି ଅନନ୍ତ କାଳର ପ୍ରାଚୀର ଆସି ମଧ୍ୟସ୍ଥଳରେ ବ୍ୟବଧାନରୂପେ ଦଣ୍ଡାୟମାନ ହୁଏ, ଆମେମାନେ ଏହାକୁ ଲଙ୍ଘନ କରିପାରୁ ନାହିଁ । କେତେକ ପାଦ ଅଗ୍ରସର ହେବା ମାତ୍ରେ ହିଁ ଅସୀମ ଦେଶର ବ୍ୟବଧାନ ଆସି ଉପସ୍ଥିତ ହୁଏ—ଏହାକୁ ଅତିକ୍ରମ କରି ହୁଏ ନାହିଁ; ସବୁ କିଛି ଅନତିକ୍ରମଣୀୟଭାବେ କାର୍ଯ୍ୟକାରଣସ୍ୱରୂପ ପ୍ରାଚୀରରେ

ସୀମାବଦ୍ଧ । ଆମେମାନେ ଏଗୁଡ଼ିକୁ ଛାଡ଼ି ଯାଇପାରୁ ନାହିଁ । ତଥାପି ଆମେ ଚେଷ୍ଟା କରିଥାଉ । ଚେଷ୍ଟା ଆମମାନଙ୍କୁ କରିବାକୁ ହିଁ ହୁଏ—ଏହା ହିଁ ମାୟା ।

ପ୍ରତି ନିଃଶ୍ୱାସରେ, ହୃଦୟର ପ୍ରତି ସ୍ପନ୍ଦନରେ, ଆମମାନଙ୍କର ପ୍ରତ୍ୟେକ ଗତିରେ ଆମେ ବିବେଚନା କରୁ—ଆମେ ସ୍ୱାଧୀନ; ପୁଣି ସେହି ମୁହୂର୍ତ୍ତିରେ ହିଁ ଆମେମାନେ ଦେଖିବାକୁ ପାଉ, ଆମେମାନେ ସ୍ୱାଧୀନ ନୋହୁଁ । କ୍ରୀତଦାସ—ପ୍ରକୃତିର କ୍ରୀତଦାସ ଆମେମାନେ; ଶରୀର, ମନ, ସବୁବିଧ ଚିନ୍ତା ଏବଂ ସକଳ ଭାବରେ ହିଁ ପ୍ରକୃତିର କ୍ରୀତଦାସ ଆମେମାନେ । ଏହା ହିଁ ମାୟା ।

ଏପରି ଜନନୀ ନାହିଁ, ଯେ ତାହାର ସନ୍ତାନକୁ ଅସାଧାରଣ ପ୍ରତିଭାବାନ୍ ଶିଶୁ ବୋଲି ବିଶ୍ୱାସ ନ କରେ । ସେ ସେହି ପିଲଟିକୁ ନେଇ ମାତିଥାଏ—ସେହି ପିଲଟି ଉପରେ ତାହାର ସମୁଦାୟ ପ୍ରାଣ ଜଡ଼ିତ ଥାଏ । ପିଲଟି ବଡ଼ ହେଲା, ହୁଏତ ମଦୁଆ, ପଶୁତୁଲ୍ୟ ହୋଇ ଉଠିଲା—ଜନନୀ ପ୍ରତି ଅସଦ୍ ବ୍ୟବହାର କରିବାକୁ ଲାଗିଲା । ଯେତେ ଏହି ଅସଦ୍ ବ୍ୟବହାର ବଢ଼ିଥାଏ, ମା'ର ସ୍ନେହ ମଧ୍ୟ ସେହି ପରିମାଣରେ ବଢ଼ିଚାଲିଥାଏ । ଜଗତ୍ ଏହାକୁ ମା'ର ନିଃସ୍ୱାର୍ଥ ସ୍ନେହ ବୋଲି ଖୁବ୍ ପ୍ରଶଂସା କରେ—ସେମାନେ ସ୍ୱପ୍ନରେ ମଧ୍ୟ ଭାବନ୍ତି ନାହିଁ ଯେ, ସେହି ଜନନୀ ଜନ୍ମାବଧି ଗୋଟିଏ କ୍ରୀତଦାସୀ ମାତ୍ର—ସେ ଭଲ ନ ପାଇ ରହିପାରିବ ନାହିଁ । ସହସ୍ର ବାର ତାହାର ଇଚ୍ଛା ହୁଏ, ସେ ଏହା ତ୍ୟାଗ କରିବ, କିନ୍ତୁ ସେ ପାରେ ନାହିଁ । ସେ କେତେଗୁଡ଼ିଏ ପୁଷ୍ପ ଏହାର ଉପରେ ଥାପି ଏହାକୁ ଆଶ୍ଚର୍ଯ୍ୟ ଭଲପାଇବା ବୋଲି ବ୍ୟାଖ୍ୟା କରେ । ଏହା ହିଁ ମାୟା ।

ଜଗତ୍‌ରେ ଆମେମାନେ ସମସ୍ତେ ହିଁ ଏହିଭଳି । ନାରଦ ଦିନେ ଶ୍ରୀକୃଷ୍ଣଙ୍କୁ କହିଲେ, 'ପ୍ରଭୁ, ତୁମର ମାୟାର କଅଣ ରୂପ, ତାହା ଦେଖାନ୍ତୁ ।' କିଛି ଦିନ ଗତ ହୋଇଗଲା । କୃଷ୍ଣ ନାରଦଙ୍କୁ ସାଙ୍ଗରେ ନେଇ ଗୋଟିଏ ଅରଣ୍ୟ ଭିତରକୁ ଗଲେ—ଅନେକ ଦୂର ଯାଇ କୃଷ୍ଣ କହିଲେ, 'ନାରଦ, ମୁଁ ଭାରି ତୃଷାର୍ତ୍ତ, କିଛି ପାଣି ଆଣି ଦେଇପାରିବ ?' ନାରଦ କହିଲେ, 'ପ୍ରଭୁ, କିଛିକ୍ଷଣ ଅପେକ୍ଷା କରନ୍ତୁ, ମୁଁ ପାଣି ନେଇ ଆସୁଛି ।' ଏହା କହି ନାରଦ ଚାଲିଗଲେ । ସେହି ସ୍ଥାନଠାରୁ କିଛି ଦୂରରେ ଗୋଟିଏ ଗ୍ରାମ ଥିଲା, ଜଳ ଅନୁସନ୍ଧାନ କରି କରି ନାରଦ ସେହି ଗ୍ରାମରେ ଯାଇ ପହଞ୍ଚିଲେ । ସେ ଗୋଟିଏ ଦ୍ୱାରରେ ଯାଇ କରାଘାତ କଲେ, ଦ୍ୱାର ଉନ୍ମୁକ୍ତ ହେଲା, ଗୋଟିଏ ପରମା ସୁନ୍ଦରୀ କନ୍ୟା ତାହାଙ୍କ ସମ୍ମୁଖକୁ ଆସିଲା । ତାକୁ ଦେଖି ନାରଦ ସବୁକଥା ଭୁଲିଗଲେ । ପ୍ରଭୁ ଯେ ତାଙ୍କ ପାଇଁ ଅପେକ୍ଷା କରିଛନ୍ତି, ସେ ଯେ ତୃଷାର୍ତ୍ତ ଥିଲେ, ହୁଏତ ତୃଷାରେ ତାଙ୍କର ପ୍ରାଣବିୟୋଗର ଉପକ୍ରମ ହୋଇଛି, ନାରଦ ଏସବୁ କଥା ଭୁଲିଗଲେ । ସେ ସବୁ ଭୁଲି ସେହି କନ୍ୟାଟି ସହିତ କଥାବାର୍ତ୍ତା କହିବାକୁ ଲାଗିଲେ । କ୍ରମେ ପରସ୍ପର ମଧ୍ୟରେ ପ୍ରଣୟର ସଞ୍ଚାର ହେଲା । ତା'ପରେ ନାରଦ ସେହି କନ୍ୟାଙ୍କ ପିତାଙ୍କ ନିକଟକୁ ଯାଇ ସେହି କନ୍ୟାପ୍ରାପ୍ତି ନିମିତ୍ତ ପ୍ରାର୍ଥନା

କଲେ । ବିବାହ ହୋଇଗଲା । ସେମାନେ ସେହି ଗ୍ରାମରେ ବାସ କରିବାକୁ ଲାଗିଲେ । କ୍ରମେ ସେମାନଙ୍କର ସନ୍ତାନସନ୍ତତି ହେଲେ । ଏହିରୂପେ ବାର ବର୍ଷ ଅତିବାହିତ ହେଲା । ତାଙ୍କ ଶ୍ୱଶୁରଙ୍କର ମୃତ୍ୟୁ ଘଟିଲା—ସେ ଶ୍ୱଶୁରଙ୍କ ସମ୍ପତ୍ତିର ଉତ୍ତରାଧିକାରୀ ହେଲେ ଏବଂ ପୁତ୍ର, କଳତ୍ର, ଭୂମି, ପଶୁ, ଗୃହ, ସମ୍ପତ୍ତି ପ୍ରଭୃତି ସହି ବେଶ୍ ସୁଖ-ସ୍ୱାଚ୍ଛନ୍ଦ୍ୟରେ କାଳାତିପାତ କରିବାକୁ ଲାଗିଲେ । ଅନ୍ତତଃ ତାଙ୍କୁ ବୋଧହେଲା, ସେ ବେଶ୍ ସୁଖ-ସ୍ୱାଚ୍ଛନ୍ଦ୍ୟରେ ଅଛନ୍ତି । ଏହି ସମୟରେ ସେହି ଦେଶରେ ବନ୍ୟା ହେଲା । ଦିନେ ବର୍ଷାକାଳରେ ନଦୀ କୂଳ ଲଙ୍ଘନ କରି ଉଭୟ ତଟ ପ୍ଲାବିତ କଲା ଏବଂ ସମଗ୍ର ଗ୍ରାମଟି ଜଳମଗ୍ନ ହେଲା । ବହୁ ଘରଦ୍ୱାର ଭୁଷୁଡ଼ି ପଡ଼ିଲା—ମନୁଷ୍ୟ, ପଶୁ ସବୁ ଭାସିଯାଇ ବୁଡ଼ିଗଲେ । ସ୍ରୋତର ବେଗରେ ସବୁ ଭାସିଯିବାକୁ ଲାଗିଲା । ନାରଦଙ୍କୁ ମଧ୍ୟ ପଳାଇ ଆସିବାକୁ ପଡ଼ିଲା । ସେ ଗୋଟିଏ ହାତରେ ସ୍ତ୍ରୀକୁ ଅନ୍ୟ ହସ୍ତରେ ଦୁଇଟି ଛୁଆଙ୍କୁ ଧରିଲେ ଏବଂ ଆଉ ଗୋଟିଏ ଛୁଆକୁ କାନ୍ଧରେ ବସାଇ ଏହି ଭୟଙ୍କର ନଦୀକୁ ଚାଲି ଚାଲି ପାର ହେବା ପାଇଁ ଚେଷ୍ଟା କରିବାକୁ ଲାଗିଲେ ।

କିଛି ଦୂର ଅଗ୍ରସର ହେବା ପରେ ସ୍ରୋତର ବେଗ ଅତ୍ୟନ୍ତ ପ୍ରଖର ବୋଧ ହେଲା । ନାରଦ ସ୍କନ୍ଧସ୍ଥ ଶିଶୁଟିକୁ କୌଣସିପ୍ରକାରେ ରଖିପାରିଲେ ନାହିଁ; ସେ ପଡ଼ିଯାଇ ସ୍ରୋତରେ ଭାସିଗଲା । ନୈରାଶ୍ୟରେ ଓ ଦୁଃଖରେ ନାରଦ ଚିତ୍କାର କରି ଉଠିଲେ । ସେହି ଶିଶୁଟିକୁ ରକ୍ଷା କରିବାକୁ ଯିବାରୁ ହାତରେ ଧରିଥିବା ଦୁଇଟି ଛୁଆ ହାତରୁ ଖସି ଯାଇ ବୁଡ଼ି ମଲେ । ଅବଶେଷରେ ନିଜର ପତ୍ନୀ, ଯାହାଙ୍କୁ ସେ ନିଜର ଯେତେ ଶକ୍ତି ଥିଲା ସମସ୍ତ ଶକ୍ତି ପ୍ରୟୋଗ କରି ରକ୍ଷା କରିଥିଲେ, ସ୍ରୋତର ବେଗରେ ତାଙ୍କୁ ମଧ୍ୟ ହାତଛଡ଼ା କରିବାକୁ ପଡ଼ିଲା । ଆଉ ସେ କୂଳରେ ନିକ୍ଷିପ୍ତ ହୋଇ ଅତି କାତର ସ୍ୱରରେ ବିଳାପ କରିବାକୁ ଲାଗିଲେ । ଏହି ସମୟରେ କିଏ ଜଣେ ତାଙ୍କର ପୃଷ୍ଠଦେଶରେ ମୃଦୁ ଆଘାତ କଲେ ଏବଂ ସେ କହିଲେ, 'ବତ୍ସ, କାହିଁ, ପାଣି କାହିଁ ? ତୁମେ ପାଣି ଆଣିବାକୁ ଯାଇଥିଲ, ମୁଁ ତୁମ ନିମିତ୍ତ ଅପେକ୍ଷା କରି ବସିଛି । ତୁମେ ଅଧଘଣ୍ଟାଏ ହେଲା ଗଲଣି ।' ଅଧଘଣ୍ଟାଏ ! ନାରଦଙ୍କ ମନରେ ବାର ବର୍ଷ ଅତିକ୍ରାନ୍ତ ହୋଇ ଯାଇଥିଲା । ଆଉ ଅଧଘଣ୍ଟା ମଧ୍ୟରେ ଏହି ସମସ୍ତ ଦୃଶ୍ୟ ତାଙ୍କ ମନ ଭିତରେ ଚାଲିଥିଲା—ଏହା ହିଁ ମାୟା ।

କୌଣସି ନା କୌଣସି ରୂପରେ ଆମେ ଏହି ମାୟା ଭିତରେ ରହିଛୁ । ଏ ବିଷୟ ବୁଝିବା ଅତି କଠିନ । ବିଷୟଟି ମଧ୍ୟ ଅତି ଜଟିଳ । ଏହାର ତାତ୍ପର୍ଯ୍ୟ କ'ଣ ? ତାତ୍ପର୍ଯ୍ୟ ଏହି, ଘଟଣାଟି ବଡ଼ ଭୟାନକ—ସବୁ ଦେଶରେ ମହାପୁରୁଷଗଣ ଏହି ତତ୍ତ୍ୱ ପ୍ରଚାର କରିଛନ୍ତି; କିନ୍ତୁ ଖୁବ୍ ଅଳ୍ପ ଲୋକେ ଏହା ବିଶ୍ୱାସ କରିଛନ୍ତି । ତାହାର କାରଣ ହେଉଛି, ନିଜେ ନ ଭୋଗିଲେ, ନିଜେ ନ ଠକିଲେ ଆମେ ବିଶ୍ୱାସ କରିପାରୁ ନାହିଁ । ବାସ୍ତବିକ କହିବାକୁ ଗଲେ—ସବୁକିଛି ହିଁ ବୃଥା—ସମୁଦାୟ ହିଁ ମିଥ୍ୟା ।

ସର୍ବସଂହାରକ କାଳ ଆସି ସମସ୍ତଙ୍କୁ ଗ୍ରାସ କରେ, ଆଉ କିଛି ହେଲେ ଅବଶିଷ୍ଟ ରଖେ ନାହିଁ । ସେ ପାପକୁ ଗ୍ରାସ କରେ, ପାପୀକୁ ଗ୍ରାସ କରେ, ରାଜାକୁ, ପ୍ରଜାକୁ, ସୁନ୍ଦର, କୁତ୍ସିତ ସମସ୍ତଙ୍କୁ ଗ୍ରାସ କରେ, କାହାକୁ ହେଲେ ଛାଡ଼େ ନାହିଁ । ସମସ୍ତେ ସେହି ଏକ ଚରମ ଗତି, ବିନାଶ ଆଡ଼କୁ ଅଗ୍ରସର ହେଉଛନ୍ତି । ଆମ-ମାନଙ୍କର ଜ୍ଞାନ, ଶିଳ୍ପ, ବିଜ୍ଞାନ, ସବୁ ହିଁ ସେହି ଏକ ଅନିବାର୍ଯ୍ୟ ଗତି ମୃତ୍ୟୁ ଆଡ଼କୁ ଅଗ୍ରସର ହେଉଛି । କେହି ଏ ସ୍ରୋତର ଗତି ରୋଧ କରିବାକୁ ସମର୍ଥ ନୁହେଁ; କେହି ହେଲେ ଏହି ବିନାଶାଭିମୁଖୀ ଗତିକୁ ମୁହୂର୍ତ୍ତିକ ପାଇଁ ସୁଦ୍ଧା ରୋଧ କରି ରଖିପାରିବ ନାହିଁ । ଆମେମାନେ ଏହାକୁ ଭୁଲିଯାଇ ରହିବାର ଚେଷ୍ଟା କରିପାରୁ, ଯେପରି କୌଣସି ଦେଶରେ ମହାମାରୀ ଉପସ୍ଥିତ ହେଲେ ମଦ୍ୟପାନ, ନୃତ୍ୟ ଏବଂ ଅନ୍ୟାନ୍ୟ ବୃଥା ଆମୋଦପ୍ରମୋଦରେ ଲୋକେ ସବୁ ଭୁଲିଯିବାକୁ ଚେଷ୍ଟା କରି ପକ୍ଷାଘାତଗ୍ରସ୍ତ ପରି ଗତିଶକ୍ତିରହିତ ହୋଇଥାଆନ୍ତି । ଆମେମାନେ ଏହିଭଳି ଏହି ମୃତ୍ୟୁଚିନ୍ତାକୁ ଭୁଲିବା ନିମିତ୍ତ ଚେଷ୍ଟା କରୁଛୁ—ସର୍ବବିଧ ଇନ୍ଦ୍ରିୟସୁଖଦ୍ୱାରା ଭୁଲି ରହିବାକୁ ଚେଷ୍ଟା କରୁଛୁଁ, କିନ୍ତୁ ସେଥିରେ ମୃତ୍ୟୁର ନିବୃତ୍ତି ହୁଏ ନାହିଁ ।

ଲୋକଙ୍କ ସମ୍ମୁଖରେ ଦୁଇଟି ପଥ ଅଛି । ତନ୍ମଧ୍ୟରୁ ଗୋଟିଏ ପଥକୁ ସମସ୍ତେ ଜାଣନ୍ତି; ତାହା ଏହି—ଜଗତରେ ଦୁଃଖ ଅଛି, କଷ୍ଟ ଅଛି; ସବୁ ସତ୍ୟ, କିନ୍ତୁ ଏ ସମ୍ବନ୍ଧରେ ମୋଟେ ଭାବ ନାହିଁ । 'ଯାବଜ୍ଜୀବେତ୍ ସୁଖଂ ଜୀବେତ୍, ଋଣଂ କୃତ୍ୱା ଘୃତଂ ପିବେତ୍ ।' ଦୁଃଖ ଅଛି ସତ୍ୟ; ସେଥିପ୍ରତି ନଜର ଦିଅ ନାହିଁ । ଯେଉଁ ଟିକିଏ ଅଧେ ସୁଖ ମିଳୁଛି, ସେତକ ଭୋଗ କରିନିଅ; ଏହି ସଂସାରଚିତ୍ରର ଛାୟାମୟ ଅଂଶ ଆଡ଼କୁ ଲକ୍ଷ୍ୟ କର ନାହିଁ—କେବଳ ଆଲୋକମୟ ଅଂଶ ଆଡ଼କୁ ଲକ୍ଷ୍ୟ କର । ଏହି ମତରେ କିଛି ସତ୍ୟ ଅଛି ଠିକ୍; କିନ୍ତୁ ଏଥିରେ ସାଂଘାତିକ ବିପଦର ଆଶଙ୍କା ମଧ୍ୟ ରହିଛି । ଏହା ମଧ୍ୟରେ ସତ୍ୟ ଏହି ଟିକିକ ଯେ, ଏହା ଆମମାନଙ୍କୁ କାର୍ଯ୍ୟରେ ପ୍ରବୃତ୍ତ ରଖେ । ଆଶା ଏବଂ ଏହିଭଳି ଗୋଟିଏ ପ୍ରତ୍ୟକ୍ଷ ଆଦର୍ଶ ଆମମାନଙ୍କୁ କାର୍ଯ୍ୟରେ ପ୍ରବୃତ୍ତ ଓ ଉତ୍ସାହିତ କରେ ଠିକ୍; କିନ୍ତୁ ଏଥିରେ ଏହି ବିପଦ ଅଛି ଯେ, ଶେଷରେ ହତାଶ ହୋଇ ସବୁ ଚେଷ୍ଟା ଛାଡ଼ିଦେବାକୁ ହୁଏ । ଯେଉଁମାନେ କହନ୍ତି—'ସଂସାରକୁ ଯେଉଁ ଭଳି ଦେଖୁଛ, ସେହିଭଳି ଗ୍ରହଣ କର; ଯେତେଦୂର ସ୍ୱଚ୍ଛନ୍ଦରେ ରହିପାରୁଛ ରହ, ଦୁଃଖ କଷ୍ଟ ଯାହା ଆସୁଛି, ସେଥିରେ ସନ୍ତୁଷ୍ଟ ରହ; ଆଘାତ ପାଇଲେ କହ—ଏହା ଆଘାତ ନୁହେଁ, ପୁଷ୍ପବୃଷ୍ଟି; ଦାସବତ୍ ପରିଚାଳିତ ହେଲେ ମଧ୍ୟ କହ—ମୁଁ ମୁକ୍ତ, ମୁଁ ସ୍ୱାଧୀନ; ଅନ୍ୟ ପାଖରେ ଏବଂ ନିଜ ପାଖରେ ସର୍ବଦା ମିଥ୍ୟା କଥା କହ, କାରଣ ସଂସାରରେ ରହିବାର, ଜୀବନଧାରଣ କରିବାର ଏହା ହିଁ ଏକମାତ୍ର ଉପାୟ'—ପରିଶେଷରେ ସେମାନେ ବାଧ୍ୟ ହୋଇ ସବୁ ଚେଷ୍ଟା ଛାଡ଼ିଦିଅନ୍ତି । ଏହାକୁ ହିଁ ବାସ୍ତବ ସାଂସାରିକ ଜ୍ଞାନ କୁହାଯାଏ ଏବଂ ଊନବିଂଶ ଶତାବ୍ଦୀରେ ଏହି ଜ୍ଞାନ ଯେତେ ସାଧାରଣ, କୌଣସିକାଳେ ଏହା ଏତେ ଦୂର ନ ଥିଲା; ତାହାର କାରଣ—ଲୋକ

ବର୍ତ୍ତମାନ ଯେପରି ତୀବ୍ର ଆଘାତ ପାଉଛନ୍ତି, କୌଣସି ସମୟରେ ଏତେ ତୀବ୍ର ଆଘାତ ପାଉ ନ ଥିଲେ, ପ୍ରତିଦ୍ୱନ୍ଦ୍ୱିତା ମଧ୍ୟ ଏତେ ଅଧିକ ତୀବ୍ର କୌଣସି ସମୟରେ ନଥିଲା । ମନୁଷ୍ୟ ବର୍ତ୍ତମାନ ତାହାର ଅନ୍ୟ ଭାଇପ୍ରତି ଯେତେ ନିଷ୍ଠୁର, ଏତେ ନିଷ୍ଠୁର ସେ ଆଉ କେବେ ନ ଥିଲା, ଏହି କାରଣରୁ ହିଁ ବର୍ତ୍ତମାନ ଏଭଳି ସାନ୍ତ୍ୱନା ଦିଆଯାଇଥାଏ । ଏବେ ଏହି ଉପଦେଶ ହିଁ ଅଧିକ ପରିମାଣରେ ଦିଆଯାଉଛି; କିନ୍ତୁ ଏହି ଉପଦେଶରେ କୌଣସି ଫଳ ହେଉ ନାହିଁ; କିମ୍ବା ପୂର୍ବେ ମଧ୍ୟ କେବେହେଲେ କୌଣସି ଫଳ ହୋଇ ନାହିଁ । ସଢ଼ିପଚି ଯାଇଥିବା ଶବକୁ ଫୁଲ୍ ଭିତରେ ଲୁଚେଇ ରଖାଯାଇପାରେ ନାହିଁ—ଏହା ଅସମ୍ଭବ; ଦିନେ ଏହି ଫୁଲଗୁଡ଼ାକ ନଷ୍ଟ ହୋଇଯିବ, ସେତେ-ବେଳେ ସେହି ଶବ ପୂର୍ବାପେକ୍ଷା ଆହୁରି ବୀଭତ୍ସରୂପେ ପ୍ରତୀତ ହେବ । ଆମମାନଙ୍କର ସମଗ୍ର ଜୀବନ ମଧ୍ୟ ଏହି ପ୍ରକାର । ଆମେମାନେ ଆମମାନଙ୍କର ପୁରାତନ ପଚ୍ଚା ଘା ସୁନାର କନାରେ ଆଚ୍ଛାଦନ କରି ରଖିବାର ଚେଷ୍ଟା କରିପାରୁ; କିନ୍ତୁ ଦିନ ଆସିବ ଯେତେବେଳେ ସେହି ସୁନାର କନା ଖସିପଡ଼ିବ, ଆଉ ସେହି କ୍ଷତ ଅତି ବୀଭତ୍ସଭାବେ ନୟନ ସମ୍ମୁଖରେ ପ୍ରକାଶିତ ହେବ ।

ତେବେ କଅଣ କୌଣସି ଆଶା ନାହିଁ ? ଏ କଥା ସତ୍ୟ ଯେ ଆମେମାନେ ସମସ୍ତେ ମାୟାର ଦାସ, ଆମେମାନେ ସମସ୍ତେ ମାୟାରେ ହିଁ ଜନ୍ମଗ୍ରହଣ କରିଛୁଁ, ମାୟାରେ ହିଁ ଆମେମାନେ ଜୀବିତ । ତାହାହେଲେ କଅଣ କିଛି ଉପାୟ ନାହିଁ, କିଛି ଆଶା ନାହିଁ ? ଆମେମାନେ ସମସ୍ତେ ଯେ ଅତିଦୁର୍ଦ୍ଦଶାପନ୍ନ, ଏହି ଜଗତ୍ ଯେ ବାସ୍ତବିକ ଗୋଟିଏ କାରାଗାର; ଆମମାନଙ୍କର ତଥାକଥିତ ପୂର୍ବପ୍ରାପ୍ତ ମହିମାର ଛଟା ଗୋଟିଏ କାରାଗୃହ ମାତ୍ର, ଆମମାନଙ୍କର ବୁଦ୍ଧି ଏବଂ ମନ ମଧ୍ୟ କାରାସ୍ୱରୂପ, ଏହା ଶତ ଶତ ଯୁଗ ଧରି ଲୋକେ ଜାଣିଛନ୍ତି । ମନୁଷ୍ୟ ଯାହା କହୁ ନା କାହିଁକି, ଏପରି କୌଣସି ଲୋକ ନାହିଁ, ଯେ କୌଣସି ନା କୌଣସି ସମୟରେ ଏହା ପ୍ରାଣେ ପ୍ରାଣେ ଅନୁଭବ କରି ନାହିଁ । ବୃଦ୍ଧମାନେ ଏହାକୁ ଆହୁରି ତୀବ୍ରଭାବେ ଅନୁଭବ କରିଥାଆନ୍ତି, କାରଣ ସେମାନଙ୍କର ଜୀବନସାରା ସଞ୍ଚିତ ଅଭିଜ୍ଞତା ରହିଛି; ପ୍ରକୃତିର ମିଥ୍ୟା ଭାଷା ସେମାନଙ୍କୁ ଅଧିକ ଠକାଇପାରେ ନାହିଁ । ଏହି ବନ୍ଧନକୁ ଅତିକ୍ରମ କରିବାର ଉପାୟ କ'ଣ ? ଏହି ବନ୍ଧନଗୁଡ଼ିକୁ ଅତିକ୍ରମ କରିବାର କଅଣ କିଛି ଉପାୟ ନାହିଁ ? ଆମେମାନେ ଦେଖିଛୁଁ, ଏହି ଭୟଙ୍କର ବିପଦ—ଏହି ବନ୍ଧନ ଆମମାନଙ୍କର ସମ୍ମୁଖରେ, ପଶ୍ଚାତରେ, ସର୍ବତ୍ର ରହିଥିଲେ ମଧ୍ୟ, ଏହି ଦୁଃଖକଷ୍ଟ ମଧ୍ୟରେ, ଏହି ଜଗତରେ, ଯେଉଁଠାରେ ଜୀବନ ଓ ମୃତ୍ୟୁ ଏକାର୍ଥିକ, ଏଠାରେ ମଧ୍ୟ ଏକ ମହାବାଣୀ ସବୁ ଯୁଗରେ ସବୁ ଦେଶରେ ପ୍ରତ୍ୟେକ ବ୍ୟକ୍ତିର ହୃଦୟାଭ୍ୟନ୍ତର ମଧ୍ୟଦେଇ ଯେପରି ଉତ୍ଥିତ ହେଉଛି—

'ଦୈବୀ ହ୍ୟେଷା ଗୁଣମୟୀ ମମ ମାୟା ଦୁରତ୍ୟୟା ।
ମାମେବ ଯେ ପ୍ରପଦ୍ୟନ୍ତେ ମାୟାମେତାଂ ତରନ୍ତି ତେ ।'*

—ମୋର ଏହି ଦୈବୀ ତ୍ରିଗୁଣମୟୀ ମାୟାକୁ ଅତି କଷ୍ଟରେ ଅତିକ୍ରମ କରାଯାଏ । ଯେଉଁମାନେ ମୋର ଶରଣାପନ୍ନ ହୁଅନ୍ତି, ସେହିମାନେ ଏହି ମାୟାକୁ ଅତିକ୍ରମ କରନ୍ତି । 'ହେ ପରିଶ୍ରାନ୍ତ ଓ ଭାରାକ୍ରାନ୍ତ ମନୁଷ୍ୟଗଣ ! ଆସ, ମୁଁ ତୁମମାନଙ୍କୁ ବିଶ୍ରାମ ଓ ଶାନ୍ତି ଦେବି ।'** ଏହି ବାଣୀ ହିଁ ଆମମାନଙ୍କୁ କ୍ରମାଗତ ସମ୍ମୁଖ ଦିଗକୁ ଅଗ୍ରସର କରାଉଛି । ମନୁଷ୍ୟ ଏହା ଶୁଣିଛି ଏବଂ ଅନନ୍ତ ଯୁଗ ଧରି ଏହା ଶୁଣୁଛି । ଯେତେବେଳେ ମନୁଷ୍ୟର ସବୁ ସ୍ଖଳିଗଲା ଭଳି ବୋଧହୁଏ, ଯେତେବେଳେ ଆଶା ଭାଙ୍ଗିଯାଏ, ଯେତେବେଳେ ନିଜ ଶକ୍ତି ଉପରେ ମନୁଷ୍ୟର ବିଶ୍ୱାସ ନଷ୍ଟ ହୋଇଯାଏ, ଯେତେବେଳେ ତାହାର ଯଥାସର୍ବସ୍ୱ ହାତଛଡ଼ା ହୋଇଯାଏ ଏବଂ ଜୀବନ ଗୋଟିଏ ଭଗ୍ନସ୍ତୂପରେ ପରିଣତ ହୁଏ, ସେତେବେଳେ ସେ ଏହି ବାଣୀ ଶୁଣିବାକୁ ପାଏ—ଏବଂ ଏହା ହିଁ ଧର୍ମ ।

ଅତଏବ ଗୋଟିଏ ଦିଗରେ ଏହି ଅଭୟ ବାଣୀ, ଏହି ଆଶାପ୍ରଦ ବାକ୍ୟ ଯେ ଏ ସବୁ କିଛି ନୁହେଁ, ସମୁଦାୟ ମାୟା, ଏହା ଉପଲବ୍ଧି କର; କିନ୍ତୁ ଏହା ସହିତ ଗୋଟିଏ ଆଶାର ବାଣୀ ହେଉଛି, 'ଏହି ମାୟାର ବାହାରକୁ ଯିବାର ବାଟ ଅଛି ।' ଅନ୍ୟ ଦିଗରେ ସଂସାରୀ ଲୋକେ କହନ୍ତି, 'ଧର୍ମ ଦର୍ଶନ ଏସବୁ ବାଜେ କଥାରେ ମୁଣ୍ଡ ଖେଳାଇବା ଉଚିତ ନୁହେଁ । ଜଗତରେ ବାସ କର; ଏହି ଜଗତ୍ ଘୋର ଅଶୁଭପୂର୍ଣ୍ଣ ସତ, କିନ୍ତୁ ଯେତେଦୂର ପାର, ଏହାର ସଦ୍‌ବ୍ୟବହାର କରିନିଅ ।' ସ୍ପଷ୍ଟ କଥାରେ ଏହାର ଅର୍ଥ ଏହି ଯେ, ଭଣ୍ଡଭାବରେ ଦିବାରାତ୍ର ମିଥ୍ୟାଚାର ଓ ପ୍ରତାରଣାପୂର୍ଣ୍ଣ ଜୀବନଯାପନ କର—ତୁମର କ୍ଷତଗୁଡ଼ିକୁ ଯେତେଦୂର ପାର ଘୋଡ଼ାଇ ରଖ । ତାଲି ଉପରେ ତାଲି ଦିଅ, ଶେଷରେ ଅସଲ ଜିନିଷଟି ନଷ୍ଟ ହୋଇଯିବ, ଆଉ ତୁମେ କେବଳ ଗୋଟିଏ 'ଯୋଡ଼ା ତାଲିର' ସମଷ୍ଟି ହୋଇ ରହିବ । ଏହାକୁ ହିଁ କୁହାଯାଏ ସାଂସାରିକ ଜୀବନ । ଯେଉଁମାନେ ଏହିଭଳି ଭାବେ ଯୋଡ଼ା-ଯୋଡ଼ି କରି ତାଲି ପକାଇବାରେ ସନ୍ତୁଷ୍ଟ, ସେମାନେ କଦାପି ଧର୍ମଲାଭ କରିପାରିବେ ନାହିଁ । ଯେତେବେଳେ ଜୀବନର ବର୍ତ୍ତମାନ ଅବସ୍ଥାରେ ଭୟାନକ ଅଶାନ୍ତି ଉପସ୍ଥିତ ହୁଏ, ଯେତେବେଳେ ନିଜ ଜୀବନ ଉପରେ ଆଉ ମମତା ରହେ ନାହିଁ, ଯେତେବେଳେ ଏହିଭଳି ତାଲି ଦେବା ଉପରେ ଅତିଶୟ ଘୃଣା ଜାତ

---

* ଗୀତା, ୭।୧୪

** St. Matthew, Ch. II, 28

ହୁଏ, ଯେତେବେଳେ ମିଥ୍ୟା ଓ ପ୍ରବଞ୍ଚନା ଉପରେ ଅତ୍ୟନ୍ତ ବିତୃଷ୍ଣା ଜନ୍ମେ, ସେତେବେଳେ ଯାଇଁ ଧର୍ମର ଆରମ୍ଭ ହୁଏ । ସେ କେବଳ ପ୍ରକୃତ ଧାର୍ମିକ ହେବାର ଯୋଗ୍ୟ, ଯେ କି—ବୁଦ୍ଧଦେବ ଯେପରି ବୋଧିବୃକ୍ଷ ତଳେ ବସି ଦୃଢ଼ ସ୍ୱରରେ ଯାହା କହିଥିଲେ, ତାହା ପ୍ରାଣେ ପ୍ରାଣେ କହିପାରେ । ଯେତେବେଳେ ଏହି ସାଂସାରିକତାର ଭାବ ତାଙ୍କ ନିକଟରେ ଆବିର୍ଭୂତ ହୋଇଥିଲା, ସେ ସ୍ପଷ୍ଟ ବୁଝିପାରିଥିଲେ ଯେ—ଏ ଜୀବନଟା ଏକାବେଳକେ ଭୁଲ, ଅଥଚ ଏଥିରୁ ବାହାରି ଯିବାର କୌଣସି ପଥ ସେ ଆବିଷ୍କାର କରିପାରି ନ ଥିଲେ । ସତ୍ୟ ନିମିତ୍ତ ଅନୁସନ୍ଧାନ ପରିତ୍ୟାଗ କର, ସଂସାରକୁ ଫେରିଯାଇ ପୂର୍ବପରି ପ୍ରତାରଣାପୂର୍ଣ୍ଣ ଜୀବନ ଯାପନ କର, ସବୁ ଜିନିଷକୁ ତାହାର ଭୁଲ ନାମ ଦେଇ ଡାକ, ନିଜ ପାଖରେ ଏବଂ ଅନ୍ୟ ସମସ୍ତଙ୍କ ପାଖରେ ଦିନରାତି ମିଥ୍ୟା କହ—ଏହିଭଳି ପ୍ରଲୋଭନ ତାଙ୍କ ନିକଟକୁ ଥରକ ପାଇଁ ଆସିଥିଲା । କିନ୍ତୁ ସେହି ମହାବୀର ଅତୁଳ ବିକ୍ରମରେ ତତ୍‌କ୍ଷଣାତ୍ ଏହାକୁ ଜୟ କରିପାରିଥିଲେ । ସେ କହିଥିଲେ, 'କେବଳ ଖାଇ ଶୋଇ ମୂର୍ଖଙ୍କ ପରି ଜୀବନଯାପନ ଅପେକ୍ଷା ମୃତ୍ୟୁ ଶ୍ରେୟଃ; ପରାଜିତ ହୋଇ ଜୀବନ ଯାପନ କରିବାଠାରୁ ଯୁଦ୍ଧକ୍ଷେତ୍ରରେ ମରିବା ଶ୍ରେୟଃ ।' ଏହା ହିଁ ଧର୍ମର ଭିତ୍ତି । ଯେତେବେଳେ ମନୁଷ୍ୟ ଏହି ଭିତ୍ତି ଉପରେ ଦଣ୍ଡାୟମାନ ହୁଏ, ସେତେବେଳେ ସେ ସତ୍ୟ ଲାଭକରିବା ପଥରେ ଗଲେ, ଈଶ୍ୱର-ଲାଭ କରିବା ପଥରେ ଅଗ୍ରସର ହୁଏ ବୋଲି ବୁଝିବାକୁ ହେବ । ଧାର୍ମିକ ହେବା ନିମିତ୍ତ ପ୍ରଥମେ ଏହି ଦୃଢ଼ ପ୍ରତିଜ୍ଞା ଆବଶ୍ୟକ । ମୁଁ ନିଜର ବାଟ ନିଜେ ଖୋଜି ନେବି । ସତ୍ୟକୁ ଜାଣିବି ଅଥବା ଏହି ଚେଷ୍ଟାରେ ଜୀବନ ଉତ୍ସର୍ଗ କରିବି; କାରଣ ସଂସାରରୁ ତ କିଛି ପାଇବାର ଆଶା ନାହିଁ, ସବୁ ଶୂନ୍ୟ ଦିବାଗର୍ଭେ ଅନ୍ତର୍ହିତ ହୋଇଯାଉଛି । ଆଜିର ସୁନ୍ଦର ଆଶାପୂର୍ଣ୍ଣ ତରୁଣ ପୁରୁଷ କାଲିର ବୃଦ୍ଧ । ଆଜିର ଆଶା, ଆନନ୍ଦ, ସୁଖ ଏସବୁ ମୁକୁଳସମୂହ ପରି ଆଗାମୀ ଦିନର ଶିଶିର-ପାତରେ ନଷ୍ଟ ହେବେ । ଏସବୁ ତ ଗୋଟିଏ ଦିଗର କଥା । କିନ୍ତୁ ଅନ୍ୟ ଦିଗରେ ଜୟର ଆଶା ମଧ୍ୟ ରହିଛି—ଜୀବନର ସମୁଦାୟ ଅଶୁଭ ଜୟ କରିବାର ସମ୍ଭାବନା ରହିଛି । ଏପରି କି ଜୀବନ ଏବଂ ସମଗ୍ର ଜଗତ ଉପରେ ମଧ୍ୟ ଜୟୀ ହେବାର ଆଶା ରହିଛି । ଏହି ଉପାୟରେ ହିଁ ମନୁଷ୍ୟ ନିଜ ଗୋଡ଼ ଉପରେ ଭର ଦେଇ ଛିଡ଼ା ହୋଇପାରେ । ଅତଏବ ଯେଉଁମାନେ ଏହି ଜୟଲାଭ ନିମିତ୍ତ, ସତ୍ୟ ନିମିତ୍ତ, ଧର୍ମ ନିମିତ୍ତ ଚେଷ୍ଟା କରୁଛନ୍ତି, ସେମାନେ ଠିକ୍ ପଥରେ ରହିଛନ୍ତି । ବେଦସବୁ ଏହା ହିଁ ପ୍ରଚାର କରନ୍ତି—'ନିରାଶ ହୁଅ ନାହିଁ, ପଥ ଅତିଦୁର୍ଗମ—ଯେପରି କ୍ଷୁରଧାର ପରି ଦୁର୍ଗମ । ତାହାହେଲେ ମଧ୍ୟ ନିରାଶ ହୁଅ ନାହିଁ; ଉଠ, ଜାଗ ଏବଂ ତୁମର ଚରମ ଆଦର୍ଶରେ ଉପନୀତ ହୁଅ ।'

* କଠ ଉପ., ୧।୩।୧୪

ବିଭିନ୍ନ ଧର୍ମସମୂହ ମନୁଷ୍ୟ ନିକଟକୁ ସେମାନେ ଯେଉଁ ଆକାରରେ ଆସନ୍ତୁ ନା କାହିଁକି, ସବୁଗୁଡ଼ିକର ଏହା ହିଁ ଏକ ମାତ୍ର ମୂଳଭିତ୍ତି । ସବୁ ଧର୍ମ ଜଗତରୁ ବାହାରକୁ ଯିବାର ଅର୍ଥାତ୍ ମୁକ୍ତିର ଉପଦେଶ ଦେଉଛନ୍ତି । ଏହି ଧର୍ମସବୁ ସଂସାର ଓ ଧର୍ମର ସାମଞ୍ଜସ୍ୟ ସାଧନ କରିବାକୁ ଆସନ୍ତି ନାହିଁ, ବରଂ ଧର୍ମକୁ ନିଜ ଆଦର୍ଶରେ ଦୃଢ଼ ପ୍ରତିଷ୍ଠିତ କରିବାକୁ ଆସନ୍ତି, ସଂସାର ସହିତ ସାଲିସ୍ କରି ଏ ଆଦର୍ଶକୁ ଭ୍ରଷ୍ଟ କରି ପକାନ୍ତି ନାହିଁ । ପ୍ରତ୍ୟେକ ଧର୍ମ ହିଁ ଏହା ପ୍ରଚାର କରୁଛି ଏବଂ ବେଦାନ୍ତର କର୍ତ୍ତବ୍ୟ —ବିଭିନ୍ନ ଧର୍ମଭାବ ସବୁର ସାମଞ୍ଜସ୍ୟ ସାଧନ; ଯେଉଁଭଳି ଆମେ ଦେଖିଲେ, ଏହି ମୁକ୍ତିତତ୍ତ୍ୱରେ ଜଗତର ଉଚ୍ଚତମ ଓ ନିମ୍ନତମ ସବୁ ଧର୍ମର ସାମଞ୍ଜସ୍ୟ ରହିଛି । ଆମେ ଯାହାକୁ ଅତ୍ୟନ୍ତ ଘୃଣିତ କୁସଂସ୍କାର ବୋଲି କହୁ, ଆଉ ଯାହା ସର୍ବୋଚ୍ଚ ଦର୍ଶନ, ସବୁଗୁଡ଼ିକର ଏହି ଏକ ସାଧାରଣ ଭିତ୍ତି ଯେ, ସେସବୁଗୁଡ଼ିକ ଏହି ଏକ ପ୍ରକାର ସଙ୍କଟରୁ ନିସ୍ତାରର ପଥ ଦେଖାଇଦିଏ ଏବଂ ଏହିସବୁ ଧର୍ମର ଅଧିକାଂଶରେ ହିଁ ଜଗତ ପ୍ରପଞ୍ଚାତୀତ କୌଣସି ପୁରୁଷଙ୍କର—ଯେ ନିଜେ ପ୍ରକୃତିର ନିୟମରେ ଆବଦ୍ଧ ନୁହନ୍ତି, ଗୋଟିଏ କଥାରେ ଯେ ନିତ୍ୟମୁକ୍ତ—ତାଙ୍କ ସାହାଯ୍ୟରେ ଏହି ମୁକ୍ତିଲାଭ କରିବାକୁ ହୁଏ । ଏହି ମୁକ୍ତ-ପୁରୁଷଙ୍କର ସ୍ୱରୂପ ସମ୍ବନ୍ଧରେ ନାନା ବିରୋଧ ଓ ମତଭେଦସତ୍ତ୍ୱେ—ସେ ବ୍ରହ୍ମ ସଗୁଣ ବା ନିର୍ଗୁଣ, ମନୁଷ୍ୟଭଳି ସେ ଜ୍ଞାନସମ୍ପନ୍ନ କି ନୁହନ୍ତି, ସେ ପୁରୁଷ, ସ୍ତ୍ରୀ କିମ୍ବା କ୍ଳୀବ, ଏଭଳି ଅନନ୍ତ ବିଚାରସତ୍ତ୍ୱେ—ବିଭିନ୍ନମତର ଅତି ପ୍ରବଳ ବିରୋଧସତ୍ତ୍ୱେ ଏସବୁ ଅସାମଞ୍ଜସ୍ୟ ମଧ୍ୟରେ ଏକତ୍ୱର ସୁବର୍ଣ୍ଣସୂତ୍ର ଏମାନଙ୍କୁ ଯେ ଗ୍ରଥିତ କରି ରଖିଛି—ଆମେମାନେ ଏହା ଦେଖିବାକୁ ପାଉ; ସୁତରାଂ ଏହିସବୁ ବିଭିନ୍ନତା ବା ବିରୋଧ ଆମମାନଙ୍କର ଭୀତି ଉତ୍ପାଦନ କରେ ନାହିଁ । ଆଉ ଏହି ବେଦାନ୍ତଦର୍ଶନରେ ଏହି ସୁବର୍ଣ୍ଣସୂତ୍ର ଆବିଷ୍କୃତ ହୋଇଛି ଏବଂ ଟିକିଏ ଟିକିଏ କରି ଆମମାନଙ୍କ ସମ୍ମୁଖରେ ପ୍ରକାଶିତ ହୋଇଛି । ଏହାର ପ୍ରଥମ ତତ୍ତ୍ୱ ଏହି ଯେ ଆମେମାନେ ସମସ୍ତେ ବିଭିନ୍ନ ପଥଦ୍ୱାରା ଏହି ଏକ ମୁକ୍ତି ଆଡ଼କୁ ଅଗ୍ରସର ହେଉଛୁ । ସବୁ ଧର୍ମର ଏହା ସାଧାରଣ ଭାବ ।

ଆମମାନଙ୍କର ଦୁଃଖ, ସୁଖ, ବିପଦ, ଆପଦ, ସବୁ ଅବସ୍ଥା ମଧ୍ୟରେ ଆମେମାନେ ଏହି ଆଶ୍ଚର୍ଯ୍ୟ ବ୍ୟାପାର ଦେଖିବାକୁ ପାଉ ଯେ, ଆମେମାନେ ସମସ୍ତେ ଧୀରେ ଧୀରେ ସେହି ମୁକ୍ତି ଆଡ଼କୁ ଅଗ୍ରସର ହେଉଛୁ । ପ୍ରଶ୍ନ ହେଲା : ଏହି ଜଗତ୍ ବାସ୍ତବିକ୍ କ'ଣ ? କେଉଁଠାରୁ ଏହାର ଉତ୍ପତ୍ତି, କେଉଁଠାରେ ଏହାର ଲୟ ? ଏହାର ଉତ୍ତର ହେଲା, 'ମୁକ୍ତିରେ ଏହାର ଉତ୍ପତ୍ତି, ମୁକ୍ତିରେ ଏହାର ସ୍ଥିତି ଏବଂ ଅବଶେଷରେ ମୁକ୍ତିରେ ହିଁ ଏହାର ଲୟ ।' ଏହି ଯେ ମୁକ୍ତିର ଭାବ, ଆମେମାନେ ଯେ ବାସ୍ତବିକ୍ ମୁକ୍ତ, ଏହି ମହାନ୍ ଭାବକୁ ଛାଡ଼ିଦେଲେ ଆମେମାନେ ଏକ ମୁହୂର୍ତ୍ତେ ମଧ୍ୟ ଚଳିପାରିବୁ ନାହିଁ । ଏହି ଭାବ ବ୍ୟତୀତ ତୁମର ସକଳ କାର୍ଯ୍ୟ, ଏପରି କି ତୁମ ଜୀବନ ମଧ୍ୟ ବୃଥା । ପ୍ରତି ମୁହୂର୍ତ୍ତରେ ପ୍ରକୃତି ଆମମାନଙ୍କୁ ଦାସ ବୋଲି ପ୍ରତିପନ୍ନ କରୁଛି; କିନ୍ତୁ ସଙ୍ଗେ

ସଙ୍ଗେ ଅପର ଏକ ଭାବ ମଧ୍ୟ ଆମମାନଙ୍କ ମନରେ ଉଦିତ ହେଉଛି ଯେ, ଆମେମାନେ ମୁକ୍ତ । ପ୍ରତି ମୁହୂର୍ତ୍ତରେ ଆମେ ମାୟାଦ୍ୱାରା ଆହତ ହୋଇ ନିଜକୁ ଆବଦ୍ଧ ବୋଲି ମନେକରୁଛୁ, କିନ୍ତୁ ସେହି ମୁହୂର୍ତ୍ତରେ ସେହି ଆଘାତ ସଙ୍ଗେ ସଙ୍ଗେ ଅନ୍ୟ ଏକ ଭାବ ମଧ୍ୟ ଆସୁଛି ଯେ ଆମେମାନେ ମୁକ୍ତ । ଭିତରୁ ଯେପରି କେହି ଆମମାନଙ୍କୁ କହିଦେଉଛି ଯେ ଆମେମାନେ ମୁକ୍ତ; କିନ୍ତୁ ଏହି ମୁକ୍ତିକୁ ପ୍ରାଣେ ପ୍ରାଣେ ଉପଲବ୍ଧି କରିବାରେ ଏବଂ ଆମମାନଙ୍କର ଏହି ମୁକ୍ତ-ସ୍ୱଭାବକୁ ପ୍ରକାଶ କରିବାରେ ଯେଉଁସବୁ ବାଧା ଉପସ୍ଥିତ ହୁଏ, ତାହା ମଧ୍ୟ ଏକପ୍ରକାର ଅନତିକ୍ରମଣୀୟ । ତଥାପି ଭିତରେ ଆମମାନଙ୍କ ଅନ୍ତରର ଅନ୍ତଃସ୍ଥଳରେ କିଏ ଯେପରି ସର୍ବଦା କହୁଛି, ମୁଁ ମୁକ୍ତ, ମୁଁ ମୁକ୍ତ । ଯଦି ତୁମେ ଜଗତର ବିଭିନ୍ନ ଧର୍ମମତ ଆଲୋଚନା କରି ଦେଖ, ତେବେ ତୁମେ ବୁଝିପାରିବ—ସବୁ ଧର୍ମରେ ଏହି ଭାବ ପ୍ରକାଶିତ ହୋଇଛି । କେବଳ ଧର୍ମ ନୁହେଁ—'ଧର୍ମ' ଶବ୍ଦଟିକୁ ଆପଣମାନେ ଅତ୍ୟନ୍ତ ସଙ୍କୀର୍ଣ୍ଣ ଅର୍ଥରେ ଗ୍ରହଣ କରିବେ ନାହିଁ—ସମାଜର ସମୁଦାୟ ଜୀବନ କେବଳ ଏହି ଏକ ମୁକ୍ତଭାବର ଅଭିବ୍ୟକ୍ତି ମାତ୍ର । ସକଳ ସାମାଜିକ ଗତି ସେହି ଏକ ମୁକ୍ତଭାବର ବିଭିନ୍ନ ଅଭିବ୍ୟକ୍ତି ମାତ୍ର । ଯେପରି କି ସମସ୍ତେ ଜ୍ଞାତସାରରେ ବା ଅଜ୍ଞାତସାରରେ ସେହି ଏକ ସ୍ୱର ଶୁଣୁଛନ୍ତି, ଯେ ଦିବାରାତି କହୁଛି,'ପରିଶ୍ରାନ୍ତ ଓ ଭାରାକ୍ରାନ୍ତ ସମସ୍ତେ ମୋ ନିକଟକୁ ଆସ'*—ଏହିଭଳି ଭାଷାରେ କିମ୍ବା କୌଣସି ଭଙ୍ଗୀରେ ତାହା ପ୍ରକାଶିତ ହୋଇ ନ ପାରେ; କିନ୍ତୁ ମୁକ୍ତିଆହ୍ୱାନ-କାରୀ ସେହି ବାଣୀ କୌଣସି ନା କୌଣସି ରୂପରେ ଆମମାନଙ୍କ ସହିତ ବିଦ୍ୟମାନ ରହିଛି । ଆମେମାନେ ଯେ ପୃଥିବୀରେ ଜନ୍ମଗ୍ରହଣ କରିଛୁ, ତାହା ସେହି ବାଣୀ ଯୋଗୁଁ, ଆମମାନଙ୍କ ପ୍ରତ୍ୟେକ ଗତି ମଧ୍ୟ ତାହା ପାଇଁ । ଆମେମାନେ ଜାଣୁ ବା ନ ଜାଣୁ, ଆମେମାନେ ସମସ୍ତେ ମୁକ୍ତି ଆଡ଼କୁ ଚାଲିଛୁ—ଆମେମାନେ ଜ୍ଞାତସାରରେ ବା ଅଜ୍ଞାତସାରରେ ସେହି ବାଣୀର ଅନୁସରଣ କରୁଛୁ । ଯେପରି ସେହି ମୋହନ ବଂଶୀବାଦକ** ବଂଶୀଧ୍ୱନିଦ୍ୱାରା ଗ୍ରାମର ବାଳକମାନଙ୍କୁ ଆକର୍ଷଣ କରିଥିଲେ, ଆମେମାନେ ସେହିପରି ଅଜଣାଭାବରେ ଗୋଟିଏ ମୋହନ-ବଂଶୀର ଅନୁସରଣ କରୁଛୁ ।

ଆମେ ଯେତେବେଳେ ସେହି ବାଣୀ ଅନୁସରଣ କରୁ, ସେତେବେଳେ ଆମେ ନୀତିପରାୟଣ । କେବଳ ଜୀବାତ୍ମା ନୁହେଁ, ନିମ୍ନତମ ଜଡ଼ପରମାଣୁଠାରୁ ଆରମ୍ଭ କରି ଉଚ୍ଚତମ ମାନବ ପର୍ଯ୍ୟନ୍ତ ସମସ୍ତେ ସେହି ସ୍ୱର ଶୁଣିଛନ୍ତି ଏବଂ ସେହି ସ୍ୱରରେ ନିଜକୁ ଢାଳିଦେବା ପାଇଁ ଚାଲିଛନ୍ତି । ଏହି ଚେଷ୍ଟାରେ ସେମାନେ ପରସ୍ପର ସହିତ ମିଳିତ ହେଉଛନ୍ତି, ଜଣେ ଅନ୍ୟ ଜଣକୁ ଠେଲି ଦେଉଛି ଏବଂ ଏହି ଭାବରେ

* St. Matthew, Ch. II, 28

** The Pied Piper of Hamelin, R. Browning

ପ୍ରତିଦ୍ୱନ୍ଦ୍ୱିତା,ଆନନ୍ଦ,ଚେଷ୍ଟା,ସୁଖ, ଜୀବନ, ମୃତ୍ୟୁ—ସବୁର ଉତ୍ପତ୍ତି । ଏହି ବିଶ୍ୱବ୍ରହ୍ମାଣ୍ଡ ସେହି ବାଣୀରେ ଉପନୀତ ହେବାର ଉନ୍ମତ୍ତ ଚେଷ୍ଟାର ଫଳ ଛଡ଼ା ଆଉ କିଛି ନୁହେ । ଆମେମାନେ ଏହା ହିଁ କରି ଚାଲିଛୁ । ଏହା ହିଁ ପ୍ରକୃତିର ଅଭିବ୍ୟକ୍ତି ।

ଏହି ବାଣୀ ଶୁଣିପାରିଲେ କଅଣ ହୁଏ ? ସେତେବେଳେ ଆମମାନଙ୍କର ସମ୍ମୁଖସ୍ଥ ଦୃଶ୍ୟ ପରିବର୍ତ୍ତିତ ହୋଇଯାଏ । ଯେତେବେଳେ ତୁମେ ସେ ସ୍ୱରକୁ ଜାଣ ଓ ବୁଝିପାର ତାହା କଅଣ, ସେତେବେଳେ ତୁମର ସମ୍ମୁଖସ୍ଥ ସମୁଦାୟ ଦୃଶ୍ୟ ପରିବର୍ତ୍ତିତ ହୋଇଯାଏ । ଏହି ଜଗତ,ଯାହା ପୂର୍ବେ ମାୟାର ବୀଭତ୍ସ ଯୁଦ୍ଧକ୍ଷେତ୍ର ଥିଲା, ତାହା ଏକ ସୁନ୍ଦର ଓ ମନୋରମ ସ୍ଥାନରେ ପରିଣତ ହୋଇଯାଏ । ସେତେବେଳେ ପ୍ରକୃତିକୁ ଅଭିଶାପ ଦେବାର ପ୍ରୟୋଜନ ଆଉ ଆମମାନଙ୍କର ରହେ ନାହିଁ, ଜଗତ୍ ଅତି ବୀଭତ୍ସ ଅଥବା ଏସବୁ ବୃଥା, ଏହା କହିବାର ମଧ୍ୟ ଆଉ ପ୍ରୟୋଜନ ରହେ ନାହିଁ—ଆମମାନଙ୍କର କାନ୍ଦିବାର ବା ବିଳାପ କରିବାର ମଧ୍ୟ ପ୍ରୟୋଜନ ରହେ ନାହିଁ । ଯେତେବେଳେ ଆମେ ସେହି ବାଣୀର ମର୍ମକୁ ଜାଣୁ ସେତେବେଳେ ଆମେ ବୁଝୁ, ଏହିସବୁ ଚେଷ୍ଟା, ଏହିସବୁ ଯୁଦ୍ଧ, ପ୍ରତିଦ୍ୱନ୍ଦ୍ୱିତା, ଏହି ଗୋଳମାଳ, ଏହି ନିଷ୍ଠୁରତା, ଏହି ସକଳ କ୍ଷୁଦ୍ର ସୁଖ-ସମ୍ଭୋଗର ପ୍ରୟୋଜନ କ'ଣ । ସେତେବେଳେ ବୁଝାଯାଏ ଯେ ଏଗୁଡ଼ିକ ପ୍ରକୃତିର ସ୍ୱଭାବବଶତଃ ହିଁ ଘଟିଥାଏ । ଆମେମାନେ ଜ୍ଞାତସାରରେ ବା ଅଜ୍ଞାତସାରରେ ସେହି ସ୍ୱର ଆଡ଼କୁ ଅଗ୍ରସର ହେଉଛୁ ବୋଲି ଏସବୁ ଘଟିଥାଏ । ଅତଏବ ସମୁଦାୟ ମାନବଜୀବନ, ସମୁଦାୟ ପ୍ରକୃତି କେବଳ ସେହି ମୁକ୍ତ ଭାବକୁ ଅଭିବ୍ୟକ୍ତ କରିବାକୁ ଚେଷ୍ଟା କରୁଛି ମାତ୍ର । ସୂର୍ଯ୍ୟ ମଧ୍ୟ ସେହି ଆଡ଼କୁ ଚାଲିଛି, ପୃଥିବୀ ମଧ୍ୟ ସେହି କାରଣରୁ ସୂର୍ଯ୍ୟର ଚତୁର୍ଦ୍ଦିଗରେ ଭ୍ରମଣ କରୁଛି, ଚନ୍ଦ୍ର ମଧ୍ୟ ସେହି କାରଣରୁ ପୃଥିବୀର ଚାରିଆଡ଼େ ବୁଲୁଛି । ସେହି ସ୍ଥାନରେ ଉପସ୍ଥିତ ହେବା ପାଇଁ ସବୁ ଗ୍ରହ ଭ୍ରମଣ କରୁଛନ୍ତି ଏବଂ ପବନ ମଧ୍ୟ ବହୁଛି । ସେହି ମୁକ୍ତି ପାଇଁ ବଜ୍ର ତୀବ୍ର ନିନାଦ କରୁଛି, ମୃତ୍ୟୁ ମଧ୍ୟ ସେଥିପାଇଁ ଚାରିଆଡ଼େ ଘୂରି ବୁଲୁଛି । ସମସ୍ତେ ସେହି ଆଡ଼କୁ ଯିବାକୁ ଚେଷ୍ଟା କରୁଛନ୍ତି । ସାଧୁ ମଧ୍ୟ ସେହିଆଡ଼କୁ ଚାଲିଛନ୍ତି, ସେ ନ ଯାଇ ରହିପାରିବେ ନାହିଁ, ତାଙ୍କ ପକ୍ଷରେ ସେହିଆଡ଼କୁ ଯିବାଟା ପ୍ରଶଂସାର କଥା ନୁହେଁ । ପାପୀ ମଧ୍ୟ ତଦ୍ରୂପ । ଖୁବ୍ ଦାନଶୀଳ ବ୍ୟକ୍ତି ସେହି ସ୍ୱର ଲକ୍ଷ୍ୟ କରି ସରଳଭାବରେ ଚାଲିଛନ୍ତି, ସେ ନ ଯାଇ ରହିପାରିବେ ନାହିଁ । ପୁଣି ଅତିଶୟ କୃପଣ ବ୍ୟକ୍ତି ମଧ୍ୟ ସେହିଆଡ଼କୁ ଲକ୍ଷ୍ୟ କରି ଚାଲିଛି । ଯେ ମହାସତ୍କର୍ମଶୀଳ, ସେ ମଧ୍ୟ ଅନ୍ତରରେ ସେହି ବାଣୀ ଶୁଣିଛନ୍ତି—ସେ ସତ୍କର୍ମ ନ କରି ରହିପାରିବେ ନାହିଁ । ପୁଣି ଅତ୍ୟନ୍ତ ଅଳସୁଆ ବ୍ୟକ୍ତି ମଧ୍ୟ ତଦ୍ରୂପ । ଜଣକର ଅପର ବ୍ୟକ୍ତି ଅପେକ୍ଷା ଅଧିକ ପଦସ୍ଖଳନ ହୋଇପାରେ; ଆଉ ଯେଉଁ ବ୍ୟକ୍ତିର ବେଶୀ ପଦସ୍ଖଳନ ହୁଏ, ତାହାକୁ ଆମେ ମନ୍ଦ ବୋଲି କହୁ; ଯାହାର ପଦସ୍ଖଳନ ଅଳ୍ପ ହୁଏ, ତାହାକୁ ଆମେ ଭଲ କହୁଁ । ଭଲମନ୍ଦ ଦୁଇଟି ବିଭିନ୍ନ ବସ୍ତୁ ନୁହେଁ—ସେମାନେ ଏକ ପଦାର୍ଥ—ସେମାନଙ୍କ ମଧ୍ୟରେ ଭେଦ

ପ୍ରକାରଗତ ନୁହେଁ, ପରିମାଣଗତ ।

ବର୍ତ୍ତମାନ ଦେଖନ୍ତୁ, ଯଦି ଏହି ମୁକ୍ତିସ୍ୱରୂପକ ଶକ୍ତି ବାସ୍ତବିକ ସମୁଦାୟ ଜଗତରେ କାମ କରୁଛି, ତେବେ ଆମମାନଙ୍କର ଆଲୋଚ୍ୟ ବିଷୟ ଧର୍ମ ପ୍ରତି ଏହାକୁ ପ୍ରୟୋଗ କଲେ ଦେଖିପାରୁ ଯେ, ସକଳ ଧର୍ମ ମଧ୍ୟ ସେହି ଏକତ୍ୱଦ୍ୱାରା ନିୟନ୍ତ୍ରିତ ହୋଇଛି । ସବୁଠାରୁ ନିମ୍ନସ୍ତରର ଧର୍ମଗୁଡ଼ିକର କଥା ବିଚାର କରନ୍ତୁ । ସେହି ସକଳ ଧର୍ମରେ ହୁଏତ କୌଣସି ମୃତ ପୂର୍ବପୁରୁଷ ଅଥବା ଭୟଙ୍କର ନିଷ୍ଠୁର ଦେବଗଣ ଉପାସିତ ହୁଅନ୍ତି । ଏହି ଦେବତା ବା ମୃତ ପୂର୍ବପୁରୁଷଙ୍କ ଭାବଟି ସ୍ଥୂଳତଃ କ'ଣ ? ଭାବଟି ଏହି ଯେ, ସେମାନେ ପ୍ରକୃତିଠାରୁ ଉନ୍ନତ ଓ ମାୟାଦ୍ୱାରା ବଦ୍ଧ ନୁହନ୍ତି । ଅବଶ୍ୟ ଉପାସକମାନଙ୍କର ପ୍ରକୃତି ସମ୍ବନ୍ଧରେ ଧାରଣା ଖୁବ୍ ସାମାନ୍ୟ । ଉପାସକ ଜଣେ ଅଜ୍ଞ, ତାଙ୍କର ଧାରଣା ଖୁବ୍ ସ୍ଥୂଳ; ସେ ଗୃହର କାନ୍ଥ ଅତିକ୍ରମ କରି ଯାଇ-ପାରନ୍ତି ନାହିଁ, ଅଥବା ଶୂନ୍ୟରେ ଉଡ଼ିପାରନ୍ତି ନାହିଁ; ସୁତରାଂ ତାଙ୍କର ସମସ୍ତ କ୍ଷମତାର ଧାରଣା ଏହିସବୁ ବାଧା ଅତିକ୍ରମ କରିବା ବା ନ କରିବା ଭିତରେ ସୀମା-ବଦ୍ଧ । ସୁତରାଂ ସେ ଯେଉଁ ଦେବତାଙ୍କର ଉପାସନା କରନ୍ତି, ସେମାନେ ପ୍ରାଚୀର ଭେଦ କରି ଅଥବା ଆକାଶପଥରେ ମଧ୍ୟ ବିଚରଣ କରିପାରନ୍ତି, ଅଥବା ନିଜ ରୂପ ମଧ୍ୟ ପରିବର୍ତ୍ତନ କରିପାରନ୍ତି । ଦାର୍ଶନିକ ଦୃଷ୍ଟିରୁ ଏହାର ଅର୍ଥ କ'ଣ ? ଅର୍ଥ ଏହିଯେ ଏଥିରେ ମଧ୍ୟ ସେହି ମୁକ୍ତିର ଭାବ ରହିଛି, ତାଙ୍କର ଦେବତା-ଧାରଣା ପରିଜ୍ଞାତ ପ୍ରକୃତିର ଧାରଣାଠାରୁ ଉନ୍ନତ । ପୁନଶ୍ଚ ଯେଉଁମାନେ ତଦପେକ୍ଷା ଉନ୍ନତ ଦେବତାଙ୍କ ଉପାସକ, ସେମାନଙ୍କର ମଧ୍ୟ ସେହି ଏକ ମୁକ୍ତି ସମ୍ବନ୍ଧରେ ଅନ୍ୟ ଏକ ଧାରଣା । ପ୍ରକୃତି ସମ୍ବନ୍ଧରେ ଆମମାନଙ୍କର ଧାରଣା ଯେପରି ଉନ୍ନତ ହେଉଥାଏ, ପ୍ରକୃତିର ପ୍ରଭୁ ଆତ୍ମା ସମ୍ବନ୍ଧରେ ଧାରଣା ମଧ୍ୟ ସେହିପରି ଉନ୍ନତ ହେଉଥାଏ; ଅବଶେଷରେ ଆମେମାନେ ଏକେଶ୍ୱରବାଦରେ ଉପନୀତ ହେଉ । ଏହି ମାୟା, ଏହି ପ୍ରକୃତି ରହିଛି ଏବଂ ଏହି ମାୟାର ପ୍ରଭୁ ଆଉ ଜଣେ ଅଛନ୍ତି—ଏହା ହିଁ ଆମମାନଙ୍କର ଆଶାର ସ୍ଥଳ ।

ଯେଉଁଠାରେ ପ୍ରଥମେ ଏକେଶ୍ୱରବାଦର ଆରମ୍ଭ, ସେହିଠାରେ ବେଦାନ୍ତର ମଧ୍ୟ ଆରମ୍ଭ । ବେଦାନ୍ତ ଏହାଠାରୁ ମଧ୍ୟ ଗଭୀରତର ତତ୍ତ୍ୱାନୁସନ୍ଧାନ କରିବାକୁ ଚାହେଁ । ବେଦାନ୍ତ କହେ—ଏହି ମାୟାପ୍ରପଞ୍ଚର ପଶ୍ଚାତ୍‌ରେ ଯେଉଁ ଆତ୍ମା ରହିଛନ୍ତି, ଯେ ମାୟାର ପ୍ରଭୁ, ଅଥଚ ଯେ ମାୟାର ଅଧୀନ ନୁହନ୍ତି, ସେ ଆମମାନଙ୍କୁ ତାଙ୍କ ଆଡ଼କୁ ଆକର୍ଷଣ କରୁଛନ୍ତି ଏବଂ ଆମେମାନେ ସମସ୍ତେ ତାଙ୍କ ଆଡ଼କୁ କ୍ରମାଗତ ଚାଲିଛୁଁ । ଏହି ଧାରଣା ସତ୍ୟ—ତଥାପି ଏହା ସ୍ପଷ୍ଟ ହୋଇ ନାହିଁ; ବର୍ତ୍ତମାନ ମଧ୍ୟ ଯେପରି ଏହି ଦର୍ଶନ ଅସ୍ପଷ୍ଟ ଓ ଅସ୍ଫୁଟ—ଯଦିଓ ଏହା ସ୍ପଷ୍ଟତଃ ଯୁକ୍ତିର ବିରୋଧୀ ନୁହେଁ । ଯେପରି ଆପଣମାନଙ୍କ ସ୍ତବଗୀତରେ ଲେଖାଅଛି, 'ହେ ମୋର ଈଶ୍ୱର, ମୁଁ ତୁମର ଆହୁରି ନିକଟରେ', ବେଦାନ୍ତୀ ପକ୍ଷରେ ମଧ୍ୟ ଏ ସ୍ତୁତି ଖାଟିବ, ସେ କେବଳ

ଗୋଟିଏ ଶବ୍ଦ ପରିବର୍ତ୍ତନ କରି କହିବେ, 'ହେ ମୋର ଈଶ୍ୱର, ମୁଁ ମୋର ଆତ୍ମାର ନିକଟରେ ।' 'ଆମମାନଙ୍କର ଚରମ ଆଦର୍ଶ—ଆମମାନଙ୍କଠାରୁ ଅନେକ ଦୂରରେ ପ୍ରକୃତିର ଅତୀତ ପ୍ରଦେଶରେ, ସେ ଆମମାନଙ୍କୁ ତାଙ୍କ ନିକଟକୁ କ୍ରମଶଃ ଆକର୍ଷଣ କରୁଛନ୍ତି'—ଏହି ଦୂରତ୍ୱବ୍ୟଞ୍ଜକ ଭାବଟିକୁ କ୍ରମଶଃ ଆମର ନିକଟବର୍ତ୍ତୀ କରିବାକୁ ହେବ, ଅବଶ୍ୟ ଆଦର୍ଶର ପବିତ୍ରତା ଓ ଉଚ୍ଚତା ବଜାୟ ରଖି ଏହା କରିବାକୁ ହେବ, ଯଦ୍ଦ୍ୱାରା ଏହି ଆଦର୍ଶ କ୍ରମଶଃ ଆମମାନଙ୍କର ନିକଟରୁ ନିକଟତର ହେବ । ଅବଶେଷରେ ସେହି ସ୍ୱର୍ଗସ୍ଥ ଈଶ୍ୱର ଯେପରି ପ୍ରକୃତିସ୍ଥ ଈଶ୍ୱରରୂପେ ଉପଲବ୍ଧ ହେବେ, ଶେଷରେ ଯେପରି ପ୍ରକୃତି ମଧ୍ୟରେ ଏବଂ ସେହି ଈଶ୍ୱରଙ୍କ ମଧ୍ୟରେ କୌଣସି ପ୍ରଭେଦ ରହିବ ନାହିଁ, ସେ ଯେପରି ଏହି ଦେହ-ମନ୍ଦିରର ଅଧିଷ୍ଠାତ୍ରୀ ଦେବତାରୂପେ, ଅବଶେଷରେ ଏହି ଦେହମନ୍ଦିରରେ ହିଁ ପରିଣତ ହୁଅନ୍ତି, ତାହାଙ୍କୁ ଯେପରି ଶେଷରେ ଜୀବାତ୍ମା ଓ ମନୁଷ୍ୟ ବୋଲି ଜାଣି ହୁଏ । ଏହିଠାରେ ହିଁ ବେଦାନ୍ତର ଶେଷ କଥା ।

ଯାହାଙ୍କୁ ଋଷିଗଣ ବିଭିନ୍ନ ସ୍ଥାନରେ ଅନ୍ୱେଷଣ କରୁଥିଲେ, ତାଙ୍କୁ ଏତେବେଳେ ଜଣାଗଲା । ବେଦାନ୍ତ କହେ, ତୁମେ ଯେଉଁ ବାଣୀ ଶୁଣିଥିଲ ତାହା ସତ୍ୟ—ତେବେ ତାହା ଶୁଣି ମଧ୍ୟ ତୁମେ ଠିକ୍ ପଥରେ ପରିଚାଳିତ ହୋଇନାହଁ । ମୁକ୍ତିର ଯେଉଁ ମହାନ୍ ଆଦର୍ଶ ତୁମେ ଅନୁଭବ କରିଥିଲ, ତାହା ସତ୍ୟ; କିନ୍ତୁ ତୁମେ ତାହାକୁ ବାହାରେ ଅନ୍ୱେଷଣ କରିବାକୁ ଯାଇ ଭୁଲ କରିଛ । ସେହି ଭାବକୁ ତୁମର ନିକଟରେ—ଆତ୍ମାର ନିକଟରେ ଅନୁଭବ କର, ଯେତେଦିନଯାଏ ତୁମେ ବୁଝି ନ ପାରୁଛ ଯେ ସେହି ମୁକ୍ତି, ସେହି ସ୍ୱାଧୀନତା ତୁମର ମଧ୍ୟରେ, ତାହା ତୁମର ଆତ୍ମାର ଅନ୍ତରାତ୍ମାସ୍ୱରୂପ । ଏହି ମୁକ୍ତି ସବୁବେଳେ ତୁମର ସ୍ୱରୂପ ଥିଲା ଏବଂ ମାୟା ତୁମକୁ କଦାପି ବଦ୍ଧ କରି ନାହିଁ । ଏହି ପ୍ରକୃତି କଦାପି ତୁମ ଉପରେ ଶକ୍ତି ବିସ୍ତାର କରିବାକୁ ସମର୍ଥ ନ ଥିଲା । ତୁମେ ଭୟଗ୍ରସ୍ତ ବାଳକପରି ସ୍ୱପ୍ନ ଦେଖୁଥିଲ ଯେ ପ୍ରକୃତି ତୁମକୁ ନଚାଉଅଛି, ଆଉ ସେଥିରୁ ମୁକ୍ତ ହେବା ହିଁ ତୁମର ଲକ୍ଷ୍ୟ । ଏହା କେବଳ ବୁଦ୍ଧିଦ୍ୱାରା ଜାଣିବାର କଥା ନୁହେଁ, ପ୍ରତ୍ୟକ୍ଷ କରିବା, ଅପରୋକ୍ଷ ଅନୁଭବ କରିବା—ଆମେ ଏ ଜଗତକୁ ଯେତେଦୂର ସ୍ପଷ୍ଟ ଭାବରେ ଦେଖୁଛୁ, ତାହାଠାରୁ ଆହୁରି ସ୍ପଷ୍ଟ ଭାବରେ ତାହାକୁ ଉପଲବ୍ଧି କରିବାର କଥା । ସେତେବେଳେ ଆମେମାନେ ମୁକ୍ତ ହେବା, ସବୁ ଗୋଳମାଳ ଦୂର ହୋଇଯିବ, ହୃଦୟର ଚଞ୍ଚଳତା ସ୍ଥିର ହୋଇଯିବ, ସମୁଦାୟ ବକ୍ରତା ସରଳ ହୋଇଯିବ, ସେତେବେଳେ ବହୁତ୍ୱଭ୍ରାନ୍ତି ମଧ୍ୟ ଦୂର ହେବ, ଏହି ପ୍ରକୃତି, ଏହି ମାୟା ବର୍ତ୍ତମାନ ଭଳି ଭୟଙ୍କର ଓ ଅବସାଦକର ସ୍ୱପ୍ନ ନ ହୋଇ ଅତି ସୁନ୍ଦରରୂପେ ପ୍ରତିଭାତ ହେବ, ଏବଂ ଏହି ଜଗତ ବର୍ତ୍ତମାନ ଯେପରି କାରାଗାରଭଳି ପ୍ରତୀୟମାନ ହେଉଛି, ତାହା ନ ହୋଇ କ୍ରୀଡ଼ାକ୍ଷେତ୍ରରୂପେ ପ୍ରତିଭାତ ହେବ—ସେତେବେଳେ ବିପଦ ବିଶୃଙ୍ଖଳା,

ଏପରିକି ଆମେମାନେ ଯେଉଁସବୁ ଯନ୍ତ୍ରଣା ଭୋଗ କରୁ, ସେସବୁ ମଧ୍ୟ ବ୍ରହ୍ମଭାବରେ ରୂପାନ୍ତରିତ ହେବ, ସେମାନେ ସେତେବେଳେ ସେମାନଙ୍କ ପ୍ରକୃତ ସ୍ୱରୂପରେ ପ୍ରତିଭାତ ହେବେ । ସେତେବେଳେ ହିଁ ସକଳ ବସ୍ତୁର ପଶ୍ଚାତ୍‌ରେ, ସକଳ ବସ୍ତୁର ସାରସତ୍ତା-ସ୍ୱରୂପ କେବଳ ସେ ଯେ ଛିଡ଼ା ହୋଇଛନ୍ତି, ତାହା ଦେଖାଯିବ ଏବଂ ଏହା ବୁଝିହେବ ଯେ ସେ ମୋର ପ୍ରକୃତ ଅନ୍ତରାତ୍ମା ।

# ବ୍ରହ୍ମ ଓ ଜଗତ୍

ଯେ ଅନନ୍ତ ବ୍ରହ୍ମ, ସେ ପୁଣି ସସୀମ ହେଲେ କିପରି, ଅଦ୍ୱୈତ ବେଦାନ୍ତର ଏହି ବିଷୟଟି ଧାରଣା କରିବା ଅତ୍ୟନ୍ତ କଠିନ । ଏହି ପ୍ରଶ୍ନ ମନୁଷ୍ୟ ପୁନଃ ପୁନଃ ଜିଜ୍ଞାସା କରିବ, କିନ୍ତୁ ଏହି ପ୍ରଶ୍ନ ଚିରଦିନ ରହିବ—ଯେ ଅନନ୍ତ ଅସୀମ, ସେ ପୁଣି ସସୀମ ହେଲେ କିପରି ? ବର୍ତ୍ତମାନ ମୁଁ ଏହି ପ୍ରଶ୍ନଟି ଆଲୋଚନା କରିବି । ଭଲ କରି ବୁଝାଇବା ପାଇଁ ମୁଁ ନିମ୍ନାଙ୍କିତ ଚିତ୍ରର ସାହାଯ୍ୟ ନେବି ।




ଏହି ଚିତ୍ରରେ (କ) ବ୍ରହ୍ମ (ଖ) ଜଗତ୍ । ବ୍ରହ୍ମ, ଜଗତ୍ ହୋଇଛନ୍ତି । ଏଠାରେ ଜଗତ୍ ଅର୍ଥରେ କେବଳ ଜଡ଼ ଜଗତ୍ ନୁହେଁ, ସୂକ୍ଷ୍ମ ଜଗତ୍, ଆଧ୍ୟାତ୍ମିକ ଜଗତ୍ ମଧ୍ୟ ତାହା ସଙ୍ଗେ ସଙ୍ଗେ ବୁଝିବାକୁ ହେବ—ସ୍ୱର୍ଗ, ନର୍କ, ଅର୍ଥାତ୍ ଯାହା କିଛି ଅଛି, ଜଗତ୍ ଅର୍ଥରେ ତତ୍ସମୁଦାୟକୁ ବୁଝିବାକୁ ହେବ । ମନ ଏକପ୍ରକାର ପରିଣାମର ନାମ, ଶରୀର ଆଉ ଏକ ପରିଣାମର ନାମ, ଇତ୍ୟାଦି ଇତ୍ୟାଦି; ଏସବୁକୁ ନେଇ ଜଗତ୍ । ଏହି ବ୍ରହ୍ମ (କ) ଦେଶକାଳନିମିତ୍ତର (ଗ) ମଧ୍ୟ ଦେଇ ଆସି ଜଗତ୍ (ଖ) ହୋଇଅଛନ୍ତି—ଏହା ହିଁ ଅଦ୍ୱୈତବାଦର ମୂଳକଥା । ଦେଶକାଳନିମିତ୍ତରୂପକ କାଚ ମଧ୍ୟଦେଇ ବ୍ରହ୍ମଙ୍କୁ ଆମେମାନେ ଦେଖୁଁ ଏବଂ ତଳଆଡ଼ୁ ଉପରକୁ ଦୃଷ୍ଟିପାତ କଲେ ଏହି ବ୍ରହ୍ମ ଜଗତ୍ରୂପେ ଦୃଷ୍ଟ ହୁଅନ୍ତି । ଏଥିରୁ ବେଶ୍ ଭଲ ଭାବରେ ଜଣାଯାଉଛି ଯେ ଯେଉଁଠାରେ ବ୍ରହ୍ମ ସେଠାରେ ଦେଶ-କାଳନିମିତ୍ତ ନାହିଁ । କାଳ ସେଠାରେ ରହିପାରେ ନାହିଁ, କାରଣ ସେଠାରେ ମନ ମଧ୍ୟ ନାହିଁ, ଚିନ୍ତା ମଧ୍ୟ ନାହିଁ । ଦେଶ ସେଠାରେ ରହିପାରେ ନାହିଁ, କାରଣ ସେଠାରେ କୌଣସି ପରିବର୍ତ୍ତନ ନାହିଁ । ଯେଉଁଠାରେ ଏକମାତ୍ର ସତ୍ତା ବିରାଜମାନ, ସେଠାରେ ଗତି ଓ ନିମିତ୍ତ ବା କାର୍ଯ୍ୟକାରଣ ଭାବ ରହିପାରେ ନାହିଁ । ଏହା ବୁଝିବା ଓ ବିଶେଷରୂପେ ଧାରଣାକରିବା ଆମମାନଙ୍କର ଆବଶ୍ୟକ ଯେ, ଆମେମାନେ ଯାହାକୁ କାର୍ଯ୍ୟକାରଣଭାବ କହୁ, ତାହା ପ୍ରପଞ୍ଚରୂପେ ବ୍ରହ୍ମ ଅବନତଭାବାପନ୍ନ ହେବା ପରେ—ଯଦି ଆମେ ଏହିପରି ଭାଷା ପ୍ରୟୋଗ କରିପାରୁ—ଆରମ୍ଭ ହୁଏ, ତାହା ପୂର୍ବରୁ ନୁହେଁ; ଆଉ ଆମମାନଙ୍କର ଇଚ୍ଛା, ବାସନା ପ୍ରଭୃତି ଯାହା କିଛି, ସବୁ ତତ୍ପରେ ଆରମ୍ଭ ହୁଏ ।

ମୋର ସବୁବେଳେ ଏହି ଧାରଣା ଯେ, ଶୋପେନହାଉଆର (Schopenhauer) ବେଦାନ୍ତ ବୁଝିବାରେ ଠିକ୍ ଏହି ସ୍ଥାନରେ ଭ୍ରମରେ ପଡ଼ିଛନ୍ତି—ସେ

ଏହି 'ଇଚ୍ଛା'କୁ ହିଁ ସର୍ବସ୍ୱ ମନେ କରିଛନ୍ତି । ସେ ବ୍ରହ୍ମଙ୍କ ସ୍ଥାନରେ ଏହି 'ଇଚ୍ଛା'କୁ ବସାଇବାକୁ ଚାହାଁନ୍ତି; କିନ୍ତୁ ପୂର୍ଣ୍ଣ ବ୍ରହ୍ମଙ୍କୁ କଦାପି ଇଚ୍ଛା (Will) ବୋଲି ବର୍ଣ୍ଣନା କରାଯାଇପାରେ ନାହିଁ, କାରଣ ଇଚ୍ଛା ଜଗତ୍‌ପ୍ରପଞ୍ଚର ଅନ୍ତର୍ଗତ ଓ ପରିଣାମଶୀଳ; କିନ୍ତୁ ବ୍ରହ୍ମରେ—'ଗ'ର ଅର୍ଥାତ୍ ଦେଶକାଳନିମିତ୍ତ ଉପରେ—କୌଣସି ପ୍ରକାରର ଗତି ନାହିଁ, କୌଣସି ପ୍ରକାରର ପରିଣାମ ନାହିଁ । ଏହି 'ଗ'ର ନିମ୍ନକୁ ଗତି—ବାହ୍ୟ ବା ଆନ୍ତର ସର୍ବପ୍ରକାର ଗତିର ଆରମ୍ଭ—ଏହି ଆନ୍ତର ଗତିକୁ ଚିନ୍ତା କୁହାଯାଏ । ଅତଏବ 'ଗ' ଉପରେ କୌଣସି ପ୍ରକାରର ଇଚ୍ଛା ରହି ନ ପାରେ, ସୁତରାଂ 'ଇଚ୍ଛା' ଜଗତର କାରଣ ହୋଇପାରେ ନାହିଁ । ଆହୁରି ନିକଟକୁ ଆସି ପର୍ଯ୍ୟବେକ୍ଷଣ କର; ଦେଖିବ, ଆମମାନଙ୍କ ଶରୀରର ସକଳ ଗତି ଇଚ୍ଛାପ୍ରସୂତ ନୁହେଁ । ମୁଁ ଏହି ଚେୟାରଖଣ୍ଡିକୁ ହଲାଇଲି । ଇଚ୍ଛା ଅବଶ୍ୟ ତାହାର ହଲିବାର କାରଣ ଏବଂ ସେହି ଇଚ୍ଛା ପୈଶିକ ଶକ୍ତିରେ ପରିଣତ ହୋଇଛି, ଏ କଥା ଠିକ୍ । କିନ୍ତୁ ଯେଉଁ ଶକ୍ତି ଚେୟାରଖଣ୍ଡିକୁ ହଲାଇବାର କାରଣ, ତାହା ମଧ୍ୟ ପୁଣି ହୃଦୟ ଓ ଫୁସ୍‌ଫୁସ୍‌କୁ ସଞ୍ଚାଳିତ କରୁଛି, ତେବେ ଇଚ୍ଛାରୂପେ ନୁହେଁ । ଏହି ଦୁଇ ଶକ୍ତିକୁ ଏକ ବୋଲି ଧରି ନେଲେ ମଧ୍ୟ ଯେତେବେଳେ ତାହା ଜ୍ଞାନ-ଭୂମିରେ ଆରୋହଣ କରେ, ସେତେ-ବେଳେ ତାକୁ ଇଚ୍ଛା କୁହାଯାଇପାରିବ; କିନ୍ତୁ ସେହି ଭୂମିରେ ଆରୋହଣ କରିବା ପୂର୍ବରୁ ତାକୁ ଇଚ୍ଛା କହିଲେ, ତାହା ଗୋଟିଏ ଭୁଲ ନାମ ହେଲା ବୋଲି କହିବା । ଏହାଦ୍ୱାରା ଶୋପେନହାଉଆରଙ୍କ ଦର୍ଶନରେ ବିଶେଷ ଗୋଳମାଳ ହୋଇଛି ।

ଯାହାହେଉ ଆମେ କୌଣସି ବିଷୟର କାରଣ କାହିଁକି ଜିଜ୍ଞାସା କରୁ—ତାହା ଏଥର ବୁଝାଯିବ । ଗୋଟିଏ ପଥର ଉପରୁ ତଳକୁ ପଡ଼ିଲା, ଆମେମାନେ ତତ୍‌କ୍ଷଣାତ୍ ପ୍ରଶ୍ନ କଲୁ, ତାହାର ପତନର କାରଣ କ'ଣ ? ଏହି ପ୍ରଶ୍ନର ନ୍ୟାଯ୍ୟତା ବା ସମ୍ଭାବନୀୟତା ଏହି ଅନୁମାନ ବା ଧାରଣା ଉପରେ ନିର୍ଭର କରୁଛି ଯେ, ଯାହା କିଛି ଘଟେ, ତାହା ପୂର୍ବରୁ ଅର୍ଥାତ୍ ପ୍ରତ୍ୟେକ ଗତିପୂର୍ବରୁ ଆଉ କିଛି ଘଟିଛି । ଏହି ବିଷୟଟି ସମ୍ବନ୍ଧରେ ଗୋଟିଏ ସ୍ପଷ୍ଟ ଧାରଣା କରିବାକୁ ଆପଣମାନଙ୍କୁ ମୁଁ ଅନୁରୋଧ କରୁଛି, କାରଣ ଯେତେବେଳେ ଆମେ ପ୍ରଶ୍ନ କରୁ ଅମୁକ ଘଟଣା କାହିଁକି ଘଟିଲା, ସେତେବେଳେ ଆମେମାନେ ମାନିନେଉ ଯେ ସବୁ ଜିନିଷର ସବୁ ଘଟଣାର ଗୋଟିଏ 'କାହିଁକି' ଥିବ, ଅର୍ଥାତ୍ ଘଟିବା ପୂର୍ବରୁ ଆଉ କିଛି ତା'ର ପୂର୍ବବର୍ତ୍ତୀ ଥିବ । ଏହି ପୂର୍ବବର୍ତ୍ତିତା ଓ ପରବର୍ତ୍ତିତାକୁ ନିମିତ୍ତ ବା କାର୍ଯ୍ୟକାରଣଭାବ କୁହାଯାଏ; ଆମେମାନେ ଯାହା କିଛି ଦେଖୁ ଶୁଣୁ ବା ଅନୁଭବ କରୁ, ସଂକ୍ଷେପରେ ଜଗତର ସବୁ କିଛି ଥରେ କାରଣ ପୁଣି ଥରେ କାର୍ଯ୍ୟରୂପେ ଅନୁଭୂତ ହେଉଛି । ଗୋଟିଏ ଜିନିଷ ତାହାର ପରବର୍ତ୍ତୀର କାରଣ ହେଉଛି; କିନ୍ତୁ ତାହା ହିଁ ପୂର୍ବବର୍ତ୍ତୀ କୌଣସି କିଛିର କାର୍ଯ୍ୟ-ସ୍ୱରୂପ । ଏହାକୁ ହିଁ କାର୍ଯ୍ୟକାରଣର ନିୟମ କୁହାଯାଏ, ଏହା ଆମମାନଙ୍କର ସ୍ଥିର

ବିଶ୍ୱାସ । ଆମମାନଙ୍କର ବିଶ୍ୱାସ ଯେ, ତାହା ଯାହା ହେଉନା କାହିଁକି, ଜଗତ୍‌ର ପ୍ରତ୍ୟେକ ପରମାଣୁ ଅପର ସମୁଦାୟବସ୍ତୁ ସହିତ କୌଣସି ନା କୌଣସି ସମ୍ବନ୍ଧରେ ଜଡ଼ିତ ରହିଛି । ଆମମାନଙ୍କର ଏହି ଧାରଣା କିପରି ହେଲା, ତାହା ନେଇ ଅନେକ ବାଦାନୁବାଦ ହୋଇଯାଇଛି । ୟୁରୋପଭୂଖଣ୍ଡରେ ଏପରି ଅନେକ ସ୍ୱଜ୍ଞା-ସମ୍ପନ୍ନ (intuitive) ଦାର୍ଶନିକ ଅଛନ୍ତି, ଯେଉଁମାନଙ୍କର ବିଶ୍ୱାସ, ଏହା ମାନବଜାତିର ସ୍ୱଭାବଗତ ଧାରଣା; ପୁଣି ଅନେକଙ୍କର ଧାରଣା ଏହା ଭୂୟୋଦର୍ଶନଲବ୍ଧ; କିନ୍ତୁ ଏହି ପ୍ରଶ୍ନର ମୀମାଂସା ଅଦ୍ୟାପି ହୋଇନାହିଁ । ବେଦାନ୍ତ ଏହାର କି ମୀମାଂସା କରନ୍ତି, ତାହା ଆମେମାନେ ପରେ ବିଚାର କରିବା । ଅତଏବ ଆମମାନଙ୍କର ପ୍ରଥମେ ଏହା ବୁଝିବା ଉଚିତ, 'କାହିଁକି' ଏହି ପ୍ରଶ୍ନଟି ଏହି ଧାରଣା ଉପରେ ନିର୍ଭର କରୁଛି ଯେ ଏହାର ପୂର୍ବବର୍ତ୍ତୀ ଆଉ କିଛି ଅଛି ଏବଂ ଏହା ପରେ ମଧ୍ୟ ଆଉ କିଛି ଘଟିବ । ଏହି ପ୍ରଶ୍ନରେ ଆଉ ଏକ ବିଶ୍ୱାସ ମଧ୍ୟ ଅନ୍ତର୍ନିହିତ ରହିଛି ଯେ, ଜଗତ୍‌ର କୌଣସି ପଦାର୍ଥ ସ୍ୱତନ୍ତ୍ର ନୁହେଁ, ପ୍ରତ୍ୟେକ ପଦାର୍ଥ ଉପରେ ତାହାର ବହିଃସ୍ଥ ଅପର କୌଣସି ପଦାର୍ଥ କାର୍ଯ୍ୟ କରିପାରେ । ଜଗତ୍‌ର ସକଳ ବସ୍ତୁ ଏହିରୂପେ ପରସ୍ପର-ସାପେକ୍ଷ—ଗୋଟିଏ ଅପରଟିର ଅଧୀନ, କେହି ସ୍ୱତନ୍ତ୍ର ନୁହେଁ । ଯେତେବେଳେ ଆମେ ପଚାରୁ, 'ବ୍ରହ୍ମଙ୍କର କାରଣ କଣ ?' ସେତେବେଳେ ଆମେମାନେ ଏହି ଭୁଲ୍ କରୁ ଯେ ବ୍ରହ୍ମଙ୍କୁ ଜଗଦନ୍ତର୍ଗତ କୌଣସି ବସ୍ତୁ ଭଳି ମନେକରୁ । ଏହି ପ୍ରଶ୍ନ କରିବାକୁ ଗଲେ ଆମମାନଙ୍କୁ ଅନୁମାନ କରିବାକୁ ହେବ ଯେ, ସେହି ବ୍ରହ୍ମ ଅନ୍ୟ କୌଣସି ବସ୍ତୁର ଅଧୀନ—ସେହି ନିରପେକ୍ଷ ବ୍ରହ୍ମସତ୍ତା ମଧ୍ୟ ଅନ୍ୟ କିଛିଦ୍ୱାରା ବଦ୍ଧ । ଅର୍ଥାତ୍ 'ବ୍ରହ୍ମ' ବା 'ନିରପେକ୍ଷସତ୍ତା' ଶବ୍ଦଟିକୁ ଆମେମାନେ ଜଗତ୍ ଭଳି ମନେ-କରୁଛୁ । ପୂର୍ବୋକ୍ତ ରେଖା ଉପରେ ଦେଶକାଳନିମିତ୍ତ ନାହିଁ, କାରଣ ତାହା 'ଏକମେବାଦ୍ୱିତୀୟମ୍'—ମନର ଅତୀତ । ଯାହା କେବଳ ନିଜର ଅସ୍ତିତ୍ୱରେ ନିଜେ ପ୍ରକାଶିତ, ଯାହା ଏକମାତ୍ର, ଯାହା ଏକମେବାଦ୍ୱିତୀୟମ୍, ତାହାର କୌଣସି କାରଣ ରହି ନ ପାରେ । ଯାହା ମୁକ୍ତସ୍ୱଭାବ—ସ୍ୱତନ୍ତ୍ର, ତାହାର କୌଣସି କାରଣ ରହି ନ ପାରେ । କାରଣ ତାହାହେଲେ, ସେ ଆଉ ମୁକ୍ତ ହେଲେ ନାହିଁ, ବଦ୍ଧ ହୋଇଗଲେ । ଯାହା ଭିତରେ ଆପେକ୍ଷିକତା ଅଛି, ତାହା କଦାପି ମୁକ୍ତସ୍ୱଭାବ ହୋଇପାରେ ନାହିଁ । ଅତଏବ ଆପଣମାନେ ଦେଖୁଛନ୍ତି, ଅନନ୍ତ କାହିଁକି ସାନ୍ତ ହେଲେ, ଏହି ପ୍ରଶ୍ନ ହିଁ ଭ୍ରମାତ୍ମକ—ତାହା ସ୍ୱ-ବିରୋଧୀ ।

ଏହି ସୂକ୍ଷ୍ମ ବିଚାରକୁ ଛାଡ଼ିଦେଲେ ମଧ୍ୟ ସରଳ ଭାବରେ ଆମେମାନେ ଏ ବିଷୟ ବୁଝାଇପାରିବା । ମନେକର, ଆମେମାନେ ବୁଝିଲୁ—ବ୍ରହ୍ମ କିପରି ଜଗତ୍ ହେଲେ, ଅନନ୍ତ କିପରି ସାନ୍ତ ହେଲେ; ତାହାହେଲେ ବ୍ରହ୍ମ କ'ଣ ବ୍ରହ୍ମ ହିଁ ରହିବେ—ଅନନ୍ତ କ'ଣ ଅନନ୍ତ ହିଁ ରହିବେ ? ନା, କାରଣ, ତାହାହେଲେ ତ ଅନନ୍ତ ସାନ୍ତ ହୋଇଗଲେ । ମୋଟାମୋଟି 'ଜ୍ଞାନ' କହିଲେ କଅଣ ବୁଝୁ ? ଯେ କୌଣସି ବିଷୟ ଆମମାନଙ୍କ ମନର ବିଷୟୀଭୂତ ହୁଏ, ଅର୍ଥାତ୍

ଅନନ୍ତ ସାନ୍ତ ହୋଇଗଲେ । ମୋଟାମୋଟି ଆମେମାନେ ଜ୍ଞାନ କହିଲେ କଅଣ ବୁଝୁଁ ? ଯେ କୌଣସି ବିଷୟ ଆମମାନଙ୍କ ମନର ବିଷୟୀଭୂତ ହୁଏ, ଅର୍ଥାତ୍ ମନଦ୍ୱାରା ସୀମାବଦ୍ଧ ହୁଏ, ତାହାକୁ ଆମେମାନେ ଜାଣିପାରୁ; ଆଉ ଯେତେବେଳେ ସେହି ବିଷୟ ଆମମାନଙ୍କ ମନର ବାହାରେ ଥାଏ, ଅର୍ଥାତ୍ ମନର ବିଷୟୀଭୂତ ହୁଏ ନାହିଁ, ସେତେବେଳେ ଆମେମାନେ ତାହାକୁ ଜାଣିପାରୁ ନାହିଁ । ବର୍ତ୍ତମାନ ସ୍ପଷ୍ଟ ଜଣାଯାଉଛି, ଯଦି ସେହି ଅନନ୍ତ ବ୍ରହ୍ମ ମନଦ୍ୱାରା ସୀମାବଦ୍ଧ ହେଲେ, ତେବେ ସେ ଆଉ ଅନନ୍ତ ହୋଇ ରହିଲେ ନାହିଁ—ସେ **ସସୀମ** ହୋଇଗଲେ । ମନଦ୍ୱାରା ଯାହା କିଛି ସୀମାବଦ୍ଧ ତାହା ସବୁ ସସୀମ । ଅତଏବ ସେହି 'ବ୍ରହ୍ମଙ୍କୁ ଜାଣିବା' କଥାଟା ହିଁ ସ୍ୱ-ବିରୋଧୀ । ଏଥିପାଇଁ ଏହି ପ୍ରଶ୍ନର ଉତ୍ତର ଏପର୍ଯ୍ୟନ୍ତ ମିଳି ନାହିଁ; କାରଣ ଯଦି ଏହାର ଉତ୍ତର ମିଳିଯାଏ, ତାହାହେଲେ ବ୍ରହ୍ମ ଅସୀମ ହୋଇ ରହନ୍ତେ ନାହିଁ । ଈଶ୍ୱର 'ଜ୍ଞାତ' ହେଲେ ତାଙ୍କର ଆଉ ଈଶ୍ୱରତ୍ୱ ରହେ ନାହିଁ—ସେ ଆମମାନଙ୍କ ଭଳି ଜଣେ—ଏହି ଚଉକି ଖଣ୍ଡିକ ପରି ଗୋଟାଏ ଜିନିଷ ହୋଇଗଲେ । ତାଙ୍କୁ ଜାଣି ହୁଏ ନାହିଁ, ସେ ସର୍ବଦା ଅଜ୍ଞେୟ ।

ତେବେ ଅଦ୍ୱୈତବାଦୀ କହନ୍ତି ଯେ, ସେ କେବଳ 'ଜ୍ଞେୟ' ହେବାଠାରୁ ଆହୁରି କିଛି ବେଶୀ । ଏ କଥାଟି ବୁଝିବାକୁ ହେବ । ତୁମେମାନେ ଅଜ୍ଞେୟବାଦୀ-ମାନଙ୍କ ପରି (ଈଶ୍ୱର ଅଜ୍ଞେୟ) ମନେକରି ବସି ଯାଅ ନାହିଁ । ମନେକର ସାମନାରେ ଗୋଟେ ଚଉକି ରହିଛି, ଏହା ମୁଁ ଜାଣୁଛି । କିନ୍ତୁ ଆକାଶର ବହିର୍ଦ୍ଦେଶରେ କଅଣ ଅଛି, ସେଠାରେ କୌଣସି ଲୋକବସତି ଅଛି କି ନାହିଁ, ଏ ବିଷୟ ହୁଏତ ଏକାବେଳକେ ଅଜ୍ଞେୟ; କିନ୍ତୁ ଈଶ୍ୱର ପୂର୍ବୋକ୍ତ ପଦାର୍ଥସମୂହ ଭଳି ଜ୍ଞାତ ମଧ୍ୟ ନୁହନ୍ତି, ଅଜ୍ଞାତ ମଧ୍ୟ ନୁହନ୍ତି । ବରଂ ଯାହାକୁ 'ଜ୍ଞାତ' ବୋଲି କୁହାଯାଏ, ଈଶ୍ୱର ତାହାଠାରୁ ଆହୁରି କିଛି ବେଶୀ । ଈଶ୍ୱର ଅଜ୍ଞାତ ଓ ଅଜ୍ଞେୟ କହିଲେ ଏହା ହିଁ ବୁଝାଏ, କିନ୍ତୁ ଯେଉଁ ଅର୍ଥରେ କେହି କେହି କୌଣସି କୌଣସି ପ୍ରଶ୍ନକୁ ଅଜ୍ଞାତ ବା ଅଜ୍ଞେୟ ବୋଲି କହନ୍ତି, ସେହି ଅର୍ଥରେ ନୁହେଁ । ଈଶ୍ୱର ଜ୍ଞାତ ହେବା-ଠାରୁ ଆହୁରି କିଛି ଅଧିକ । ଏହି ଚଉକି ଆମମାନଙ୍କର ଜ୍ଞାତ, କିନ୍ତୁ ଈଶ୍ୱର ତାହାଠାରୁ ଆମମାନଙ୍କ ନିକଟରେ ଅଧିକ ଜ୍ଞାତ; କାରଣ ତାଙ୍କୁ ପ୍ରଥମେ ଜାଣିଲେ ଯାଇ—ତାଙ୍କର ଭିତର ଦେଇ—ଆମେମାନେ ଚଉକି ସମ୍ବନ୍ଧରେ ଜ୍ଞାନଲାଭ କରୁ । ସେ ସାକ୍ଷୀସ୍ୱରୂପ, ସକଳ ଜ୍ଞାନର ସେ ଅନନ୍ତ ସାକ୍ଷୀସ୍ୱରୂପ । ଯାହାକିଛି ଆମେମାନେ ଜାଣୁ ସେସବୁ ପ୍ରଥମେ ତାଙ୍କୁ ଜାଣି—ତାଙ୍କର ଭିତର ଦେଇ—ଜାଣିପାରୁ । ସେ ଆମମାନଙ୍କ ଆତ୍ମାର ସତ୍ତାସ୍ୱରୂପ । ସେ ପ୍ରକୃତ 'ମୁଁ'—ସେହି 'ମୁଁ' ହିଁ ଆମମାନଙ୍କର ଏହି 'ମୁଁ'ର ସତ୍ତାସ୍ୱରୂପ; ସେହି 'ମୁଁ'ଙ୍କ ଭିତର ଦେଇ ନ ଗଲେ ଆମେମାନେ କିଛି ଜାଣିପାରୁ ନାହିଁ—ସୁତରାଂ ସବୁକିଛି ଆମମାନଙ୍କୁ ବ୍ରହ୍ମଙ୍କ ଭିତର ଦେଇ ଜାଣିବାକୁ ହେବ । ଅତଏବ ଏହି ଚଉକି ଖଣ୍ଡିକୁ ଜାଣିବାକୁ ହେଲେ ଏହାକୁ ବ୍ରହ୍ମଙ୍କ

ଭିତର ଦେଇ ଜାଣିବାକୁ ହେବ । ଅତଏବ ବ୍ରହ୍ମ ତଉକ ଅପେକ୍ଷା ଆମମାନଙ୍କର ଅଧିକ ନିକଟବର୍ତ୍ତୀ, କିନ୍ତୁ ତଥାପି ସେ ଆମମାନଙ୍କଠାରୁ ଅନେକ ଦୂରରେ ରହିଲେ —ଜ୍ଞାତ ନୁହନ୍ତି, ଅଜ୍ଞାତ ମଧ୍ୟ ନୁହନ୍ତି, କିନ୍ତୁ ଉଭୟଠାରୁ ଅନନ୍ତ ଗୁଣ ଉଚ୍ଚରେ, ସେ ତୁମର ଆତ୍ମସ୍ୱରୂପ । ଯଦି ସେହି ଆନନ୍ଦସ୍ୱରୂପ ଜଗତର ପ୍ରତି ପରମାଣୁରେ ବିରାଜମାନ ନ ଥାନ୍ତେ* ତାହାହେଲେ କିଏ ଏ ଜଗତରେ ମାତ୍ର ମୁହୂର୍ତ୍ତେ ଜୀବନ ଧାରଣ କରିପାରନ୍ତା, ଏ ଜଗତରେ ମୁହୂର୍ତ୍ତିକ ପାଇଁ ଶ୍ୱାସପ୍ରଶ୍ୱାସ ନେଇ ପାରନ୍ତା ? କାରଣ ତାଙ୍କ ଶକ୍ତିରେ ହିଁ ଆମମାନଙ୍କର ଶ୍ୱାସପ୍ରଶ୍ୱାସକାର୍ଯ୍ୟ ନିର୍ବାହ ହେଉଛି, ତାଙ୍କ ଅସ୍ତିତ୍ୱରେ ହିଁ ଆମମାନଙ୍କର ଅସ୍ତିତ୍ୱ ନିର୍ଭର କରୁଛି । ସେ ଯେ କୌଣସି ଏକ ବିଶେଷ ସ୍ଥାନରେ ଅବସ୍ଥାନ କରି ଆମମାନଙ୍କର ରକ୍ତ ସଞ୍ଚାଳନ କରୁଛନ୍ତି, ତାହା ନୁହେଁ । ତାତ୍ପର୍ଯ୍ୟ ଏହି ଯେ, ସେ ସମସ୍ତଙ୍କର ସତ୍ତାସ୍ୱରୂପ—ସେ ମୋର ଆତ୍ମାର ଆତ୍ମା । ତୁମେ କଦାପି କହିପାରିବ ନାହିଁ ଯେ, ତୁମେ ତାହାଙ୍କୁ ଜାଣ, କାରଣ ଏପରି କହିଲେ ତାଙ୍କୁ ଅତି ତଳକୁ ଟାଣି ଅଣାହୁଏ । ତୁମେ ଯେପରି ନିଜ ଦେହ ଭିତରୁ ବାହାରି ଆସିପାର ନାହିଁ, ସେପରି ତୁମେ ତାଙ୍କୁ ମଧ୍ୟ ଜାଣିପାର ନାହିଁ । ଜ୍ଞାନ କହିଲେ 'ବିଷୟୀକରଣ' ( **objectification** )—ଅର୍ଥାତ୍ କୌଣସି ଜିନିଷକୁ ବାହାରକୁ ଆଣି ବିଷୟ ଭଳି ( ଜ୍ଞେୟ ବସ୍ତୁ ଭଳି ) ପ୍ରତ୍ୟକ୍ଷୀକରଣକୁ ବୁଝାଏ । ଉଦାହରଣସ୍ୱରୂପ ଦେଖ, ସ୍ମରଣ କାର୍ଯ୍ୟରେ ତୁମେସବୁ ଅନେକ ଜିନିଷକୁ ଜ୍ଞାନର 'ବିଷୟୀଭୂତ' କରୁଛ—ଯେପରିକି ତୁମମାନଙ୍କ ନିଜ ସ୍ୱରୂପଠାରୁ ବାହାରେ ପ୍ରକ୍ଷେପ କରୁଛ । ସମୁଦାୟ ସ୍ମୃତି—ଯାହା କିଛି ମୁଁ ଦେଖିଛି ବା ଯାହା କିଛି ମୁଁ ଜାଣେ, ସବୁ ମୋ ମନ ମଧ୍ୟରେ ଅବସ୍ଥିତ । ସେହିସବୁ ବସ୍ତୁର ଛାପ ବା ଛବି ଯେପରିକି ମୋ ଅନ୍ତର ମଧ୍ୟରେ ରହିଛି । ଯେତେବେଳେ ମୁଁ ସେମାନଙ୍କ ବିଷୟରେ ଚିନ୍ତା କରିବାକୁ ଇଚ୍ଛା କରେ, ସେମାନଙ୍କୁ ଜାଣିବାକୁ ଯାଏ, ସେତେବେଳେ ପ୍ରଥମେ ଯେପରି କି ସେଗୁଡ଼ିକୁ ବାହାରକୁ ପ୍ରକ୍ଷେପ କରାହୁଏ । ଈଶ୍ୱରଙ୍କ ସମ୍ବନ୍ଧରେ ଏଭଳି କରିବା ଅସମ୍ଭବ; କାରଣ, ସେ ଆମମାନଙ୍କ ଅନ୍ତରତମ ଆତ୍ମା-ସ୍ୱରୂପ, ଆମେମାନେ ତାହାଙ୍କୁ ବାହାରେ ପ୍ରକ୍ଷେପ କରିପାରୁ ନାହିଁ । ଛାନ୍ଦୋଗ୍ୟ ଉପନିଷଦ୍‌ରେ ଅଛି—'ସ ଯ ଏଷୋଽଣିମୈତଦାତ୍ମ୍ୟମିଦଂ ସର୍ବଂ ତତ୍ ସତ୍ୟଂ ସ ଆତ୍ମା ତତ୍ତ୍ୱମସି ଶ୍ୱେତକେତୋ'**—ଏହାର ଅର୍ଥ—ସେହି ସୂକ୍ଷ୍ମସ୍ୱରୂପ ଜଗତ୍‌କାରଣ ଜଗତସ୍ଥ ସକଳ ବସ୍ତୁର ଆତ୍ମା, ସେ ସତ୍ୟସ୍ୱରୂପ; ହେ ଶ୍ୱେତକେତୁ, ତୁମେ ହିଁ ସେ । ବେଦାନ୍ତର ପବିତ୍ରତମ ଏହି 'ତତ୍ତ୍ୱମସି' ବାକ୍ୟକୁ ମହାବାକ୍ୟ ବୋଲି କୁହାଯାଏ; ଆଉ ସେହି ପୂର୍ବୋକ୍ତ ବାକ୍ୟାଂଶଦ୍ୱାରା 'ତତ୍ତ୍ୱମସି'ର ପ୍ରକୃତ ଅର୍ଥ କ'ଣ, ତାହା ମଧ୍ୟ

* କୋ ହ୍ୟେବାନ୍ୟାତ୍… । ତୈତ୍ତିରୀୟ ଉପ., ୨।୭

** ଛାନ୍ଦୋଗ୍ୟ ଉପ., ୬।୮।୭

ବୁଝାଗଲା । 'ତୁମେ ହିଁ ସେ'—ଈଶ୍ୱରଙ୍କୁ ଏତଦ୍‌ବ୍ୟତୀତ ଅନ୍ୟ କୌଣସି ଭାଷାରେ ତୁମେ ବର୍ଣ୍ଣନା କରିପାରିବ ନାହିଁ । ଭଗବାନଙ୍କୁ ପିତା, ମାତା, ଭ୍ରାତା ବା ପ୍ରିୟବନ୍ଧୁ ବୋଲି କହିଲେ ତାଙ୍କୁ ବିଷୟୀଭୂତ କରାହୁଏ—ତାଙ୍କୁ ଯେପରି କି ବାହାରକୁ ଆଣି ଦେଖିବାକୁ ହୁଏ—ଏହା ତ କେବେ ହୋଇପାରେ ନାହିଁ । ସେ ସକଳ ବିଷୟ (object)ର ଅନନ୍ତ ବିଷୟୀ (subject) । ଯେପରି ମୁଁ ଏହି ଚଉକୀକୁ ଦେଖୁଛି, ମୁଁ ଏହି ଚଉକୀର ଦ୍ରଷ୍ଟା—ମୁଁ ତାହାର ବିଷୟୀ । ସେହିପରି ଈଶ୍ୱର ମୋର ଆତ୍ମାର ନିତ୍ୟଦ୍ରଷ୍ଟା, ନିତ୍ୟଜ୍ଞାତା, ନିତ୍ୟବିଷୟୀ । କିପରି ତୁମେ ତାଙ୍କୁ—ତୁମ ଆତ୍ମାର ଅନ୍ତରାତ୍ମାକୁ—ସକଳ ବସ୍ତୁର ସାରସତ୍ତାକୁ—'ବିଷୟୀଭୂତ' କରିବ—ବାହାରକୁ ଆଣି ଦେଖିବ ? ଅତଏବ ମୁଁ ତୁମମାନଙ୍କୁ ଆଉଥରେ କହୁଛି, ଈଶ୍ୱର ଜ୍ଞେୟ ନୁହନ୍ତି, ଅଜ୍ଞେୟ ମଧ୍ୟ ନୁହନ୍ତି । ସେ ଜ୍ଞେୟ ଅଜ୍ଞେୟଠାରୁ ଅନନ୍ତଗୁଣ ଊର୍ଦ୍ଧ୍ୱରେ—ସେ ଆମ-ମାନଙ୍କଠାରୁ ଅଭେଦ—ଯାହା ମୋ ସହିତ ଏକ, ତାହା କଦାପି ମୋର ଜ୍ଞେୟ ବା ଅଜ୍ଞେୟ ହୋଇପାରେ ନାହିଁ; ଯେପରି ତୁମର ଆତ୍ମା ମୋର ଆତ୍ମା ଜ୍ଞେୟ ନୁହେଁ, ଅଜ୍ଞେୟ ମଧ୍ୟ ନୁହେଁ । ତୁମେ ତୁମର ଆତ୍ମାକୁ ଜାଣିପାର ନାହିଁ, ଅର୍ଥାତ୍ ତାହାକୁ ବିଷୟଦୃଷ୍ଟିଗୋଚର କରିପାର ନାହିଁ, କାରଣ ତୁମେ ନିଜେ ହିଁ ତାହା, ତୁମେ ତାହାକୁ ନିଜଠାରୁ ପୃଥକ୍ କରିପାରିବ ନାହିଁ । ପୁନଶ୍ଚ ତୁମେ ତାହାକୁ ଅଜ୍ଞେୟ ମଧ୍ୟ କହିପାରିବ ନାହିଁ, କାରଣ ଅଜ୍ଞେୟ କହିବାକୁ ଗଲେ, ପ୍ରଥମେ ତାହାକୁ ବିଷୟ କରିବାକୁ ହେବ, ମାତ୍ର ତାହା ତ କରିହେବ ନାହିଁ । ଆଉ ତୁମେ ନିଜେ ଯେପରି ତୁମ ନିକଟରେ ପରିଚିତ—ଜ୍ଞାତ, ଆଉ କେଉଁ ବସ୍ତୁ ତଦପେକ୍ଷା ତୁମର ଅଧିକ ଜ୍ଞାତ ? ପ୍ରକୃତପକ୍ଷେ ତାହା ଆମର କେନ୍ଦ୍ରସ୍ୱରୂପ । ଠିକ୍ ସେହିପରି କୁହାଯାଏ ଯେ, ଈଶ୍ୱର ଜ୍ଞାତ ନୁହନ୍ତି, ଅଜ୍ଞେୟ ମଧ୍ୟ ନୁହନ୍ତି, ତଦପେକ୍ଷା ଅନନ୍ତଗୁଣରେ ଉଚ୍ଚ, କାରଣ ସେ ଆମର ଆତ୍ମାର ଅନ୍ତରାତ୍ମା ।

ଅତଏବ ଆମେମାନେ ଦେଖୁଛୁ ପ୍ରଥମତଃ, 'ପୂର୍ଣ୍ଣବ୍ରହ୍ମଙ୍କଠାରୁ କିପରି ଏହି ଜଗତର ସୃଷ୍ଟି ହେଲା ?'—ଏହି ପ୍ରଶ୍ନ ସ୍ୱ-ବିରୋଧୀ ଏବଂ ଦ୍ୱିତୀୟତଃ ଆମେ ଦେଖିବାକୁ ପାଉଁ ଅଦ୍ୱୈତବାଦରେ ଈଶ୍ୱରଙ୍କର ଧାରଣା—ଏହି ଏକତ୍ୱ; ସୁତରାଂ ଆମେମାନେ ତାଙ୍କୁ ବିଷୟୀଭୂତ କରିପାରୁ ନାହିଁ, କାରଣ ଜ୍ଞାତସାରରେ ହେଉ କିମ୍ବା ଅଜ୍ଞାତ-ସାରରେ ହେଉ ଆମେମାନେ ସର୍ବଦା ତାଙ୍କ ମଧ୍ୟରେ ସଞ୍ଜୀବିତ ଏବଂ ତାଙ୍କ ମଧ୍ୟରେ ରହି ସମୁଦାୟ କାର୍ଯ୍ୟକଳାପ କରୁଛୁ । ଆମେମାନେ ଯାହାକିଛି କରୁଛୁ, ତାହା ସମସ୍ତ ତାଙ୍କର ମଧ୍ୟଦେଇ କରୁଛୁ । ବର୍ତ୍ତମାନ ପ୍ରଶ୍ନ ଏହି, ଦେଶ-କାଳ-ନିମିତ୍ତ କଅଣ ? ଅଦ୍ୱୈତବାଦର ଅର୍ଥ ହେଉଛି ଗୋଟିଏ ମାତ୍ର ବସ୍ତୁ ଅଛି, ଦୁଇଟି ନାହିଁ । କିନ୍ତୁ ପୁଣି କୁହାଯାଏ ଯେ, ସେହି ଅନନ୍ତ ବ୍ରହ୍ମ ଦେଶ-କାଳ-ନିମିତ୍ତର ଆବରଣଦ୍ୱାରା ନାନାରୂପେ ପ୍ରକାଶ ପାଉଛନ୍ତି । ତେଣୁ ବୋଧ ହେଉଛି, ଯେପରିକି ଦୁଇଟି ବସ୍ତୁ ଅଛି—ସେହି ଅନନ୍ତ ବ୍ରହ୍ମ ଗୋଟିଏ ବସ୍ତୁ, ଆଉ ମାୟା ଅର୍ଥାତ୍ ଦେଶକାଳନିମିତ୍ତର ସମଷ୍ଟି ଆଉ ଏକ

ବସ୍ତୁ । ଆପାତତଃ ଦୁଇଟି ବସ୍ତୁ ଅଛି, ଏହା ଯେପରି କ ସ୍ଥିର ସିଦ୍ଧାନ୍ତ ବୋଲି ମନେହୁଏ । ଅଦ୍ୱୈତବାଦୀ ଏହାର ଉତ୍ତରରେ କହନ୍ତି, ବାସ୍ତବିକ ଏହାକୁ ଦୁଇ କୁହାଯାଏ ନାହିଁ । ଦୁଇଟି ବସ୍ତୁ ରହିବାକୁ ହେଲେ ଉଭୟେ ବ୍ରହ୍ମଙ୍କ ପରି ସ୍ୱତନ୍ତ୍ର ହେବା ଆବଶ୍ୟକ—ଯେପରି ଏମାନଙ୍କ ଉପରେ କୌଣସି 'ନିମିତ୍ତ' କାର୍ଯ୍ୟ କରି ନ ପାରେ । ପ୍ରଥମତଃ ଦେଶ-କାଳ-ନିମିତ୍ତର ସ୍ୱତନ୍ତ୍ର ଅସ୍ତିତ୍ୱ ଅଛି ବୋଲି କୁହାଯାଇପାରେ ନାହିଁ । ଆମମାନଙ୍କ ମନର ପ୍ରତି ପରିବର୍ତ୍ତନ ସହିତ କାଳ ପରିବର୍ତ୍ତିତ ହେଉଛି, ସୁତରାଂ ତାହାର ସ୍ୱତନ୍ତ୍ର ଅସ୍ତିତ୍ୱ ନାହିଁ । କେବେ କେବେ ସ୍ୱପ୍ନରେ ଆମେ ଦେଖୁ, ଆମେ ଯେପରି ବହୁକାଳ ଧରି ଜୀବନଧାରଣ କରିଛୁ—ପୁଣି କେବେ କେବେ ମୁହୂର୍ତ୍ତିକ ମଧ୍ୟରେ କେତେକ ମାସ ବିତିବା ପରି ଆମେ ଅନୁଭବ କରୁ ।

ଅତଏବ ଦେଖାଗଲା, କାଳ ତୁମର ମନର ଅବସ୍ଥା ଉପରେ ସମ୍ପୂର୍ଣ୍ଣ ନିର୍ଭର କରୁଛି । ଦ୍ୱିତୀୟତଃ, କାଳର ଜ୍ଞାନ ସମୟେ ସମୟେ ଏକାବେଳକେ ଉଭେଇଯାଏ, ପୁଣି ଅନ୍ୟ ସମୟରେ ଆସିଥାଏ । ଦେଶ ସମ୍ବନ୍ଧରେ ମଧ୍ୟ ଏହିପରି । ଆମେମାନେ ଦେଶର ସ୍ୱରୂପ ଜାଣିପାରୁ ନାହିଁ । ତଥାପି ତାହାର ନିର୍ଦ୍ଦିଷ୍ଟ ଲକ୍ଷଣ ନିରୂପଣ କରିବା ଅସମ୍ଭବ ହେଲେ ମଧ୍ୟ, ତାହା ଯେ ରହିଛି—ଏହା ଅସ୍ୱୀକାର କରାଯାଇ ନ ପାରେ । ଏହା କୌଣସି ପଦାର୍ଥଠାରୁ ପୃଥକ୍ ହୋଇ ରହିପାରେ ନାହିଁ । ନିମିତ୍ତ ବା କାର୍ଯ୍ୟ-କାରଣଭାବ ସମ୍ବନ୍ଧରେ ମଧ୍ୟ ଏହି ଏକ କଥା ସତ୍ୟ । ଏହି ଦେଶକାଳନିମିତ୍ତ ଭିତରେ ଗୋଟିଏ ବିଶେଷତ୍ୱ ଦେଖୁଛି ଯେ, ସେମାନେ ଅନ୍ୟାନ୍ୟ ବସ୍ତୁଠାରୁ ପୃଥକ୍ ଭାବରେ ଅବସ୍ଥାନ କରିପାରନ୍ତି ନାହିଁ । ତୁମେମାନେ କେବଳ ଶୁଦ୍ଧ 'ଦେଶ' ବିଷୟରେ ଭାବିବାକୁ ଚେଷ୍ଟା କର, ଯେଉଁଥିରେ କୌଣସି ବର୍ଣ୍ଣ ନାହିଁ, ଯାହାର ସୀମା ନାହିଁ, ଚତୁର୍ଦ୍ଦିଗସ୍ଥ କୌଣସି ବସ୍ତୁ ସହିତ ଯାହାର କୌଣସି ସମ୍ବନ୍ଧ ନାହିଁ, ତୁମେ ସେ ବିଷୟ ଚିନ୍ତା କରିପାରିବ ନାହିଁ । ତୁମକୁ ଦେଶ ବିଷୟ ଚିନ୍ତା କରିବାକୁ ହେଲେ ଦୁଇଟି ସୀମାର ମଧ୍ୟସ୍ଥିତ ଅଥବା ତିନୋଟି ବସ୍ତୁ ମଧ୍ୟରେ ଅବସ୍ଥିତ ଦେଶ ବିଷୟ ଚିନ୍ତା କରିବାକୁ ହେବ । ତେବେ ଦେଖାଗଲା, ଦେଶର ଅସ୍ତିତ୍ୱ ଅନ୍ୟ ବସ୍ତୁ ଉପରେ ନିର୍ଭର କରୁଛି । କାଳ ସମ୍ବନ୍ଧରେ ମଧ୍ୟ ତଦ୍ରୂପ; ଶୁଦ୍ଧ 'କାଳ' ସମ୍ବନ୍ଧରେ ତୁମେ କୌଣସି ଧାରଣା କରିପାର ନାହିଁ । କାଳର ଧାରଣା କରିବାକୁ ହେଲେ ତୁମକୁ ଗୋଟିଏ ପୂର୍ବବର୍ତ୍ତୀ ଓ ଗୋଟିଏ ପରବର୍ତ୍ତୀ ଘଟଣାର ଧାରଣା କରିବାକୁ ହେବ ଏବଂ କାଳର ଧାରଣା ଦ୍ୱାରା ସେହି ଦୁଇଟିକୁ ଯୋଗ କରିବାକୁ ହେବ । ଦେଶ ଯେପରି ବାହ୍ୟସ୍ଥ ଦୁଇଟିବସ୍ତୁ ଉପରେ ନିର୍ଭର କରୁଛି, ତଦ୍ରୂପ କାଳ ମଧ୍ୟ ଦୁଇଟି ଘଟଣା ଉପରେ ନିର୍ଭର କରୁଛି । ପୁଣି 'ନିମିତ୍ତ' ବା 'କାର୍ଯ୍ୟକାରଣ' ଭାବର ଧାରଣା ଏହି ଦେଶ-କାଳ ଉପରେ ନିର୍ଭର କରୁଛି । ଏହି 'ଦେଶକାଳନିମିତ୍ତ'—ଏଗୁଡ଼ିକର ବିଶେଷତ୍ୱ ଏହି ଯେ, ସେମାନଙ୍କର ସ୍ୱତନ୍ତ୍ର ସତ୍ତା ନାହିଁ । ଏହି ଚଉକି ଖଣ୍ଡକର ବା ସେହି କାନ୍ଥଟାର ଯେପରି ଅସ୍ତିତ୍ୱ

ଅଛୁ, ସେମାନଙ୍କର ତାହା ମଧ୍ୟ ନାହିଁ । ଏମାନେ ଯେପରି କ ସକଳ ବସ୍ତୁର ପଶ୍ଚାଦ୍ଦେଶସ୍ଥ ଗ୍ରନ୍ଥିସ୍ୱରୂପ, ତୁମେ ସେମାନଙ୍କୁ କଦାପି ଧରିପାରିବ ନାହିଁ । ସେମାନଙ୍କର କୌଣସି ବାସ୍ତବିକ ସତ୍ତା ନାହିଁ, ଅଥଚ ସେମାନଙ୍କର ଯେ କୌଣସି ଅସ୍ତିତ୍ୱ ନାହିଁ, ତାହା ମଧ୍ୟ କହିହେବ ନାହିଁ; କାରଣ ସେମାନଙ୍କ ଭିତର ଦେଇ ଜଗତର ପ୍ରକାଶ ହେଉଛି । ଅତଏବ, ପ୍ରଥମତଃ ଆମେ ଦେଖିଲୁ ଯେ ଏହି ଦେଶ-କାଳ-ନିମିତ୍ତସମଷ୍ଟିର ଅସ୍ତିତ୍ୱ ନାହିଁ ଏବଂ ସେମାନେ ଏକାବେଳକେ ଅସତ୍ ବା ଅସ୍ତିତ୍ୱଶୂନ୍ୟ ମଧ୍ୟ ନୁହନ୍ତି । ଦ୍ୱିତୀୟତଃ ସେମାନେ ପୁଣି ଏକ ସମୟରେ ଏକାବେଳକେ ଅନ୍ତର୍ହିତ ହୋଇ-ଯାଆନ୍ତି । ଉଦାହରଣସ୍ୱରୂପ ସମୁଦ୍ରର ତରଙ୍ଗ ସମ୍ବନ୍ଧରେ ଚିନ୍ତା କର । ତରଙ୍ଗ ଅବଶ୍ୟ ସମୁଦ୍ର ସହିତ ଅଭେଦ, ତଥାପି ଆମେମାନେ ତାହାକୁ ତରଙ୍ଗ ବୋଲି ସମୁଦ୍ରଠାରୁ ପୃଥକ୍‌ରୂପେ ଜାଣୁ । ଏହି ବିଭିନ୍ନତାର କାରଣ କଅଣ ?—ନାମ ଓ ରୂପ । ନାମ ଅର୍ଥାତ୍ ସେହି ବସ୍ତୁ ସମ୍ବନ୍ଧରେ ଆମମାନଙ୍କ ମନରେ ଯେଉଁ ଗୋଟିଏ ଧାରଣା ରହିଛି; ଆଉ ରୂପ ଅର୍ଥାତ୍ ଆକାର । ପୁଣି ଆମେମାନେ କଣ ସମୁଦ୍ରଠାରୁ ତରଙ୍ଗକୁ ପୃଥକ୍ ରୂପେ ଚିନ୍ତା କରିପାରୁ ? କେବେ ନୁହେଁ । ତାହା ସବୁ ସମୟରେ ସେହି ସମୁଦ୍ରର ଧାରଣା ଉପରେ ନିର୍ଭର କରୁଛି । ଯଦି ସେ ତରଙ୍ଗ ଚାଲିଯାଏ, ତେବେ ରୂପ ମଧ୍ୟ ଅନ୍ତର୍ହିତ ହୁଏ; କିନ୍ତୁ ସେ ରୂପଟି ଯେ ଏକାବେଳକେ ଭ୍ରମାତ୍ମକ ଥିଲା, ତାହା ତ ନୁହେଁ । ଯେତେ ଦିନ ସେହି ତରଙ୍ଗ ଥିଲା, ସେତେ ଦିନ ସେହି ରୂପଟି ଥିଲା ଏବଂ ତୁମକୁ ବାଧ୍ୟ ହୋଇ ସେହି ରୂପ ଦେଖିବାକୁ ପଡୁଥିଲା । ଏହା ହିଁ ମାୟା । ଅତଏବ ଏହି ସମୁଦାୟ ଜଗତ୍ ଯେପରିକି ସେହି ବ୍ରହ୍ମଙ୍କର ଏକ ବିଶେଷ ରୂପ । ବ୍ରହ୍ମ ସେହି ସମୁଦ୍ର ଏବଂ ତୁମେ, ମୁଁ, ସୂର୍ଯ୍ୟ ଓ ତାରା ସବୁକିଛି ସେହି ସମୁଦ୍ରର ଭିନ୍ନ ଭିନ୍ନ ତରଙ୍ଗ ମାତ୍ର । ତରଙ୍ଗଗୁଡ଼ିକୁ ସମୁଦ୍ରଠାରୁ ପୃଥକ୍ କରେ କିଏ—ସେହି ରୂପ; ଆଉ ସେହି ରୂପ କେବଳ ଦେଶକାଳନିମିତ୍ତ ବ୍ୟତୀତ ଆଉ କିଛି ନୁହେଁ । ସେହି ଦେଶକାଳନିମିତ୍ତ ପୁଣି ସମ୍ପୂର୍ଣ୍ଣରୂପେ ସେହି ତରଙ୍ଗ ଉପରେ ନିର୍ଭର କରୁଛି । ତରଙ୍ଗ ଚାଲିଗଲା ମାତ୍ରେ ସେମାନେ ମଧ୍ୟ ଅନ୍ତର୍ହିତ ହୁଅନ୍ତି । ଜୀବାତ୍ମା ଯେତେବେଳେ ମାୟା ପରିତ୍ୟାଗ କରନ୍ତି, ସେତେବେଳେ ତାଙ୍କ ପକ୍ଷରେ ତାହା ଅନ୍ତର୍ହିତ ହୋଇଯାଏ ଏବଂ ସେ ମୁକ୍ତ ହୋଇଯାଆନ୍ତି । ଏହି ଦେଶକାଳନିମିତ୍ତ ଉପରେ ନିର୍ଭରଶୀଳତାରୁ ନିଜକୁ ରକ୍ଷା କରିବା ପାଇଁ ଆମମାନଙ୍କର ସମୁଦାୟ ଚେଷ୍ଟା ଉଦ୍ଦିଷ୍ଟ । ସେମାନେ ସର୍ବଦା ଆମ-ମାନଙ୍କୁ ବାଧା ଦେଉଛନ୍ତି ଏବଂ ଆମେମାନେ ସର୍ବଦା ନିଜକୁ ସେମାନଙ୍କ କବଳରୁ ମୁକ୍ତ କରିବାକୁ ଚେଷ୍ଟା କରୁଛୁ ।

ପଣ୍ଡିତମାନେ 'କ୍ରମବିକାଶବାଦ' (**Theory of evolution**)କାହାକୁ କହନ୍ତି ? ତା' ଭିତରେ ଦୁଇଟି ବିଷୟ ଅଛି । ପ୍ରଥମତଃ ଏକ ପ୍ରବଳ ଅନ୍ତର୍ନିହିତ ଶକ୍ତି ନିଜକୁ ପ୍ରକାଶ କରିବାକୁ ଚେଷ୍ଟା କରୁଛି, ଦ୍ୱିତୀୟତଃ ବହିଃସ୍ଥ ଅନେକ ଘଟଣାବଳୀ ତାକୁ ବାଧା ଦେଉଛି—ଚତୁର୍ଦ୍ଦିଗସ୍ଥ ଅବସ୍ଥାପୁଞ୍ଜ ତାହାକୁ ପ୍ରକାଶିତ ହେବାକୁ ଦେଉ

ନାହିଁ । ସୁତରାଂ ଏହି ଅବସ୍ଥାପୁଞ୍ଜ ସହିତ ସଂଗ୍ରାମ ପାଇଁ ସେହି ଶକ୍ତି ନବନବ କଳେବର ଧାରଣ କରୁଛି । ଗୋଟିଏ କ୍ଷୁଦ୍ରତମ ଜୀବାଣୁ ଏଭଳି ଭାବରେ ଉନ୍ନତ ହେବାର ଚେଷ୍ଟାରେ ଆଉ ଗୋଟିଏ ଶରୀର ଧାରଣ କରେ ଏବଂ କେତେକ ବାଧାକୁ ଜୟ କରି ଭିନ୍ନ ଭିନ୍ନ ଶରୀର ଧାରଣ କରି ଅବଶେଷରେ ସେ ମନୁଷ୍ୟରୂପେ ପରିଣତ ହୁଏ । ବର୍ତ୍ତମାନ ଯଦି ଏହି ତତ୍ତ୍ୱଟିକୁ ତାହାର ସ୍ୱାଭାବିକ ଚରମ ସିଦ୍ଧାନ୍ତକୁ ନେଇ ଯାଅ, ତେବେ ଅବଶ୍ୟ ସ୍ୱୀକାର କରିବାକୁ ହେବ ଯେ, ଏପରି ଏକ ସମୟ ଆସିବ, ଯେତେବେଳେ ଯେଉଁ ଶକ୍ତି ଜୀବାଣୁ ଭିତରେ କ୍ରୀଡ଼ା କରୁଥିଲା ଏବଂ ଯାହା ଅବଶେଷରେ ମନୁଷ୍ୟରୂପରେ ପରିଣତ ହୋଇଛି ତାହା ସମସ୍ତ ବାଧା ଅତିକ୍ରମ କରିବ, ବହିଃସ୍ଥ ଘଟଣାପୁଞ୍ଜ ଆଉ ତାହାକୁ କୌଣସି ବାଧା ଦେଇପାରିବ ନାହିଁ । ଏହି ତତ୍ତ୍ୱଟିକୁ ଦାର୍ଶନିକ ଭାଷାରେ ପ୍ରକାଶିତ କଲେ ଏହି ପ୍ରକାରରେ କହିହେବ—ପ୍ରତ୍ୟେକ କାର୍ଯ୍ୟର ଦୁଇଟି କରି ଅଂଶ ଅଛି । ଗୋଟିଏ ବିଷୟୀ, ଅନ୍ୟଟି ବିଷୟ । ମନେକର, ମୋତେ ଜଣେ ତିରସ୍କାର କଲେ । ମୁଁ ନିଜକୁ ଅସୁଖୀ ବୋଧ କଲି—ଏଠାରେ ମଧ୍ୟ ଏହି ଦୁଇଟି ବିଷୟ ରହିଛି । ଆଉ ଆମମାନଙ୍କର ସାରା ଜୀବନର ଚେଷ୍ଟା କଣ ? ନିଜର ମନକୁ ଏତେଦୂର ସବଳ କରିବୁ, ଯଦ୍ଦ୍ୱାରା ବାହାରର ଅବସ୍ଥାଗୁଡ଼ିକ ଉପରେ ମୁଁ ଆଧିପତ୍ୟ କରିପାରିବି, ଅର୍ଥାତ୍ କେହି ମୋତେ ତିରସ୍କାର କଲେ ମଧ୍ୟ ମୁଁ କିଛି କଷ୍ଟ ଅନୁଭବ କରିବି ନାହିଁ । ଏହିରୂପେ ଆମେମାନେ ପ୍ରକୃତିକୁ ଜୟ କରିବାକୁ ଚେଷ୍ଟା କରୁଛୁ । ମୁକ୍ତିର ଅର୍ଥ କଣ ? ଅଦ୍ୱୈତଭାବର ଚରମ ସ୍ୱରରେ ସ୍ୱର ମିଳାଇ 'ନିଜ'କୁ ଦୃଢ଼ କରିବା, ଯେପରି କି ସସୀମ ପ୍ରକୃତି ଆମ ଉପରେ ଆଉ କର୍ତ୍ତୃତ୍ୱ କରିନପାରେ । ଆମ ଦର୍ଶନର ଏହା ହିଁ ଯୁକ୍ତିଗତ ସିଦ୍ଧାନ୍ତ । ଅର୍ଥାତ୍ ଏପରି ଏକ ସମୟ ଆସିବ, ଯେତେବେଳେ ଆମେମାନେ ସର୍ବପ୍ରକାର ଅବସ୍ଥା ଉପରେ ଜୟଲାଭ କରିପାରିବା, କାରଣ ପ୍ରକୃତି ସସୀମ ।

ପ୍ରକୃତି ଯେ ସସୀମ, ଏ କଥାଟି ପୁଣି ବୁଝିବାକୁ ହେବ । ପ୍ରକୃତି ସସୀମ ବୋଲି କିପରି ଜାଣିଲ ? ଦର୍ଶନଦ୍ୱାରା ତାହା ଜଣାଯାଏ । ପ୍ରକୃତି ସେହି ଅନନ୍ତର ସୀମାବଦ୍ଧ ଭାବ ମାତ୍ର, ଅତଏବ ତାହା ସସୀମ । ଅତଏବ ଏପରି ଏକ ସମୟ ଆସିବ, ଯେତେବେଳେ ଆମେମାନେ ବାହାରର ଅବସ୍ଥାଗୁଡ଼ିକୁ ଜୟ କରିପାରିବା । ସେଗୁଡ଼ିକୁ ଜୟ କରିବାର ଉପାୟ କଣ ? ବାସ୍ତବିକ୍ ବାହାରର ବିଷୟଗୁଡ଼ିକରେ ଆମେମାନେ କୌଣସି ପରିବର୍ତ୍ତନ ସଂଘଟିତ କରି ସେମାନଙ୍କୁ ଜୟ କରିପାରିବୁ ନାହିଁ । କ୍ଷୁଦ୍ରକାୟ ମତ୍ସ୍ୟଟି ମଧ୍ୟ ତାହାର ଜଳସ୍ଥ ଶତ୍ରୁଗଣଙ୍କଠାରୁ ଆତ୍ମରକ୍ଷା କରିବାକୁ ଇଚ୍ଛୁକ । ସେ କିପରି ଭାବରେ ତାହା ସାଧନ କରେ ? ଆକାଶରେ ଉଡ଼ି—ପକ୍ଷୀ ହୋଇ । ମତ୍ସ୍ୟଟି ଜଳ ବା ବାୟୁର କୌଣସି ପରିବର୍ତ୍ତନ ସାଧନ କଲା ନାହିଁ—ପରିବର୍ତ୍ତନ ଯାହା କିଛି ହେଲା, ତାହା ତାହାର ନିଜ ଭିତରେ । ପରିବର୍ତ୍ତନ ସର୍ବଦା 'ନିଜ' ଭିତରେ ହିଁ ହୋଇଥାଏ । ଏହିରୂପେ ଆମେମାନେ ଦେଖୁ ଯେ, ସମୁଦାୟ କ୍ରମବିକାଶ ଘଟଣା-

ଟିରେ 'ନିଜ'ର ପରିବର୍ତ୍ତନଦ୍ୱାରା ପ୍ରକୃତି ବିକାଶ ହେଉଛି । ଏହି ତତ୍ତ୍ୱଟି ଧର୍ମ ଏବଂ ନୀତିରେ ପ୍ରୟୋଗ କର—ଦେଖିବ, ଏଠାରେ ମଧ୍ୟ 'ଅଶୁଭ-ଜୟ' 'ନିଜ' ଭିତରେ ପରିବର୍ତ୍ତନଦ୍ୱାରା ସାଧିତ ହେଉଛି । ସବୁ ନିଜ ଉପରେ ନିର୍ଭର କରେ; ଏହି 'ନିଜ' କଥାଟା ଉପରେ ଜୋର୍ ଦେବା ହିଁ ଅଦ୍ୱୈତବାଦର ଦୃଢ଼ଭୂମି । 'ଅଶୁଭ, ଦୁଃଖ' ଏସବୁ କଥା କହିବା ଭୁଲ୍, କାରଣ ବହିର୍ଜଗତରେ ସେମାନଙ୍କର କୌଣସି ଅସ୍ତିତ୍ୱ ନାହିଁ । କ୍ରୋଧର କାରଣସମୂହ ପୁନଃ ପୁନଃ ଘଟିଲେ ମଧ୍ୟ ଏଥିରେ ସ୍ଥିର ରହିବାରେ ଯଦି ମୋର ଅଭ୍ୟାସ ହୋଇଯାଏ, ତାହାହେଲେ ମୋର ମନରେ କଦାପି କ୍ରୋଧର ଉଦ୍ରେକ ହେବ ନାହିଁ । ତେଣୁ ଲୋକେ ମୋତେ ଯେତେ ଘୃଣା କଲେ ମଧ୍ୟ ଯଦି ମୁଁ ସେ ସବୁକୁ ଗ୍ରାହ୍ୟ ନ କରେ, ତାହାହେଲେ ମୋର ମଧ୍ୟ ସେମାନଙ୍କ ପ୍ରତି ଘୃଣାର ଉଦ୍ରେକ ହେବ ନାହିଁ । ଏହି ଭାବରେ 'ଅଶୁଭକୁ ଜୟ' କରିବାକୁ ହୁଏ—'ନିଜ'ର ଉନ୍ନତିସାଧନଦ୍ୱାରା ।

ଅତଏବ ତୁମେମାନେ ଦେଖୁଛ, ଅଦ୍ୱୈତବାଦ ହିଁ ଏକମାତ୍ର ଧର୍ମ, ଯାହା ଆଧୁନିକ ବୈଜ୍ଞାନିକମାନଙ୍କ ସିଦ୍ଧାନ୍ତ ସହିତ ଭୌତିକ ଓ ଆଧ୍ୟାତ୍ମିକ ଉଭୟ ଦିଗରୁ ଯେ କେବଳ ମିଳିଯାଏ, ତାହା ନୁହେଁ, ବରଂ ସେହିସବୁ ସିଦ୍ଧାନ୍ତଠାରୁ ଉଚ୍ଚତର ସିଦ୍ଧାନ୍ତସମୂହ ସ୍ଥାପନ କରେ ଏବଂ ଏଥିପାଇଁ ଆଧୁନିକ ବୈଜ୍ଞାନିକମାନଙ୍କ ପ୍ରାଣକୁ ଏହା ଖୁବ୍ ସ୍ପର୍ଶ କରିଛି । ସେମାନେ ଦେଖୁଛନ୍ତି ଯେ, ପ୍ରାଚୀନ ଦ୍ୱୈତବାଦାତ୍ମକ ଧର୍ମସମୂହ ସେମାନଙ୍କ ପକ୍ଷରେ ପର୍ଯ୍ୟାପ୍ତ ନୁହେଁ, ସେଥିରେ ସେମାନଙ୍କର ଜ୍ଞାନର ପିପାସା ମେଣ୍ଟୁ ନାହିଁ; କିନ୍ତୁ ଏହି ଅଦ୍ୱୈତବାଦରେ ସେମାନଙ୍କର ଜ୍ଞାନର କ୍ଷୁଧା ମେଣ୍ଟୁଛି । କେବଳ ମାତ୍ର ମନୁଷ୍ୟର ବିଶ୍ୱାସ ଥିଲେ ଚଳିବ ନାହିଁ, ଏଭଳି ବିଶ୍ୱାସ ରହିବା ଦରକାର, ଯଦ୍ଦ୍ୱାରା ତା'ର ଜ୍ଞାନବୃତ୍ତି ଚରିତାର୍ଥ ହେବ । ଯଦି ଜଣେ ମନୁଷ୍ୟକୁ, ସେ ଯାହା ଦେଖୁଛି, ତାହାକୁ ବିଶ୍ୱାସ କରିବାକୁ କୁହାଯାଏ, ତେବେ ସେ ଶୀଘ୍ର ବାତୁଳାଶ୍ରମକୁ ଯିବ ।

ଥରେ ଜଣେ ମହିଳା ମୋ ପାଖକୁ ଗୋଟିଏ ବହି ପଠାଇଥିଲେ । ସେଥିରେ ଲେଖାଥିଲା ଯେ ଆମେମାନେ ସବୁ କଥାକୁ ବିଶ୍ୱାସ କରିବା ଉଚିତ । ଏହି ବହିରେ ଆହୁରି ମଧ୍ୟ ଲେଖା ଥିଲା ଯେ, ମାନବର ଆତ୍ମା ବୋଲି କିଛି ନାହିଁ । ତେବେ ସ୍ୱର୍ଗରେ ଦେବଦେବୀମାନେ ଅଛନ୍ତି ଓ ଗୋଟିଏ ଜ୍ୟୋତିସୂତ୍ର ଆମ ମସ୍ତକଗୁଡ଼ିକୁ ସ୍ୱର୍ଗ ସହିତ ସଂଯୁକ୍ତ କରି ରଖିଛି । କିନ୍ତୁ ଏ କଥା ଲେଖିକା ଜାଣିଲେ କିପରି ? ସେ କହିଲେ ଯେ, ପ୍ରତ୍ୟାଦିଷ୍ଟ ହୋଇ ସେ ଏହିସବୁ ତତ୍ତ୍ୱ ଜାଣିପାରିଛନ୍ତି ଓ ମୋତେ ମଧ୍ୟ ଏହା ବିଶ୍ୱାସ କରିବାକୁ କହିଲେ । ମୁଁ ଯେତେବେଳେ ତାଙ୍କ କଥାରେ ରାଜି ନ ହେଲି, ସେ କହିଲେ ଯେ ମୁଁ ନିଶ୍ଚୟ ଅତି ଦୁରାତ୍ମା ବ୍ୟକ୍ତି ଓ ମୋର ଉନ୍ନତିର କୌଣସି ଆଶା ନାହିଁ ।

ଯାହା ହେଉ, ଏହି ଊନବିଂଶ ଶତାବ୍ଦୀର ଶେଷଭାଗରେ ମଧ୍ୟ 'ଆମ ପିତୃ-

ପିତାମହମାନଙ୍କର ଧର୍ମ ହିଁ କେବଳ ସତ୍ୟ ଓ ଅନ୍ୟାନ୍ୟ ଯେଉଁସବୁ ଧର୍ମ ପ୍ରଚଳିତ ହୋଇଅଛି ତାହା ସବୁ ମିଥ୍ୟା'—ଏପରି ଧାରଣା ବହୁ ସ୍ଥାନରେ ରହିଥିବାରୁ ଏହା ପ୍ରମାଣିତ ହେଉଛି ଯେ ଆମେମାନେ ଏବେ ମଧ୍ୟ ଦୁର୍ବଳ ଏବଂ ଏହି ଦୁର୍ବଳତାକୁ ଦୂର କରିବାକୁ ହେବ । ଏଭଳି ଦୁର୍ବଳତା ଯେ କେବଳ ତୁମ ଦେଶରେ(ଇଂଲଣ୍ଡରେ) ଅଛି ତାହା ନୁହେଁ, ଏହା ପ୍ରତ୍ୟେକ ଦେଶରେ ଅଛି ଏବଂ ଏହା ଆମ ଦେଶରେ ଯେତେ ପ୍ରବଳ, ସେପରି ଅନ୍ୟ କୌଣସି ଦେଶରେ ନୁହେଁ । ଅଦ୍ୱୈତବାଦକୁ କଦାପି ସାଧାରଣ ଲୋକଙ୍କ ମଧ୍ୟରେ ପ୍ରଚଳିତ ହେବାକୁ ଦିଆଯାଇ ନାହିଁ । ସନ୍ନ୍ୟାସୀମାନେ ଅରଣ୍ୟରେ ତାହାର ସାଧନା କରୁଥିଲେ, ତେଣୁ ବେଦାନ୍ତର ଅନ୍ୟ ନାମ 'ଆରଣ୍ୟକ' । ଅବଶେଷରେ ଭଗବତ୍-କୃପାରେ ବୁଦ୍ଧଦେବ ଅବତୀର୍ଣ୍ଣ ହୋଇ ଆପାମର ସାଧାରଣଙ୍କ ମଧ୍ୟରେ ତାହା ପ୍ରଚାର କଲେ; ସେତେବେଳେ ସବୁ ଜାତିର ଲୋକେ ବୌଦ୍ଧଧର୍ମ ପ୍ରଭାବରେ ଜାଗିଉଠିଲେ । ଅନେକ ଦିନ ପରେ ପୁଣି ଯେତେବେଳେ ନାସ୍ତିକମାନେ ସମୁଦାୟ ଜାତିକୁ ଏକାବେଳକେ ଧ୍ୱଂସ କରିବା ପାଇଁ ଉନ୍ମୁଖ, ସେତେବେଳେ ଜ୍ଞାନୀମାନେ ଏକମାତ୍ର ଏହି ଅଦ୍ୱୈତବାଦ ଭାରତକୁ ସେହି ଜଡ଼ବାଦରୁ ମୋଚନ କରିବାର ଉପାୟରୂପେ ଦେଖିଲେ । ଦୁଇ ଥର ତାହା ଭାରତକୁ ଜଡ଼ବାଦ ହାତରୁ ରକ୍ଷା କରିଥିଲା । ଭାରତରେ ବୁଦ୍ଧଙ୍କ ଆବିର୍ଭାବର ଠିକ୍ ପୂର୍ବେ ଜଡ଼ବାଦ ଅତ୍ୟନ୍ତ ପ୍ରବଳ ହୋଇଥିଲା—ଇଉରୋପ-ଆମେରିକାର ପଣ୍ଡିତମଣ୍ଡଳୀଙ୍କ ମଧ୍ୟରେ ବର୍ତ୍ତମାନ ଯେପରି ଜଡ଼ବାଦ ଅଛି, ତାହା ଅପେକ୍ଷା ଆହୁରି ଜଘନ୍ୟ ଥିଲା । ମୁଁ ମଧ୍ୟ ଏକ ପ୍ରକାରର ଜଡ଼ବାଦୀ, କାରଣ, ମୋର ବିଶ୍ୱାସ—ଗୋଟିଏ ମାତ୍ର ପଦାର୍ଥର ଅସ୍ତିତ୍ୱ ଅଛି । ଆଧୁନିକ ଜଡ଼ବାଦୀମାନେ ମଧ୍ୟ ତାହା କହନ୍ତି; ତେବେ ସେ ତାକୁ ଜଡ଼ ଆଖ୍ୟା ଦିଅନ୍ତି ଓ ମୁଁ ତାକୁ ବ୍ରହ୍ମ କହେ । ଏହି 'ଜଡ଼ବାଦୀ' କହନ୍ତି—ଏହି ଜଡ଼ରୁ ମନୁଷ୍ୟର ଆଶା ଭରସା, ଧର୍ମ ସମସ୍ତ ହିଁ ନିର୍ଗତ ହୋଇଛି । ମୁଁ କହେ—ବ୍ରହ୍ମଙ୍କଠାରୁ ସମୁଦାୟ ନିର୍ଗତ । ମୁଁ ଅବଶ୍ୟ ଏଠାରେ ଏଭଳି ଜଡ଼ବାଦର କଥା କହୁନାହିଁ, ମୁଁ ଚାର୍ବାକଙ୍କ ମତବାଦ କହୁଛି—'ଖାଅପିଅ ମଜାକର; ଈଶ୍ୱର ଆତ୍ମା ବା ସ୍ୱର୍ଗ କିଛି ନାହିଁ, ଧର୍ମ କେତେକ ଧୂର୍ତ୍ତ, ଦୁଷ୍ଟ ପୁରୋହିତମାନଙ୍କ କଳ୍ପନା ମାତ୍ର'—'ଯାବଜ୍ଜୀବେତ୍ ସୁଖଂ ଜୀବେତ୍, ଋଣଂ କୃତ୍ୱା ଘୃତଂ ପିବେତ୍ ।' ଏହି ଧରଣର ନାସ୍ତିକତା ବୁଦ୍ଧଦେବଙ୍କ ଆବିର୍ଭାବ ପୂର୍ବରୁ ଏତେ ବିସ୍ତୃତ ହୋଇଥିଲା ଯେ ଏହାକୁ 'ଲୋକାୟତ ଦର୍ଶନ' ବୋଲି କୁହାଯାଉଥିଲା । ଏହି ଅବସ୍ଥାରେ ବୁଦ୍ଧଦେବ ଆବିର୍ଭୂତ ହୋଇ ଜନସାଧାରଣଙ୍କ ମଧ୍ୟରେ ବେଦାନ୍ତ ପ୍ରଚାର କରି ଭାରତବର୍ଷକୁ ରକ୍ଷା କଲେ । ବୁଦ୍ଧଦେବଙ୍କ ତିରୋଭାବର ସହସ୍ର ବର୍ଷ ପରେ ପୁଣି ଥରେ ଏହିଭଳି ବ୍ୟାପାର ଘଟିଲା । ଆଚଣ୍ଡାଳ ସମସ୍ତେ ବୌଦ୍ଧ ହେବାକୁ ଲାଗିଲେ । ଅନେକେ ଖୁବ୍ ନୀଚ ଜାତିର ହୋଇ ମଧ୍ୟ ବୌଦ୍ଧଧର୍ମ ଗ୍ରହଣ କରି ବେଶ୍ ସଦାଚାର-ପରାୟଣ ହେଲେ; କିନ୍ତୁ ଏମାନଙ୍କର ନାନାପ୍ରକାର କୁସଂସ୍କାର ଥିଲା—ନାନା ପ୍ରକାର ମନ୍ତ୍ରତନ୍ତ୍ର,

ଭୂତ ଓ ଦେବତା ପ୍ରଭୃତିରେ ଏମାନଙ୍କର ବିଶ୍ୱାସ ଥିଲା । ବୌଦ୍ଧଧର୍ମର ପ୍ରଭାବରେ ଏଗୁଡ଼ିକ ମାତ୍ର ଅଳ୍ପଦିନ ପାଇଁ ଦବି ରହିଲା ସତ; କିନ୍ତୁ ସେଗୁଡ଼ିକ ପୁଣି ପ୍ରକାଶିତ ହେଲା; ଅବଶେଷରେ ଭାରତବର୍ଷରେ ବୌଦ୍ଧଧର୍ମ ନାନା ପ୍ରକାର ବିଷୟର ଏକ ଖେଚେଡ଼ିରେ ପରିଣତ ହେଲା । ସେତେବେଳେ ପୁଣି ନାସ୍ତିକତାର ମେଘରେ ଭାରତର ଗଗନ ଆଚ୍ଛନ୍ନ ହେଲା—ସମ୍ଭ୍ରାନ୍ତ ଲୋକେ ଯଥେଚ୍ଛାଚାରୀ ଓ ସାଧାରଣ ଲୋକେ କୁସଂସ୍କାରାଚ୍ଛନ୍ନ ହେଲେ । ଏପରି ସମୟରେ ଶଙ୍କରାଚାର୍ଯ୍ୟ ଆବିର୍ଭୂତ ହୋଇ ବେଦାନ୍ତର ପୁନରୁଦ୍ଦୀପନ କଲେ । ସେ ବେଦାନ୍ତକୁ ଗୋଟିଏ ଯୁକ୍ତିପୂର୍ଣ୍ଣ ବିଚାର-ସଙ୍ଗତ ଦର୍ଶନରୂପେ ପ୍ରଚାର କଲେ । ଉପନିଷଦ୍‌ର ବିଚାରଭାଗ ଅତ୍ୟନ୍ତ ଅସ୍ଫୁଟ । ବୁଦ୍ଧଦେବ ଉପନିଷଦ୍‌ର ନୀତିବିଭାଗ ଉପରେ ଖୁବ୍ ଜୋର୍ ଦେଇଥିଲେ; ଶଙ୍କରାଚାର୍ଯ୍ୟ ତାହାର ଜ୍ଞାନଭାଗ ଉପରେ ଜୋର୍ ଦେଲେ । ତଦ୍ଦ୍ୱାରା ଉପନିଷଦ୍‌ର ସିଦ୍ଧାନ୍ତଗୁଡ଼ିକ ଯୁକ୍ତିବିଚାରଦ୍ୱାରା ପ୍ରମାଣିତ ଓ ପ୍ରଣାଳୀବଦ୍ଧରୂପେ ଲୋକ ସମ୍ମୁଖରେ ଉପସ୍ଥାପିତ ହୋଇଛି ।

ୟୁରୋପରେ ମଧ୍ୟ ଆଜିକାଲି ଠିକ୍ ସେହି ଅବସ୍ଥା ଉପସ୍ଥିତ । ଏହି ନାସ୍ତିକ-ମାନଙ୍କ ମୁକ୍ତି ପାଇଁ ଓ ତାଙ୍କ ମନରେ ବିଶ୍ୱାସ ଜନ୍ମାଇବା ପାଇଁ ତୁମେମାନେ ଦିନଆସାରି ପ୍ରାର୍ଥନା କରିପାର, ମାତ୍ର ସେମାନେ ବିଶ୍ୱାସ କରିବେ ନାହିଁ; ସେମାନେ ଯୁକ୍ତି ଚାହାଁନ୍ତି । ସୁତରାଂ ୟୁରୋପର ମୁକ୍ତି ବର୍ତ୍ତମାନ ଏହି ବିଚାରମୂଳକ ଧର୍ମ, ଏହି ଅଦ୍ୱୈତବାଦ ଉପରେ ନିର୍ଭର କରୁଛି ଏବଂ ଏହି ଏକମାତ୍ର ଅଦ୍ୱୈତବାଦ, ଏହି ନିର୍ଗୁଣ ବ୍ରହ୍ମର ଭାବ ହିଁ ପଣ୍ଡିତମାନଙ୍କ ଉପରେ ପ୍ରଭାବ ବିସ୍ତାର କରିବାକୁ ସମର୍ଥ । ଯେତେବେଳେ ଧର୍ମ ଲୁପ୍ତ ହେବାର ଉପକ୍ରମ ହୁଏ ଏବଂ ଅଧର୍ମର ଅଭ୍ୟୁତ୍ଥାନ ହୁଏ, ସେତେବେଳେ ଏହାର ଆବିର୍ଭାବ ହୁଏ । ତେଣୁ ୟୁରୋପ ଓ ଆମେରିକାରେ ଏହା ପ୍ରବେଶ ଲାଭ କରି ଦୃଢ଼ମୂଳ ହେଉଛି ।

ଏହି ଦର୍ଶନ ସମ୍ବନ୍ଧରେ ମୁଁ ଆଉ ଗୋଟିଏ କଥା କହିବି । ପ୍ରାଚୀନ ଉପନିଷଦ୍‌ଗୁଡ଼ିକ ଅତି ଉଚ୍ଚକବିତ୍ୱପୂର୍ଣ୍ଣ । ଉପନିଷଦ୍‌ସ୍ରଷ୍ଟା ଋଷିମାନେ ଉଚ୍ଚସ୍ତରର କବି ଥିଲେ । ତୁମମାନଙ୍କର ଅବଶ୍ୟ ସ୍ମରଣ ଥିବ ଯେ, ପ୍ଲେଟୋ କହିଛନ୍ତି, କବିତ୍ୱଭିତରୁ ଜଗତରେ ଅଲୌକିକ ସତ୍ୟର ପ୍ରକାଶ ହୋଇଥାଏ । ଉପନିଷଦ୍‌ର ଋଷିମାନଙ୍କୁ କବିତ୍ୱ ମାଧ୍ୟମରେ ଉଚ୍ଚତମ ସତ୍ୟ ଜଗତକୁ ଦେବା ପାଇଁ ବିଧାତା ଯେପରି ସାଧାରଣ ମାନବଠାରୁ ବହୁ ଉଚ୍ଚତର ସ୍ତରରେ କବିରୂପେ ସୃଷ୍ଟି କରିଥିଲେ । ସେମାନେ ପ୍ରଚାର କରୁ ନ ଥିଲେ, ଦାର୍ଶନିକ ବିଚାର ମଧ୍ୟ କରୁ ନ ଥିଲେ, ଏପରି କି ଲେଖୁ ନ ଥିଲେ ମଧ୍ୟ; ସେମାନଙ୍କର ହୃଦୟ-ଉତ୍ସରୁ ସଙ୍ଗୀତର ନିର୍ଝର ପ୍ରବାହିତ ହେଉଥିଲା । ବୁଦ୍ଧଦେବଙ୍କ ମଧ୍ୟରେ ଆମେମାନେ ହୃଦୟବତ୍ତା ଓ ଅନନ୍ତ ସହିଷ୍ଣୁତାଗୁଣ ଦେଖୁ । ସେ ଧର୍ମକୁ ସର୍ବସାଧାରଣଙ୍କ ଉପଯୋଗୀ କରି ପ୍ରଚାର କଲେ । ଅସାଧାରଣ ଧୀଶକ୍ତିସମ୍ପନ୍ନ ଶଙ୍କରାଚାର୍ଯ୍ୟ ତାକୁ ଜ୍ଞାନର ପ୍ରଖର ଆଲୋକରେ ଉଦ୍ଭାସିତ କଲେ ।

ଆମେମାନେ ବର୍ତ୍ତମାନ ଖୁଜୁଁ ଯେ ଏହି ପ୍ରଖର ଜ୍ଞାନ ସହିତ ବୁଦ୍ଧଦେବଙ୍କର ଏହି ଅଦ୍ଭୁତ ଦୟା ଓ ପ୍ରେମ ସମ୍ମିଳିତ ହେଉ—ଖୁବ୍ ଉଚ୍ଚ ଦାର୍ଶନିକ ଭାବ ଏହା ମଧ୍ୟରେ ରହୁ, ଏହା ଖୁବ୍ ଯୁକ୍ତିପୂର୍ଣ୍ଣ ହେଉ—ପୁଣି ସଙ୍ଗେ ସଙ୍ଗେ ତହିଁରେ ଉଚ୍ଚ ହୃଦୟ, ଗଭୀର ପ୍ରେମ ଓ ଦୟାର ସଂଯୋଗ ହେଉ । ତେବେ ଯାଇ ମଣିକାଞ୍ଚନ-ସଂଯୋଗ ଘଟିବ—ବିଜ୍ଞାନ ଓ ଧର୍ମ ପରସ୍ପରକୁ ଆଲିଙ୍ଗନ କରିବେ । ଏହା ହିଁ ହେବ ଭବିଷ୍ୟତର ଧର୍ମ । ଆଉ ଯଦି ଆମେମାନେ ଏହାକୁ ଠିକ୍ ଭାବରେ ଠିଆ କରାଇପାରୁ, ତାହାହେଲେ ନିଶ୍ଚୟ କୁହାଯାଇପାରିବ ଯେ, ତାହା ସବୁ ସମୟ ଓ ସବୁ ଅବସ୍ଥାର ଉପଯୋଗୀ ଧର୍ମ ହେବ । ଯଦି ଆପଣମାନେ ଘରକୁ ଯାଇ ସ୍ଥିରଭାବରେ ଚିନ୍ତା କରନ୍ତି, ତେବେ ଦେଖିବେ, ସବୁ ବିଜ୍ଞାନର କିଛି ନା କିଛି ତ୍ରୁଟି ଅଛି; କିନ୍ତୁ ଆପଣମାନେ ଜାଣିରଖନ୍ତୁ ଯେ ଆଧୁନିକ ବିଜ୍ଞାନକୁ ଏହି ପଥ ଦେଇ ଗତି କରିବାକୁ ହେବ—ଏବେ ପ୍ରାୟ ସେହି ବାଟକୁ ଆସିଯାଇଛି । ଯେତେବେଳେ କୌଣସି ପ୍ରଧାନ ବିଜ୍ଞାନାଚାର୍ଯ୍ୟ କହନ୍ତି ଯେ, ସବୁକିଛି ସେହି ଏକ ଶକ୍ତିର ବିକାଶ, ସେତେବେଳେ କଅଣ ଆପଣମାନଙ୍କର ମନେହୁଏ ନାହିଁ ଯେ ସେ ସେହି ଉପନିଷଦୁକ୍ତ ବ୍ରହ୍ମଙ୍କର ହିଁ ମହିମା କୀର୍ତ୍ତନ କରୁଛନ୍ତି ?—

"ଅଗ୍ନିର୍ଯଥୈକୋ ଭୁବନଂ ପ୍ରବିଷ୍ଟୋ ରୂପଂ ରୂପଂ ପ୍ରତିରୂପୋ ବଭୂବ ।
ଏକସ୍ତଥା ସର୍ବଭୂତାନ୍ତରାତ୍ମା ରୂପଂ ରୂପଂ ପ୍ରତିରୂପୋ ବହିଶ୍ଚ ।"*

—ଯେପରି ଏକ ଅଗ୍ନି ଜଗତରେ ପ୍ରବିଷ୍ଟ ହୋଇ ନାନାରୂପରେ ପ୍ରକାଶିତ ହେଉଛି, ତଦ୍ରୂପ ସର୍ବଭୂତର ଅନ୍ତରାତ୍ମା ସେହି ଏକ ବ୍ରହ୍ମ ନାନାରୂପରେ ପ୍ରକାଶିତ ହେଉଛନ୍ତି—ଆଉ ସେ ଜଗତର ବାହାରେ ମଧ୍ୟ ଅଛନ୍ତି । ବିଜ୍ଞାନର ଗତି କଅଣ ଆପଣମାନେ ବୁଝିପାରୁ ନାହାନ୍ତି ? ହିନ୍ଦୁଜାତି ମନସ୍ତତ୍ତ୍ୱର ଆଲୋଚନା କରୁ କରୁ ଦର୍ଶନ ଭିତର ଦେଇ ଅଗ୍ରସର ହୋଇଥିଲେ । ୟୁରୋପୀୟ ଜାତି ବାହ୍ୟ ପ୍ରକୃତିର ଆଲୋଚନା କରୁକରୁ ଅଗ୍ରସର ହୋଇଥିଲେ । ବର୍ତ୍ତମାନ ସେମାନେ ଏକ ସ୍ଥାନରେ ଉପନୀତ ହୋଇଛନ୍ତି । ମନସ୍ତତ୍ତ୍ୱ ଭିତର ଦେଇ ଆମେମାନେ ସେହି ଏକ ଅନନ୍ତ ସାର୍ବଭୌମିକ ସତ୍ତାରେ ପହଞ୍ଚୁଛୁ, ଯାହା ସକଳ ବସ୍ତୁର ଅନ୍ତରାତ୍ମାସ୍ୱରୂପ, ଯାହା ସକଳ ବସ୍ତୁର ସାର ଏବଂ ସତ୍ୟସ୍ୱରୂପ, ଯାହା ନିତ୍ୟମୁକ୍ତ ନିତ୍ୟାନନ୍ଦମୟ ଓ ନିତ୍ୟସତ୍ତାସ୍ୱରୂପ । ଜଡ଼-ବିଜ୍ଞାନଦ୍ୱାରା ମଧ୍ୟ ଆମେମାନେ ସେହି ଏକ ତତ୍ତ୍ୱରେ ପହଞ୍ଚୁଛୁ । ଏହି ଜଗତ୍‌ପ୍ରପଞ୍ଚ ସେହି ଏକର ବିକାଶ—ଜଗତରେ ଯାହା କିଛି ଅଛି, ତାହା ସେହି ସମଷ୍ଟିସ୍ୱରୂପ । ଆଉ ସମୁଦାୟ ମନୁଷ୍ୟଜାତିର ଗତି ବନ୍ଧନ ଆଡ଼କୁ ନୁହେଁ, ମୁକ୍ତି ଆଡ଼କୁ । ମନୁଷ୍ୟ ନୀତିପରାୟଣ ହେବ କାହିଁକି ? କାରଣ ନୀତି ମୁକ୍ତିର ଓ ଦୁର୍ନୀତି ବନ୍ଧନର ପଥ ।

ଅଦ୍ୱୈତବାଦର ଆଉ ଗୋଟିଏ ବିଶେଷତ୍ୱ ଏହି ଯେ ମୂଳରୁ ହିଁ ତାହା

* କଠ ଉପ., ୨।୨।୯

ଅପର ଧର୍ମ ବା ଅପର ମତ ଉପରେ ଆଘାତ କରେ ନାହିଁ । ଏହା ଅଦ୍ୱୈତବାଦର ଆଉ ଏକ ମହତ୍ତ୍ୱ । ଏହା ପ୍ରଚାର କରିବା ଅତି ସାହସର କାର୍ଯ୍ୟ ଯେ,

"ନ ବୁଦ୍ଧିଭେଦଂ ଜନୟେଦଜ୍ଞାନାଂ କର୍ମସଙ୍ଗିନାମ୍ ।
ଯୋଜୟେତ୍ ସର୍ବକର୍ମାଣି ବିଦ୍ୱାନ୍ ଯୁକ୍ତଃ ସମାଚରନ୍ ।"*

—ଜ୍ଞାନୀମାନେ ଅଜ୍ଞ ଓ କର୍ମାସକ୍ତ ବ୍ୟକ୍ତିମାନଙ୍କର ବୁଦ୍ଧିଭେଦ ଜନ୍ମାଇବେ ନାହିଁ, ବିଦ୍ୱାନ୍ ବ୍ୟକ୍ତି ନିଜେ କର୍ମନିଯୁକ୍ତ ରହି ସେମାନଙ୍କୁ ସକଳ ପ୍ରକାର କର୍ମରେ ନିୟୋଗ କରିବେ ।

ଅଦ୍ୱୈତବାଦ ଏହା ହିଁ କହେ—କାହାର ମତ ବିଚଳିତ କର ନାହିଁ; କିନ୍ତୁ ସମସ୍ତଙ୍କୁ ଉଚ୍ଚରୁ ଉଚ୍ଚତର ପଥରେ ଯିବାକୁ ସାହାଯ୍ୟ କର । ଅଦ୍ୱୈତବାଦ ଯେଉଁ ଈଶ୍ୱରଙ୍କୁ ପ୍ରଚାର କରେ, ସେ ସକଳ ଜଗତର ସମଷ୍ଟିସ୍ୱରୂପ । ଏହି ମତ ଯଦି ସତ୍ୟ ହୁଏ, ତେବେ ତାହା ନିଶ୍ଚୟ ହିଁ ସକଳ ମତକୁ ଗ୍ରହଣ କରିବ । ସର୍ବସାଧାରଣ ଉପଯୋଗୀ ସାର୍ବଭୌମ ଧର୍ମକୁ କେବଳ କେତେଜଣଙ୍କର ଗ୍ରହଣୋପଯୋଗୀ ହେଲେ ଚଳିବ ନାହିଁ—ତାହା ସର୍ବଭାବର ସମଷ୍ଟି ହେବା ଆବଶ୍ୟକ ।

ଅନ୍ୟ କୌଣସି ମତରେ ଏହି ସମଷ୍ଟିର ଭାବ ସେତେ ପରିସ୍ଫୁଟ ନୁହେଁ । ତଥାପି ସେହି ସକଳ ମତ ସେହି ଏକ ସମଷ୍ଟିକୁ ପ୍ରାପ୍ତ ହେବା ପାଇଁ ଚେଷ୍ଟା କରୁଛନ୍ତି । ଖଣ୍ଡର ଅସ୍ତିତ୍ୱ କେବଳ ଏଥିପାଇଁ ଯେ, ତାହା ସର୍ବଦା ସମଷ୍ଟି ହେବାପାଇଁ ଚେଷ୍ଟା କରୁଛି । ଏହି କାରଣରୁ ଭାରତର ବିଭିନ୍ନ ସମ୍ପ୍ରଦାୟର ଅଦ୍ୱୈତବାଦ ସହିତ ପ୍ରଥମରୁ କୌଣସି ବିରୋଧ ନ ଥିଲା । ଭାରତରେ ଆଜିକାଲି ଅନେକ ଦ୍ୱୈତବାଦୀ ଅଛନ୍ତି—ସେମାନଙ୍କ ସଂଖ୍ୟା ମଧ୍ୟ ଅତ୍ୟଧିକ; ଏହାର କାରଣ ଅଳ୍ପ-ଶିକ୍ଷିତ ଲୋକର ମନ ସ୍ୱଭାବତଃ ଦ୍ୱୈତବାଦକୁ ଗ୍ରହଣ କରେ । ଦ୍ୱୈତବାଦୀମାନେ କହନ୍ତି, ଦ୍ୱୈତବାଦ ଜଗତର ଖୁବ୍ ସ୍ୱାଭାବିକ ଓ ସହଜ ବ୍ୟାଖ୍ୟା; କିନ୍ତୁ ଏହି ଦ୍ୱୈତବାଦୀଗଣଙ୍କ ସହିତ ଅଦ୍ୱୈତବାଦୀର କୌଣସି ବିରୋଧ ନାହିଁ । ଦ୍ୱୈତବାଦୀ କହନ୍ତି : ଈଶ୍ୱର ଜଗତର ବାହାରେ, ସ୍ୱର୍ଗରେ କିମ୍ବା ଅପର କୌଣସି ସ୍ଥାନରେ ଅବସ୍ଥିତ । ଅଦ୍ୱୈତବାଦୀ କହନ୍ତି : ଈଶ୍ୱର ଜଗତର ଅନ୍ତରାତ୍ମାସ୍ୱରୂପ—ତାଙ୍କୁ ଦୂରବର୍ତ୍ତୀ କହିବା ଅର୍ଥ, କେବଳ ତାଙ୍କର ନିନ୍ଦା କରିବା ମାତ୍ର । ତାଙ୍କୁ ସ୍ୱର୍ଗ କିମ୍ବା ଅପର କୌଣସି ଦୂରବର୍ତ୍ତୀ ସ୍ଥାନରେ ଅବସ୍ଥିତ ବୋଲି କିପରି କହୁଛ ? ତାଙ୍କଠାରୁ ନିଜକୁ ପୃଥକ୍ ଭାବିବା ଯେ ଭୟାନକ ! ଆମେମାନେ ଆମମାନଙ୍କ ନିଜର ସର୍ବା-ପେକ୍ଷା ନିକଟବର୍ତ୍ତୀ । 'ତୁମେ ହିଁ ସେ'—ଏହି ବାକ୍ୟ ଛଡ଼ା ଆଉ କେଉଁ ଭାଷାରେ ଏହି ସନ୍ନିହିତତ୍ୱକୁ ପ୍ରକାଶ କରାଯାଇପାରେ ? ଯେପରି ଦ୍ୱୈତବାଦୀ ଅଦ୍ୱୈତବାଦୀର କଥାରେ ଭୟ ପାଆନ୍ତି ଓ ତାଙ୍କୁ ଭଗବନ୍ନିନ୍ଦା ବୋଲି କହନ୍ତି, ଅଦ୍ୱୈତବାଦୀ ମଧ୍ୟ ତଦ୍ରୂପ ଦ୍ୱୈତବାଦୀର କଥା ଶୁଣି ଭୟ ପାଇଥାନ୍ତି ଏବଂ କହଥାନ୍ତି, 'ମନୁଷ୍ୟ

* ଗୀତା, ୩।୨୬

କିଭଳି ତାଙ୍କୁ ଅନ୍ୟାନ୍ୟ ଜ୍ଞେୟ ବସ୍ତୁଭଳି ମନେକରିବାକୁ ସାହସ କରେ ?' ତାହାହେଲେ ମଧ୍ୟ ସେ ଜାଣନ୍ତି, ଧର୍ମଜଗତରେ ଦ୍ୱୈତବାଦୀର ସ୍ଥାନ କେଉଁଠି, ନିଜର ଦୃଷ୍ଟିକୋଣରୁ ସେ ଠିକ୍ ଦେଖୁଛି—ସୁତରାଂ ଦ୍ୱୈତବାଦୀ ସହିତ ତାଙ୍କର କୌଣସି ବିବାଦ ନାହିଁ । ଯେତେବେଳେ ସେ ସମଷ୍ଟିଭାବରେ ନ ଦେଖି ବ୍ୟଷ୍ଟିଭାବରେ ଦେଖୁଛନ୍ତି, ସେତେବେଳେ ଅବଶ୍ୟ ତାଙ୍କୁ ବହୁ ଦେଖିବାକୁ ହେବ । ବ୍ୟଷ୍ଟିଭାବର ଦିଗରୁ ଦେଖିବାକୁ ଗଲେ ତାଙ୍କୁ ଅବଶ୍ୟ ଭଗବାନଙ୍କୁ ବାହାରେ ଦେଖିବାକୁ ହେବ, ତାହା ଛଡ଼ା ଅନ୍ୟ ଗତି ନାହିଁ । ଦ୍ୱୈତବାଦୀଙ୍କୁ ନିଜ ମତ ନେଇ ରହିବାକୁ ଦିଅ । ତଥାପି ଅଦ୍ୱୈତବାଦୀ ଜାଣନ୍ତି ଯେ ଦ୍ୱୈତବାଦୀମାନଙ୍କ ମତରେ ଅସମ୍ପୂର୍ଣ୍ଣତା ଯାହା କିଛି ଥାଉ ନା କାହିଁକି, ସେମାନେ ସମସ୍ତେ ସେହି ଏକ ଚରମ ଲକ୍ଷ୍ୟ ଦିଗରେ ଚାଲିଛନ୍ତି । ଏହିଠାରେ ଦ୍ୱୈତବାଦୀମାନଙ୍କ ସହିତ ସେମାନଙ୍କର ସମ୍ପୂର୍ଣ୍ଣ ପ୍ରଭେଦ । ପୃଥିବୀର ସକଳ ଦ୍ୱୈତବାଦୀ ସ୍ୱଭାବତଃ ଏପରି ଜଣେ ସଗୁଣ ଈଶ୍ୱରଙ୍କଠାରେ ବିଶ୍ୱାସ କରନ୍ତି, ଯେ କି ଜଣେ ଉଚ୍ଚଶକ୍ତିସମ୍ପନ୍ନ ମନୁଷ୍ୟମାତ୍ର—ଏବଂ ମନୁଷ୍ୟର ଯେପରି କେତେଗୁଡ଼ିଏ ପ୍ରିୟପାତ୍ର ଥାଆନ୍ତି ଓ କେତେଗୁଡ଼ିଏ ଅପ୍ରିୟ ଥାଆନ୍ତି, ଦ୍ୱୈତବାଦୀଙ୍କ କଳ୍ପିତ ଈଶ୍ୱରଙ୍କର ମଧ୍ୟ ତାହା ଥାଏ । ସେ କୌଣସି କାରଣ ବ୍ୟତିରେକେ ମଧ୍ୟ କାହାପ୍ରତି ସନ୍ତୁଷ୍ଟ ଓ କାହାପ୍ରତି ବିରକ୍ତ ହୁଅନ୍ତି । ଆପଣମାନେ ଲକ୍ଷ୍ୟ କରିଥିବେ, ସବୁ ଜାତି ମଧ୍ୟରେ ଏପରି କେତେକ ଲୋକ ଅଛନ୍ତି, ଯେଉଁମାନେ କହନ୍ତି, 'ଆମେମାନେ ଈଶ୍ୱରଙ୍କର ଅନ୍ତରଙ୍ଗ ପ୍ରିୟପାତ୍ର—ଅନ୍ୟ କେହି ନୁହେଁ—ଯଦି ଅନୁତପ୍ତ ହୃଦୟରେ ଆମମାନଙ୍କର ଶରଣାଗତ ହୁଅ, ତେବେ ଆମମାନଙ୍କ ଈଶ୍ୱର ତୁମପ୍ରତି କୃପା କରିବେ ।' ଆହୁରି କେତେକ ଦ୍ୱୈତବାଦୀ ଅଛନ୍ତି, ସେମାନଙ୍କର ମତ ଅଧିକ ଭୟାନକ । ସେମାନେ କହନ୍ତି, 'ଈଶ୍ୱର ଯେଉଁମାନଙ୍କ ପ୍ରତି ସଦୟ, ଯେଉଁମାନେ ତାଙ୍କର ଅନ୍ତରଙ୍ଗ, ସେମାନେ ପୂର୍ବରୁ ନିର୍ଦ୍ଦିଷ୍ଟ ହୋଇ ରହିଛନ୍ତି—ଅନ୍ୟ କୌଣସି ଲୋକ ନିଜର ମୁଣ୍ଡ ପିଟିଦେଲେ ମଧ୍ୟ ଏହି ଦଳରେ ପ୍ରବେଶ କରିପାରିବ ନାହିଁ ।' ଆପଣମାନେ ଦ୍ୱୈତବାଦାତ୍ମକ ଏପରି କୌଣସି ଧର୍ମ ଦେଖାନ୍ତୁ, ଯାହା ଭିତରେ ଏଭଳି ସଙ୍କୀର୍ଣ୍ଣତା ନାହିଁ । ଏଥିପାଇଁ ଏସବୁ ଧର୍ମ ଚିରକାଳ ପରସ୍ପର ସହିତ ଯୁଦ୍ଧ କରୁଛନ୍ତି ଓ କରିବେ । ପୁନଶ୍ଚ ଏହି ଦ୍ୱୈତବାଦର ଧର୍ମ ସବୁ ସମୟରେ ଲୋକପ୍ରିୟ ହୁଏ । ତାହାର କାରଣ ଏହା ଅଶିକ୍ଷିତମାନଙ୍କୁ ସବୁ ସମୟରେ ହିଁ ଆକର୍ଷଣ କରିଥାଏ । ଦ୍ୱୈତବାଦୀ ଭାବନ୍ତି, ଜଣେ ଦଣ୍ଡଧାରୀ ଈଶ୍ୱର ନ ଥିଲେ କୌଣସି ପ୍ରକାର ନୀତି ରହିପାରିବ ନାହିଁ । ମନେକର, ଘୋଡ଼ା ଗାଡ଼ି ଟାଣୁଥିବା ଗୋଟିଏ ଘୋଡ଼ା ବକ୍ତୃତା ଦେବାକୁ ଆରମ୍ଭ କଲା । ସେ କହିବ ଯେ ଲଣ୍ଡନର ଲୋକେ ଭାରି ଖରାପ, କାରଣ ପ୍ରତ୍ୟହ କେହି ସେମାନଙ୍କୁ ଚାବୁକ୍‌ରେ ମାରନ୍ତି ନାହିଁ । ସେ ଘୋଡ଼ା ନିଜେ ଚାବୁକ୍‌ରେ ମାଡ଼ ଖାଇବାରେ ଅଭ୍ୟସ୍ତ ହୋଇଛି । ସେ ଏହାଛଡ଼ା ଆଉ ଅଧିକ କଣ ବୁଝିବ ? କିନ୍ତୁ ଚାବୁକମାଡ଼ ମନୁଷ୍ୟକୁ ଆହୁରି ଅଧିକ ଖରାପ କରିପକାଏ ।

ଗଭୀର ଭାବରେ ଚିନ୍ତା କରିବାକୁ ଅକ୍ଷମ ସାଧାରଣଲୋକେ ସବୁଦେଶରେ ଦ୍ୱୈତବାଦୀ ହୋଇଥାଆନ୍ତି । ସେମାନେ ସାଧାରଣତଃ ଦୁଃଖୀ, ଚିରକାଳ ଅତ୍ୟାଚାରିତ ହୋଇ ଆସିଛନ୍ତି । ସୁତରାଂ ସେମାନଙ୍କର ମୁକ୍ତିର ଧାରଣା ହେଲା—ଶାସ୍ତିରୁ ଅବ୍ୟାହତି ପାଇବା । ଅପର ପକ୍ଷରେ ଆମେମାନେ ଏହା ମଧ୍ୟ ଜାଣୁ, ସକଳ ଦେଶର ଚିନ୍ତାଶୀଳ ମହାପୁରୁଷଗଣ ଏହି ନିର୍ଗୁଣ ବ୍ରହ୍ମଙ୍କ ଭାବକୁ ନେଇ କାର୍ଯ୍ୟ କରିଛନ୍ତି । ଏହି ଭାବରେ ଅନୁପ୍ରାଣିତ ହୋଇ ଯୀଶୁଖ୍ରୀଷ୍ଟ କହିଥିଲେ, 'ମୁଁ ଓ ମୋର ପିତା ଏକ ।' ଏହିଭଳି ବ୍ୟକ୍ତି ଲକ୍ଷ ଲକ୍ଷ ଲୋକଙ୍କ ଭିତରେ ଶକ୍ତିସଞ୍ଚାର କରିବାକୁ ସମର୍ଥ ହୁଅନ୍ତି । ଏହି ଶକ୍ତି ସହସ୍ର ସହସ୍ର ବର୍ଷ ଧରି ମାନବପ୍ରାଣରେ ଶୁଭ ପରିତ୍ରାଣପ୍ରଦ ଶକ୍ତି ସଞ୍ଚାର କରିଥାଏ । ଆମେମାନେ ଏହା ମଧ୍ୟ ଜାଣୁ, ସେହି ମହାପୁରୁଷ ଅଦ୍ୱୈତବାଦୀ ଥିଲେ ବୋଲି ଅପରପ୍ରତି ଦୟାଶୀଳ ମଧ୍ୟ ଥିଲେ । ସେ ସାଧାରଣ ଲୋକଙ୍କୁ 'ଆମମାନଙ୍କର ସ୍ୱର୍ଗସ୍ଥ ପିତା' କଥା ଶିକ୍ଷା ଦେଇଛନ୍ତି । ଯେଉଁ ସାଧାରଣ ଲୋକେ ସଗୁଣ ଈଶ୍ୱରଙ୍କ-ଠାରୁ ଆଉ କୌଣସି ଉଚ୍ଚତର ଭାବର ଧାରଣା କରିପାରନ୍ତି ନାହିଁ, ସେମାନଙ୍କୁ ସେ ସେମାନଙ୍କର ସ୍ୱର୍ଗସ୍ଥ ପିତାଙ୍କ ନିକଟରେ ପ୍ରାର୍ଥନା କରିବାକୁ ଶିଖାଇଥିଲେ; କିନ୍ତୁ ଏହା ମଧ୍ୟ କହିଥିଲେ : ଯେତେବେଳେ ସମୟ ଆସିବ, ସେତେବେଳେ ତୁମେମାନେ ଜାଣିପାରିବ ଯେ 'ମୁଁ ତୁମମାନଙ୍କ ମଧ୍ୟରେ ଏବଂ ତୁମେମାନେ ମୋ ମଧ୍ୟରେ' ରହିଛ । ସେ ତାଙ୍କର ଅନ୍ତରଙ୍ଗ ଶିଷ୍ୟମାନଙ୍କୁ ଆହୁରି ସ୍ପଷ୍ଟଭାବରେ କହିଥିଲେ, 'ତୁମେମାନେ ସମସ୍ତେ ସେହି ପିତାଙ୍କ ସହିତ ଏକୀଭୂତ ହୋଇପାରିବ, ଯେପରି ମୁଁ ଓ ମୋର ପିତା ଅଭିନ୍ନ ।'

ବୁଦ୍ଧଦେବ ଦେବତା, ଈଶ୍ୱର ପ୍ରଭୃତି ବିଷୟକୁ ଗ୍ରାହ୍ୟ କରୁ ନ ଥିଲେ । ସାଧାରଣ ଲୋକେ ତାଙ୍କୁ ନାସ୍ତିକ ଓ ଜଡ଼ବାଦୀ ବୋଲି ଆଖ୍ୟା ଦେଇଥିଲେ; କିନ୍ତୁ ସେ ଗୋଟିଏ ସାମାନ୍ୟ ଛାଗଶିଶୁ ପାଇଁ ପ୍ରାଣ ତ୍ୟାଗ କରିବାକୁ ମଧ୍ୟ ପ୍ରସ୍ତୁତ ଥିଲେ । ସେ ମନୁଷ୍ୟ ଜାତି ପକ୍ଷରେ ଗ୍ରହଣୀୟ ସର୍ବୋଚ୍ଚ ନୀତିର ପ୍ରଚାର କରିଥିଲେ । ଯେଉଁଠାରେ କୌଣସି ପ୍ରକାର ନୀତିବିଧାନ ଦେଖିବ, ସେଠାରେ ଦେଖିବ ତାଙ୍କର ପ୍ରଭାବ, ତାଙ୍କର ଆଲୋକ । ଜଗତର ଏହିସବୁ ଉଚ୍ଚହୃଦୟ ବ୍ୟକ୍ତିମାନଙ୍କୁ ତୁମେ ସଂକୀର୍ଣ୍ଣ ଗଣ୍ଡିଭିତରେ ଆବଦ୍ଧ କରି ରଖିପାରିବ ନାହିଁ, ବିଶେଷତଃ ବର୍ତ୍ତମାନ କାଳରେ । ମନୁଷ୍ୟଜାତିର ଇତିହାସରେ ଏପରି ଏକ ସମୟ ଆସିଛି, ଶତବର୍ଷ ପୂର୍ବେ ଯାହା କେହି ସ୍ୱପ୍ନରେ ଭାବି ନ ଥିଲେ; ଏଭଳି ସବୁ ଜ୍ଞାନର ଉନ୍ନତି ହୋଇଛି, ଯାହା କେହି ପଚାଶ ବର୍ଷ ପୂର୍ବେ କଳ୍ପନା କରିପାରି ନ ଥିଲା—ଏପରି ସବୁ ବୈଜ୍ଞାନିକ ଜ୍ଞାନର ସ୍ରୋତ ପ୍ରବାହିତ ହେଉଛି । ଏପରି ସମୟରେ ଆଉ କିଅଣ ଲୋକଙ୍କୁ ସଂକୀର୍ଣ୍ଣ ଭାବରେ ଆବଦ୍ଧ କରି ରଖିହେବ ? ଲୋକେ ପଶୁତୁଲ୍ୟ ଚିନ୍ତାହୀନ ଜଡ଼ ପଦାର୍ଥରେ ପରିଣତ ନ ହେଲେ ଏହା ଅସମ୍ଭବ । ବର୍ତ୍ତମାନ ଆବଶ୍ୟକ ହେଉଛି—ଉଚ୍ଚତମ ଜ୍ଞାନ ସହିତ ଉଚ୍ଚତମ ହୃଦୟର, ଅନନ୍ତ ଜ୍ଞାନ ସହିତ ଅନନ୍ତ ପ୍ରେମର ସଂଯୋଗ । ସୁତରାଂ ବେଦାନ୍ତବାଦୀ-

ମାନେ କହନ୍ତି ସେହି ଅନନ୍ତ ସତ୍ତା ସହିତ ଏକୀଭୂତ ହେବା ହିଁ ଏକମାତ୍ର ଧର୍ମ; ଏବଂ ସେମାନେ ଭଗବାନଙ୍କର କେବଳ ମାତ୍ର ତିନୋଟି ଗୁଣର କଥା କହନ୍ତି— ଅନନ୍ତ ସତ୍ତା, ଅନନ୍ତ ଜ୍ଞାନ, ଅନନ୍ତ ଆନନ୍ଦ, ଆଉ କହନ୍ତି ଯେ ଏହି ତିନୋଟିଯାକ ଏକ ।* ଜ୍ଞାନ ଓ ଆନନ୍ଦ ବ୍ୟତୀତ ସତ୍ତା କଦାପି ରହିପାରେ ନାହିଁ । ଆନନ୍ଦ ବା ପ୍ରେମ ବ୍ୟତୀତ ଜ୍ଞାନ ଏବଂ ଜ୍ଞାନ ବ୍ୟତୀତ ପ୍ରେମ ବା ଆନନ୍ଦ ରହିପାରେ ନାହିଁ । ଆମେ ଏହି ସମ୍ମିଳନ ଚାହୁଁ—ଏହି ଅନନ୍ତ ସତ୍ତା, ଜ୍ଞାନ ଓ ଆନନ୍ଦର ଚରମ ଉନ୍ନତି— ଏକଦେଶୀ ଉନ୍ନତି ନୁହେଁ । ଆମେମାନେ ସକଳ ବିଷୟର ସମଭାବେ ଉନ୍ନତି ଚାହୁଁ । ବୁଦ୍ଧଦେବଙ୍କ ଭଳି ମହାନ୍ ହୃଦୟ ସହିତ ଶଙ୍କରାଚାର୍ଯ୍ୟଙ୍କର ମେଧା ଯୋଗ ହେବା ସମ୍ଭବ । ମୁଁ ଆଶା କରେ, ଆମେମାନେ ସମସ୍ତେ ସେହି ଲକ୍ଷ୍ୟରେ ପହଞ୍ଚିବାକୁ ପ୍ରାଣପଣେ ଚେଷ୍ଟା କରିବା ।

* 'ଅଖଣ୍ଡଂ ସଚ୍ଚିଦାନନ୍ଦମ୍' ।

# ଜଗତ୍

## ( ବହିର୍ଜଗତ୍ )

[ନିଉୟର୍କରେ ପ୍ରଦତ୍ତ ବକ୍ତୃତା, ୧୯ ଜାନୁଆରୀ, ୧୮୯୬]

ସୁନ୍ଦର କୁସୁମରାଶି ଚତୁର୍ଦ୍ଦିଗରେ ସୁବାସ ବିତରଣ କରୁଛି । ପ୍ରଭାତାରୁଣ ଅତି ସୁନ୍ଦର ଲୋହିତବର୍ଣ୍ଣ ଧାରଣ କରି ଉଠୁଛନ୍ତି । ପ୍ରକୃତି ନାନା ସୁନ୍ଦର ବର୍ଣ୍ଣ ଧାରଣ କରି ଶୋଭା ପାଉଛି । ଜଗତ୍ କି ସୁନ୍ଦର—ମନୁଷ୍ୟ ପୃଥିବୀକୁ ଆସିଲାଦିନୁ ଏହି ସୌନ୍ଦର୍ଯ୍ୟ ଭୋଗ କରୁଛି । ଶୈଳମାଳା ଗମ୍ଭୀରଭାବବ୍ୟଞ୍ଜକ ଓ ଭୟୋଦ୍ଦୀପକ—ପ୍ରବଳଖରବାହିନୀ ସମୁଦ୍ରାଭିମୁଖଗାମିନୀ ସ୍ରୋତସ୍ୱିନୀ, ପଦଚିହ୍ନହୀନ ମରୁଦେଶ, ଅନନ୍ତ ଅସୀମ ସାଗର, ତାରକାରାଜିମଣ୍ଡିତ ଗଗନ—ଏସବୁ ଗମ୍ଭୀରତାପୂର୍ଣ୍ଣ ଓ ଭୟୋଦ୍ଦୀପକ, ଅଥଚ ମନୋହର; ପ୍ରକୃତିଶବ୍ଦବ୍ୟଞ୍ଜିତ ସମୁଦାୟ ଅସ୍ତିତ୍ୱର ସମଷ୍ଟି ସ୍ମୃତିପଥାତୀତ ସମୟଠାରୁ ମାନବ-ମନ ଉପରେ କାର୍ଯ୍ୟ କରିଆସୁଛି । ତାହା ମାନବର ଚିନ୍ତା ଉପରେ କ୍ରମାଗତ ପ୍ରଭାବ ବିସ୍ତାର କରୁଛି, ଏବଂ ସେହି ପ୍ରଭାବର ପ୍ରତିକ୍ରିୟାସ୍ୱରୂପ କ୍ରମାଗତ ଏହି ପ୍ରଶ୍ନ ଉଠୁଛି : ତାହା କଣ ଏବଂ କେଉଁଠାରୁ ଆସିଲା ? ଅତିପ୍ରାଚୀନ ରଚନା ବେଦର ପ୍ରାଚୀନତମ ଭାଗରେ ମଧ୍ୟ ଏହି ପ୍ରଶ୍ନ ଜିଜ୍ଞାସିତ ହୋଇ-ଥିବାର ଦେଖିବାକୁ ପାଉଁ : ଏହା କେଉଁଠାରୁ ଆସିଲା ? ଯେତେବେଳେ 'ଅସ୍ତି ନାସ୍ତି କିଛି ନ ଥିଲା', 'ଅନ୍ଧକାର ଦ୍ୱାରା ଅନ୍ଧକାର ଆବୃତ'* ଥିଲା ସେତେବେଳେ କିଏ ଏହି ଜଗତ୍ ସୃଷ୍ଟି କଲେ ? କିଭଳି ବା ଏହା ସୃଷ୍ଟି କଲେ ? କିଏ ଏହି ରହସ୍ୟ ଜାଣେ ? ବର୍ତ୍ତମାନ ସମୟ ପର୍ଯ୍ୟନ୍ତ ଏହି ପ୍ରଶ୍ନ ଆଲୋଚିତ ହୋଇଆସୁଅଛି । ଲକ୍ଷ ଲକ୍ଷ ଥର ଏହାର ଉତ୍ତର ଦେବାର ଚେଷ୍ଟା ହୋଇଛି, କିନ୍ତୁ ଆହୁରି ଲକ୍ଷ ଲକ୍ଷ ଥର ଏହାର ଉତ୍ତର ଦେବାକୁ ପଡ଼ିବ । ସେହି ପ୍ରତ୍ୟେକ ଉତ୍ତର ଯେ ଭ୍ରମପୂର୍ଣ୍ଣ, ତାହା ନୁହେଁ । ପ୍ରତ୍ୟେକ ଉତ୍ତର ମଧ୍ୟରେ କିଛି ନା କିଛି ସତ୍ୟ ଅଛି—କାଳର ଆବର୍ତ୍ତନ ସଙ୍ଗେ ସଙ୍ଗେ ସେହି ସତ୍ୟ ମଧ୍ୟ କ୍ରମଶଃ ବଳ ସଂଗ୍ରହ କରୁଅଛି । ମୁଁ ଭାରତର ପ୍ରାଚୀନ ଦାର୍ଶନିକମାନଙ୍କଠାରୁ ଏହି ପ୍ରଶ୍ନର ଯେଉଁ ଉତ୍ତର ସଂଗ୍ରହ କରିଛି, ତାହାକୁ ବର୍ତ୍ତମାନ ମାନବଜ୍ଞାନ ସହିତ ମିଳାଇ ଆପଣମାନଙ୍କ ସମ୍ମୁଖରେ ଉପସ୍ଥାପିତ କରିବାର ଚେଷ୍ଟା କରିବି ।

ଆମେ ଦେଖିବାକୁ ପାଉ ଯେ ଏହି ପ୍ରାଚୀନତମ ପ୍ରଶ୍ନର କେତେକ ବିଷୟ ପୂର୍ବରୁ ମୀମାଂସିତ ହୋଇଛି । ପ୍ରଥମ ବିଷୟ ଏହି ଯେ, 'ଯେତେବେଳେ ଅସ୍ତି ନାସ୍ତି

* ଋଗ୍ବେଦ—ନାସଦୀୟସୂକ୍ତ

କିଛି ନ ଥିଲା, ସେତେବେଳେ ଏହି ଜଗତ୍ ମଧ୍ୟ ନ ଥିଲା, ଏହି ଗ୍ରହ ଜ୍ୟୋତିଷ୍କଗଣ, ଆମମାନଙ୍କର ଜନନୀ ଏହି ଧରଣୀ, ସାଗର, ମହାସାଗର, ନଦୀ, ଶୈଳମାଳା, ନଗର, ଗ୍ରାମ, ମାନବଜାତି ଇତରପ୍ରାଣୀ ଉଦ୍ଭିଦ, ବିହଙ୍ଗମ ଏହି ଅନନ୍ତ ବିଚିତ୍ର ସୃଷ୍ଟି କିଛି ନ ଥିଲା—ଏ ବିଷୟ ପୂର୍ବରୁ ଜଣାଥିଲି । କିନ୍ତୁ ଆମେମାନେ କଅଣ ଏ ବିଷୟରେ ନିଃସନ୍ଦିଗ୍ଧ ? କିଭଳି ଭାବରେ ମନୁଷ୍ୟ ଏହି ସିଦ୍ଧାନ୍ତ ପ୍ରାପ୍ତ ହେଲି ତାହା ଆମେମାନେ ବୁଝିବାକୁ ଚେଷ୍ଟା କରିବା । ମନୁଷ୍ୟ ନିଜର ଚତୁର୍ଦ୍ଦିଗରେ ଦେଖେ କ'ଣ ? ଗୋଟିଏ କ୍ଷୁଦ୍ର ଉଦ୍ଭିଦର କଥା ଧର । ମନୁଷ୍ୟ ଦେଖେ ଉଦ୍ଭିଦଟି ଧୀରେ ଧୀରେ ମାଟି ଠେଲି ଉପରକୁ ଉଠୁଥାଏ, ବଢ଼ି ବଢ଼ି ଅବଶେଷରେ ଗୋଟିଏ ପ୍ରକାଣ୍ଡ ବୃକ୍ଷ ହୁଏ, ପୁଣି ମରିଯାଏ—ରହିଯାଏ କେବଳ ବୀଜ । ଏହିରୂପେ ଗୋଟିଏ ବୃତ୍ତ ସମ୍ପୂର୍ଣ୍ଣ ହୁଏ—ବୀଜରୁ ତାହା ଉତ୍ପନ୍ନ ହୁଏ, ବୃକ୍ଷରେ ପରିଣତ ହୁଏ, ଅବଶେଷରେ ବୀଜରେ ତାହାର ପୁନଃପରିଣତି । ଗୋଟିଏ ଚଢ଼େଇକୁ ଦେଖ, କିପରି ତାହା ଡିମ୍ବରୁ ଜାତ ହୁଏ, ସୁନ୍ଦର ପକ୍ଷୀରୂପ ଧାରଣ କରେ, କିଛିଦିନ ବଞ୍ଚିରହେ, ପରେ ପୁଣି ମରିଯାଏ; ରହିଯାଏ କେବଳ କେତେଗୁଡ଼ିଏ ଡିମ୍ବ—ଭବିଷ୍ୟତ୍ ପକ୍ଷୀକୁଳର ବୀଜ । ଜାନ୍ତବ ଜାତି ସମ୍ବନ୍ଧରେ ମଧ୍ୟ ଏହିପରି, ମନୁଷ୍ୟ ପକ୍ଷରେ ମଧ୍ୟ ସେହି କଥା । ପ୍ରତ୍ୟେକ ପଦାର୍ଥ ସମ୍ବନ୍ଧରେ ମଧ୍ୟ ସେହିପରି—ପ୍ରଥମେ କେତେଗୁଡ଼ିଏ ବୀଜ—କେତେକ ମୂଳ ଉପାଦାନ—କେତେକ ସୂକ୍ଷ୍ମ ଆକାରରୁ ଆରମ୍ଭ ଏବଂ କ୍ରମେ ସ୍ଥୂଳରୁ ସ୍ଥୂଳତର ହେଉଥାଏ, କିଛି କାଳ ପାଇଁ ଏହିଭାବରେ ଚାଲେ, ପୁନର୍ବାର ସୂକ୍ଷ୍ମଗତି ପ୍ରାପ୍ତ ହୋଇ ସେମାନଙ୍କର ଲୟ ହୁଏ । ଗୋଟିଏ ବୃଷ୍ଟିବିନ୍ଦୁ—ଯାହା ଭିତରଦେଇ ବର୍ତ୍ତମାନ ସୁନ୍ଦର ସୂର୍ଯ୍ୟକିରଣ କ୍ରୀଡ଼ା କରୁଛି—ତାହା ବାଷ୍ପଦ୍ୱାରା ନୀତ ହୋଇ ଦୂର ପାହାଡ଼ରେ ଯାଇ ପହଞ୍ଚେ, ସେଠାରେ ବରଫରେ ପରିଣତ ହୁଏ, ପୁଣି ଜଳ ହୁଏ, ତାପରେ ଶତ ଶତ ମାଇଲ ବୁଲି ତାହାର ଉତ୍ପତ୍ତିସ୍ଥାନ ସମୁଦ୍ରକୁ ଫେରି ଆସେ । ଆମମାନଙ୍କର ଚତୁର୍ଦ୍ଦିଗସ୍ଥ ପ୍ରକୃତିର ସକଳବସ୍ତୁ ସମ୍ବନ୍ଧରେ ଏହି କଥା ସତ୍ୟ । ଆମେ-ମାନେ ଜାଣୁ ହିମବାହ ଓ ନଦୀସମୂହ ବଡ଼ ବଡ଼ ପର୍ବତ ଉପରେ କାର୍ଯ୍ୟ କରୁଛନ୍ତି । ସେମାନେ ଧୀରେ ଧୀରେ ପର୍ବତର ଅଂଶବିଶେଷକୁ ଚୂର୍ଣ୍ଣ କରୁଛନ୍ତି, ଚୂର୍ଣ୍ଣ କରି ବାଲିରେ ପରିଣତ କରୁଛନ୍ତି, ସେହି ବାଲି ପୁଣି ସମୁଦ୍ର ଭିତରକୁ ଯାଉଛି, ସମୁଦ୍ର ତଳେ ସ୍ତରେ ସ୍ତରେ ଜମା ହେଉଛି, ପରିଶେଷରେ ପୁଣି ପାହାଡ଼ଭଳି ଟାଣ ହେଉଛି—ଭବିଷ୍ୟତରେ ଏହି ବାଲିସ୍ତରସବୁ କ୍ରମଶଃ ବର୍ଦ୍ଧିତ ହୋଇ ପର୍ବତରେ ପରିଣତ ହେବ । କ୍ରମେ ସେସବୁ ପୁଣି ପିଷ୍ଟ ହୋଇ ଗୁଣ୍ଡ ହୋଇଯିବ—ଏହିପରି ଅନନ୍ତ କାଳ ଧରି ଚାଲୁଥିବ । ବାଲିରୁ ଉଠି ଏହି ପର୍ବତଗୁଡ଼ିକ ପୁଣି ବାଲିରେ ପରିଣତ ହୁଏ । ବଡ଼ ବଡ଼ ଜ୍ୟୋତିଷ୍କଗଣଙ୍କ ସମ୍ବନ୍ଧରେ ମଧ୍ୟ ଏହା ସତ୍ୟ; ଆମ ମାନଙ୍କର ଏହି ପୃଥିବୀ ନୀହାରିକାମୟ ପଦାର୍ଥବିଶେଷରୁ ଆସିଛି—କ୍ରମଶଃ ଶୀତଳରୁ ଶୀତଳତର ହୋଇ ପରେ ଆମମାନଙ୍କର ବର୍ତ୍ତମାନ ନିବାସଭୂମି ହୋଇଛି । ଏହି

ବିଶେଷାକୃତିବିଶିଷ୍ଟ ଧରଣୀ—ଭବିଷ୍ୟତରେ ତାହା ପୁନଶ୍ଚ ଶୀତଳରୁ ଶୀତଳତର ହୋଇ ନଷ୍ଟ ହେବ, ଖଣ୍ଡବିଖଣ୍ଡ ହୋଇଯିବ, ଶେଷରେ ସେହି ମୂଳ ନୀହାରିକାମୟ ସୂକ୍ଷ୍ମରୂପରେ ପରିଣତ ହେବ । ପ୍ରତିଦିନ ଆମମାନଙ୍କ ସମ୍ମୁଖରେ ଏହା ଘଟୁଛି । ସ୍ମରଣାତୀତ ସମୟରୁ ଏହା ହୋଇ ଆସୁଛି । ଏହା ହିଁ ମାନବର ସମସ୍ତ ଇତିହାସ, ଏହା ହିଁ ପ୍ରକୃତିର ସମଗ୍ର ଇତିହାସ, ଏହା ହିଁ ଜୀବନର ସମଗ୍ର ଇତିହାସ ।

ଯଦି ଏହା ସତ୍ୟ ହୁଏ ଯେ, ପ୍ରକୃତି ତାହାର ସକଳ କାର୍ଯ୍ୟରେ ସର୍ବଦା ଏକରୂପ ଏବଂ ଏପର୍ଯ୍ୟନ୍ତ କୌଣସି ମନୁଷ୍ୟଜ୍ଞାନ ଏହା ଖଣ୍ଡନ କରି ନାହିଁ ଯେ ଗୋଟିଏ କ୍ଷୁଦ୍ର ବାଲିକଣା ଯେଉଁ ପ୍ରଣାଳୀ ଓ ଯେଉଁ ନିୟମରେ ସୃଷ୍ଟ, ପ୍ରକାଣ୍ଡ ପ୍ରକାଣ୍ଡ ସୂର୍ଯ୍ୟତାରା ଏପରି କି ସମୁଦାୟ ଜଗଦ୍ବ୍ରହ୍ମାଣ୍ଡର ସୃଷ୍ଟିରେ ମଧ୍ୟ ସେହି ଗୋଟିଏ ପ୍ରଣାଳୀ, ଗୋଟିଏ ନିୟମ; ଯଦି ଏହା ସତ୍ୟ ହୁଏ ଯେ, ଗୋଟିଏ ପରମାଣୁ ଯେଉଁ କୌଶଳରେ ନିର୍ମିତ, ସମୁଦାୟ ଜଗତ ମଧ୍ୟ ସେହି କୌଶଳରେ ନିର୍ମିତ; ଯଦି ଏହା ସତ୍ୟ ହୁଏ ଯେ, ଗୋଟିଏ ନିୟମ ସମୁଦାୟ ଜଗତରେ ପ୍ରତିଷ୍ଠିତ, ତେବେ ପ୍ରାଚୀନ ବୈଦିକ ଭାଷାରେ ଆମେ କହିପାରୁ—'ଗୋଟିଏ ମୃତ୍ତିକାଖଣ୍ଡକୁ ଜାଣିଲେ ଆମେମାନେ ଜଗଦ୍ବ୍ରହ୍ମାଣ୍ଡସ୍ଥ ସମୁଦାୟ ମୃତ୍ତିକା ସମ୍ବନ୍ଧରେ ଜ୍ଞାନଲାଭ କରୁ ।'* ଗୋଟିଏ କ୍ଷୁଦ୍ର ଉଦ୍ଭିଦକୁ ନେଇ ତାହାର ଜୀବନଚରିତ ଆଲୋଚନା କଲେ ଆମେମାନେ ଜଗଦ୍ବ୍ରହ୍ମାଣ୍ଡର ସ୍ୱରୂପ ଜାଣିପାରୁ । ଗୋଟିଏ ବାଲିକଣାର ଗତି ପର୍ଯ୍ୟବେକ୍ଷଣଦ୍ୱାରା ସମୁଦାୟ ଜଗତର ରହସ୍ୟ ଜାଣିହେବ । ବର୍ତ୍ତମାନ ଏହି ତତ୍ତ୍ୱକୁ ଜଗଦ୍ବ୍ରହ୍ମାଣ୍ଡପ୍ରତି ପ୍ରୟୋଗ କଲେ ଆମେମାନେ ଦେଖୁ ଯେ, ସବୁକିଛିର ଆଦି ଓ ଅନ୍ତ ପ୍ରାୟ ସଦୃଶ । ପର୍ବତର ଉତ୍ପତ୍ତି ବାଲିରୁ, ପୁଣି ବାଲିରେ ତାହା ପରିଣତ ହୁଏ; ନଦୀ ବାଷ୍ପରୁ ଜାତ ହୁଏ, ପୁଣି ବାଷ୍ପରେ ପରିଣତ ହୁଏ; ଉଦ୍ଭିଦଜୀବନ ଆରମ୍ଭ ହୁଏ ବୀଜରୁ, ପୁଣି ଶେଷ ହୁଏ ବୀଜରେ; ମାନବ ଜୀବାଣୁରୁ ଆରମ୍ଭ ହୁଏ, ପୁଣି ଯାଏ ଜୀବାଣୁକୁ । ନକ୍ଷତ୍ରପୁଞ୍ଜ, ନଦୀ, ଗ୍ରହ, ଉପଗ୍ରହ ନୀହାରିକାମୟ ଅବସ୍ଥାରୁ ଆସିଛନ୍ତି, ପୁଣି ଫେରିଯିବେ ସେହି ନୀହାରିକାମୟ ଅବସ୍ଥାକୁ । ଏଥିରୁ ଆମେମାନେ କ'ଣ ଶିଖୁଁ ? ବ୍ୟକ୍ତ ଅବସ୍ଥା ଅର୍ଥାତ୍ ସ୍ଥୂଳ ଅବସ୍ଥା ହେଉଛି କାର୍ଯ୍ୟ, ସୂକ୍ଷ୍ମଭାବ ତାହାର କାରଣ । ଭାରତୀୟ ସର୍ବ ଦର୍ଶନର ଜନକସ୍ୱରୂପ ମହର୍ଷି କପିଳ ଅନେକ ଦିନ ପୂର୍ବେ ପ୍ରମାଣ କରିଛନ୍ତି 'ନାଶଃ କାରଣଲୟଃ' ।

ଯଦି ଏହି ଟେବୁଲଟିର ନାଶ ହୁଏ ତେବେ ଏହା କେବଳ ଏହାର କାରଣକୁ ଫେରିଯିବ—ସେହି ସୂକ୍ଷ୍ମରୂପ ପରମାଣୁକୁ ଫେରିଯିବ, ଯାହାର ସମ୍ମେଳନରେ ଏହି ଟେବୁଲ୍ ନାମକ ପଦାର୍ଥଟି ଉତ୍ପନ୍ନ ହୋଇଥିଲା । ମନୁଷ୍ୟ ଯେତେବେଳେ ମରେ, ସେତେବେଳେ ଯେଉଁ ସକଳ ପଦାର୍ଥ ଦ୍ୱାରା ତାହାର ଦେହ ନିର୍ମିତ, ସେହିସବୁ

* ଛାନ୍ଦୋଗ୍ୟ ଉପ., ୬।୧।୪

ପଦାର୍ଥକୁ ସେ ଫେରଯାଏ । ଏହି ପୃଥିବୀର ଧ୍ୱଂସ ହେଲେ, ଯେଉଁ ପଦାର୍ଥ-ସମଷ୍ଟି ତାହାକୁ ଏହି ଆକାର ଦେଇଥିଲା, ସେହି ପଦାର୍ଥଗୁଡ଼ିକୁ ଫେରଯିବ । ଏହାକୁ ହିଁ ନାଶ କୁହାଯାଏ, ଅର୍ଥାତ୍ କାରଣରେ ଲୟ । ସୁତରାଂ ଆମେମାନେ ଶିଖିଲୁ ଯେ କାର୍ଯ୍ୟ କାରଣ ସହିତ ଅଭିନ୍ନ, ଭିନ୍ନ ନୁହେଁ—କାରଣ ରୂପ-ବିଶେଷ ଧାରଣ କରି କାର୍ଯ୍ୟରୂପେ ପରିଚିତ ହୁଏ । ଯେଉଁ ଉପାଦାନଗୁଡ଼ିକରେ ସେହି ଟେବୁଲ୍‌ର ଉତ୍ପତ୍ତି, ତାହା କାରଣ ଏବଂ ଟେବୁଲ୍‌ଟି କାର୍ଯ୍ୟ, ଅର୍ଥାତ୍ ଏହି ସକଳ କାରଣଗୁଡ଼ିକ ଏଠାରେ ଟେବୁଲ୍‌ରୂପେ ବିଦ୍ୟମାନ । ଏହି ଗିଲାସଟି ଗୋଟିଏ କାର୍ଯ୍ୟ, ତାହାର କେତେଗୁଡ଼ିଏ କାରଣ ଥିଲା—ସେହି କାରଣଗୁଡ଼ିକ ଏହି କାର୍ଯ୍ୟରେ ବିଦ୍ୟମାନ । କାଚ ନାମକ କେତେକ ମୂଳ ଉପାଦାନ ଓ ତତ୍‌ସହିତ ଗଠନକାରୀ ହାତର ଶକ୍ତି, ଏହି ଦୁଇଟି କାରଣ—ନିମିତ୍ତ ଓ ଉପାଦାନ ମିଳି ଗିଲାସ ନାମକ ଏହି ଆକାରଟି ହୋଇଛି । ଏଥିରେ ଦୁଇଟିଯାକ କାରଣ ବିଦ୍ୟମାନ । ଯେଉଁ ଶକ୍ତି କୌଣସି ଯନ୍ତ୍ରର ଚକରେ ଥିଲା, ତାହା ସଂହତ ଶକ୍ତିରୂପେ ଏଥିରେ ବିଦ୍ୟମାନ—ତାହା ନ ଥିଲେ ଗିଲାସର କ୍ଷୁଦ୍ର କ୍ଷୁଦ୍ର ଖଣ୍ଡଗୁଡ଼ିକ ସବୁ ଖସିପଡ଼ିବ ଏବଂ ଉପାଦାନରୂପେ ଏଥିରେ କାଚ ବିଦ୍ୟମାନ । ଗିଲାସଟି କେବଳ ସେହି ସୂକ୍ଷ୍ମ କାରଣଗୁଡ଼ିକର ଅନ୍ୟ ଏକ ରୂପରେ ପରିଣତ ଏବଂ ଯଦି ଏହି ଗିଲାସଟିକୁ ଭାଙ୍ଗି ଦିଆଯାଏ, ତେବେ ଯେଉଁ ଶକ୍ତିଟି ସଂହତରୂପେ ତହିଁରେ ବିଦ୍ୟମାନ ଥିଲା, ତାହା ଫେରିଯାଇ ପୁଣି ନିଜ ଉପାଦାନରେ ମିଶିବ, ଆଉ ଗିଲାସର କ୍ଷୁଦ୍ର ଖଣ୍ଡଗୁଡ଼ିକ ପୁନରାୟ ପୂର୍ବରୂପ ଧରିବ ଏବଂ ଯେତେଦିନ ପର୍ଯ୍ୟନ୍ତ ଅନ୍ୟ କୌଣସି ରୂପ ଗ୍ରହଣ ନ କରେ ସେତେଦିନଯାଏ ସେହିପରି ରହିଥିବ ।

ଅତଏବ ଆମେମାନେ ଦେଖିଲୁଁ—କାର୍ଯ୍ୟ କଦାପି କାରଣଠାରୁ ଭିନ୍ନ ନୁହେଁ । ତାହା ସେହି କାରଣର ପୁନରାବିର୍ଭାବ ମାତ୍ର । ତତ୍ପରେ ଆମେମାନେ ମଧ୍ୟ ଶିଖିଲୁ, ଏହି କ୍ଷୁଦ୍ର ବିଶେଷ ବିଶେଷ ରୂପସବୁ, ଯେଉଁମାନଙ୍କୁ ଆମେମାନେ ଉଦ୍ଭିଦ ବା ତର୍ଯ୍ୟକ୍ ଜାତି ବା ମାନବ କହୁ, ସେମାନେ ଅନନ୍ତକାଳ ଧରି ଉଠିପଡ଼ି ଘୂରି ବୁଲି ଫେରି ଆସୁଛନ୍ତି । ବୀଜ ବୃକ୍ଷ ପ୍ରସବ କଲା, ବୃକ୍ଷ ପୁଣି ବୀଜ ହୁଏ, ପୁନଶ୍ଚ ତାହା ଆଉ ଏକ ବୃକ୍ଷ ହୁଏ—ପୁଣି ଅନ୍ୟ ବୀଜ ହୁଏ, ପୁଣି ଅନ୍ୟ ଏକ ବୃକ୍ଷ ହୁଏ—ଏହିଭଳି ଭାବରେ ଚାଲିଛି—ଏହାର ଶେଷ ନାହିଁ । ଜଳବିନ୍ଦୁ ପାହାଡ଼ ପାର୍ଶ୍ୱ ଦେଇ ସମୁଦ୍ରକୁ ଗଡ଼ିଯାଏ, ପୁଣି ବାଷ୍ପ ହୋଇ ଉଠେ—ପାହାଡ଼କୁ ଯାଏ, ପୁଣି ସମୁଦ୍ରକୁ ଫେରିଆସେ । ଉଠୁଛି ପଡ଼ୁଛି—ଚକ୍ର ଘୂରୁଛି । ସମୁଦାୟ ଜୀବନ ସମ୍ବନ୍ଧରେ ଏହିଭଳି—ସମୁଦାୟ ଅସ୍ତିତ୍ୱ—ଯାହା କିଛି ଆମେମାନେ ଦେଖୁ, ଶୁଣୁ, ଭାବୁ ବା କଳ୍ପନା କରୁ, ଯାହା କିଛି ଆମମାନଙ୍କର ଜ୍ଞାନର ସୀମା ମଧ୍ୟରେ, ତାହା ଏହିରୂପେ ଚାଲିଛି—ଠିକ୍ ମନୁଷ୍ୟ ଦେହର ନିଃଶ୍ୱାସପ୍ରଶ୍ୱାସ ଭଳି । ସୁତରାଂ ସମୁଦାୟ ସୃଷ୍ଟି ଏହିରୂପେ ଚାଲୁଛି, ଗୋଟିଏ ତରଙ୍ଗ ଉଠୁଛି, ଗୋଟିଏ ପଡ଼ୁଛି,

ପୁଣି ଉଠି ପୁଣି ପଡ଼ୁଛି । ପ୍ରତ୍ୟେକ ତରଙ୍ଗ ସଙ୍ଗରେ ଗୋଟିଏ ଗୋଟିଏ ଅବନତି, ପ୍ରତ୍ୟେକ ଅବନତିର ସଙ୍ଗେ ସଙ୍ଗେ ଗୋଟିଏ ଲେଖାଏଁ ତରଙ୍ଗ । ସମଗ୍ର ବ୍ରହ୍ମାଣ୍ଡରେ ସେହି ସମପ୍ରଣାଳୀତ୍ୱ ହେତୁ ଆମେ ସର୍ବତ୍ର ଗୋଟିଏ ନିୟମ ଦେଖିବାକୁ ପାଉ । ଅତଏବ ଆମେମାନେ ଦେଖୁଛୁ ଯେ, ସମୁଦାୟ ବ୍ରହ୍ମାଣ୍ଡ ଏକ ସମୟରେ ସ୍ୱକାରଣରେ ଲୟ ହେବାକୁ ବାଧ୍ୟ; ସୂର୍ଯ୍ୟ, ଚନ୍ଦ୍ର, ଗ୍ରହ, ତାରା, ପୃଥିବୀ, ମନ, ଶରୀର ଯାହା କିଛି ଏହି ବ୍ରହ୍ମାଣ୍ଡରେ ଅଛି, ସମସ୍ତ ବସ୍ତୁ ନିଜ ନିଜର ସୂକ୍ଷ୍ମ କାରଣରେ ଲୀନ ହେବେ, ଆପାତତଃଦୃଷ୍ଟିରେ ସେମାନଙ୍କର ବିନାଶ ହେବ । ବାସ୍ତବିକ କିନ୍ତୁ ସେମାନେ ସେମାନଙ୍କର କାରଣ ଅବସ୍ଥାରେ ସୂକ୍ଷ୍ମରୂପରେ ବିଦ୍ୟମାନ ରହିବେ; ତାହା ମଧ୍ୟରୁ ପୁଣି ପୃଥିବୀ, ଚନ୍ଦ୍ର, ସୂର୍ଯ୍ୟ, ତାରା ରୂପରେ ବାହାରିବେ ।

ଏହି ଉତ୍ଥାନ-ପତନ ସମ୍ବନ୍ଧରେ ଆଉ ଗୋଟିଏ ବିଷୟ ଜାଣିବାର ଅଛି । ବୀଜ ବୃକ୍ଷରୁ ଉତ୍ପନ୍ନ ହୁଏ । ତାହା ତତ୍‌କ୍ଷଣାତ୍ ବୃକ୍ଷ ହୁଏ ନାହିଁ । କିଛି କାଳ ବିଶ୍ରାମ ବା ଅତି ସୂକ୍ଷ୍ମ ଅବ୍ୟକ୍ତ କାର୍ଯ୍ୟ ପାଇଁ ତାହାର ସମୟ ଆବଶ୍ୟକ । ବୀଜକୁ କିଛି ସମୟ ପାଇଁ ମାଟି ତଳେ ରହି କାମ କରିବାକୁ ହୁଏ । ତାହା ନିଜକୁ ଖଣ୍ଡ ଖଣ୍ଡ କରିପକାଏ, ନିଜକୁ ଯେପରି କିୟତ୍‌ପରିମାଣରେ ଅବନତ କରେ, ଏବଂ ସେହି ଅବନତିରୁ ତାହାର ପୁନର୍ଜନ୍ମ ହୋଇଥାଏ । ଅତଏବ ଏହି ସମୁଦାୟ ବ୍ରହ୍ମାଣ୍ଡକୁ କିଛି ସମୟ ପାଇଁ ଅଦୃଶ୍ୟ ଅବ୍ୟକ୍ତ ଭାବରେ ସୂକ୍ଷ୍ମରୂପେ କାର୍ଯ୍ୟ କରିବାକୁ ହୁଏ— ଏହାକୁ ପ୍ରଳୟ ବା ସୃଷ୍ଟିର ପୂର୍ବାବସ୍ଥା କୁହାଯାଏ—ତତ୍ପରେ ପୁନଃ ସୃଷ୍ଟି ହୁଏ । ଏହି ଜଗତ୍-ପ୍ରକାଶର ଭିନ୍ନ ଭିନ୍ନ କାଳକୁ—ଅର୍ଥାତ୍ ସୂକ୍ଷ୍ମଭାବରେ ଏହାର ପରିଣତି, କିଛିକାଳ ତଦ୍‌ବସ୍ଥାରେ ସ୍ଥିତି ଏବଂ ପୁନରାବିର୍ଭାବକୁ ସଂସ୍କୃତରେ 'କଳ୍ପ' ବୋଲି କୁହାଯାଏ । ସମୁଦାୟ ବ୍ରହ୍ମାଣ୍ଡ ଏହିରୂପେ କଳ୍ପେ କଳ୍ପେ ଚାଲିଛି । ସମଗ୍ର ବ୍ରହ୍ମାଣ୍ଡଠାରୁ ତାହାର ଅନ୍ତର୍ବର୍ତ୍ତୀ ପ୍ରତ୍ୟେକ ପରମାଣୁ ପର୍ଯ୍ୟନ୍ତ, ସବୁ ଜିନିଷ ଏହି ତରଙ୍ଗାକାରରେ ଚାଲିଛି ।

ବର୍ତ୍ତମାନ ଆଉ ଗୋଟିଏ ଗୁରୁତର ପ୍ରଶ୍ନ ଉଠୁଛି—ବିଶେଷତଃ ବର୍ତ୍ତମାନ କାଳ ସମ୍ବନ୍ଧରେ । ଆମେମାନେ ଦେଖୁଛୁଁ ଯେ ସୂକ୍ଷ୍ମତର ରୂପଗୁଡ଼ିକ ଧୀରେ ଧୀରେ ବ୍ୟକ୍ତ ହେଉଛି, ଏବଂ କ୍ରମଶଃ ସ୍ଥୂଳତର ହେଉଛି । ଆମେମାନେ ଏହା ମଧ୍ୟ ଦେଖୁଛୁଁ ଯେ କାରଣ ଓ କାର୍ଯ୍ୟ ଅଭେଦ—କାର୍ଯ୍ୟ କେବଳ କାରଣର ରୂପାନ୍ତର ମାତ୍ର । ଅତଏବ ଏହି ସମୁଦାୟ ବ୍ରହ୍ମାଣ୍ଡ ଶୂନ୍ୟରୁ ପ୍ରସୂତ ହୋଇ ନାହିଁ । କାରଣ ବ୍ୟତୀତ କିଛି ଘଟିପାରେ ନାହିଁ—କେବଳ ତାହା ନୁହେଁ, କାରଣ ହିଁ କାର୍ଯ୍ୟ ଭିତରେ ଅନ୍ୟ ଏକ ରୂପରେ ବିଦ୍ୟମାନ ।

ତେବେ ଏ ବ୍ରହ୍ମାଣ୍ଡ କେଉଁ ବସ୍ତୁରୁ ଉଦ୍‌ଭୂତ ହୋଇଛି ? ପୂର୍ବବର୍ତ୍ତୀ ସୂକ୍ଷ୍ମ ବ୍ରହ୍ମାଣ୍ଡରୁ । ମନୁଷ୍ୟ କେଉଁ ବସ୍ତୁରୁ ଉଦ୍‌ଭୂତ ହୋଇଛି । ପୂର୍ବବର୍ତ୍ତୀ ସୂକ୍ଷ୍ମ ରୂପରୁ । ବୃକ୍ଷ କେଉଁଠାରୁ ଆସିଲା ? ବୀଜରୁ । ବୃକ୍ଷଟି ସମୁଦାୟ ବୀଜ ମଧ୍ୟରେ ବିଦ୍ୟମାନ

ଥିଲା, ତାହା ବୃକ୍ଷରୂପେ ବ୍ୟକ୍ତ ହୋଇଛି ମାତ୍ର । ଅତଏବ ଏହି ଜଗଦ୍‌ବ୍ରହ୍ମାଣ୍ଡ ସେହି ଜଗତ୍‌ର ସୂକ୍ଷ୍ମାବସ୍ଥାରୁ ସୃଷ୍ଟ ହୋଇଛି ଏବଂ ବର୍ତ୍ତମାନ ତାହା ବ୍ୟକ୍ତ ହୋଇଛି ମାତ୍ର । ତାହା ପୁନର୍ବାର ସେହି ସୂକ୍ଷ୍ମରୂପ ଧାରଣ କରିବ—ପୁଣି ବ୍ୟକ୍ତ ହେବ । ବର୍ତ୍ତମାନ ଆମ୍ଭେମାନେ ଦେଖିଲୁ ଯେ ସୂକ୍ଷ୍ମରୂପଗୁଡ଼ିକ ବ୍ୟକ୍ତ ହୋଇ ସ୍ଥୂଳରୁ ସ୍ଥୂଳତର ହୁଅନ୍ତି, ଯେତେଦିନଯାଏ ସେମାନେ ସେମାନଙ୍କର ଚରମ ସୀମାରେ ପହଞ୍ଚି ନାହାନ୍ତି । ଚରମ ସୀମାରେ ପହଞ୍ଚିଲେ ସେମାନେ ପୁଣି ପରିବର୍ତ୍ତିତ ହୋଇ ସୂକ୍ଷ୍ମରୁ ସୂକ୍ଷ୍ମତର ହୁଅନ୍ତି । ଏହିଭଳି ଭାବରେ ସୂକ୍ଷ୍ମରୁ ଆବିର୍ଭାବ—କ୍ରମଶଃ ସ୍ଥୂଳରୁ ସ୍ଥୂଳତର ରୂପରେ ପରିଣତି—ଖାଲି ଯେପରି ସେମାନଙ୍କର ଅଂଶଗୁଡ଼ିକର ଅବସ୍ଥାନ-ପରିବର୍ତ୍ତନ—ଏହାକୁ ବର୍ତ୍ତମାନ କାଳରେ 'କ୍ରମବିକାଶ'-ବାଦ କୁହାଯାଏ । ଏହା ଅତି ସତ୍ୟ । ଆମ୍ଭେମାନେ ନିଜ ଜୀବନରେ ଏହା ଲକ୍ଷ୍ୟ କରୁଛୁ । ବିଚାରଶୀଳ କୌଣସି ବ୍ୟକ୍ତିର ଏହିସବୁ କ୍ରମବିକାଶବାଦୀମାନଙ୍କ ସହିତ ବିବାଦର ସମ୍ଭାବନା ନାହିଁ; କିନ୍ତୁ ଆମମାନଙ୍କୁ ଆଉ ଗୋଟିଏ ବିଷୟ ଜାଣିବାକୁ ହେବ—ତାହା ହେଉଛି—ପ୍ରତ୍ୟେକ କ୍ରମବିକାଶ ଗୋଟିଏ କ୍ରମସଙ୍କୋଚପ୍ରକ୍ରିୟାଦ୍ୱାରା ପୂର୍ବବର୍ତ୍ତିତ । ବୀଜ ବୃକ୍ଷର ଜନକ, ଏହା ସତ୍ୟ, କିନ୍ତୁ ଅପର ଏକ ବୃକ୍ଷ ପୁଣି ସେହି ବୀଜର ଜନକ । ବୀଜ ହିଁ ସେହି ସୂକ୍ଷ୍ମରୂପ ଯହିଁରୁ ବୃହତ୍ ବୃକ୍ଷଟି ଆସିଛି—ଅଥଚ ଆଉ ଗୋଟିଏ ପ୍ରକାଣ୍ଡ ବୃକ୍ଷ ସେହି ବୀଜରୂପେ କ୍ରମସଙ୍କୁଚିତ ହୋଇଛି । ସମୁଦାୟ ବୃକ୍ଷଟି ସେହି ବୀଜ ମଧ୍ୟରେ ବିଦ୍ୟମାନ । ଶୂନ୍ୟରୁ କୌଣସି ବୃକ୍ଷ ଜନ୍ମିପାରେ ନାହିଁ; କିନ୍ତୁ ଆମ୍ଭେମାନେ ଦେଖୁଛୁ ଯେ ବୃକ୍ଷ ବୀଜରୁ ଆସେ ଏବଂ କେତେଗୁଡ଼ିଏ ବିଶେଷ ବିଶେଷ ବୀଜ କେତେଗୁଡ଼ିଏ ବିଶେଷ ବିଶେଷ ବୃକ୍ଷକୁ ଜନ୍ମ ଦିଏ, ଅପର ବୃକ୍ଷକୁ ନୁହେଁ । ଏଥିରୁ ପ୍ରମାଣିତ ହେଉଛି ଯେ, ସେହି ବୃକ୍ଷର କାରଣ ଏହି ବୀଜ—କେବଳ ସେହି ବୀଜ ମାତ୍ର, ଆଉ ସେହି ବୀଜରେ ସମୁଦାୟ ବୃକ୍ଷଟି ରହିଛି । ସମୁଦାୟ ମନୁଷ୍ୟ ଏକ ଜୀବାଣୁ ଭିତରେ ନିହିତ, ଏହା ପୁଣି ଧୀରେ ଧୀରେ ବ୍ୟକ୍ତ ହୋଇ ମାନବାକାରରେ ପରିଣତ ହୁଏ । ସମୁଦାୟ ବ୍ରହ୍ମାଣ୍ଡଟି ସୂକ୍ଷ୍ମ ବ୍ରହ୍ମାଣ୍ଡରେ ରହିଛି । ସବୁକିଛି ସେମାନଙ୍କର ସୂକ୍ଷ୍ମ ଅବସ୍ଥାରେ ରହିଛନ୍ତି । ଅତଏବ ଯଦି କ୍ରମବିକାଶବାଦ ସତ୍ୟ, ତେବେ ପ୍ରତ୍ୟେକ କ୍ରମବିକାଶ ଗୋଟିଏ କ୍ରମସଙ୍କୋଚନଦ୍ୱାରା ପୂର୍ବବର୍ତ୍ତିତ । ଅତଏବ ଯେଉଁ କ୍ଷୁଦ୍ର ଅଣୁଟି ପରେ ମହାପୁରୁଷ ହେଲା, ତାହା ପ୍ରଥମେ ସେହି କ୍ରମସଙ୍କୁଚିତ ମହାପୁରୁଷ ଥିଲା, ଯାହା ପୁଣି ମହାପୁରୁଷରୂପେ କ୍ରମବିକାଶପ୍ରାପ୍ତ ହୁଏ । ଯଦି ଏହା ସତ୍ୟ ହୁଏ, ତେବେ ଆମମାନଙ୍କର କ୍ରମବିକାଶବାଦୀମାନଙ୍କ (Darwin's Evolution) ସହିତ କୌଣସି ବିବାଦ ନାହିଁ । ଅଧିକନ୍ତୁ ଆମ୍ଭେମାନେ ଦେଖିଲୁ ଯେ, ଯଦି ସେମାନେ କ୍ରମସଙ୍କୋଚନପ୍ରକ୍ରିୟାଟିକୁ ସ୍ୱୀକାର କରନ୍ତି, ତେବେ ସେମାନେ ଧର୍ମର ବିରୋଧୀ ନ ହୋଇ ତାହାର ସହାୟକ ହେବେ ।

ଆମ୍ଭେମାନେ ଦେଖିଲୁ ଯେ, ଶୂନ୍ୟରୁ କୌଣସି ବସ୍ତୁର ଉତ୍ପତ୍ତି ହୁଏ ନାହିଁ ।

ସକଳ ପଦାର୍ଥ ଅନନ୍ତ କାଳ ଧରି ରହିଛି ଏବଂ ଅନନ୍ତ କାଳ ଧରି ରହିବ; କେବଳ ତରଙ୍ଗ ପରି ଉଠିବ, ପୁଣି ପଡ଼ିବ । ସୂକ୍ଷ୍ମ ଅବ୍ୟକ୍ତ ଭାବରେ ଥରେ ବିଲୟ, ପୁଣି ସ୍ଥୂଳ ବ୍ୟକ୍ତଭାବରେ ପ୍ରକାଶିତ ହୁଏ—ସମୁଦାୟ ପ୍ରକୃତିରେ ଏହି କ୍ରମସଙ୍କୋଚ ଓ କ୍ରମବିକାଶ ପ୍ରକ୍ରିୟା ଚାଲିଛି । ସୁତରାଂ ସମୁଦାୟ ବ୍ରହ୍ମାଣ୍ଡ ପ୍ରକାଶ ପୂର୍ବରୁ କ୍ରମସଙ୍କୁଚିତ ଅବସ୍ଥାରେ ଥିଲା—ଏବେ ତାହା ବିଭିନ୍ନ ରୂପରେ ନିଜକୁ ବ୍ୟକ୍ତ କରିଛି—ପୁଣି ଆଉ ଥରେ କ୍ରମସଙ୍କୁଚିତ ହୋଇ ଅବ୍ୟକ୍ତ ଭାବ ଧାରଣ କରିବ । ଉଦାହରଣସ୍ୱରୂପ, ଗୋଟିଏ କ୍ଷୁଦ୍ର ଉଦ୍ଭିଦର ଜୀବନ ଧରାଯାଉ । ଆମେମାନେ ଦେଖୁ ଯେ ଦୁଇଟି ଜିନିଷ ସେହି ଉଦ୍ଭିଦର ଏକତ୍ୱ ସମ୍ପାଦନ କରୁଛି— ତାହାର ଉତ୍ପତ୍ତି ଓ ବିକାଶ ଏବଂ ତାହାର କ୍ଷୟ ଓ ବିନାଶ । ଏହି ଦୁଇଟି ମିଳି ଯେଉଁ ଏକତ୍ୱ ବିଧାନ କରୁଛି, ତାହାର ନାମ ଉଦ୍ଭିଦଜୀବନ । ଅତଏବ ସେହି ଉଦ୍ଭିଦ-ଜୀବନକୁ ପ୍ରାଣଶୃଙ୍ଖଳର ଯେପରି ଗୋଟିଏ ପର୍ବ ବୋଲି ଅନୁମାନ କରି ଆମେମାନେ ସମୁଦାୟ ବସ୍ତୁରାଶିକୁ ଏକ ପ୍ରାଣପ୍ରବାହ ବୋଲି କଳ୍ପନା କରିପାରୁ—ଜୀବାଣୁରୁ ତାହାର ଆରମ୍ଭ ଏବଂ ପୂର୍ଣ୍ଣ ମାନବରେ ତାହାର ସମାପ୍ତି । ମନୁଷ୍ୟ ମଧ୍ୟ ସେହି ଶୃଙ୍ଖଳର ଗୋଟିଏ ପର୍ବ ମାତ୍ର । ଆଉ ଯେପରି କ୍ରମବିକାଶବାଦୀମାନେ କହନ୍ତି, କ୍ଷଦ୍ର କ୍ଷୁଦ୍ର ପ୍ରାଣୀ, ନାନା ଧରଣର ବାନର ଏବଂ ଉଦ୍ଭିଦଗଣ ଯେପରିକି ସେହି ପ୍ରାଣଶୃଙ୍ଖଳର ଅନ୍ୟାନ୍ୟ ସବୁ ପର୍ବ । ବର୍ତ୍ତମାନ ଯେଉଁ କ୍ଷୁଦ୍ରତମ କୋଷରୁ ଆମେମାନେ ଆରମ୍ଭ କରିଥିଲୁ, ସେଥିରୁ ଆରମ୍ଭ କରି ଅନ୍ୟ ସମୁଦାୟ ବସ୍ତୁକୁ ଏକ ଅଭିନ୍ନ ପ୍ରାଣପ୍ରବାହ ବୋଲି ଧରିନିଅ । ପ୍ରତ୍ୟେକ କ୍ରମବିକାଶ ପୂର୍ବରୁ କ୍ରମସଙ୍କୋଚ ପ୍ରକ୍ରିୟା ବିଦ୍ୟମାନ—ଏହି ନିୟମଟିକୁ ପ୍ରୟୋଗ କଲେ ଆମେ ଦେଖିପାରିବା ଯେ, ଅତି ନିମ୍ନତମ ଜନ୍ତୁଠାରୁ ସର୍ବୋଚ୍ଚ ପୂର୍ଣ୍ଣତମ ମନୁଷ୍ୟ ପର୍ଯ୍ୟନ୍ତ ସମୁଦାୟ ଶ୍ରେଣୀ ଅପର କୌଣସି ବସ୍ତୁର କ୍ରମସଙ୍କୁଚିତ ଅବସ୍ଥା । କାହାର କ୍ରମସଙ୍କୋଚଭାବ ଓ କେଉଁ ପଦାର୍ଥ କ୍ରମସଙ୍କୁଚିତ ହୋଇଥିଲା ? ଏହା ହିଁ ପ୍ରଶ୍ନ । କ୍ରମବିକାଶବାଦୀ କହିବେ: ତୁମେ ଯେ କହ ଏହି ଜଗତ ଈଶ୍ୱରଙ୍କର କ୍ରମସଙ୍କୁଚିତ ଅବସ୍ଥା—ତାହା ଭୁଲ ଧାରଣା । କାରଣ ତୁମେମାନେ କହ ଯେ, ଚୈତନ୍ୟ ହିଁ ଜଗତର ସ୍ରଷ୍ଟା, କିନ୍ତୁ ଆମେମାନେ ପ୍ରତିଦିନ ଦେଖୁଛୁ ଯେ, ଚୈତନ୍ୟ ଅନେକ ପରେ ବିକଶିତ ହୁଏ । କେବଳ ମନୁଷ୍ୟ ଓ ଉଚ୍ଚତର ଜନ୍ତୁମାନଙ୍କ ମଧ୍ୟରେ ଆମେମାନେ ଚୈତନ୍ୟର ପ୍ରକାଶ ଦେଖୁ; କିନ୍ତୁ ଏହି ଚୈତନ୍ୟ ଜନ୍ମିବା ପୂର୍ବରୁ ଏ ଜଗତରେ ଲକ୍ଷ ଲକ୍ଷ ବର୍ଷ ଅତୀତ ହୋଇଛି ।

ଯାହା ହେଉ, କ୍ରମବିକାଶବାଦୀମାନଙ୍କର ଆପତ୍ତି ଯୁକ୍ତିଯୁକ୍ତ ନୁହେଁ । ଆମେ ବର୍ତ୍ତମାନ ଯେଉଁ ନିୟମ ଆବିଷ୍କାର କଲୁଁ, ତାହା ପ୍ରୟୋଗ କରି ଦେଖିବା, କଅଣ ସିଦ୍ଧାନ୍ତ ହୁଏ । ବୃକ୍ଷ ବୀଜରୁ ଆସେ—ପୁଣି ବୀଜକୁ ଯାଏ—ଆରମ୍ଭ ଓ ପରିଣାମ ସମାନ । ପୃଥିବୀ ତାହାର କାରଣରୁ ଆସେ—ପୁଣି କାରଣକୁ ଫେରିଯାଏ । ସମସ୍ତ ବସ୍ତୁ ସମ୍ବନ୍ଧରେ ଏହା ସତ୍ୟ—ଆଦି ଓ ଅନ୍ତ ଉଭୟ ସମାନ । ଏହି

ସମୁଦାୟ ଶୃଙ୍ଖଳର ଶେଷ କଅଣ ? ଆମେମାନେ ଜାଣୁ ଯେ, ଆରମ୍ଭକୁ ଜାଣି-ପାରିଲେ ଆମେମାନେ ପରିଣାମ ମଧ୍ୟ ଜାଣିପାରିବା । ଏହିରୂପେ ଅନ୍ତକୁ ଜାଣି-ପାରିଲେ ଆମେମାନେ ଆଦିକୁ ମଧ୍ୟ ଜାଣିପାରିବା । ତାହା ଯଦି ହୁଏ, ତେବେ ଏହା ନିଶ୍ଚିତ ଯେ, ଏ ସମୁଦାୟ 'କ୍ରମବିକାଶଶୀଳ' ଜୀବପ୍ରବାହର ଏକ ପ୍ରାନ୍ତ ଜୀବାଣୁ, ଅପର ପ୍ରାନ୍ତ ପୂର୍ଣ୍ଣ ମାନବ । ଶେଷରେ ଯେହେତୁ ପୂର୍ଣ୍ଣ ମାନବ ବିଦ୍ୟମାନ, ସୁତରାଂ ଆଦିରେ ମଧ୍ୟ ସେ ସେ ଅବସ୍ଥିତ, ଏହା ସ୍ୱତଃସିଦ୍ଧ । ଅତଏବ ଆଦିର ଏହି ଜୀବାଣୁ ଅବଶ୍ୟ ଉଚ୍ଚତମ ଚୈତନ୍ୟର କ୍ରମସଙ୍କୁଚିତ ଅବସ୍ଥା । ତୁମେମାନେ ଏହା ସ୍ପଷ୍ଟରୂପେ ଦେଖି ନ ପାର; କିନ୍ତୁ ସେହି କ୍ରମସଙ୍କୁଚିତ ଚୈତନ୍ୟ ନିଜକୁ ବ୍ୟକ୍ତ କରିଚାଲିବ, ଯେତେଦିନଯାଏ ତାହା ସମ୍ପୂର୍ଣ୍ଣତମ ମାନବରୂପେ ପ୍ରକାଶିତ ନ ହୋଇଛି । ଏହି ତତ୍ତ୍ୱକୁ ନିଶ୍ଚିତଭାବରେ ଗଣିତଦ୍ୱାରା ପ୍ରମାଣ କରାଯାଇପାରେ । ଯଦି 'ଶକ୍ତିର ଅବିନଶ୍ୱରତ୍ୱ ନିୟମ' (Law of Conservation of Energy) ସତ୍ୟ ହୁଏ, ତେବେ ତୁମେ ଗୋଟିଏ ଯନ୍ତ୍ରରୁ କୌଣସି କାର୍ଯ୍ୟ ପାଇବ ନାହିଁ, ଯଦି ପୂର୍ବରୁ କୌଣସି ଶକ୍ତି ସେଥିରେ ନ ଦେଇଥାଅ । ଗୋଟିଏ ଇଞ୍ଜିନ୍‌ରୁ ତୁମେ ଯେତେ କାର୍ଯ୍ୟ ପାଅ, ତାହା ଯେତିକି ଶକ୍ତି ତୁମେ ପୂର୍ବେ ପାଣି ଓ କୋଇଲାରୂପେ ସେଥିରେ ଦେଇଥିଲ ଠିକ୍ ସେତିକି, ଟିକିଏ ବେଶୀ ନୁହେଁ କି ଟିକିଏ କମ୍ ମଧ୍ୟ ନୁହେଁ । ମୁଁ ନିଜ ଶରୀରକୁ ବାୟୁ, ଖାଦ୍ୟ ଓ ଅନ୍ୟାନ୍ୟ ପଦାର୍ଥରୂପେ ଯେତିକି ଯାହା ଦେଇଛି, ଠିକ୍ ସେତିକି କାର୍ଯ୍ୟ କରିବାକୁ ସମର୍ଥ । କେବଳ ସେଗୁଡ଼ିକ ଅନ୍ୟ ରୂପରେ ପରିଣତ ହୋଇଛନ୍ତି ମାତ୍ର । ଏହି ବିଶ୍ୱବ୍ରହ୍ମାଣ୍ଡରେ ଏକ ବିନ୍ଦୁ ଜଡ଼ ବା ଟିକିଏମାତ୍ର ଶକ୍ତି ବଢ଼ାଇବା ପାଇଁ ଅଥବା କମ୍ କରିଦେବା ପାଇଁ ଆମେମାନେ ଅକ୍ଷମ । ଯଦି ତାହା ସତ୍ୟ ହୁଏ, ତେବେ ଏହି ଚୈତନ୍ୟ କଅଣ ? ଯଦି ଏହା ଜୀବାଣୁରେ ବର୍ତ୍ତମାନ ନ ଥାଏ, ତାହାହେଲେ ତାହାକୁ ଅବଶ୍ୟ ଆକସ୍ମିକ ଭାବରେ ଉତ୍ପନ୍ନ ବୋଲି କହିବାକୁ ହେବ—ଅର୍ଥାତ୍ ଅସତ୍ (କିଛି ନାହିଁ)ରୁ ସତ୍‌ର (କିଛିର) ଉତ୍ପତ୍ତି ହୁଏ ବୋଲି ମାନିବାକୁ ହେବ, ଏହା ଅସମ୍ଭବ । ତାହାହେଲେ ଏହା ନିଃସନ୍ଦିଗ୍ଧଭାବରେ ପ୍ରମାଣିତ ହେଉଛି—ଯେପରି ଅନ୍ୟାନ୍ୟ ବିଷୟରେ ମଧ୍ୟ ଦେଖାଯାଏ, ଯେଉଁଠାରେ ଆରମ୍ଭ ସେହିଠାରେ ଶେଷ—ତେବେ କେତେବେଳେ ଅବ୍ୟକ୍ତ, କେତେବେଳେ ବା ବ୍ୟକ୍ତ । ସେହିପରି ପୂର୍ଣ୍ଣମାନବ ବା ମୁକ୍ତପୁରୁଷ ବା ଦେବମାନବ, ଯେ ପ୍ରକୃତିର ନିୟମର ବାହାରକୁ ଚାଲି ଯାଇଛନ୍ତି, ଯେ ସମୁଦାୟ ଅତିକ୍ରମ କରିଛନ୍ତି, ଯାହାଙ୍କୁ ଆଉ ଜନ୍ମମୃତ୍ୟୁର ଭିତର ଦେଇ ଯିବାକୁ ହୁଏ ନାହିଁ, ସେହି ମାନବ, ଯାହାଙ୍କୁ ଖ୍ରୀଷ୍ଟୀୟାନମାନେ ଖ୍ରୀଷ୍ଟମାନବ କହନ୍ତି, ବୌଦ୍ଧମାନେ ବୁଦ୍ଧମାନବ କହନ୍ତି, ଯୋଗୀମାନେ ମୁକ୍ତ କହନ୍ତି, ସେହି ପୂର୍ଣ୍ଣମାନବ ହିଁ ଏହି ଶୃଙ୍ଖଳର ଏକ ପ୍ରାନ୍ତ, ଏବଂ ଅପର ପ୍ରାନ୍ତରେ ମଧ୍ୟ ସେ ହିଁ କ୍ରମସଙ୍କୁଚିତ ହୋଇ ଜୀବାଣୁ ରୂପେ ପ୍ରକାଶିତ ।

ବର୍ତ୍ତମାନ ଏହି ବ୍ରହ୍ମାଣ୍ଡର କାରଣ ସମ୍ବନ୍ଧରେ କଅଣ ସିଦ୍ଧାନ୍ତ ହେଲା—

ଆଲୋଚନା କରାଯାଉ । ଜଗତ ସମ୍ବନ୍ଧରେ ମନୁଷ୍ୟର ଚରମ ଧାରଣା କଅଣ ? ଚୈତନ୍ୟ—ଯାହା ଗୋଟିଏ ଅଂଶ ସହିତ ଅନ୍ୟ ଅଂଶର ସଂଯୋଗ-ସାଧନ କରେ, ଅର୍ଥାତ୍ ବୁଦ୍ଧିର ବିକାଶ । ପ୍ରାଚୀନକାଳର 'ଉଦ୍ଦେଶ୍ୟବାଦ' (Design Theory) ଏହି ଧାରଣାର ଅସ୍ପଷ୍ଟ ଆଭାସମାତ୍ର ଥିଏ । ଆମେ ଜଡ଼ବାଦୀଙ୍କ ସହିତ ଏକମତ ଯେ ଚୈତନ୍ୟ ହିଁ ଜଗତର ଶ୍ରେଷ୍ଠ ବିକାଶ—ସୃଷ୍ଟିକ୍ରମର ଏହା ହିଁ ଚରମ ଅବସ୍ଥା; କିନ୍ତୁ ଆମେ ଏହା ମଧ୍ୟ କହୁ ଯେ, ଚୈତନ୍ୟ ଯଦି ଚରମ ବିକାଶ ହୁଏ, ତେବେ ଆଦିରେ ମଧ୍ୟ ଏହା ବର୍ତ୍ତମାନ ଥିଲା । ଜଡ଼ବାଦୀ କହିବେ ଯେ, ଭଲ କଥା; କିନ୍ତୁ ମନୁଷ୍ୟ ସୃଷ୍ଟି ହେବା ଆଗରୁ ମଧ୍ୟ ଲକ୍ଷ ଲକ୍ଷ ବର୍ଷ ଅତୀତ ହୋଇଛି, ସେତେବେଳେ ତ ଚୈତନ୍ୟର ଅସ୍ତିତ୍ୱ ନ ଥିଲା । ଏହାର ଉତ୍ତରରେ ଆମେ କହିବୁ ଯେ, ସେତେବେଳେ ଚୈତନ୍ୟ ବ୍ୟକ୍ତ ଅବସ୍ଥାରେ ନ ଥିଲା, ତାହା ଅବ୍ୟକ୍ତ ଥିଲା; ସୃଷ୍ଟିର ଶେଷରେ ଚୈତନ୍ୟ ପୂର୍ଣ୍ଣମାନବରୂପେ ପ୍ରକାଶିତ ହୁଏ । ତେବେ ସର୍ବପ୍ରଥମେ କଅଣ ଥିଲା ? ସେତେବେଳେ ମଧ୍ୟ ସେହି ଚୈତନ୍ୟ ଥିଲା । ଆଗେ ଚୈତନ୍ୟ କ୍ରମସଙ୍କୁଚିତ ଅବସ୍ଥାରେ ଥିଲା । ବର୍ତ୍ତମାନ ତାହାର କ୍ରମବିକଶିତ ରୂପ ଆମେ ଦେଖୁଛୁ । ଅତଏବ ଏହି ଜଗଦ୍‌ବ୍ରହ୍ମାଣ୍ଡର ସମୁଦାୟ ଜ୍ଞାନସମଷ୍ଟି ଅବଶ୍ୟ ସେହି କ୍ରମସଙ୍କୁଚିତ ସର୍ବବ୍ୟାପୀ ଚୈତନ୍ୟର ଅଭିବ୍ୟକ୍ତି । ତାହା ଧୀରେ ଧୀରେ ଆପଣାକୁ ବ୍ୟକ୍ତ କରୁଛି । ଏହି ସର୍ବବ୍ୟାପୀ ବିଶ୍ୱଜନୀନ ଚୈତନ୍ୟର ନାମ ଈଶ୍ୱର । ତାଙ୍କୁ ଅନ୍ୟ ଯେ କୌଣସି ନାମ ଦିଅନା କାହିଁକି, ଏହା ସ୍ଥିର ଯେ ଆଦିରେ ସେହି ଅନନ୍ତ ବିଶ୍ୱବ୍ୟାପୀ ଚୈତନ୍ୟ ଥିଲେ । ସେହି ବିଶ୍ୱଜନୀନ ଚୈତନ୍ୟ କ୍ରମସଙ୍କୁଚିତ ହୋଇ ଅବସ୍ଥାନ କରୁଥିଲେ, ପୁନଶ୍ଚ ସେହି ଚୈତନ୍ୟ ଆପଣାକୁ କ୍ରମଶଃ ବ୍ୟକ୍ତ କରୁଛନ୍ତି—ଯେତେଦିନ ଯାଏ ସେ ପୂର୍ଣ୍ଣମାନବ, ଖ୍ରୀଷ୍ଟମାନବ, ବୁଦ୍ଧମାନବରେ ପରିଣତ ନ ହୋଇଛନ୍ତି । ତା'ପରେ ସେ ନିଜ ଉତ୍ପତ୍ତି-ସ୍ଥାନକୁ ଫେରିଆସିବେ । ଏଥିପାଇଁ ଶାସ୍ତ୍ର କହୁଛନ୍ତି, 'ଆମେମାନେ ତାଙ୍କଠାରେ ମଧ୍ୟରେ ଜୀବିତ, ତାଙ୍କ ମଧ୍ୟରେ ଅବସ୍ଥାନ କରୁଛୁଁ, ତାଙ୍କର ମଧ୍ୟରେ ଆମମାନଙ୍କର ସତ୍ତା ।'* ଶାସ୍ତ୍ରକାରମାନେ କହନ୍ତି, 'ଆମେମାନେ ଈଶ୍ୱରଙ୍କଠାରୁ ଆସିଛୁଁ ଓ ତାଙ୍କ ନିକଟକୁ ଫେରିଯିବୁ ।' ବିଭିନ୍ନ ପରିଭାଷା ଦେଖି ଡରଯାଅ ନାହିଁ । ପରିଭାଷାକୁ ଯଦି ଭୟ କର, ତେବେ ତୁମେ ଦାର୍ଶନିକ ହେବାର ଯୋଗ୍ୟ ହେବ ନାହିଁ । ଏହି ବିଶ୍ୱବ୍ୟାପୀ ଚୈତନ୍ୟକୁ ତତ୍ତ୍ୱବିଦ୍‌ଗଣ ଈଶ୍ୱର ବୋଲି କହିଥାଆନ୍ତି ।

ମୋତେ ଅନେକେ କେତେ ଥର ପ୍ରଶ୍ନ କରିଛନ୍ତି: ଆପଣ ପୁରାତନ ଈଶ୍ୱର (God) ଶବ୍ଦଟିକୁ ବ୍ୟବହାର କରନ୍ତି କାହିଁକି ? କାରଣ—ପୂର୍ବୋକ୍ତ ବିଶ୍ୱବ୍ୟାପୀ ଚୈତନ୍ୟଙ୍କ ସମ୍ବନ୍ଧରେ ଯେତେ କଥା ବ୍ୟବହୃତ ହୋଇଛି, ତନ୍ମଧ୍ୟରେ ସେହି ଶବ୍ଦ ସର୍ବୋତ୍ତମ—କାରଣ ମନୁଷ୍ୟର ସକଳ ଆଶା ଭରସା, ସକଳ ସୁଖ, ସେହି ଗୋଟିଏ

* ତୈତ୍ତିରୀୟ ଉପନିଷଦ୍, ୩।୧

ଶବ୍ଦ ଉପରେ କେନ୍ଦ୍ରୀଭୂତ । ବର୍ତ୍ତମାନ ସେହି ଶବ୍ଦଟିକୁ ପରିବର୍ତ୍ତନ କରିବା ଅସମ୍ଭବ । ଯେତେବେଳେ ବଡ଼ ବଡ଼ ସାଧୁ ମହାତ୍ମାମାନେ ସେଭଳି ଗୋଟିଏ ଶବ୍ଦ ଗଢ଼ିଥିଲେ, ସେତେବେଳେ ସେମାନେ ତାହାର ଅର୍ଥ ଭଲ ଭାବରେ ବୁଝିଥିଲେ । କ୍ରମେ ସମାଜରେ ଯେତେବେଳେ ସେହିଭଳି 'ଶବ୍ଦଗୁଡ଼ିକ ପ୍ରଚଳିତ ହେବାକୁ ଲାଗିଲା, ସେତେବେଳେ ଅଜ୍ଞ ଲୋକେ ମଧ୍ୟ ସେହି ଶବ୍ଦଗୁଡ଼ିକୁ ବ୍ୟବହାର କରିବାକୁ ଲାଗିଲେ । ତାହାର ଫଳ ହେଲା ଯେ, ଶବ୍ଦଗୁଡ଼ିକର ମହିମା ହ୍ରାସ ପାଇଲା । 'ଈଶ୍ୱର' ଶବ୍ଦଟି ସ୍ମରଣାତୀତ କାଳରୁ ଚାଲିଆସୁଛି ଏବଂ ଯାହା କିଛି ମହତ୍ ଓ ପବିତ୍ର ଏବଂ ଏକ ସର୍ବବ୍ୟାପୀ ଚୈତନ୍ୟର ଭାବଦ୍ୟୋତକ, ତାହା ସବୁ ସେହି ଶବ୍ଦ ଭିତରେ ରହିଛି । କୌଣସି ନିର୍ବୋଧ ବ୍ୟକ୍ତି ସେହି ଶବ୍ଦଟିକୁ ବ୍ୟବହାର କରିବାରେ ଆପତ୍ତି କଲେ କ'ଣ ଆମେମାନେ ସେହି ଶବ୍ଦଟିକୁ ତ୍ୟାଗ କରିବୁ ? ଆଉ ଜଣେ ଆସିବ, କହିବ ମୋର ଗୋଟିଏ ଶବ୍ଦ ନିଅ । ଅନ୍ୟ ଲୋକ ଆସିବେ ଓ ସେମାନଙ୍କ ଶବ୍ଦ ବ୍ୟବହାର କରିବାକୁ କହିବେ । ଏଭଳି ହେଲେ ତ ବୃଥା ଶବ୍ଦର କିଛି ଅନ୍ତ ରହିବ ନାହିଁ । ତେଣୁ ମୁଁ କହେ, ସେହି ପ୍ରାଚୀନ ଶବ୍ଦଟିକୁ ବ୍ୟବହାର କର; କିନ୍ତୁ ତାହାକୁ ଆହୁରି ଭଲଭାବରେ ବ୍ୟବହାର କର— ମନରୁ କୁସଂସ୍କାର ଦୂର କରିଦିଅ ଏବଂ ସମ୍ପୂର୍ଣ୍ଣଭାବେ ଉପଲବ୍ଧି କର, ଏହି ମହତ୍ତ୍ୱ ପ୍ରାଚୀନ ଶବ୍ଦର ଅର୍ଥ କ'ଣ ? ଯଦି ତୁମେମାନେ 'ଭାବାନୁସଙ୍ଗ ବିଧାନ'ର (Law of Association of Ideas) ଶକ୍ତି ସମ୍ବନ୍ଧରେ ଅବହିତ ହୁଅ, ତେବେ ତୁମେ ଜାଣିପାରିବ ଯେ ଏହି ଶବ୍ଦ ସହିତ ନାନା-ପ୍ରକାର ମହାନ୍ ଓଜସ୍ୱୀ ଭାବ ଯୁକ୍ତ ଅଛି; ଲକ୍ଷଲକ୍ଷ ମାନବ ତାହା ବ୍ୟବହାର କରିଛନ୍ତି, ଲକ୍ଷ ଲକ୍ଷ ଲୋକ ସେହି ଶବ୍ଦକୁ ପୂଜା କରିଛନ୍ତି ଏବଂ ତାହା ସହିତ ଯାହା କିଛି ସର୍ବୋଚ୍ଚ ଓ ସୁନ୍ଦରତମ, ଯାହା କିଛି ଯୁକ୍ତିଯୁକ୍ତ, ଯାହା କିଛି ପ୍ରେମାସ୍ପଦ, ମନୁଷ୍ୟ-ସ୍ୱଭାବରେ ଯାହା କିଛି ମହତ୍ତ୍ୱ ଓ ସୁନ୍ଦର, ତାହା ଯୋଗ କରିଛନ୍ତି । ଅତଏବ ସେହି ଶବ୍ଦଟି ଉପର୍ଯ୍ୟୁକ୍ତ ଭାବର ଉଦ୍ଦୀପକ କାରଣସ୍ୱରୂପ ହୁଏ; ସୁତରାଂ ତାହାକୁ ତ୍ୟାଗ କରିବା ସମ୍ଭବ ନୁହେଁ । ମୁଁ ଯଦି ଆପଣଙ୍କୁ କେବଳ ଏହି କଥା ବୁଝାଇବାକୁ ଚେଷ୍ଟା କରିଥାଆନ୍ତି ଯେ, ଈଶ୍ୱର ଜଗତ ସୃଷ୍ଟି କରିଛନ୍ତି, ତାହାହେଲେ ଆପଣମାନଙ୍କ ନିକଟରେ ତାହା କୌଣସି ପ୍ରକାର ଅର୍ଥ ପ୍ରକାଶ କରି ନଥାନ୍ତା । ଏହି ସମୁଦାୟ ବସ୍ତୃବାଦ ପରେ ଆମେମାନେ ସେହି ପ୍ରାଚୀନ ପୁରୁଷଙ୍କ ନିକଟରେ ପହଞ୍ଚିଲୁ ।

ଅତଏବ ଆମେ ଦେଖିଲୁ ଯେ ଜାଗତିକ ଶକ୍ତିର ଏହି ସକଳ ବିକାଶ— ସେଗୁଡ଼ିକୁ ଭୂତ ବା ଚିନ୍ତାଶକ୍ତି ବା ଶକ୍ତି ବା ଚୈତନ୍ୟ ଯେଉଁ ନାମ ଦିଅନା କାହିଁକି, ତାହା ସେହି ବିଶ୍ୱବ୍ୟାପୀ ଚୈତନ୍ୟର ପ୍ରକାଶ । ଆମେମାନେ ଭବିଷ୍ୟତରେ ଏହାକୁ ପରମପ୍ରଭୁ ବୋଲି ଆଖ୍ୟାତ କରିବୁ । ଯାହା କିଛି ତୁମେ ଦେଖ, ଶୁଣ ବା ଅନୁଭବ କର, ସବୁ ହିଁ ତାଙ୍କର ସୃଷ୍ଟି ଅର୍ଥାତ୍ ଯଥାର୍ଥ ତାଙ୍କର ପରିଣାମ—ଠିକ୍ ଭାବରେ କହିବାକୁ ଗଲେ, ତାହା ସେ ନିଜେ ସ୍ୱୟଂ । ସେ ସୂର୍ଯ୍ୟ ଓ ତାରକାରୂପରେ

ଉଜ୍ଜ୍ୱଳଜ୍ୟୋତିରେ ପ୍ରକାଶିତ ହେଉଛନ୍ତି, ସେ ଜନନୀ ବସୁନ୍ଧରା, ସେ ହିଁ ସ୍ୱୟଂ ସମୁଦ୍ର । ସେ ମୃଦୁ ବୃଷ୍ଟିଧାରାରୂପେ ବର୍ଷୁଛନ୍ତି, ସେ ଆମମାନଙ୍କ ଶରୀରରେ ଶକ୍ତିରୂପେ କାର୍ଯ୍ୟ କରୁଛନ୍ତି, ସେ ହିଁ ମୃଦୁ ମନ୍ଦ ବାୟୁ, ଯାହାକୁ ଆମେମାନେ ନିଃଶ୍ୱାସରୂପେ ଗ୍ରହଣ କରୁ । ସେ ବକ୍ତା, ସେ ବକ୍ତୃତା, ସେ ଶ୍ରୋତୃମଣ୍ଡଳୀ, ସେ ଏହି ବକ୍ତୃତା-ମଞ୍ଚ, ଯାହା ଉପରେ ମୁଁ ଛିଡ଼ା ହୋଇଛି—ସେ ସେହି ଆଲୋକ, ଯାହାଦ୍ୱାରା ମୁଁ ତୁମମାନଙ୍କ ମୁଖ ଦେଖୁଛି । ସବୁ ହିଁ ଈଶ୍ୱର । ସେ ଜଗତର ଉପାଦାନ ଓ ନିମିତ୍ତ କାରଣ, ସେ ହିଁ କ୍ରମସଙ୍କୁଚିତ ହୋଇ ଅଣୁ ହୁଅନ୍ତି, ପୁନଶ୍ଚ କ୍ରମବିକଶିତ ହୋଇ ଈଶ୍ୱର ହୁଅନ୍ତି । ସେ ଅବନତ ହୋଇ ଅତି ନିମ୍ନତମ ପରମାଣୁ ହୁଅନ୍ତି—ପୁନଶ୍ଚ ଧୀରେ ଧୀରେ ନିଜ ସ୍ୱରୂପ ପ୍ରକାଶ କରି ସ୍ୱରୂପରେ ପୁନର୍ମିଳିତ ହୁଅନ୍ତି । ଏହା ହିଁ ଜଗତର ରହସ୍ୟ । 'ତୁମେ ପୁରୁଷ, ତୁମେ ସ୍ତ୍ରୀ, ତୁମେ ଯୌବନଗର୍ବରେ ଭ୍ରମଣଶୀଳ ଯୁବା, ତୁମେ କୁମାରୀ, ତୁମେ ବୃଦ୍ଧ ଦଣ୍ଡ ଧାରଣ କରି ଚାଲିଛ, ତୁମେ ସକଳ ବସ୍ତୁରେ ଅବସ୍ଥିତ—ହେ ପ୍ରଭୁ, ତୁମେ ହିଁ ସବୁ ।'* ଜଗତର ଏହି ଏକମାତ୍ର ବ୍ୟାଖ୍ୟା, ଯହିଁରେ ମାନବର ଯୁକ୍ତି ଏବଂ ମାନବବୁଦ୍ଧି ତୃପ୍ତ ହୁଏ । ଏକ କଥାରେ କହିବାକୁ ଗଲେ, 'ଆମେମାନେ ପରମେଶ୍ୱରଙ୍କଠାରୁ ଜାତ ହେଉ, ପରମେଶ୍ୱରଙ୍କ ମଧ୍ୟରେ ଜୀବିତ ରହୁ ଏବଂ ପରମେଶ୍ୱରଙ୍କ ନିକଟକୁ ଫେରିଯାଉ ।'**

* ଶ୍ୱେତାଶ୍ୱତର ଉପ., ୪।୩

** ତୈତ୍ତିରୀୟ ଉପ., ୩।୧

# ଜଗତ୍ (୨)

## (କ୍ଷୁଦ୍ର ବ୍ରହ୍ମାଣ୍ଡ)

[ନିଉୟର୍କରେ ପ୍ରଦତ୍ତ ବକ୍ତୃତା, ୨୬ ଜାନୁଆରି, ୧୮୯୬]

ମନୁଷ୍ୟମନ ସ୍ୱଭାବତଃ ବାହାରକୁ ଯିବାକୁ ଚାହେଁ—ମନ ଯେପରି ଶରୀରର ବାହାରକୁ ଇନ୍ଦ୍ରିୟପ୍ରଣାଳୀ ସାହାଯ୍ୟରେ ଉଙ୍କିମାରିବାକୁ ଚାହେଁ । ଚକ୍ଷୁ ଅବଶ୍ୟ ଦେଖିବ, କର୍ଣ୍ଣ ଅବଶ୍ୟ ଶୁଣିବ, ଇନ୍ଦ୍ରିୟଗଣ ଅବଶ୍ୟ ବହିର୍ଜଗତ୍ ପ୍ରତ୍ୟକ୍ଷ କରିବେ । ତେଣୁ ସ୍ୱଭାବତଃ ପ୍ରକୃତିର ସୌନ୍ଦର୍ଯ୍ୟ ଓ ମହତ୍ତ୍ୱ ମନୁଷ୍ୟର ଦୃଷ୍ଟିକୁ ପ୍ରଥମେ ଆକର୍ଷଣ କରେ । ମାନବାତ୍ମା ପ୍ରଥମେ ବହିର୍ଜଗତ ସମ୍ବନ୍ଧରେ ପ୍ରଶ୍ନ ପଚାରିଥିଲା । ଆକାଶ, ନକ୍ଷତ୍ରପୁଞ୍ଜ, ଅନ୍ତରୀକ୍ଷସ୍ଥ ଅନ୍ୟାନ୍ୟ ପଦାର୍ଥନିଚୟ, ପୃଥିବୀ, ନଦୀ, ପର୍ବତ, ସମୁଦ୍ର ପ୍ରଭୃତି ସମ୍ବନ୍ଧରେ ପ୍ରଶ୍ନ ଜିଜ୍ଞାସିତ ହୋଇଥିଲା ବୋଲି ଆମେମାନେ ସକଳ ପ୍ରାଚୀନ ଧର୍ମରେ ଏହାର କିଛି କିଛି ପରିଚୟ ପାଉ । ପ୍ରଥମେ ମାନବମନ ଅନ୍ଧକାରରେ ଅଣ୍ଡାଳୁ ଅଣ୍ଡାଳୁ ବାହାରେ ଯାହା କିଛି ଦେଖିଥିଲା, ତାହାକୁ ଧରିବାକୁ ଚେଷ୍ଟା କରିଥିଲା । ଏହି ଭାବରେ ନଦୀର ଜଣେ ଅଧିଷ୍ଠାତ୍ରୀ ଦେବତା, ଆକାଶର ଅଧିଷ୍ଠାତ୍ରୀ ଆଉ ଜଣେ, ମେଘର ଅଧିଷ୍ଠାତ୍ରୀ ଆଉ ଜଣେ, ପୁଣି ବୃଷ୍ଟିର ଅଧିଷ୍ଠାତ୍ରୀ ଆଉ ଜଣେ ଦେବତାରେ ସେ ବିଶ୍ୱାସୀ ହେଲା । ଯେଉଁମାନଙ୍କୁ ଆମେ ପ୍ରକୃତିର ଶକ୍ତି ବୋଲି ଜାଣୁ—ସେମାନେ ସଚେତନ ପଦାର୍ଥରେ ପରିଣତ ହେଲେ । କିନ୍ତୁ ଅନୁସନ୍ଧାନ ଯେତେ ଗଭୀରତର ହେବାକୁ ଲାଗିଲା, ସେତେ ପରିମାଣରେ ଏହି ବାହ୍ୟ ଦେବତାଗଣଙ୍କଠାରେ ମନୁଷ୍ୟର ତୃପ୍ତି କମିଗଲା । ସେତେବେଳେ ମନୁଷ୍ୟର ସମୁଦାୟ ଶକ୍ତି ନିଜ ଅନ୍ତରକୁ ପ୍ରବାହିତ ହେଲା—ମନୁଷ୍ୟର ନିଜ ଆତ୍ମା ସମ୍ବନ୍ଧରେ ପ୍ରଶ୍ନ ଜିଜ୍ଞାସିତ ହେଲା । ବହିର୍ଜଗତରୁ ସେହି ପ୍ରଶ୍ନ ଯାଇ ଅନ୍ତର୍ଜଗତରେ ପହଞ୍ଚିଲା । ବହିର୍ଜଗତ ବିଶ୍ଳେଷଣ କରି ଶେଷରେ ମନୁଷ୍ୟ ଅନ୍ତର୍ଜଗତ ବିଶ୍ଳେଷଣ କରିବାକୁ ଲାଗିଲା । ଏହି ଭିତରର ମନୁଷ୍ୟ ସମ୍ବନ୍ଧରେ ପ୍ରଶ୍ନ ଉତ୍ଥିତ ହୁଏ ଉଚ୍ଚତର ସଭ୍ୟତାର ସ୍ତରରେ, ପ୍ରକୃତି ସମ୍ବନ୍ଧରେ ଗଭୀରତର ଅନ୍ତର୍ଦୃଷ୍ଟିରୁ, ଉନ୍ନତର ଉଚ୍ଚତର ଭୂମିରେ ଆରୂଢ଼ ହେଲେ ।

ଆଜି ଅପରାହ୍ନରେ ଏହି ଭିତରର ମନୁଷ୍ୟ ହିଁ ଆମମାନଙ୍କର ଆଲୋଚ୍ୟ ବିଷୟ । ଏହି ଅନ୍ତର୍ମାନବ ସମ୍ବନ୍ଧରେ ପ୍ରଶ୍ନ ମନୁଷ୍ୟର ଯେତେଦୂର ପ୍ରିୟ ଏବଂ ତାହାର ହୃଦୟର ଯେତେ ସନ୍ନିହିତ, ଆଉ କିଛି ସେପରି ନୁହେଁ । କେତେ ଲକ୍ଷ ଥର, କେତେ କେତେ ଦେଶରେ ଏହି ପ୍ରଶ୍ନ ଜିଜ୍ଞାସିତ ହୋଇଛି । କି ଅରଣ୍ୟବାସୀ

ସନ୍ନ୍ୟାସୀ, କି ରାଜା, କି ଦରିଦ୍ର, କି ଧନୀ, କି ସାଧୁ, କି ପାପୀ, ପ୍ରତ୍ୟେକ ନର, ପ୍ରତ୍ୟେକ ନାରୀ, ସମସ୍ତେ କୌଣସି ନା କୌଣସି ସମୟରେ ଏହି ପ୍ରଶ୍ନ ପଚାରିଛନ୍ତି—ଏହି କ୍ଷଣଭଙ୍ଗୁର ମାନବଜୀବନରେ କ'ଣ ନିତ୍ୟ କିଛି ନାହିଁ ? ଏହି ଶରୀର ମରିଗଲେ ଏପରି କିଛି କିଛି ନାହିଁ ଯାହା ମରେ ନାହିଁ ? ଯେତେବେଳେ ଏହି ଶରୀର ଧୂଳିରେ ପରିଣତ ହୁଏ, ସେତେବେଳେ କ'ଣ କିଛି ଜୀବିତ ରହେ ନାହିଁ ? ଅଗ୍ନି ଶରୀରକୁ ଭସ୍ମସାତ୍ କଲେ ତାହା ପରେ କ'ଣ ଆଉ କିଛି ଅବଶିଷ୍ଟ ରହେ ନାହିଁ ? ଯଦି ଥାଏ, ତାହାହେଲେ ତାହାର ନିୟତି କ'ଣ ? ତାହା କେଉଁଠାକୁ ଯାଏ ? କେଉଁଠାରୁ ବା ତାହା ଆସିଥିଲା ? ଏହି ପ୍ରଶ୍ନଗୁଡ଼ିକ ପୁନଃ ପୁନଃ ଜିଜ୍ଞାସିତ ହୋଇଛି, ଆଉ ଯେତେଦିନ ଏହି ସୃଷ୍ଟି ଥିବ, ଯେପର୍ଯ୍ୟନ୍ତ ମାନବ-ମସ୍ତିଷ୍କ ଚିନ୍ତା କରୁଥିବ, ସେତେଦିନଯାଏ ଏହି ପ୍ରଶ୍ନ ଜିଜ୍ଞାସିତ ହେଉଥିବ । ଏହାର ଉତ୍ତର ଯେ ଆସିନାହିଁ, ତାହା ନୁହେଁ, ପ୍ରତିଥର ଉତ୍ତର ଆସିଥିଲା; ଆହୁରି ଯେତେ ସମୟ ଯାଉଛି, ସେତେ ତାହା ଉତ୍ତରୋତ୍ତର ଅଧିକ ବଳ ସଂଗ୍ରହ କରୁଛି । ସହସ୍ର ବର୍ଷ ପୂର୍ବେ ଏହି ପ୍ରଶ୍ନର ଉତ୍ତର ସମ୍ପୂର୍ଣ୍ଣରୂପେ ପ୍ରଦତ୍ତ ହୋଇଥିଲା; ଏବଂ ପରବର୍ତ୍ତୀ ସମୟରେ ସେହି ଉତ୍ତର ହିଁ ପୁନଃକଥିତ, ପୁନଃବିଶଦୀକୃତ ହୋଇ ଆମମାନଙ୍କର ବୁଦ୍ଧି ନିକଟରେ ଉଜ୍ଜ୍ୱଳତରରୂପେ ପ୍ରକାଶିତ ହୋଇଛି । ଅତଏବ ଆମମାନଙ୍କୁ କେବଳ ସେହି ଉତ୍ତରର ପୁନରାବୃତ୍ତି କରିବାକୁ ହେବ । ସମସ୍ତଙ୍କର ଚିତ୍ତାକର୍ଷକ ଏହି ସମସ୍ୟା-ଗୁଡ଼ିକ ସମ୍ବନ୍ଧରେ ନୂତନ ଆଲୋକ ନିକ୍ଷେପ କରିପାରିବି, ଏଭଳି ଛଳନା ମୁଁ କରିବି ନାହିଁ । ଆମମାନଙ୍କର ଆକାଙ୍କ୍ଷା ଏହି ଯେ, ସେହି ପ୍ରାଚୀନ ମହାନ୍ ସତ୍ୟକୁ ବର୍ତ୍ତମାନ କାଳର ଭାଷାରେ ପ୍ରକାଶ କରିବୁ, ପ୍ରାଚୀନମାନଙ୍କର ଚିନ୍ତାକୁ ଆଧୁନିକ-ମାନଙ୍କ ଭାଷାରେ ପ୍ରକାଶ କରିବୁ, ଦାର୍ଶନିକମାନଙ୍କ ଭାଷାକୁ ଲୌକିକ ଭାଷାରେ କହିବୁ, ଦେବତାମାନଙ୍କ ଚିନ୍ତାକୁ ମାନବଭାଷାରେ କହିବୁ, ଈଶ୍ୱରଙ୍କ ଚିନ୍ତାକୁ ଦୁର୍ବଳ ମାନବଭାଷାରେ ପ୍ରକାଶ କରିବୁ, ଯଦ୍ଦ୍ୱାରା ଲୋକେ ତାହା ବୁଝିପାରିବେ । କାରଣ ପରେ ଆମେ ଦେଖିବା ଯେ, ଯେଉଁ ଐଶୀ ସତ୍ତାରୁ ଏହିସବୁ ଭାବ ପ୍ରସୂତ, ତାହା ମାନବ ଭିତରେ ମଧ୍ୟ ବିଦ୍ୟମାନ—ଯେଉଁ ସତ୍ତା ଏ ଚିନ୍ତାଗୁଡ଼ିକୁ ସୃଷ୍ଟି କରିଛନ୍ତି, ସେ ନିଜେ ଯେ ମନୁଷ୍ୟ ମଧ୍ୟରେ ପ୍ରକାଶିତ, ତାହା ବୁଝିବେ ।

ମୁଁ ତୁମମାନଙ୍କୁ ଦେଖୁଛି । ଏହି ଦୃଷ୍ଟି ପାଇଁ କେତେଗୁଡ଼ିଏ ଜିନିଷ ଆବଶ୍ୟକ । ପ୍ରଥମତଃ ଚକ୍ଷୁ—ଚକ୍ଷୁ ଅବଶ୍ୟ ରହିବା ଦରକାର । ମୁଁ ସର୍ବପ୍ରକାରେ ପୂର୍ଣ୍ଣ ହୋଇପାରେ, କିନ୍ତୁ ଯଦି ମୋର ଚକ୍ଷୁ ନ ଥାଏ, ତେବେ ମୁଁ ତୁମମାନଙ୍କୁ ଦେଖିପାରିବି ନାହିଁ । ଅତଏବ ପ୍ରଥମତଃ ମୋର ଚକ୍ଷୁ ରହିବା ଆବଶ୍ୟକ । ଦ୍ୱିତୀୟତଃ ଚକ୍ଷୁର ପଶ୍ଚାତ୍‌ରେ ଯଦି ଦର୍ଶନେନ୍ଦ୍ରିୟ ନ ଥାଏ, ତେବେ ପର୍ଯ୍ୟାପ୍ତ ହେବ ନାହିଁ । ଚକ୍ଷୁ ବାସ୍ତବିକ ଇନ୍ଦ୍ରିୟ ନୁହେଁ, ତାହା ଦର୍ଶନର ଯନ୍ତ୍ର ମାତ୍ର, ଯଥାର୍ଥ ଇନ୍ଦ୍ରିୟଟି ଚକ୍ଷୁର ପଶ୍ଚାତ୍‌ରେ ଅବସ୍ଥିତ—ତାହା ମସ୍ତିଷ୍କସ୍ଥ ସ୍ନାୟୁକେନ୍ଦ୍ର । ଯଦି ସେହି

କେନ୍ଦ୍ରଟି ନଷ୍ଟ ହୁଏ, ତେବେ ମନୁଷ୍ୟର ଅତି ନିର୍ମଳ ଚକ୍ଷୁ ଦୁଇଟି ରହିଥିଲେ ମଧ୍ୟ ସେ କିଛି ଦେଖିପାରିବ ନାହିଁ । ଅତଏବ ଦୃଷ୍ଟିକ୍ରିୟା ପାଇଁ ପ୍ରକୃତ ଇନ୍ଦ୍ରିୟଟି ଯେପରି ରହିବା ଆବଶ୍ୟକ, ଆମମାନଙ୍କର ଅନ୍ୟାନ୍ୟ ଇନ୍ଦ୍ରିୟ ସମ୍ବନ୍ଧରେ ତଦ୍ରୂପ । ବାହାରର କର୍ଣ୍ଣ କେବଳ ଭିତରକୁ ଶବ୍ଦ ଆଣିବାର ଯନ୍ତ୍ର ମାତ୍ର; କିନ୍ତୁ ଏହା ମସ୍ତିଷ୍କସ୍ଥ କେନ୍ଦ୍ରକୁ ଯିବା ଦରକାର । ତାହା ମଧ୍ୟ ପର୍ଯ୍ୟାପ୍ତ ନୁହେଁ । କେବେ କେବେ ଏଭଳି ମଧ୍ୟ ହୁଏ ଯେ, ତୁମେ ତୁମର ପୁସ୍ତକାଗାରରେ ବସି ଏକାଗ୍ର ମନରେ କୌଣସି ପୁସ୍ତକ ପଢ଼ୁଛ, ଏପରି ସମୟରେ ଘଣ୍ଟାରେ ବାରଟା ବାଜିଲା; କିନ୍ତୁ ତୁମେ ତାହା ଶୁଣିପାରିଲ ନାହିଁ । ଏଠାରେ କ'ଣ ଅଭାବ ? ମନ ସେହି ଇନ୍ଦ୍ରିୟରେ ସଂଯୁକ୍ତ ନ ଥିଲା । ଅତଏବ ଆମେମାନେ ଦେଖୁଛୁଁ, ତୃତୀୟତଃ ମନ ଅବଶ୍ୟ ରହିବା ଦରକାର । ପ୍ରଥମ ବାହ୍ୟଯନ୍ତ୍ର; ତା'ପରେ ଏହି ବାହ୍ୟଯନ୍ତ୍ରଟି ଇନ୍ଦ୍ରିୟ ନିକଟକୁ ଯେପରି ଏହି ବିଷୟକୁ ବହନ କରି ନେଇଯାଏ; ତା'ପରେ ମନ ମଧ୍ୟ ଇନ୍ଦ୍ରିୟରେ ଯୁକ୍ତ ହେବା ଆବଶ୍ୟକ । ଯେତେବେଳେ ମନ ଏହି ମସ୍ତିଷ୍କସ୍ଥ କେନ୍ଦ୍ରରେ ଯୁକ୍ତ ନ ଥାଏ, ସେତେବେଳେ କର୍ଣ୍ଣ-ଯନ୍ତ୍ରରେ ଏବଂ ମସ୍ତିଷ୍କସ୍ଥ କେନ୍ଦ୍ରରେ ବିଷୟର ଛାପ ପଡ଼ିପାରେ, କିନ୍ତୁ ଆମେମାନେ ତାହା ବୁଝିପାରିବୁ ନାହିଁ । ମନ କେବଳ ବାହକ ମାତ୍ର—ତାହାକୁ ଏହି ବିଷୟର ଛାପକୁ ଆହୁରି ଭିତରକୁ ବହନ କରିନେଇ ବୁଦ୍ଧିକୁ ପ୍ରଦାନ କରିବାକୁ ହୁଏ । ବୁଦ୍ଧି ନିଶ୍ଚୟାତ୍ମିକା ବୃତ୍ତି । ତଥାପି ଏସବୁ ପର୍ଯ୍ୟାପ୍ତ ହେଲ ନାହିଁ । ବୁଦ୍ଧିକୁ ପୁଣି ଆହୁରି ଭିତରକୁ ନେଇଯାଇ ଶରୀରର ରାଜା ଆତ୍ମା ନିକଟରେ ସମର୍ପଣ କରିବାକୁ ହୁଏ । ଆତ୍ମା ନିକଟରେ ପହଞ୍ଚିଲେ ଆତ୍ମା ଆଦେଶ କରେ, 'କର' ବା 'କର ନାହିଁ' । ସେତେବେଳେ ଯେଉଁ ଯେଉଁ କ୍ରମରେ ତାହା ଭିତରକୁ ଯାଇଥିଲା, ପୁଣି ସେହି ସେହି କ୍ରମରେ ବାହାରକୁ ଆସେ—ପ୍ରଥମେ ବୁଦ୍ଧିରେ, ତା'ପରେ ମନରେ, ତା'ପରେ ମସ୍ତିଷ୍କ-କେନ୍ଦ୍ରରେ, ତା'ପରେ ବହିର୍ଯନ୍ତ୍ରରେ; ସେତେବେଳେ ଯାଇ ବିଷୟଜ୍ଞାନ ସମ୍ପୂର୍ଣ୍ଣ ହେଲ ବୋଲି କୁହାଯାଏ ।

ଯନ୍ତ୍ରଗୁଡ଼ିକ ମନୁଷ୍ୟର ସ୍ଥୂଳ ଦେହରେ ଅବସ୍ଥିତ । ମନ କିନ୍ତୁ ତାହା ନୁହେଁ, ବୁଦ୍ଧି ମଧ୍ୟ ନୁହେଁ । ହିନ୍ଦୁ ଶାସ୍ତ୍ରରେ ସେମାନଙ୍କର ନାମ 'ସୂକ୍ଷ୍ମ ଶରୀର', ଖ୍ରୀଷ୍ଟିଆନ ଶାସ୍ତ୍ରରେ 'ଆଧ୍ୟାତ୍ମିକ ଶରୀର' । ତାହା ଏହି ଶରୀରଠାରୁ ଅନେକ ସୂକ୍ଷ୍ମ ସତ୍ୟ, କିନ୍ତୁ ତାହା ଆତ୍ମା ନୁହେଁ । ଆତ୍ମା ଏ ସକଳର ଅତୀତ । ସ୍ଥୂଳ ଶରୀର ଅଳ୍ପ ଦିନରେ ଧ୍ୱଂସ ପାଇଯାଏ—ଖୁବ୍ ସାମାନ୍ୟ କାରଣରୁ ତାହା ଭିତରେ ଗୋଳମାଳ ଘଟେ ଓ ତାହାର ଧ୍ୱଂସ ହୋଇଯାଇପାରେ । ସୂକ୍ଷ୍ମ ଶରୀର ଏତେ ସହଜରେ ନଷ୍ଟ ହୁଏ ନାହିଁ; କିନ୍ତୁ ତାହା କେତେବେଳେ ସବଳ ଓ କେତେବେଳେ ବା ଦୁର୍ବଳ ହୁଏ । ଆମେମାନେ ଦେଖିବାକୁ ପାଉ, ବୃଦ୍ଧ ଲୋକମାନଙ୍କ ମଧ୍ୟରେ ମନର ସେତେ ବଳ ନ ଥାଏ । ଶରୀର ସବଳ ଥିଲେ ମନ ମଧ୍ୟ ସବଳ ଥାଏ । ନାନାବିଧ ଔଷଧ ମନ ଉପରେ କାର୍ଯ୍ୟ କରେ, ବାହାରର ସକଳ ବସ୍ତୁ ହିଁ ତାହା ଉପରେ କାର୍ଯ୍ୟ କରେ,

ପୁନଶ୍ଚ ମନ ମଧ୍ୟ ବାହ୍ୟ ଜଗତ ଉପରେ କାର୍ଯ୍ୟ କରିଥାଏ । ଶରୀରର ଯେପରି ଉନ୍ନତି ଅବନତି ଅଛି, ମନର ମଧ୍ୟ ସେହିପରି ସବଳତା ଦୁର୍ବଳତା ଅଛି; ଅତଏବ ମନ କଦାପି ଆତ୍ମା ହୋଇପାରେ ନାହିଁ; କାରଣ ଆତ୍ମାର କ୍ଷୟ କିମ୍ବା ଅବନତି ନାହିଁ । ଆମ୍ଭେମାନେ କିପରି ତାହା ଜାଣିପାରୁ ? ଆମ୍ଭେମାନେ କିପରି ଜାଣିପାରୁ ଯେ, ମନର ପଶ୍ଚାତ୍ତରେ ଆଉ କିଛି ଅଛି । କାରଣ ସ୍ୱପ୍ରକାଶ ଜ୍ଞାନ କଦାପି ଜଡ଼ର ଧର୍ମ ହୋଇପାରେ ନାହିଁ । ଏପରି କୌଣସି ଜଡ଼ବସ୍ତୁ ଦେଖାଯାଏ ନାହିଁ, ଯାହାର ସ୍ୱରୂପ ଜ୍ଞାନ । ଜଡ଼ଭୂତ କଦାପି ଆପଣାକୁ ପ୍ରକାଶ କରିପାରେ ନାହିଁ । ଜ୍ଞାନ ହିଁ ସମୁଦାୟ ଜଡ଼କୁ ପ୍ରକାଶ କରେ । ଏହି ଯେ ସମ୍ମୁଖରେ ହଲ୍ (hall) ଦେଖୁଛ, ଜ୍ଞାନ ହିଁ ତା'ର ମୂଳ ବୋଲି କହିବାକୁ ହେବ, କାରଣ କୌଣସି ନା କୌଣସି ଜ୍ଞାନର ସହାୟତା ବ୍ୟତିରେକେ ତାହାର ଅସ୍ତିତ୍ୱ ଉପଲବ୍ଧି ହୁଅନ୍ତା ନାହିଁ । ଏହି ଶରୀର ସ୍ୱପ୍ରକାଶ ନୁହେଁ । ଯଦି ତାହା ହୋଇଥାଆନ୍ତା, ତେବେ ମୃତ ବ୍ୟକ୍ତିର ଶରୀର ମଧ୍ୟ ସ୍ୱପ୍ରକାଶ ହୋଇଥାଆନ୍ତା । ମନ ଅଥବା ଆଧ୍ୟାତ୍ମିକ ଶରୀର ମଧ୍ୟ ସ୍ୱପ୍ରକାଶ ହୋଇପାରେ ନାହିଁ । ତାହା ଜ୍ଞାନସ୍ୱରୂପ ନୁହେଁ । ଯାହା ସ୍ୱପ୍ରକାଶ, ତାହାର କଦାପି ଧ୍ୱଂସ ହୁଏ ନାହିଁ । ଯାହା ଅପରର ଆଲୋକ ନେଇ ଆଲୋକିତ ହୁଏ, ତାହାର ଆଲୋକ ବେଳେ ବେଳେ ଥାଏ—ପୁଣି ବେଳେ ବେଳେ ନ ଥାଏ; କିନ୍ତୁ ଯାହା ସ୍ୱୟଂ ଆଲୋକସ୍ୱରୂପ, ତାହାର ଯିବାଆସିବା, ହ୍ରାସବୃଦ୍ଧି ପୁଣି କଅଣ ? ଆମ୍ଭେମାନେ ଦେଖୁ, ଚନ୍ଦ୍ରର କ୍ଷୟ ହୁଏ, ପୁଣି ତାହାର କଳାର ବୃଦ୍ଧି ହୁଏ—କାରଣ, ତାହା ସୂର୍ଯ୍ୟର ଆଲୋକରେ ଆଲୋକିତ । ଯଦି ଅଗ୍ନିରେ ଲୌହପିଣ୍ଡ ଫିଙ୍ଗି ଦିଆଯାଏ, ଏବଂ ଯଦି ତାହାକୁ ଲୋହିତୋତ୍ତପ୍ତ କରାଯାଏ, ତେବେ ତାହା ଆଲୋକ ବିକିରଣ କରିବ; କିନ୍ତୁ ସେହି ଆଲୋକ ଯେହେତୁ ଅପରର, ତାହା ଚାଲିଯିବ । ଅତଏବ କ୍ଷୟ କେବଳ ସେହି ଆଲୋକର ହିଁ ସମ୍ଭବ, ଯାହା ଅପର ନିକଟରୁ ଗୃହୀତ, ଯାହା ସ୍ୱପ୍ରକାଶ ଆଲୋକ ନୁହେଁ ।

ବର୍ତ୍ତମାନ ଆମ୍ଭେମାନେ ଦେଖିଲୁ ଯେ ଏହି ସ୍ଥୂଳ ଦେହ ସ୍ୱପ୍ରକାଶ ନୁହେଁ, ତାହା ନିଜକୁ ନିଜେ ଜାଣିପାରେ ନାହିଁ । ମନ ମଧ୍ୟ ନିଜକୁ ନିଜେ ଜାଣିପାରେ ନାହିଁ । କାହିଁକି ? କାରଣ, ମାନସିକ ଶକ୍ତିର ହ୍ରାସବୃଦ୍ଧି ଅଛି, କେତେବେଳେ ତାହା ସବଳ ତ କେତେବେଳେ ତାହା ଦୁର୍ବଳ ହୁଏ, କାରଣ ବାହ୍ୟ ବସ୍ତୁ ହିଁ ତାହା ଉପରେ କାର୍ଯ୍ୟ କରି ତାହାକୁ ସବଳ କରିପାରେ ଏବଂ ଦୁର୍ବଳ ମଧ୍ୟ କରିପାରେ । ଅତଏବ ମନ ଭିତର ଦେଇ ଯେ ଆଲୋକ ଆସୁଛି, ତାହା ତାହାର ନିଜର ନୁହେଁ । ତେବେ ତାହା କାହାର ? ତାହା ଅବଶ୍ୟ ଏପରି କାହାର ଆଲୋକ ହେବ, ଯାହା ଅନ୍ୟ ଆଲୋକର ପ୍ରତିଫଳନ ନୁହେଁ; କିନ୍ତୁ ଯାହା ସ୍ୱୟଂ ଆଲୋକସ୍ୱରୂପ । ଅତଏବ ସେହି ପୁରୁଷଙ୍କର ସ୍ୱରୂପଭୂତ ଯେଉଁ ଜ୍ଞାନ, ତାହାର କଦାପି ନାଶ ବା କ୍ଷୟ ହୁଏ ନାହିଁ, ତାହା କେତେବେଳେ ମୃଦୁ ବା ପ୍ରବଳ ହୋଇପାରେ ନାହିଁ । ତାହା

ସ୍ୱପ୍ରକାଶ—ତାହା ଆଲୋକସ୍ୱରୂପ । 'ଆତ୍ମା ଜାଣନ୍ତି'—ଏହି ବାକ୍ୟ ଆଦୌ ଠିକ୍ ନୁହେଁ, ଆତ୍ମା ସ୍ୱୟଂ ଜ୍ଞାନସ୍ୱରୂପ । 'ଆତ୍ମାର ଅସ୍ତିତ୍ୱ ଅଛି'—ଏହି ବାକ୍ୟ ମଧ୍ୟ ଠିକ୍ ନୁହେଁ, ଆତ୍ମା ସ୍ୱୟଂ ଅସ୍ତିତ୍ୱସ୍ୱରୂପ; ଆତ୍ମା ସୁଖୀ— ଏହା ଠିକ୍ ନୁହେଁ, ଆତ୍ମା ସ୍ୱୟଂ ସୁଖସ୍ୱରୂପ । ଯେଉଁ ବ୍ୟକ୍ତି ସୁଖୀ, ତାହାର ସୁଖ ଅପର କାହା ନିକଟରୁ ପ୍ରାପ୍ତ । ଯାହାର ଜ୍ଞାନ ଅଛି, ସେ ଅପର କାହା ନିକଟରୁ ଜ୍ଞାନଲାଭ କରିଛି । ଯାହାର ଅସ୍ତିତ୍ୱ ଅଛି, ତାହାର ସେହି ଅସ୍ତିତ୍ୱ ଅନ୍ୟ କାହାର ଅସ୍ତିତ୍ୱ ଉପରେ ନିର୍ଭର କରୁଛି । ଯେଉଁଠାରେ ଗୁଣ ଓ ଗୁଣୀର ଭେଦ ଅଛି, ସେଠାରେ ବୁଝିବାକୁ ହେବ, ସେହି ଗୁଣଗୁଡ଼ିକ ଗୁଣୀ ଉପରେ ପ୍ରତିଫଳିତ ହୋଇଛି; କିନ୍ତୁ ଜ୍ଞାନ, ଅସ୍ତିତ୍ୱ ବା ଆନନ୍ଦ—ଏଗୁଡ଼ିକ ଆତ୍ମାର ଧର୍ମ ନୁହେଁ, ଆତ୍ମାର ସ୍ୱରୂପ ।

ପୁଣି ପ୍ରଶ୍ନ ହୋଇପାରେ : ଆମେମାନେ ଏ କଥା ସ୍ୱୀକାର କରନେବୁ କାହିଁକି ? କାହିଁକି ଆମେମାନେ ସ୍ୱୀକାର କରିବୁ ଯେ ଆନନ୍ଦ, ଅସ୍ତିତ୍ୱ ଓ ଜ୍ଞାନ ଆତ୍ମାର ସ୍ୱରୂପ—ଅନ୍ୟ ନିକଟରୁ ତାହା ପ୍ରାପ୍ତ ନୁହେଁ ? ଏହାର ଉତ୍ତର ଏହି ଯେ : ଆମେ ଦେଖିଛୁ, ଶରୀରର ପ୍ରକାଶ ମନର ପ୍ରକାଶରେ; ଯେତେବେଳଯାଏ ମନ ଥାଏ, ସେତେବେଳଯାଏ ତାହାର ପ୍ରକାଶ, ମନ ଚାଲିଗଲେ ଦେହର ପ୍ରକାଶ ମଧ୍ୟ ଆଉ ରହେ ନାହିଁ । ଚକ୍ଷୁରୁ ମନ ଚାଲିଗଲେ ମୁଁ ତୁମ ଆଡ଼କୁ ଚାହିଁ ରହିପାରେ, କିନ୍ତୁ ତୁମକୁ ଦେଖିପାରିବି ନାହିଁ; ଅଥବା ଶ୍ରବଣେନ୍ଦ୍ରିୟରୁ ମନ ଚାଲିଗଲେ, ତୁମମାନଙ୍କର କଥା କିଛି ଶୁଣିପାରିବି ନାହିଁ । ସକଳ ଇନ୍ଦ୍ରିୟ ସମ୍ବନ୍ଧରେ ଏହିଭଳି । ସୁତରାଂ ଆମେମାନେ ଦେଖିପାରିଲୁ, ଶରୀରର ପ୍ରକାଶ ମନର ପ୍ରକାଶରେ । ପୁଣି ମନ ସମ୍ବନ୍ଧରେ ମଧ୍ୟ ତଦ୍ରୂପ । ବହିର୍ଜଗତର ସକଳ ବସ୍ତୁ ତାହା ଉପରେ କାର୍ଯ୍ୟ କରୁଛି, ସାମାନ୍ୟ କାରଣରେ ତାହାର ପରିବର୍ତ୍ତନ ଘଟିପାରେ । ମସ୍ତିଷ୍କ ମଧ୍ୟରେ ସାମାନ୍ୟ ଗୋଳମାଳ ହେଲେ ତାହାର ପରିବର୍ତ୍ତନ ଘଟିପାରେ । ଅତଏବ ମନ ମଧ୍ୟ ସ୍ୱପ୍ରକାଶ ହୋଇପାରେ ନାହିଁ, କାରଣ ଆମେମାନେ ସମୁଦାୟ ପ୍ରକୃତିରେ ଦେଖୁଛୁ, ଯାହା କୌଣସି ବସ୍ତୁର ସ୍ୱରୂପ, ତାହାର ପରିବର୍ତ୍ତନ ହୋଇପାରେ ନାହିଁ । କେବଳ ଯେଉଁଗୁଡ଼ିକ ଅପର ବସ୍ତୁର ଧର୍ମ, ଯାହା ଅପର ବସ୍ତୁରୁ ଗୃହୀତ, ତାହାର ହିଁ ପରିବର୍ତ୍ତନ ହୁଏ । କିନ୍ତୁ ତର୍କ ହୋଇପାରେ : ଆତ୍ମାର ପ୍ରକାଶ, ଆତ୍ମାର ଜ୍ଞାନ, ଆତ୍ମାର ଆନନ୍ଦ ମଧ୍ୟ ଯେ ସେଭଳି ଅପରଠାରୁ ଗୃହୀତ ହୋଇ ନାହିଁ ତାହାର ପ୍ରମାଣ କ'ଣ ? କିନ୍ତୁ ଏଭଳି ସ୍ୱୀକାର କଲେ ଏହି ଦୋଷ ହେବ ଯେ, ଏହାର ଅନ୍ତ କିଛି ମିଳିବ ନାହିଁ । ପୁନଶ୍ଚ ପ୍ରଶ୍ନ ଉଠିବ ଯେ ତାହା ପୁଣି କାହାଠାରୁ ଆଲୋକପ୍ରାପ୍ତ ହେଲା ? ଯଦି କହ, 'ଅପର କୌଣସି ଆତ୍ମାଠାରୁ', ତେବେ ପୁଣି ପ୍ରଶ୍ନ ଉଠିବ—ସେ ମଧ୍ୟ କେଉଁଠାରୁ ଆଲୋକପ୍ରାପ୍ତ ହେଲା ? ଅତଏବ ଅବଶେଷରେ ଆମମାନଙ୍କୁ ଏପରି ଏକ ସ୍ଥାନରେ ଯାଇ ରହିଯିବାକୁ

ହେବ, ଯାହାର ଆଲୋକ ଅପର କାହାଠାରୁ ପ୍ରାପ୍ତ ନୁହେଁ । ଅତଏବ ନ୍ୟାୟସଙ୍ଗତ ସିଦ୍ଧାନ୍ତ ହେଉଛି—ଯେଉଁଠାରେ ଆମେ ପ୍ରଥମେ ସ୍ୱୟଂପ୍ରକାଶତ୍ୱ ଦେଖିବା, ସେଠାରେ ରହିଯିବା, ଅଧିକ ଅଗ୍ରସର ହେବା ନାହିଁ ।

ଅତଏବ ଆମେମାନେ ଦେଖିଲୁ, ମନୁଷ୍ୟର ପ୍ରଥମତଃ ଏହି ସ୍ଥୂଳ ଦେହ, ତତ୍ପରେ ସୂକ୍ଷ୍ମ ଶରୀର, ତାହାର ପଶ୍ଚାତ୍‌ରେ ମନୁଷ୍ୟର ପ୍ରକୃତ ସ୍ୱରୂପ ଆତ୍ମା ରହିଛନ୍ତି । ଆମେମାନେ ଦେଖିଛୁଁ, ସ୍ଥୂଳ ଦେହର ସମୁଦାୟ ଗୁଣ ଓ ଶକ୍ତି ମନରୁ ଗୃହୀତ, ମନ ପୁଣି ଆତ୍ମାର ଆଲୋକରେ ଆଲୋକିତ ।

ଆତ୍ମାର ସ୍ୱରୂପ ସମ୍ବନ୍ଧରେ ପୁଣି ନାନା ପ୍ରଶ୍ନ ଉଠୁଛି । ଆତ୍ମା ସ୍ୱପ୍ରକାଶ, ସଚ୍ଚିଦାନନ୍ଦ ହିଁ ଆତ୍ମାର ସ୍ୱରୂପ, ଏହି ଯୁକ୍ତିରୁ ଯଦି ଆତ୍ମାର ଅସ୍ତିତ୍ୱ ସ୍ୱୀକାର କରିବାକୁ ହୁଏ, ତେବେ ସ୍ୱଭାବତଃ ଏହା ହିଁ ପ୍ରମାଣିତ ହେଉଛି ଯେ, ତାହା ଶୂନ୍ୟରୁ ସୃଷ୍ଟ ହୋଇପାରେ ନାହିଁ । ଯାହା ସ୍ୱପ୍ରକାଶ, ଅପର-ବସ୍ତୁ-ନିରପେକ୍ଷ, ତାହା କଦାପି ଶୂନ୍ୟରୁ ଉତ୍ପନ୍ନ ହୋଇପାରେ ନାହିଁ । ଆମେମାନେ ଦେଖିଛୁଁ, ଏହି ଜଡ଼ ଜଗତ ମଧ୍ୟ ଶୂନ୍ୟରୁ ହୋଇ ନାହିଁ, ଆତ୍ମା ତ ଦୂରର କଥା । ଅତଏବ ତାହାର ସର୍ବଦା ଅସ୍ତିତ୍ୱ ଥିଲା । ଏପରି ସମୟ କଦାପି ନ ଥିଲା, ଯେତେବେଳେ ତାହାର ଅସ୍ତିତ୍ୱ ନ ଥିଲା; କାରଣ ଯଦି ଆତ୍ମାର ଅସ୍ତିତ୍ୱ ନ ଥିଲା, ତେବେ କାଳ କେଉଁଠି ଥିଲା ? କାଳ ତ ଆତ୍ମା ଭିତରେ । ଯେତେବେଳେ ଆତ୍ମାର ଶକ୍ତି ମନ ଉପରେ ପ୍ରତିବିମ୍ବିତ ହୁଏ, ଆଉ ମନ ଚିନ୍ତା କରେ, ସେତେବେଳେ ଯାଇ କାଳର ଉତ୍ପତ୍ତି । ଯେତେବେଳେ ଆତ୍ମା ନ ଥିଲା, ସେତେବେଳେ ଚିନ୍ତା ମଧ୍ୟ ନ ଥିଲା, ଆଉ ଚିନ୍ତା ନ ଥିଲେ କାଳ ମଧ୍ୟ ରହିପାରେ ନାହିଁ । ଅତଏବ ଯେତେବେଳେ କାଳ ଆତ୍ମାରେ ରହିଛି, ସେତେବେଳେ ଆତ୍ମା କାଳ ମଧ୍ୟରେ ଅବସ୍ଥିତ, ଏହା କିପରି କୁହାଯାଇପାରେ ? ଆତ୍ମାର ଜନ୍ମ ନାହିଁ, ମୃତ୍ୟୁ ମଧ୍ୟ ନାହିଁ, ତାହା କେବଳ ବିଭିନ୍ନ ସୋପାନ ଭିତର ଦେଇ ଚାଲିଛି ମାତ୍ର । ତାହା ଧୀରେ ଧୀରେ ନିଜକୁ ନିମ୍ନ ଅବସ୍ଥାରୁ ଉଚ୍ଚ ଭାବ ମଧ୍ୟରେ ପ୍ରକାଶ କରୁଛି । ତାହା ମନ ଭିତର ଦେଇ ଶରୀର ଉପରେ କାର୍ଯ୍ୟ କରି ଆପଣାର ମହିମା ବିକାଶ କରୁଛି ଏବଂ ଶରୀରଦ୍ୱାରା ବାହ୍ୟ ଜଗତକୁ ଗ୍ରହଣ କରୁଛି ଓ ତାହାକୁ ବୁଝୁଛି । ତାହା ଗୋଟିଏ ଶରୀର ଗ୍ରହଣ କରି ଏହାକୁ ବ୍ୟବହାର କରୁଛି ଏବଂ ଯେତେବେଳେ ସେହି ଶରୀରଦ୍ୱାରା ଅନ୍ୟ କୌଣସି କାର୍ଯ୍ୟ ହେବାର ସମ୍ଭାବନା ନାହିଁ, ସେତେବେଳେ ଆଉ ଏକ ଶରୀର ଗ୍ରହଣ କରୁଛି ।

ବର୍ତ୍ତମାନ ପୁଣି ଆତ୍ମାର ପୁନର୍ଜନ୍ମ (Transmigration of the Soul) ସମ୍ବନ୍ଧରେ ପ୍ରଶ୍ନ ଆସିଲା । ଅନେକ ସମୟରେ ଲୋକେ ଏହି ପୁନର୍ଜନ୍ମର କଥା ଶୁଣିଲେ ଡରିଯାଆନ୍ତି । ଆଉ ଲୋକଙ୍କର କୁସଂସ୍କାର ଏତେ ପ୍ରବଳ ଯେ, ଚିନ୍ତାଶୀଳ ଲୋକେ ବରଂ ବିଶ୍ୱାସ କରିବେ ଯେ, ଆମେମାନେ ଶୂନ୍ୟରୁ ଉତ୍ପନ୍ନ ହୋଇଛୁଁ, ତତ୍ପରେ ପୁଣି ମହାଯୁକ୍ତି ସାହାଯ୍ୟରେ ସିଦ୍ଧାନ୍ତ ସ୍ଥାପନ କରିବାକୁ

ଚେଷ୍ଟା କରିବେ ଯେ, ଯଦିଓ ଆମେମାନେ ଶୂନ୍ୟରୁ ଉତ୍ପନ୍ନ, ତଥାପି ଆମେମାନେ ଅନନ୍ତକାଳ ଧରି ରହିବୁ । ଯେଉଁମାନେ ଶୂନ୍ୟରୁ ଆସିଛନ୍ତି, ସେମାନେ ଅବଶ୍ୟ ପୁଣି ଶୂନ୍ୟକୁ ଫେରିଯିବେ । ତୁମେ, ମୁଁ ବା କେହି ଶୂନ୍ୟରୁ ଆସିନାହୁଁ, ସୁତରାଂ ଶୂନ୍ୟକୁ ଫେରିଯିବା ନାହିଁ । ଆମେମାନେ ଅନନ୍ତକାଳ ଧରି ରହିଛୁ ଓ ରହିଥିବୁ, ଏବଂ ଜଗଦ୍ବ୍ରହ୍ମାଣ୍ଡରେ ଏପରି କୌଣସି ଶକ୍ତି ନାହିଁ, ଯାହା ଆମର ଅସ୍ତିତ୍ୱକୁ ଛଡ଼ାଇ ଦେଇପାରେ । ଏହି ପୁନର୍ଜନ୍ମବାଦରେ ଭୟ କରିବାର କୌଣସି କାରଣ ନାହିଁ, ତାହା ମନୁଷ୍ୟର ନୈତିକ ଉନ୍ନତିର ପ୍ରଧାନ ସହାୟକ । ଚିନ୍ତାଶୀଳ ବ୍ୟକ୍ତି-ମାନଙ୍କର ଏହା ହିଁ ନ୍ୟାୟସଙ୍ଗତ ସିଦ୍ଧାନ୍ତ । ଯଦି ଭବିଷ୍ୟତରେ ତୁମର ଅନନ୍ତକାଳର ଅସ୍ତିତ୍ୱ ସମ୍ଭବ ହୁଏ, ତେବେ ଏହା ମଧ୍ୟ ସତ୍ୟ ଯେ, ତୁମେ ଅନନ୍ତ-କାଳ ଧରି ଥିଲ; ଏହା ଅନ୍ୟଥା ହୋଇପାରେ ନାହିଁ । ଏହି ମତ ବିରୋଧରେ ଯେଉଁ କେତେକ ଆପତ୍ତି ଶୁଣିବାକୁ ମିଳେ, ତାହାର ନିରାକରଣ କରିବାକୁ ଚେଷ୍ଟା କରୁଛି । ଯଦିଓ ତୁମମାନଙ୍କ ମଧ୍ୟରୁ ଅନେକେ ଏହି ଆପତ୍ତିଗୁଡ଼ିକୁ ଅକିଞ୍ଚିତ୍କର ମନେକରିବେ, ତଥାପି ଆମମାନଙ୍କୁ ତାହାର ଉତ୍ତର ଦେବାକୁ ହେବ; କାରଣ, ବେଳେ ବେଳେ ଆମେମାନେ ଦେଖିବାକୁ ପାଉଁ, ଖୁବ୍ ଚିନ୍ତାଶୀଳ ଲୋକେ ମଧ୍ୟ ନିତାନ୍ତ ମୂର୍ଖୋଚିତ କଥାସବୁ କହିଥାଆନ୍ତି । ଲୋକେ ଯେ କହିଥାଆନ୍ତି, 'ଏଭଳି ଅସଙ୍ଗତ ମତ ନାହିଁ, ଯାହା ସମର୍ଥନ କରିବାକୁ କୌଣସି ନା କୌଣସି ଦାର୍ଶନିକ ମିଳିବେ ନାହିଁ'—ଏ କଥା ଅତି ସତ୍ୟ । ପ୍ରଥମ ଆପତ୍ତି ଏହି ଯେ ଆମମାନଙ୍କର ଜନ୍ମଜନ୍ମାନ୍ତରର କଥା ସ୍ମରଣ ହୁଏ ନାହିଁ କାହିଁକି ? ସେଥିରେ ଏହା ହିଁ ଜିଜ୍ଞାସ୍ୟ, ଆମେମାନେ କଅଣ ଆମମାନଙ୍କର ଏହି ଜନ୍ମର ଅତୀତ ଘଟଣା ସବୁ ସ୍ମରଣ କରିପାରୁଁ ? ତୁମମାନଙ୍କ ମଧ୍ୟରେ କେତେଜଣଙ୍କର ଶୈଶବକାଳର କଥା ସବୁ ସ୍ମରଣ ହୁଏ ? ଶୈଶବକାଳର କଥା ତୁମମାନଙ୍କର କାହାରି ସ୍ମରଣ ହୁଏ ନାହିଁ । ପୁଣି ଯଦି ସ୍ମୃତିଶକ୍ତି ଉପରେ ଅସ୍ତିତ୍ୱ ନିର୍ଭର କରନ୍ତା, ତାହାହେଲେ ତୁମର ସ୍ମରଣ ନାହିଁ ବୋଲି ଶୈଶବାବସ୍ଥାରେ ତୁମର ଅସ୍ତିତ୍ୱ ନ ଥିଲ ବୋଲି କହିବାକୁ ହେବ । ଯଦି ଆମେ ସ୍ମରଣ କରିପାରୁ ତେବେ ଯାଇ ଆମେ ପୂର୍ବଜନ୍ମର ଅସ୍ତିତ୍ୱ ସ୍ୱୀକାର କରିବୁ, ଏପରି କହିବା ଚରମ ନିର୍ବୁଦ୍ଧିତାର ପରିଚାୟକ । ଆମମାନଙ୍କର ପୂର୍ବଜନ୍ମର କଥା ଯେ ସର୍ବଦା ସ୍ମରଣ ରହିବ, ତାହାର କୌଣସି କାରଣ ନାହିଁ । ପୂର୍ବଜନ୍ମର ମସ୍ତିଷ୍କ ଏକାବେଳକେ ଧ୍ୱଂସ ପାଇଯାଇଛି, ଏବଂ ଆଉ ଗୋଟିଏ ନୂଆ ପ୍ରକାର ମସ୍ତିଷ୍କ ରଚିତ ହୋଇଛି । ଅତୀତ କାଳର ସଂସ୍କାରସମଷ୍ଟି କେବଳ ଆମମାନଙ୍କ ମସ୍ତିଷ୍କ ଭିତରକୁ ଆସିଛି—ତାହା ନେଇ ମନ ଏହି ଶରୀରରେ ବାସ କରିବାକୁ ଆସିଛି ।

ମୁଁ ବର୍ତ୍ତମାନ ଯାହା, ତାହା ମୋର ଅନନ୍ତ ଅତୀତ କାଳର କର୍ମଫଳସ୍ୱରୂପ । ଆଉ ସମୁଦାୟ ଅତୀତକୁ ସ୍ମରଣ କରିବା ମୋର କଅଣ ଦରକାର ? କୁସଂସ୍କାରର

ଏପରି ପ୍ରଭାବ ଯେ, ଯେଉଁମାନେ ଏହି ପୁନର୍ଜନ୍ମବାଦକୁ ଅସ୍ୱୀକାର କରନ୍ତି, ସେମାନେ ମଧ୍ୟ ଏହା ବିଶ୍ୱାସ କରନ୍ତି ଯେ, ଏକ ସମୟରେ ଆମେମାନେ ବାନର ଥିଲୁଁ; କିନ୍ତୁ ବାନର-ଜନ୍ମକଥା କାହିଁକି ତାଙ୍କର ସ୍ମରଣ ହୁଏ ନାହିଁ, ଏହା ପଚାରିବାକୁ ସେମାନେ ସାହସ କରନ୍ତି ନାହିଁ । ଯେତେବେଳେ ଆମେମାନେ ଶୁଣୁ ଯେ, କୌଣସି ପ୍ରାଚୀନ ଋଷି ବା ସାଧୁ ସତ୍ୟକୁ ପ୍ରତ୍ୟକ୍ଷ କରିଛନ୍ତି, ସେତେବେଳେ ଆମେ ତାଙ୍କୁ ନିର୍ବୋଧ କହୁଥାଉଁ; କିନ୍ତୁ ଯଦି କେହି କହେ ଯେ ହକ୍ସଲି ଏହା କହିଛନ୍ତି ବା ଟିଣ୍ଡ୍ୟାଲ୍ ଏହା କହିଛନ୍ତି, ତେବେ ଆମେ ଭାବୁ ଯେ ତାହା ଅବଶ୍ୟ ସତ୍ୟ ହେବ, ସେତେବେଳେ ଆମେ ତାହା ସଙ୍ଗେ ସଙ୍ଗେ ମାନିନେଉ । ପ୍ରାଚୀନ କୁସଂସ୍କାର ପରିବର୍ତ୍ତିରେ ଆମେମାନେ ଆଧୁନିକ କୁସଂସ୍କାର ଆଣିଛୁ; ଧର୍ମର ପ୍ରାଚୀନ ପୋପ୍‌ଙ୍କ ପରିବର୍ତ୍ତିରେ ଆମେମାନେ ବିଜ୍ଞାନର ଆଧୁନିକ ପୋପ୍‌ଙ୍କୁ ବସାଇଛୁ । ଅତଏବ ଆମେ ଦେଖିଲୁ, ଏହି ସ୍ମୃତି ସମ୍ବନ୍ଧରେ ଯେଉଁ ଆପତ୍ତି, ତାହା ସତ୍ୟ ନୁହେଁ । ଆଉ ଏହି ପୁନର୍ଜନ୍ମ ସମ୍ବନ୍ଧରେ ଯେଉଁସବୁ ଆପତ୍ତି ହୋଇଥାଏ, ତନ୍ମଧ୍ୟରେ ଏହା ହିଁ ଏକମାତ୍ର ଆପତ୍ତି, ଯାହାସମ୍ବନ୍ଧରେ ବିଜ୍ଞ ଲୋକମାନେ ଆଲୋଚନା କରିପାରନ୍ତି । ଯଦିଓ ପୁନର୍ଜନ୍ମବାଦ ପ୍ରମାଣ କରିବାକୁ ହେବ, ତଥାପି ତାହା ସଙ୍ଗେ ସଙ୍ଗେ ସ୍ମୃତି ମଧ୍ୟ ରହିଥିବ, ଏହା ପ୍ରମାଣ କରିବାର କୌଣସି ପ୍ରୟୋଜନ ନାହିଁ—ଏହା ଆମେମାନେ ଦେଖିଛୁ । ତଥାପି ଆମେମାନେ ଏହା ଦୃଢ଼ ଭାବରେ କହିପାରୁ ଯେ, ଅନେକଙ୍କର ଏଭଳି ସ୍ମୃତି ରହିଛି ଏବଂ ତୁମେମାନେ ସମସ୍ତେ ଯେଉଁ ଜନ୍ମରେ ମୁକ୍ତିଲାଭ କରିବ, ସେହି ଜନ୍ମରେ ଏଭଳି ସ୍ମୃତିଲାଭ କରିବ । ସେତେବେଳେ କେବଳ ତୁମେ ଜାଣିପାରିବ ଯେ ଜଗତ ସ୍ୱପ୍ନମାତ୍ର, ସେତେବେଳେ ତୁମେ ବୁଝିବ ଯେ, ତୁମେମାନେ ଏହି ଜଗତର ନଟ ମାତ୍ର ଏବଂ ଏହି ଜଗତ ଗୋଟିଏ ବିରାଟ ରଙ୍ଗଭୂମି । ସେତେବେଳେ ଅନାସକ୍ତିର ଭାବ ତୁମମାନଙ୍କ ଭିତରେ ପ୍ରବଳ ବେଗରେ ଆସିବ, ସେତେବେଳେ ଯେତେ ଭୋଗତୃଷ୍ଣା— ଜୀବନ ଓ ସଂସାର ପ୍ରତି ତୁମର ମହା-ଆଗ୍ରହ ଚିରକାଳ ପାଇଁ ଦୂର ହେବ । ସେତେବେଳେ ତୁମେ ସ୍ପଷ୍ଟଭାବରେ ଦେଖିପାରିବ, ତୁମେ ପୂର୍ବେ ଏ ଜଗତକୁ କେତେଥର ଆସିଛ, କେତେ ଲକ୍ଷ ଥର ତୁମର ମାତା, ପିତା, ପୁତ୍ର, କନ୍ୟା, ସ୍ୱାମୀ, ସ୍ତ୍ରୀ, ବନ୍ଧୁ, ଐଶ୍ୱର୍ଯ୍ୟ ଓ ଶକ୍ତି ନେଇ କାଳକ୍ଷେପଣ କରିଛ । ଏସବୁ କେତେଥର ହୋଇ କେତେଥର ବନ୍ଦ ଯାଇଛି । କେତେଥର ତୁମେ ସଂସାର-ତରଙ୍ଗର ଉଚ୍ଚ ଶିଖରକୁ ଉଠିଛ, ଅନ୍ତିର କେତେଥର ନୈରାଶ୍ୟର ଗଭୀର ଗହ୍ୱରରେ ନିମଜ୍ଜିତ ହୋଇଛ । ଯେତେବେଳେ ସ୍ମୃତି ତୁମ ନିକଟକୁ ଏହିସବୁ ଆଣିଦେବ, ସେତେବେଳେ ତୁମେ ବୀରପରି ଛିଡ଼ା ହେବ—ଆଉ ଜଗତ ଯେତେବେଳେ ତୁମକୁ ଭ୍ରୂଭଙ୍ଗୀ କରିବ, ସେତେବେଳେ ତୁମେ ହସୁଥିବ । ସେତେବେଳେ ହିଁ ତୁମେ ବୀରପରି ଛିଡ଼ା ହୋଇ କହିପାରିବ, 'ମୃତ୍ୟୁ, ତୁମକୁ ମଧ୍ୟ ମୁଁ ଗ୍ରାହ୍ୟ କରେନାହିଁ— ତୁମେ ମୋତେ କିଅଣ ଭୟ ଦେଖାଇବ ?' ସେତେବେଳେ ତୁମେ ଜାଣିପାରିବ

ଯେ, ମୃତ୍ୟୁର ତୁମ ଉପରେ କୌଣସି ଶକ୍ତି ନାହିଁ, ସେତେବେଳେ ହିଁ ତୁମେ ମୃତ୍ୟୁକୁ ଜୟ କରିପାରିବ । ସମସ୍ତେ ଏହିଭଳି ଜ୍ଞାନ ଲାଭ କରିପାରିବେ ।

ଆତ୍ମାର ଯେ ପୁନର୍ଜନ୍ମ ହୁଏ, ତାହାର କ'ଣ କୌଣସି ଯୁକ୍ତିଯୁକ୍ତ ପ୍ରମାଣ ଅଛି ? ଏତେବେଳଯାଏ ଆମେମାନେ କେବଳ ଶଙ୍କା ଦୂର କରୁଥିଲୁ, ଦେଖାଉଥିଲୁ ଯେ, ପୁନର୍ଜନ୍ମବାଦକୁ ଅପ୍ରମାଣ କରିବା ପାଇଁ ଯେଉଁ ଯୁକ୍ତିଗୁଡ଼ିକ ଅଛି, ତାହା ଅକାଟ୍ୟ ନୁହେଁ । ବର୍ତ୍ତମାନ ତାହା ସପକ୍ଷରେ ଯେଉଁସବୁ ଯୁକ୍ତି ଅଛି, ସେସବୁ ଯୁକ୍ତିକଥା ବିବୃତ କରୁଛି । ପୁନର୍ଜନ୍ମବାଦ ବ୍ୟତୀତ ଜ୍ଞାନ ଅସମ୍ଭବ । ମନେକର, ମୁଁ ରାସ୍ତାକୁ ଯାଇ ଗୋଟିଏ କୁକୁରକୁ ଦେଖିଲି, ତାହାକୁ କୁକୁର ବୋଲି ଜାଣିଲି କିପରି ? ମୁଁ ନିଜ ମନ ଆଡ଼କୁ ଚାହିଁଲି—ସେଠାରେ ମୋର ସମୁଦାୟ ପୂର୍ବସଂସ୍କାରଗୁଡ଼ିକ ସ୍ତରେ ସ୍ତରେ ସଜ୍ଜୀକୃତ ରହିଛି । ନୂତନ କୌଣସି ବିଷୟ ଆସିବା ମାତ୍ରେ ମୁଁ ତାହାକୁ ସେହି ପ୍ରାଚୀନ ସଂସ୍କାରଗୁଡ଼ିକ ସହିତ ମିଳାଇଲି । ଯେତେବେଳେ ଦେଖିଲି, ସେହି ଧରଣର ଆଉ କେତେଗୁଡ଼ିଏ ସଂସ୍କାର ରହିଛି, ତତ୍‌କ୍ଷଣାତ୍ ମୁଁ ସେଗୁଡ଼ିକୁ ସେହି ପ୍ରାଚୀନ ସଂସ୍କାରଗୁଡ଼ିକ ସହିତ ମିଳାଇଲି, ସଙ୍ଗେ ସଙ୍ଗେ ମୋର ତୃପ୍ତି ଆସିଲା । ମୁଁ ତେଣୁ ତାହାକୁ କୁକୁର ବୋଲି ଜାଣିପାରିଲି, କାରଣ ପୂର୍ବାବସ୍ଥିତ କେତେଗୁଡ଼ିଏ ସଂସ୍କାର ସହିତ ତାହା ମିଳିଗଲା । ଯେତେବେଳେ ମୁଁ ତାହାର ତୁଲ୍ୟ ସଂସ୍କାର ମୋ ଭିତରେ ଦେଖିବାକୁ ନ ପାଏ, ସେତେବେଳେ ମୋର ଅତୃପ୍ତି ଆସେ । ଏହାକୁ 'ଅଜ୍ଞାନ' କହନ୍ତି; ଆଉ ତୃପ୍ତି ହେଲେ ହିଁ ତାହାକୁ 'ଜ୍ଞାନ' କୁହାଯାଏ । ଯେତେବେଳେ ଗୋଟିଏ ଆପେଲ୍ (apple) ପଡ଼ିଲା, ସେତେବେଳେ ଏହାର କାରଣ ନ ଜାଣିବା ହେତୁ ମନୁଷ୍ୟର ଅତୃପ୍ତି ଆସିଲା । ତା'ପରେ ମନୁଷ୍ୟ କ୍ରମଶଃ ସେହିଭଳି କେତେଗୁଡ଼ିଏ ଘଟଣା ମଧ୍ୟରେ ଗୋଟିଏ ଶ୍ରେଣୀବିଭାଗ ଦେଖିବାକୁ ପାଇଲା । କ'ଣ ସେହି ଶ୍ରେଣୀ ? ସବୁ ଆପେଲ୍ ତଳକୁ ପଡ଼ିଥାଏ । ମନୁଷ୍ୟ ତାହାର ସଂଜ୍ଞା 'ମାଧ୍ୟାକର୍ଷଣ' ଦେଲା । ଅତଏବ ଆମେମାନେ ଦେଖିଲୁ ଯେ, ପୂର୍ବରୁ କେତେଗୁଡ଼ିଏ ଅନୁଭୂତ ନ ଥିଲେ ନୂତନ ଅନୁଭୂତ ଅସମ୍ଭବ, କାରଣ ସେହି ନୂତନ ଅନୁଭୂତ ସହିତ ମିଳାଇବା ପାଇଁ କିଛି ନ ଥିବ । ଅତଏବ 'ବାଳକ ଭୂମିଷ୍ଠ ହେବା ସମୟରେ ସଂସ୍କାରଶୂନ୍ୟ ମନ ନେଇ ଆସେ'—କେତେକ ୟୁରୋପୀୟ ଦାର୍ଶନିକଙ୍କର ଏହି ମତ ଯଦି ସତ୍ୟ ହୁଏ, ତେବେ ଏପରି ବାଳକ କେବେହେଲେ କୌଣସି ପ୍ରକାର ମାନସିକ ଶକ୍ତି ଅର୍ଜନ କରିପାରିବ ନାହିଁ; କାରଣ ତାହାର ନୂତନ ଅନୁଭୂତ ସହିତ ମିଳାଇବା ପାଇଁ ଅନ୍ୟ କୌଣସି ସଂସ୍କାର ନାହିଁ । ଅତଏବ ଆମେମାନେ ଦେଖିଲୁ ଯେ, ଏହି ପୂର୍ବସଞ୍ଚିତ ଜ୍ଞାନଭଣ୍ଡାର ବ୍ୟତୀତ ନୂତନ କୌଣସି ଜ୍ଞାନ ହେବା ଅସମ୍ଭବ । ବାସ୍ତବରେ କିନ୍ତୁ ଆମମାନଙ୍କୁ ପୂର୍ବସଞ୍ଚିତ ଜ୍ଞାନଭଣ୍ଡାର ସଙ୍ଗରେ ନେଇ ଆସିବାକୁ ହୋଇଛି । ଅଭିଜ୍ଞତାରୁ ହିଁ ଜ୍ଞାନଲାଭ ହୁଏ, ଅନ୍ୟ କୌଣସି ପଥ ନାହିଁ । ଯଦି ଆମ୍ଭେମାନେ ଏଠାରେ ସେହି ଜ୍ଞାନଲାଭ ନ କରିଥାଉ,

ଆମେମାନେ ଅବଶ୍ୟ ଅନ୍ୟ କେଉଁଠି ତାହା ଲାଭ କରିଥିବୁ । ମୃତ୍ୟୁଭୟ ହଁବା କାହିଁକି ଆମେମାନେ ଦେଖିବାକୁ ପାଉ ? ଗୋଟିଏ କୁକ୍କୁଟ କିଛିକ୍ଷଣ ପୂର୍ବେ ଡିମ୍ବ ଭିତରୁ ବାହାରିଛି, ଗୋଟିଏ ଶ୍ୟେନ ଆସିଲା । ସଙ୍ଗେ ସଙ୍ଗେ ସେ ଭୟରେ ମା ପାଖକୁ ପଳାଇଗଲା । କେଉଁଠାରୁ ସେହି କୁକ୍କୁଟଟି ଜାଣିଲା ଯେ, ତାହା ଶ୍ୟେନର ଭକ୍ଷ୍ୟ ? ଏ ଘଟଣାର ଗୋଟିଏ ପୁରାତନ ବ୍ୟାଖ୍ୟା ଅଛି, କିନ୍ତୁ ତାହାକୁ ବ୍ୟାଖ୍ୟା କୁହାଯାଇ ନ ପାରେ । ତାହାକୁ ସ୍ୱାଭାବିକ ସଂସ୍କାର (instinct) କୁହାଯାଏ । ଯେଉଁ କ୍ଷୁଦ୍ର କୁକ୍କୁଟ କିଛିକ୍ଷଣ ପୂର୍ବେ ଡିମ୍ବ ଭିତରୁ ବାହାର ହୋଇଅଛି, ତାହାର ଏଭଳି ମରଣଭୀତି ଆସେ କେଉଁଠାରୁ ? ସଦ୍ୟ ଡିମ୍ବରୁ ବହିର୍ଗତ ହଂସଶାବକ ଜଳ ନିକଟକୁ ଆସିବାମାତ୍ରେ ଜଳକୁ ଡେଇଁପଡ଼େ ଏବଂ ସନ୍ତରଣ କରେ କାହିଁକି ? ସେ ତ କେବେ ସନ୍ତରଣ କରିନାହିଁ, ଅଥବା କାହାକୁ ସନ୍ତରଣ କରିବା ଦେଖି ନାହିଁ । ଲୋକେ କହନ୍ତି, ତାହା 'ସ୍ୱାଭାବିକ ଜ୍ଞାନ' । ଏହା ଗୋଟିଏ ଲମ୍ବା ଚଉଡ଼ା କଥା ସତ; କିନ୍ତୁ ଏହା ଆମମାନଙ୍କୁ କିଛି ନୂତନ ଶିକ୍ଷା ଦେଲା ନାହିଁ ।

ଏହି ସ୍ୱାଭାବିକ ଜ୍ଞାନ କଅଣ ତାହା ଆଲୋଚନା କରାଯାଉ । ଆମମାନଙ୍କର ନିଜ ଭିତରେ ଅସଂଖ୍ୟ ପ୍ରକାର ସ୍ୱାଭାବିକ ଜ୍ଞାନ ରହିଛି । ମନେକର ଜଣେ ପିଆନୋ ବଜାଇବା ଶିଖିବାକୁ ଆରମ୍ଭ କଲା । ପ୍ରଥମେ ତାହାକୁ ପର୍ଦ୍ଦା ଆଡ଼କୁ ନଜର ରଖି ତେବେ ଯାଇ ପର୍ଦ୍ଦା ଉପରେ ଅଙ୍ଗୁଳି ପ୍ରୟୋଗ କରିବାକୁ ହୁଏ; କିନ୍ତୁ ଅନେକ ମାସ ଅନେକ ବର୍ଷ ଅଭ୍ୟାସ କରୁ କରୁ ତାହା ସ୍ୱାଭାବିକ ହୋଇଯାଏ ଏବଂ ଆପଣାଛାଏ ହୋଇଥାଏ । ଏକ ସମୟରେ ଯାହା ପାଇଁ ଇଚ୍ଛାର ପ୍ରୟୋଜନ ହୋଇଥିଲା, ସେଥିରେ ଆଉ ଜ୍ଞାନପୂର୍ବକ ଇଚ୍ଛାର ପ୍ରୟୋଜନ ରହେ ନାହିଁ । ଏହି ଜ୍ଞାନପୂର୍ବକ ଇଚ୍ଛା ବ୍ୟତୀତ ନିଷ୍ପନ୍ନ ହେବାକୁ ହିଁ ସ୍ୱାଭାବିକ ଜ୍ଞାନ କୁହାଯାଏ । ପ୍ରଥମେ ଏହା ଇଚ୍ଛାସହ କୃତ ହୋଇଥିଲା, ପରେ ଆଉ ଇଚ୍ଛାର ପ୍ରୟୋଜନ ରହିଲା ନାହିଁ । ଏଥିରେ ମଧ୍ୟ କଥାଟି ସମ୍ପୂର୍ଣ୍ଣ ପ୍ରମାଣିତ ହେଲା ନାହିଁ । ଆଉ କିଛି କଥା ଏବେ ମଧ୍ୟ ବାକି ରହିଲା । ଅଧିକାଂଶ କାର୍ଯ୍ୟ, ଯାହା ବର୍ତ୍ତମାନ ଆମମାନଙ୍କ ପକ୍ଷରେ ସ୍ୱାଭାବିକ, ସେମାନଙ୍କୁ ମଧ୍ୟ ଇଚ୍ଛାର ଅଧୀନରେ ଅଣାଯାଇପାରେ । ଶରୀରର ପ୍ରତ୍ୟେକ ପେଶୀକୁ ଆମମାନଙ୍କ ଅଧୀନକୁ ଆନୟନ କରାଯାଇପାରେ । ଜନସାଧାରଣ ଏହା ଉତ୍ତମରୂପେ ଜାଣନ୍ତି । ଅତଏବ ଅନ୍ୱୟୀ ଓ ବ୍ୟତିରେକୀ ଉଭୟ ଉପାୟରେ ପ୍ରମାଣ ହେଲା ଯେ ଯାହାକୁ ଆମେମାନେ ସ୍ୱାଭାବିକ ଜ୍ଞାନ କହୁ, ତାହା ଇଚ୍ଛାକୃତ କାର୍ଯ୍ୟର ଅବନତ ଭାବ ମାତ୍ର । ଅତଏବ ଯଦି ସମୁଦାୟ ସୃଷ୍ଟିରେ ଏକ ସାଦୃଶ୍ୟ ପ୍ରୟୋଗ କରାଯାଏ, ଯଦି ସମୁଦାୟ ପ୍ରକୃତି ସମପ୍ରଣାଳୀକ ହୁଏ, ତେବେ ମନୁଷ୍ୟ ଓ ତିର୍ଯ୍ୟକ୍‌ଜାତି ମଧ୍ୟରେ ଯାହା ସ୍ୱାଭାବିକ ଜ୍ଞାନ ବୋଲି ପ୍ରତୀୟମାନ ହୁଏ, ତାହା ଇଚ୍ଛାର ଅବନତ ଭାବ ମାତ୍ର ।

ଆମେମାନେ ବହିର୍ଜଗତରେ ଯେଉଁ ନିୟମ ପାଇଥିଲୁ ଅର୍ଥାତ୍ ପ୍ରତ୍ୟେକ କ୍ରମବିକାଶ ପ୍ରକ୍ରିୟାର ପୂର୍ବରେ ଗୋଟିଏ କ୍ରମସଙ୍କୋଚ ପ୍ରକ୍ରିୟା ବିଦ୍ୟମାନ ଏବଂ କ୍ରମ-ସଙ୍କୋଚ ହେଲେ ସଙ୍ଗେ ସଙ୍ଗେ କ୍ରମବିକାଶ ମଧ୍ୟ ହେବ, ଏହି ନିୟମକୁ ପ୍ରୟୋଗ କରି ଆମେମାନେ ସ୍ୱାଭାବିକ ଜ୍ଞାନର କି ବ୍ୟାଖ୍ୟା ପାଇପାରୁ ? ସ୍ୱାଭାବିକ ଜ୍ଞାନ ତାହା-ହେଲେ ବିଚାରପୂର୍ବକ କାର୍ଯ୍ୟର କ୍ରମସଙ୍କୋଚ ଭାବ ହେଲା । ଅତଏବ ମନୁଷ୍ୟଠାରେ ଓ ପଶୁଠାରେ ଯାହାକୁ ସ୍ୱାଭାବିକ ଜ୍ଞାନ ବୋଲି କହୁଁ, ତାହା ଅବଶ୍ୟ ପୂର୍ବବର୍ତ୍ତୀ ଇଚ୍ଛାକୃତ କାର୍ଯ୍ୟର କ୍ରମସଙ୍କୋଚ ଭାବ ହେବ । ଆଉ ଇଚ୍ଛାକୃତ କାର୍ଯ୍ୟ କହିଲେ ହିଁ ପୂର୍ବେ ଆମେମାନେ ତାହାର ଅଭିଜ୍ଞତା ଲାଭ କରିଥିଲୁ, ତାହା ସ୍ୱୀକାର କରାଗଲା । ପୂର୍ବକୃତ କାର୍ଯ୍ୟରୁ ସେହି ସଂସ୍କାର ଆସିଥିଲା ଏବଂ ସେହି ସଂସ୍କାର ଅଦ୍ୟାପି ବିଦ୍ୟମାନ । ଏହି ମୃତ୍ୟୁଭୀତି, ଏହି ଜନ୍ମିବା ମାତ୍ରକେ ଜଳରେ ସନ୍ତରଣ, ଆଉ ମନୁଷ୍ୟ ମଧ୍ୟରେ ଯାହା କିଛି ଅନିଚ୍ଛାକୃତ ସ୍ୱାଭାବିକ କାର୍ଯ୍ୟ ରହିଛି, ସବୁ ହିଁ ପୂର୍ବକାର୍ଯ୍ୟ, ପୂର୍ବ ଅନୁଭୂତିର ଫଳ । ସେଗୁଡ଼ିକ ବର୍ତ୍ତମାନ ସ୍ୱାଭାବିକ ଜ୍ଞାନରୂପେ ପରିଣତ ହୋଇଛି ।

ବର୍ତ୍ତମାନ ଯାଏ ଆମେମାନେ ଭଲ ଭାବରେ ଗତି କଲୁ ଏବଂ ଏତେଦୂର ପର୍ଯ୍ୟନ୍ତ ଆଧୁନିକ ବିଜ୍ଞାନ ମଧ୍ୟ ଆମମାନଙ୍କର ସହାୟକ ହେଲା । ଆଧୁନିକ ବିଜ୍ଞାନବିଦ୍‌ମାନେ କ୍ରମେ କ୍ରମେ ପ୍ରାଚୀନ ଋଷିମାନଙ୍କ ସହିତ ଏକମତ ହେଉଛନ୍ତି ଏବଂ ସେମାନଙ୍କର ଯେତେ ଦୂର ଯାଏ ପ୍ରାଚୀନ ଋଷିମାନଙ୍କ ସହିତ ମେଳ ରହିଛି, ସେତେଦୂରଯାଏ କୌଣସି ଗୋଳମାଳ ନାହିଁ । ବୈଜ୍ଞାନିକମାନେ ସ୍ୱୀକାର କରନ୍ତି ଯେ, ପ୍ରତ୍ୟେକ ମନୁଷ୍ୟ, ପ୍ରତ୍ୟେକ ଜୀବଜନ୍ତୁ କେତେଗୁଡ଼ିଏ ଅନୁଭୂତିର ସମଷ୍ଟି ଘେନି ଜନ୍ମ ଗ୍ରହଣ କରନ୍ତି । ସେମାନେ ଏହା ମଧ୍ୟ ସ୍ୱୀକାର କରନ୍ତି ଯେ, ମନର ଏହିସବୁ କାର୍ଯ୍ୟ ପୂର୍ବ ଅନୁଭୂତିର ଫଳ; କିନ୍ତୁ ସେମାନେ ଗୋଟିଏ ପ୍ରଶ୍ନ ଉଠାନ୍ତି ଯେ, ଅନୁଭୂତିଗୁଡିକ ଯେ ଆତ୍ମାର, ତାହା କହିବାର ଆବଶ୍ୟକତା କଅଣ ? ସେଗୁଡ଼ିକ ଯେ କେବଳ ଶରୀରର ଧର୍ମ ତାହା କହିଲେ ହିଁ ହେଲା । ତାହା 'ବଂଶାନୁକ୍ରମିକ ସଞ୍ଚାର' (Hereditary transmission) କହିଲେ ତ ହୁଏ ! ଏହା ହିଁ ଶେଷ ପ୍ରଶ୍ନ । ମୁଁ ଯେ ସବୁ ସଂସ୍କାର ଘେନି ଜନ୍ମିଛି, ତାହା ସବୁ ମୋର ପୂର୍ବ-ପୁରୁଷଙ୍କ ସଞ୍ଚିତ ସଂସ୍କାର, ଏହା କହ ନାହିଁ କାହିଁକି ? କ୍ଷୁଦ୍ର ଜୀବାଣୁଠାରୁ ସର୍ବଶ୍ରେଷ୍ଠ ମନୁଷ୍ୟ ପର୍ଯ୍ୟନ୍ତ ସମସ୍ତଙ୍କ କର୍ମସଂସ୍କାର ମୋ ଭିତରେ ରହିଛି, କିନ୍ତୁ ତାହା ବଂଶାନୁକ୍ରମିକ ସଞ୍ଚାର ଫଳରେ ମୋ ଭିତରକୁ ଆସିଛି । ଏତିକି କହିଲେ ଆଉ କଅଣ ଗୋଳମାଳ ରହିଲା ? ଏହି ପ୍ରଶ୍ନଟି ଅତି ସୁନ୍ଦର । ଆମେମାନେ ଏହି ବଂଶାନୁକ୍ରମିକ ସଞ୍ଚାରର କେତେକ ଅଂଶ ସ୍ୱୀକାର କରିଥାଉ । କେବଳ ଏତିକି ସ୍ୱୀକାର କରୁ ଯେ, ଏହା ଆମ ଭବିଷ୍ୟତ ଶରୀରର ଉପାଦାନ ପ୍ରଦାନ କରେ । ପୂର୍ବକର୍ମ ଅନୁଯାୟୀ କୌଣସି ବିଶେଷ ଶରୀର ଆମେ ଆଶ୍ରୟ କରିଥାଉଁ । ଆଉ

ଯେଉଁମାନେ ସେହି ଆତ୍ମାକୁ ସନ୍ତାନରୂପେ ଲଭ କରିବାର ଉପଯୁକ୍ତ ହୋଇଛନ୍ତି, ସେମାନଙ୍କ ନିକଟରୁ ସେହି ଆତ୍ମା ଉପଯୁକ୍ତ ଉପାଦାନ ଗ୍ରହଣ କରିଥାଏ ।

ବଂଶାନୁକ୍ରମିକ-ସଂସ୍କାରବାଦ ବିନାପ୍ରମାଣରେ ଗୋଟିଏ ଅଦ୍ଭୁତ କଥା ସ୍ୱୀକାର କରିଥାଏ ଯେ, ମନର ସଂସ୍କାରରାଶି ଜଡ଼ରେ ମଧ୍ୟ ରହିପାରେ । ଯେତେବେଳେ ମୁଁ ତୁମ ଆଡ଼କୁ ଚାହେଁ, ସେତେବେଳେ ମୋ ଚିତ୍ତ-ହ୍ରଦରେ ଗୋଟିଏ ତରଙ୍ଗ ଉଠେ । ସେହି ତରଙ୍ଗ ଚାଲିଯାଏ; କିନ୍ତୁ ସୂକ୍ଷ୍ମରୂପେ ତରଙ୍ଗାକାରରେ ରହେ । ଏକଥା ଆମେମାନେ ବୁଝିପାରୁ । ଭୌତିକ ସଂସ୍କାର ଯେ ଶରୀର ମଧ୍ୟରେ ରହିପାରେ, ତାହା ମଧ୍ୟ ଆମେମାନେ ବୁଝୁଁ; କିନ୍ତୁ ଶରୀର ନଷ୍ଟ ହେଲେ ମଧ୍ୟ ମାନସିକ ସଂସ୍କାର ଯେ ଶରୀର ମଧ୍ୟରେ ବାସ କରେ, ତାହାର ପ୍ରମାଣ କଅଣ ? କାହାଦ୍ୱାରା ଏହି ସଂସ୍କାର ସଞ୍ଚାରିତ ହୁଏ ? ମନେକର, ଯେପରି କି ମନର ପ୍ରତ୍ୟେକ ସଂସ୍କାର ଶରୀରରେ ବାସ କରିବା ସମ୍ଭବ; ମନେକର, ଆଦିମ ମନୁଷ୍ୟଠାରୁ ଆରମ୍ଭ କରି ବଂଶାନୁକ୍ରମେ ସକଳ ପୂର୍ବପୁରୁଷର ସଂସ୍କାର ମୋର ପିତାଙ୍କ ଶରୀର ମଧ୍ୟରେ ରହିଛି ଏବଂ ପିତାଙ୍କ ଶରୀରଠାରୁ ମୋ ଶରୀରକୁ ଆସୁଛି । କିପରି ? ତୁମେ କହିବ— ଜୀବାଣୁକୋଷ (bio-plasmic cell) ଦ୍ୱାରା । କିନ୍ତୁ କିପରି ଭାବରେ ଏହା ସମ୍ଭବ ହେବ ? କାରଣ ପିତାଙ୍କ ଶରୀର ସମ୍ପୂର୍ଣ୍ଣ ଭାବରେ ସନ୍ତାନ ଭିତରକୁ ଆସେ ନାହିଁ । ଏକ ପିତାମାତାଙ୍କର ଅନେକଗୁଡ଼ିଏ ସନ୍ତାନସନ୍ତତି ଥାଇପାରନ୍ତି, ତାହାହେଲେ ଏହି ବଂଶାନୁକ୍ରମିକ ସଞ୍ଚାରବାଦ ସ୍ୱୀକାର କରିଲେ ଏହା ମଧ୍ୟ ସ୍ୱୀକାର କରିବାକୁ ହେବ ଯେ ସେମାନଙ୍କ ମତରେ ସଞ୍ଚାରକ ଓ ସଂସ୍କାର୍ଯ୍ୟ ଏକ ଅର୍ଥାତ୍ ଭୌତିକ ବୋଲି ପ୍ରତ୍ୟେକ ସନ୍ତାନର ଜନ୍ମରେ ପିତାମାତା ସେମାନଙ୍କ ନିଜ ମନୋବୃତ୍ତିର କିଞ୍ଚିତ୍ ଅଂଶ ହରାଇବେ; ଆଉ ଯଦି କହ ଯେ ସେମାନଙ୍କର ସମୁଦାୟ ମନୋବୃତ୍ତି ସଞ୍ଚାରିତ ହୁଏ, ତାହାହେଲେ ତ ପ୍ରଥମ ସନ୍ତାନର ଜନ୍ମ ପରେ ସେମାନଙ୍କର ମନ ସମ୍ପୂର୍ଣ୍ଣରୂପେ ଶୂନ୍ୟ ହୋଇଯିବ !

ପୁନଶ୍ଚ ଯଦି ଜୀବାଣୁକୋଷ ମଧ୍ୟରେ ଚିରକାଳର ଅନନ୍ତ ସଂସ୍କାରସମଷ୍ଟି ଥାଏ, ତେବେ ଜିଜ୍ଞାସ୍ୟ ଏହି ଯେ ତାହା କେଉଁଠି ଓ କି ଭାବରେ ଥାଏ ? ଏହା ଗୋଟିଏ ଅତ୍ୟନ୍ତ ଅସମ୍ଭବ କଥା, ଯେତେଦିନଯାଏ ଜଡ଼ବାଦୀମାନେ ପ୍ରମାଣ କରିପାରୁ ନାହାନ୍ତି, କି ଭାବରେ ସେହି ସଂସ୍କାର ଜୀବାଣୁକୋଷରେ ରହିପାରେ ଆଉ କେଉଁଠି ବା ତାହା ରହିପାରେ ଏବଂ 'ମନୋବୃତ୍ତି ଭୌତିକ କୋଷରେ ନିଦ୍ରିତ ଥାଏ', ଏହାର ଅର୍ଥ କଅଣ, ତାହା ବୁଝାଇ ନ ପାରିବେ, ସେତେଦିନଯାଏ ଆମେମାନେ ସେମାନଙ୍କର ଉକ୍ତି ସ୍ୱୀକାର କରିପାରିବୁ ନାହିଁ । ଏକଥା ବେଶ୍ ସ୍ପଷ୍ଟ ବୁଝାଯାଉଛି ଯେ, ଏହି ସଂସ୍କାର ମନ ଭିତରେ ହିଁ ଥାଏ, ମନ ହିଁ ଜନ୍ମଜନ୍ମାନ୍ତର ଗ୍ରହଣ କରିବାକୁ ଆସେ; ମନ ହିଁ ଆପଣା ଉପଯୋଗୀ ଉପାଦାନ ଗ୍ରହଣ କରେ, ପୁନଶ୍ଚ ଯେଉଁ ମନ କୌଣସି ବିଶେଷ ପ୍ରକାରର ଶରୀର ଧାରଣ କରିବାକୁ ଉପଯୁକ୍ତ କର୍ମ କରିଅଛି,

ଯେତେଦିନଯାଏ ମନ ସେହି ଉପାଦାନ ପାଉନାହିଁ, ସେତେଦିନଯାଏ ତାହାକୁ ଅପେକ୍ଷା କରିବାକୁ ହେବ । ଏହା ଆମେମାନେ ବୁଝିପାରୁ । ଅତଏବ ସିଦ୍ଧାନ୍ତ ହେଲ ଯେ, ଆତ୍ମାର ଦେହ ଗଠନୋପଯୋଗୀ ଉପାଦାନ ପ୍ରସ୍ତୁତ କରିବାଯାଏ ବଂଶାନୁକ୍ରମିକ ସଂସ୍କାରବାଦକୁ ଆମେ ସ୍ୱୀକାର କରୁ । ଆତ୍ମା କିନ୍ତୁ ଜନ୍ମାନ୍ତର ଗ୍ରହଣ କରେ—ଶରୀର ପରେ ଶରୀର ପ୍ରସ୍ତୁତ କରେ । ଆମେମାନେ ଯେ କୌଣସି ଚିନ୍ତା ବା କାର୍ଯ୍ୟ କରୁ, ତାହା ସୂକ୍ଷ୍ମ ଭାବରେ ରହିଯାଏ—ପୁଣି ସମୟ ପାଇଲେ ସ୍ଥୂଳ ବ୍ୟକ୍ତ ଭାବ ଧାରଣ କରିବାକୁ ପ୍ରସ୍ତୁତ ହୁଏ ।

ମୋର ଯାହା ବକ୍ତବ୍ୟ ତୁମମାନଙ୍କୁ ଆହୁରି ସ୍ପଷ୍ଟ କରି କହୁଛି । ଯେତେବେଳେ ମୁଁ ତୁମମାନଙ୍କ ଆଡ଼କୁ ଦୃଷ୍ଟିପାତ କରେ, ସେତେବେଳେ ମୋ ମନରେ ଗୋଟିଏ ତରଙ୍ଗ ଉଠେ । ଏହା ଯେପରି ଚିତ୍ତହ୍ରଦ ଭିତରେ ବୁଡ଼ିଯାଏ, କ୍ରମଶଃ ସୂକ୍ଷ୍ମରୁ ସୂକ୍ଷ୍ମତର ହୋଇଥାଏ, କିନ୍ତୁ ଏହା ଏକାବେଳକେ ନାଶ ହୋଇଯାଏ ନାହିଁ । ଏହା ମନ ମଧ୍ୟରେ ଯେ କୌଣସି ସମୟରେ ସ୍ମୃତିରୂପ ତରଙ୍ଗାକାରରେ ଉଠିବାକୁ ପ୍ରସ୍ତୁତ ହୋଇ ମନଭିତରେ ରହିଥାଏ । ଅତଏବ ସମୁଦାୟ ସଂସ୍କାର-ସମଷ୍ଟି ଆମମାନଙ୍କର ମନରେ ରହିଛି, ମୃତ୍ୟୁ କାଳରେ ଏହି ସଂସ୍କାରର ସମଷ୍ଟି ଆମମାନଙ୍କ ସହିତ ବହିର୍ଗତ ହୁଏ । ମନେକର, ଏହି ଘରେ ଗୋଟିଏ ବଲ୍ ରହିଛି ଏବଂ ଆମମାନଙ୍କ ମଧ୍ୟରୁ ପ୍ରତ୍ୟେକେ ଖଣ୍ଡିଏ ଲେଖାଏଁ ବାଡ଼ି ନେଇ ତାହାକୁ ଚାରିଆଡ଼ୁ ମାରିବାକୁ ଆରମ୍ଭ କଲୁ । ବଲ୍‌ଟି ଘରର ଏକ କୋଣରୁ ଅନ୍ୟ କୋଣକୁ ଯିବାକୁ ଲାଗିଲ, ମାତ୍ର ଦରଜା ପାଖରେ ପହଞ୍ଚିବା ମାତ୍ରେ ତାହା ବାହାରକୁ ଚାଲିଗଲା । ତାହା କେଉଁ ଶକ୍ତି ବଳରେ ବାହାରକୁ ଚାଲିଯାଏ ? ଯେତେଗୁଡ଼ିଏ ବାଡ଼ିଦ୍ୱାରା ଆମେମାନେ ତାହାକୁ ମାରିଥିଲୁ, ସେମାନଙ୍କ ସମବେତ ଶକ୍ତିବଳରେ । ସେ କେଉଁଆଡ଼କୁ ଗଲା, ତାହାର ଦିଗ ମଧ୍ୟ ସେହି ସମବେତ ଶକ୍ତିଦ୍ୱାରା ନିର୍ଣ୍ଣୀତ ହେଲା । ସେହିପରି ଶରୀରର ପତନ ହେଲେ ଆତ୍ମାର କେଉଁ ଦିଗକୁ ଗତି ତାହା କିଏ ନିର୍ଣ୍ଣୟ କରିବ ? ଆତ୍ମା ଯେଉଁ ସକଳ କାର୍ଯ୍ୟ କରିଛି, ଯେଉଁ ସକଳ ଚିନ୍ତା କରିଛି, ସେହିଗୁଡ଼ିକ ହିଁ ଆତ୍ମାକୁ ଏକ ବିଶେଷ ଦିଗରେ ଚାଳିତ କରିବ । ଆତ୍ମା ଏହିସବୁ ସଂସ୍କାର ନେଇ ଗନ୍ତବ୍ୟ ପଥରେ ଅଗ୍ରସର ହେବ । ଯଦି ସମବେତ କର୍ମଫଳ ଏପରି ହୁଏ ଯେ, ପୁନର୍ବାର ଭୋଗ ପାଇଁ ଆତ୍ମାକୁ ଗୋଟିଏ ନୂତନ ଶରୀର ଗଢ଼ିବାକୁ ହେବ, ତେବେ ସେ ପୁଣି ଥରେ ଏପରି ପିତାମାତାଙ୍କ ନିକଟକୁ ଯିବ, ଯାହାଙ୍କ ନିକଟରୁ ସେହି ଶରୀର ଗଠନର ଉପଯୋଗୀ ଉପାଦାନ ମିଳିବ ଏବଂ ସେହିସବୁ ଉପାଦାନ ନେଇ ଏକ ନୂଆ ଶରୀର ଗଠନ କରିବ । ଏହିରୂପେ ଏହା ଦେହରୁ ଦେହାନ୍ତରକୁ ଯାଏ, ସ୍ୱର୍ଗକୁ ଯାଏ, ପୁଣି ପୃଥିବୀକୁ ଆସେ, ମନୁଷ୍ୟ ହୁଏ, ଅଥବା ଉଚ୍ଚତର ବା ନିମ୍ନତର ଶରୀର ଗ୍ରହଣ କରେ । ଏହିରୂପ ଏହା ଚାଲିଥାଏ । ଯେତେବେଳେ ଏହାର ଅଭିଜ୍ଞତା ଅର୍ଜନ ଶେଷ ହୋଇ ପୂର୍ବସ୍ଥାନକୁ ପ୍ରତ୍ୟାବୃତ୍ତି

ହୁଏ, ସେତେବେଳେ ଯାଇ ଏହା ନିଜର ସ୍ୱରୂପକୁ ଜାଣେ । ସେତେବେଳେ ସକଳ ଅଜ୍ଞାନ ଚାଲିଯାଏ; ଏହାର ଶକ୍ତିସମୂହ ପ୍ରକାଶିତ ହୁଏ । ଏହା ସେତେବେଳେ ସିଦ୍ଧ ହୋଇଯାଏ, ଆଉ ଏହା ପକ୍ଷରେ ସ୍ଥୂଳଶରୀରର କୌଣସି ଆବଶ୍ୟକତା ରହେ ନାହିଁ —ସୂକ୍ଷ୍ମ ଶରୀରର ମଧ୍ୟ ଆବଶ୍ୟକତା ରହେ ନାହିଁ । ସେତେବେଳେ ସେ ସ୍ୱୟଂଜ୍ୟୋତିଃ ଓ ମୁକ୍ତ ହୋଇଯାଏ, ଏବଂ ଏହାର ଆଉ ଜନ୍ମ ବା ମୃତ୍ୟୁର ଆବଶ୍ୟକତା ରହେ ନାହିଁ ।

ବର୍ତ୍ତମାନ ଆମ୍ଭେମାନେ ଏ ସମ୍ବନ୍ଧରେ ଆଉ ବିଶେଷ ଆଲୋଚନା କରିବୁ ନାହିଁ; କିନ୍ତୁ ଏହି ପୁନର୍ଜନ୍ମବାଦ ସମ୍ବନ୍ଧରେ ଆଉ ଗୋଟିଏ କଥା କହି ନିବୃତ୍ତ ହେବି । ଏହି ମତ କେବଳ ଜୀବାତ୍ମାର ସ୍ୱାଧୀନତା ଘୋଷଣା କରିଥାଏ । ଏହା ଆମ୍ଭମାନଙ୍କର ସମୁଦାୟ ଦୁର୍ବଳତାର ଦୋଷ ଅନ୍ୟ କାହାର ଉପରେ ଲଦିଦିଏ ନାହିଁ । ନିଜ ଦୋଷକୁ ଅନ୍ୟ ଉପରେ ଲଦିଦେବା ମନୁଷ୍ୟର ସାଧାରଣ ଦୁର୍ବଳତା । ଆମ୍ଭେମାନେ ନିଜ ଦୋଷ କଦାପି ଦେଖୁ ନାହିଁ । ଚକ୍ଷୁ କଦାପି ନିଜକୁ ଦେଖିପାରେ ନାହିଁ—ଏହା ଅନ୍ୟ ସମସ୍ତଙ୍କ ଚକ୍ଷୁକୁ ଦେଖିପାରେ । ଆମ୍ଭେମାନେ ନିଜର ଦୁର୍ବଳତା ସ୍ୱୀକାର କରିବାକୁ ଅତ୍ୟନ୍ତ ନାରାଜ । ମଣିଷ ସାଧାରଣତଃ ନିଜର ଦୋଷ ତ୍ରୁଟି ତାର ପଡ଼ୋଶୀ ଉପରେ ଲଦି ଦେବାକୁ ଚାହେଁ, ଅନ୍ୟଥା ଈଶ୍ୱରଙ୍କ ଉପରେ ଲଦି ଦିଏ, ତାହା ନ ହେଲେ 'ଅଦୃଷ୍ଟ' ନାମକ ଗୋଟିଏ ଭୂତ ସୃଷ୍ଟି କରି ତାହା ଉପରେ ଦୋଷକୁ ଲଦି ନିଶ୍ଚିନ୍ତ ହୁଏ, କିନ୍ତୁ ଅଦୃଷ୍ଟ ପୁଣି କଅଣ ? ତାହା କେଉଁଠାରେ ରହେ ? ଆମ୍ଭେମାନେ ଯାହା କିଛି ବପନ କରୁ, ତାହା ହିଁ ଅମଳ କରିଥାଉଁ ।

ଆମ୍ଭେମାନେ ଆମ୍ଭମାନଙ୍କର ଅଦୃଷ୍ଟର ସୃଷ୍ଟିକର୍ତ୍ତା । ଆମ୍ଭମାନଙ୍କ ଅଦୃଷ୍ଟ ମନ୍ଦ ହେଲେ କାହାରିକୁ ଦୋଷ ଦେବାର କିଛି ନାହିଁ, ପୁଣି ଭଲ ହେଲେ ପ୍ରଶଂସା ଅନ୍ୟ କେହି ପାଏ ନାହିଁ । ବାୟୁ ସର୍ବଦା ବହୁଛି । ଯେଉଁସବୁ ଜାହାଜରେ ପାଲ୍ ଟଣା ହୋଇଥାଏ, ସେଗୁଡ଼ିକରେ ପବନ ଲାଗେ—ସେଗୁଡ଼ିକ ପାଲ୍ ସାହାଯ୍ୟରେ ଆଗେଇ ଯାଆନ୍ତି । ଯେଉଁମାନେ ପାଲ୍ ଟାଣି ନ ଥାନ୍ତି, ସେମାନେ ବାୟୁର ଉପଯୋଗ କରିପାରନ୍ତି ନାହିଁ । ଏହା କଅଣ ବାୟୁର ଦୋଷ ? ଆମ୍ଭମାନଙ୍କ ମଧ୍ୟରୁ କେହି ସୁଖୀ, କେହି ବା ଦୁଃଖୀ—ଏହା କଅଣ ସେହି କରୁଣାମୟ ପିତାଙ୍କର ଦୋଷ ? ତାଙ୍କର କୃପା-ପବନ ଦିବାରାତ୍ର ବହୁଛି, ତାଙ୍କ ଦୟାର ଶେଷ ନାହିଁ । ଆମ୍ଭେମାନେ ନିଜ ଅଦୃଷ୍ଟର ରଚୟିତା । ତାଙ୍କର ସୂର୍ଯ୍ୟ ଦୁର୍ବଳ, ବଳବାନ୍ ସକଳଙ୍କ ପାଇଁ ଉଦିତ ହୁଏ । ତାଙ୍କର ବାୟୁ ସାଧୁ, ପାପୀ ସମସ୍ତଙ୍କ ପାଇଁ ସମାନ ଭାବରେ ବହୁଛି । ସେ ସମସ୍ତଙ୍କର ପ୍ରଭୁ, ପିତା, ଦୟାମୟ ଓ ସମଦର୍ଶୀ । ତୁମ୍ଭେମାନେ କଅଣ ମନେକର, କ୍ଷୁଦ୍ର କ୍ଷୁଦ୍ର ବସ୍ତୁକୁ ଆମ୍ଭେମାନେ ଯେଉଁ ଦୃଷ୍ଟିରେ ଦେଖୁ, ସେ ମଧ୍ୟ ସେହି ଦୃଷ୍ଟିରେ ଦେଖିଥାଆନ୍ତି ? ଈଶ୍ୱରଙ୍କ ସମ୍ବନ୍ଧରେ ଏହା କି କ୍ଷୁଦ୍ର ଧାରଣା ! ଆମ୍ଭେମାନେ କ୍ଷୁଦ୍ର କ୍ଷୁଦ୍ର କୁକୁରଶାବକ ଭଳି ଏଠାରେ ଜୀବନ-

ମରଣ ସଂଗ୍ରାମ କରୁଛୁ ଏବଂ ନିର୍ବୋଧଙ୍କ ଭଳି ଭାବୁଛୁ ଯେ ଭଗବାନ ମଧ୍ୟ ସେହି ବିଷୟଗୁଡ଼ିକୁ ଠିକ୍ ସେହିପରି ସତ୍ୟ ବୋଲି ଗ୍ରହଣ କରିବେ । ସେ ଜାଣନ୍ତି, କୁକୁରଗାଦିକର ସେହି ଖେଳର ଅର୍ଥ କଅଣ ! ତାଙ୍କୁ ସମସ୍ତ ଦୋଷ ଦେବା, ତାଙ୍କୁ ଦଣ୍ଡ ଓ ପୁରସ୍କାରର କର୍ତ୍ତା ବୋଲି କହିବା ନିର୍ବୋଧର କଥାମାତ୍ର । ସେ କାହାରିକୁ ଦଣ୍ଡ ଦିଅନ୍ତି ନାହିଁ, କାହାରିକୁ ପୁରସ୍କାର ମଧ୍ୟ ଦିଅନ୍ତି ନାହିଁ । (ଗୀତା, ୫।୧୫) ସର୍ବଦେଶରେ, ସର୍ବକାଳରେ, ସର୍ବ ଅବସ୍ଥାରେ ତାଙ୍କର ଅନନ୍ତ ଦୟା ପାଇବାର ସମସ୍ତେ ଅଧିକାରୀ । ତାହାର ବ୍ୟବହାର କିପରି କରିବା ତାହା ଆମମାନଙ୍କ ଉପରେ ନିର୍ଭର କରୁଛି । ମନୁଷ୍ୟ ବା ଈଶ୍ୱର, କାହାରିକୁ ଦୋଷ ଦିଅ ନାହିଁ । ଯେତେବେଳେ ନିଜେ କଷ୍ଟ ପାଅ, ସେତେବେଳେ ନିଜକୁ ଦୋଷୀ ବୋଲି ସ୍ଥିର କର ଏବଂ ଯେଉଁଥିରେ ନିଜର ମଙ୍ଗଳ ହୁଏ, ତାହାର ଚେଷ୍ଟା କର ।

ପୂର୍ବୋକ୍ତ ସମସ୍ୟାର ଏହା ହିଁ ମୀମାଂସା । ଯେଉଁମାନେ ନିଜ ନିଜର କଷ୍ଟ ପାଇଁ ଅନ୍ୟକୁ ଦୋଷ ଦିଅନ୍ତି—ଦୁଃଖର ବିଷୟ, ଏଭଳି ଲୋକଙ୍କ ସଂଖ୍ୟା ଦିନକୁଦିନ ବଢ଼ୁଛି, ସେମାନେ ସାଧାରଣତଃ ହତଭାଗ୍ୟ ଦୁର୍ବଳମସ୍ତିଷ୍କ; ସେମାନେ ନିଜ ନିଜର କର୍ମଦୋଷରୁ ଏହି ଅବସ୍ଥାରେ ଆସି ପଡ଼ିଛନ୍ତି, ବର୍ତ୍ତମାନ ସେମାନେ ଅନ୍ୟକୁ ଦୋଷ ଦେଉଛନ୍ତି, କିନ୍ତୁ ତଦ୍ଦ୍ୱାରା ସେମାନଙ୍କ ଅବସ୍ଥାର କିଛି ମାତ୍ର ପରିବର୍ତ୍ତନ ହୁଏ ନାହିଁ; ସେଥିରେ ସେମାନଙ୍କର କୌଣସି ଉପକାର ହୁଏ ନାହିଁ; ବରଂ ପର ଉପରେ ଦୋଷ ଲଦିଦେବାର ଚେଷ୍ଟାରେ ସେମାନେ ଆହୁରି ଦୁର୍ବଳ ହୋଇପଡ଼ନ୍ତି । ଅତଏବ ନିଜର ଦୋଷ ପାଇଁ ଅନ୍ୟ କାହାରିକୁ ନିନ୍ଦା କର ନାହିଁ; ନିଜ ଗୋଡ଼ରେ ଛିଡ଼ା ହୁଅ, ସମୁଦାୟ ଦାୟିତ୍ୱ ନିଜ କାନ୍ଧକୁ ନିଅ । କହ, ମୁଁ ଯେଉଁ କଷ୍ଟଭୋଗ କରୁଛି, ତାହା ମୋହର କୃତକର୍ମର ଫଳ । ଏହାଦ୍ୱାରା ପ୍ରମାଣିତ ହୁଏ ଯେ ମୋଦ୍ୱାରା ଏହି ଦୁଃଖ କଷ୍ଟ ଦୂରୀଭୂତ ହେବ । ମୁଁ ଯାହା ସୃଷ୍ଟି କରିଛି, ତାହା ମୁଁ ଧ୍ୱଂସ କରିପାରେ, କିନ୍ତୁ ଯାହା ଅନ୍ୟ କେହି ସୃଷ୍ଟି କରିଛି, ତାହା ମୁଁ କଦାପି ନାଶ କରିବାକୁ ସମର୍ଥ ହେବି ନାହିଁ । ଅତଏବ ଉଠ, ସାହସୀ ହୁଅ, ବୀର୍ଯ୍ୟବାନ୍ ହୁଅ, । ସମସ୍ତ ଦାୟିତ୍ୱ ନିଜ କାନ୍ଧରେ ଗ୍ରହଣ କର—ଜାଣିରଖ, ତୁମେ ତୁମର ଅଦୃଷ୍ଟର ସୃଜନକର୍ତ୍ତା । ତୁମେ ଯାହା କିଛି ଶକ୍ତି ବା ସହାୟତା ଚାହଁ, ତାହା ସବୁ ତୁମ ମଧ୍ୟରେ ରହିଛି । ଅତଏବ ତୁମେ ବର୍ତ୍ତମାନ ଏହି ଜ୍ଞାନବଳରେ ବଳୀୟାନ ହୋଇ ନିଜର ଭବିଷ୍ୟତ ଗଠନ କରିଯାଅ । 'ଗତସ୍ୟ ଶୋଚନା ନାସ୍ତି' —ତୁମ ସମ୍ମୁଖରେ ଅନନ୍ତ ଭବିଷ୍ୟତ । ସର୍ବଦା ତୁମେ ଏହା ମନେ ରଖିବ— ତୁମର ପ୍ରତ୍ୟେକ ଚିନ୍ତା, ପ୍ରତ୍ୟେକ କାର୍ଯ୍ୟ ତୁମ ପାଇଁ ସଞ୍ଚିତ ହୋଇ ରହିଛି । ଏହା ମଧ୍ୟ ମନେରଖ ଯେପରି ତୁମର ପ୍ରତ୍ୟେକ ଅସତ୍ ଚିନ୍ତା ଓ ଅସତ୍ କାର୍ଯ୍ୟ ତୁମ ଉପରେ ବ୍ୟାଘ୍ର ଭଳି ଲମ୍ଫ ଦେବାକୁ ଉଦ୍ୟତ, ସେହିପରି ତୁମର ସତ୍ ଚିନ୍ତା, ସତ୍ କାର୍ଯ୍ୟଗୁଡ଼ିକ ସହସ୍ର ସହସ୍ର ଦେବତାମାନଙ୍କର ଶକ୍ତି ନେଇ ତୁମମାନଙ୍କୁ ସର୍ବଦା ରକ୍ଷା କରିବାକୁ ପ୍ରସ୍ତୁତ ।

# ଅମୃତତ୍ୱ

[ଆମେରିକାରେ ପ୍ରଦତ୍ତ ବକ୍ତୃତା]

ଜୀବାତ୍ମାର ଅମରତ୍ୱ ସମ୍ବନ୍ଧରେ ପ୍ରଶ୍ନ ଅପେକ୍ଷା ଆଉ କେଉଁ ପ୍ରଶ୍ନ ମନୁଷ୍ୟ ଏତେ ଅଧିକ ଥର ପଚାରିଛି ? କେଉଁ ତତ୍ତ୍ୱର ରହସ୍ୟ ଉଦ୍‌ଘାଟନ କରିବା ପାଇଁ ମନୁଷ୍ୟ ସମୁଦାୟ ଜଗତ ଖୋଜିଛି ? ଏହିପ୍ରଶ୍ନ ଅପେକ୍ଷା ଆଉ କେଉଁ ପ୍ରଶ୍ନ ମାନବ-ହୃଦୟର ଏତେ ଅନ୍ତରତର ଓ ପ୍ରିୟତର ? ଆଉ କେଉଁ ପ୍ରଶ୍ନ ଆମମାନଙ୍କର ଅସ୍ତିତ୍ୱ ସହିତ ଏତେ ଅଚ୍ଛେଦ୍ୟ ଭାବରେ ଜଡ଼ିତ ? ମାନବ-ଆତ୍ମାର ଅମରତ୍ୱ—କବିମାନଙ୍କର ଏହା ଏକ କଳ୍ପନାର ବିଷୟ ହୋଇଛି, ସାଧୁ, ମହାତ୍ମା, ଜ୍ଞାନୀ ସମସ୍ତଙ୍କର ଏହା ଆଲୋଚ୍ୟ ବିଷୟ ହୋଇଛି—ସିଂହାସନୋପବିଷ୍ଟ ରାଜାଗଣ ଏହାର ବିଚାର କରିଛନ୍ତି, ପଥର ଭିକାରୀ ମଧ୍ୟ ଏହି ଅମରତ୍ୱର ସ୍ୱପ୍ନ ଦେଖିଛି । ଶ୍ରେଷ୍ଠ ମାନବଗଣ ଏହି ପ୍ରଶ୍ନର ଉତ୍ତର ପାଇଛନ୍ତି—ଅତି ହୀନ ମାନବଗଣ ମଧ୍ୟ ଏହା ପାଇବା ପାଇଁ ଆଶା କରିଛନ୍ତି । ଏହି ବିଷୟରେ ଲୋକମାନଙ୍କର ଆଗ୍ରହ ବର୍ତ୍ତମାନ ସୁଦ୍ଧା ନଷ୍ଟ ହୋଇ ନାହିଁ ଏବଂ ଯେତେଦିନ ମାନବ-ପ୍ରକୃତି ବିଦ୍ୟମାନ ଥିବ, ସେତେଦିନଯାଏ ନଷ୍ଟ ହେବ ନାହିଁ । ଜଗତରେ ଏହି ସମ୍ବନ୍ଧରେ ଅନେକ ଲୋକ ବହୁପ୍ରକାର ଉତ୍ତର ଦେଇଛନ୍ତି । ପୁନଶ୍ଚ ଇତିହାସର ପ୍ରତ୍ୟେକ ଯୁଗରେ ଦେଖାଯାଏ ଯେ, ସହସ୍ର ସହସ୍ର ବ୍ୟକ୍ତି ଏହି ପ୍ରଶ୍ନକୁ ଏକାବେଳକେ ଅନାବଶ୍ୟକ ବୋଲି ପରିତ୍ୟାଗ କରିଛନ୍ତି; ତଥାପି ତାହା ପୂର୍ବଭଳି ନୂତନ ରହିଛି । ଅନେକ ସମୟରେ ଜୀବନସଂଗ୍ରାମରେ ବ୍ୟସ୍ତ ଥାଇ ଏହି ପ୍ରଶ୍ନକୁ ଯେପରିକି ଭୁଲିଯିବାକୁ ହୁଏ । ହଠାତ୍ କେହି କାଳଗ୍ରାସରେ ପତିତ ହେଲା—ଏପରି କେହି, ଯାହାକୁ ମୁଁ ହୁଏତ ଖୁବ୍ ଭଲ ପାଉଥିଲି, ସେ ମୋର ଅନ୍ତରର ଅନ୍ତରତମ ଥିଲା, ହଠାତ୍ ଯମ ତାହାକୁ ଆମମାନଙ୍କ ନିକଟରୁ କାଢ଼ିନେଲେ, ସେତେବେଳେ ଯେପରି କି ମୁହୂର୍ତ୍ତିକ ପାଇଁ ଏହି ସଂସାରର କୋଳାହଳ, ସବୁ ଗୋଳମାଳ ବନ୍ଦ ହୋଇଗଲା, ସବୁ ଯେପରି ନିସ୍ତବ୍ଧ ହୋଇ-ଗଲା, ଆଉ ଆତ୍ମାର ଗଭୀରତମ ପ୍ରଦେଶରୁ ସେହି ପ୍ରାଚୀନ ପ୍ରଶ୍ନ ଜିଜ୍ଞାସିତ ହେବାକୁ ଲାଗିଲା—ମୃତ୍ୟୁ ପରେ ଆତ୍ମାର କଅଣ ହୁଏ ? ଆତ୍ମାର କି ଗତି ହୁଏ ?

ଅଭିଜ୍ଞତାରୁ ମନୁଷ୍ୟ ଜ୍ଞାନ ଲାଭ କରେ । ସୁଖଦୁଃଖ ଦୁଇଟିକୁ ଅନୁଭବ ନକଲେ ଆମେ କୌଣସି ବିଷୟ ଶିକ୍ଷା କରିପାରୁ ନାହିଁ । ଆମମାନଙ୍କର ବିଚାର ଓ ଜ୍ଞାନ ଏହିଭଳି ସାମାନ୍ୟୀକୃତ ଅନୁଭୂତି ଉପରେ ନିର୍ଭର କରେ । ଶ୍ରେଣୀବଦ୍ଧ ବିଭିନ୍ନ ଅଭିଜ୍ଞତା ଓ ସେମାନଙ୍କର ସାମଞ୍ଜସ୍ୟ ସାଧନ କରି ଆମେ ଜ୍ଞାନ ଲାଭ କରୁ । ଚତୁର୍ଦ୍ଦିଗରେ ଆମେ କଅଣ ଦେଖିବାକୁ ପାଉ ? କ୍ରମାଗତ ପରିବର୍ତ୍ତନ ! ବୀଜରୁ ବୃକ୍ଷ

ଉତ୍ପନ୍ନ ହୁଏ—ପୁଣି ଆବର୍ତ୍ତିତ ହୋଇ ତାହା ବୀଜରେ ପରିଣତ ହୁଏ । ଆମେ ଦେଖୁ କେଉଁ ଜୀବ ଉତ୍ପନ୍ନ ହେଲା—କିଛି ଦିନ ରହିଲା—ପୁଣି ମରିଗଲା—ଏହି ରୂପେ ଗୋଟିଏ ବୃତ୍ତ ସମ୍ପୂର୍ଣ୍ଣ ହେଲା । ମନୁଷ୍ୟ ସମ୍ବନ୍ଧରେ ମଧ୍ୟ ତଦ୍ରୂପ । ଏପରିକି ପର୍ବତସବୁ ଧୀରେ ଅଥଚ ନିଶ୍ଚିତରୂପେ ଗୁଣ୍ଡ ହୋଇଯାଉଛନ୍ତି, ନଦୀ ସବୁ ଧୀରେ ଅଥଚ ନିଶ୍ଚିତରୂପେ ଶୁଖିଯାଉଛନ୍ତି—ସମୁଦ୍ରରୁ ବୃଷ୍ଟି ଆସୁଛି—ପୁଣି ତାହା ସମୁଦ୍ରକୁ ଯାଉଛି । ସର୍ବତ୍ର ହିଁ ଗୋଟିଏ ଗୋଟିଏ ବୃତ୍ତ—ଜନ୍ମ, ବୃଦ୍ଧି ଓ ନାଶ ଯେପରି ଧାରାପରି ଗୋଟିଏ ପରେ ଗୋଟିଏ ଆସୁଛି । ଏହା ଆମମାନଙ୍କର ପ୍ରତିଦିନର ଅଭିଜ୍ଞତା । ତଥାପି କ୍ଷୁଦ୍ରତମ ପରମାଣୁଠାରୁ ଆରମ୍ଭ କରି ଉଚ୍ଚତମ ସିଦ୍ଧପୁରୁଷ ପର୍ଯ୍ୟନ୍ତ ଲକ୍ଷ ଲକ୍ଷ ପ୍ରକାର ବିଭିନ୍ନ ନାମରୂପଯୁକ୍ତ ବସ୍ତୁରାଶିର ଅଭ୍ୟନ୍ତରରେ ଓ ଅନ୍ତରାଳରେ ଆମେମାନେ ଗୋଟିଏ ଅଖଣ୍ଡ ସତ୍ତା ଦେଖିବାକୁ ପାଉଁ । ପ୍ରତିଦିନ ଆମେମାନେ ଦେଖିବାକୁ ପାଉ ଯେଉଁ ଦୁର୍ଭେଦ୍ୟ ପ୍ରାଚୀର ଗୋଟିଏ ପଦାର୍ଥରୁ ଆଉ ଏକ ପଦାର୍ଥକୁ ପୃଥକ୍ କରେ, ତାହା ଭାଙ୍ଗିଯାଉଛି । ଆଧୁନିକ ବିଜ୍ଞାନ ସମୁଦାୟ ପଦାର୍ଥ ଗୋଟିଏ ବସ୍ତୁ ବୋଲି ବୁଝିଛନ୍ତି—ସେହି ଏକ ପ୍ରାଣଶକ୍ତି ହିଁ ନାନା ରୂପେ ଓ ନାନା ଆକାରରେ ପ୍ରକାଶ ପାଉଛି—ତାହା ଯେପରି ସମୁଦାୟ ମଧ୍ୟରେ ଏକ ଶୃଙ୍ଖଳରୂପେ ବିଦ୍ୟମାନ—ଏହି ସକଳ ବିଭିନ୍ନ ରୂପ ଯେପରି ତାହାର ଗୋଟିଏ ଗୋଟିଏ ଅଂଶ—ଅନନ୍ତରୂପରେ ବିସ୍ତୃତ, ଅଥଚ ସେହି ଏକ ଶୃଙ୍ଖଳର ହିଁ ଅଂଶ । ଏହାକୁ ହିଁ କ୍ରମୋନ୍ନତିବାଦ କୁହାଯାଏ । ଏହି ଧାରଣା ଅତି ପ୍ରାଚୀନ—ମନୁଷ୍ୟ-ସମାଜ ଯେତେ ପ୍ରାଚୀନ, ଏହି ଧାରଣା ମଧ୍ୟ ସେତେ ପ୍ରାଚୀନ । ମନୁଷ୍ୟର ଜ୍ଞାନ ଯେତେ ବର୍ଦ୍ଧିତ ହେଉଛି, ତାହା ଯେପରି ଆମମାନଙ୍କର ଚକ୍ଷୁରେ ସେତେ ଉଜ୍ଜ୍ୱଳ-ତରରୂପେ ପ୍ରତିଭାତ ହେଉଛି । ପ୍ରାଚୀନମାନେ ଆଉ ଗୋଟିଏ ବିଷୟ ବିଶେଷରୂପେ ବୁଝିଥିଲେ—ତାହା କ୍ରମସଙ୍କୋଚ; କିନ୍ତୁ ଆଧୁନିକମାନେ ଏହି ତତ୍ତ୍ୱଟି ଭଲ ଭାବରେ ବୁଝନ୍ତି ନାହିଁ । ବୀଜ ହିଁ ବୃକ୍ଷ ହୁଏ, ଏକ ବିନ୍ଦୁ ବାଲିକଣା କେଉଁଠି ବୃକ୍ଷ ହୁଏ ନାହିଁ । ପିତା ହିଁ ପୁତ୍ର ହୁଏ, ମୃତ୍ତିକାଖଣ୍ଡ କେବେହେଲେ ସନ୍ତାନରୂପେ ଜନ୍ମ ହୁଏ ନାହିଁ । କେଉଁ ସ୍ଥାନରୁ ଏହି କ୍ରମବିକାଶ ହୁଏ, ଏହା ହିଁ ପ୍ରଶ୍ନ । ବୀଜ ପୂର୍ବେ କଅଣ ଥିଲା ? ତାହା ସେହି ବୃକ୍ଷରୂପରେ ଥିଲା । ଏହି ବୀଜରେ ଗୋଟିଏ ଭବିଷ୍ୟତ ବୃକ୍ଷର ସମ୍ଭାବନୀୟତା ରହିଛି । କ୍ଷୁଦ୍ର ଶିଶୁଠାରେ ଭବିଷ୍ୟତ ମନୁଷ୍ୟର ସମୁଦାୟ ଶକ୍ତି ଅନ୍ତର୍ନିହିତ ରହିଛି । ସର୍ବପ୍ରକାର ଭବିଷ୍ୟତ ଜୀବନ ହିଁ ଅବ୍ୟକ୍ତଭାବେ ତାହାର ବୀଜରେ ରହିଛି । ଏହାର ତାତ୍ପର୍ଯ୍ୟ କ'ଣ ? ଭାରତର ପ୍ରାଚୀନ ଦାର୍ଶନିକମାନେ ଏହାକୁ 'କ୍ରମସଙ୍କୋଚ' କହୁଥିଲେ । ଅତଏବ ଆମେମାନେ ଦେଖିବାକୁ ପାଇଲୁ ଯେ ପ୍ରତ୍ୟେକ କ୍ରମବିକାଶର ଆରମ୍ଭରେ ଗୋଟିଏ କ୍ରମସଙ୍କୋଚ ପ୍ରକ୍ରିୟା ରହିଛି । ଯାହା ପୂର୍ବରୁ ରହିନାହିଁ, ତାହାର କଦାପି କ୍ରମବିକାଶ ହୋଇପାରିବ ନାହିଁ । ଏଠାରେ ମଧ୍ୟ ଆଧୁନିକ ବିଜ୍ଞାନ ଆମମାନଙ୍କୁ ସାହାଯ୍ୟ କରେ । ଗଣିତର ଯୁକ୍ତିଦ୍ୱାରା

ସଠିକ୍‌ଭାବରେ ପ୍ରତିପନ୍ନ ହୋଇଛି ଯେ, ଜଗତରେ ଯେତେ ଶକ୍ତିର ବିକାଶ ଦେଖାଯାଏ, ତାହାର ସମଷ୍ଟି ସବୁବେଳେ ସମାନ । ତୁମେ ଏକ ବସ୍ତୁକଣା ବା ଏକ ବିନ୍ଦୁ ଶକ୍ତି ବଢ଼ାଇ ବା କମାଇପାରିବ ନାହିଁ । ଅତଏବ ଶୂନ୍ୟରୁ କେବେହେଲେ କିଛିର କ୍ରମବିକାଶ ହୁଏ ନାହିଁ । ତେବେ ଏହା କେଉଁଠାରୁ ହେଲା ? ଅବଶ୍ୟ ଏହା ପୂର୍ବରୁ କ୍ରମସଙ୍କୋଚ ପ୍ରକ୍ରିୟା ହୋଇଥିବ । ପୂର୍ଣ୍ଣବୟସ୍କ ମନୁଷ୍ୟର କ୍ରମସଙ୍କୋଚରେ ଶିଶୁର ଉତ୍ପତ୍ତି, ଆହୁର ମଧ୍ୟ ଶିଶୁଠାରୁ କ୍ରମବିକାଶପ୍ରକ୍ରିୟାରେ ମନୁଷ୍ୟର ଉତ୍ପତ୍ତି । ସର୍ବପ୍ରକାର ଜୀବନର ଉତ୍ପତ୍ତିର ସମ୍ଭାବନୀୟତା ସେମାନଙ୍କ ବୀଜରେ ରହିଛି । ବର୍ତ୍ତମାନ ଏହି ସମସ୍ୟା ଯେପରି କିଛି ପରିମାଣରେ ସରଳ ହୋଇ ଆସୁଛି । ଏହା ସହିତ ପୂର୍ବୋକ୍ତ ସମୁଦାୟ ଜୀବନର ଏକତ୍ୱର କଥା ଚିନ୍ତା କର । କ୍ଷୁଦ୍ରତମ ଜୀବାଣୁଠାରୁ ପୂର୍ଣ୍ଣତମ ମାନବ ପର୍ଯ୍ୟନ୍ତ ବାସ୍ତବିକ୍ ଏକ ସତ୍ତା, ଏକ ଜୀବନ ହିଁ ବିଦ୍ୟମାନ । ଯେପରି ଆମେ ଗୋଟିଏ ଜୀବନରେ ଶୈଶବ, ଯୌବନ, ବାର୍ଦ୍ଧକ୍ୟ ପ୍ରଭୃତି ବିବିଧ ଅବସ୍ଥା ଦେଖିବାକୁ ପାଉଁ, ଠିକ୍ ସେହିପରି ଏହି ଶୈଶବ ଅବସ୍ଥାର ପଛଆଡ଼େ କଅଣ ଅଛି ତାହା ଦେଖିବା ପାଇଁ ବିପରୀତ ଦିଗରେ ଅଗ୍ରସର ହୋଇ ଦେଖ, ଯେତେବେଳଯାଏ ତୁମେ ଜୀବାଣୁରେ ଉପନୀତ ନ ହୁଅ । ଏହି ଜୀବାଣୁଠାରୁ ପୂର୍ଣ୍ଣତମ ମାନବ ପର୍ଯ୍ୟନ୍ତ ଯେପରିକି ଏକ ଜୀବନସୂତ୍ର ବିରାଜମାନ । ଏହାକୁ କ୍ରମବିକାଶ କହନ୍ତି ଏବଂ ଆମେମାନେ ଦେଖିଛୁ, ପ୍ରତ୍ୟେକ କ୍ରମବିକାଶର ପୂର୍ବରେ ଗୋଟିଏ କ୍ରମସଙ୍କୋଚ ରହିଛି । ଯେଉଁ ଜୀବନୀଶକ୍ତି ଏହି କ୍ଷୁଦ୍ର ଜୀବାଣୁଠାରୁ ଆରମ୍ଭ କରି ଧୀରେ ଧୀରେ ପୂର୍ଣ୍ଣତମ ମାନବ ଅଥବା ଏହି ଜଗତସ୍ଥ ଈଶ୍ୱରାବତାରରୂପେ କ୍ରମବିକଶିତ ହୁଏ—ତାହା ଅବଶ୍ୟ ଜୀବାଣୁରେ ସୂକ୍ଷ୍ମଭାବେ ଅବସ୍ଥାନ କରିଥିଲା । ଏହି ସମଗ୍ର ଶ୍ରେଣୀଟି ଗୋଟିଏ ଅଖଣ୍ଡ ଜୀବନର ଅଭିବ୍ୟକ୍ତି ମାତ୍ର । ଏହି ସମୁଦାୟ ବ୍ୟକ୍ତ ଜଗତ ସେହି ଏକ ଜୀବାଣୁରେ ହିଁ ନିହିତ ଥିଲା । ସମୁଦାୟ ପ୍ରାଣଶକ୍ତି—ଏପରି କି ସ୍ୱୟଂ ଅବତାରପୁରୁଷମାନେ—ଏହା ମଧ୍ୟରେ ଅନ୍ତର୍ନିହିତ ଥିଲେ—ଧୀରେ ଧୀରେ କ୍ରମଶଃ ସମସ୍ତ ପ୍ରକାଶିତ ହୋଇଥାଏ । ସର୍ବୋଚ୍ଚ ପ୍ରକାଶ ମଧ୍ୟ ଅବଶ୍ୟ ସୂକ୍ଷ୍ମ ଭାବରେ ଏହାର ଭିତରେ ଥିଲା । ତାହେଲେ ଯେଉଁ ଶକ୍ତିରୁ ସମଗ୍ର ଶ୍ରେଣୀ ବା ଶୃଙ୍ଖଳଟି ଆସିଛି ତାହା କାହାର କ୍ରମସଙ୍କୋଚ ? ସେହି ସର୍ବବ୍ୟାପୀ ପ୍ରାଣଶକ୍ତିର କ୍ରମସଙ୍କୋଚ । ଯେଉଁ ସର୍ବବ୍ୟାପୀ ଚୈତନ୍ୟ ଜୀବାଣୁଠାରୁ ପୂର୍ଣ୍ଣତମ ମାନବ ପର୍ଯ୍ୟନ୍ତ ଧୀରେ ଧୀରେ ପ୍ରକାଶିତ ହେଉଛି, ତାହା ଏହି ଜୀବାଣୁରେ କ୍ରମସଙ୍କୁଚିତ ହୋଇ ବିଦ୍ୟମାନ ଥିଲା । ଏହା ପ୍ରଥମରୁ ପୂର୍ଣ୍ଣଭାବେ ବିଦ୍ୟମାନ ଥିଲା । ଏହା ଯେ କ୍ରମଶଃ ବର୍ଦ୍ଧିତ ହେଉଛି, ତାହା ନୁହେଁ । ବୃଦ୍ଧିର ଭାବ ମନରୁ ଘୁଞ୍ଚାଇ ଦିଅ । ବୃଦ୍ଧି କହିଲେ ଆମେ ଭାବୁ ଯେପରି କି କିଛି ବାହାରୁ ଆସୁଛି । ବୃଦ୍ଧିକୁ ମାନିଲେ ଅସ୍ୱୀକାର କରିବାକୁ ହୁଏ ଯେ, ସେହି ଅନନ୍ତଶକ୍ତି ସମସ୍ତଙ୍କ ମଧ୍ୟରେ ଅନ୍ତର୍ନିହିତ ଅଛନ୍ତି ଯାହା କି ବାହ୍ୟବସ୍ତୁ-ନିରପେକ୍ଷ । ଏହି ସର୍ବବ୍ୟାପୀ ଚୈତନ୍ୟଙ୍କର ବୃଦ୍ଧି

ହୁଏ ନାହିଁ, ଏହା ସର୍ବଦା ପୂର୍ଣ୍ଣଭାବରେ ବିଦ୍ୟମାନ, କେବଳ ଏହା ଆପଣାକୁ ପ୍ରକାଶ କରେ ମାତ୍ର ।

ବିନାଶର ଅର୍ଥ କଅଣ ? ଏଠାରେ ଗୋଟିଏ ଗିଲାସ ରହିଛି । ଆମେ ଏହାକୁ ଭୂମିରେ ଫୋପାଡ଼ି ଦେଲୁ, ଏହା ଚୂର୍ଣ୍ଣବିଚୂର୍ଣ୍ଣ ହୋଇଗଲା । ଏହା କଅଣ ହେଲା ? ଏହା ସୂକ୍ଷ୍ମରୂପେ ପରିଣତ ହେଲା ମାତ୍ର । ତେବେ ବିନାଶ କଅଣ ହେଲା ? ସ୍ଥୂଳର ସୂକ୍ଷ୍ମଭାବରେ ପରିଣତି । ଏହାର ଉପାଦାନ ପରମାଣୁଗୁଡ଼ିକ ଏକାଠି ହୋଇ ଗିଲାସ ନାମକ କାର୍ଯ୍ୟରେ ପରିଣତ ହୋଇଥିଲା । ଏମାନେ ପୁଣି ଏମାନଙ୍କ କାରଣକୁ ଫେରି-ଯାଆନ୍ତି, ଆଉ ଏହାର ନାମ ବିନାଶ—କାରଣରେ ଲୟ । କାର୍ଯ୍ୟ କଅଣ ? କାରଣର ବ୍ୟକ୍ତଭାବ । କାର୍ଯ୍ୟ ଓ କାରଣରେ ସ୍ୱରୂପତଃ କୌଣସି ଭେଦ ନାହିଁ । ଆଉଥରେ ସେହି ଗିଲାସର କଥାଟି ବିଚାର କର । ଏହାର ଉପାଦାନଗୁଡ଼ିକ ଏବଂ ଏହାର ନିର୍ମାତାର ଇଚ୍ଛାର ସହଯୋଗରେ ଏହା ଉତ୍ପନ୍ନ । ଏହି ଦୁଇଟି ଏହାର କାରଣ ଏବଂ ଏହାର ମଧ୍ୟରେ ତାହା ବିଦ୍ୟମାନ । ନିର୍ମାତାର ଇଚ୍ଛାଶକ୍ତି ବର୍ତ୍ତମାନ ତାହା ମଧ୍ୟରେ କି ଭାବରେ ବିଦ୍ୟମାନ ? ସଂହତି-ଶକ୍ତିରୂପେ । ଏହି ଶକ୍ତି ନ ଥିଲେ ଏହାର ପ୍ରତ୍ୟେକ ପରମାଣୁ ପୃଥକ୍ ପୃଥକ୍ ହୋଇଯାଇଥାନ୍ତା । ତେବେ ବର୍ତ୍ତମାନ କାର୍ଯ୍ୟଟି କଅଣ ହେଲା ? ଏହା କାରଣ ସହିତ ଅଭେଦ, କେବଳ ଏହା ଆଉ ଏକ ରୂପ ଧରିଅଛି ମାତ୍ର । ଯେତେବେଳେ କାରଣ ପରିଣାମପ୍ରାପ୍ତ ହୁଏ, ସେତେବେଳେ ଏହି କାରଣ-ଟିକୁ କାର୍ଯ୍ୟ କୁହାଯାଏ । ଆମମାନଙ୍କର ଏହା ମନେ ରଖିବା ଉଚିତ । ଏହି ତତ୍ତ୍ୱଟିକୁ ଆମେ ଜୀବନର ଧାରଣା ସହିତ ପ୍ରଯୁକ୍ତ କଲେ ଦେଖିବାକୁ ପାଇବା ଯେ, ଜୀବାଣୁ-ଠାରୁ ସମ୍ପୂର୍ଣ୍ଣତମ ମାନବ ପର୍ଯ୍ୟନ୍ତ ସମୁଦାୟ ଶ୍ରେଣୀ ଅବଶ୍ୟ ସେହି ବିଶ୍ୱବ୍ୟାପିନୀ ପ୍ରାଣଶକ୍ତି ସହିତ ଅଭେଦ ।

କିନ୍ତୁ ଅମୃତତ୍ୱ ସମ୍ବନ୍ଧରେ ପ୍ରଶ୍ନର ମୀମାଂସା ଏପର୍ଯ୍ୟନ୍ତ ହେଲା ନାହିଁ । ଆମେମାନେ କ'ଣ ପାଇଲୁ ? ଆମେମାନେ ପୂର୍ବୋକ୍ତ ବିଚାରରୁ ଏତିକି ବୁଝିପାରିଲୁ ଯେ, ଜଗତରେ କିଛି ଧ୍ୱଂସ ପାଏ ନାହିଁ । ନୂତନ କିଛି ନାହିଁ—କିଛି ହେବ ନାହିଁ ମଧ୍ୟ । ସେହି ଏକପ୍ରକାରର ବସ୍ତୁଗୁଡ଼ିକ ଚକ୍ରପରି ପୁନଃ ପୁନଃ ଉପସ୍ଥିତ ହେଉଛି । ଜଗତରେ ଯାହା କିଛି ଅଛି, ସବୁ ତରଙ୍ଗାକାରରେ ଥରେ ଉଠୁଛି ଥରେ ପଡ଼ୁଛି । କୋଟି କୋଟି ବ୍ରହ୍ମାଣ୍ଡ ସୂକ୍ଷ୍ମତର ରୂପରୁ ପ୍ରସୂତ ହେଉଛନ୍ତି—ସ୍ଥୂଳ ରୂପ ଧାରଣ କରୁଛନ୍ତି, ପୁନଶ୍ଚ ଲୟ ହୋଇ ସୂକ୍ଷ୍ମଭାବ ଧାରଣ କରୁଛନ୍ତି । ପୁନର୍ବାର ସେହି ସୂକ୍ଷ୍ମ ଭାବରୁ ସେମାନଙ୍କର ସ୍ଥୂଳଭାବକୁ ଆଗମନ—କିଛିଦିନ ପାଇଁ ତଦବସ୍ଥାରେ ଅବସ୍ଥାନ, ପୁଣି ଧୀରେ ଧୀରେ ସେହି କାରଣକୁ ଗମନ । ତେବେ କ'ଣ ନଷ୍ଟ ହୋଇଯାଏ ? ରୂପ ଓ ଆକୃତି । ସେହି ରୂପଟି ନଷ୍ଟ ହୋଇଯାଏ, କିନ୍ତୁ ତାହା ପୁଣି ଆସେ । ଏକ ଭାବରେ କହିବାକୁ ଗଲେ, ଏହି ଶରୀର ମଧ୍ୟ ଅବିନାଶୀ । ଏକ ଦିଗରୁ ଦେହସବୁ ଏବଂ ରୂପସବୁ ମଧ୍ୟ ନିତ୍ୟ । ଆମେମାନେ ପଶା ଖେଳୁଛୁଁ । ମନେକର ୬, ୩, ୯

ପଡ଼ିଲା । ଆମେମାନେ ଆଉଥରେ ଖେଳିବାକୁ ଲାଗିଲୁ । ଏହିରୂପେ କ୍ରମାଗତ ଖେଳୁ ଖେଳୁ ଏପରି ଏକ ସମୟ ନିଶ୍ଚୟ ଆସିବ, ଯେତେବେଳେ ତାହା ଆଉଥରେ ୭, ୩, ୯ ଏହି କ୍ରମରେ ପଡ଼ିବ । ଆଉଥରେ ଖେଳ । ଆଉଥରେ ତାହା ପଡ଼ିବ; କିନ୍ତୁ ଅନେକ ସମୟ ପରେ । ମୁଁ ଏହି ଜଗତର ପ୍ରତ୍ୟେକ ପରମାଣୁକୁ ଗୋଟିଏ ଗୋଟିଏ ପଶାକାଠି ପଶାଖେଳର ସହିତ ତୁଳନା କରୁଛି । ଏହିଗୁଡ଼ିକୁ ହିଁ ବାରମ୍ବାର ଫୋପଡ଼ା ହେଉଛି; ଏମାନେ ବାରମ୍ବାର ନାନା ଭାବରେ ପଡ଼ୁଛନ୍ତି । ତୁମମାନଙ୍କ ସମ୍ମୁଖରେ ଯେଉଁ ସକଳ ପଦାର୍ଥ ରହିଛି, ସେଗୁଡ଼ିକ ପରମାଣୁଗୁଡ଼ିକର ଏକ ବିଶେଷ ପ୍ରକାର ସନ୍ନିବେଶରେ ଉତ୍ପନ୍ନ । ଏଠାରେ ଗିଲାସ, ଟେବୁଲ, ପାଣିର ମାଠିଆ ପ୍ରଭୃତି ରହିଛି । ଏହା ଏକପ୍ରକାରର ସମବାୟ—ପରମୁହୂର୍ତ୍ତରେ ହିଁ ଭାଙ୍ଗି-ଯାଇପାରେ; କିନ୍ତୁ ଏପରି ଏକ ସମୟ ଅବଶ୍ୟ ଆସିବ, ଯେତେବେଳେ ପୁଣି ଠିକ୍ ଏହି ସମବାୟଗୁଡ଼ିକ ଆସି ଉପସ୍ଥିତ ହେବେ—ତୁମେମାନେ ଠିକ୍ ଏହିଠାରେ ରହିବ, ଏହି ମାଠିଆ ଏବଂ ଅନ୍ୟାନ୍ୟ ଯାହା କିଛି ରହିଛି, ସେମାନେ ମଧ୍ୟ ଠିକ୍ ସେମାନଙ୍କର ଯଥାସ୍ଥାନରେ ରହିବେ, ଆଉ ଠିକ୍ ଏହି ବିଷୟରେ ଆଲୋଚନା ହେବ । ଅନନ୍ତ ଥର ଏହିପରି ହୋଇଛି ଏବଂ ଅନନ୍ତ ଥର ଏହିପରି ହେବ । ସ୍ଥୂଳ ଓ ବାହ୍ୟବସ୍ତୁ ସମ୍ବନ୍ଧରେ ଆଲୋଚନା କରି ଆମେମାନେ କଅଣ ବୁଝିଲୁ ?—ଏହି ସ୍ଥୂଳ ବସ୍ତୁଗଣଙ୍କର ନାନାପ୍ରକାର ସମବାୟ ଅନନ୍ତକାଳ ଧରି ପୁନଃପୁନଃ ହେଉଛି ।

ଏହା ସହିତ ଆଉଗୋଟିଏ ପ୍ରଶ୍ନ ଆସିବ—ଭବିଷ୍ୟତ ଜାଣିବା ସମ୍ଭବ କି ନା ? କେହି କେହି ହୁଏତ ଏପରି ଲୋକ ଦେଖିଛନ୍ତି, ଯେ କି କୌଣସି ବ୍ୟକ୍ତିର ଭୂତ-ଭବିଷ୍ୟତ ସବୁ କହିଦେଇପାରନ୍ତି । ଯଦି ଭବିଷ୍ୟତ କୌଣସି ନିୟମର ଅଧୀନ ନ ହୁଏ, ତେବେ ଭବିଷ୍ୟତ ସମ୍ବନ୍ଧରେ କହିବା କିପରି ସମ୍ଭବ ହେବ ? ଆମେ ଆଗରୁ ଦେଖିଛୁ ଭୂତକାଳର କାର୍ଯ୍ୟର ଫଳ ଭବିଷ୍ୟତରେ ପୁନରାବୃତ୍ତି ହୋଇଥାଏ । କିନ୍ତୁ ତାହାଦ୍ୱାରା ଆତ୍ମାର କୌଣସି କ୍ଷୟବୃଦ୍ଧି ନାହିଁ । ଚକ୍ରୀ ଦୋଳି କଥା ମନେକର । ଏହା ଅନବରତ ଘୂରୁଛି । ଦଳେ ଲୋକ ଆସୁଛନ୍ତି—ତାହାର ଗୋଟିଏ ଗୋଟିଏ ଆସନରେ ବସୁଛନ୍ତି । ସେ ଆସନ ବୁଲି ବୁଲି ପୁଣି ତଳକୁ ଆସୁଛି । ସେହି ଦଳ ଓହ୍ଲାଇଗଲେ—ଆଉଗୋଟିଏ ଦଳ ଆସିଲେ । କ୍ଷୁଦ୍ରତମ ଜନ୍ତୁଠାରୁ ଉଚ୍ଚତମ ମାନବ ପର୍ଯ୍ୟନ୍ତ ପ୍ରକୃତିର ପ୍ରତ୍ୟେକଟି ରୂପ ଯେପରି ଏହି ଗୋଟିଏ ଗୋଟିଏ ଦଳ ପରି, ଆଉ ପ୍ରକୃତି ଏହି ବୃହତ୍ ଚକ୍ରୀ ଦୋଳି ଓ ପ୍ରତ୍ୟେକ ଶରୀର ବା ରୂପ ଏହି ଚକ୍ରୀ ଦୋଳିର ଗୋଟିଏ ଗୋଟିଏ ଆସନରୂପ । ଗୋଟିଏ ଗୋଟିଏ ନୂତନ ଆତ୍ମାର ଦଳ ତାହା ଉପରେ ଆରୋହଣ କରୁଛନ୍ତି ଏବଂ ଯେତେଦିନଯାଏ ପୂର୍ଣ୍ଣତା ଲାଭ କରୁନାହାନ୍ତି, ସେତେଦିନ ଉଚ୍ଚରୁ ଉଚ୍ଚତର ପଥରେ ଯାଉଛନ୍ତି ଓ ଶେଷରେ ଏହି ଚକ୍ରୀ ଦୋଳିରୁ ବାହାରି ହୋଇ ଆସୁଛନ୍ତି; କିନ୍ତୁ ଚକ୍ରୀ ଦୋଳି ଅଟକୁ ନାହିଁ, ଏହା ଚାଲିଛି—ସର୍ବଦା ହିଁ ଅନ୍ୟମାନଙ୍କ ସକାଶେ ପ୍ରସ୍ତୁତ ଅଛି ।

ଏବଂ ଯେତେଦିନ ଶରୀର ଏହି ଚକ୍ରାଦୋଳ ଭିତରେ ରହିଅଛି, ସେତେଦିନ ନିଶ୍ଚିତ ଭାବରେ, ଗଣିତପରି ସଠିକ୍ ଭାବରେ କୁହାଯାଇପାରେ ଯେ, ତାହା କେଉଁଠାକୁ ଯିବ; କିନ୍ତୁ ଆତ୍ମା ସମ୍ବନ୍ଧରେ ତାହା କହିବା ଅସମ୍ଭବ । ଅତଏବ ପ୍ରକୃତିର ଭୂତ ଭବିଷ୍ୟତ ନିଶ୍ଚିତରୂପେ ଗଣିତଭଳି ସଠିକ୍ ଭାବରେ କୁହାଯାଇପାରେ ।

ତାହାହେଲେ ଆମେମାନେ ଜାଣିଲୁ—ଜଡ଼ ପରମାଣୁଗଣ ବର୍ତ୍ତମାନ ଯେଉଁ ଭାବରେ ସଂହତ ରହିଛନ୍ତି, ସମୟବିଶେଷରେ ପୁନର୍ବାର ସେମାନଙ୍କର ତଦ୍ରୂପ ସଂହତ ହୋଇଥାଏ । ଅନନ୍ତକାଳ ଧରି ଜଗତର ନିତ୍ୟତା ପ୍ରବାହରୂପେ ଚାଲିଛି; କିନ୍ତୁ ତାହାଦ୍ୱାରା ଆତ୍ମାର ଅମରତ୍ୱ ପ୍ରମାଣିତ ହେଲା ନାହିଁ । ଆମେ ଏହା ମଧ୍ୟ ଦେଖିଲୁ ଯେ କୌଣସି ଶକ୍ତିର ନାଶ ହୁଏ ନାହିଁ, ଜଡ଼ର ମଧ୍ୟ କଦାପି ନାଶ ହୁଏ ନାହିଁ । ତେବେ ଜଡ଼ର କଅଣ ହୁଏ ? ଏହାର ନାନା ପ୍ରକାର ପରିଣାମ ହୁଏ, ଅବଶେଷରେ ଏମାନେ ଯେଉଁଠାରୁ ଉତ୍ପନ୍ନ ହୋଇଥିଲେ, ସେଠାକୁ ପୁନର୍ବାର ଫେରି ଯାଆନ୍ତି । କୌଣସି ଗତି ସରଳରେଖାରେ ହୋଇପାରେ ନାହିଁ । ପ୍ରତ୍ୟେକ ବସ୍ତୁ ହିଁ ବୁଲି ବୁଲି ପୁଣି ପୂର୍ବସ୍ଥାନକୁ ପ୍ରତ୍ୟାବୃତ୍ତ ହୁଏ, କାରଣ ସରଳରେଖା ଅନନ୍ତଭାବରେ ବଢ଼ାଇ ଦେଲେ ତାହା ବୃତ୍ତରୂପେ ପରିଣତ ହୁଏ । ତାହା ହିଁ ଯଦି ହେଲା ତେବେ କୌଣସି ଆତ୍ମାର ଅନନ୍ତକାଳ ପାଇଁ ଅବନତି ହୋଇପାରେ ନାହିଁ । ପ୍ରତ୍ୟେକ ଜିନିଷ ହିଁ ବୃତ୍ତାକାରରେ ଘୂରି ପୁଣି ଶୀଘ୍ର ବା ବିଳମ୍ବରେ ତାହାର ଉତ୍ପତ୍ତିସ୍ଥାନରେ ଉପନୀତ ହୁଏ । ତୁମେ ମୁଁ, ଆଉ ଏହି ସକଳ ଆତ୍ମାଗଣ କଅଣ ? ଆମେମାନେ ପୂର୍ବେ କ୍ରମସଙ୍କୋଚ ଓ କ୍ରମବିକାଶତତ୍ତ୍ୱ ଆଲୋଚନା ସମୟରେ ଦେଖିଛୁଁ, ତୁମେ ଓ ମୁଁ ସେହି ବିରାଟ ବିଶ୍ୱବ୍ୟାପୀ ଚୈତନ୍ୟ ବା ପ୍ରାଣ ବା ମନର ଅଂଶବିଶେଷ; ଏହାର କ୍ରମସଙ୍କୁଚିତ ଅବସ୍ଥା । ଆମେମାନେ ପୁଣି ଘୂରି କ୍ରମବିକାଶ-ପ୍ରକ୍ରିୟା ଅନୁସାରେ ସେହି ବିଶ୍ୱବ୍ୟାପୀ ଚୈତନ୍ୟକୁ ଫେରିଯିବୁଁ—ସେହି ବିଶ୍ୱବ୍ୟାପୀ ଚୈତନ୍ୟ ହିଁ ଈଶ୍ୱର । ସେହି ବିଶ୍ୱବ୍ୟାପୀ ଚୈତନ୍ୟକୁ ଲୋକେ ପ୍ରଭୁ, ଭଗବାନ, ଖ୍ରୀଷ୍ଟ, ବୁଦ୍ଧ ବା ବ୍ରହ୍ମ କହିଥାଆନ୍ତି । ଜଡ଼ବାଦୀମାନେ ତାହାକୁ ଶକ୍ତିରୂପେ ଉପଲବ୍ଧି କରନ୍ତି ଏବଂ ଅଜ୍ଞେୟବାଦୀମାନେ ତାହାକୁ ସେହି ଅନନ୍ତ ଅନିର୍ବଚନୀୟ ସର୍ବାତୀତ ପଦାର୍ଥ ବୋଲି ଧାରଣା କରନ୍ତି । ତାହା ହିଁ ସେହି ବିଶ୍ୱବ୍ୟାପୀ ପ୍ରାଣ—ଏହା ହିଁ ବିଶ୍ୱବ୍ୟାପୀ ଚୈତନ୍ୟ—ଏହା ହିଁ ବିଶ୍ୱବ୍ୟାପିନୀ ଶକ୍ତି ଏବଂ ଆମେମାନେ ସମସ୍ତେ ଏହାର ଅଂଶସ୍ୱରୂପ ।

କିନ୍ତୁ ଆତ୍ମାର ଅମରତ୍ୱ-ପ୍ରମାଣ ଏହାଦ୍ୱାରା ପର୍ଯ୍ୟାପ୍ତ ହେଲା ନାହିଁ । ଏଥିରେ ମଧ୍ୟ ଅନେକ ସଂଶୟ ରହିଗଲା । କେଉଁ ଶକ୍ତିର ବିନାଶ ନାହିଁ, ଏ କଥା ଶୁଣିବାକୁ ଖୁବ୍ ଭଲ ସତ୍ୟ; କିନ୍ତୁ ବାସ୍ତବିକ୍ ଆମେମାନେ ଯେତେ ଶକ୍ତି ଦେଖିବାକୁ ପାଉଁ, ସବୁଗୁଡ଼ିକ ମିଶ୍ରଣୋତ୍ପନ୍ନ, ଯେତେ ରୂପ ଦେଖିବାକୁ ପାଉଁ, ତାହା ମଧ୍ୟ ମିଶ୍ରଣୋତ୍ପନ୍ନ । ଯଦି ତୁମେ ଶକ୍ତି ସମ୍ବନ୍ଧରେ ବିଜ୍ଞାନର ମତ ଧରି ତାହାକୁ କେତେଗୁଡ଼ିଏ ଶକ୍ତିର

ସମଷ୍ଟିମାତ୍ର କହ, ତେବେ ତୁମର ନିଜତ୍ୱ ରହେ କେଉଁଠି ? ଯାହା କିଛି ମିଶ୍ରଣରେ ଉତ୍ପନ୍ନ, ତାହା ଶୀଘ୍ର ବା ବିଳମ୍ବରେ ତାହାର ଉପାଦାନ କାରଣରେ ଲୟ ହେବ । ଯାହା କିଛି କାରଣର ସମଷ୍ଟିରେ ଉତ୍ପନ୍ନ, ତାହାର ହିଁ ମୃତ୍ୟୁ, ବିନାଶ ଅବଶ୍ୟମ୍ଭାବୀ; ଶୀଘ୍ର ବା ବିଳମ୍ବରେ ଏହା ବିଶ୍ଳିଷ୍ଟ ହେବ, ଭଗ୍ନ ହେବ, ଏହା ଉପାଦାନ ପଦାର୍ଥରେ ପରିଣତ ହେବ । ଆତ୍ମା କୌଣସି ଭୌତିକଶକ୍ତି ବା ଚିନ୍ତାଶକ୍ତି ନୁହେଁ । ତାହା ଚିନ୍ତାଶକ୍ତିର ସ୍ରଷ୍ଟା, କିନ୍ତୁ ତାହା ଚିନ୍ତାଶକ୍ତି ନୁହେଁ । ତାହା ଶରୀରର ଗଠନକର୍ତ୍ତା, କିନ୍ତୁ ତାହା ଶରୀର ନୁହେଁ । କାହିଁକି ? ଶରୀର କଦାପି ଆତ୍ମା ହୋଇପାରେ ନାହିଁ, କାରଣ ଏହା ଚୈତନ୍ୟବାନ୍ ନୁହେଁ । ମୃତ ବ୍ୟକ୍ତି ଅଥବା କଂସେଇ ଦୋକାନର ଖଣ୍ଡେ ମାଂସ କଦାପି ଚୈତନ୍ୟବାନ୍ ନୁହେଁ । ଆମେମାନେ 'ଚୈତନ୍ୟ' କହିଲେ କଅଣ ବୁଝୁଁ ? ପ୍ରତିକ୍ରିୟା ଶକ୍ତି ।

ଆଉ ଟିକିଏ ଗଭୀର ଭାବରେ ଏହି ତତ୍ତ୍ୱଟିକୁ ଆଲୋଚନା କରାଯାଉ । ସମ୍ମୁଖରେ ଏହି ମାଠିଆଟି ଆମେମାନେ ଦେଖୁଛୁଁ । ଏଠାରେ କ'ଣ ଘଟୁଛି ? ଏହି ମାଠିଆରୁ କେତେଗୁଡ଼ିଏ ଆଲୋକ-କିରଣ ଆସି ଆମମାନଙ୍କ ଆଖିରେ ପ୍ରବେଶ କରୁଛି । ସେଗୁଡ଼ିକ ଆମମାନଙ୍କର ଅକ୍ଷିଜାଲ (retina) ଉପରେ ଗୋଟିଏ ଚିତ୍ର ପ୍ରକ୍ଷେପ କରୁଛି । ଆଉ ସେହି ଛବି ଯାଇ ମୋର ମସ୍ତିଷ୍କରେ ଉପନୀତ ହେଉଛି । ଶରୀର-ବିଧାନବିତ୍‌ଗଣ ଯେଉଁ ସବୁକୁ ଅନୁଭବାତ୍ମକ ସ୍ନାୟୁ କହନ୍ତି, ତାହାଦ୍ୱାରା ଏହି ଚିତ୍ର ମସ୍ତିଷ୍କ ଭିତରକୁ ନୀତ ହୁଏ । ତଥାପି ସେତେବେଳେ ପର୍ଯ୍ୟନ୍ତ ଦର୍ଶନପ୍ରକ୍ରିୟା ସମ୍ପୂର୍ଣ୍ଣ ହୁଏ ନାହିଁ । କାରଣ ଏପର୍ଯ୍ୟନ୍ତ ଭିତରୁ କୌଣସି ପ୍ରତିକ୍ରିୟା ଆସି ନାହିଁ । ମସ୍ତିଷ୍କାଭ୍ୟନ୍ତରୀଣ ସ୍ନାୟୁକେନ୍ଦ୍ର ତାହାକୁ ମନ ନିକଟକୁ ନେଇଯିବ ଆଉ ମନ ତାହା ଉପରେ ପ୍ରତିକ୍ରିୟା କରିବ । ଏହି ପ୍ରତିକ୍ରିୟା ହେବାମାତ୍ରେ ଏହି ମାଠିଆ ଆମମାନଙ୍କ ସମ୍ମୁଖରେ ଭାସିଉଠିବ । ଗୋଟିଏ ସହଜ ଉଦାହରଣଦ୍ୱାରା ଏହା ଅନାୟାସରେ ଉପଲବ୍ଧ ହେବ । ମନେକର, ତୁମେ ଖୁବ୍ ଏକାଗ୍ର ହୋଇ ମୋ କଥା ଶୁଣୁଛ, ଆଉ ଗୋଟିଏ ମଶା ତୁମର ନାସିକାଗ୍ରରେ ଦଂଶନ କରୁଛି; କିନ୍ତୁ ତୁମେ ମୋ କଥା ଶୁଣିବାରେ ଏତେଦୂର ତନ୍ମୟ ଯେ, ତୁମେ ଏହି ମଶାର କାମୁଡ଼ା ଅନୁଭବ କରିପାରୁ ନାହିଁ । କିନ୍ତୁ ଏହାର କାରଣ କଅଣ ? ମଶାଟି ତୁମର ଚମଡ଼ାରୁ କେତେକାଂଶ ଦଂଶନ କରିଛି, ସେହି ସ୍ଥାନରେ କେତେଗୁଡ଼ିଏ ସ୍ନାୟୁ ରହିଛି, ଏହି ସ୍ନାୟୁଗୁଡ଼ିକ ମସ୍ତିଷ୍କକୁ ସମ୍ବାଦ ବହନ କରି ନେଇ ଯାଇଛନ୍ତି, ସେହି ବସ୍ତୁର ଚିତ୍ର ସେହିଠାରେ ରହିଛି; କିନ୍ତୁ ମନ ଅନ୍ୟ ଦିଗରେ ନିଯୁକ୍ତ ଥିବାରୁ ପ୍ରତିକ୍ରିୟା କରିନାହିଁ, ସୁତରାଂ ତୁମେ ମଶାର କାମୁଡ଼ା ଅନୁଭବ କରିନାହଁ । ଯେତେବେଳେ ଆମମାନଙ୍କ ସାମନାରେ କୌଣସି ନୂତନ ଚିତ୍ର ଆସେ, ଅଥଚ ମନ ଯଦି ପ୍ରତିକ୍ରିୟା ନ କରେ ଆମେମାନେ ତାହା ସମ୍ବନ୍ଧରେ କିଛି ଜାଣିପାରିବୁ ନାହିଁ, କିନ୍ତୁ ପ୍ରତିକ୍ରିୟା ହେଲେ, ଏହାର ଜ୍ଞାନ ଆସିବ—ସେତେବେଳେ ଆମେମାନେ ଏହା ଦେଖିବାକୁ

ଶୁଣିବାକୁ ଏବଂ ଅନୁଭବ କରିବାକୁ ସମର୍ଥ ହେବୁ । ଏହି ପ୍ରତିକ୍ରିୟା ସହିତ ଜ୍ଞାନର ପ୍ରକାଶ ହୋଇଥାଏ । ଅତଏବ ଆମେ ଜାଣିପାରିଲେ ଯେ, ଶରୀର କଦାପି ବସ୍ତୁକୁ ପ୍ରକାଶ କରିବାରେ ସମର୍ଥ ନୁହେଁ, କାରଣ ଆମେମାନେ ଦେଖୁଛୁ ଯେ, ଯେତେବେଳେ ମୋର ମନୋଯୋଗ ନ ଥିଲା, ସେତେବେଳେ ମୁଁ ଅନୁଭବ କରିନାହିଁ । ଏପରି ଘଟଣା ଜଣାଯାଇଛି, ଯେଉଁଥିରେ କୌଣସି ବିଶେଷ ଅବସ୍ଥାରେ, ଜଣେ ବ୍ୟକ୍ତି ଏପରି ଏକ ଭାଷାରେ କଥା କହିଛି, ଯେଉଁ ଭାଷା ସେ କେବେହେଲେ ଶିଖି ନାହିଁ । ପରେ ଅନୁସନ୍ଧାନ କରି ଜଣାଯାଇଛି, ସେହି ବ୍ୟକ୍ତି ଅତି ଶୈଶବାବସ୍ଥାରେ ଏପରି ଏକ ସମାଜରେ ବାସ କରୁଥିଲା, ଯେଉଁଠାରେ ଲୋକେ ସେହି ଭାଷା କହୁଥିଲେ । ତେଣୁ ସେହି ସଂସ୍କାର ତାହାର ମସ୍ତିଷ୍କ ମଧ୍ୟରେ ରହିଯାଇଛି । ସେହିଗୁଡ଼ିକ ତାହାଠାରେ ସଞ୍ଚିତ ଥିଲା, ତତ୍ପରେ କୌଣସି କାରଣରୁ ମନ ସେଥିରେ ପ୍ରତିକ୍ରିୟା କରିଥିଲା—ସେତେବେଳେ ଜ୍ଞାନ ଆସିଲା ଓ ସେହି ବ୍ୟକ୍ତି ସେହି ଭାଷା କହିବାକୁ ସମର୍ଥ ହେଲା । ଏଥିରୁ ଦେଖାଯାଉଛି କେବଳ ମନ ପର୍ଯ୍ୟାପ୍ତ ନୁହେଁ—ମନ ଅନ୍ୟର ହସ୍ତରେ ଯନ୍ତ୍ରମାତ୍ର । ଏହି ଲୋକଟିର ବାଲ୍ୟାବସ୍ଥାରେ ସେହି ଭାଷା ଗୂଢ଼ଭାବେ ତା' ମନରେ ଥିଲା—କିନ୍ତୁ ସେ ତାହା ଜାଣି ନ ଥିଲା; କିନ୍ତୁ ଅବଶେଷରେ ଏପରି ଏକ ସମୟ ଆସିଲା, ଯେତେବେଳେ ସେ ତାହା ଜାଣିପାରିଲା । ଏହାଦ୍ୱାରା ପ୍ରମାଣିତ ହେଉଛି ଯେ, ମନ ବ୍ୟତୀତ ଅନ୍ୟ କିଛି ଅଛି ଯାହା ଲୋକଟିର ଶୈଶବ ଅବସ୍ଥାରେ ଏହି ଶକ୍ତିର ବ୍ୟବହାର କରିନାହିଁ; କିନ୍ତୁ ଯେତେବେଳେ ସେ ବଡ଼ ହେଲା, ସେତେବେଳେ ସେ ତାହାର ବ୍ୟବହାର କଲା । ପ୍ରଥମ—ଏହି ଶରୀର; ତତ୍ପରେ ମନ ଅର୍ଥାତ୍ ଚିନ୍ତାର ଯନ୍ତ୍ର, ତତ୍ପରେ ଏହି ମନର ପଛଆଡ଼େ ସେହି ଆତ୍ମା । ଆଧୁନିକ ଦାର୍ଶନିକଗଣ, ଚିନ୍ତାକୁ ମସ୍ତିଷ୍କସ୍ଥ ପରମାଣୁର ବିଭିନ୍ନ ପ୍ରକାରର ପରିବର୍ତ୍ତନ ସହିତ ଅଭେଦ ବୋଲି ସ୍ୱୀକାର କରିଅଛନ୍ତି—ସୁତରାଂ ସେମାନେ ପୂର୍ବୋକ୍ତ ଘଟନାବଳୀର ବ୍ୟାଖ୍ୟାରେ ଅସମର୍ଥ, ତେଣୁ ସେମାନେ ସାଧାରଣତଃ ଏ ପ୍ରକାର ବ୍ୟାଖ୍ୟାକୁ ଏକାବେଳକେ ଅସ୍ୱୀକାର କରିଥାଆନ୍ତି ।

ଯାହାହେଉ, ମନ ସହିତ ମସ୍ତିଷ୍କର ବିଶେଷ ସମ୍ବନ୍ଧ ଅଛି ଏବଂ ଦେହର ମୃତ୍ୟୁ ହେଲେ ଏହା ଆଉ କାମ କରିପାରେ ନାହିଁ । ଆତ୍ମା ହିଁ ଏକମାତ୍ର ପ୍ରକାଶକ —ମନ ଏହାର ହସ୍ତରେ ଯନ୍ତ୍ରସ୍ୱରୂପ । ଚକ୍ଷୁରାଦି ଯନ୍ତ୍ରରେ ବିଷୟର ଚିତ୍ର ପଡ଼େ, ସେମାନେ ତାହା ଭିତରର ମସ୍ତିଷ୍କକେନ୍ଦ୍ରକୁ ନେଇଯାଆନ୍ତି—କାରଣ, ଏହା ତୁମମାନଙ୍କର ସ୍ମରଣ ରଖିବା ଉଚିତ ଯେ, ଚକ୍ଷୁ-କର୍ଣ୍ଣ ପ୍ରଭୃତି କେବଳ ଏହି ଚିତ୍ରର ଗ୍ରାହକ ମାତ୍ର, ଭିତରର ଯନ୍ତ୍ର, ଯଥା ମସ୍ତିଷ୍କକେନ୍ଦ୍ର ପ୍ରଭୃତି ପ୍ରକୃତ କାର୍ଯ୍ୟ କରିଥାନ୍ତି । ସଂସ୍କୃତ ଭାଷାରେ ଏହି ମସ୍ତିଷ୍କକେନ୍ଦ୍ରସକଳକୁ ଇନ୍ଦ୍ରିୟ କୁହାଯାଏ—ସେମାନେ ଏହି ଛାୟାଗୁଡ଼ିକୁ ଭିତରକୁ ନେଇଯାଆନ୍ତି, ମନ ପୁଣି ସେମାନଙ୍କୁ ଏହାର ଆଉ ଗୋଟିଏ ସ୍ତର ଚିତ୍ତ ନିକଟକୁ ଏବଂ ଚିତ୍ତ ସେମାନଙ୍କୁ ଆପଣାର ସିଂହାସନରେ ଅବସ୍ଥିତ

ମହା-ମହିମାନ୍ୱିତ ମହାରାଜ ଆତ୍ମାଙ୍କୁ ଏହା ପ୍ରଦାନ କରେ । ସେତେବେଳେ ସେ ଯାହା ଆବଶ୍ୟକ, ତାହା ଆଦେଶ କରନ୍ତି । ସେତେବେଳେ ମନ ମସ୍ତିଷ୍କକେନ୍ଦ୍ର ଅର୍ଥାତ୍ ଇନ୍ଦ୍ରିୟଗୁଡ଼ିକ ଉପରେ କାର୍ଯ୍ୟ କରେ, ପୁନଶ୍ଚ ଏମାନେ ସ୍ଥୂଳ ଶରୀର ଉପରେ କାର୍ଯ୍ୟ କରନ୍ତି । ମନୁଷ୍ୟର ଆତ୍ମା ବାସ୍ତବିକ ଏହି ସମୁଦାୟର ଅନୁଭବକର୍ତ୍ତା, ଶାସ୍ତା, ସ୍ରଷ୍ଟା ସବୁକିଛି । ଆମେମାନେ ଦେଖିଛୁଁ, ଆତ୍ମା ଶରୀର ନୁହେଁ, କିମ୍ବା ମନ ମଧ୍ୟ ନୁହେଁ, ଆତ୍ମା ଗୋଟିଏ ଯୌଗିକ ପଦାର୍ଥ ହୋଇପାରେ ନାହିଁ । କାହିଁକି ? କାରଣ, ଯାହା କିଛି ଯୌଗିକ ପଦାର୍ଥ, ତାହା ଆମମାନଙ୍କ ଦର୍ଶନର ବା କଳ୍ପନାର ବିଷୟ । ଯାହାକୁ ଆମେ ଦର୍ଶନ ବା କଳ୍ପନା କରିପାରୁ ନାହିଁ, ଯାହାକୁ ଆମେମାନେ ଧରିପାରୁ ନାହିଁ, ଯାହା ପଦାର୍ଥ ନୁହେଁ କି ଶକ୍ତି ମଧ୍ୟ ନୁହେଁ, ଯାହା କାର୍ଯ୍ୟ କିମ୍ବା କାରଣ କିଛି ନୁହେଁ ତାହା ଯୌଗିକ ହୋଇ ନ ପାରେ । ମନୋଜଗତ ପର୍ଯ୍ୟନ୍ତ ହିଁ ଯୌଗିକ ପଦାର୍ଥର ଅଧିକାର—ଚିନ୍ତାଜଗତ ଆହୁରି ବ୍ୟାପକ । ସମସ୍ତ ଯୌଗିକ ପଦାର୍ଥ ନିୟମ-ରାଜ୍ୟର ଅନ୍ତର୍ଗତ—ନିୟମ-ରାଜ୍ୟର ବାହାରେ ତାହା ରହିପାରେ ନାହିଁ, ଯଦି ରହେ ତେବେ ଯୌଗିକ ଅବସ୍ଥାରେ ନୁହେଁ ।

ଆହୁରି ପରିଷ୍କାର ଭାବରେ ବୁଝାଯାଉ । ଏହି ଗିଲାସ ଗୋଟିଏ ଯୌଗିକ ପଦାର୍ଥ—ତାହାର କାରଣଗୁଡ଼ିକ ମିଳିତ ହୋଇ ଏହି କାର୍ଯ୍ୟରୂପେ ପରିଣତ ହୋଇଛି । ସୁତରାଂ ଏହି କାରଣଗୁଡ଼ିକର ସଂହତିସ୍ୱରୂପ ଗିଲାସନାମକ ଯୌଗିକ ପଦାର୍ଥଟି କାର୍ଯ୍ୟକାରଣ-ନିୟମର ଅନ୍ତର୍ଗତ । ଏହିପରି ଯେଉଁଠାରେ କାର୍ଯ୍ୟକାରଣର ସମ୍ବନ୍ଧ ଦେଖାଯିବ, ସେଠାରେ ଯୌଗିକ ପଦାର୍ଥର ଅସ୍ତିତ୍ୱକୁ ସ୍ୱୀକାର କରିବାକୁ ହେବ; ତାହାର ବାହାରେ ଏହାର ଅସ୍ତିତ୍ୱର କଥା କହିବା ବାତୁଳତା ମାତ୍ର । ତାହାର ବାହାରେ କାର୍ଯ୍ୟକାରଣ-ସମ୍ବନ୍ଧ ଆଉ ଲାଗୁହୁଏ ନାହିଁ—ଆମେ ଯେଉଁ ଜଗତ୍ ସମ୍ବନ୍ଧରେ ଚିନ୍ତା ବା କଳ୍ପନା କରିପାରୁ, ଅଥବା ଯାହା ଦେଖି ଶୁଣିପାରୁ, ତାହାରି ଭିତରେ କେବଳ ଏହି ନିୟମ ଲାଗୁହୁଏ । ଆମେ ଆଉ ମଧ୍ୟ ଦେଖିଛୁ ଯେ, ଯାହା ଆମେମାନେ ଇନ୍ଦ୍ରିୟଦ୍ୱାରା ଅନୁଭବ ବା କଳ୍ପନା କରିପାରୁ, ତାହା ହିଁ ଆମମାନଙ୍କର ଜଗତ୍—ତାହା ବାହ୍ୟବସ୍ତୁ ହେଲେ ଆମେ ଇନ୍ଦ୍ରିୟଦ୍ୱାରା ପ୍ରତ୍ୟକ୍ଷ କରିପାରୁ, ଆଉ ଭିତରର ବସ୍ତୁ ହେଲେ ମାନସପ୍ରତ୍ୟକ୍ଷ ବା କଳ୍ପନା କରିପାରୁ; ଅତଏବ ଯାହା ଆମ ଦେହର ବାହାରେ, ତାହା ଇନ୍ଦ୍ରିୟମାନଙ୍କ ବାହାରେ ଏବଂ ଯାହା କଳ୍ପନାର ବାହାରେ ତାହା ଆମ ମନର ବାହାରେ, ସୁତରାଂ ଆମ ଜଗତର ବାହାରେ । ଅତଏବ କାର୍ଯ୍ୟକାରଣ-ସମ୍ବନ୍ଧର ବହିର୍ଦ୍ଦେଶରେ ସ୍ୱାଧୀନ ଶାସ୍ତା ଆତ୍ମା ରହିଛନ୍ତି; ଏବଂ ଏହି ଆତ୍ମା କାର୍ଯ୍ୟକାରଣନିୟମ-ଅନ୍ତର୍ଗତ ସମସ୍ତ ନିୟମନ କରୁଛନ୍ତି । ଏହି ଆତ୍ମା ନିୟମର ଅତୀତ, ସୁତରାଂ ସେ ମୁକ୍ତସ୍ୱଭାବ, ସେ କୌଣସି ପ୍ରକାର ମିଶ୍ରଣୋତ୍ପନ୍ନ ପଦାର୍ଥ ହୋଇପାରନ୍ତି ନାହିଁ—ଅଥବା କୌଣସି କାରଣର କାର୍ଯ୍ୟ

ହୋଇପାରନ୍ତି ନାହିଁ । ତାଙ୍କର କଦାପି ବିନାଶ ହୋଇପାରେ ନାହିଁ, କାରଣ 'ବିନାଶ'ର ଅର୍ଥ କୌଣସି ଯୌଗିକ ପଦାର୍ଥର ନିଜର ମୌଳିକ ଉପାଦାନକୁ ପ୍ରତ୍ୟାବର୍ତ୍ତନ । ସୁତରାଂ ଯାହା କଦାପି ସଂଯୋଗୋତ୍ପନ୍ନ ନୁହେଁ, ତାହାର ବିନାଶ କିପରି ହେବ ? ତାହାର ବିନାଶ ହୁଏ, ଏପରି କହିବା କେବଳ ପ୍ରଳାପ ମାତ୍ର ।

କିନ୍ତୁ ଏହାଦ୍ୱାରା ପ୍ରଶ୍ନର ଚୂଡ଼ାନ୍ତ ମୀମାଂସା ହେଲା ନାହିଁ । ଏଥର ଆମେ-ମାନେ ଅତି କଠିନ ବିଷୟରେ ସୂକ୍ଷ୍ମ ସମସ୍ୟାରେ ଉପନୀତ ହେଲୁ । ତୁମମାନଙ୍କ ମଧ୍ୟରୁ ଅନେକେ ହୁଏତ ଡରିଯିବେ । ଆମେମାନେ ଦେଖିଲୁଁ—ପଦାର୍ଥ, ଶକ୍ତି ଓ ଚିନ୍ତାରୂପକ କ୍ଷୁଦ୍ର ଜଗତର ଅତୀତ ବୋଲି ଆତ୍ମା ଗୋଟିଏ ମୌଳିକ ପଦାର୍ଥ; ସୁତରାଂ ତାହାର ବିନାଶ ଅସମ୍ଭବ । ଯାହାର ମୃତ୍ୟୁ ନାହିଁ, ତାହାର ଜୀବନ ମଧ୍ୟ ଅସମ୍ଭବ । ମୃତ୍ୟୁ ଓ ଜୀବନ ଗୋଟିଏ ଜିନିଷର ଦୁଇଟି ପାଖ । ମୃତ୍ୟୁର ଆଉ ଏକ ନାମ ଜୀବନ ଏବଂ ଜୀବନର ଅନ୍ୟ ଏକ ନାମ ମୃତ୍ୟୁ । ଅଭିବ୍ୟକ୍ତିର ଗୋଟିଏ ରୂପକୁ 'ଜୀବନ' କହୁଁ, ପୁଣି ତାହାର ଅପର ରୂପବିଶେଷକୁ 'ମୃତ୍ୟୁ' କହୁ । ତରଙ୍ଗର ଉତ୍ଥାନକୁ ଜୀବନ ଏବଂ ପତନକୁ ମୃତ୍ୟୁ ବୋଲି କହୁ । ଯଦି କୌଣସି ବସ୍ତୁ ମୃତ୍ୟୁର ଅତୀତ ହୁଏ, ତେବେ ଏହା ମଧ୍ୟ ବୁଝିବାକୁ ହେବ ଯେ ତାହା ଜନ୍ମର ମଧ୍ୟ ଅତୀତ । ପ୍ରଥମ ସିଦ୍ଧାନ୍ତଟିକୁ ବର୍ତ୍ତମାନ ସ୍ମରଣ କର—ମାନବାତ୍ମା ସେହି ସର୍ବବ୍ୟାପୀ ଶକ୍ତି ଅଥବା ଈଶ୍ୱରଙ୍କ ପ୍ରକାଶ ମାତ୍ର । ଆମେ ବର୍ତ୍ତମାନ ବୁଝିଲୁ ଯେ ଆତ୍ମା ଜନ୍ମ ମୃତ୍ୟୁ ଉଭୟର ଅତୀତ । ତୁମର କଦାପି ଜନ୍ମ ହୁଏ ନାହିଁ, ତୁମର କଦାପି ମୃତ୍ୟୁ ମଧ୍ୟ ହେବ ନାହିଁ । ଜନ୍ମମୃତ୍ୟୁ କ'ଣ—କାହାର ବା ତାହା ହୁଏ ? ଜନ୍ମମୃତ୍ୟୁ କେବଳ ଦେହର ହୁଏ—ଆତ୍ମାର ନୁହେଁ । ଆତ୍ମା ସର୍ବଦା ବିଦ୍ୟମାନ । ଏହା କିପରି ସମ୍ଭବ ? ଆମେମାନେ ଏଠାରେ ଏତେଗୁଡ଼ିଏ ଲୋକ ବସିଛୁଁ, ଆଉ ଆପଣ କହୁଛନ୍ତି ଆତ୍ମା ସର୍ବବ୍ୟାପୀ ! ନିଶ୍ଚୟ, ଯେଉଁ ଜିନିଷଟି ନିୟମର ବାହାରେ, କାର୍ଯ୍ୟକାରଣ-ସମ୍ବନ୍ଧର ବାହାରେ, ତାହାକୁ କିଏ ସୀମାବଦ୍ଧ କରି ରଖିପାରିବ ? ଏହି ଗିଲାସଟି ସସୀମ—ଏହା ସର୍ବବ୍ୟାପୀ ନୁହେଁ, କାରଣ, ଚତୁର୍ଦ୍ଦିଗସ୍ଥ ଜଡ଼ରାଶି ତାହାକୁ ସେହିଭଳି ବିଶେଷ ଆକୃତିବିଶିଷ୍ଟ ହୋଇ ରହିବାକୁ ବାଧ୍ୟ କରିଛି—ତାହାକୁ ସର୍ବବ୍ୟାପୀ ହେବାକୁ ଦେଉନାହିଁ । ଚତୁର୍ଦ୍ଦିଗସ୍ଥ ସମୁଦାୟ ବସ୍ତୁ ତାହା ଉପରେ ପ୍ରଭାବ ବିସ୍ତାର କରୁଛି— ଏହି କାରଣରୁ ତାହା ସୀମାବଦ୍ଧ ହୋଇ ରହିଛି । କିନ୍ତୁ ଯାହା ସମସ୍ତ ନିୟମର ବାହାରେ, ଯାହା ଉପରେ କାମ କରିବା ପାଇଁ କେହି ନାହିଁ, ତାହାକୁ କି ଉପାୟରେ ସୀମାବଦ୍ଧ କରି ରଖିବା ସମ୍ଭବ ? ତାହା ଅବଶ୍ୟ ସର୍ବବ୍ୟାପୀ ହେବ । ତୁମେ ଜଗତରେ ସର୍ବତ୍ର ରହିଛ । ତେବେ 'ଆମେ ଜନ୍ମିଲୁ, ପୁଣି ମରିବୁ'—ଏସବୁ କ'ଣ ? ଏସବୁ ଅଜ୍ଞାନର କଥା ମାତ୍ର—ବୁଝିବାର ଭ୍ରମ । ତୁମେ କେବେ ଜନ୍ମିନାହିଁ କି ମରିବ ନାହିଁ । ତୁମର ଜନ୍ମ ହୋଇନାହିଁ, ପୁନର୍ଜନ୍ମ ମଧ୍ୟ କଦାପି ହେବ ନାହିଁ । ଯିବାଆସିବାର ଅର୍ଥ କ'ଣ ? କେବଳ ପାଗଳାମି ମାତ୍ର । ତୁମେ

ସମ୍ବନ୍ଧ ରହିଛି । ତେବେ ଏହି ଯିବା ଆସିବାର ଅର୍ଥ କଅଣ ? ତାହା କେବଳ ସୂକ୍ଷ୍ମ ଶରୀର—ଯାହାକୁ ତୁମେମାନେ ମନ କହ, ତାହାର ନାନାବିଧ ପରିଣାମପ୍ରସୂତ ଭ୍ରମ ମାତ୍ର । ଯେପରିକି ଆକାଶରେ ଖଣ୍ଡେ ମେଘ ଭାସିଯାଉଛି । ତାହା ଯେତେବେଳେ ଗୃଲୁଥାଏ, ସେତେବେଳେ ମନେହୁଏ, ଆକାଶ ଯେପରି କି ଗୃଲୁଛି । ଅନେକ ସମୟରେ ତୁମେମାନେ ଦେଖିଥିବ—ଚନ୍ଦ୍ର ଉପର ଦେଇ ମେଘ ଗୃଲୁଛି । ସେତେବେଳେ ତୁମର ମନେହୁଏ ଚନ୍ଦ୍ର ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ଯାଉଛି; କିନ୍ତୁ ବାସ୍ତବିକ ମେଘ ହିଁ ଗୃଲୁଛି । ଆହୁରି ଦେଖ, ଯେତେବେଳେ ରେଲଗାଡ଼ିରେ ତୁମେମାନେ ଯାଅ, ସେତେବେଳେ ତୁମମାନଙ୍କର ମନେହୁଏ, ଦୁଇପଟର ଗଛପତ୍ର, ପଡ଼ିଆ ବିଲ ଯେପରି ଦୌଡ଼ୁଛି; ଯେତେବେଳେ ନୌକାରେ ଯାଅ, ସେତେବେଳେ ମନେହୁଏ, ପାଣି ଯେପରି ଯାଉଛି । ବାସ୍ତବିକ୍ ତୁମେ କେଉଁଠାକୁ ଯାଉନାହଁ କି ଆସୁନାହଁ—ତୁମର ଜନ୍ମ ହୋଇନାହିଁ, କେବେହେଲେ ମଧ୍ୟ ହେବ ନାହିଁ; ତୁମେ ଅନନ୍ତ, ସର୍ବବ୍ୟାପୀ, ସକଳ କାର୍ଯ୍ୟ-କାରଣ-ସମ୍ବନ୍ଧର ଅତୀତ, ନିତ୍ୟମୁକ୍ତ, ଅଜ ଓ ଅବିନାଶୀ । ଯେତେବେଳେ ଜନ୍ମ ନାହିଁ, ସେତେବେଳେ ବିନାଶର ପୁଣି ଅର୍ଥ କଅଣ ? ବୃଥା କଥା ମାତ୍ର—ତୁମେମାନେ ସମସ୍ତେ ସର୍ବବ୍ୟାପୀ ।

କିନ୍ତୁ ନିର୍ଦ୍ଦୋଷ ଯୁକ୍ତିସଙ୍ଗତ ସିଦ୍ଧାନ୍ତ ଲାଭ କରିବାକୁ ହେଲେ, ଆମମାନଙ୍କୁ ଆଉ ଏକ ସୋପାନ ଅଗ୍ରସର ହେବାକୁ ହେବ । ମଝି ରାସ୍ତାରେ ବସିଗଲେ ଚଳିବ ନାହିଁ । ତୁମେମାନେ ଦାର୍ଶନିକ, ତୁମେମାନେ ଯଦି ବିଚାର-ପଥରେ କିଛିଦୂର ଅଗ୍ରସର ହୋଇ କହ, 'ଆଉ ପାରୁ ନାହିଁ, କ୍ଷମା କରନ୍ତୁ,' ତାହା ତୁମମାନଙ୍କ ପକ୍ଷରେ ଶୋଭନୀୟ ନୁହେଁ । ଆମେ ଯଦି ସମୁଦାୟ ନିୟମର ଅତୀତ, ତାହାହେଲେ ନିଶ୍ଚୟ ଆମେମାନେ ସର୍ବଜ୍ଞ ନିତ୍ୟାନନ୍ଦସ୍ୱରୂପ; ସମସ୍ତ ଜ୍ଞାନ ନିଶ୍ଚୟ ଆମମାନଙ୍କ ଭିତରେ ରହିଛି, ସର୍ବପ୍ରକାର ଶକ୍ତି, ସର୍ବପ୍ରକାର କଲ୍ୟାଣ ଆମମାନଙ୍କ ମଧ୍ୟରେ ନିହିତ ଅଛି । ତୁମେମାନେ ସମସ୍ତେ ଅବଶ୍ୟ ସର୍ବଜ୍ଞ, ସର୍ବବ୍ୟାପୀ; କିନ୍ତୁ ଏଭଳି ପୁରୁଷ କଅଣ ଜଗତରେ ବହୁତ ଥାଇପାରନ୍ତି ? କୋଟି କୋଟି ସର୍ବବ୍ୟାପୀ ପୁରୁଷ କିପରି ରହିବେ ? କେବେ ରହିପାରନ୍ତି ନାହିଁ । ତେବେ କଅଣ ସିଦ୍ଧାନ୍ତ ? ବାସ୍ତବିକ ଜଣେ ଅଛନ୍ତି, ଗୋଟିଏ ଆତ୍ମା ରହିଛି ଏବଂ ସେହି ଆତ୍ମା ତୁମେ ନିଜେ । ଏହି କ୍ଷୁଦ୍ର ପ୍ରକୃତିର ପଶ୍ଚାତ୍ତରେ ସେହି ଗୋଟିଏ ଆତ୍ମା । ଏକ ମାତ୍ର ପୁରୁଷ ଅଛନ୍ତି —ଯେ କି ଏକମାତ୍ର ସତ୍ତା, ଯେ ନିତ୍ୟାନନ୍ଦସ୍ୱରୂପ, ଯେ ସର୍ବବ୍ୟାପୀ, ସର୍ବଜ୍ଞ, ଜନ୍ମ-ମୃତ୍ୟୁରହିତ । ତାଙ୍କ ଆଜ୍ଞାରେ ଆକାଶ ବିସ୍ତୃତ ହୋଇ ରହିଛି, ତାଙ୍କ ଆଜ୍ଞାରେ ବାୟୁ ବହୁଛି, ସୂର୍ଯ୍ୟ କିରଣ ଦେଉଛି, ସମସ୍ତେ ପ୍ରାଣଧାରଣ କରୁଛନ୍ତି । ସେ ପ୍ରକୃତିର ଭିତ୍ତିସ୍ୱରୂପ; ପ୍ରକୃତି ସେହି ସତ୍ୟସ୍ୱରୂପଙ୍କ ଉପରେ ପ୍ରତିଷ୍ଠିତ ବୋଲି ସତ୍ୟ ପ୍ରତୀୟମାନ ହେଉଛି । ସେ ତୁମ ଆତ୍ମାର ମଧ୍ୟ ଭିତ୍ତିସ୍ୱରୂପ । କେବଳ ତାହା ନୁହେଁ, ତୁମେ ହିଁ ସେ । ତୁମେ ତାଙ୍କ ସହିତ ଅଭେଦ । ଯେଉଁଠାରେ ଦୁଇ—

ସେହିଠାରେ ହିଁ ଭୟ, ସେହିଠାରେ ବିପଦ, ସେହିଠାରେ ହିଁ ଦ୍ୱନ୍ଦ୍ୱ ବିବାଦ। ଯେତେବେଳେ ସମସ୍ତ ଏକ, ସେତେବେଳେ କାହାକୁ ଘୃଣା କରିବ, କାହା ସହିତ ଦ୍ୱନ୍ଦ୍ୱ କରିବ ? ଯଦି ସେ ହିଁ ସବୁକିଛି, ସେତେବେଳେ କାହା ସହିତ ଯୁଦ୍ଧ କରିବ ? ଏହାଦ୍ୱାରା ଜୀବନସମସ୍ୟାର ମୀମାଂସା ହୋଇଯାଏ, ଏହାଦ୍ୱାରା ବସ୍ତୁସ୍ୱରୂପ ବ୍ୟାଖ୍ୟାତ ହୋଇଯାଏ। ଏହା ହିଁ ସିଦ୍ଧି ବା ପୂର୍ଣ୍ଣତା ଏବଂ ଏହା ହିଁ ଈଶ୍ୱର। ଯେତେବେଳେ ତୁମେ ବହୁ ଦେଖୁଛ, ସେତେବେଳେ ବୁଝିବ, ତୁମେ ଅଜ୍ଞାନ ଭିତରେ ରହିଛ।* ଏହି ବହୁତ୍ୱପୂର୍ଣ୍ଣ ଜଗତ ଭିତରେ, ଏହି ପରିବର୍ତ୍ତନଶୀଳ ଜଗତ ଭିତରେ ଅବସ୍ଥିତ ନିତ୍ୟ ପୁରୁଷଙ୍କୁ ଯେ ନିଜର ଆତ୍ମାର ଆତ୍ମା ବୋଲି ଜାଣିପାରନ୍ତି, ନିଜର ସ୍ୱରୂପ ବୋଲି ଜାଣିପାରନ୍ତି, ସେ ହିଁ ମୁକ୍ତ, ସେ ପୂର୍ଣ୍ଣାନନ୍ଦରେ ବିହ୍ୱଳ ହୋଇ ରହନ୍ତି, ସେ ସେହି ପରମପଦ ଲାଭ କରିଛନ୍ତି। ଅତଏବ ଜାଣିରଖ—ତୁମେ ହିଁ ସେ, ତୁମେ ଜଗତର ଈଶ୍ୱର—'ତତ୍ତ୍ୱମସି'। ଆଉ ଆମମାନଙ୍କର ଏହି ଯେଉଁ ବିଭିନ୍ନ ଧାରଣା, ଯଥା—ମୁଁ ପୁରୁଷ ବା ସ୍ତ୍ରୀ, ଦୁର୍ବଳ ବା ସବଳ, ସୁସ୍ଥ ବା ଅସୁସ୍ଥ, ଅଥବା ମୁଁ ଅମୁକକୁ ଘୃଣା କରେ ବା ଅମୁକକୁ ଭଲ ପାଏ, ମୋର କ୍ଷମତା ଅଳ୍ପ ଅଥବା ମୋର ଅନେକ ଶକ୍ତି ଅଛି, ଏଗୁଡ଼ିକ ଭ୍ରମମାତ୍ର। ଏସବୁ ଭାବ ପରିତ୍ୟାଗ କର। ତୁମକୁ କିଏ ଦୁର୍ବଳ କରିପାରେ ? ତୁମକୁ କିଏ କ୍ଷତି କରିପାରେ ? ଏକମାତ୍ର ତୁମେ ହିଁ ଜଗତରେ ବିରାଜମାନ। କିଏ ତୁମକୁ ଭୟ ଦେଖାଇପାରେ ? ଅତଏବ ଉଠ, ମୁକ୍ତ ହୁଅ। ଜାଣି ରଖ, ଯେ କୌଣସି ଚିନ୍ତା ବା ବାକ୍ୟ ଆମମାନଙ୍କୁ ଦୁର୍ବଳ କରେ, ତାହା ହିଁ ଏକମାତ୍ର ଅଶୁଭ; ଯାହା କିଛି ମନୁଷ୍ୟକୁ ଦୁର୍ବଳ କରେ, କ୍ଷତି କରେ, ଏକମାତ୍ର ତାହା ହିଁ ଅଶୁଭ; ତାହାକୁ ପରିହାର କରିବାକୁ ହେବ। କି'ଣ ତୁମକୁ କ୍ଷତି କରିପାରେ ? ଯଦି ଶତ ଶତ ସୂର୍ଯ୍ୟ ସ୍ଥାନଚ୍ୟୁତ ହୁଅନ୍ତି, ଯଦି କୋଟି କୋଟି ଚନ୍ଦ୍ର ଗୁଣ୍ଡ ହୋଇଯାଆନ୍ତି, କୋଟି କୋଟି ବ୍ରହ୍ମାଣ୍ଡ ଯଦି ବିନଷ୍ଟ ହୋଇଯାଆନ୍ତି, ତାହାହେଲେ ତୁମର ସେଥିରେ କ'ଣ ଯାଏ ଆସେ ? ଅଚଳବତ୍ ଦଣ୍ଡାୟମାନ ହୁଅ, ତୁମେ ଅବିନାଶୀ। ତୁମେ ହିଁ ଜଗତର ଆତ୍ମା, ଈଶ୍ୱର। କହ 'ଶିବୋଽହଂ ଶିବୋଽହଂ', 'ମୁଁ ପୂର୍ଣ୍ଣ ସଚ୍ଚିଦାନନ୍ଦ'। ସିଂହ ଯେପରି ପିଞ୍ଜରା ଭାଙ୍ଗିଦିଏ, ସେହିପରି ଏହି ବନ୍ଧନ ଛିଣ୍ଡାଇ ଫୋପାଡ଼ିଦିଅ ଓ ଅନନ୍ତ କାଳ ପାଇଁ ମୁକ୍ତ ହୋଇଯାଅ। କିଏ ତୁମକୁ ଭୟ ଦେଖାଇପାରିବ ? କିଏ ତୁମକୁ ବାନ୍ଧି ରଖିପାରିବ ? କେବଳ ଅଜ୍ଞାନ, କେବଳ ଭ୍ରମ—ଆଉ କିଛି ମାତ୍ର ତୁମକୁ ବାନ୍ଧି ରଖିପାରିବ ନାହିଁ, ତୁମେ ଶୁଦ୍ଧସ୍ୱରୂପ, ନିତ୍ୟାନନ୍ଦମୟ।

ନିର୍ବୋଧଗଣ ଉପଦେଶ ଦେଇଥାଆନ୍ତି—ତୁମେ ପାପୀ, ଅତଏବ ଗୋଟିଏ କୋଣରେ ବସି ହାୟ ହାୟ କର। ଏଭଳି କହିବା ନିର୍ବୋଧତା—ଦୁଷ୍ଟାମୀ

---

* ବୃହଦାରଣ୍ୟକ ଉପ., ୪।୪।୧୯; କଠ ଉପ., ୨।୧।୧୧

ଓ ଶଠତା । ତୁମେ ସମସ୍ତେ ଈଶ୍ୱର । ତୁମେ କଅଣ ଈଶ୍ୱରଙ୍କୁ ଦେଖୁନାହଁ ଓ ତାଙ୍କୁ ହିଁ ମନୁଷ୍ୟ ବୋଲି କହୁନାହଁ ? ଅତଏବ ଯଦି ତୁମେମାନେ ସାହସୀ ହୁଅ, ତେବେ ଏହି ବିଶ୍ୱାସ ଉପରେ ଦଣ୍ଡାୟମାନ ହୋଇ ସମୁଦାୟ ଜୀବନକୁ ଏହି ଛାଞ୍ଚରେ ଗଠନ କର । ଯଦି କୌଣସି ବ୍ୟକ୍ତି ତୁମର ବେକ କାଟିବାକୁ ଆସିବ, ତାହାକୁ 'ନାହିଁ' କହି ନାହିଁ, କାରଣ ତୁମେ ନିଜେ ହିଁ ନିଜର ବେକ କାଟୁଛ । କୌଣସି ଗରିବ ଲୋକର କିଛି ଉପକାର ଯଦି କର, ତାହାହେଲେ ବିନ୍ଦୁମାତ୍ର ଅହଙ୍କୃତ ହୁଅ ନାହିଁ । ଏହା ତୁମ ପକ୍ଷରେ ଉପାସନା ମାତ୍ର, ଏଥିରେ ତ ଅହଙ୍କାରର ବିଷୟ କିଛି ନାହିଁ । ସମୁଦାୟ ଜଗତ କଅଣ ତୁମେ ନୁହଁ ? କେଉଁଠାରେ କିଛି ଏପରି ଜିନିଷ ଅଛି, ଯାହା ତୁମେ ନୁହଁ ? ତୁମେ ଜଗତର ଆତ୍ମା । ତୁମେ ହିଁ ସୂର୍ଯ୍ୟ, ଚନ୍ଦ୍ର, ତାରା । ତୁମେ ହିଁ ସମୁଦାୟ ଜଗତ୍ । କାହାକୁ ଘୃଣା କରିବ ବା କାହା ସହିତ ଦ୍ୱନ୍ଦ୍ୱ କରିବ ? ଅତଏବ ଜାଣିରଖ, ତୁମେ ହିଁ ସେହି ପରମାତ୍ମା—ଆଉ ସମୁଦାୟ ଜୀବନ ଏହି ଛାଞ୍ଚରେ ଗଠନ କର । ଯେଉଁ ବ୍ୟକ୍ତି ଏହି ତତ୍ତ୍ୱ ଜ୍ଞାତ ହୋଇ ତାହାର ସମୁଦାୟ ଜୀବନ ଏହି ଭାବରେ ଗଠନ କରିବ, ସେ ଆଉ କଦାପି ଅନ୍ଧକାର ଭିତରେ ଲୋଟି ପଡ଼ିବ ନାହିଁ ।

# ବହୁତ୍ୱରେ ଏକତ୍ୱ

[ ଲଣ୍ଡନରେ ପ୍ରଦତ୍ତ ବକ୍ତୃତା, ୩ ନଭେମ୍ବର, ୧୮୯୬ ]

ପରାଞ୍ଚି ଖାନି ବ୍ୟତୃଣତ୍ ସ୍ୱୟମ୍ଭୂସ୍ତସ୍ମାତ୍ ପରାଙ୍ ପଶ୍ୟତି ନାନ୍ତରାତ୍ମନ୍ ।
କଶ୍ଚିଦ୍ଧୀରଃ ପ୍ରତ୍ୟଗାତ୍ମାନମୈକ୍ଷଦାବୃତ୍ତଚକ୍ଷୁରମୃତତ୍ୱମିଚ୍ଛନ୍ ॥

(କଠୋପନିଷଦ୍ ୨।୧।୧)

—ସ୍ୱୟଂଭୂ ସୃଷ୍ଟିକର୍ତ୍ତା ଇନ୍ଦ୍ରିୟମାନଙ୍କୁ ବହିର୍ମୁଖ କରି ଦେଇଛନ୍ତି । ସେଥିପାଇଁ ମନୁଷ୍ୟ ବାହାର ଆଡ଼କୁ—ବିଷୟ ପ୍ରତି—ଦୃଷ୍ଟିପାତ କରେ, ଅନ୍ତରାତ୍ମାକୁ ଦେଖେ ନାହିଁ । କୌଣସି କୌଣସି ଜ୍ଞାନୀ ବ୍ୟକ୍ତି ବିଷୟରୁ ନିବୃତ୍ତଚକ୍ଷୁ ଅର୍ଥାତ୍ ସଂଯତେନ୍ଦ୍ରିୟ ଏବଂ ଅମୃତତ୍ୱ ଲାଭ କରିବାକୁ ଇଚ୍ଛୁକ ହୋଇ ପ୍ରତ୍ୟକ୍ ଆତ୍ମାକୁ ଦର୍ଶନ କରିଥାଆନ୍ତି । ଆମେମାନେ ଦେଖିଛୁ, ବେଦର ସଂହିତାଭାଗରେ ଓ ଅନ୍ୟାନ୍ୟ ଗ୍ରନ୍ଥରେ ଜଗତ ସମ୍ବନ୍ଧରେ ଯେଉଁ ତତ୍ତ୍ୱାନୁସନ୍ଧାନ ହେଉଥିଲା, ସେଥିରେ ବହିଃପ୍ରକୃତିର ତତ୍ତ୍ୱ ଆଲୋଚନା କରି ଜଗତ୍-କାରଣର ଅନୁସନ୍ଧାନ ପାଇଁ ଚେଷ୍ଟା ହୋଇଥିଲା, ତା'ପରେ ଏହି ସତ୍ୟାନୁସନ୍ଧିତ୍ସୁଗଣଙ୍କ ହୃଦୟରେ ଏକ ନୂତନ ଆଲୋକ ପ୍ରକାଶିତ ହେଲା । ସେମାନେ ବୁଝିଲେ ଯେ, ବହିର୍ଜଗତରେ ଅନୁସନ୍ଧାନଦ୍ୱାରା ବସ୍ତୁର ପ୍ରକୃତ ସ୍ୱରୂପ ଜାଣିବାର ଉପାୟ ନାହିଁ । ତାହାହେଲେ କିପରି ଜାଣିହେବ ? ବାହାରୁ ଦୃଷ୍ଟି ଫେରାଇ ଆଣି ଅର୍ଥାତ୍ ଭିତରକୁ ଦୃଷ୍ଟି ଦେଇ । ପୁନଶ୍ଚ ଆତ୍ମାର ବିଶେଷଣରୂପେ ଯେଉଁ 'ପ୍ରତ୍ୟକ୍' ଶବ୍ଦ ବ୍ୟବହୃତ ହୋଇଛି, ତାହା ବିଶେଷ ଭାବବ୍ୟଞ୍ଜକ । 'ପ୍ରତ୍ୟକ୍' ଅର୍ଥ ଯେ ଭିତର ଆଡ଼କୁ ଯାଇଛନ୍ତି । ଆମମାନଙ୍କର ଅନ୍ତରତମ ବସ୍ତୁ, ହୃଦୟକେନ୍ଦ୍ର, ସେହି ପରମବସ୍ତୁ, ଯାହାଙ୍କଠାରୁ ଯେପରି ସମୁଦାୟ ବହିର୍ଗତ ହୋଇଛି, ସେ ଯେପରି ମଧ୍ୟବର୍ତ୍ତୀ ସୂର୍ଯ୍ୟ—ଏବଂ ଆତ୍ମା, ମନ, ଶରୀର, ଇନ୍ଦ୍ରିୟ ଓ ଆଉ ଯାହା କିଛି ଆମମାନଙ୍କର ଅଛି, ସବୁ କିଛି ଯେପରି ତାଙ୍କର କିରଣଜାଲସ୍ୱରୂପ ।

ପରାଚଃ କାମାନନୁଯନ୍ତି ବାଲାସ୍ତେ ମୃତ୍ୟୋର୍ଯନ୍ତି ବିତତସ୍ୟ ପାଶମ୍ ।
ଅଥ ଧୀରା ଅମୃତତ୍ୱଂ ବିଦିତ୍ୱା ଧ୍ରୁବମଧ୍ରୁବେଷ୍ୱିହ ନ ପ୍ରାର୍ଥୟନ୍ତେ ॥

(କଠୋପନିଷଦ୍, ୨।୧।୨)

—ବାଳକବୁଦ୍ଧି ବ୍ୟକ୍ତିଗଣ ବାହାରର କାମ୍ୟ ବସ୍ତୁର ଅନୁସରଣ କରନ୍ତି । ସେଥିପାଇଁ ସେମାନେ ସର୍ବତୋବ୍ୟାପ୍ତ ମୃତ୍ୟୁପାଶରେ ଆବଦ୍ଧ ହୁଅନ୍ତି, କିନ୍ତୁ ଜ୍ଞାନୀମାନେ ଅମୃତତ୍ୱକୁ ଜାଣି ଅନିତ୍ୟ ବସ୍ତୁସମୂହ ମଧ୍ୟରେ ନିତ୍ୟବସ୍ତୁର ଅନୁସନ୍ଧାନ କରନ୍ତି ନାହିଁ । ଏଠାରେ ମଧ୍ୟ ସେହି ଭାବଟି ପରିସ୍ଫୁଟ ହେଲା ଯେ, ସସୀମବସ୍ତୁପୂର୍ଣ୍ଣ ବାହ୍ୟଜଗତରେ ଅନନ୍ତକୁ ଦେଖିବାର ଚେଷ୍ଟା କରିବା ବୃଥା—ଅନନ୍ତକୁ ଅନନ୍ତରେ

ହିଁ ଅନ୍ୱେଷଣ କରିବାକୁ ହେବ ଏବଂ ଆମମାନଙ୍କର ଅନ୍ତର୍ବର୍ତ୍ତୀ ଆତ୍ମା ହିଁ ଏକମାତ୍ର ଅନନ୍ତ ବସ୍ତୁ । ଶରୀର, ମନ ଅର୍ଥାତ୍ ଯେଉଁ ଜଗତ୍‌ପ୍ରପଞ୍ଚ ଆମେମାନେ ଦେଖୁଅଛୁ ଅଥବା ଆମମାନଙ୍କର ଚନ୍ତାରାଶି—ତାହା ଅନନ୍ତ ହୋଇ ନ ପାରେ । ସେମାନଙ୍କର କାଳରେ ଉତ୍ପତ୍ତି ଏବଂ କାଳରେ ବିଲୟ । ଯେଉଁ ଦ୍ରଷ୍ଟା ସାକ୍ଷୀ ପୁରୁଷ ଏ ସବୁକୁ ଦେଖୁଛନ୍ତି ଅର୍ଥାତ୍ ମନୁଷ୍ୟର ଆତ୍ମା, ସେ ସବୁବେଳେ ଜାଗ୍ରତ, ସେ ଏକମାତ୍ର ଅନନ୍ତ—ଜଗତର କାରଣସ୍ୱରୂପ, ଅନନ୍ତକୁ ଅନୁସନ୍ଧାନ କରିବାକୁ ହେଲେ ଆମ-ମାନଙ୍କୁ ଅନନ୍ତ ଆତ୍ମାଙ୍କ ନିକଟକୁ ଯିବାକୁ ହେବ—ସେହିଠାରେ ହିଁ ଆମେମାନେ ତାଙ୍କୁ ଦେଖିପାରିବା ।

ଯଦେବେହ ତଦମୁତ୍ର ଯଦମୁତ୍ର ତଦନ୍ୱିହ ।
ମୃତ୍ୟୋଃ ସ ମୃତ୍ୟୁମାପ୍ନୋତି ଯ ଇହ ନାନେବ ପଶ୍ୟତି ।
(କଠୋପନିଷଦ୍, ୨।୧।୧୦)

—ଯେ ଏହିଠାରେ, ସେ ମଧ୍ୟ ସେଠାରେ; ଯେ ସେଠାରେ ସେ ମଧ୍ୟ ଏଠାରେ । ଯେ ଏଠାରେ 'ନାନା'ରୂପ ଦେଖନ୍ତି, ସେ ମୃତ୍ୟୁ ପରେ ମୃତ୍ୟୁକୁ ପ୍ରାପ୍ତ ହୁଅନ୍ତି । ସଂହିତାଭାଗରେ ଦେଖିବାକୁ ମିଳେ, ଆର୍ଯ୍ୟମାନଙ୍କର ସ୍ୱର୍ଗକୁ ଯିବାର ବିଶେଷ ଇଚ୍ଛା । ଯେତେବେଳେ ସେମାନେ ଜଗତ୍-ପ୍ରପଞ୍ଚରେ ବିରକ୍ତ ହୋଇ ଉଠିଲେ, ସେତେବେଳେ ସ୍ୱାଭାବିକଭାବେ ସେମାନଙ୍କର ଏପରି ଗୋଟିଏ ସ୍ଥାନକୁ ଯିବାକୁ ଇଚ୍ଛା ହେଲା, ଯେଉଁଠାରେ ଦୁଃଖସମ୍ପର୍କଶୂନ୍ୟ କେବଳ ସୁଖ । ଏହି ସ୍ଥାନଗୁଡ଼ିକର ନାମ ହେଉଛି ସ୍ୱର୍ଗ—ଯେଉଁଠାରେ କେବଳ ଆନନ୍ଦ, ଶରୀର ଅଜର ଅମର, ମନ ମଧ୍ୟ ପରିପୂର୍ଣ୍ଣ, ସେମାନେ ସେଠାରେ ଚିରକାଳ ପିତୃଗଣଙ୍କ ସହିତ ବାସ କରିବେ । କିନ୍ତୁ ଦାର୍ଶନିକ ଚିନ୍ତାର ଅଭ୍ୟୁଦୟରେ ଏହିପରି ସ୍ୱର୍ଗର ଧାରଣା ଅସଙ୍ଗତ ଓ ଅସମ୍ଭବ ବୋଲି ବୋଧହେବାକୁ ଲାଗିଲା । 'ଅନନ୍ତ କାଳ ସ୍ଥାନ ବିଶେଷରେ ବିଦ୍ୟମାନ'—ଏହି ବାକ୍ୟ ଯେ ସ୍ୱବିରୋଧୀ ! ବରଂ କାଳରେ ଦେଶର ଉତ୍ପତ୍ତି ଓ ବିନାଶ । ସୁତରାଂ ସେମାନଙ୍କୁ ଅନନ୍ତ ସ୍ୱର୍ଗର ଧାରଣା ତ୍ୟାଗ କରିବାକୁ ହେଲା । ସେମାନେ କ୍ରମଶଃ ବୁଝିଲେ, ଏହି ସକଳ ସ୍ୱର୍ଗବାସୀ ଦେବଗଣ ଏକ ସମୟରେ ଏହି ଜଗତରେ ମନୁଷ୍ୟ ଥିଲେ, ପରେ ହୁଏତ କୌଣସି ସତ୍‌କର୍ମବଶତଃ ଦେବତା ହୋଇଛନ୍ତି; ସୁତରାଂ ଏହି ଦେବତ୍ୱ ଅବସ୍ଥାବିଶେଷ ଓ ବିଭିନ୍ନ ପଦର ନାମମାତ୍ର । କୌଣସି ବୈଦିକ ଦେବତା ଏକ ସ୍ଥାୟୀ ବ୍ୟକ୍ତିବିଶେଷ ନୁହନ୍ତି ।

ଇନ୍ଦ୍ର ବା ବରୁଣ କୌଣସି ବ୍ୟକ୍ତିବିଶେଷଙ୍କର ନାମ ନୁହେଁ । ଏହା ବିଭିନ୍ନ ପଦର ନାମ । ସେମାନଙ୍କ ମତରେ ଯେ ପୂର୍ବେ ଇନ୍ଦ୍ର ଥିଲେ, ବର୍ତ୍ତମାନ ସେ ଆଉ ଇନ୍ଦ୍ର ନୁହନ୍ତି, ତାଙ୍କର ବର୍ତ୍ତମାନ ଆଉ ଇନ୍ଦ୍ରପଦ ନାହିଁ, ଆଉ ଜଣେ ଏଠାରୁ ଯାଇ ସେହି ପଦ ଅଧିକାର କରିଛି । ସମସ୍ତ ଦେବତାଙ୍କ ସମ୍ବନ୍ଧରେ ଏହି ଏକା କଥା । ମନୁଷ୍ୟମାନେ କର୍ମବଳରୁ ଦେବତ୍ୱ ପଦର ଯୋଗ୍ୟ ହୋଇଛନ୍ତି, ସେମାନେ ଏହି

ସକଳ ପଦରେ ସମସ୍ତ ସମୟରେ ଅଧିଷ୍ଠିତ ହୁଅନ୍ତି; କିନ୍ତୁ ଏମାନଙ୍କର ମଧ୍ୟ ବିନାଶ ଅଛି । ଋଗବେଦରେ ଦେବଗଣଙ୍କ ସମ୍ବନ୍ଧରେ ଏହି 'ଅମରତ୍ୱ' ଶବ୍ଦର ବ୍ୟବହାର ଦେଖିବାକୁ ମିଳେ ସତ; କିନ୍ତୁ ପରବର୍ତ୍ତୀ କାଳରେ ଏହା ଏକାବେଳକେ ପରିତ୍ୟକ୍ତ ହୋଇଛି; କାରଣ ଋଷିମାନେ ଦେଖିବାକୁ ପାଇଲେ—ଏହି ଅମରତ୍ୱ ଦେଶକାଳର ଅତୀତ ବୋଲି କୌଣସି ଭୌତିକ ବସ୍ତୁ ସମ୍ବନ୍ଧରେ ପ୍ରଯୁକ୍ତ ହୋଇପାରେ ନାହିଁ—ସେହି ବସ୍ତୁ ଯେତେ ସୂକ୍ଷ୍ମ ହେଉ ନା କାହିଁକି । ଏହା ଯେତେ ସୂକ୍ଷ୍ମ ହେଉନା କାହିଁକି, ଦେଶ-କାଳରେ ଏହାର ଉତ୍ପତ୍ତି, କାରଣ ଆକାରର ପ୍ରଧାନ ଉପାଦାନ 'ଦେଶ' । ଦେଶ ବ୍ୟତୀତ ଆକାରର ବିଷୟ ଭାବିବା ଅସମ୍ଭବ । ଦେଶ ହିଁ ଆକାର ନିର୍ମାଣ କରିବାରେ ଗୋଟିଏ ବିଶିଷ୍ଟ ଉପାଦାନ ଏବଂ ଏହି ଆକୃତିର ନିରନ୍ତର ପରିବର୍ତ୍ତନ ହେଉଛି । ଦେଶ ଓ କାଳ ମାୟାର ଅନ୍ତର୍ଗତ । ଆଉ ସ୍ୱର୍ଗ ଯେ ଏହି ପୃଥିବୀ ପରି ଦେଶକାଳଦ୍ୱାରା ସୀମାବଦ୍ଧ, ଏହି ଭାବଟି ଉପନିଷଦ୍‌ର ନିମ୍ନଲିଖିତ ଶ୍ଳୋକାଂଶରେ ବ୍ୟକ୍ତ ହୋଇଛି—'ଯଦେବେହ ତଦମୁତ୍ର ତଦନ୍ୱିହ'—ଯାହା ଏଠାରେ, ତାହା ସେଠାରେ, ଯାହା ସେଠାରେ, ତାହା ଏଠାରେ । ଯଦି ଏହି ଦେବତାମାନେ ଥାଆନ୍ତି, ତେବେ ଏଠାରେ ଯେଉଁ ନିୟମ, ସେହି ନିୟମ ସେଠାରେ ମଧ୍ୟ ଖଟିବ; ଆଉ ସକଳ ନିୟମ ସହିତ ଜଡ଼ିତ ରହିଛି ଧ୍ୱଂସ ଏବଂ ପୁନଃ ପୁନଃ ନୂତନ ରୂପ-ପରିଗ୍ରହ । ଏହି ନିୟମଦ୍ୱାରା ସମୁଦାୟ ଜଡ଼ ବିଭିନ୍ନରୂପେ ପରିବର୍ତ୍ତିତ ହେଉଛି, ପୁନଃ ପୁନଃ ଭାଙ୍ଗି ଚୂର୍ଣ୍ଣବିଚୂର୍ଣ୍ଣ ହୋଇ ସେହି ଜଡ଼କଣାରେ ପରିଣତ ହେଉଛି । ଯେଉଁ ବସ୍ତୁର ଉତ୍ପତ୍ତି ଅଛି, ତାହାର ବିନାଶ ମଧ୍ୟ ହୋଇଥାଏ । ଅତଏବ ଯଦି ସ୍ୱର୍ଗ ଥାଏ, ତେବେ ତାହା ମଧ୍ୟ ଏହି ନିୟମର ଅଧୀନ ।

ଆମେମାନେ ଦେଖିବାକୁ ପାଉଁ, ଏହି ଜଗତରେ ସର୍ବପ୍ରକାର ସୁଖର ପଶ୍ଚାତ୍‌ରେ ଛାୟାସ୍ୱରୂପ ଦୁଃଖ ରହିଛି । ଜୀବନର ପଶ୍ଚାତ୍‌ରେ ଛାୟାସ୍ୱରୂପ ମୃତ୍ୟୁ ରହିଛି । ଏମାନେ ସର୍ବଦା ଏକ ସଙ୍ଗରେ ଥାଆନ୍ତି; କାରଣ ଏମାନେ ପରସ୍ପର-ବିରୋଧୀ ନୁହନ୍ତି, ଏମାନେ ଦୁଇଟି ସମ୍ପୂର୍ଣ୍ଣ ପୃଥକ୍ ସତ୍ତା ନୁହନ୍ତି, ଏମାନେ ଗୋଟିଏ ବସ୍ତୁର ବିଭିନ୍ନ ରୂପମାତ୍ର । ସେହି ଗୋଟିଏ ବସ୍ତୁ ହିଁ ଜୀବନ-ମୃତ୍ୟୁ, ଦୁଃଖସୁଖ, ଭଲମନ୍ଦ ପ୍ରଭୃତି ରୂପରେ ପ୍ରକାଶ ପାଉଛି । ଭଲ ଆଉ ମନ୍ଦ ଏହି ଦୁଇଟି ଯେ ସମ୍ପୂର୍ଣ୍ଣ ପୃଥକ୍ ବସ୍ତୁ ଏବଂ ସେମାନେ ଅନନ୍ତକାଳ ଧରି ରହିଛନ୍ତି—ଏହି ଧାରଣା ଅସଙ୍ଗତ । ସେମାନେ ବାସ୍ତବିକ୍ ଗୋଟିଏ ବସ୍ତୁର ବିଭିନ୍ନ ରୂପ—କେତେବେଳେ ଭଲ ରୂପେ, କେତେବେଳେ ବା ମନ୍ଦ ରୂପେ ପ୍ରତିଭାତ ହେଉଛି ମାତ୍ର । ବିଭିନ୍ନତା ପ୍ରକାରଗତ ନୁହେଁ, ପରିମାଣଗତ । ସେମାନଙ୍କର ପ୍ରଭେଦ ବାସ୍ତବିକ ମାତ୍ରାର ତାରତମ୍ୟରେ । ଆମେମାନେ ବାସ୍ତବିକ୍ ଦେଖିବାକୁ ପାଉଁ, ଗୋଟିଏ ସ୍ନାୟୁପ୍ରଣାଳୀ ଭଲମନ୍ଦ ଉଭୟବିଧ ପ୍ରବାହ ହିଁ ବହନ କରିଥାଏ । କିନ୍ତୁ ସ୍ନାୟୁମଣ୍ଡଳୀ

ଯଦି କୌଣସିରୂପେ ବିକୃତ ହୁଏ, ତାହାହେଲେ କୌଣସି ପ୍ରକାର ଅନୁଭୂତି ହେବ ନାହିଁ । ମନେକର, କୌଣସି ଗୋଟିଏ ବିଶେଷ ସ୍ନାୟୁ ପକ୍ଷାଘାତଗ୍ରସ୍ତ ହେଲା, ତେବେ ତାହା ମଧ୍ୟଦେଇ ଯେଉଁ ସୁଖକର ଅନୁଭୂତି ଆସୁଥିଲା ତାହା ଆସିବ ନାହିଁ, ତା' ସଙ୍ଗେ ସଙ୍ଗେ ଦୁଃଖକର ଅନୁଭୂତି ମଧ୍ୟ ଆସିବ ନାହିଁ । ଏହି ସୁଃଖଦୁଃଖ କଦାପି ପୃଥକ୍ ନୁହନ୍ତି, ଏମାନେ ଯେପରି ସବୁବେଳେ ଏକାଠି ରହିଛନ୍ତି । ଆଉ ମଧ୍ୟ ଗୋଟିଏ ବସ୍ତୁ ଜୀବନର ବିଭିନ୍ନ ସମୟରେ କେତେବେଳେ ସୁଖ, କେତେ-ବେଳେ ବା ଦୁଃଖ ଉତ୍ପାଦନ କରେ । ଗୋଟିଏ ବସ୍ତୁ କାହାର ସୁଖ, କାହାର ବା ଦୁଃଖ ଉତ୍ପାଦନ କରେ । ମାଂସ ଖାଇବାଦ୍ୱାରା ଭକ୍ଷକର ସୁଖ ହୁଏ ସତ୍ୟ, କିନ୍ତୁ ଯାହାର ମାଂସ, ତାହାର କି ଭୟଙ୍କର କଷ୍ଟ ! ଏପରି କୌଣସି ବିଷୟ ନାହିଁ, ଯାହା ସମସ୍ତଙ୍କୁ ସମାନଭାବରେ ସୁଖ ଦେଉଛି । ତାହାଦ୍ୱାରା କେତେ ଲୋକ ସୁଖୀ ହେଉଛନ୍ତି; ଅନ୍ୟ କେତେ ଲୋକ ଅସୁଖୀ ମଧ୍ୟ ହେଉଛନ୍ତି । ଏହିପରି ଚାଲିଥିବ । ଅତଏବ ସ୍ପଷ୍ଟ ଦେଖାଗଲା, ଦ୍ୱୈତଭାବ ବାସ୍ତବିକ ମିଥ୍ୟା । କିନ୍ତୁ ଏଥିରୁ କ'ଣ ମିଳିଲା ? ମୁଁ ପୂର୍ବ ବକ୍ତୃତାରେ କହିଛି, ଜଗତରେ ଏପରି ଅବସ୍ଥା କଦାପି ଆସିବ ନାହିଁ, ଯେତେବେଳେ ସବୁ ଭଲ ହୋଇଯିବ, ମନ୍ଦ କିଛି ରହିବ ନାହିଁ । ଏହାଦ୍ୱାରା ଅନେକଙ୍କର ବାଞ୍ଛିତ ଆଶା ଚୂର୍ଣ୍ଣ ହୋଇପାରେ ସତ, ଅନେକେ ଏହାଦ୍ୱାରା ଭୀତ ହୋଇପାରନ୍ତି, କିନ୍ତୁ ଏହା ସ୍ୱୀକାର କରିବା ବ୍ୟତୀତ ମୁଁ ଅନ୍ୟ ଉପାୟ ଦେଖୁନାହିଁ । ଅବଶ୍ୟ ମୋତେ ଯଦି କେହି ଏହାର ବିପରୀତ ବୁଝାଇ ଦେଇପାରେ, ତେବେ ମୁଁ ବୁଝିବାକୁ ପ୍ରସ୍ତୁତ ଅଛି; କିନ୍ତୁ ଯେତେ ଦିନ ତାହା ବୁଝିପାରିନାହିଁ, ସେତେ ଦିନ ମୁଁ କିପରି ଏହା କହିବି ?

ମୋର ଏହି ବାକ୍ୟ ବିରୋଧରେ ଆପାତତଃଦୃଷ୍ଟିରେ ଗୋଟିଏ ଯୁକ୍ତି ଆଇ-ପାରେ ଯେ, କ୍ରମବିକାଶର ଗତିକ୍ରମେ ଯାହା କିଛି ଅଶୁଭ ଦେଖୁଛ, ସବୁ ଚାଲିଯିବ; ଅର୍ଥାତ୍ ଲକ୍ଷ ଲକ୍ଷ ବର୍ଷ ପରେ ଏପରି ଏକ ସମୟ ଆସିବ, ଯେତେବେଳେ ସମୁଦାୟ ଅଶୁଭର ଉଚ୍ଛେଦ ହୋଇ କେବଳ ଶୁଭମାତ୍ର ଅବଶିଷ୍ଟ ରହିବ । ଏହା ଆପାତତଃ ଖୁବ୍ ଅଖଣ୍ଡନୀୟ ଯୁକ୍ତି ବୋଲି ବୋଧ ହେଉଛି ସତ୍ୟ; ଈଶ୍ୱରେଚ୍ଛାରେ ଏହା ସତ୍ୟ ହେଲେ ଅତ୍ୟନ୍ତ ସୁଖର କଥା ହୁଅନ୍ତା; କିନ୍ତୁ ଏହି ଯୁକ୍ତିରେ ଗୋଟିଏ ଦୋଷ ଅଛି—ଏହା ଶୁଭ ଓ ଅଶୁଭ ଏହି ଦୁଇଟିର ନିର୍ଦ୍ଦିଷ୍ଟ ପରିମାଣ ଅଛି ବୋଲି ଧରିନେଇଛି । ଏହା ସ୍ୱୀକାର କରିନେଇଛି ଯେ, ଗୋଟିଏ ନିର୍ଦ୍ଦିଷ୍ଟ ପରିମାଣର ଅଶୁଭ ଅଛି, ମନେକର ତାହା ୧୦୦ ଏବଂ ସେହିପରି ଏକ ନିର୍ଦ୍ଦିଷ୍ଟ ପରିମାଣର ଶୁଭ ମଧ୍ୟ ଅଛି । ଏହି ଅଶୁଭ କ୍ରମଶଃ କମୁଛି ଓ କେବଳ ଶୁଭଟି ଅବଶିଷ୍ଟ ରହିଯାଉଛି । କିନ୍ତୁ ବାସ୍ତବିକ୍ କ'ଣ ତାହା ସତ୍ୟ ? ଜଗତର ଇତିହାସ ସାକ୍ଷ୍ୟ ଦେଉଛି ଯେ, ଶୁଭପରି ଅଶୁଭ ମଧ୍ୟ କ୍ରମବର୍ଦ୍ଧମାନ । ସମାଜର ଖୁବ୍ ନିମ୍ନସ୍ତରର ବ୍ୟକ୍ତିର କଥା ଧର—ସେ ଜଙ୍ଗଲରେ ବାସ କରେ, ତାହାର ଭୋଗ-ସୁଖ ଅତି ଅଳ୍ପ, ସୁତରାଂ

ତାହାର ଦୁଃଖ ମଧ୍ୟ ଅଳ୍ପ । ତାହାର ଦୁଃଖ କେବଳ ଇନ୍ଦ୍ରିୟ-ବିଷୟରେ ହିଁ ଆବଦ୍ଧ । ସେ ଯଦି ପ୍ରଚୁର ଆହାର ନ ପାଏ, ତେବେ ସେ ଦୁଃଖୀ ହୁଏ । ତାହାକୁ ପ୍ରଚୁର ଖାଦ୍ୟ ଦିଅ, ତାହାକୁ ସ୍ୱାଧୀନ ଭାବରେ ଭ୍ରମଣ ଓ ଶିକାର କରିବାକୁ ଦିଅ, ସେ ସମ୍ପୂର୍ଣ୍ଣରୂପେ ସୁଖୀ ହେବ । ତାହାର ସୁଖଦୁଃଖ ସବୁ କେବଳ ଇନ୍ଦ୍ରିୟରେ ଆବଦ୍ଧ । ମନେକର, ସେହି ବ୍ୟକ୍ତିର ଜ୍ଞାନ ବିକଶିତ ହେଲା । ତାହାର ସୁଖ ବଢ଼ୁଛି, ତାହାର ବୁଦ୍ଧି ଉନ୍ନତ ହେଉଛି । ସେ ପୂର୍ବେ ଇନ୍ଦ୍ରିୟରେ ଯେଉଁ ସୁଖ ପାଉଥିଲା, ଏବେ ବୁଦ୍ଧିବୃତ୍ତିର ଚାଳନା କରି ସେହି ସୁଖ ପାଉଛି । ସେ ବର୍ତ୍ତମାନ ଗୋଟିଏ ସୁନ୍ଦର କବିତା ପାଠ କରି ଅପୂର୍ବ ସୁଖ ଆସ୍ୱାଦନ କରୁଛି । ଗଣିତର କୌଣସି ସମସ୍ୟାର ମୀମାଂସାରେ ତାହାର ଜୀବନ କଟୁଛି ଓ ସେଥିରେ ସେ ପରମ ସୁଖ ଭୋଗ କରୁଛି । କିନ୍ତୁ ତାହା ସଙ୍ଗେ ସଙ୍ଗେ ଅସଭ୍ୟ ଅବସ୍ଥାରେ ଯେଉଁ ତୀବ୍ର ଯନ୍ତ୍ରଣା ସେ କେବେ ଅନୁଭବ କରିନାହିଁ, ତାହାର ସ୍ନାୟୁଗଣ ସେହି ତୀବ୍ର ଯନ୍ତ୍ରଣା ଅନୁଭବ କରିବାରେ କ୍ରମଶଃ ଅଭ୍ୟସ୍ତ ହେଉଛନ୍ତି; ସୁତରାଂ ସେ ତୀବ୍ର ମାନସିକ କଷ୍ଟ ଭୋଗ କରୁଛି । ଗୋଟିଏ ଖୁବ୍ ସହଜ ଉଦାହରଣ ନିଅ : ତିବ୍ବତରେ ବିବାହ ନାହିଁ, ସୁତରାଂ ସେଠାରେ ପ୍ରେମର ଈର୍ଷା ମଧ୍ୟ ନାହିଁ; କିନ୍ତୁ ଆମେମାନେ ଜାଣୁ, ବିବାହ ଅପେକ୍ଷାକୃତ ଉନ୍ନତ ସମାଜର ପରିଚାୟକ । ତିବ୍ବତୀୟମାନେ ନିଷ୍କଳଙ୍କ ସ୍ୱାମୀ ଓ ନିଷ୍କଳଙ୍କ ସ୍ତ୍ରୀର ବିଶୁଦ୍ଧ ଦାମ୍ପତ୍ୟ-ପ୍ରେମର ସୁଖ ଜାଣନ୍ତି ନାହିଁ । କିନ୍ତୁ ବିବାହିତ ଜୀବନରେ ଜଣେ ଭ୍ରଷ୍ଟ ବା ଭ୍ରଷ୍ଟା ହେଲେ, ମନରେ ଯେଉଁ ଭୟାନକ ଈର୍ଷା, ଉଭୟଙ୍କର ଅନ୍ତର୍ଦାହ ଉପସ୍ଥିତ ହୁଏ, ସେକଥା ମଧ୍ୟ ସେମାନେ ଜାଣନ୍ତି ନାହିଁ । ଗୋଟିଏ ଦିଗରେ ଏହି ଉଚ୍ଚ ଧାରଣାରୁ ଦାମ୍ପତ୍ୟସୁଖ ବଢ଼ିଲା ସତ, କିନ୍ତୁ ଅନ୍ୟ ଦିଗରୁ ଦୁଃଖ ମଧ୍ୟ ବୃଦ୍ଧି ପାଇଲା ।

ତୁମ ନିଜ ଦେଶର (ଆମେରିକାର) କଥା ମଧ୍ୟ ଦେଖ—ପୃଥିବୀରେ ଏ ଦେଶ ଭଳି ଧନୀ ଓ ବିଳାସିତାର ଦେଶ ଆଉ ନାହିଁ, ଅଥଚ ଏଠାରେ କି ଗଭୀର ଦୁଃଖକଷ୍ଟ ତାହା ଚିନ୍ତା କର । ଅନ୍ୟାନ୍ୟ ଜାତି ତୁଳନାରେ ଏହି ଦେଶରେ ପାଗଳମାନଙ୍କର ସଂଖ୍ୟା କେତେ ଅଧିକ ! କାରଣ, ଏଠାରେ ଲୋକମାନଙ୍କର ବିଷୟବାସନା ଅତି ତୀବ୍ର, ଅତି ପ୍ରବଳ । ଏହି ଦେଶରେ ଲୋକଙ୍କୁ ଜୀବନଯାତ୍ରାର ମାନ ଅତି ଉଚ୍ଚରେ ରଖିବାକୁ ପଡ଼େ । ତୁମେ ଗୋଟିଏ ବର୍ଷରେ ଯାହା ଖର୍ଚ୍ଚ କର, ଜଣେ ଭାରତବାସୀ ପକ୍ଷରେ ତାହା ସାରା ଜୀବନର ସମ୍ପଦ । ତୁମେ ଅନ୍ୟକୁ ଉପଦେଶ ଦେଇପାରିବ ନାହିଁ ଯେ, ଅପେକ୍ଷାକୃତ ଅଳ୍ପ ଟଙ୍କାରେ ଜୀବନ ନିର୍ବାହ କରିବାକୁ ଚେଷ୍ଟା କର, କାରଣ ଏଠାରେ ସାମାଜିକ ଅବସ୍ଥା ଏପରି ଯେ, ଏହାଠାରୁ କମ୍ ଟଙ୍କାରେ ଚଳିବ ନାହିଁ । ଏହି ସମାଜ-ଚକ୍ର ଅବିରତ ଘୂରୁଛି—ତାହା ବିଧବାର ଅଶ୍ରୁ ବା ଅନାଥର ଚିତ୍କାର ପ୍ରତି କର୍ଣ୍ଣପାତ କରୁ ନାହିଁ । ଏଠାରେ ସର୍ବତ୍ର ଏହି ଅବସ୍ଥା । ତୁମମାନଙ୍କର ବିଷୟସମ୍ଭୋଗର ଧାରଣା ଅନେକ ପରିମାଣରେ

ବିକାଶପ୍ରାପ୍ତ ହୋଇଛି, ତୁମ ସମାଜ ମଧ୍ୟ ଅନ୍ୟାନ୍ୟ ସମାଜ ତୁଳନାରେ ସୁନ୍ଦର । ତୁମମାନଙ୍କର ଭୋଗର ନାନାବିଧ ଉପାୟ ଅଛି । କିନ୍ତୁ ଯେଉଁମାନଙ୍କର ଏପରି ଉପକରଣ ଅଳ୍ପ, ସେମାନଙ୍କର ଦୁଃଖ ମଧ୍ୟ ତୁମ ତୁଳନାରେ କମ୍ । ସର୍ବତ୍ର ଏହିପରି ଘଟଣା ଦେଖିବାକୁ ପାଇବ । ତୁମର ଉଚ୍ଚାଭିଳାଷ ଯେତେ ଅଧିକ ହେବ, ତୁମର ସେତେ ବେଶୀ ସୁଖ, ଏବଂ ସେହି ପରିମାଣରେ ମଧ୍ୟ ଦୁଃଖ । ଗୋଟିଏ ଯେପରି ଅନ୍ୟଟିର ଛାୟାସ୍ୱରୂପ । ଅଶୁଭ ଚାଲିଯାଉଛି, ଏହା ସତ୍ୟ ହୋଇପାରେ; କିନ୍ତୁ ତାହା ସଙ୍ଗେ ସଙ୍ଗେ ଶୁଭ ମଧ୍ୟ ଚାଲିଯାଉଛି ବୋଲି କହିବାକୁ ହେବ । କିନ୍ତୁ ବାସ୍ତବିକ୍ ଦୁଃଖ ଯେପରି ଗୋଟିଏ ଦିଗରେ କମୁଛି, ସେହିପରି ଅନ୍ୟ ଦିଗରେ ତାହା କ'ଣ କୋଟିଗୁଣ ବଢ଼ୁ ନାହିଁ ? ପ୍ରକୃତ କଥା ଏହି ଯେ, ସୁଖ ଯଦି ଯୋଗଶ୍ରେଢ଼ିର* ନିୟମାନୁସାରେ ବଢୁଥାଏ, ତାହାହେଲେ ଦୁଃଖ ମଧ୍ୟ ଗୁଣଶ୍ରେଢ଼ିର ନିୟମ ଅନୁସାରେ ବଢ଼ି ଚାଲିଛି ବୋଲି କହିବାକୁ ହେବ । ଏହା ହିଁ ମାୟା । ଏହା କେବଳ ସୁଖବାଦ ନୁହେଁ, କେବଳ ଦୁଃଖବାଦ ମଧ୍ୟ ନୁହେଁ । ବେଦାନ୍ତ କହେ ନାହିଁ ଯେ, ଜଗତ କେବଳ ଦୁଃଖମୟ । ଏପରି କହିବା ଭୁଲ୍ । ପୁଣି ଏହି ଜଗତ ସୁଖସ୍ୱାଚ୍ଛନ୍ଦ୍ୟରେ ପରିପୂର୍ଣ୍ଣ, ଏପରି କହିବା ମଧ୍ୟ ଠିକ୍ ନୁହେଁ । ଏହି ଜଗତ କେବଳ ମଧୁମୟ—ଏଠାରେ କେବଳ ସୁଖ, ଏଠାରେ କେବଳ ଫୁଲ, ଏଠାରେ କେବଳ ସୌନ୍ଦର୍ଯ୍ୟ, କେବଳ ମଧୁ—ପିଲାମାନଙ୍କୁ ଏହି ପ୍ରକାର ଶିକ୍ଷା ଦେବା ଭୁଲ୍ । ଆମେ-ମାନେ ସାରାଜୀବନ ଏହି ଫୁଲର ସ୍ୱପ୍ନ ଦେଖୁଛୁ । ପୁନଶ୍ଚ କୌଣସି ଜଣେ ବ୍ୟକ୍ତି ଅନ୍ୟ ଅପେକ୍ଷା ଅଧିକ ଦୁଃଖ ଭୋଗ କରିଛି ବୋଲି ସବୁ ଦୁଃଖମୟ—ଏପରି କହିବା ମଧ୍ୟ ଭୁଲ୍ । ଜଗତ ଏହି ଦ୍ୱୈତଭାବପୂର୍ଣ୍ଣ, ଭଲମନ୍ଦର ଖେଳ । ବେଦାନ୍ତ ତାହା ଉପରେ ଆଉ ଗୋଟିଏ କଥା କହେ । ମନେକର ନାହିଁ ଯେ, ଭଲ ଓ ମନ୍ଦ ଦୁଇଟି ସମ୍ପୂର୍ଣ୍ଣ ପୃଥକ୍ ବସ୍ତୁ, ବାସ୍ତବିକ ସେମାନେ ଗୋଟିଏ ବସ୍ତୁ; ସେହି ଏକ ବସ୍ତୁ ଭିନ୍ନ ଭିନ୍ନ ରୂପରେ, ବିଭିନ୍ନ ଆକାରରେ ଆବିର୍ଭୂତ ହୋଇ ଗୋଟିଏ ବ୍ୟକ୍ତି ମନରେ ଭିନ୍ନ ଭିନ୍ନ ଭାବ ସୃଷ୍ଟି କରୁଛି । ଅତଏବ ବେଦାନ୍ତର ପ୍ରଥମ କାର୍ଯ୍ୟ ହେଉଛି, ଏହି ବିଭିନ୍ନ ରୂପେ ପ୍ରତୀୟମାନ ବାହ୍ୟ ଜଗତ ମଧ୍ୟରେ ଏକତ୍ୱକୁ ଆବିଷ୍କାର କରିବା । ପାରସିକମାନଙ୍କର ମତ—ଦୁଇ ଜଣ ଦେବତା ମିଳି ଜଗତ ସୃଷ୍ଟି କରିଛନ୍ତି । ଏହା ଅତି ଅନୁନ୍ନତ ମନର ପରିଚାୟକ । ସେମାନଙ୍କ ମତରେ ଭଲ ଦେବତା

---

* ଯୋଗଶ୍ରେଢ଼ି ଓ ଗୁଣଶ୍ରେଢ଼ି । ଯୋଗଶ୍ରେଢ଼ି ଯେପରି ୩+୫+୭+୯ ଇତ୍ୟାଦି; ଏଠାରେ ଏହି ଶ୍ରେଣୀ ମଧ୍ୟରେ ପ୍ରତ୍ୟେକ ପରବର୍ତ୍ତୀ ଅଙ୍କ ପ୍ରତ୍ୟେକ ପୂର୍ବବର୍ତ୍ତୀ ଅଙ୍କଠାରୁ ଦୁଇ ଦୁଇ କରି ଅଧିକ । ଗୁଣଶ୍ରେଢ଼ି ଯେପରି ୩+୬+୧୨+୨୪ ଇତ୍ୟାଦି, ଏଠାରେ ପ୍ରତ୍ୟେକ ପରବର୍ତ୍ତୀ ଅଙ୍କ ପ୍ରତ୍ୟେକ ପୂର୍ବବର୍ତ୍ତୀ ଅଙ୍କର ଦ୍ୱିଗୁଣ ।

କେବଳ ସୁଖ ବିଧାନ କରୁଛନ୍ତି, ଏବଂ ଅସତ୍ ଦେବତା ସବୁ ମନ୍ଦ ବିଷୟ ବିଧାନ କରୁଛନ୍ତି । ଏହା ଯେ ଅସମ୍ଭବ, ତାହା ସ୍ପଷ୍ଟ ବୁଝାଯାଉଛି; କାରଣ ବାସ୍ତବିକ ଏହି ନିୟମ ସତ୍ୟ ହେଲେ ପ୍ରତ୍ୟେକ ପ୍ରାକୃତିକ ନିୟମରେ ଦୁଇଟି ଅଂଶ ରହିବ— କେତେବେଳେ ଜଣେ ଦେବତା ତାହା ଚଳାଉଛନ୍ତି, ସେ ଦୂରିଗଲେ ଆଉ ଜଣେ ଆସି ଉପସ୍ଥିତ ହେଲେ । କିନ୍ତୁ ପ୍ରକୃତ ପକ୍ଷେ ଆମେ ଦେଖିବାକୁ ପାଉ ଯେ ଯେଉଁ ଶକ୍ତି ଆମକୁ ଖାଦ୍ୟ ଦେଉଛି, ସେହି ଶକ୍ତି ହିଁ ଦୈବଦୁର୍ବିପାକଦ୍ୱାରା ଅନେକଙ୍କୁ ସଂହାର ମଧ୍ୟ କରୁଛି । ବର୍ତ୍ତମାନ ସମସ୍ୟା ହେଲା ଯେ, ଦୁଇ ଜଣ ଦେବତା ଏକ ସମୟରେ କାର୍ଯ୍ୟ କରୁଛନ୍ତି—ଜଣେ କାହାର ଉପକାର କରୁଛନ୍ତି, ଅନ୍ୟ ଜଣେ ଅପର କାହାର ଅପକାର କରୁଛନ୍ତି; ଅଥଚ ଦୁଇଜଣଯାକ ଆପଣମାନଙ୍କ ମଧ୍ୟରେ ସାମଞ୍ଜସ୍ୟ ରଖିଛନ୍ତି । ଏହା କିପରି ସମ୍ଭବ ? ଅବଶ୍ୟ ଜଗତର ଦ୍ୱୈତଭାବ ପ୍ରକାଶ କରିବା ପାଇଁ ଏହି ମତ ଯେ ଏକ ଅପରିଣତ ପ୍ରଣାଳୀ, ସେଥିରେ କୌଣସି ସନ୍ଦେହ ନାହିଁ । କିନ୍ତୁ ଉଚ୍ଚତର ଦର୍ଶନର ସିଦ୍ଧାନ୍ତ ଏହି ଯେ, ଜଗତ କିଛିଟା ଭଲ, କିଛିଟା ମନ୍ଦ । ପୂର୍ବୋକ୍ତ ଯୁକ୍ତି ଅନୁସାରେ ଏହା ମଧ୍ୟ ଅସମ୍ଭବ ପ୍ରମାଣିତ ହୁଏ ।

ଅତଏବ ଆମେ ଦେଖୁଛୁ, ଏହି ଜଗତ କେବଳ ସୁଖପୂର୍ଣ୍ଣ ବା କେବଳ ଦୁଃଖପୂର୍ଣ୍ଣ ନୁହେଁ । ଏହା ଏହି ଉଭୟର ମିଶ୍ରଣସ୍ୱରୂପ । କ୍ରମଶଃ ଆମେ ଏହା ମଧ୍ୟ ଦେଖିବୁ ଯେ, ସମୁଦାୟ ଦୋଷ ପ୍ରକୃତି ଉପରେ ଲଦା ନ ହୋଇ ନିଜ ଉପରେ ନ୍ୟସ୍ତ କରାହେଉଛି । ଆହୁରି ମଧ୍ୟ ବେଦାନ୍ତ ଆମମାନଙ୍କୁ ମୁକ୍ତିର ପଥ ଦେଖାଇ ଦେଉଛି—ଅମଙ୍ଗଳକୁ ଅସ୍ୱୀକାର କରି ନୁହେଁ, ବରଂ ଜଗତର ସମୁଦାୟ ଘଟଣାର ସାହସିକ ବିଶ୍ଳେଷଣ କରିବାଦ୍ୱାରା—ଏହା କୌଣସି ବିଷୟ ଗୋପନ କରିବାକୁ ଚାହେଁ ନାହିଁ । ଏହା ମନୁଷ୍ୟକୁ ନୈରାଶ୍ୟସାଗରରେ ଭସାଇଦିଏ ନାହିଁ । ଏହା ଅଜ୍ଞେୟବାଦ ମଧ୍ୟ ନୁହେଁ । ବେଦାନ୍ତ ସୁଖଦୁଃଖ ପ୍ରତିକାରର ଉପାୟ ଆବିଷ୍କାର କରିଛି ଏବଂ ଏହାକୁ ବଜ୍ରଦୃଢ଼ ଭିତ୍ତି ଉପରେ ସଂସ୍ଥାପନ କରିଛି—କେବଳ ପିଲା-ମାନଙ୍କର ମୁଖ ବନ୍ଦ କରି ଏବଂ ଅସତ୍ୟଦ୍ୱାରା ତାଙ୍କର ଦୃଷ୍ଟିକୁ ଅନ୍ଧ କରି ନୁହେଁ; ସେମାନେ ଶୀଘ୍ର ଏହା ବୁଝିପାରିବେ । ମୋର ସ୍ମରଣ ଅଛି, ଯେତେବେଳେ ମୁଁ ପିଲା ଥିଲି, ଜଣେ ଯୁବକର ପିତା ମରିଗଲେ ଏବଂ ଏକ ଦରିଦ୍ର ବଡ଼ ପରିବାରର ବୋଝ ତାହା ଉପରେ ପଡ଼ିଲା । ସେ ଦେଖିଲା, ତାହାର ପିତାର ବନ୍ଧୁମାନେ ବାସ୍ତବିକ ତାହାର ପ୍ରଧାନ ଶତ୍ରୁ । ଦିନେ ଜଣେ ଧର୍ମଯାଜକ ତାହାକୁ ସାନ୍ତ୍ୱନା ଦେଇ କହିଲେ, 'ଯାହା କିଛି ହୁଏ ସବୁ ଭଲ ଓ ମଙ୍ଗଳକର ।' ଏହା ପୁରୁଣା କ୍ଷତକୁ ସୁନା ଜରିର ଆବରଣରେ ଘୋଡ଼ାଇ ରଖିବା ଭଳି ହେଲା । ଏହା ଅଜ୍ଞାନ ଓ ଦୁର୍ବଳତାର ପରିଚୟ ମାତ୍ର । ଛଅ ମାସ ପରେ ସେହି ଧର୍ମଯାଜକଙ୍କର ଗୋଟିଏ ସନ୍ତାନ ହେଲା, ତଦୁପଲକ୍ଷେ ଯେଉଁ ଉତ୍ସବ ହେଲା, ସେଠାକୁ ସେହି ଯୁବକ ନିମନ୍ତ୍ରିତ ହେଲା । ଧର୍ମଯାଜକ ଭଗବାନଙ୍କର ଉପାସନା ଆରମ୍ଭ କଲେ—'ଈଶ୍ୱରଙ୍କ

କୃପା ସକାଶେ ତାଙ୍କୁ ଧନ୍ୟବାଦ ।' ସେତେବେଳେ ଯୁବକ କହି ଉଠିଲେ, 'ଆପଣ କ'ଣ କହୁଛନ୍ତି ? ତାଙ୍କର କୃପା କେଉଁଠି ? ଏହା ଯେ ଘୋର ଅଭିଶାପ ।' ଧର୍ମ-ଯାଜକ ପଚାରିଲେ, 'କାହିଁକି ?' ଯୁବକ ଉତ୍ତର ଦେଲେ, 'ଯେତେବେଳେ ମୋର ପିତାଙ୍କର ମୃତ୍ୟୁ ହେଲା, ସେତେବେଳେ ତାହା ଆପାତତଃ ଅମଙ୍ଗଳ ହେଲେ ମଧ୍ୟ ଆପଣ ମଙ୍ଗଳ ବୋଲି କହୁଥିଲେ; ତେଣୁ ବର୍ତ୍ତମାନ ଆପଣଙ୍କର ସନ୍ତାନର ଜନ୍ମ ମଧ୍ୟ ଆପାତତଃ ଶୁଭ ବୋଲି ବୋଧ ହେଲେ ସୁଦ୍ଧା ବାସ୍ତବିକ୍ ଏହା ମହା-ଅମଙ୍ଗଳ ।' ଏହିପରି ଜଗତର ଦୁଃଖକୁ ଘୋଡ଼ି ରଖିବା କ'ଣ ଜଗତର ଦୁଃଖ-ନିବାରଣର ଉପାୟ ? ନିଜେ ଭଲ ହୁଅ ଏବଂ ଯେଉଁମାନେ କଷ୍ଟ ପାଉଛନ୍ତି, ସେମାନଙ୍କ ଉପରେ ଦୟା ପ୍ରକାଶ କର । ତାଳି ଉପରେ ତାଳି ସିଲେଇ କରି ଲୁଚାଇବାର ଚେଷ୍ଟା କର ନାହିଁ, ସେଥିରେ ଜଗତର ଦୁଃଖ ଦୂର ହେବ ନାହିଁ । ଆମମାନଙ୍କୁ ଜଗତର ବାହାରକୁ ଯିବାକୁ ହେବ ।

ଏହି ଜଗତ ସର୍ବଦା ଭଲମନ୍ଦର ମିଶ୍ରଣ । ଯେଉଁଠାରେ ଭଲ ଦେଖିବ, ଜାଣିବ ଯେ ତାହାର ପଛପଟେ ମନ୍ଦ ମଧ୍ୟ ରହିଛି; କିନ୍ତୁ ଏହି ସମସ୍ତ ବ୍ୟକ୍ତଭାବର ପଶ୍ଚାତ୍ତରେ—ଏହି ସମସ୍ତ ବିରୋଧୀ ଭାବର ପଶ୍ଚାତ୍ତରେ ବେଦାନ୍ତ ସେହି ଏକତ୍ୱର ସନ୍ଧାନ ପାଇଛି । ବେଦାନ୍ତ କହେ : ମନ୍ଦ ତ୍ୟାଗ କର, ଏବଂ ଭଲ ମଧ୍ୟ ତ୍ୟାଗ କର । ତାହାହେଲେ ବାକି କ'ଅଣ ରହିଲା ? ବେଦାନ୍ତ କହେ : କେବଳ ଯେ ଭଲ ଓ ମନ୍ଦର ଅସ୍ତିତ୍ୱ ଅଛି, ତାହା ନୁହେଁ; ଏହାର ପଶ୍ଚାତ୍ତରେ ଏପରି ଏକ ବସ୍ତୁ ରହିଛି, ଯାହା ପ୍ରକୃତ ପକ୍ଷରେ ତୁମର, ଯାହା ତୁମର ସ୍ୱରୂପ, ଯାହା ସର୍ବପ୍ରକାର ଶୁଭ ଓ ସର୍ବପ୍ରକାର ଅଶୁଭର ଊର୍ଦ୍ଧ୍ୱରେ—ସେହି ବସ୍ତୁ ହିଁ ଶୁଭ ବା ଅଶୁଭ ରୂପରେ ପ୍ରକାଶ ପାଉଅଛି । ପ୍ରଥମେ ଏହି ତତ୍ତ୍ୱ ଜାଣ, ସେତେବେଳେ ଯାଇ ତୁମେ ପୂର୍ଣ୍ଣସୁଖବାଦୀ ହୋଇପାରିବ, ତାହା ପୂର୍ବରୁ ନୁହେଁ । ତାହାହେଲେ ତୁମେ ସମୁଦାୟ ଜୟ କରିପାରିବ । ଏହି ଆପାତଃପ୍ରତୀୟମାନ ବ୍ୟକ୍ତଭାବଗୁଡ଼ିକୁ ଆୟତ୍ତ କର, ତାହା-ହେଲେ ତୁମେ ସେହି ସତ୍ୟ ବସ୍ତୁକୁ ଯେ କୌଣସି ଭାବରେ ପ୍ରକାଶ କରିପାରିବ । ସେତେବେଳେ ତୁମେ ଏହାକୁ ଶୁଭ ହେଉ, ବା ଅଶୁଭ ହେଉ, ଯେପରି ଇଚ୍ଛା ସେପରି ପ୍ରକାଶ କରିପାରିବ । କିନ୍ତୁ ପ୍ରଥମେ ତୁମକୁ ନିଜେ ନିଜର ପ୍ରଭୁ ହେବାକୁ ପଡ଼ିବ । ଉଠ, ନିଜକୁ ମୁକ୍ତ କର, ଏହି ସମୁଦାୟ ନିୟମର ବାହାରକୁ ଯାଅ; କାରଣ, ଏହି ନିୟମଗୁଡ଼ିକ ତୁମକୁ ସମ୍ପୂର୍ଣ୍ଣଭାବରେ ନିୟନ୍ତ୍ରିତ କରେ ନାହିଁ, ସେଗୁଡ଼ିକ ତୁମ ପ୍ରକୃତ ସ୍ୱରୂପର ଅତି ସାମାନ୍ୟ ଅଂଶମାତ୍ର ପ୍ରକାଶ କରେ । ପ୍ରଥମେ ଜାଣ ଯେ—ତୁମେ ପ୍ରକୃତିର ଦାସ ନୁହଁ, କେବେହେଲେ ତାହା ନ ଥିଲ, କଦାପି ତାହା ହେବ ନାହିଁ; ପ୍ରକୃତିକୁ ଆପାତତଃ ଅନନ୍ତ ବୋଲି ମନେ କରୁଛ ସତ୍ୟ, କିନ୍ତୁ ବାସ୍ତବିକ ତାହା ସସୀମ, ତାହା ସମୁଦ୍ରର ଏକ ବିନ୍ଦୁମାତ୍ର; ତୁମେ ହିଁ ବାସ୍ତବିକ ସମୁଦ୍ରସ୍ୱରୂପ; ତୁମେ ଚନ୍ଦ୍ର, ସୂର୍ଯ୍ୟ, ତାରା, ସବୁକିଛିର ଅତୀତ ।

ତୁମର ଅନନ୍ତସ୍ୱରୂପର ତୁଳନାରେ ସେଗୁଡ଼ିକ ବୁଦ୍‌ବୁଦ ଭଳି । ଏହା ଜାଣିଲେ ତୁମେ ଭଲମନ୍ଦ ଉଭୟଙ୍କୁ ଜୟ କରିପାରିବ । ସେତେବେଳେ ତୁମର ସମୁଦାୟ ଦୃଷ୍ଟି ସମ୍ପୂର୍ଣ୍ଣ ପରିବର୍ତ୍ତିତ ହୋଇଯିବ, ସେତେବେଳେ ତୁମେ ଦୃଢ଼ଭାବରେ କହିପାରିବ : ମଙ୍ଗଳ କେଡ଼େ ସୁନ୍ଦର ! ଅମଙ୍ଗଳ କେଡ଼େ ଅପୂର୍ବ !

ବେଦାନ୍ତ ଏହା ଉପଲବ୍ଧି କରିବାକୁ କହେ । ବେଦାନ୍ତ କହେ ନାହିଁ, ସୁନାପାତରେ କ୍ଷତସ୍ଥାନ ଘୋଡ଼ାଇ ରଖ, ଆଉ କ୍ଷତ ଯେତେ ପଚୁଥିବ ସେତେ ଅଧିକ ସୁନାପାତ ଘୋଡ଼ାଇଚାଲ । ଏହି ଜୀବନ ଏକ କଠିନ ସମସ୍ୟା, ସନ୍ଦେହ ନାହିଁ । ଯଦିଓ ଏହା ବଜ୍ରବତ୍ ଦୁର୍ଭେଦ୍ୟ ବୋଲି ମନେ ହୁଏ, ତଥାପି ଯଦି ପାର ସାହସପୂର୍ବକ ଏହାର ବାହାରକୁ ଯିବା ପାଇଁ ଚେଷ୍ଟା କର—ଆତ୍ମା ଏହି ଦେହ ଅପେକ୍ଷା ଅନନ୍ତଗୁଣ ଶକ୍ତିମାନ୍ । ବେଦାନ୍ତ ତୁମର କର୍ମଫଳ ପାଇଁ ଦେବତାମାନଙ୍କ ଉପରେ ଦାୟିତ୍ୱ ନିକ୍ଷେପ କରେ ନାହିଁ, କିନ୍ତୁ କହେ, ତୁମେ ନିଜେ ତୁମର ଅଦୃଷ୍ଟର ନିର୍ମାତା । ତୁମେ ନିଜ କର୍ମଫଳରୁ ଭଲମନ୍ଦ ଉଭୟ ଭୋଗ କରୁଛ, ତୁମେ ନିଜେ ହିଁ ନିଜର ଆଖିରେ ହାତ ଦେଇ କହୁଛ—ଅନ୍ଧକାର । ହାତ କାଢ଼ିଦିଅ—ଆଲୋକ ଦେଖିପାରିବ । ତୁମେ ଜ୍ୟୋତିଃସ୍ୱରୂପ—ତୁମେ ପୂର୍ବରୁ ସିଦ୍ଧ । 'ମୃତ୍ୟୋଃ ସ ମୃତ୍ୟୁମାପ୍ନୋତି ଯ ଇହ ନାନେବ ପଶ୍ୟତି,' ଏହି ଶ୍ରୁତିର ଅର୍ଥ ବର୍ତ୍ତମାନ ଆମେମାନେ ବୁଝିପାରୁଛୁ ।

ଆମେମାନେ ଏହି ତତ୍ତ୍ୱ କିପରି ଜାଣିପାରିବା ? ଏହି ମନ ଯାହା ଏତେ ଭ୍ରାନ୍ତ, ଏତେ ଦୁର୍ବଳ, ଯାହା ଏତେ ସହଜରେ ବିଭିନ୍ନ ଦିଗକୁ ପ୍ରଧାବିତ ହୁଏ—ଏହି ମନକୁ ଆମେ ସବଳ ମଧ୍ୟ କରିପାରିବା ଯଦ୍ୱାରା ଏହା ସେହି ଜ୍ଞାନର, ସେହି ଏକତ୍ୱର ଆଭାସ ପାଇବ ଏବଂ ଆମମାନଙ୍କୁ ପୁନଃ ପୁନଃ ମୃତ୍ୟୁମୁଖରୁ ରକ୍ଷା କରିବ ।

ଯଥୋଦକଂ ଦୁର୍ଗେ ବୃଷ୍ଟଂ ପର୍ବତେଷୁ ବିଧାବତି ।
ଏବଂ ଧର୍ମାନ୍ ପୃଥକ୍ ପଶ୍ୟଂସ୍ତାନେବାନୁବିଧାବତି ॥*

—ଉଚ୍ଚ ଦୁର୍ଗମ ଭୂମିରେ ବୃଷ୍ଟି ହେଲେ ଜଳ ଯେପରି ପର୍ବତସମୂହର ପାର୍ଶ୍ୱ ଦେଇ ବିକୀର୍ଣ୍ଣ ଭାବରେ ଧାବିତ ହୁଏ, ସେହିଭଳି ଶକ୍ତିସମୂହକୁ ଯେ ପୃଥକ୍ କରି ଦେଖେ, ସେ ସେମାନଙ୍କୁ ଅନୁବର୍ତ୍ତନ କରେ । ବାସ୍ତବିକ ଶକ୍ତି ଏକ, କେବଳ ମାୟାର ଆବରଣରେ ବହୁ ହୋଇଛି । 'ବହୁ'ର ପଶ୍ଚାତ୍ତରେ ଧାବମାନ ହୁଅ ନାହିଁ, ଏକ ପ୍ରତି ଅଗ୍ରସର ହୁଅ ।

ହଂସଃ ଶୁଚିଷଦ୍ ବସୁରନ୍ତରିକ୍ଷସଦ୍ଧୋତା ବେଦିଷଦତିଥିର୍ଦୁରୋଣସତ୍ ।
ନୃଷଦ୍ୱରସଦୃତସଦ୍‌ବ୍ୟୋମସଦବ୍‌ଜା ଗୋଜା ଋତଜା ଅଦ୍ରିଜା ଋତଂ ବୃହତ୍ ॥**

* କଠ ଉପ., ୨।୧।୧୪
** କଠ ଉପ., ୨।୨।୨

--ସେହି ଅମ୍ବା ଆକାଶବାସୀ ସୂର୍ଯ୍ୟ, ଅନ୍ତରୀକ୍ଷବାସୀ ବାୟୁ, ବେଦୀରେ ସ୍ଥିତ ଅଗ୍ନି ଓ କଳସସ୍ଥିତ ସୋମରସ । ସେ ମନୁଷ୍ୟ, ଦେବତା, ଯଜ୍ଞ ଓ ଆକାଶରେ ମଧ୍ୟ ଅଛନ୍ତି । ସେ ଜଳରେ, ପୃଥିବୀରେ, ଯଜ୍ଞରେ ଏବଂ ପର୍ବତରେ ଅଛନ୍ତି; ସେ ସତ୍ୟ ଓ ମହାନ୍ ।

ଅଗ୍ନିର୍ଯଥୈକୋ ଭୁବନଂ ପ୍ରବିଷ୍ଟୋ ରୂପଂ ରୂପଂ ପ୍ରତିରୂପୋ ବଭୂବ ।
ଏକସ୍ତଥା ସର୍ବଭୂତାନ୍ତରାତ୍ମା ରୂପଂ ରୂପଂ ପ୍ରତିରୂପୋ ବହିଶ୍ଚ ॥
ବାୟୁର୍ଯଥୈକୋ ଭୁବନଂ ପ୍ରବିଷ୍ଟୋ ରୂପଂ ରୂପଂ ପ୍ରତିରୂପୋ ବଭୂବ ।
ଏକସ୍ତଥା ସର୍ବଭୂତାନ୍ତରାତ୍ମା ରୂପଂ ରୂପଂ ପ୍ରତିରୂପୋ ବହିଶ୍ଚ ॥*

—ଯେପରି ସେହି ଏକ ଅଗ୍ନି ଭୁବନରେ ପ୍ରବିଷ୍ଟ ହୋଇ ଦାହ୍ୟବସ୍ତୁର ରୂପଭେଦରେ ଭିନ୍ନ ଭିନ୍ନ ରୂପ ଧାରଣ କରେ, ସେହିପରି ସର୍ବଭୂତର ଏକ ଅନ୍ତରାତ୍ମା ନାନା ବସ୍ତୁଭେଦରେ ସେହି ସେହି ବସ୍ତୁରୂପ ଧାରଣ କରିଛନ୍ତି ଏବଂ ସମୁଦାୟର ବାହାରେ ମଧ୍ୟ ଅଛନ୍ତି । ଯେପରି ଏକ ବାୟୁ ଭୁବନରେ ପ୍ରବିଷ୍ଟ ହୋଇ ନାନା ବସ୍ତୁଭେଦରେ ତଦ୍ରୂପ ହୋଇଛନ୍ତି, ସେହିପରି ସର୍ବଭୂତର ଏକ ଅନ୍ତରାତ୍ମା ନାନା ବସ୍ତୁଭେଦରେ ସେହି ସେହି ରୂପ ଧାରଣ କରିଛନ୍ତି ଏବଂ ସେମାନଙ୍କର ବାହାରେ ମଧ୍ୟ ରହିଛନ୍ତି ।

ଯେତେବେଳେ ତୁମେ ଏହି ଏକତ୍ୱ ଉପଲବ୍ଧି କରିବ, ସେତେବେଳେ ଯାଇ ଏହି ଅବସ୍ଥା ହେବ, ତାହା ପୂର୍ବରୁ ନୁହେଁ । ଏହା ହିଁ ପ୍ରକୃତ ସୁଖବାଦ—ସର୍ବତ୍ର ଆତ୍ମଦର୍ଶନ । ବର୍ତ୍ତମାନ ପ୍ରଶ୍ନ ଏହି : ଯଦି ଏହା ସତ୍ୟ ହୁଏ ଯେ ସେହି ଶୁଦ୍ଧ-ସ୍ୱରୂପ ଅନନ୍ତ ଆତ୍ମା ଏହି ସମସ୍ତ ଭିତରେ ପ୍ରବିଷ୍ଟ ହୋଇ ରହିଛନ୍ତି, ତେବେ ସେ କାହିଁକି ସୁଖଦୁଃଖ ଭୋଗ କରନ୍ତି, କାହିଁକି ସେ ଅପବିତ୍ର ହୋଇ ଦୁଃଖ ଭୋଗ କରନ୍ତି ? ଉପନିଷଦ୍ କହନ୍ତି, ସେ ଦୁଃଖ ଅନୁଭବ କରନ୍ତି ନାହିଁ ।

ସୂର୍ଯ୍ୟୋ ଯଥା ସର୍ବଲୋକସ୍ୟ ଚକ୍ଷୁର୍ନ ଲିପ୍ୟତେ ଚାକ୍ଷୁଷୈର୍ବାହ୍ୟଦୋଷୈଃ ।
ଏକସ୍ତଥା ସର୍ବଭୂତାନ୍ତରାତ୍ମା ନ ଲିପ୍ୟତେ ଲୋକଦୁଃଖେନ ବାହ୍ୟଃ ॥**

—ସର୍ବଲୋକର ଚକ୍ଷୁସ୍ୱରୂପ ସୂର୍ଯ୍ୟ ଯେପରି ଚକ୍ଷୁଗ୍ରାହ୍ୟ ବାହ୍ୟ ଅଶୁଚି ବସ୍ତୁ ସହିତ ଲିପ୍ତ ହୁଏ ନାହିଁ, ସେହିପରି ଏକମାତ୍ର ସର୍ବଭୂତାନ୍ତରାତ୍ମା ଜାଗତିକ ଦୁଃଖ ସହିତ ଲିପ୍ତ ହୁଅନ୍ତି ନାହିଁ, କାରଣ ସେ ଜଗତର ଅତୀତ । ମୋର ରୋଗ ଥିଲେ ମୁଁ ସବୁ ପୀତବର୍ଣ୍ଣ ଦେଖିପାରେ, କିନ୍ତୁ ସେଥିରେ ସୂର୍ଯ୍ୟର କିଛି ଯାଏ ଆସେ ନାହିଁ ।

---

* କଠ ଉପ., ୨।୨।୯-୧୦

** କଠ ଉପ., ୨।୨।୧୧

ଏକୋ ବଶୀ ସର୍ବଭୂତାନ୍ତରାତ୍ମା ଏକଂ ରୂପଂ ବହୁଧା ଯଃ କରୋତି ।
ତମାତ୍ମସ୍ଥଂ ଯେଽନୁପଶ୍ୟନ୍ତି ଧୀରାସ୍ତେଷାଂ ସୁଖଂ ଶାଶ୍ୱତଂ ନେତରେଷାମ୍ ॥୧

—ଯେ ଏକ, ସକଳର ନିୟନ୍ତା ଏବଂ ସର୍ବଭୂତର ଅନ୍ତରାତ୍ମା, ଯେ ସ୍ୱକୀୟ ଏକ ରୂପକୁ ବହୁପ୍ରକାର କରନ୍ତି, ତାହାଙ୍କୁ ଯେଉଁ ଜ୍ଞାନୀଗଣ ନିଜ ମଧ୍ୟରେ ଦର୍ଶନ କରନ୍ତି, ସେହିମାନେ ନିତ୍ୟ ସୁଖ ଲାଭ କରନ୍ତି, ଅନ୍ୟମାନେ ନୁହନ୍ତି ।

ନିତ୍ୟୋଽନିତ୍ୟାନାଂ ଚେତନଶ୍ଚେତନାନାମେକୋ ବହୂନାଂ ଯୋ ବିଦଧାତି କାମାନ୍ ।
ତମାତ୍ମସ୍ଥଂ ଯେଽନୁପଶ୍ୟନ୍ତି ଧୀରାସ୍ତେଷାଂ ଶାନ୍ତିଃ ଶାଶ୍ୱତୀ ନେତରେଷାମ୍ ॥୨

—ଯେ ଅନିତ୍ୟ ବସ୍ତୁସମୂହ ମଧ୍ୟରେ ନିତ୍ୟ, ଯେ ସଚେତନମାନଙ୍କ ମଧ୍ୟରେ ଚୈତନ୍ୟସ୍ୱରୂପ, ଯେ ଏକା ହୋଇ ମଧ୍ୟ ଅନେକଙ୍କର କାମ୍ୟ ବସ୍ତୁସକଳ ବିଧାନ କରୁଛନ୍ତି, ତାହାଙ୍କୁ ଯେଉଁ ଜ୍ଞାନୀଗଣ ନିଜ ଆତ୍ମାରୂପେ ଦର୍ଶନ କରନ୍ତି, ସେହିମାନେ ନିତ୍ୟ ଶାନ୍ତି ଲାଭ କରନ୍ତି, ଅନ୍ୟମାନେ ନୁହେଁ ।

ବାହ୍ୟ ଜଗତରେ ତାହାଙ୍କୁ କେଉଁଠାରେ ପାଇବ ? ସୂର୍ଯ୍ୟ, ଚନ୍ଦ୍ର ବା ତାରାରେ ତାଙ୍କୁ ତୁମେ କପରି ପାଇବ ?

ନ ତତ୍ର ସୂର୍ଯ୍ୟୋ ଭାତି ନ ଚନ୍ଦ୍ରତାରକଂ
ନେମା ବିଦ୍ୟୁତୋ ଭାନ୍ତି କୁତୋଽୟମଗ୍ନିଃ ।
ତମେବ ଭାନ୍ତମନୁଭାତି ସର୍ବଂ ତସ୍ୟ ଭାସା ସର୍ବମିଦଂ ବିଭାତି ॥୩

—ସେଠାରେ ସୂର୍ଯ୍ୟ କିରଣ ଦିଏ ନାହିଁ, ଚନ୍ଦ୍ରତାରକା ମଧ୍ୟ କିରଣ ଦିଅନ୍ତି ନାହିଁ, ବିଦ୍ୟୁତ୍‌ସମୂହ ପ୍ରକାଶ ପାଏ ନାହିଁ, ଏହି ଅଗ୍ନି ପୁଣି କେଉଁଠାରେ ? ସମୁଦାୟ ବସ୍ତୁ ତାଙ୍କର ଆଲୋକରେ ଆଲୋକିତ; ତାଙ୍କର ଦୀପ୍ତିରେ ସମସ୍ତେ ଉଦ୍ଭାସିତ ।

ଊର୍ଦ୍ଧ୍ୱମୂଲୋଽବାକ୍‌ଶାଖ ଏଷୋଽଶ୍ୱତ୍ଥଃ ସନାତନଃ ।
ତଦେବ ଶୁକ୍ରଂ ତଦ୍‌ବ୍ରହ୍ମ ତଦେବାମୃତମୁଚ୍ୟତେ ।
ତସ୍ମିଁଲ୍ଲୋକାଃ ଶ୍ରିତାଃ ସର୍ବେ ତଦୁ ନାତ୍ୟେତି କଶ୍ଚନ । ଏତଦ୍ୱୈ ତତ୍ ॥୪

—ଊର୍ଦ୍ଧ୍ୱମୂଳ ଓ ନିମ୍ନଗାମୀ ଶାଖାଯୁକ୍ତ ଏହି ଚିରନ୍ତନ ଅଶ୍ୱତ୍ଥ ବୃକ୍ଷ, ଅର୍ଥାତ୍ ସଂସାରବୃକ୍ଷ ରହିଛି । ସେ ଉଜ୍ଜ୍ୱଳ, ସେ ବ୍ରହ୍ମ, ସେ ଅମୃତ ବୋଲି ଉକ୍ତ ହୁଅନ୍ତି । ସମୁଦାୟ ଲୋକ ତାଙ୍କ ମଧ୍ୟରେ ଆଶ୍ରିତ ହୋଇ ରହିଛନ୍ତି । କେହି ହେଲେ ତାହାଙ୍କୁ ଅତିକ୍ରମ କରିପାରେ ନାହିଁ । ଏହି ସେ ଆତ୍ମା ।'

---

୧ କଠ ଉପ., ୨।୨।୧୨
୨ କଠ ଉପ., ୨।୨।୧୩
୩ କଠ ଉପ., ୨।୨।୧୫
୪ କଠ ଉପ., ୨।୩।୧

ବେଦର ବ୍ରାହ୍ମଣଭାଗରେ ନାନାବିଧ ସ୍ୱର୍ଗର କଥା ଅଛି । ଉପନିଷଦ୍‌ର ମତ ହେଉଛି ଯେ ଏହି ସବୁ ସ୍ୱର୍ଗକୁ ଯିବାର ବାସନା ତ୍ୟାଗ କରିବାକୁ ହେବ । ଇନ୍ଦ୍ରଲୋକ, ବରୁଣଲୋକକୁ ଗଲେ ଯେ ବ୍ରହ୍ମଦର୍ଶନ ହୁଏ, ତାହା ନୁହେଁ; ବରଂ ଆମ ଆତ୍ମା ଭିତରେ ହିଁ ବ୍ରହ୍ମଦର୍ଶନ ସୁସ୍ପଷ୍ଟରୂପେ ହୋଇଥାଏ ।

ଯଥାଦର୍ଶେ ତଥାତ୍ମନି ଯଥା ସ୍ୱପ୍ନେ ତଥା ପିତୃଲୋକେ ।
ଯଥାପ୍‌ସୁପରୀବ ଦଦୃଶେ ତଥା ଗନ୍ଧର୍ବଲୋକେ
ଛାୟାତପୟୋରିବ ବ୍ରହ୍ମଲୋକେ ॥*

—ଯେପରି ଦର୍ପଣରେ ଲୋକ ନିଜର ପ୍ରତିବିମ୍ବ ପରିଷ୍କାରରୂପେ ଦେଖିବାକୁ ପାଏ, ସେହିପରି ଆତ୍ମାରେ ବ୍ରହ୍ମ ଦର୍ଶନ ହୁଏ । ଯେପରି ସ୍ୱପ୍ନରେ ନିଜକୁ ଅସ୍ପଷ୍ଟରୂପେ ଅନୁଭବ କରିହୁଏ, ସେହିପରି ପିତୃଲୋକରେ ବ୍ରହ୍ମର ଦର୍ଶନ ହୁଏ । ଯେପରି ଜଳରେ ଲୋକ ନିଜର ରୂପ ଦର୍ଶନ କରେ, ସେହିପରି ଗନ୍ଧର୍ବଲୋକରେ ବ୍ରହ୍ମ-ଦର୍ଶନ ହୋଇଥାଏ । ଯେପରି ଆଲୋକ ଓ ଛାୟା ପରସ୍ପର ପୃଥକ୍, ସେହିପରି ବ୍ରହ୍ମଲୋକରେ ବ୍ରହ୍ମ ଓ ଜଗତର ପାର୍ଥକ୍ୟ ସ୍ପଷ୍ଟ ଉପଲବ୍‌ଧ ହୁଏ, କିନ୍ତୁ ତଥାପି ପୂର୍ଣ୍ଣରୂପରେ ବ୍ରହ୍ମର ଦର୍ଶନ ହୁଏ ନାହିଁ ।

ଅତଏବ ବେଦାନ୍ତ କହେ : ସର୍ବୋଚ୍ଚ ସ୍ୱର୍ଗ ଆମମାନଙ୍କର ନିଜ ଆତ୍ମା, ପୂଜା ସକାଶେ ସର୍ବଶ୍ରେଷ୍ଠ ମନ୍ଦିର ମାନବାତ୍ମା, ଏହା ସର୍ବପ୍ରକାର ସ୍ୱର୍ଗଠାରୁ ଶ୍ରେଷ୍ଠ, କାରଣ ଏହି ଆତ୍ମା ମଧ୍ୟରେ ଯେପରି ସେହି ସତ୍ୟକୁ ସୁସ୍ପଷ୍ଟ ଅନୁଭବ କରିହୁଏ, ଅନ୍ୟ କେଉଁଠାରେ ସେତେ ସ୍ପଷ୍ଟ ଅନୁଭୂତ ହୁଏ ନାହିଁ । ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ଗଲେ ଯେ ଏହି ଆତ୍ମଦର୍ଶନ ସମ୍ବନ୍ଧରେ ବିଶେଷ କିଛି ସାହାଯ୍ୟ ମିଳେ, ତାହା ନୁହେଁ । ଭାରତରେ ଥିଲାବେଳେ ମନେ ହେଉଥିଲା, କୌଣସି ଗୁହାରେ ବାସ କଲେ ହୁଏତ ଖୁବ୍ ସ୍ପଷ୍ଟ ବ୍ରହ୍ମାନୁଭୂତି ହେବ, କିନ୍ତୁ ଦେଖିଲି ତାହା ନୁହେଁ । ତା'ପରେ ଭାବିଲି, ହୁଏତ ବଣକୁ ଗଲେ ସୁବିଧା ହେବ, ତାହାପରେ କାଶୀ କଥା ମନେ ହେଲା । ସବୁ ସ୍ଥାନରେ ଏକ ପ୍ରକାର, କାରଣ ସର୍ବଦା ଆମେମାନେ ନିଜେ ନିଜର ଜଗତ୍ ଗଠନ କରିନେଉ । ଯଦି ମୁଁ ଅସାଧୁ ହୁଏ, ସମୁଦାୟ ଜଗତ୍ ମୋ ପକ୍ଷରେ ମନ୍ଦ ବୋଲି ମନେ ହେବ । ଉପନିଷଦ୍ ଏହା ହିଁ କହେ । ଆଉ ସେହି ଗୋଟିଏ ନିୟମ ସର୍ବତ୍ର ଖଟିବ । ଯଦି ମୋର ଏଠାରେ ମୃତ୍ୟୁ ହୁଏ ଏବଂ ମୁଁ ସ୍ୱର୍ଗକୁ ଯାଏ, ସେଠାରେ ମଧ୍ୟ ଏହିପରି ଦେଖିବି । ଯେତେ ଦିନ ପର୍ଯ୍ୟନ୍ତ ତୁମେ ପବିତ୍ର ନ ହୋଇଛ, ସେତେ ଦିନ ଗୁହା, ଅରଣ୍ୟ, ବାରାଣସୀ ଅଥବା ସ୍ୱର୍ଗକୁ ଯିବାରେ ବିଶେଷ କିଛି ଲାଭ ନାହିଁ; ଅଥଚ ଯଦି ତୁମେ ତୁମର ଚରିତ୍ରଦର୍ପଣକୁ ନିର୍ମଳ କରିପାର, ତେବେ ତୁମେ ଯେଉଁଠାରେ ରହି ନା କାହିଁକି, ତୁମେ ପ୍ରକୃତ ସତ୍ୟ ଅନୁଭବ

* କଠ ଉପ., ୬।୩।୫

କରିବ । ଅତଏବ ଏଠାରୁ ସେଠାକୁ ଯିବା ବୃଥା ଶକ୍ତିକ୍ଷୟ ମାତ୍ର—ସେହି ଶକ୍ତି ଯଦି ଚିତ୍ତଦର୍ପଣର ନିର୍ମଳତା-ସାଧନାରେ ବ୍ୟୟିତ ହୁଏ, ତେବେ ତାହା କାର୍ଯ୍ୟକାରୀ ହେବ । ନିମ୍ନଲିଖିତ ଶ୍ଳୋକରେ ମଧ୍ୟ ଏହି ଭାବ ବର୍ଣ୍ଣିତ ହୋଇଛି ।

ନ ସନ୍ଦୃଶେ ତିଷ୍ଠତି ରୂପମସ୍ୟ, ନ ଚକ୍ଷୁଷା ପଶ୍ୟତି କଶ୍ଚନୈନମ୍ ।
ହୃଦା ମନୀଷା ମନସାଭିକ୍ଳୃପ୍ତୋ, ଯ ଏତଦ୍‌ବିଦୁରମୃତାସ୍ତେ ଭବନ୍ତି॥*

—ତାଙ୍କର ରୂପ ଦର୍ଶନର ବିଷୟ ହୁଏ ନାହିଁ । କେହି ତାହାଙ୍କୁ ଚକ୍ଷୁଦ୍ୱାରା ଦେଖି-ପାରେ ନାହିଁ । ହୃଦୟ, ସଂଶୟରହିତ ବୁଦ୍ଧି ଏବଂ ମନନଦ୍ୱାରା ସେ ପ୍ରକାଶିତ ହୁଅନ୍ତି । ଯେଉଁମାନେ ଏହି ଆତ୍ମାକୁ ଜାଣନ୍ତି, ସେମାନେ ଅମର ହୁଅନ୍ତି ।

ଯେଉଁମାନେ ମୋର ରାଜଯୋଗ ବିଷୟକ ବକ୍ତୃତାଗୁଡ଼ିକ ଶୁଣିଛନ୍ତି, ସେମାନଙ୍କ ଅବଗତି ପାଇଁ ମୁଁ କହୁଛି, ଏହା ଜ୍ଞାନଯୋଗଠାରୁ କିଛିଏ ଭିନ୍ନ । ଜ୍ଞାନଯୋଗର ଲକ୍ଷଣ ଏହି ଭାବରେ ଉକ୍ତ ହୋଇଛି :

ଯଦା ପଞ୍ଚାବତିଷ୍ଠନ୍ତେ ଜ୍ଞାନାନି ମନସା ସହ ।
ବୁଦ୍ଧିଶ୍ଚ ନ ବିଚେଷ୍ଟତି ତାମାହୁଃ ପରମାଂ ଗତିମ୍ ॥**

—ଯେତେବେଳେ ସମୁଦାୟ ଇନ୍ଦ୍ରିୟଗୁଡ଼ିକ ସଂଯତ ହୁଅନ୍ତି, ମନୁଷ୍ୟ ଯେତେ-ବେଳେ ଏହିଗୁଡ଼ିକୁ ନିଜର ଗୋଲାମ କରି ରଖେ, ଯେତେବେଳେ ସେମାନେ ଆଉ ମନକୁ ଚଞ୍ଚଳ କରିପାରନ୍ତି ନାହିଁ, ସେତେବେଳେ ଯୋଗୀ ପରମଗତି ଲାଭ କରନ୍ତି ।

ଯଦା ସର୍ବେ ପ୍ରମୁଚ୍ୟନ୍ତେ କାମା ଯେଽସ୍ୟ ହୃଦି ଶ୍ରିତାଃ ।
ଅଥ ମର୍ତ୍ତ୍ୟୋଽମୃତୋ ଭବତ୍ୟତ୍ର ବ୍ରହ୍ମ ସମଶ୍ନୁତେ ॥
ଯଦା ସର୍ବେ ପ୍ରଭିଦ୍ୟନ୍ତେ ହୃଦୟସ୍ୟେହ ଗ୍ରନ୍ଥୟଃ ।
ଅଥ ମର୍ତ୍ତ୍ୟୋଽମୃତୋ ଭବତ୍ୟେତାବଦ୍ଧ୍ୟନୁଶାସନମ୍ ॥***

—ଯେଉଁ ସକଳ କାମନା ମର୍ତ୍ତ୍ୟ ଜୀବର ହୃଦୟକୁ ଆଶ୍ରୟ କରିଛି, ସେହି ସମୁଦାୟ ଯେତେବେଳେ ବିନଷ୍ଟ ହୁଏ, ସେତେବେଳେ ମର୍ତ୍ତ୍ୟ ଅମର ହୁଏ ଓ ଏହିଠାରେ ହିଁ ବ୍ରହ୍ମକୁ ପ୍ରାପ୍ତ ହୁଏ । ଯେତେବେଳେ ଇହଲୋକରେ ହୃଦୟଗ୍ରନ୍ଥି ସମୂହ ଛିନ୍ନ ହୁଏ, ସେତେବେଳେ ମର୍ତ୍ତ୍ୟ ଅମର ହୁଏ—ଏହା ହିଁ ଉପଦେଶ ।

ସାଧାରଣତଃ ଲୋକେ କହନ୍ତି, ବେଦାନ୍ତ—କେବଳ ବେଦାନ୍ତ କାହିଁକି—ଭାରତୀୟ ସକଳ ଦର୍ଶନ ଓ ଧର୍ମପ୍ରଣାଳୀ ଏହି ଜଗତକୁ ଛାଡ଼ି ଏହାର ବାହାରକୁ ଯିବାକୁ କହୁଛନ୍ତି । କିନ୍ତୁ ପୂର୍ବୋକ୍ତ ଶ୍ଳୋକଦ୍ୱୟରୁ ପ୍ରମାଣିତ ହେବ ଯେ, ଆମର

* କଠ ଉପ., ୨।୩।୯
** କଠ ଉପ., ୨।୩।୧୦
*** କଠ ଉପ., ୨।୩।୧୪, ୧୫

ଦାର୍ଶନିକଗଣ ସ୍ୱର୍ଗ ଅଥବା ଆଉ କୁଆଡ଼େ ଯିବାକୁ ଚାହୁଁ ନ ଥିଲେ; ବରଂ ସେମାନେ କହୁଛନ୍ତି, ସ୍ୱର୍ଗର ଭୋଗ, ସୁଖଦୁଃଖ କ୍ଷଣସ୍ଥାୟୀ । ଯେତେ ଦିନ ଆମେମାନେ ଦୁର୍ବଳ ରହୁଥିବୁ, ସେତେ ଦିନଯାଏ ଆମମାନଙ୍କୁ ସ୍ୱର୍ଗ-ନରକରେ ବୁଲିବାକୁ ହେବ; କିନ୍ତୁ ଆତ୍ମା ହିଁ ବାସ୍ତବିକ ଏକମାତ୍ର ସତ୍ୟ । ସେମାନେ ଏହା ମଧ୍ୟ କହନ୍ତି, ଆତ୍ମହତ୍ୟାଦ୍ୱାରା ଏହି ଜନ୍ମ-ମୃତ୍ୟୁ-ପ୍ରବାହକୁ ଅତିକ୍ରମ କରାଯାଇପାରେ ନାହିଁ । ତେବେ ପ୍ରକୃତ ପଥ ପାଇବା ଅତି କଠିନ । ପାଶ୍ଚାତ୍ୟ ଲୋକମାନଙ୍କ ପରି ହିନ୍ଦୁମାନେ ମଧ୍ୟ ସବୁ କଥାକୁ ନିଜେ ପରୀକ୍ଷା କରିବାକୁ ଚାହାଁନ୍ତି—ତେବେ ଜୀବନ ସମ୍ପର୍କରେ ଆମର ଦୃଷ୍ଟିଭଙ୍ଗୀ ଅଲଗା । ପାଶ୍ଚାତ୍ୟ ଲୋକମାନେ କହନ୍ତି ବେଶ୍ ଭଲ ଘର ଖଣ୍ଡିଏ କର, ଉତ୍ତମ ଭୋଜନ ଓ ପରିଚ୍ଛଦ ସଂଗ୍ରହ କର, ବିଜ୍ଞାନର ଚର୍ଚ୍ଚା କର, ବୁଦ୍ଧିବୃତ୍ତିର ଉନ୍ନତି କର । ଏହିଗୁଡ଼ିକ ଯେ କରିପାରିବ, ସେ ଖୁବ୍ କାମିକା ଲୋକ; କିନ୍ତୁ ହିନ୍ଦୁମାନେ କହନ୍ତି, ଜ୍ଞାନର ଅର୍ଥ ଆତ୍ମଜ୍ଞାନ—ସେମାନେ ସେହି ଆତ୍ମଜ୍ଞାନାନନ୍ଦରେ ବିଭୋର ହୋଇ ରହିବାକୁ ଚାହାଁନ୍ତି ।

ଆମେରିକାରେ ଜଣେ ବିଖ୍ୟାତ ଅଜ୍ଞେୟବାଦୀ ବକ୍ତା* ଅଛନ୍ତି—ସେ ଖୁବ୍ ଭଲ ଲୋକ ଏବଂ ସୁବକ୍ତା । ସେ 'ଧର୍ମ' ସମ୍ବନ୍ଧରେ ଥରେ ଗୋଟିଏ ବକ୍ତୃତା ଦେଇଥିଲେ । ସେଥିରେ ସେ କହିଲେ, 'ଧର୍ମର କୌଣସି ଆବଶ୍ୟକତା ନାହିଁ କିମ୍ବା ପରଲୋକ ନେଇ ମୁଣ୍ଡ ଖେଳାଇବାର ମଧ୍ୟ ଆମମାନଙ୍କର କିଛିମାତ୍ର ଆବଶ୍ୟକତା ନାହିଁ ।' ତାଙ୍କର ମତଟିକୁ ବୁଝାଇବା ପାଇଁ ସେ ଗୋଟିଏ ଉପମା ପ୍ରୟୋଗ କରିଥିଲେ । ଜଗତରୂପକ ଗୋଟିଏ କମଳାଲେମ୍ବୁ ଆମ ସମ୍ମୁଖରେ ରହିଛି, ଆମେ ତାହାର ସମସ୍ତ ରସ ବାହାର କରିନେବାକୁ ଚାହୁଁ । ତାଙ୍କ ସହିତ ପରେ ମୋର ଥରେ ସାକ୍ଷାତ୍ ହେଲା । ମୁଁ ତାଙ୍କୁ କହିଲି, 'ମୁଁ ଆପଣଙ୍କ ସହିତ ଏକମତ । ମୋ ନିକଟରେ ମଧ୍ୟ ଗୋଟିଏ ଫଳ ରହିଛି—ମୁଁ ମଧ୍ୟ ତାହାର ସବୁ ରସକୁ ଖାଇବାକୁ ଚାହେଁ । ତେବେ ସେ ଫଳଟି କଅଣ ଏହା ନେଇ ଆମମାନଙ୍କ ମଧ୍ୟରେ ମତଭେଦ ରହିଛି । ଆପଣ ଯାହାକୁ କମଳାଲେମ୍ବୁ ମନେ କରୁଛନ୍ତି, ମୁଁ ତାହାକୁ ଆମ୍ବ ମନେ କରୁଛି । ଆପଣ ମନେ କରନ୍ତି, ଜଗତରେ ଜନ୍ମଗ୍ରହଣ କରି ଖାଇ ପିନ୍ଧି ରହିପାରିଲେ ହିଁ ଯଥେଷ୍ଟ ଏବଂ କିଛି ବୈଜ୍ଞାନିକ ତତ୍ତ୍ୱ ଜାଣିପାରିଲେ ଯଥେଷ୍ଟ ହେଲା; କିନ୍ତୁ ଆପଣଙ୍କର ଏହା କହିବାର କୌଣସି ଅଧିକାର ନାହିଁ ଯେ, ତାହା ଛଡ଼ା ଅନ୍ୟ କୌଣସି କର୍ତ୍ତବ୍ୟ ନାହିଁ । ମୋ ପକ୍ଷରେ ଏପରି ଧାରଣା ଏକାବେଳକେ ଅକାମିକର ।'

ଯଦି କେବଳ ଆପେଲ୍ କିପରି ଭୂମିରେ ପଡ଼େ, ଅଥବା ବୈଦ୍ୟୁତିକପ୍ରବାହ କିପରି ସ୍ନାୟୁକୁ ଉତ୍ତେଜିତ କରେ, ଏହା ଜାଣିବା ହିଁ ଜୀବନର ଏକମାତ୍ର କାର୍ଯ୍ୟ ହୁଏ, ତା' ହେଲେ ତ ମୁଁ ଏହିକ୍ଷଣି ଆତ୍ମହତ୍ୟା କରିବି । ମୋର ସଂକଳ୍ପ—ସବୁ କିଛିର

* Robert Ingersoll

ମର୍ମସ୍ଥଳ ଅନୁସନ୍ଧାନ କରିବ—ଜୀବନର ପ୍ରକୃତ ରହସ୍ୟ କଅଣ ତାହା ଜାଣିବ। ତୁମେମାନେ ପ୍ରାଣର ଭିନ୍ନ ଭିନ୍ନ ବିକାଶର କଥା ଆଲୋଚନା କର, ମୁଁ ପ୍ରାଣର ସ୍ୱରୂପକୁ ଜାଣିବାକୁ ଚାହେଁ। ମୋର 'ଦର୍ଶନ' କହେ—ଜଗତ ଓ ଜୀବନର ସମୁଦାୟ ରହସ୍ୟକୁ ଜାଣିବାକୁ ହେବ। ସ୍ୱର୍ଗ, ନରକ ଇତ୍ୟାଦି ସବୁ କୁସଂସ୍କାର ଦୂର କରିବାକୁ ହେବ, ଯଦିଓ ଏହି ପୃଥିବୀଭଳି ସେଗୁଡ଼ିକର ମଧ୍ୟ ବ୍ୟାବହାରିକ ସତ୍ତା ଅଛି। ମୁଁ ଏହି ଆତ୍ମାର ଅନ୍ତରାତ୍ମାକୁ ଜାଣିବ—ତାହାର ପ୍ରକୃତ ସ୍ୱରୂପକୁ ଜାଣିବ—ତାହା କଅଣ ସେତକ ଜାଣିବାରେ ମୋର ତୃପ୍ତି ହେବ ନାହିଁ। ମୁଁ ସକଳ ଜିନିଷର 'କାହିଁକି' ଜାଣିବାକୁ ଚାହେଁ—'କିପରି ହୁଏ' ଏଭଳି ଅନୁସନ୍ଧାନ ବାଳକମାନେ କରନ୍ତୁ। ବିଜ୍ଞାନ ଆଉ କଅଣ ? ତୁମ ଦେଶର ଜଣେ ବିଖ୍ୟାତ ଲୋକ କହିଛନ୍ତି, 'ସିଗାରେଟ୍ ଖାଇବାବେଳେ ଯାହା ଯାହା ଘଟେ, ତାହା ଯଦି ମୁଁ ଲେଖି ରଖେ; ତେବେ ତାହା ସିଗାରେଟ୍‌ର ବିଜ୍ଞାନ ହେବ।' ଅବଶ୍ୟ ବିଜ୍ଞାନବିତ୍ ହେବା ଖୁବ୍ ଭଲ ଏବଂ ଗୌରବର ବିଷୟ ଯତ—ଈଶ୍ୱର ସେମାନଙ୍କୁ ତାଙ୍କର ଅନୁସନ୍ଧାନରେ ସହାୟତା ଓ ଆଶୀର୍ବାଦ କରନ୍ତୁ। କିନ୍ତୁ ଯେତେବେଳେ କେହି କୁହେ, ଏହି ବିଜ୍ଞାନ-ଚର୍ଚ୍ଚା ହିଁ ସର୍ବସ୍ୱ, ସେତେବେଳେ ସେ ନିର୍ବୋଧ ଭଳି କଥା-ବାର୍ତ୍ତା କରୁଛନ୍ତି ବୋଲି ବୁଝିବାକୁ ହେବ। ସେ କେବେ ଜୀବନର ରହସ୍ୟ ଜାଣିବାକୁ ଚେଷ୍ଟା କରିନାହାନ୍ତି, ପ୍ରକୃତ ବସ୍ତୁ କଅଣ ସେ ସମ୍ବନ୍ଧରେ ସେ କେବେ ଆଲୋଚନା କରିନାହାନ୍ତି। ମୁଁ ଅନାୟାସରେ ଯୁକ୍ତିଦ୍ୱାରା ବୁଝାଇ ଦେଇପାରେ ଯେ, ତୁମର ଯେତେ ସବୁ ଜ୍ଞାନ ସମସ୍ତ ଭିତ୍ତିହୀନ। ତୁମେ ପ୍ରାଣର ବିଭିନ୍ନ ବିକାଶ କଥା ଆଲୋଚନା କରୁଛ। ଯଦି ତୁମକୁ ମୁଁ ପଚାରେ, 'ପ୍ରାଣ କଅଣ ?' ତୁମେ କହିବ, 'ମୁଁ ଜାଣେ ନାହିଁ।' ତୁମକୁ ଯାହା ଭଲ ଲାଗେ, ତାହା କରିବାକୁ ସେଥିରେ କେହି ବାଧା ଦେଉନାହିଁ; କିନ୍ତୁ ମୋତେ ମଧ୍ୟ ତୁମେ ମୋ ଭାବରେ ରହିବାକୁ ଦିଅ।

ମୁଁ ନିଜର ଭାବକୁ କାର୍ଯ୍ୟରେ ପରିଣତ କରିଥାଏ। ଅତଏବ ଅମୁକ ଲୋକ କାମର ଲୋକ ନୁହେଁ, ଅମୁକ କାମର ଲୋକ, ଏପରି କହିବା ବୃଥା କଥାମାତ୍ର। ତୁମେ କାମର ଲୋକ ଏକଭାବରେ, ମୁଁ ଆଉ ଏକଭାବରେ। ପ୍ରାଚ୍ୟ ଦେଶରେ ଯଦି କାହାକୁ କୁହାଯାଏ, ତୁମେ ଗୋଟିଏ ଗୋଡ଼ରେ ଠିଆ ହେଲେ ସତ୍ୟ ଲାଭ କରିବ, ତାହାହେଲେ ସେମାନେ ଗୋଟିଏ ଗୋଡ଼ରେ ଠିଆ ହୋଇ ରହିବେ। ପାଶ୍ଚାତ୍ୟ ଦେଶମାନଙ୍କରେ କେହି ଯଦି ଶୁଣେ ଅମୁକ ଜାଗାରେ ସୁନାର ଖଣି ଅଛି, କିନ୍ତୁ ତାହାର ଚତୁର୍ଦ୍ଦିଗରେ ଅସଭ୍ୟ ଲୋକମାନେ ବାସକରନ୍ତି। ହୁଏତ ହଜାରେ* ଲୋକ ସୁନା ଆଶାରେ ବିପଦର ସମ୍ମୁଖୀନ ହେବେ ଓ ତାଙ୍କ ମଧ୍ୟରୁ କେବଳ ଜଣେ ଲୋକ କୃତକାର୍ଯ୍ୟ ହୋଇପାରେ। ଏହି ଲୋକମାନେ ମଧ୍ୟ ଏକଥା ଶୁଣିଛନ୍ତି ଯେ

* Gold-rush

ଆତ୍ମା ବୋଲି କିଛି ଅଛି, କିନ୍ତୁ ସେମାନେ ପୁରୋହିତମାନଙ୍କ ଉପରେ ତାହାର ମୀମାଂସାର ଭାର ଦେଇ ସେମାନେ ନିଶ୍ଚିନ୍ତ । କିନ୍ତୁ ପ୍ରଥମ ଲୋକ ସୁନା ସକାଶେ ଅସଭ୍ୟମାନଙ୍କ ପାଖକୁ ଯିବାକୁ ରାଜି ନୁହେଁ । ସେ କହେ, ସେଥିରେ ବିପଦର ଆଶଙ୍କା ଅଛି । କିନ୍ତୁ ଯଦି ତାହାକୁ କୁହାଯାଏ, ଏଭରେଷ୍ଟ ପର୍ବତର ଶିଖରରେ, ସମୁଦ୍ର-ସମତଳର ୩୦,୦୦୦ ଫୁଟ ଉପରେ ଏପରି ଜଣେ ଆଶ୍ଚର୍ଯ୍ୟଜନକ ସାଧୁ ଅଛନ୍ତି ଯେ, ତାଙ୍କୁ ଆତ୍ମଜ୍ଞାନ ଦେଇପାରିବେ, ତତ୍କ୍ଷଣାତ୍ ସେ ଲୁଗାପଟା ଅଥବା ଆଉ କିଛି ନ ନେଇ ହଠାତ୍ ଯିବାକୁ ପ୍ରସ୍ତୁତ । ଏହି ଚେଷ୍ଟାରେ ହୁଏତ ୪୦,୦୦୦ ଲୋକ ମରିଯାଇପାରନ୍ତି, କେବଳ ଜଣେ ସତ୍ୟ ଲାଭ କରିପାରେ । ଏମାନେ ମଧ୍ୟ ଏକ ଦୃଷ୍ଟିରୁ ଖୁବ୍ କାମର ଲୋକ—ତେବେ ଭୁଲ ଏତିକି ଯେ ତୁମେ ଯେଉଁଟିକୁ ଜଗତ କହ, କେବଳ ସେହି ଟିକିକ ହିଁ ସବୁ, ଏପରି ଚିନ୍ତା କରିବା । ତୁମର ଜୀବନ କ୍ଷଣସ୍ଥାୟୀ ଇନ୍ଦ୍ରିୟ-ଭୋଗ ମାତ୍ର—ଏଥିରେ ନିତ୍ୟତା କିଛି ନାହିଁ, ବରଂ ଏହା ଉତ୍ତରୋତ୍ତର ଦୁଃଖ ଆନୟନ କରେ । ମୋର ପଥରେ ଅନନ୍ତ ଶାନ୍ତି—ତୁମ ପଥରେ ଅନନ୍ତ ଦୁଃଖ ।

ମୁଁ କହୁନାହିଁ ଯେ, ତୁମେ ଯାହାକୁ ପ୍ରକୃତ ପଥ କହୁଛ, ତାହା ଭ୍ରମ । ତୁମେ ନିଜେ ଯାହା ବୁଝିଛ, ତାହା କର । ଏହାଦ୍ୱାରା ମଙ୍ଗଳ ହେବ—ଲୋକମାନଙ୍କର ମହତ୍ତ୍ୱ ହିତ ହେବ—କିନ୍ତୁ ତାହା ବୋଲି ମୋର ମତକୁ ନିନ୍ଦା କର ନାହିଁ । ମୋର ପଥ ମଧ୍ୟ ମୋ ପକ୍ଷରେ କାର୍ଯ୍ୟକାରୀ ପଥ । ଆସ, ଆମେମାନେ ସମସ୍ତେ ନିଜ ନିଜ ପ୍ରଣାଳୀରେ କାର୍ଯ୍ୟ କରିବା । ଈଶ୍ୱରେଚ୍ଛାରେ ଯଦି ଆମେମାନେ ଉଭୟ ଦିଗରୁ କର୍ମକୁଶଳ ହୋଇଥାଆନ୍ତୁ ତାହାହେଲେ ବଡ଼ ଭଲ ହୋଇଥାଆନ୍ତା । ମୁଁ ଏପରି ଅନେକ ବୈଜ୍ଞାନିକ ଦେଖିଛି, ଯେଉଁମାନେ ବିଜ୍ଞାନ ଓ ଅଧ୍ୟାତ୍ମତତ୍ତ୍ୱ ଉଭୟ ଦିଗରୁ କୁଶଳୀ—ଆଉ ମୁଁ ଆଶାକରେ କାଳକ୍ରମେ ସମୁଦାୟ ମାନବଜାତି ଏହି ଉଭୟ ବିଷୟରେ ଦକ୍ଷ ଲୋକ ହୋଇପାରିବେ । ମନେକର ଗୋଟିଏ କଡ଼େଇରେ ପାଣି ଗରମ ହେଉଛି—ସେ ସମୟରେ କଅଣ ହେଉଛି, ତାହା ଯଦି ତୁମେ ଲକ୍ଷ୍ୟ କର, ତୁମେ ଦେଖିବ, ଗୋଟିଏ କୋଣରେ ଗୋଟିଏ ବୁଦ୍‌ବୁଦ ଉଠୁଛି, ଆଉ ଗୋଟିଏ କୋଣରେ ଆଉ ଗୋଟିଏ ଉଠୁଛି । ଏହି ବୁଦ୍‌ବୁଦଗୁଡ଼ିକ କ୍ରମଶଃ ବଢ଼ୁଥାଏ—ଚାରି ପାଞ୍ଚଟି ଏକାଠି ହେଲା, ଅବଶେଷରେ ସବୁଗୁଡ଼ିକ ଏକାଠି ହୋଇ ଏକ ପ୍ରବଳ ଆଲୋଡ଼ନ ଆରମ୍ଭ ହେଲା । ଏହି ଜଗତ ମଧ୍ୟ ଏହିପରି । ପ୍ରତ୍ୟେକ ଲୋକ ଯେପରି ଗୋଟିଏ ଗୋଟିଏ ବୁଦ୍‌ବୁଦ, ଆଉ ବିଭିନ୍ନ ଜାତି ଯେପରି କେତେକଗୁଡ଼ିଏ ବୁଦ୍‌ବୁଦର ସମଷ୍ଟି । କ୍ରମଶଃ ଜାତିରେ ଜାତିରେ ମିଳନ ହେଉଛି—ମୋର ନିଶ୍ଚିତ ଧାରଣା, ଦିନେ ଏପରି ସମୟ ଆସିବ, ଯେତେବେଳେ ଜାତି ବୋଲି କିଛି ରହିବ ନାହିଁ—ଜାତିରେ ଜାତିରେ ପ୍ରଭେଦ ଚାଲିଯିବ । ଆମେମାନେ ଚାହୁଁ ବା ନ ଚାହୁଁ, ଆମେମାନେ ଯେ ଏକତ୍ୱ ଦିଗରେ ଅଗ୍ରସର ହେଉଛୁଁ, ତାହା

ଦିନେ ନା ଦିନେ ପ୍ରକାଶିତ ହେବ । ପ୍ରକୃତରେ ଆମ ସମସ୍ତଙ୍କର ଭ୍ରାତୃସମ୍ବନ୍ଧ ସ୍ୱାଭାବିକ —କିନ୍ତୁ ଆମେମାନେ ପୃଥକ୍ ହୋଇପଡ଼ିଛୁ । ଏପରି ସମୟ ଅବଶ୍ୟ ଆସିବ, ଯେତେବେଳେ ଏହି ସକଳ ବିଭିନ୍ନଭାବ ଏକତ୍ର ହେବ—ପ୍ରତ୍ୟେକ ଲୋକ ବୈଜ୍ଞାନିକ ବିଷୟରେ ଯେପରି, ଆଧ୍ୟାତ୍ମିକ ବିଷୟରେ ମଧ୍ୟ ସେହିପରି ପ୍ରବୀଣ ଲୋକ ହେବେ— ସେତେବେଳେ ସେହି ଏକତ୍ୱ, ସେହି ମିଳନ ଜଗତରେ ପ୍ରକାଶିତ ହେବ । ସେତେ-ବେଳେ ସମସ୍ତେ ଜୀବନ୍ମୁକ୍ତ ହେବେ । ଆମମାନଙ୍କର ଈର୍ଷା, ଘୃଣା, ମିଳନ ଓ ବିରୋଧର ମାଧ୍ୟମରେ ଆମେମାନେ ସେହି ଏକ ଦିଗରେ ଚାଲିଛୁ । ଗୋଟିଏ ପ୍ରବଳ ନଦୀ ସମୁଦ୍ର ଆଡ଼କୁ ଚାଲିଯାଉଛି । କ୍ଷୁଦ୍ର କ୍ଷୁଦ୍ର କାଗଜଖଣ୍ଡ, କୁଟା ପ୍ରଭୃତି ସେଥିରେ ଭାସି ଏଆଡ଼େ ସେଆଡ଼େ ଯିବାକୁ ଚେଷ୍ଟା କରିପାରନ୍ତି, କିନ୍ତୁ ଅବଶେଷରେ ସେମାନଙ୍କୁ ଅବଶ୍ୟ ସମୁଦ୍ରକୁ ଯିବାକୁ ହେବ । ଏହିଭଳି ଭାବରେ ତୁମେ ମୁଁ, ଏପରିକି ସମୁଦାୟ ପ୍ରକୃତି ଛୋଟ ଛୋଟ କାଗଜଖଣ୍ଡ ପରି, ସେହି ଅନନ୍ତ ପୂର୍ଣ୍ଣତାର ସାଗର ଈଶ୍ୱରଙ୍କ ଦିଗକୁ ଅଗ୍ରସର ହେଉଛୁ । ଆମେମାନେ ମଧ୍ୟ ଏଆଡ଼କୁ ସେ ଆଡ଼କୁ ଯିବା ପାଇଁ ଚେଷ୍ଟା କରିପାରୁ, କିନ୍ତୁ ଅବଶେଷରେ ଆମେମାନେ ସେହି ପ୍ରାଣ ଓ ଆନନ୍ଦର ଅନନ୍ତ ସମୁଦ୍ରରେ ଯାଇ ପହଞ୍ଚିବୁ ।

# ସର୍ବବସ୍ତୁରେ ବ୍ରହ୍ମଦର୍ଶନ

[ ଲଣ୍ଡନରେ ପ୍ରଦତ୍ତ ବକ୍ତୃତା, ୨୭ ଅକ୍ଟୋବର, ୧୮୯୬ ]

ଆମେମାନେ ଦେଖିଛୁ, ଆମମାନଙ୍କ ଜୀବନର ଅଧିକାଂଶ ଅବଶ୍ୟ ଦୁଃଖପୂର୍ଣ୍ଣ ହେବ—ଆମେ ସେଗୁଡ଼ିକୁ ନିବାରଣ କରିବାକୁ ଯେତେ ଚେଷ୍ଟା କରୁ ନା କାହିଁକି। ଆଉ ଏହି ଦୁଃଖରାଶି ବାସ୍ତବିକ ଆମମାନଙ୍କ ପକ୍ଷରେ କହିବାକୁ ଗଲେ ସୀମାହୀନ। ଆମେମାନେ ଅନାଦି କାଳରୁ ଏହି ଦୁଃଖ ପ୍ରତିକାରର ଚେଷ୍ଟା କରୁଛୁ, କିନ୍ତୁ ବାସ୍ତବିକ ତାହା ଯେମିତି ଥିଲା ସେମିତି ରହିଛି। ଆମେମାନେ ଯେତେ ଦୁଃଖ-ପ୍ରତିକାରର ଉପାୟ ବାହାର କରୁଛୁ, ସେତେ ଦେଖିବାକୁ ପାଉଛୁ ଜଗତଭିତରେ ଆହୁରି କେତେ ଦୁଃଖ ସୂକ୍ଷ୍ମଭାବରେ ଅବସ୍ଥାନ କରୁଛି। ଆମେମାନେ ଏହା ମଧ୍ୟ ଦେଖିଛୁ, ସବୁ ଧର୍ମ କହନ୍ତି, ଏହି ଦୁଃଖ-ଚକ୍ରର ବାହାରକୁ ଯିବାର ଏକମାତ୍ର ଉପାୟ ଈଶ୍ୱର। ସବୁ ଧର୍ମ କହନ୍ତି, ଆଜିକାଲିର ପ୍ରତ୍ୟକ୍ଷବାଦୀମାନଙ୍କର ମତାନୁଯାୟୀ ଜଗତ ଯେପରି ଦୃଶ୍ୟମାନ ସେପରି ଭାବରେ ଗ୍ରହଣ କଲେ, ତହିଁରେ ଦୁଃଖ ବ୍ୟତୀତ ଆଉ କିଛି ଅବଶିଷ୍ଟ ରହିବ ନାହିଁ। କିନ୍ତୁ ସମସ୍ତ ଧର୍ମ କହନ୍ତି—ଏହି ଜଗତର ଅତୀତ ଆହୁ ମଧ୍ୟ କିଛି ଅଛି। ଏହି ପଞ୍ଚେନ୍ଦ୍ରିୟଗ୍ରାହ୍ୟ ଜୀବନ, ଏହି ଭୌତିକ ଜୀବନ ହିଁ ସବୁ କିଛି ନୁହେଁ—ଏହା ପ୍ରକୃତ ଜୀବନର ଅତି ସାମାନ୍ୟ ଅଂଶ ମାତ୍ର। ବାସ୍ତବିକ ଏହା ଅତି ସ୍ଥୂଳ ବ୍ୟାପାର। ଏହାର ପଶ୍ଚାତ୍ତରେ, ଏହାର ଅତୀତ ପ୍ରଦେଶରେ ସେହି ଅନନ୍ତ ରହିଛନ୍ତି—ଯେଉଁଠି ଦୁଃଖର ଲେଶ ମାତ୍ର ନାହିଁ, ଯାହାକୁ କେହି ଗଡ୍, କେହି ଆଲ୍ଲା, କେହି ଜିହୋଭା, କେହି ଜୋଭ୍ କେହି ବା ଆଉ କିଛି କହିଥାଆନ୍ତି। ବେଦାନ୍ତୀମାନେ ଏହାକୁ ବ୍ରହ୍ମ କହିଥାଆନ୍ତି। କିନ୍ତୁ ଜଗତର ଅତୀତ ପ୍ରଦେଶକୁ ଯିବାକୁ ହେବ, ଏକଥା ସତ୍ୟ ହେଲେ ମଧ୍ୟ ଆମମାନଙ୍କୁ ଏହି ଜଗତରେ ଜୀବନ ଧାରଣ କରିବାକୁ ତ ହେବ? ବର୍ତ୍ତମାନ ଏହାର ମୀମାଂସା କେଉଁଠି ?

ଜଗତର ବାହାରକୁ ଯିବାକୁ ହେବ, ସବୁ ଧର୍ମର ଏହି ଉପଦେଶଦ୍ୱାରା ଆପାତତଃ ଏହି ଭାବ ହିଁ ମନରେ ଉଦିତ ହୁଏ ଯେ, ଆତ୍ମହତ୍ୟା କରିବା ବୋଧହୁଏ ଶ୍ରେୟଃ। ପ୍ରଶ୍ନ ହେଉଛି, ଜୀବନର ଦୁଃଖରାଶିର ପ୍ରତିକାର କଅଣ? ଆଉ ତାହାର ଉତ୍ତର ଯାହା ପ୍ରଦତ୍ତ ହୁଏ, ସେଥିରୁ ଆପାତତଃ ଏହା ଜଣାଯାଏ ଯେ, ଜୀବନକୁ ତ୍ୟାଗ କରିବା ହିଁ ଏହାର ଏକମାତ୍ର ପ୍ରତିକାର। ଏଠାରେ ଗୋଟିଏ ପ୍ରାଚୀନ ଗଳ୍ପର କଥା ମନେପଡ଼ିଲା। ଗୋଟିଏ ମଶା ଗୋଟିଏ ଲୋକର ମୁଣ୍ଡରେ ବସିଥିଲା। ତାହାର ଜଣେ ବନ୍ଧୁ ଏହି ମଶାଟିକୁ ମାରିବାକୁ ଯାଇ ତାହାର ମୁଣ୍ଡରେ ଏପରି ତୀବ୍ର

ଆଘାତ କଲା ଯେ, ମଶା ସହିତ ସେ ଲୋକଟି ମଧ୍ୟ ମରିଗଲା । ଦୁଃଖ ପ୍ରତିକାର ପାଇଁ ଧର୍ମ ଯେଉଁ ଉପାୟର କଥା କହେ, ତାହା ସେହିଭଳି ।

ଯେଉଁ ବ୍ୟକ୍ତି ବିଶେଷ ଭାବରେ ଜଗତକୁ ଜାଣିଛନ୍ତି, ଜୀବନ ଯେ ଦୁଃଖପୂର୍ଣ୍ଣ, ଜଗତ ଯେ ଦୁଃଖପୂର୍ଣ୍ଣ ତାହା ଆଉ ସେ ଅସ୍ୱୀକାର କରିପାରିବେ ନାହିଁ । କିନ୍ତୁ ବିଭିନ୍ନ ଧର୍ମ ଏହାର ପ୍ରତିକାରର ଉପାୟ କଅଣ ବୋଲି କହନ୍ତି ? ସେମାନେ କହନ୍ତି—ଜଗତ କିଛି ନୁହେଁ । ଏହି ଜଗତର ବାହାରେ ଏପରି କିଛି ଅଛି, ଯାହା ପ୍ରକୃତ ସତ୍ୟ । ଏହିଠାରେ ହିଁ ପ୍ରକୃତ ବିବାଦ । ଏହି କଥା ଆମର ଯେପରି ସବୁ ନଷ୍ଟ କରିଦେଉଛି । ତେବେ ଏହା କିପରି ପ୍ରତିକାରର ଉପାୟ ହେବ ? ତେବେ କଅଣ କିଛି ଉପାୟ ନାହିଁ ? ପ୍ରତିକାରର ଆଉ ଗୋଟିଏ ଉପାୟ ଯାହା କୁହାଯାଇଥାଏ, ତାହା ହେଉଛି—ବେଦାନ୍ତ କହେ, ବିଭିନ୍ନ ଧର୍ମ ଯାହା କହୁଛନ୍ତି ତାହା ସମ୍ପୂର୍ଣ୍ଣ ସତ୍ୟ, କିନ୍ତୁ ଏହି କଥାର ପ୍ରକୃତ ଭାବ ବୁଝିବାକୁ ହେବ । ଅନେକ ସମୟରେ ଲୋକମାନେ ବିଭିନ୍ନ ଧର୍ମର ଉପଦେଶ ସମ୍ପୂର୍ଣ୍ଣ ଓଲଟା ବୁଝିଥାଅନ୍ତି, ଆଉ ଧର୍ମସକଳ ମଧ୍ୟ ଏ ସମ୍ବନ୍ଧରେ ସ୍ପଷ୍ଟ କିଛି କହି ନାହାନ୍ତି । ଆମମାନଙ୍କ ପକ୍ଷରେ ହୃଦୟ ଓ ମସ୍ତିଷ୍କ ଉଭୟ ଆବଶ୍ୟକ । ହୃଦୟ ଅବଶ୍ୟ ଖୁବ୍ ବଡ଼ ଜିନିଷ—ହୃଦୟ ଭିତର ଦେଇ ଜୀବନର ମହାନ୍ ଭାବସମୂହର ସ୍ଫୁରଣ ହୋଇଥାଏ । ହୃଦୟଶୂନ୍ୟ ମସ୍ତିଷ୍କ ଅପେକ୍ଷା ଯଦି ମୋର ଟିକିଏ ହେଲେ ମସ୍ତିଷ୍କ ନ ଥାଏ ଅଥଚ ଟିକିଏ ହୃଦୟ ଥାଏ, ତାହା ମୁଁ ବାରମ୍ବାର ପସନ୍ଦ କରିବି । ଯାହାର ହୃଦୟ ଅଛି, ତାହାର ହିଁ ଯଥାର୍ଥ ଜୀବନ, ତାହାର ହିଁ ଉନ୍ନତି ସମ୍ଭବ, କିନ୍ତୁ ଯାହାର କିଛିମାତ୍ର ହୃଦୟ ନାହିଁ, ମାତ୍ର କେବଳ ମସ୍ତିଷ୍କ ଅଛି, ସେ ଶୁଷ୍କ—ମୃତତୁଲ୍ୟ ।

କିନ୍ତୁ ଏହା ମଧ୍ୟ ଆମେମାନେ ଜାଣୁ ଯେ, ଯେ କେବଳ ନିଜର ହୃଦୟ ଦ୍ୱାରା ପରିଚାଳିତ ହୁଅନ୍ତି, ତାଙ୍କୁ ଅନେକ ଦୁଃଖ ଭୋଗ କରିବାକୁ ହୁଏ, କାରଣ ତାଙ୍କର ଭ୍ରମରେ ପଡ଼ିବାର ସମ୍ଭାବନା ଅତ୍ୟଧିକ । ଆମେମାନେ ହୃଦୟ ଓ ମସ୍ତିଷ୍କର ସମ୍ମିଳନ ଚାହୁଁ । ମୋର କହିବାର ତାତ୍ପର୍ଯ୍ୟ ଏଭଳି ନୁହେଁ ଯେ, କିଛି ପରିମାଣ ହୃଦୟ ଓ କିଛି ପରିମାଣ ମସ୍ତିଷ୍କ ମଧ୍ୟରେ ଆମେ ପରସ୍ପର ଆଦାନ-ପ୍ରଦାନ କରିବା । ଆମେ ଚାହୁଁ ପ୍ରତ୍ୟେକ ବ୍ୟକ୍ତିର ଅନନ୍ତ ହୃଦୟ ଓ ଭାବ ଥାଉ ଏବଂ ତାହା ସହିତ ଅନନ୍ତ ପରିମାଣର ବିଚାରବୁଦ୍ଧି ମଧ୍ୟ ଥାଉ ।

ଏହି ଜଗତରେ ଆମେମାନେ ଯାହା ଚାହୁଁ, ତାହାର କ'ଣ କୌଣସି ସୀମା ଅଛି ? ଜଗତ କଅଣ ଅନନ୍ତ ନୁହେଁ ? ଜଗତରେ ଅନନ୍ତ ପରିମାଣ ଭାବବିକାଶର ଏବଂ ତାହା ସଙ୍ଗେ ସଙ୍ଗେ ଅନନ୍ତ ପରିମାଣ ଶିକ୍ଷା ଓ ବିଚାରର ଅବକାଶ ରହିଛି । ଅବ୍ୟାହତ ଭାବରେ ଏହି ଦୁଇ କଥା ଏକ ସଙ୍ଗେ ଆସୁ—ତାହା ସମାନ୍ତରାଳ ରେଖାରେ ପ୍ରବାହିତ ହେଉ ।

ଏହି ଜଗତରେ ଯେ ଦୁଃଖରାଶି ବିଦ୍ୟମାନ, ଅଧିକାଂଶ ଧର୍ମ ଏହି କଥାଟି

ଭୂଝିନ୍ତି ଏବଂ ସ୍ପଷ୍ଟଭାଷାରେ ତାହା କହିଥାଆନ୍ତି; କିନ୍ତୁ ସମସ୍ତେ ବୋଧହୁଏ ଏକ ଭ୍ରମରେ ପଡ଼ିଅଛନ୍ତି—ସେମାନେ ସମସ୍ତେ ହୃଦୟଦ୍ୱାରା, ଭାବଦ୍ୱାରା ପରିଚାଳିତ ହୋଇଥାଆନ୍ତି । ଜଗତରେ ଦୁଃଖ ଅଛି, ଅତଏବ ସଂସାର ତ୍ୟାଗ କର—ଏହା ଅତି ଉତ୍ତମ ଉପଦେଶ, ସଂଶୟ ନାହିଁ । 'ସଂସାର ତ୍ୟାଗ କର' - ସତ୍ୟକୁ ଜାଣିବାକୁ ହେଲେ ଅସତ୍ୟ ତ୍ୟାଗ କରିବାକୁ ହେବ—ଭଲଟିକୁ ପାଇବାକୁ ହେଲେ ମନ୍ଦଟିକୁ ତ୍ୟାଗ କରିବାକୁ ହେବ, ଜୀବନ ପାଇବାକୁ ହେଲେ ମୃତ୍ୟୁକୁ ତ୍ୟାଗ କରିବାକୁ ହେବ, ଏ ସମ୍ବନ୍ଧରେ କୌଣସି ମତଦ୍ୱୈଧ ରହି ନ ପାରେ ।

କିନ୍ତୁ ଯଦି ଏହି ମତବାଦର ଏହା ତାତ୍ପର୍ଯ୍ୟ ହୁଏ ଯେ ପଞ୍ଚେନ୍ଦ୍ରିୟଗତ ଜୀବନ —ଆମେମାନେ ଯାହାକୁ ଜୀବନ ବୋଲି ଜାଣୁ, ଜୀବନ କହିଲେ ଯାହା ବୁଝୁ ତାହା ତ୍ୟାଗ କରିବାକୁ ହେବ, ତେବେ କ'ଣ ଅବଶିଷ୍ଟ ରହିବ ? ଯଦି ଆମେମାନେ ଏହା ତ୍ୟାଗ କରୁ, ତାହାହେଲେ ଆମର ଆଉ କିଛି ଅବଶିଷ୍ଟ ରହେ ନାହିଁ ।

ଯେତେବେଳେ ଆମେମାନେ ବେଦାନ୍ତର ଦାର୍ଶନିକ ଅଂଶର କଥା ବିଚାର କରିବା, ସେତେବେଳେ ଆମେମାନେ ଏହି ତତ୍ତ୍ୱ ଆହୁରି ଭଲଭାବରେ ବୁଝିପାରିବା; କିନ୍ତୁ ଆପାତତଃ ମୁଁ କେବଳ ଏତିକି କହିବାକୁ ଚାହେଁ ଯେ, କେବଳ ବେଦାନ୍ତରେ ଏହି ସମସ୍ୟାର ଯୁକ୍ତିସଙ୍ଗତ ମୀମାଂସା ମିଳେ । ବର୍ତ୍ତମାନ କେବଳ ବେଦାନ୍ତରେ କି ଶିକ୍ଷା ଦିଆଯାଏ, ତାହା ମୁଁ କହିବି । ବେଦାନ୍ତ ଶିକ୍ଷା ଦିଏ ଯେ ଜଗତକୁ ବ୍ରହ୍ମରୂପେ ଦର୍ଶନ କରିବାକୁ ହେବ ।

ବେଦାନ୍ତ ପ୍ରକୃତପକ୍ଷରେ ଜଗତକୁ ଏକାବେଳକେ ଉଡ଼ାଇଦିଏ ନାହିଁ । ବେଦାନ୍ତରେ ଯେପରି ଚୂଡ଼ାନ୍ତ ବୈରାଗ୍ୟର ଉପଦେଶ ଅଛି, ଅନ୍ୟ କୌଣସିମତରେ ସେପରି ନାହିଁ; କିନ୍ତୁ ସେ ବୈରାଗ୍ୟର ଅର୍ଥ ଆତ୍ମହତ୍ୟା ନୁହେଁ, ନିଜେ ଶୁଖି ଶୁଖି ମରିବା ନୁହେଁ; ବେଦାନ୍ତରେ ବୈରାଗ୍ୟର ଅର୍ଥ ଜଗତର ବ୍ରହ୍ମଭାବ—ଜଗତକୁ ଆମେମାନେ ଯେଉଁ ଭାବରେ ଦେଖୁ, ଯେଉଁ ଭାବରେ ଜାଣୁ—ତାହା ଯେପରି ପ୍ରତିଭାତ ହେଉଛି, ତାହା ତ୍ୟାଗ କର ଏବଂ ତାହାର ପ୍ରକୃତ ସ୍ୱରୂପ ଅବଗତ ହୁଅ । ତାହାକୁ ବ୍ରହ୍ମରୂପେ ଦେଖ—ବାସ୍ତବିକ ତାହା ବ୍ରହ୍ମ ବ୍ୟତୀତ ଆଉ କିଛି ନୁହେଁ । ଏହି କାରଣରୁ ଆମେ ପ୍ରାଚୀନତମ ଉପନିଷଦ୍‌ରେ ଦେଖୁ—ବେଦାନ୍ତ ସମ୍ବନ୍ଧରେ ପ୍ରଥମ ଲେଖା 'ଈଶାବାସ୍ୟମିଦଂ ସର୍ବଂ ଯତ୍କିଞ୍ଚ ଜଗତ୍ୟାଂ ଜଗତ୍—'* ଅର୍ଥାତ୍ ଜଗତରେ ଯାହା କିଛି ଅଛି, ତାହାସବୁ ଈଶ୍ୱରଙ୍କଦ୍ୱାରା ଆଚ୍ଛାଦନ କରିବାକୁ ହେବ ।

ସମୁଦାୟ ଜଗତକୁ ଈଶ୍ୱରଙ୍କଦ୍ୱାରା ଆଚ୍ଛାଦନ କରିବାକୁ ହେବ—ଅର୍ଥାତ୍ ଜଗତରେ ଯେଉଁ ଅଶୁଭ, ଯେଉଁ ଦୁଃଖ ଅଛି, ତାହା ଆଡ଼କୁ ଦୃଷ୍ଟିପାତ ନକରି ବୃଥା 'ସବୁ ମଙ୍ଗଳମୟ, ସବୁ ସୁଖମୟ, ସବୁକିଛି ଭବିଷ୍ୟତ ମଙ୍ଗଳ ପାଇଁ' ଏଭଳି ଭ୍ରାନ୍ତ

---

* ଈଶ ଉପ., ୧ମ ଶ୍ଲୋକ

ସୁଖବାଦ ଅବଲମ୍ବନ ନ କରି, ବାସ୍ତବିକ ପ୍ରତ୍ୟେକ ବସ୍ତୁର ଅଭ୍ୟନ୍ତରରେ ଈଶ୍ୱରଙ୍କୁ ଦର୍ଶନ କରିବାକୁ ହେବ । ଏହି ଭାବରେ ଆମମାନଙ୍କୁ 'ସଂସାର' ତ୍ୟାଗ କରିବାକୁ ହେବ । ଯେତେବେଳେ ସଂସାର-ତ୍ୟାଗ ହୁଏ, ସେତେବେଳେ କ'ଣ ଅବଶିଷ୍ଟ ରହେ ? —କେବଳ ଈଶ୍ୱର । ଏହି ଉପଦେଶର ତାତ୍ପର୍ଯ୍ୟ କ'ଣ ? ତାତ୍ପର୍ଯ୍ୟ ହେଉଛି— ତୁମର ସ୍ତ୍ରୀ ଥାଆନ୍ତୁ, ସେଥିରେ କିଛି କ୍ଷତି ନାହିଁ, ସେମାନଙ୍କୁ ଛାଡ଼ି ଚାଲିଯିବାକୁ ହେବ, ତାହା ନୁହେଁ; କିନ୍ତୁ ସେହି ସ୍ତ୍ରୀ ମଧ୍ୟରେ ଈଶ୍ୱର-ଦର୍ଶନ କରିବାକୁ ହେବ । ସନ୍ତାନସନ୍ତତିଙ୍କୁ ତ୍ୟାଗ କର—ଏହାର ଅର୍ଥ କ'ଣ ? ପିଲାମାନଙ୍କୁ କ'ଣ ରାସ୍ତାରେ ପକାଇଦେବ—ଯେପରିକି ସବୁ ଦେଶରେ ନର-ପଶୁଗଣ କରିଥାଆନ୍ତି ? କେବେ ନୁହେଁ—ତାହା ପୈଶାଚିକ, ତାହା ଧର୍ମ ନୁହେଁ । ତେବେ କ'ଣ କରିବାକୁ ହେବ ? ସନ୍ତାନସନ୍ତତିଙ୍କ ମଧ୍ୟରେ ଈଶ୍ୱର-ଦର୍ଶନ କର । ଏହିରୂପେ ଆମର ଜୀବନରେ ମରଣରେ, ସୁଖରେ ଦୁଃଖରେ—ସକଳ ଅବସ୍ଥାରେ ସମୁଦାୟ ଜଗତ ଈଶ୍ୱରଙ୍କଦ୍ୱାରା ପୂର୍ଣ୍ଣ ହେବ । ତୁମର ନୟନ ଉନ୍ମୀଳନ କରି ତାହାଙ୍କୁ ଦର୍ଶନ କର । ବେଦାନ୍ତ ଏହା ହିଁ କହେ । ତୁମେ ଜଗତକୁ ଯେପରି ଅନୁମାନ କରିଛ, ତାହା ତ୍ୟାଗ କର; କାରଣ ତୁମର ଅନୁମାନ ଅତି ଅଳ୍ପ ଅନୁଭୂତି ଉପରେ—ଖୁବ୍ ସାମାନ୍ୟ ଯୁକ୍ତି ଉପରେ—ମୋଟ କଥା, ତୁମ ନିଜର ଦୁର୍ବଳତା ଉପରେ ସ୍ଥାପିତ । ସେହି ଆନୁମାନିକ ଜ୍ଞାନ ତ୍ୟାଗ କର—ଆମେମାନେ ଏତେ ଦିନଯାଏ ଜଗତକୁ ଯେପରି ଭାବୁଥିଲୁ, ଏତେ ଦିନ ଯେଉଁ ଜଗତରେ ଏଭଳି ଆସକ୍ତ ଥିଲୁ, ତାହା ଆମମାନଙ୍କର ସୃଷ୍ଟି, ତାହା ମିଥ୍ୟା ଜଗତ ମାତ୍ର । ତାହା ତ୍ୟାଗ କର । ନୟନ ଉନ୍ମୀଳନ କରି ଦେଖ; ଆମେମାନେ ଏତେଦିନ ଜଗତକୁ ଯେଭଳି ଦେଖୁଥିଲେ, ଜଗତର ଅସ୍ତିତ୍ୱ କଦାପି ସେଭଳି ନ ଥିଲା—ତାହା ସ୍ୱପ୍ନ, ମାୟାରେ ଆଚ୍ଛନ୍ନ ହୋଇ ଆମର ଏପରି ଭ୍ରମ ହେଉଥିଲା ମାତ୍ର । ଅନନ୍ତ କାଳର ପ୍ରଭୁ ହିଁ ଏକମାତ୍ର ସତ୍ୟ । ସନ୍ତାନସନ୍ତତି ଭିତରେ, ସ୍ତ୍ରୀଙ୍କ ମଧ୍ୟରେ, ସ୍ୱାମୀଙ୍କ ମଧ୍ୟରେ, ଭଲ ଭିତରେ, ମନ୍ଦ ଭିତରେ, ପାପରେ, ପାପୀରେ, ହତ୍ୟାକାରୀ ମଧ୍ୟରେ, ଜୀବନରେ ଓ ମରଣରେ କେବଳ ସେ ବିଦ୍ୟମାନ ।

ବିଷମ ପ୍ରସ୍ତାବ ନିଶ୍ଚୟ; କିନ୍ତୁ ବେଦାନ୍ତ ଏହା ପ୍ରମାଣ କରିବାକୁ, ଶିକ୍ଷା ଦେବାକୁ ଏବଂ ପ୍ରଚାର କରିବାକୁ ଚାହେଁ । ଏହି ବିଷୟର ସମାଧାନ ପାଇଁ ବେଦାନ୍ତର ଉତ୍ପତ୍ତି ।

ଆମେମାନେ ଏହି ଭାବରେ ସବୁଠାରେ ବ୍ରହ୍ମଦର୍ଶନ କରି ଜୀବନର ବିପଦ ଓ ଦୁଃଖରାଶି ଦୂର କରିପାରୁ । କିଛି ଚାହିଁ ନାହିଁ । କେଉଁ ବସ୍ତୁ ଆମମାନଙ୍କୁ ଦୁଃଖୀ କରେ ? ଆମେମାନେ ଯେଉଁ ଦୁଃଖ ଭୋଗ କରିଥାଉ, ବାସନା ହିଁ ତାହାର କାରଣ । ତୁମର କିଛି ଅଭାବ ଅଛି, ଆଉ ସେହି ଅଭାବ ତୁମର ପୂର୍ଣ୍ଣ ହେଉ ନାହିଁ, ଏହାର ଫଳ—ଦୁଃଖ । ଅଭାବ ନ ଥିଲେ ଦୁଃଖ ମଧ୍ୟ ରହିବ ନାହିଁ । ଆମେମାନେ

ସମସ୍ତ ବାସନା ତ୍ୟାଗ କଲେ କ'ଣ ହେବ ? ପ୍ରାଚୀରର କୌଣସି ବାସନା ନାହିଁ, ସେ କଦାପି ଦୁଃଖ ଭୋଗ କରେ ନାହିଁ ସତ୍ୟ, କିନ୍ତୁ ସେ କୌଣସି ଉନ୍ନତି ମଧ୍ୟ କରେ ନାହିଁ । ଏହି ଚୌକିର କୌଣସି ବାସନା ନାହିଁ, ଏହାର କୌଣସି କଷ୍ଟ ମଧ୍ୟ ନାହିଁ; କିନ୍ତୁ ଏହା ଗୋଟିଏ ଚୌକି, ସେହି ଚୌକି ହୋଇ ରହିବ । ସୁଖଭୋଗ ଭିତରେ ଗୋଟିଏ ମହାନ୍ ଭାବ ଅଛି, ଦୁଃଖଭୋଗ ଭିତରେ ମଧ୍ୟ ତାହା ଅଛି । ଏହା ସାହସ କରି କୁହାଯାଇପାରେ ଯେ, ଦୁଃଖର ଉପକାରିତା ମଧ୍ୟ ଅଛି । ଆମେମାନେ ସମସ୍ତେ ଜାଣୁ ଦୁଃଖଠାରୁ କି ମହତ୍ତ୍ୱ ଶିକ୍ଷା ହୁଏ । ଶତ ଶତ କାର୍ଯ୍ୟ ଆମମାନଙ୍କ ଜୀବନରେ କରିଛୁ, ପରେ ମନେ ହୁଏ ନ କରିଥିଲେ ଭଲ ହୋଇଥାନ୍ତା; କିନ୍ତୁ ତାହାହେଲେ ମଧ୍ୟ ଏହି ସମସ୍ତ କାର୍ଯ୍ୟ ଆମମାନଙ୍କର ମହତ୍ତ୍ୱ ଶିକ୍ଷକର କାର୍ଯ୍ୟ କରିଛି । ମୁଁ ନିଜ ସମ୍ବନ୍ଧରେ କହିପାରେ, ମୁଁ କିଛି ଭଲ କରୁଛି ବୋଲି ଆନନ୍ଦିତ ଏବଂ ଅନେକ ଖରାପ କାମ କରିଛି ବୋଲି ମଧ୍ୟ ଆହୁରି ଆନନ୍ଦିତ—ମୁଁ କିଛି ସତ୍‌କାର୍ଯ୍ୟ କରିଛି ବୋଲି ସୁଖୀ, ଆହୁରି ଅନେକ ଭ୍ରମରେ ପଡ଼ିଛି ବୋଲି ମଧ୍ୟ ସୁଖୀ; କାରଣ, ଏହିସବୁ ଅଭିଜ୍ଞତାଗୁଡ଼ିକ ମୋତେ ମହତ୍ତ୍ୱ ଶିକ୍ଷା ଦେଇଛି ।

ମୁଁ ବର୍ତ୍ତମାନ ଯାହା ତାହା ଆମମାନଙ୍କର ପୂର୍ବକର୍ମ ଓ ଚିନ୍ତାସମଷ୍ଟିର ଫଳ ସ୍ୱରୂପ । ପ୍ରତ୍ୟେକ କାର୍ଯ୍ୟ ଓ ଚିନ୍ତାର ଗୋଟିଏ ନା ଗୋଟିଏ ଫଳ ଅଛି ଏବଂ ଏହି ଫଳଗୁଡ଼ିକର ସମଷ୍ଟି ମୋର ବର୍ତ୍ତମାନର ଅଗ୍ରଗତି ଓ ଉନ୍ନତି । ତେବେ ବର୍ତ୍ତମାନ ସମସ୍ୟା କଠିନ ହୋଇ ପଡ଼ିଲା । ଆମେମାନେ ସମସ୍ତେ ଜାଣୁ, ବାସନା ଅତିଖରାପ ଜିନିଷ, କିନ୍ତୁ ବାସନାତ୍ୟାଗର ଅର୍ଥ କଅଣ ? ବାସନା ତ୍ୟାଗ କଲେ ଦେହଯାତ୍ରା ନିର୍ବାହ କିପରି ହେବ ? ଏହା ମଧ୍ୟ କଅଣ ସେହି ପୂର୍ବପରି ମଶାକୁ ମାରିବା ପାଇଁ ମନୁଷ୍ୟକୁ ମାରିପକାଇବା ଭଳି ନୁହେଁ ?—ବାସନାକୁ ସଂହାର କର, ତାହା ସହିତ ବାସନାଯୁକ୍ତ ମନୁଷ୍ୟକୁ ମଧ୍ୟ ମାରିପକାଅ । ବର୍ତ୍ତମାନ ଏହାର ଉତ୍ତର ପ୍ରଦତ୍ତ ହେଉଛି । ତୁମେ ଯେ ବିଷୟସମ୍ପତ୍ତି ରଖିବ ନାହିଁ ତାହା ନୁହେଁ; ଆବଶ୍ୟକ ଜିନିଷ ଏପରିକି ବିଳାସର ଜିନିଷ ମଧ୍ୟ ଯେ ରଖିବ ନାହିଁ, ତାହା ନୁହେଁ । ଯାହା କିଛି ତୁମର ଆବଶ୍ୟକ ଏବଂ ତଦତିରିକ୍ତ ମଧ୍ୟ ରଖ, ସେଥିରେ କିଛି କ୍ଷତି ନାହିଁ । କିନ୍ତୁ ସତ୍ୟକୁ ଜାଣିବା ତୁମର ପ୍ରଥମ ଓ ପ୍ରଧାନ କର୍ତ୍ତବ୍ୟ ।

ଏହି ଧନସମ୍ପତ୍ତି କାହାର ନୁହେଁ । କୌଣସି ପଦାର୍ଥରେ ପ୍ରଭୁତ୍ୱର ଭାବ ରଖ ନାହିଁ । ତୁମେ କେହି ନୁହଁ, ମୁଁ ମଧ୍ୟ କେହି ନୁହେଁ । ସବୁ ସେହି ପ୍ରଭୁଙ୍କର ବସ୍ତୁ, କାରଣ, ଈଶୋପନିଷଦ୍‌ର ପ୍ରଥମ ଶ୍ଳୋକରେ ସର୍ବତ୍ର ଈଶ୍ୱରଙ୍କୁ ସ୍ଥାପନ କରିବାକୁ କୁହାଯାଇଛି । ଈଶ୍ୱର ତୁମର ଭୋଗ୍ୟ ଧନରେ ରହିଛନ୍ତି, ତୁମ ମନରେ ଯେଉଁସବୁ ବାସନା ଜାଗୁଛି, ତହିଁରେ ସେ ରହିଛନ୍ତି । ତୁମର ବାସନା ଥିବାରୁ ତୁମେ ଯେଉଁ ଯେଉଁ ଦ୍ରବ୍ୟ କିଣିଛ, ତାହା ମଧ୍ୟରେ, ତୁମର ସୁନ୍ଦର ଲୁଗା ମଧ୍ୟରେ, ତୁମର ସୁନ୍ଦର ଅଳଙ୍କାରରେ ମଧ୍ୟ ସେ ରହିଛନ୍ତି—ଏହି ଭାବରେ ଚିନ୍ତା କରିବାକୁ ହେବ । ଏହି

ଭାବରେ ଦେଖିଲେ ତୁମ ଦୃଷ୍ଟିରେ ସମସ୍ତ ପରିବର୍ତ୍ତିତ ହୋଇଯିବ । ଯଦି ତୁମେ ତୁମର ଚାଲିଚଳନରେ, ତୁମର ଲୁଗାରେ, ତୁମର କଥାବାର୍ତ୍ତାରେ, ତୁମ ଶରୀରରେ, ତୁମର ଚେହେରାରେ—ସବୁ କିଛିରେ ଭଗବାନଙ୍କୁ ସ୍ଥାପନ କର, ତେବେ ସମୁଦାୟ ଦୃଶ୍ୟ ବଦଳିଯିବ ଏବଂ ଜଗତ ଦୁଃଖମୟ ପ୍ରତିଭାତ ନ ହୋଇ ସ୍ୱର୍ଗରେ ପରିଣତ ହେବ ।

ଯୀଶୁ କହିଛନ୍ତି, 'ସ୍ୱର୍ଗରାଜ୍ୟ ତୁମ ଭିତରେ ।' ବେଦାନ୍ତ କହେ, 'ପୂର୍ବରୁ ହିଁ ଏହା ତୁମ ଅଭ୍ୟନ୍ତରରେ ରହିଛି ।' ଆଉ ସକଳ ଧର୍ମ ଏହା କହିଥାନ୍ତି, ସକଳ ମହାପୁରୁଷ ମଧ୍ୟ ଏହା କହିଥାଆନ୍ତି । 'ଯାହାର ଦେଖିବାର ଆଖି ଅଛି, ସେ ଦେଖୁ; ଯାହାର ଶୁଣିବାର କାନ ଅଛି, ସେ ଶୁଣୁ ।' ଆମେ ଯେଉଁ ସତ୍ୟକୁ ଏତେ ଦିନ ଧରି ଅନ୍ୱେଷଣ କରିଛୁ, ତାହା ପୂର୍ବରୁ ଆମ ଭିତରେ ରହିଛି । ବେଦାନ୍ତ ଏହାର କେବଳ ଉଲ୍ଲେଖ ନ କରି ଏ ବିଷୟ ପ୍ରମାଣ ମଧ୍ୟ କରିବାକୁ ପ୍ରସ୍ତୁତ । ଅଜ୍ଞାନବଶତଃ ଆମେମାନେ ମନେ କରିଥିଲୁ, ଆମେମାନେ ସତ୍ୟକୁ ହଜାଇ ଦେଇଛୁ । ଆଉ ସମୁଦାୟ ଜଗତରେ ଏହି ସତ୍ୟ ପାଇବା ସକାଶେ କେବଳ କାନ୍ଦି କାନ୍ଦି ବୁଲିଥିଲୁ; କିନ୍ତୁ ଏହା ସବୁବେଳେ ଆମମାନଙ୍କର ନିଜ ଅନ୍ତରର ଅନ୍ତଃସ୍ଥଳରେ ବିଦ୍ୟମାନ ଥିଲା । ଏହି ତତ୍ତ୍ୱ-ଦୃଷ୍ଟି ସହାୟରେ ଜଗତରେ ଜୀବନ କଟାଇବାକୁ ପଡ଼ିବ ।

ଯଦି 'ସଂସାର ତ୍ୟାଗ କର', ଏହି ଉପଦେଶ ସତ୍ୟ ହୁଏ, ଆଉ ଯଦି ଏହା ସ୍ଥୂଳ ଏବଂ ପ୍ରତୀୟମାନ ଅର୍ଥରେ ଗ୍ରହଣ କରାଯାଏ, ତେବେ ଅର୍ଥ ହେବ, ଆମର କୌଣସି କାର୍ଯ୍ୟ କରିବାର ଆବଶ୍ୟକତା ନାହିଁ; ଆମେମାନେ ଅଳସୁଆ ହୋଇ ମାଟିଗଦା ପରି ବସିଥିବୁ, କିଛି ଚିନ୍ତା କରିବାର ବା କୌଣସି କାର୍ଯ୍ୟ କରିବାର କିଛିମାତ୍ର ଆବଶ୍ୟକତା ନାହିଁ; ଅଦୃଷ୍ଟବାଦୀ ହୋଇ, ଘଟନାଚକ୍ରରେ ତାଡ଼ିତ ହୋଇ, ପ୍ରାକୃତିକ ନିୟମରେ ବାଧ୍ୟ ହୋଇ ଏପାଖ ସେପାଖ ଭ୍ରମଣ କରୁଥିବୁ । ଏହା ହିଁ ଫଳ ହେବ । କିନ୍ତୁ ପୂର୍ବୋକ୍ତ ଉପଦେଶର ଅର୍ଥ ବାସ୍ତବିକ ଏପରି ନୁହେଁ । ଆମମାନଙ୍କୁ କାର୍ଯ୍ୟ ଅବଶ୍ୟ କରିବାକୁ ହେବ । ସାଧାରଣ ମାନବଗଣ, ଯେଉଁମାନେ ବୃଥା ବାସନାରେ ଇତସ୍ତତଃ ପରିଭ୍ରାମ୍ୟମାଣ, ସେମାନେ କାର୍ଯ୍ୟର ମହତ୍ତ୍ୱ କଅଣ ଜାଣନ୍ତି ? ଯେଉଁ ଲୋକ ନିଜର ଭାବରାଶି ଓ ଇନ୍ଦ୍ରିୟଗଣଦ୍ୱାରା ପରିଚାଳିତ, ସେ କାର୍ଯ୍ୟ ସମ୍ବନ୍ଧରେ କଅଣ ଜାଣେ ? ସେହି ଲୋକ ପ୍ରକୃତ କାମ କରିପାରେ, ଯେ କୌଣସି ପ୍ରକାର ବାସନାଦ୍ୱାରା, କୌଣସି ପ୍ରକାର ସ୍ୱାର୍ଥପରତାଦ୍ୱାରା ପରିଚାଳିତ ନୁହେଁ । ସେହିମାନେ କାମ କରିପାରନ୍ତି, ଯେଉଁମାନଙ୍କର ଅନ୍ୟ କୌଣସି କାମନା ନାହିଁ । ସେହିମାନେ ହିଁ କାମ କରିପାରନ୍ତି, ଯେଉଁମାନଙ୍କର କାର୍ଯ୍ୟରେ କୌଣସି ଲାଭର ପ୍ରତ୍ୟାଶା ନାହିଁ ।

ଖଣ୍ଡିଏ ଚିତ୍ରକୁ କିଏ ଅଧିକ ସମ୍ଭୋଗ କରେ ? ଚିତ୍ର-ବିକ୍ରେତା ନା ଚିତ୍ର-

ଦ୍ରଷ୍ଟା ? ବିକ୍ରେତା ତାହାର ହିସାବକିତାବ କରିବାରେ ବ୍ୟସ୍ତ, ତାହାର କେତେ ଲାଭ ହେବ, ଇତ୍ୟାଦି ଚିନ୍ତାରେ ମଗ୍ନ । ତାହାର ମୁଣ୍ଡରେ ଏହି କଥା ଘୂରୁଛି । ସେ କେବଳ ନିଲାମର ହାତୁଡ଼ିକୁ ଲକ୍ଷ୍ୟ କରୁଛି ଓ ଦାମ୍ କେତେ ଚଢ଼ିଲା, ତାହା ଶୁଣୁଛି । ଦାମ୍ କିପରି ଶୀଘ୍ର ଶୀଘ୍ର ଉଠୁଛି, ତାହା ଶୁଣିବାକୁ ସେ ବ୍ୟସ୍ତ । ଚିତ୍ର ଦେଖି ସେ ଆନନ୍ଦ ଉପଭୋଗ କେତେବେଳେ କରିବ ? ସେହିମାନେ ଚିତ୍ର ସମ୍ଭୋଗ କରନ୍ତି, ଯେଉଁମାନେ ସେଠାକୁ କୌଣସି ପ୍ରକାର ବିକାକିଣାର ଉଦ୍ଦେଶ୍ୟ ନେଇ ଯାଆନ୍ତି ନାହିଁ । ସେମାନେ ଛବି ଖଣ୍ଡିକ ଆଡ଼କୁ ଚାହିଁଥାଆନ୍ତି, ଆଉ ଅପାର ଆନନ୍ଦ ଉପଭୋଗ କରନ୍ତି । ଏହିପରି ସମୁଦାୟ ବ୍ରହ୍ମାଣ୍ଡ ହିଁ ଗୋଟିଏ ଚିତ୍ରସ୍ୱରୂପ । ଯେତେବେଳେ ମନରୁ ସବୁ ବାସନା ଚାଲିଯିବ, ସେତେବେଳେ ଲୋକମାନେ ଜଗତକୁ ସମ୍ଭୋଗ କରିବେ, ସେତେବେଳେ ଏହି କିଣାବିକାର ଭାବ, ଏହି ଭ୍ରମାତ୍ମକ ପ୍ରଭୁତ୍ୱଭାବ ରହିବ ନାହିଁ । ସେତେବେଳେ କରଜ ଦେଲା ଲୋକ ନାହିଁ, କିଣିଲା ଲୋକ ନାହିଁ, ବିକିଲା ଲୋକ ମଧ୍ୟ ନାହିଁ । ଜଗତ ସେତେବେଳେ ଖଣ୍ଡିଏ ସୁନ୍ଦର ଛବିରେ ପରିଣତ ହେବ । ଈଶ୍ୱରଙ୍କ ସମ୍ବନ୍ଧରେ ଏପରି ସୁନ୍ଦର କଥା ମୁଁ ଆଉ କେଉଁଠି ପାଇ ନାହିଁ—'ସେ ମହତ୍ କବି, ପ୍ରାଚୀନ କବି—ସମୁଦାୟ ଜଗତ ତାଙ୍କର କବିତା, ତାହା ଅନନ୍ତ ଆନନ୍ଦୋଚ୍ଛ୍ୱାସରେ ଲିଖିତ, ଆଉ ନାନା ଶ୍ଳୋକରେ, ନାନା ଛନ୍ଦରେ, ତାଳରେ ପ୍ରକାଶିତ ।' ବାସନା ତ୍ୟକ୍ତ ହେଲେ ଆମେମାନେ ଈଶ୍ୱରଙ୍କର ଏହି ବିଶ୍ୱକବିତା ପାଠ ଓ ସମ୍ଭୋଗ କରିପାରିବା । ସେତେବେଳେ ସବୁକିଛି ବ୍ରହ୍ମଭାବ ଧାରଣ କରିବ । ଉଡ଼ାଳ ଗଳିକନ୍ଦି, ଅନ୍ଧକାର-ମୟ ସ୍ଥାନ, ଯାହାକୁ ଆମେମାନେ ପୂର୍ବେ ଅପବିତ୍ର ବୋଲି ଭାବୁଥିଲୁ, ସେଗୁଡ଼ିକ ଉପରେ ଯେଉଁ ସମସ୍ତ ଦାଗ ଏତେ କୃଷ୍ଣବର୍ଣ୍ଣ ଜଣା ପଡ଼ୁଥିଲା, ସେସମସ୍ତ ବ୍ରହ୍ମଭାବ ଧାରଣ କରିବ । ସେମାନେ ସମସ୍ତେ ନିଜର ପ୍ରକୃତ ସ୍ୱରୂପ ପ୍ରକାଶ କରିବେ । ସେତେବେଳେ ଆମେମାନେ ନିଜେ ନିଜର ପୂର୍ବ ଆଚରଣ କଥା ଭାବି ହସିଉଠିବୁ—ଏହି ସମସ୍ତ କ୍ରନ୍ଦନ ଓ ଚିତ୍କାର ସବୁ ପିଲାଖେଳ ମାତ୍ର, ଆଉ ଆମେମାନେ ଜନନୀ ପରି ପାଖରେ ଛିଡ଼ା ହୋଇ ଏହି ଖେଳ ଠିଆ ହୋଇ ଦେଖୁଥିଲୁ ।

ବେଦାନ୍ତ କହେ, ଏହି ଭାବରେ କାର୍ଯ୍ୟ କଲେ ପ୍ରକୃତ କାର୍ଯ୍ୟ କରିବାକୁ ଆମେ ସକ୍ଷମ ହେବା । ବେଦାନ୍ତ ଆମମାନଙ୍କୁ କାମ କରିବାକୁ ନିଷେଧ କରେ ନାହିଁ, ବରଂ ପ୍ରଥମେ ସଂସାର ତ୍ୟାଗ କରି, ଏହି ଆପାତଃପ୍ରତୀୟମାନ ମାୟାର ଜଗତ ତ୍ୟାଗ କରି କାର୍ଯ୍ୟ କରିବାକୁ କହୁଛି । ଏହି ତ୍ୟାଗର ଅର୍ଥ କ'ଣ ? ପୂର୍ବରୁ କୁହାଯାଇଛି—ତ୍ୟାଗର ପ୍ରକୃତ ତାତ୍ପର୍ଯ୍ୟ ସର୍ବତ୍ର ଈଶ୍ୱର-ଦର୍ଶନ । ଏହି ଭାବରେ ପ୍ରକୃତ କାର୍ଯ୍ୟ ସମାପନ କରିପାରିବ । ଯଦି ଇଚ୍ଛା ହୁଏ, ଶହେ ବର୍ଷ ବଞ୍ଚିବାକୁ ଇଚ୍ଛା କର, ଯେତେ କିଛି ସାଂସାରିକ ବାସନା ଅଛି, ଭୋଗ କରିନିଅ; କେବଳ ସେସବୁ ମଧ୍ୟରେ ବ୍ରହ୍ମଦର୍ଶନ କର, ସେମାନଙ୍କୁ ସ୍ୱର୍ଗୀୟ ଭାବରେ ପରିଣତ କରିନିଅ ଓ ଶହେ ବର୍ଷ

ଜୀବନ ଧାରଣ କର । ଏହି ଜଗତରେ ଦୀର୍ଘକାଳ ଆନନ୍ଦରେ ପୂର୍ଣ୍ଣ ହୋଇ କାର୍ଯ୍ୟ କରି ଜୀବନ ସମ୍ଭୋଗ କରିବାର ଇଚ୍ଛା ପ୍ରକାଶ କର । ଏହିଭଳି ଭାବରେ କାର୍ଯ୍ୟ କଲେ ତୁମେ ପ୍ରକୃତ ପଥ ପାଇବ । ଏହାଛଡ଼ା ଆଉ କୌଣସି ପଥ ନାହିଁ । ଯେଉଁ ଲୋକ ସତ୍ୟ କଅଣ ନ ଜାଣି ନିର୍ବୋଧ ପରି ସଂସାରର ବିଳାସ-ବିଭ୍ରମରେ ବୁଡ଼ି-ଯାଇଛି, ସେ ପ୍ରକୃତ ପଥ ପାଏ ନାହିଁ ବୋଲି ବୁଝିବାକୁ ହେବ, ତାହାର ପାଦ ସ୍ଖଳିତ ହୋଇଛି । ଅନ୍ୟ ଦିଗରେ ଯେଉଁ ଲୋକ ଜଗତକୁ ଅଭିଶାପ ଦେଇ ବଣକୁ ଯାଇ ନିଜର ଶରୀରକୁ କଷ୍ଟ ଦିଏ, ଧୀରେ ଧୀରେ ଶୁଖାଇ ନିଜକୁ ମାରିପକାଏ, ନିଜର ହୃଦୟକୁ ଗୋଟିଏ ଶୁଷ୍କ ମରୁଭୂମି କରିପକାଏ, ନିଜର ସବୁ ଭାବକୁ ମାରି କଠୋର, ବୀଭତ୍ସ, ଶୁଷ୍କ ହୋଇଯାଏ, ସେ ମଧ୍ୟ ପଥ ଭୁଲିଯାଇଛି, ଏହା ଜାଣିବାକୁ ହେବ । ଏହି ଦୁଇଟିଯାକ ହିଁ ବାହୁଲ୍ୟ—ଦୁଇଟି ହିଁ ଭ୍ରମପୂର୍ଣ୍ଣ । ଉଭୟେ ଲକ୍ଷ୍ୟଭ୍ରଷ୍ଟ —ଉଭୟେ ପଥଭ୍ରଷ୍ଟ ।

ବେଦାନ୍ତ କହେ, ଏପରି ଭାବରେ କାମ କର—ସକଳ ବସ୍ତୁରେ ଈଶ୍ୱର-ବୁଦ୍ଧି କର, ସମସ୍ତ ବସ୍ତୁରେ ସେ ଅଛନ୍ତି । ନିଜର ଜୀବନକୁ ଈଶ୍ୱରାନୁପ୍ରାଣିତ, ଏପରିକି ଈଶ୍ୱର-ସ୍ୱରୂପ ବୋଲି ଚିନ୍ତା କର—ଜାଣିରଖ, ଆମମାନଙ୍କର ଏହା ହିଁ ଏକମାତ୍ର କର୍ତ୍ତବ୍ୟ, ଏକମାତ୍ର ପ୍ରଶ୍ନ; କାରଣ ଈଶ୍ୱର ସକଳ ବସ୍ତୁରେ ଅଛନ୍ତି, ତାଙ୍କୁ ପାଇବାକୁ ହେଲେ ଆଉ କୁଆଡ଼େ ଯିବୁ ? ପ୍ରତ୍ୟେକ କାର୍ଯ୍ୟରେ, ପ୍ରତ୍ୟେକ ଚିନ୍ତାରେ, ପ୍ରତ୍ୟେକ ଭାବରେ ସେ ପୂର୍ବରୁ ଅବସ୍ଥିତ । ଏହିସବୁ ଜାଣି, ଆମମାନଙ୍କୁ ଅବଶ୍ୟ କାମ କରିବାକୁ ହେବ । ଏହା ହିଁ ଏକମାତ୍ର ପଥ—ଆଉ କୌଣସି ପଥ ନାହିଁ । ଏହିଭଳି କଲେ ତୁମକୁ କର୍ମଫଳ ଲିପ୍ତ କରିପାରିବ ନାହିଁ । କର୍ମଫଳ ଆଉ ତୁମର କୌଣସି ଅନିଷ୍ଟ କରିପାରିବ ନାହିଁ । ଆମେମାନେ ଦେଖିଛୁଁ, ଆମେମାନେ ଯେତେ ଦୁଃଖକଷ୍ଟ ଭୋଗ କରୁ, ତାହାର କାରଣ ଏହିସବୁ ବୃଥା ବାସନା । କିନ୍ତୁ ଯେତେବେଳେ ଏହି ବାସନାଗୁଡ଼ିକ ଈଶ୍ୱର-ବୁଦ୍ଧିଦ୍ୱାରା ପବିତ୍ର ହୁଏ, ଈଶ୍ୱର-ସ୍ୱରୂପ ହୋଇଯାଏ, ସେତେବେଳେ ତାହା ଆସିଲେ ଆଉ କୌଣସି ଅନିଷ୍ଟ ହୁଏ ନାହିଁ । ଯେଉଁମାନେ ଏହି ରହସ୍ୟ ଜାଣି ନାହାନ୍ତି, ତାହା ନ ଜାଣିବା ପର୍ଯ୍ୟନ୍ତ ସେମାନଙ୍କୁ ଏହି ଆସୁରିକ ଜଗତରେ ବାସ କରିବାକୁ ହେବ । ଲୋକମାନେ ଜାଣନ୍ତି ନାହିଁ ଯେ ସେମାନଙ୍କ ଚତୁର୍ଦ୍ଦିଗରେ ସର୍ବତ୍ର କି ଅନନ୍ତ ଆନନ୍ଦର ଖଣି ରହିଛି; କିନ୍ତୁ ସେମାନେ ତାହା ଆବିଷ୍କାର କରିପାରୁ ନାହାନ୍ତି ! ଆସୁରିକ ଜଗତର ଅର୍ଥ କଅଣ ? ବେଦାନ୍ତ କହେ —ତାହା ହେଉଛି ଅଜ୍ଞାନ ।

ବେଦାନ୍ତ କହେ, ଆମେମାନେ ଅନନ୍ତସଲିଳପୂର୍ଣ୍ଣ ତଟିନୀ କୂଳରେ ବସି ଶୋଷରେ ମରୁଛୁଁ, ରାଶୀକୃତ ଖାଦ୍ୟ ସମ୍ମୁଖରେ ବସି ମଧ୍ୟ ଭୋକରେ ମରୁଛୁଁ । ଏହିଠାରେ ହିଁ ଆନନ୍ଦମୟ ଜଗତ ରହିଅଛି । ଆମେମାନେ ଏହାକୁ ଖୋଜି ପାଉନାହୁଁ । ଆମେମାନେ ଏହା ମଧ୍ୟରେ ରହିଛୁ; ଏହା ଆମର ଚତୁର୍ଦ୍ଦିଗରେ

ରହିଛି । କିନ୍ତୁ ଆମେମାନେ ସବୁବେଳେ ଏହାକୁ ଅନ୍ୟ କିଛି କହି ଭ୍ରମରେ ପଡ଼ିଅଛୁ । ବିଭିନ୍ନ ଧର୍ମସକଳ ଆମମାନଙ୍କ ନିକଟରେ ସେହି ଆନନ୍ଦମୟ ଜଗତକୁ ଦେଖାଇ ଦେବାକୁ ଅଗ୍ରସର । ସମସ୍ତଙ୍କର ହୃଦୟ ଏହି ଆନନ୍ଦମୟ ଜଗତକୁ ଅନ୍ୱେଷଣ କରୁଛି । ସକଳ ଜାତି ଏହାର ଅନ୍ୱେଷଣ କରିଛନ୍ତି; ଏହା ଧର୍ମର ଏକମାତ୍ର ଲକ୍ଷ୍ୟ; ଆଉ ଏହି ଆଦର୍ଶ ହିଁ ବିଭିନ୍ନ ଭାଷାରେ ପ୍ରକାଶିତ ହୋଇଛି । ବିଭିନ୍ନ ଧର୍ମ ମଧ୍ୟରେ ଯେଉଁ ସକଳ କ୍ଷୁଦ୍ର କ୍ଷୁଦ୍ର ମତଭେଦ ରହିଛି, ତାହା କେବଳ କଥାର କାରସାଦି; ବାସ୍ତବିକ ତାହା କିଛି ନୁହେଁ । ଜଣେ ଗୋଟିଏ ଭାବ ଏକ ଭାବରେ ପ୍ରକାଶ କରିଛି, ଆଉ ଜଣେ ଆଉ ଟିକିଏ ଅନ୍ୟ ଭାବରେ ପ୍ରକାଶ କରୁଛି; କିନ୍ତୁ ମୁଁ ଯାହା କହୁଛି, ତୁମେ ଆଉ ଗୋଟିଏ ଭାଷାରେ ଠିକ୍ ତାହା ହିଁ କହୁଛ । ତାହା ପରେ ହୁଏତ ମୁଁ ଏକାକୀ ସୁଖ୍ୟାତି ଲାଭ ଆଶାରେ ଅଥବା ମୋର ମନ ଅନୁସାରେ ଚାଲିବାକୁ ଭଲ ପାଏ ବୋଲି କହିଲି, 'ଏହା ମୋର ମୌଳିକ ମତ' । ତହିଁରୁ ଆମମାନଙ୍କର ଜୀବନରେ ପରସ୍ପର ଈର୍ଷାଦ୍ୱେଷାଦିର ଉତ୍ପତ୍ତି ।

ଏ ସମ୍ବନ୍ଧରେ ଆହୁରି ନାନା ତର୍କ ଉଠୁଛି । ଯାହା କୁହାଗଲା, ତାହା ମୁହଁରେ କହିବା ତ ଖୁବ୍ ସହଜ । ପିଲାଦିନଠାରୁ ଶୁଣି ଆସୁଛି—ସର୍ବତ୍ର ବ୍ରହ୍ମବୁଦ୍ଧି କର—ସବୁ ବ୍ରହ୍ମମୟ ହୋଇଯିବ, ସେତେବେଳେ ସମୁଦାୟ ବିଷୟକୁ ପ୍ରକୃତ ରୂପରେ ସମ୍ଭୋଗ କରିପାରିବ; କିନ୍ତୁ ଯେମିତି ମୁଁ ସଂସାରକ୍ଷେତ୍ରରେ ପ୍ରବେଶ କରି ଆଘାତ ପାଇଲି ଓ ଅକୃତକାର୍ଯ୍ୟ ହେଲି, ସେମିତି ମୋର ବ୍ରହ୍ମବୁଦ୍ଧି ସବୁ ଉଡ଼ିଗଲା । ମୁଁ ରାସ୍ତା ଉପରେ ଭାବି ଭାବି ଯାଉଛି ସକଳ ମନୁଷ୍ୟ ଭିତରେ ଈଶ୍ୱର ବିରାଜମାନ—ଜଣେ ବଳବାନ୍ ଲୋକ ଆସି ମତେ ଧକ୍‌କା ଦେଲା ଓ ତତ୍‌କ୍ଷଣାତ୍ ମୁଁ ଚିତ୍‌ପଟାଙ୍ଗ ହୋଇ ପଡ଼ିଗଲି । ପାଟିକରି ଉଠିଲି, ରକ୍ତ ମୁଣ୍ଡକୁ ଉଠିଗଲା—ହାତ ମୁଷ୍ଟିବଦ୍ଧ ହୋଇଗଲା—ବୁଦ୍ଧିବାଣ୍ଡି ହରାଇଲି । ଏକାବେଳକେ ଉନ୍ମତ୍ତ ହୋଇଉଠିଲି । ସମସ୍ତ ସ୍ମୃତି ଚାଲିଗଲା—ସେ ଲୋକ ଭିତରେ ଈଶ୍ୱର ନ ଦେଖି ମୁଁ ସଇତାନ ଦେଖିଲି । ଜନ୍ମଠାରୁ ଉପଦେଶ ପାଇ ଆସିଛି, ସର୍ବତ୍ର ଈଶ୍ୱରଦର୍ଶନ କର । ସବୁ ଧର୍ମରେ ଅଛି—ସର୍ବ ବସ୍ତୁରେ, ସର୍ବତ୍ର ଈଶ୍ୱର ଦର୍ଶନ କର । ନିଉ ଟେଷ୍ଟାମେଣ୍ଟରେ ଯୀଶୁଖ୍ରୀଷ୍ଟ ମଧ୍ୟ ଏ ବିଷୟରେ ସ୍ପଷ୍ଟ ଉପଦେଶ ଦେଇଛନ୍ତି । ଆମେମାନେ ସମସ୍ତେ ଏହି ଉପଦେଶ ପାଇଛୁ—କିନ୍ତୁ କାର୍ଯ୍ୟ କଲାବେଳେ ଗୋଳମାଳ ଆରମ୍ଭ ହୁଏ । ଈସପ୍-ରଚିତ ଆଖ୍ୟାନାବଳୀ ଭିତରେ ଗୋଟିଏ ଗଳ୍ପ ଅଛି—'ଗୋଟିଏ ବୃହଦ୍‌କାୟ ସୁନ୍ଦର ହରିଣ ଗୋଟିଏ ହ୍ରଦରେ ନିଜର ପ୍ରତିବିମ୍ବ ଦେଖି ତାହାର ଛୁଆକୁ କହୁଛି, ଦେଖ, ମୁଁ କିପରି ବଳବାନ୍, ମୋର ମସ୍ତକ (ଶୃଙ୍ଗ) ଅବଲୋକନ କର—ଏହା କିପରି ଚମତ୍କାର, ମୋର ହାତ ପାଦ ଅବଲୋକନ କର, ଏହା କିପରି ଦୃଢ଼ ଓ ମାଂସଳ, ମୁଁ କେତେ ଶୀଘ୍ର ଦୌଡ଼ିପାରେ । ସେ ଏକଥା କହୁଛି, ଏପରି ସମୟରେ ଦୂରରୁ କୁକୁରର ଭୁକିବା ଶବ୍ଦ ଶୁଣିବାକୁ ପାଇଲା;

ଯେମିତି ଶୁଣିଲା, ସେମିତି ଦୌଡ଼ି ପଳାଇଗଲା । ଅନେକ ଦୂର ଦୌଡ଼ିଯାଇ ଧଇଁ ସଇଁ ହୋଇ ବୁଢ଼ୀଆ ନିକଟକୁ ଫେରି ଆସିଲା । ହରିଣଛୁଆ କହିଲା, ବର୍ତ୍ତମାନ ତୁମେ କହୁଥିଲ, ତୁମେ ଖୁବ ବଳବାନ—ତେବେ କୁକୁରର ଭୁକିବା ଶୁଣି ପଳାଇଲ କାହିଁକି ? ହରିଣ କହିଲା, ସତରେ କୁକୁର ଭୁକିଲେ ମୋର ଆଉ କୌଣସି ଜ୍ଞାନ ରହେ ନାହିଁ ।' ଆମେମାନେ ମଧ୍ୟ ସାରାଜୀବନ ସେମିତି କରୁଛୁ । ଆମେମାନେ ଦୁର୍ବଳ ମନୁଷ୍ୟଜାତି ସମ୍ବନ୍ଧରେ କେତେ ଉଚ୍ଚ ଆଶା ପୋଷଣ କରୁଛୁ କିନ୍ତୁ କୁକୁର ଭୁକିଲେ ସେହି ହରିଣପରି ପଳାଇଯାଉ । ତାହା ଯଦି ହେଲା, ଏହିସବୁ ଶିକ୍ଷା ଦେବା କଣ ଆବଶ୍ୟକ ? ହଁ, ଏହାର ବିଶେଷ ଆବଶ୍ୟକତା ରହିଛି, ଆମେ ବୁଝିବା ଉଚିତ ଯେ, ଗୋଟିଏ ଦିନରେ କିଛି ହୁଏ ନାହିଁ ।

'ଆତ୍ମା ବା ଅରେ ଶ୍ରୋତବ୍ୟୋ ମନ୍ତବ୍ୟୋ ନିଦିଧ୍ୟାସିତବ୍ୟଃ'*—ଆତ୍ମା ସମ୍ବନ୍ଧରେ ପ୍ରଥମେ ଶୁଣିବାକୁ ହେବ, ପରେ ମନନ ଅର୍ଥାତ୍ ଚିନ୍ତା କରିବାକୁ ହେବ, ତାହା ପରେ କ୍ରମାଗତ ଧ୍ୟାନ କରିବାକୁ ହେବ । ସମସ୍ତେ ଆକାଶ ଦେଖିପାରନ୍ତି, ଏପରି କି ଯେଉଁ ସାମାନ୍ୟ କୀଟ ଭୂଇଁରେ ବିଚରଣ କରୁଛି, ସେ ମଧ୍ୟ ଉପରକୁ ଦୃଷ୍ଟିପାତ କଲେ ନୀଳବର୍ଣ୍ଣ ଆକାଶ ଦେଖିବାକୁ ପାଏ; କିନ୍ତୁ ଏହା ଆମମାନଙ୍କଠାରୁ କେତେ ଦୂରରେ ରହିଛି ! ଇଚ୍ଛା କରିଲେ ମନ ସବୁ ସ୍ଥାନକୁ ଯାଇପାରେ; କିନ୍ତୁ ପିଲାଦିନେ ଗୁରୁଣ୍ଡିଚାଲିବା ଶିଖିବାକୁ କେତେ ସମୟ ଅତିବାହିତ ହୋଇଯାଏ ! ଆମମାନଙ୍କର ସମୁଦାୟ ଆଦର୍ଶ ସମ୍ବନ୍ଧରେ ଏହି କଥା । ଆଦର୍ଶସବୁ ଆମମାନଙ୍କର ଅନେକ ଦୂରରେ ରହିଛି, ଆଉ ଆମେମାନେ ଏହି ନିମ୍ନରେ ପଡ଼ିରହିଛୁଁ ! ତଥାପି ଆମେମାନେ ଜାଣୁ ଆମମାନଙ୍କର ଗୋଟିଏ ଆଦର୍ଶ ରହିବା ଆବଶ୍ୟକ । କେବଳ ତାହା ନୁହେଁ, ଆମମାନଙ୍କର ସର୍ବୋଚ୍ଚ ଆଦର୍ଶ ଥିବା ଆବଶ୍ୟକ । ଦୁର୍ଭାଗ୍ୟବଶତଃ ଅଧିକାଂଶ ଲୋକେ ଏହି ଜଗତରେ କୌଣସି ପ୍ରକାର ଆଦର୍ଶ ନ ନେଇ ଜୀବନର ଅନ୍ଧକାରମୟ ପଥରେ ଅଣ୍ଡାଳି ହେଉଛନ୍ତି । ଯାହାର ଗୋଟିଏ ନିର୍ଦ୍ଦିଷ୍ଟ ଆଦର୍ଶ ଅଛି, ସେ ଯଦି ସହସ୍ର ଭ୍ରମରେ ପଡ଼େ, ତାହେଲେ ଯାହାର କୌଣସି ପ୍ରକାର ଆଦର୍ଶ ନାହିଁ ସେ ଦଶ ସହସ୍ର ଭ୍ରମରେ ପଡ଼ିବ, ଏହା ନିଶ୍ଚିତ । ଅତଏବ ଗୋଟିଏ ଆଦର୍ଶ ଥିବା ଭଲ; ଏହି ଆଦର୍ଶ ସମ୍ବନ୍ଧରେ ଯେତେ ବେଶୀ ପାରି ଶୁଣିବାକୁ ହେବ, ଯେତେ ଦିନ ଆମମାନଙ୍କର ଅନ୍ତରରେ ଏହା ପ୍ରବେଶ ନ କରିଛି, ଆମମାନଙ୍କର ମସ୍ତିଷ୍କରେ ପ୍ରବେଶ ନ କରିଛି, ଯେତେ ଦିନ ଆମମାନଙ୍କର ରକ୍ତ ଭିତରେ ପ୍ରବେଶ କରିନାହିଁ, ଯେତେ ଦିନ ଏହି ଭାବସକଳ ଆମମାନଙ୍କର ପ୍ରତି ଶୋଣିତବିନ୍ଦୁରେ ପ୍ରବେଶ ନ କରିଛି, ଯେତେ ଦିନ ଏହା ଆମମାନଙ୍କର ଶରୀରର ପ୍ରତ୍ୟେକ ପରମାଣୁରେ ବ୍ୟାପ୍ତ ନ ହୋଇଛି । ଅତଏବ ଆମମାନଙ୍କୁ ଏହି ଆତ୍ମତତ୍ତ୍ୱ ଶୁଣିବାକୁ ହେବ । କଥିତ ଅଛି, 'ହୃଦୟ ପୂର୍ଣ୍ଣ ହେଲେ ମୁଖ ବାକ୍ୟ ଉଚ୍ଚାରଣ କରେ', ଆହୁରି ହୃଦୟ ପୂର୍ଣ୍ଣ

* ବୃହଦାରଣ୍ୟକ ଉପନିଷଦ, ୨।୪।୫; ୪।୫।୬

ହେଲେ ହାତ ମଧ୍ୟ କାର୍ଯ୍ୟ କରିଥାଏ ।

ଚିନ୍ତା ହିଁ ଆମମାନଙ୍କର କାର୍ଯ୍ୟ-ପ୍ରବୃତ୍ତିର ନିୟାମକ । ମନକୁ ସର୍ବୋଚ୍ଚ ଚିନ୍ତାଦ୍ୱାରା ପୂର୍ଣ୍ଣ କରି ରଖ, ଦିନକୁ ଦିନ ଏହା ଶୁଣୁଥାଅ, ମାସ ମାସ ଧରି ଏହା ଚିନ୍ତା କରୁଥାଅ । ପ୍ରଥମେ ପ୍ରଥମେ ସଫଳ ନ ହେଲେ କ୍ଷତି ନାହିଁ, ଏହି ବିଫଳତା ସମ୍ପୂର୍ଣ୍ଣ ସ୍ୱାଭାବିକ, ଏହା ମାନବଜୀବନର ବିଶେଷତ୍ୱ । ଏହିପରି ବିଫଳତା ନ ଥିଲେ ଜୀବନ କ'ଣ ହୋଇଥାଆନ୍ତା ! ଯଦି ଜୀବନରେ ଏହି ବିଫଳତାକୁ ଜୟ କରିବାର ଚେଷ୍ଟା ନ ଥାନ୍ତା, ତେବେ ଜୀବନଧାରଣ କରିବାର କୌଣସି କିଛି ପ୍ରୟୋଜନ ରହନ୍ତା ନାହିଁ, ଏହା ନ ଥିଲେ ଜୀବନର କବିତ୍ୱ କେଉଁଠି ଥାଆନ୍ତା ? ଏହି ବିଫଳତା, ଏହି ଭ୍ରମ ଥିଲେ ଥାଉ । ଗୋରୁକୁ କଦାପି ମିଛ କଥା କହିବାର କେହି ଶୁଣିନାହିଁ, କିନ୍ତୁ ଏହା ସବୁଦିନ ଗୋରୁ ରହିଯାଏ, କଦାପି ମନୁଷ୍ୟ ହୁଏ ନାହିଁ । ଅତଏବ ବାରମ୍ବାର ଅକୃତକାର୍ଯ୍ୟ ହୁଅ, କିଛିମାତ୍ର କ୍ଷତି ନାହିଁ; ସହସ୍ର ସହସ୍ର ଥର ଏହି ଆଦର୍ଶକୁ ହୃଦୟରେ ଧାରଣ କର, ଆଉଥରେ ଯଦି ସହସ୍ର ଥର ଅକୃତକାର୍ଯ୍ୟ ହୁଅ, ଆଉଥରେ ଥରେ ଚେଷ୍ଟା କରି ଦେଖ । ସର୍ବଭୂତରେ ବ୍ରହ୍ମଦର୍ଶନ ହିଁ ମନୁଷ୍ୟର ଆଦର୍ଶ ଉଦ୍ଦେଶ୍ୟ । ଯଦି ସକଳବସ୍ତୁରେ ତାଙ୍କୁ ଦେଖିବାରେ କୃତକାର୍ଯ୍ୟ ନ ହୁଅ, ଅନ୍ତତଃ ଗୋଟିଏ ବସ୍ତୁରେ ତାଙ୍କୁ ଦର୍ଶନ କର—ଯାହାକୁ ତୁମେ ସର୍ବାପେକ୍ଷା ଭଲ ପାଅ; ତାହା ପରେ ତାଙ୍କୁ ଆଉ ଜଣକ ମଧ୍ୟରେ ଦର୍ଶନ କର । ଏହିଭଳି ଭାବରେ ତୁମେ ଅଗ୍ରସର ହୋଇପାର । ଆତ୍ମା ସମ୍ମୁଖରେ ଅନନ୍ତ ଜୀବନ ରହିଛି— ଅଧ୍ୟବସାୟସମ୍ପନ୍ନ ହୋଇ ଚେଷ୍ଟା କଲେ ତୁମର ଶୁଭ ବାସନା ନିଶ୍ଚୟ ପୂର୍ଣ୍ଣ ହେବ ।

ଅନେଜଦେକଂ ମନସୋ ଜବୀୟୋ ନୈନଦ୍ଦେବା ଆପ୍ନୁବନ୍ ପୂର୍ବମର୍ଷତ୍ ।
ତଦ୍ଧାବତୋଽନ୍ୟାନତ୍ୟେତି ତିଷ୍ଠତ୍ ତସ୍ମିନ୍ନପୋ ମାତରିଶ୍ୱା ଦଧାତି ॥
ତଦେଜତି ତନ୍ନୈଜତି ତଦ୍ଦୂରେ ତଦ୍ୱନ୍ତିକେ ।
ତଦନ୍ତରସ୍ୟ ସର୍ବସ୍ୟ ତଦୁ ସର୍ବସ୍ୟାସ୍ୟ ବାହ୍ୟତଃ ॥
ଯସ୍ତୁ ସର୍ବାଣି ଭୂତାନି ଆତ୍ମନ୍ୟେବାନୁପଶ୍ୟତି ।
ସର୍ବଭୂତେଷୁ ଚାତ୍ମାନଂ ତତୋ ନ ବିଜୁଗୁପ୍ସତେ ॥
ଯସ୍ମିନ୍ ସର୍ବାଣି ଭୂତାନି ଆତ୍ମୈବାଭୂଦ୍ ବିଜାନତଃ ॥
ତତ୍ର କୋ ମୋହଃ କଃ ଶୋକଃ ଏକତ୍ୱମନୁପଶ୍ୟତଃ ॥

—ଈଶୋପନିଷତ୍, ୪-୭

—ସେ ଅଚଳ, ଏକ, ମନ ଅପେକ୍ଷା ମଧ୍ୟ ଦ୍ରୁତଗାମୀ । ଇନ୍ଦ୍ରିୟଗଣ ପୂର୍ବେ ଗମନ କରି ମଧ୍ୟ ତାଙ୍କୁ ପ୍ରାପ୍ତ ହୋଇ ନାହାନ୍ତି । ସେ ସ୍ଥିର ରହି ମଧ୍ୟ ଅନ୍ୟାନ୍ୟ ଦ୍ରୁତଗାମୀ ପଦାର୍ଥର ଅଗ୍ରବର୍ତ୍ତୀ । ତାଙ୍କ ମଧ୍ୟରେ ରହି ହିରଣ୍ୟଗର୍ଭ ସମସ୍ତଙ୍କ କର୍ମ-ଫଳ ବିଧାନ କରୁଛନ୍ତି । ସେ ସଚଳ, ସେ ସ୍ଥିର; ସେ ଦୂରରେ, ସେ ନିକଟରେ; ସେ ସବୁ କିଛିର ଭିତରେ, ପୁଣି ସେ ଏହି ସମସ୍ତର ବାହାରେ । ଯେ ଆତ୍ମା ମଧ୍ୟରେ

ସର୍ବଭୂତଙ୍କୁ ଦର୍ଶନ କରନ୍ତି, ପୁନଶ୍ଚ ସର୍ବଭୂତରେ ଆତ୍ମାଙ୍କୁ ଦର୍ଶନ କରନ୍ତି, ସେ କିଛି ଗୋପନ କରିବାକୁ ଇଚ୍ଛା କରନ୍ତି ନାହିଁ । ଯେଉଁ ଅବସ୍ଥାରେ ଜ୍ଞାନୀ ବ୍ୟକ୍ତି ପକ୍ଷରେ ସମୁଦାୟ ଭୂତ ଆତ୍ମସ୍ୱରୂପ ହୋଇଯାଆନ୍ତି, ସେହି ଏକତ୍ୱଦର୍ଶୀ ପୁରୁଷର ଉକ୍ତ ଅବସ୍ଥାରେ ଶୋକ ବା ମୋହର ବିଷୟ କଅଣ ରହିପାରେ ?

ସର୍ବପଦାର୍ଥର ଏହି ଏକତ୍ୱ ବେଦାନ୍ତର ଆଉ ଗୋଟିଏ ପ୍ରଧାନ ବିଷୟ । ଆମେମାନେ ପରେ ଦେଖିବୁ, ବେଦାନ୍ତ କିପରି ପ୍ରମାଣ କରେ ଯେ, ଆମମାନଙ୍କର ସମୁଦାୟ ଦୁଃଖ ଅଜ୍ଞାନସୃଷ୍ଟ ଏବଂ ଅଜ୍ଞାନ ଆଉ କିଛି ନୁହେଁ, ଏହି ବହୁତ୍ୱର ଧାରଣା —ଏହି ଧାରଣା ଯେ ମନୁଷ୍ୟଠାରୁ ମନୁଷ୍ୟ ଭିନ୍ନ—ନର ନାରୀ ଭିନ୍ନ, ଯୁବା ଓ ଶିଶୁ ଭିନ୍ନ—ଜାତି ଜାତି ପୃଥକ୍, ପୃଥିବୀ ଚନ୍ଦ୍ରଠାରୁ ପୃଥକ୍, ଚନ୍ଦ୍ର ସୂର୍ଯ୍ୟଠାରୁ ପୃଥକ୍, ଗୋଟିଏ ପରମାଣୁ ଆଉ ଗୋଟିଏ ପରମାଣୁଠାରୁ ପୃଥକ୍ । ଏହି ପୃଥକ୍-ଜ୍ଞାନ ହିଁ ବାସ୍ତବିକ ସକଳ ଦୁଃଖର କାରଣ । ବେଦାନ୍ତ କହେ, ଏଭଳି ପ୍ରଭେଦ ବାସ୍ତବିକ ନାହିଁ । ଏହି ପ୍ରଭେଦ କେବଳ ପ୍ରାତିଭାସିକ, ଆପାତପ୍ରତୀୟମାନ । ବସ୍ତୁର ଅନ୍ତଃସ୍ଥଳରେ ସେହି ଏକତ୍ୱ ବିରାଜମାନ । ଯଦି ତୁମେ ଭିତରକୁ ଯାଅ, ତୁମେ ଏହି ଏକତ୍ୱ ଦେଖିବାକୁ ପାଇବ—ମଣିଷ ମଣିଷ ମଧ୍ୟରେ ଏକତ୍ୱ, ନରନାରୀ ମଧ୍ୟରେ ଏକତ୍ୱ, ଜାତି ଜାତି ମଧ୍ୟରେ ଏକତ୍ୱ, ଉଚ୍ଚ ନୀଚ ମଧ୍ୟରେ ଏକତ୍ୱ, ଧନୀ ଦରିଦ୍ର ମଧ୍ୟରେ ଏକତ୍ୱ, ଦେବତା ମନୁଷ୍ୟ ମଧ୍ୟରେ ଏକତ୍ୱ, ସମସ୍ତେ ଏକ—ଇତର ପ୍ରାଣୀମାନେ ମଧ୍ୟ ଏକ—ଯଦି ଆହୁରି ଭିତରକୁ ପ୍ରବେଶ କର । ଯେ ଏହି ଅବସ୍ଥାରେ ପହଞ୍ଚିଛନ୍ତି, ତାଙ୍କର ଆଉ ମୋହ ରହେ ନାହିଁ । ସେ ସେତେବେଳେ ସେହି ଏକତ୍ୱରେ ପହଞ୍ଚିଛନ୍ତି, ଯାହାକୁ ଧର୍ମବିଜ୍ଞାନରେ 'ଈଶ୍ୱର' ବୋଲି କୁହାଯାଏ । ତାଙ୍କର ଆଉ କିପରି ମୋହ ରହିବ ? କିଏ ତାଙ୍କର ମୋହ ଜନ୍ମାଇବ ? ସେ ସକଳ ବସ୍ତୁର ଭିତରର ସତ୍ୟକୁ ଜାଣିଛନ୍ତି, ସେ ସକଳ ବସ୍ତୁର ରହସ୍ୟକୁ ଜାଣିଛନ୍ତି । ତାଙ୍କ ପକ୍ଷରେ ଆଉ ଦୁଃଖ କିପରି ରହିବ ? ସେ ଆଉ କଅଣ ଅଭିଳାଷ କରିବେ ? ସେ ସକଳ ବସ୍ତୁ ମଧ୍ୟରେ ପ୍ରକୃତ ସତ୍ୟକୁ ଅନ୍ୱେଷଣ କରି ଈଶ୍ୱରଙ୍କ ନିକଟରେ ପହଞ୍ଚିଛନ୍ତି—ଯେ ଜଗତର କେନ୍ଦ୍ରସ୍ୱରୂପ, ଯେ ସକଳ ବସ୍ତୁର ଏକତ୍ୱସ୍ୱରୂପ, ସେ ହିଁ ଅନନ୍ତ ସତ୍ତା, ଅନନ୍ତ ଜ୍ଞାନ ଓ ଅନନ୍ତ ଆନନ୍ଦ । ସେଠାରେ ମୃତ୍ୟୁ ନାହିଁ, ରୋଗ ନାହିଁ, ଦୁଃଖ ନାହିଁ, ଶୋକ ନାହିଁ, ଅଶାନ୍ତି ନାହିଁ । ରହିଛି କେବଳ ପୂର୍ଣ୍ଣ ଏକତ୍ୱ —ପୂର୍ଣ୍ଣ ଆନନ୍ଦ । ସେତେବେଳେ ସେ କାହା ପାଇଁ ଶୋକ କରିବେ ? ବାସ୍ତବିକ୍ ସେହି କେନ୍ଦ୍ରରେ, ସେହି ପରମ ସତ୍ୟରେ ମୃତ୍ୟୁ ନାହିଁ, ଦୁଃଖ ନାହିଁ, କାହା ପାଇଁ ଶୋକ କରିବାର ନାହିଁ, କାହା ପାଇଁ ଦୁଃଖ କରିବାର ନାହିଁ ।

ସ ପର୍ଯ୍ୟଗାଚ୍ଛୁକ୍ରମକାୟମବ୍ରଣମସ୍ନାବିରଂ ଶୁଦ୍ଧମପାପବିଦ୍ଧମ୍
କବିର୍ମନୀଷୀ ପରିଭୂଃ ସ୍ୱୟମ୍ଭୂର୍ଯାଥାତଥ୍ୟତୋଽର୍ଥାନ୍
ବ୍ୟଦଧାଚ୍ଛାଶ୍ୱତୀଭ୍ୟଃ ସମାଭ୍ୟଃ ॥ —ଈଶୋପନିଷଦ, ୮

—ସେ ଚତୁର୍ଦ୍ଦିଗ ବେଷ୍ଟନ କରିଛନ୍ତି, ସେ ଉଜ୍ଜ୍ୱଳ, ଦେହଶୂନ୍ୟ, ବ୍ରଣଶୂନ୍ୟ, ସ୍ନାୟୁଶୂନ୍ୟ, ପବିତ୍ର ଓ ନିଷ୍ପାପ, ସେ କବି, ମନର ନିୟନ୍ତା, ସମସ୍ତଙ୍କର ଶ୍ରେଷ୍ଠ ଓ ସ୍ୱୟମ୍ଭୂ; ସେ ଚିରକାଳ ପାଇଁ ଯଥାଯୋଗ୍ୟରୂପେ ସମସ୍ତଙ୍କର କାମ୍ୟ ବସ୍ତୁ ବିଧାନ କରୁଛନ୍ତି ।

ଯେଉଁମାନେ ଏହି ଅବିଦ୍ୟାମୟ ଜଗତର ଉପାସନା କରନ୍ତି, ସେମାନେ ଅନ୍ଧକାରରେ ପ୍ରବେଶ କରନ୍ତି । ଯେଉଁମାନେ ଜଗତକୁ ବ୍ରହ୍ମତୁଲ୍ୟ ସତ୍ୟଜ୍ଞାନ କରି ଉପାସନା କରନ୍ତି, ସେମାନେ ଅନ୍ଧକାରରେ ଭ୍ରମଣ କରୁଛନ୍ତି; କିନ୍ତୁ ଯେଉଁମାନେ ଚିରଜୀବନ ଏହି ସଂସାରର ଉପାସନା କରନ୍ତି—ତାହାଠାରୁ ଉଚ୍ଚତର ଆଉ କିଛି ଲାଭ କରିପାରନ୍ତି ନାହିଁ, ସେମାନେ ଆହୁରି ଗଭୀରତର ଅନ୍ଧକାରରେ ପ୍ରବେଶ କରନ୍ତି ।* କିନ୍ତୁ ଯେ ଏହି ପରମସୁନ୍ଦର ପ୍ରକୃତିର ରହସ୍ୟ ଜ୍ଞାତ ହୋଇଛନ୍ତି, ଯେ ପ୍ରକୃତି ସାହାଯ୍ୟରେ ଦୈବୀ-ପ୍ରକୃତିର ଚିନ୍ତା କରନ୍ତି, ସେ ମୃତ୍ୟୁକୁ ଅତିକ୍ରମ କରନ୍ତି ଏବଂ ଦୈବୀ-ପ୍ରକୃତି ସାହାଯ୍ୟରେ ଅମୃତତ୍ୱ ଲାଭ କରନ୍ତି ।

ହିରଣ୍ମୟେନ ପାତ୍ରେଣ ସତ୍ୟସ୍ୟାପିହିତଂ ମୁଖମ୍ ।
ତତ୍ତ୍ୱଂ ପୂଷନ୍ନପାବୃଣୁ ସତ୍ୟଧର୍ମାୟ ଦୃଷ୍ଟୟେ ॥
···ଯତ୍ତେ ରୂପଂ କଲ୍ୟାଣତମଂ ତତ୍ତେ ପଶ୍ୟାମି ।
ଯୋଽସାବସୌ ପୁରୁଷଃ ସୋଽହମସ୍ମି ॥

—ଈଶୋପନିଷଦ୍, ୧୫, ୧୬

—ହେ ସୂର୍ଯ୍ୟ, ହିରଣ୍ମୟ ପାତ୍ରଦ୍ୱାରା ତୁମେ ସତ୍ୟର ମୁଖ ଆବୃତ କରିଛ । ସତ୍ୟଧର୍ମୀ, ମୁଁ ଯଦ୍ୱାରା ତାହା ଦେଖିପାରେ ସେଥିପାଇଁ ସେ ପାତ୍ର ଅପସାରିତ କର । ...ମୁଁ ତୁମର ପରମ ରମଣୀୟ ରୂପ ଦେଖୁଛି—ତୁମ ମଧ୍ୟରେ ଯେଉଁ ପୁରୁଷ ରହିଛନ୍ତି, ସେ ମୁଁ ନିଜେ ।

---

* ଈଶ ଉପ., ୯-୧୨

# ଅପରୋକ୍ଷାନୁଭୂତ

(ଲଣ୍ଡନରେ ପ୍ରଦତ୍ତ ବକ୍ତୃତା, ୨୯ ଅକ୍ଟୋବର. ୧୮୯୬)

ମୁଁ ତୁମମାନଙ୍କୁ ଆଉ ଖଣ୍ଡିଏ ଉପନିଷଦ୍ ପଢ଼ି ଶୁଣାଇବ । ଏହା ଅତି ସରଳ ଅଥଚ ଅତିଶୟ କବିତ୍ୱପୂର୍ଣ୍ଣ । ଏହାର ନାମ 'କଠୋପନିଷଦ୍' । ତୁମେମାନେ ଅନେକେ ବୋଧହୁଏ, ସାର ଏଡୱିନ୍ ଆର୍ଣ୍ଣଲ୍ଡଙ୍କ କୃତ ଏହାର ଅନୁବାଦ ଅଧ୍ୟୟନ କରିଛ । ଆମେମାନେ ପୂର୍ବରୁ ଦେଖିଛୁଁ, ଜଗତର ସୃଷ୍ଟି କିପରି ହେଲା, ଏହି ପ୍ରଶ୍ନର ଉତ୍ତର ବହିର୍ଜଗତରୁ ମିଳେ ନାହିଁ, ସୁତରାଂ ଏହି ପ୍ରଶ୍ନର ଉତ୍ତର ପାଇଁ ସନ୍ଧାନ-ଚେଷ୍ଟା ଅନ୍ତର୍ଜଗତକୁ ପ୍ରଧାବିତ ହୋଇଥିଲା । କଠୋପନିଷଦ୍‌ରେ ଏହି ମନୁଷ୍ୟର ସ୍ୱରୂପ ସମ୍ବନ୍ଧରେ ଅନୁସନ୍ଧାନ ଆରମ୍ଭ ହୋଇଛି । ପୂର୍ବରୁ ପ୍ରଶ୍ନ ହୋଇଥିଲା, 'କିଏ ଏହି ବାହ୍ୟଜଗତ୍ ସୃଷ୍ଟି କଲା ? ଏହାର ଉତ୍ପତ୍ତି କିପରି ହେଲା ?' ଇତ୍ୟାଦି; କିନ୍ତୁ ବର୍ତ୍ତମାନ ଏହି ପ୍ରଶ୍ନ ଆସିଲା, ମନୁଷ୍ୟ ଭିତରେ ଏପରି କେଉଁ ବସ୍ତୁ ଅଛି, ଯାହା ତାକୁ ବଞ୍ଚାଇ ରଖିଛି, ଯାହା ତାକୁ ଚଳାଉଛି ଏବଂ ମୃତ୍ୟୁ ପରେ ମନୁଷ୍ୟର ବା କ'ଣ ହୁଏ ? ପୂର୍ବେ ଲୋକମାନେ ଏହି ଜଡ଼ ଜଗତକୁ ନେଇ କ୍ରମଶଃ ଏହାର ଅନ୍ତରାଳକୁ ଯିବାକୁ ଚେଷ୍ଟା କରିଥିଲେ ଏବଂ ତଦ୍ଦ୍ୱାରା ପାଇଥିଲେ ଜଗତର ଜଣେ ଶାସନକର୍ତ୍ତା—ଜଣେ ବ୍ୟକ୍ତି—ଜଣେ ମନୁଷ୍ୟ ମାତ୍ର; ହୋଇପାରେ ମନୁଷ୍ୟର ଗୁଣରାଶି ଅନନ୍ତ ପରିମାଣରେ ବର୍ଦ୍ଧିତ ହୋଇ ତାଙ୍କଠାରେ ଆରୋପିତ ହୋଇଛି; କିନ୍ତୁ କାର୍ଯ୍ୟତଃ ସେ ଜଣେ ମନୁଷ୍ୟମାତ୍ର । ଏହି ମୀମାଂସା କଦାପି ପୂର୍ଣ୍ଣ ସତ୍ୟ ହୋଇ ନ ପାରେ, ଖୁବ୍ ବେଶୀ ହେଲେ ଆଂଶିକ ସତ୍ୟ ବୋଲି କୁହାଯାଇପାରେ । ଆମେମାନେ ମନୁଷ୍ୟଦୃଷ୍ଟିରେ ଏହି ଜଗତ୍‌କୁ ଦେଖୁଛୁ, ଆଉ ଆମମାନଙ୍କର ଈଶ୍ୱର ଏହାର ହିଁ ମାନବୀୟ ବ୍ୟାଖ୍ୟା ମାତ୍ର !

ମନେକର, ଗୋଟିଏ ଗୋରୁ ଦାର୍ଶନିକ ଓ ଧର୍ମଜ୍ଞ ହେଲା—ସେ ଜଗତକୁ ତାହାର ଗୋରୁର ଦୃଷ୍ଟିରେ ଦେଖିବ, ସେ ଗୋରୁଭାବରେ ହିଁ ଏହି ସମସ୍ୟାର ସମାଧାନ କରିବ; ସେ ଯେ ଆମମାନଙ୍କର ଈଶ୍ୱରଙ୍କୁ ଦେଖିବ, ତାହା ହୁଏତ ହୋଇ ନ ପାରେ । ବିରାଡ଼ିମାନେ ଯଦି ଦାର୍ଶନିକ ହୁଅନ୍ତି, ସେମାନେ 'ବିରାଡ଼ି-ଜଗତ୍' ଦେଖିବେ; ସେମାନେ ସିଦ୍ଧାନ୍ତ କରିବେ, କୌଣସି ଗୋଟିଏ ବିରାଟ ବିରାଡ଼ି ଏହି ଜଗତ୍‌କୁ ଶାସନ କରୁଛି । ଅତଏବ ଆମେମାନେ ଦେଖୁଛୁ, ଜଗତ୍ ସମ୍ବନ୍ଧରେ ମାନବୀୟ ଧାରଣା ପୂର୍ଣ୍ଣ ବ୍ୟାଖ୍ୟା ନୁହେଁ, ଜଗତ୍-ସମସ୍ୟାର ସମାଧାନ କରିବା ତ ଦୂରର କଥା ! ମନୁଷ୍ୟ ଜଗତ୍ ସମ୍ବନ୍ଧରେ ଯେଉଁ ଅତ୍ୟନ୍ତ ସ୍ୱାର୍ଥପର ମୀମାଂସା କରେ, ତାହା ଗ୍ରହଣ କଲେ ପ୍ରଚଣ୍ଡ ଭ୍ରମରେ ପଡ଼ିବାକୁ ହୁଏ । ବାହ୍ୟ ଜଗତକୁ

ଜଗତ୍ ସମ୍ବନ୍ଧରେ ଯେଉଁ ମୀମାଂସା ଲବ୍ଧ ହୁଏ, ତାହାର ଦୋଷ ଏହି ଯେ, ଆମେମାନେ ଯେଉଁ ଜଗତ୍ ଦେଖୁଁ, ତାହା ଆମମାନଙ୍କର ନିଜର ଜଗତ୍ ମାତ୍ର, ସତ୍ୟ ସମ୍ବନ୍ଧରେ ଆମମାନଙ୍କର ଯେତେ ଟିକିଏ ଦୃଷ୍ଟି, ସେତିକ । ପ୍ରକୃତ ସତ୍ୟ—ସେହି ପରମାର୍ଥ ବସ୍ତୁ କଦାପି ଇନ୍ଦ୍ରିୟଗ୍ରାହ୍ୟ ହୋଇ ନ ପାରେ; କିନ୍ତୁ ଆମେମାନେ ଜଗତକୁ ସେତିକ ମାତ୍ର ଜାଣୁ ଯେତିକ ପଞ୍ଚେନ୍ଦ୍ରିୟ ଦ୍ୱାରା ଅନୁଭୂତ ହୁଏ । ମନେକର, ଆମମାନଙ୍କର ଆଉ ଗୋଟିଏ ଇନ୍ଦ୍ରିୟ ହେଲ—ତାହାହେଲେ ସମୁଦାୟ ବ୍ରହ୍ମାଣ୍ଡ ଆମମାନଙ୍କର ଦୃଷ୍ଟିରେ ଅବଶ୍ୟ ଆଉ ଗୋଟିଏ ରୂପ ଧାରଣ କରିବ । ମନେକର, ଆମମାନଙ୍କର ଗୋଟିଏ ଚୌମ୍ବିକ ଇନ୍ଦ୍ରିୟ ହେଲ, ସେତେବେଳେ ଚୌମ୍ବିକ ଉପଲବ୍ଧି ହେବ । ହୁଏତ ଜଗତରେ ଏପରି ଲକ୍ଷ ଲକ୍ଷ ଶକ୍ତି ଅଛି, ଯାହାକୁ ଉପଲବ୍ଧି କରିବା ପାଇଁ ଆମମାନଙ୍କର କୌଣସି ଇନ୍ଦ୍ରିୟ ନାହିଁ । ଆମମାନଙ୍କର ଇନ୍ଦ୍ରିୟଗୁଡ଼ିକ ସୀମାବଦ୍ଧ—ବାସ୍ତବିକ ଅତି ସୀମାବଦ୍ଧ—ଆଉ ସେହି ସୀମା ମଧ୍ୟରେ ସମୁଦାୟ ଜଗତ୍ ଅବସ୍ଥିତ ଏବଂ ଆମମାନଙ୍କର ଈଶ୍ୱର ଆମମାନଙ୍କର ଏହି କ୍ଷୁଦ୍ର ଜଗତ୍‌ସମସ୍ୟାର ମୀମାଂସା ମାତ୍ର; କିନ୍ତୁ ତାହା କଦାପି ସମୁଦାୟ ସମସ୍ୟାର ମୀମାଂସା ହୋଇପାରେ ନାହିଁ । କିନ୍ତୁ ମନୁଷ୍ୟ ତ ଚୁପ୍ ହୋଇ ରହି ପାରିବ ନାହିଁ । ମନୁଷ୍ୟ ଚିନ୍ତାଶୀଳ ପ୍ରାଣୀ—ସେ ଏପରି ଗୋଟିଏ ମୀମାଂସା କରିବାକୁ ଚାହେଁ, ଯଦ୍ୱାରା ଜଗତର ସକଳ ସମସ୍ୟାର ମୀମାଂସା ହୋଇଯିବ ।

ପ୍ରଥମେ ଏପରି ଗୋଟିଏ ଜଗତ ଆବିଷ୍କାର କର, ଏପରି ଗୋଟିଏ ପଦାର୍ଥ ଆବିଷ୍କାର କର, ଯାହା ସକଳ ଜଗତର ଏକ ସାଧାରଣ ତତ୍ତ୍ୱସ୍ୱରୂପ—ଯାହା ଆମେମାନେ ଇନ୍ଦ୍ରିୟଗୋଚର କରିପାରୁ ବା ନ ପାରୁ; କିନ୍ତୁ ଯାହାକୁ ଯୁକ୍ତିବଳରେ ସକଳ ଜଗତର ଭିତ୍ତିଭୂମି, ସକଳ ଜଗତ ଭିତରେ ମଣିଗଣମଧ୍ୟସ୍ଥ ସୂତ୍ରସ୍ୱରୂପ ବୋଲି ବିବେଚନା କରାଯାଇପାରେ । ଯଦି ଆମେ ଏପରି ଗୋଟିଏ ପଦାର୍ଥ ଅବିଷ୍କାର କରିପାରିବା, ଯାହାକୁ ଇନ୍ଦ୍ରିୟଗୋଚର କରି ନ ପାରିଲେ ମଧ୍ୟ କେବଳ ଅକାଟ୍ୟ ଯୁକ୍ତି ବଳରେ ଊର୍ଦ୍ଧ୍ୱ ଅଧଃ ସର୍ବପ୍ରକାର ସ୍ତରର ସାଧାରଣ ଭୂମି, ସର୍ବପ୍ରକାର ଅସ୍ତିତ୍ୱର ଭିତ୍ତିଭୂମି ବୋଲି ସିଦ୍ଧାନ୍ତ କରିପାରିବା, ତାହାହେଲେ ଆମମାନଙ୍କର ସମସ୍ୟା କେତେକ ପରିମାଣରେ ମୀମାଂସୋନ୍ମୁଖ ହେଲ ବୋଲି କୁହାଯାଇପାରେ; ସୁତରାଂ ଆମମାନଙ୍କର ଦୃଷ୍ଟିଗୋଚର ଏହି ଜ୍ଞାତ ଜଗତରୁ ଏହି ମୀମାଂସା ପାଇବାର ସମ୍ଭାବନା ନାହିଁ, କାରଣ ଏହା ସମଗ୍ର ଭାବର କେବଳ ଆଂଶିକ ଅନୁଭୂତି ମାତ୍ର ।

ଅତଏବ ଏହି ସମସ୍ୟା ସମାଧାନର ଏକମାତ୍ର ଉପାୟ ଭିତରକୁ ପ୍ରବେଶ କରିବା । ଅତି ପ୍ରାଚୀନ ମନନଶୀଳ ମହାଜନମାନେ ବୁଝିପାରିଥିଲେ—କେନ୍ଦ୍ରଠାରୁ ସେମାନେ ଯେତେ ଦୂରକୁ ଯାଉଛନ୍ତି, ବିଭେଦ ସେତିକି ବଢୁଛି ଏବଂ କେନ୍ଦ୍ରର ଯେତେ ନିକଟବର୍ତ୍ତୀ ହେଉଛନ୍ତି, ଏକତ୍ୱ ସେତିକ ଅଧିକ ହେଉଛି । ଆମେ କେନ୍ଦ୍ରର

ଯେତେ ନିକଟବର୍ତ୍ତୀ ହେଉଁ, ସେତିକି ଗୋଟିଏ ସାଧାରଣ ଭୂମିରେ ଆମେ ସମସ୍ତେ ଏକତ୍ର ହୋଇପାରୁଁ, ଏବଂ ଏହାଠାରୁ ଯେତିକି ଦୂରକୁ ଯାଉ, ଆମମାନଙ୍କ ସହିତ ଅନ୍ୟର ପାର୍ଥକ୍ୟ ସେତିକି ବଢ଼ିଯାଏ । ଏହି ବାହ୍ୟ ଜଗତ ସେହି କେନ୍ଦ୍ରଠାରୁ ଅନେକ ଦୂରରେ, ଅତଏବ ଏହା ମଧ୍ୟରେ ଏପରି କୌଣସି ସାଧାରଣ ଭୂମି ରହି-ପାରେ ନାହିଁ, ଯେଉଁଠାରେ ସମସ୍ତ ଅସ୍ତିତ୍ୱର ଗୋଟିଏ ସାଧାରଣ ମୀମାଂସା ହୋଇ ପାରେ । ଯେତେ କିଛି ଘଟଣା ଅଛି, ଏହି ଜଗତ ଖୁବ୍ ବେଶୀ, ତାର ଏକାଂଶ ମାତ୍ର । ଆହୁରି ଅନେକ ବିଷୟ ରହିଛି, ମନୋଜଗତର ବିଷୟ, ନୈତିକ ଜଗତର ବିଷୟ, ବୁଦ୍ଧିରାଜ୍ୟର ବିଷୟ—ଏହିଭଳି ଆହୁରି କେତେ କେତେ ବିଷୟ ରହିଛି । ଏହା ମଧ୍ୟରୁ କେବଳ ଗୋଟିକୁ ମାତ୍ର ନେଇ ସେଥିରୁ ସମୁଦାୟ ଜଗତ-ସମସ୍ୟାର ସମାଧାନ କରିବା ଅସମ୍ଭବ । ଅତଏବ ଆମମାନଙ୍କୁ ପ୍ରଥମତଃ କେଉଁଠି ଏପରି ଗୋଟିଏ କେନ୍ଦ୍ର ବାହାର କରିବାକୁ ହେବ, ଯେଉଁଠାରୁ ବିଭିନ୍ନ 'ଲୋକ' ଉତ୍ପନ୍ନ ହୋଇଛନ୍ତି । ସେହି କେନ୍ଦ୍ରରୁ ଆମେମାନେ ଏହି ପ୍ରଶ୍ନ ମୀମାଂସାର ଚେଷ୍ଟା କରିବା । ଏହା ହିଁ ବର୍ତ୍ତମାନ ପ୍ରସ୍ତାବିତ ବିଷୟ । ସେହି କେନ୍ଦ୍ର କେଉଁଠାରେ ? ତାହା ଆମମାନଙ୍କର ଭିତରେ—ଏହି ମନୁଷ୍ୟ ଭିତରେ ଯେଉଁ ଜୀବାତ୍ମା ରହିଛନ୍ତି, ସେ ହିଁ ଏହି କେନ୍ଦ୍ର । କ୍ରମାଗତ ଅନ୍ତରର ଅନ୍ତରକୁ ଯାଇ ମହାପୁରୁଷମାନେ ଦେଖିପାରି-ଥିଲେ, ଜୀବାତ୍ମାର ଗଭୀରତମ ପ୍ରଦେଶରେ ସମୁଦାୟ ବ୍ରହ୍ମାଣ୍ଡର କେନ୍ଦ୍ର । ଯେତେ ପ୍ରକାର ଅସ୍ତିତ୍ୱ ଅଛି, ସମସ୍ତେ ସେହି କେନ୍ଦ୍ର ଆଡ଼କୁ ଆକୃଷ୍ଟ ହେଉଛନ୍ତି । ଏହିଠାରେ ହିଁ ବାସ୍ତବିକ୍ ସବୁକିଛିର ଗୋଟିଏ ସାଧାରଣ ଭୂମି—ଏଠାରେ ଠିଆ ହେଲେ ଆମେମାନେ ଗୋଟିଏ ସାର୍ବଭୌମ ସିଦ୍ଧାନ୍ତରେ ଉପନୀତ ହୋଇପାରିବା । ଅତଏବ 'କିଏ ଜଗତ ସୃଷ୍ଟି କରିଛନ୍ତି ?' ଏହି ପ୍ରଶ୍ନଟି ବିଶେଷ ଦାର୍ଶନିକ-ଯୁକ୍ତିସିଦ୍ଧ ନୁହେଁ, ଏବଂ ଏହାର ମୀମାଂସା ମଧ୍ୟ ବିଶେଷ କିଛି କାର୍ଯ୍ୟର ନୁହେଁ ।

ପୂର୍ବ ଯେଉଁ କଠୋପନିଷଦ୍‌ର କଥା କୁହା ହୋଇଛି, ତାହାର ଭାଷା ଅତି ଅଳଙ୍କାରପୂର୍ଣ୍ଣ । ଅତି ପ୍ରାଚୀନ କାଳରେ ଜଣେ ଖୁବ୍ ଧନୀ ଲୋକ ଥିଲେ । ସେ ଏକଦା ଗୋଟିଏ ଯଜ୍ଞ କରିଥିଲେ । ସେହି ଯଜ୍ଞର ନିୟମ ଥିଲା ଯେ, ସର୍ବସ୍ୱ ଦାନ କରିବାକୁ ହେବ । ଏହି ବ୍ୟକ୍ତିଙ୍କର ଭିତର ବାହାର ସମାନ ନ ଥିଲା । ସେହି ଯଜ୍ଞ କରି ସେ ଖୁବ୍ ମାନ ଯଶ ପାଇବାକୁ ଇଚ୍ଛା କରୁଥିଲେ । ତେଣୁ ସେ ଏପରି ଜିନିଷ ସବୁ ଦାନ କରୁଥିଲେ, ଯାହାକି ତାଙ୍କ ବ୍ୟବହାରର ସମ୍ପୂର୍ଣ୍ଣ ଅନୁପଯୋଗୀ—ସେ ଜରାଜୀର୍ଣ୍ଣ, ଅର୍ଦ୍ଧମୃତ, ବନ୍ଧ୍ୟା, ଏକଚକ୍ଷୁବିଶିଷ୍ଟ, ଖଞ୍ଜ ଗାଈସକଳ ବ୍ରାହ୍ମଣ-ମାନଙ୍କୁ ଦାନ କରୁଥିଲେ । ନଚିକେତା ନାମରେ ତାଙ୍କର ଗୋଟିଏ ପୁଅ ଥିଲା । ପିଲାଟି ଦେଖିଲା, ତାଙ୍କର ବାପା ଠିକ ଭାବରେ ବ୍ରତ ପାଳନ କରୁ ନାହାନ୍ତି, ବରଂ ଏହା ଭଙ୍ଗ କରୁଛନ୍ତି । ଏହା ଦେଖି ସେ ମର୍ମେ ମର୍ମେ ପୀଡ଼ିତ ହେଲା । ଭାରତବର୍ଷରେ ବାପା-ମାଆ ପ୍ରତ୍ୟକ୍ଷ ଦେବତା ବୋଲି ବିବେଚିତ ହୋଇଥାଆନ୍ତି,

ସନ୍ତାନମାନେ ସେମାନଙ୍କ ସମ୍ମୁଖରେ କିଛି କହିବାକୁ ବା କିଛି କରିବାକୁ ସାହସ ପାଆନ୍ତି ନାହିଁ, କେବଳ ଚୁପ୍ ହୋଇ ଠିଆ ହୋଇଥାଆନ୍ତି । ଅତଏବ ବାଳକଟି ବାପାଙ୍କର ସମ୍ମୁଖୀନ ହୋଇ ଅତିଶୟ ଶ୍ରଦ୍ଧା ଓ ବିନୟର ସହିତ ଏତିକି ମାତ୍ର ପଚାରିଥିଲା, 'ପିତଃ, ଆପଣ ମୋତେ କାହାକୁ ଦାନ କରିବେ ? ଆପଣ ତ ଯଜ୍ଞରେ ସର୍ବସ୍ୱ ଦାନ କରିବାକୁ ସଂକଳ୍ପ କରିଛନ୍ତି !' ପିତା ଅତିଶୟ ବିରକ୍ତ ହୋଇ କହିଲେ, 'ଏ କି କଥା କହୁଛି ବାପା ! ପିତା ନିଜ ପୁତ୍ରକୁ ଦାନ କରିବେ, ଏ କିଭଳି କଥା ?'' ବାଳକଟି ଦ୍ୱିତୀୟ ଥର, ତୃତୀୟ ଥର ତାଙ୍କୁ ଏହି ପ୍ରଶ୍ନ କଲା; ସେତେବେଳେ ପିତା କ୍ରୁଦ୍ଧ ହୋଇ କହିଲେ 'ତୋତେ ଯମକୁ ଦେବି ।' ତା'ପରେ ଆଖ୍ୟାୟିକାଟି ଏହିପରି :

ବାଳକଟି ସତକୁ ସତ ଯମଙ୍କ ନିକଟକୁ ଗଲା । ମୃତ୍ୟୁମୁଖରେ ପତିତ ପ୍ରଥମ ମାନବ ଯମ ଦେବତା ହୁଅନ୍ତି—ସେ ସ୍ୱର୍ଗକୁ ଯାଇ ସମୁଦାୟ ପିତୃଗଣଙ୍କର ଶାସନକର୍ତ୍ତା ହୋଇଛନ୍ତି । ସାଧୁ ବ୍ୟକ୍ତିମାନଙ୍କର ମୃତ୍ୟୁ ହେଲେ ସେମାନେ ଯାଇ ଏହାଙ୍କ ନିକଟରେ ଅନେକ ଦିନ ଧରି ବାସ କରନ୍ତି । ଏହି ଯମ ଜଣେ ଅତି ଶୁଦ୍ଧସ୍ୱଭାବ ସାଧୁପୁରୁଷ ବୋଲି ବର୍ଣ୍ଣିତ । ବାଳକଟି ଯମଲୋକକୁ ଗଲା । ଦେବତାମାନେ ମଧ୍ୟ ସମୟେ ସମୟେ ଘରେ ରହନ୍ତି ନାହିଁ, ଅତଏବ ନଚିକେତାକୁ ତିନି ଦିନ ଯାଏ ସେଠାରେ ତାଙ୍କ ଅପେକ୍ଷାରେ ରହିବାକୁ ପଡ଼ିଲା । ଚତୁର୍ଥ ଦିନ ଯମ ଘରକୁ ଫେରିଲେ ।

ଯମ କହିଲେ, 'ହେ ବିଦ୍ୱନ୍ ! ତୁମେ ପୂଜାର ଯୋଗ୍ୟ ଅତିଥି ହୋଇ ତିନି ଦିନ ମୋ ଗୃହରେ ଅନାହାରରେ ରହିଛ । ହେ ବ୍ରାହ୍ମଣ, ତୁମକୁ ପ୍ରଣାମ, ମୋର କଲ୍ୟାଣ ହେଉ । ମୁଁ ଗୃହରେ ନ ଥିଲି ବୋଲି ଅତ୍ୟନ୍ତ ଦୁଃଖିତ; କିନ୍ତୁ ଏହି ଅପରାଧର ପ୍ରାୟଶ୍ଚିତ୍ତସ୍ୱରୂପ ମୁଁ ତୁମକୁ ପ୍ରତିଦିନ ସକାଶେ ଗୋଟିଏ ଗୋଟିଏ କରି ତିନୋଟି ବର ଦେବାକୁ ପ୍ରସ୍ତୁତ ଅଛି, ତୁମେ ବର ପ୍ରାର୍ଥନା କର ।' ବାଳକ ପ୍ରାର୍ଥନା କଲା, 'ମୋତେ ଏହି ପ୍ରଥମ ବର ଦିଅନ୍ତୁ ଯେ, ମୋ ପ୍ରତି ପିତାଙ୍କର କ୍ରୋଧ ଚାଲିଯାଉ, ସେ ମୋ ପ୍ରତି ପ୍ରସନ୍ନ ହୁଅନ୍ତୁ, ଏବଂ ଆପଣ ମୋତେ ଏ ସ୍ଥାନରୁ ବିଦାୟ ଦେଲେ ମୁଁ ଯେତେବେଳେ ତାଙ୍କ ନିକଟକୁ ଯିବି, ସେତେବେଳେ ସେ ଯେପରି ମୋତେ ଚିହ୍ନି ପାରିବେ ।' ଯମ 'ତଥାସ୍ତୁ' କହିଲେ ।

ନଚିକେତା ଦ୍ୱିତୀୟ ବରରେ ସ୍ୱର୍ଗପ୍ରାପକ ଯଜ୍ଞବିଶେଷର ବିଷୟ ଜାଣିବାକୁ ଚାହିଁଲେ । ଆମେମାନେ ପୂର୍ବରୁ ଦେଖିଛୁ, ବେଦର ସଂହିତାଭାଗରେ ଆମେମାନେ କେବଳ ସ୍ୱର୍ଗର କଥା ପାଉ—ସେଠାରେ ସମସ୍ତଙ୍କର ଜ୍ୟୋତିର୍ମୟ ଶରୀର, ସେଠାରେ ସେମାନେ ପିତୃପୁରୁଷଗଣଙ୍କ ସହିତ ବାସ କରନ୍ତି । କ୍ରମଶଃ ଅନ୍ୟାନ୍ୟ ଭାବ ଆସିଲା; କିନ୍ତୁ ଏସବୁଥିରେ ମନୁଷ୍ୟର ପ୍ରାଣରେ ସମ୍ପୂର୍ଣ୍ଣ ତୃପ୍ତି ଆସିଲା ନାହିଁ । ଏହି ସ୍ୱର୍ଗଠାରୁ ଉଚ୍ଚତର ଆଉ କିଛି ଆବଶ୍ୟକ । ସ୍ୱର୍ଗବାସ ଏହି ଜଗତରେ ବାସ

କରିବାଠାରୁ ବେଶୀ କିଛି ଭିନ୍ନ ନୁହେଁ । ଖୁବ୍ ବେଶୀ ହେଲେ ଜଣେ ଖୁବ୍ ସୁସ୍ଥକାୟ ଧର୍ମୀର ଜୀବନ ଯେଉଁ ଭଳି, ଏହା ସେହି ଭଳି—ସମ୍ଭୋଗର ଜିନିଷ ଅପର୍ଯ୍ୟାପ୍ତ ଏବଂ ନୀରୋଗ ସୁସ୍ଥ ବଳିଷ୍ଠ ଶରୀର । ତାହା ମଧ୍ୟ ଏହି ଜଡ଼ ଜଗତ ହେଲା କିମ୍ବା ଖୁବ୍ ବେଶୀ ହେଲେ ଏହା ଆଉ ଟିକିଏ ଉନ୍ନତ ହୋଇପାରେ । ଆମେମାନେ ଆଗରୁ ଦେଖିଛୁ, ଏହି ଜଡ଼ ଜଗତ ପୂର୍ବୋକ୍ତ ସମସ୍ୟାର କୌଣସି ମୀମାଂସା କରିପାରେ ନାହିଁ; ସୁତରାଂ ଏହି ସ୍ୱର୍ଗରୁ ବା ଏହାର କି ମୀମାଂସା ମିଳିବ ? ଅତଏବ ଯେତେ ସ୍ୱର୍ଗ ଉପରେ ସ୍ୱର୍ଗ କଳ୍ପନା କରନା କାହିଁକି, କୌଣସି ପ୍ରକାରେ ସମସ୍ୟାର ପ୍ରକୃତ ମୀମାଂସା ହୋଇପାରିବ ନାହିଁ । ଯଦି ଏହି ଜଗତ ଏହି ସମସ୍ୟାର କୌଣସି ମୀମାଂସା କରି ନ ପାରିଲା, ତେବେ ଏହିଭଳି ଅନ୍ୟ ଏକ ଜଗତ କିପରି ଭାବରେ ଏହାର ମୀମାଂସା କରିବ ? କାରଣ, ଆମମାନଙ୍କର ମନେ ରଖିବା ଉଚିତ—ଏହି ସ୍ଥୂଳ ପ୍ରପଞ୍ଚ ପ୍ରାକୃତିକ ସମୁଦାୟ ବିଷୟର ଅତି ସାମାନ୍ୟ ଅଂଶମାତ୍ର ।

ଆମମାନଙ୍କ ଜୀବନର ପ୍ରତ୍ୟେକ ମୁହୂର୍ତ୍ତକୁ ଧରି ଦେଖ, ଏଥିରେ କେତେଟା ଆମମାନଙ୍କ ଭିତରର ବିଷୟ ଏବଂ କେତେଟା ବା ବାହାରର ଘଟଣା ! କେତେଟା ତୁମେ କେବଳ ଅନୁଭବ କର, ଏବଂ କେତେଟା ବା ବାସ୍ତବିକ ଦର୍ଶନ ଓ ସ୍ପର୍ଶନ କର ! ଏହି ଜୀବନପ୍ରବାହ କି ପ୍ରବଳ ବେଗରେ ଚାଲିଛି—ଏହାର କାର୍ଯ୍ୟକ୍ଷେତ୍ର ମଧ୍ୟ କେତେ ବିସ୍ତୃତ; କିନ୍ତୁ ଏଥିରେ ମାନସିକ ଘଟନାବଳୀ ତୁଳନାରେ ଇନ୍ଦ୍ରିୟଗ୍ରାହ୍ୟ ବ୍ୟାପାରସମୂହ କେତେ ସାମାନ୍ୟ ! ସ୍ୱର୍ଗବାଦର ଏହି ଭ୍ରମ ଯେ, ଏହା କହେ, ଆମମାନଙ୍କର ଜୀବନ ଓ ଜୀବନର ଘଟନାବଳୀ କେବଳ ରୂପ-ରସ-ଗନ୍ଧ-ସ୍ପର୍ଶ-ଶବ୍ଦ ମଧ୍ୟରେ ଆବଦ୍ଧ । କିନ୍ତୁ ଏହି ସ୍ୱର୍ଗରେ, ଯେଉଁଠାରେ ଆମେମାନେ ଜ୍ୟୋତିର୍ମୟ ଦେହ ଧରି ରହିବା, ସେଠାରେ ଅଧିକାଂଶ ଲୋକଙ୍କର ତୃପ୍ତି ହେଲା ନାହିଁ । ତଥାପି ଏଠାରେ କରିବେକେତା 'ସ୍ୱର୍ଗପ୍ରାପକ ଯଜ୍ଞସମ୍ବନ୍ଧୀୟ ଜ୍ଞାନ' ଦ୍ୱିତୀୟ ବରରେ ପ୍ରାର୍ଥନା କରୁଛି । ବେଦର ପ୍ରାଚୀନ ଭାଗରେ ଅଛି, ଦେବତାମାନେ ଯଜ୍ଞଦ୍ୱାରା ସନ୍ତୁଷ୍ଟ ହୋଇ ଲୋକମାନଙ୍କୁ ସ୍ୱର୍ଗକୁ ନେଇଯାଆନ୍ତି । ସକଳ ଧର୍ମ ଆଲୋଚନା କଲେ ନିଃସଂଶୟରେ ଏହି ସିଦ୍ଧାନ୍ତ ଲବ୍ଧ ହୁଏ ଯେ, ଯାହା କିଛି ପ୍ରାଚୀନ, ତାହା ହିଁ କାଳକ୍ରମେ ପବିତ୍ରତାମଣ୍ଡିତ ହୋଇଥାଏ । ଆମମାନଙ୍କର ପିତୃପୁରୁଷମାନେ ଭୂର୍ଜ୍ଜତ୍ୱକ୍‌ରେ ଲେଖୁଥିଲେ, ଅବଶେଷରେ ସେମାନେ କାଗଜ ତିଆରି କରିବାର ପ୍ରଣାଳୀ ଶିଖିଲେ; କିନ୍ତୁ ଆଜି ମଧ୍ୟ ଭୂର୍ଜ୍ଜତ୍ୱକ୍ ପବିତ୍ର ବୋଲି ବିବେଚିତ ହୋଇଥାଏ । ପ୍ରାୟ ନଅ ଦଶ ସହସ୍ର ବର୍ଷ ପୂର୍ବେ ଆମମାନଙ୍କର ପୂର୍ବ-ପୁରୁଷମାନେ କାଠରେ କାଠ ଘଷି ଅଗ୍ନି ଉତ୍ପାଦନ କରୁଥିଲେ; ସେହି ପ୍ରଣାଳୀ ଆଜି ମଧ୍ୟ ବିଦ୍ୟମାନ । ଯଜ୍ଞ ସମୟରେ ଅନ୍ୟ କୌଣସି ପ୍ରଣାଳୀରେ ଅଗ୍ନି ଉତ୍ପାଦନ କଲେ ଚାଲିବ ନାହିଁ । ଏସିଆବାସୀ ଆର୍ଯ୍ୟମାନଙ୍କର ଅନ୍ୟ ଏକ ଶାଖା ସମ୍ବନ୍ଧରେ ମଧ୍ୟ ତଦ୍ରୂପ । ବର୍ତ୍ତମାନ ସୁଦ୍ଧା ସେମାନଙ୍କର ବଂଶଧରମାନେ ବୈଦ୍ୟୁତାଗ୍ନି ଧରି

ରଖିବାକୁ ଭଲ ପାଆନ୍ତି । ଏଥିରୁ ପ୍ରମାଣିତ ହେଉଛି ଯେ, ସେମାନେ ପୂର୍ବେ ଏହି ଭାବରେ ଅଗ୍ନି ସଂଗ୍ରହ କରୁଥିଲେ, କ୍ରମେ ସେମାନେ ଦୁଇ ଖଣ୍ଡ କାଠକୁ ଘଷି ଅଗ୍ନି ଉତ୍ପାଦନ କରିବାକୁ ଶିଖିଲେ; ପରେ ଯେତେବେଳେ ଅନ୍ୟ ଉପାୟ ଶିଖିଲେ, ସେତେବେଳେ ମଧ୍ୟ ଏହି ଉପାୟଗୁଡ଼ିକୁ ସେମାନେ ଛାଡ଼ି ନ ଥିଲେ । ସେଗୁଡ଼ିକ ପବିତ୍ର ଆଚାରରେ ପରିଣତ ହେଲା ।

ହିବ୍ରୁମାନଙ୍କ ସମ୍ବନ୍ଧରେ ମଧ୍ୟ ଏହିଭଳି । ସେମାନେ ପୂର୍ବେ ପାର୍ଚମେଣ୍ଟରେ ଲେଖୁଥିଲେ । ବର୍ତ୍ତମାନ ସେମାନେ କାଗଜରେ ଲେଖିଥାଆନ୍ତି, କିନ୍ତୁ ପାର୍ଚ-ମେଣ୍ଟରେ ଲେଖା ସେମାନଙ୍କର ଅଖିରେ ମହାପବିତ୍ର ଆଚାର । ସକଳ ଜାତି ସମ୍ବନ୍ଧରେ ଏହିପରି । ବର୍ତ୍ତମାନ ଯେଉଁ ଆଚାରକୁ ଶୁଦ୍ଧାଚାର ବୋଲି ବିବେଚନା କରୁଛ, ତାହା ପ୍ରାଚୀନ ପ୍ରଥା ମାତ୍ର । ଏହି ଯଜ୍ଞଗୁଡ଼ିକ ସେହିପରି ପ୍ରାଚୀନ ପ୍ରଥା ମାତ୍ର ଥିଲା । କାଳକ୍ରମେ ମନୁଷ୍ୟ ଯେତେବେଳେ ପୂର୍ବାପେକ୍ଷା ଉତ୍ତମ ପ୍ରଣାଳୀରେ ଜୀବନଯାତ୍ରା ନିର୍ବାହ କରିବାକୁ ଲଗିଲା, ସେତେବେଳେ ଲୋକମାନଙ୍କର ଧାରଣା ସବୁ ପୂର୍ବାପେକ୍ଷା ଉନ୍ନତ ହେଲା; କିନ୍ତୁ ଏହି ପ୍ରାଚୀନ ପ୍ରଥାଗୁଡ଼ିକ ରହିଗଲା । ସମସ୍ତ ସମୟରେ ଏହିଗୁଡ଼ିକର ଅନୁଷ୍ଠାନ ହେଉଥିଲା ଏବଂ ଏହା ପବିତ୍ର ବୋଲି ପରିଗଣିତ ହେଉଥିଲା । ତାହାପରେ ଗୋଟିଏ ଦଳ ଲୋକ ଏହି ଯଜ୍ଞକାର୍ଯ୍ୟ-ନିର୍ବାହର ଭାର ନେଲେ, ସେହିମାନେ ହିଁ ପୁରୋହିତ । ସେମାନେ ଯଜ୍ଞ ସମ୍ବନ୍ଧରେ ଗଭୀର ଗବେଷଣା କରିବାକୁ ଲଗିଲେ—ଯଜ୍ଞ ସେମାନଙ୍କର ସର୍ବସ୍ୱ ହୋଇପଡ଼ିଲା । ସେମାନଙ୍କର ଏହି ଧାରଣା ବଦ୍ଧମୂଳ ହେଲା ଯେ—ଦେବତାମାନେ ଯଜ୍ଞର ଗନ୍ଧ ଆଘ୍ରାଣ କରିବାକୁ ଆସନ୍ତି—ଯଜ୍ଞର ଶକ୍ତିରେ ଜଗତରେ ସବୁକିଛି ହୋଇପାରେ । ଯଦି ନିର୍ଦ୍ଦିଷ୍ଟସଂଖ୍ୟକ ଆହୁତି ଦିଆଯାଏ, କେତେଗୁଡ଼ିଏ ବିଶେଷ ସ୍ତୋତ୍ର ଗୀତ ହୁଏ, ବିଶେଷାକୃତିବିଶିଷ୍ଟ କେତେଗୁଡ଼ିଏ ବେଦୀ ପ୍ରସ୍ତୁତ ହୁଏ, ତେବେ ଦେବତାମାନେ ସବୁ କରିପାରନ୍ତି—ଏହି ପ୍ରକାର ଏକ ମତବାଦର ସୃଷ୍ଟି ହେଲା । ନଚିକେତା ଏଥି-ପାଇଁ ଦ୍ୱିତୀୟ ବର ମାଗିଥିଲା, 'କିଭଳି ଯଜ୍ଞ କଲେ ସ୍ୱର୍ଗପ୍ରାପ୍ତି ହୋଇପାରିବ ।'

ତାହାପରେ ନଚିକେତା ତୃତୀୟ ବର ପ୍ରାର୍ଥନା କଲା ଏବଂ ଏହିଠାରୁ ହେଉଛି ପ୍ରକୃତ ଉପନିଷଦ୍‌ର ଆରମ୍ଭ । ନଚିକେତା କହିଲା, 'କେହି କେହି କହନ୍ତି, ମୃତ୍ୟୁ ପରେ ଆତ୍ମା ରହେ; କେହି କେହି କହନ୍ତି, ରହେ ନାହିଁ; ଆପଣ ମୋତେ ଏହି ବିଷୟର ଯଥାର୍ଥ ତତ୍ତ୍ୱ ବୁଝାଇଦିଅନ୍ତୁ ।'

ଯମ ଡରିଗଲେ । ସେ ପରମ ଆନନ୍ଦ ସହକାରେ ନଚିକେତାର ପ୍ରଥମୋକ୍ତ ବର ଦୁଇଟି ପୂର୍ଣ୍ଣ କରିଥିଲେ । ଏବେ ସେ କହିଲେ, 'ପ୍ରାଚୀନ କାଳରେ ଦେବତା-ମାନଙ୍କର ମଧ୍ୟ ଏ ବିଷୟରେ ସଂଶୟ ଥିଲା । ଏହି ସୂକ୍ଷ୍ମ ଧର୍ମ ସୁବିଜ୍ଞେୟ ନୁହେଁ । ହେ ନଚିକେତଃ, ତୁମେ ଅନ୍ୟ କୌଣସି ବର ପ୍ରାର୍ଥନା କର—ମୋତେ ଏ ବିଷୟରେ ଆଉ ଅନୁରୋଧ କର ନାହିଁ—ମୋତେ ଛାଡ଼ିଦିଅ ।'

ନଚିକେତା ଦୃଢ଼ପ୍ରତିଜ୍ଞ ଥିଲେ; ସେ କହିଲେ, 'ହେ ଯମରାଜ ! ଦେବତା-ମାନେ ମଧ୍ୟ ଏ ବିଷୟରେ ସଂଶୟ ପ୍ରକାଶ କରିଥିଲେ ଏବଂ ଏହା ବୁଝାଇବା ସହଜ କଥା ନୁହେଁ, ଏହା ସତ୍ୟ; କିନ୍ତୁ ମୁଁ ଏ ବିଷୟରେ ତୁମପରି ବକ୍ତା ପାଇବି ନାହିଁ ଏବଂ ଏହି ବରତୁଲ୍ୟ ଅନ୍ୟ ବର ନାହିଁ ।'

ଯମ କହିଲେ, 'ଶତାୟୁ ପୁତ୍ର-ପୌତ୍ର, ବହୁ ପଶୁ, ହସ୍ତୀ, ସୁବର୍ଣ୍ଣ, ଅଶ୍ୱ ପ୍ରାର୍ଥନା କର । ଏହି ପୃଥିବୀ ଉପରେ ରାଜତ୍ୱ କର ଏବଂ ଯେତେ ଦିନ ତୁମେ ବଞ୍ଚି ରହିବାକୁ ଇଚ୍ଛା କର, ସେତେ ଦିନ ବଞ୍ଚି ରହ । ଅନ୍ୟ କୌଣସି ବର ଯଦି ଏହାର ସମାନ ମନେକର, ତେବେ ତାହା ମଧ୍ୟ ପ୍ରାର୍ଥନା କର—ଅର୍ଥ ଏବଂ ଦୀର୍ଘ ଜୀବନ ପ୍ରାର୍ଥନା କର । ହେ ନଚିକେତ ! ତୁମେ ବିସ୍ତୃତ ପୃଥିବୀମଣ୍ଡଳରେ ରାଜତ୍ୱ କର, ମୁଁ ତୁମକୁ ସବୁ ପ୍ରକାର କାମ୍ୟବସ୍ତୁର ଅଧିକାରୀ କରିବି । ପୃଥିବୀରେ ଯେଉଁ ସବୁ କାମ୍ୟ ବସ୍ତୁର ଲାଭ ଦୁର୍ଲ୍ଲଭ, ତାହା ପ୍ରାର୍ଥନା କର । ଏହି ରଥାଧିରୂଢ଼ା ଗୀତବାଦ୍ୟନିପୁଣା ରମଣୀମାନଙ୍କୁ ମନୁଷ୍ୟ ଲାଭ କରିପାରେ ନାହିଁ । ହେ ନଚିକେତ, ମୋର ପ୍ରଦତ୍ତ ଏହି ସମସ୍ତ କାମିନୀମାନେ ତୁମର ସେବା କରନ୍ତୁ; କିନ୍ତୁ ତୁମେ ମୃତ୍ୟୁ ସମ୍ବନ୍ଧରେ କିଛି ପଚାର ନାହିଁ ।'

ନଚିକେତା କହିଲେ, 'ଏ ସମସ୍ତ ବସ୍ତୁ କେବଳ ଦୁଇ ଦିନ ସକାଶେ—ଏମାନେ ଇନ୍ଦ୍ରିୟଗଣର ତେଜ ହରଣ କରନ୍ତି । ଅତି ଦୀର୍ଘ ଜୀବନ ମଧ୍ୟ ଅନନ୍ତ କାଳର ତୁଳନାରେ ବାସ୍ତବିକ ଅତି ଅଳ୍ପ । ତେଣୁ ଏହିସବୁ ଅଶ୍ୱ ହସ୍ତୀ ରଥ ଗୀତ ବାଦ୍ୟ ଆପଣଙ୍କର ହୋଇ ରହୁ । ମନୁଷ୍ୟ ଧନଦ୍ୱାରା ତୃପ୍ତ ହୋଇପାରେ ନାହିଁ । ଆପଣଙ୍କୁ ଯେତେବେଳେ ଦିନେ ଦେଖିବାକୁ ହେବ, ମୃତ୍ୟୁ ଯେତେବେଳେ ସୁନିଶ୍ଚିତ, ସେତେବେଳେ କିଏ ଏହି ଧନ ରକ୍ଷା କରିପାରିବ ? ଆପଣଙ୍କ ଯେତେ ଦିନ ଇଚ୍ଛା ସେତିକି ଦିନ ମାତ୍ର ଆମେ ବଞ୍ଚିରହିବୁ । ଅତଏବ ମୁଁ ଯେଉଁ ବର ପ୍ରାର୍ଥନା କରିଛି, କେବଳ ତାହା ହିଁ ମୋର ବରଣୀୟ ।'

ଯମ ବାଳକର ସଂକଳ୍ପରେ ସନ୍ତୁଷ୍ଟ ହେଲେ । ସେ କହିଲେ, 'ପରମ-କଲ୍ୟାଣ (ଶ୍ରେୟଃ) ଓ ଆପାତରମ୍ୟ ଭୋଗ (ପ୍ରେୟଃ)—ଏହି ଦୁଇଟିର ଉଦ୍ଦେଶ୍ୟ ଭିନ୍ନ; କିନ୍ତୁ ଏମାନେ ଉଭୟେ ମନୁଷ୍ୟକୁ ବଦ୍ଧ କରନ୍ତି । ଯେ ଏହି ଦୁଇଟିରୁ 'ଶ୍ରେୟଃ'କୁ ଗ୍ରହଣକରନ୍ତି, ତାଙ୍କର କଲ୍ୟାଣ ହୁଏ; ଆଉ ଯେ ଆପାତରମ୍ୟ 'ପ୍ରେୟଃ' ଗ୍ରହଣ କରନ୍ତି, ସେ ଲକ୍ଷ୍ୟଭ୍ରଷ୍ଟ ହୁଅନ୍ତି । ଏହି ଶ୍ରେୟଃ ଓ ପ୍ରେୟଃ—ଉଭୟେ ମନୁଷ୍ୟ-ମାନଙ୍କ ନିକଟରେ ଉପସ୍ଥିତ ହୁଅନ୍ତି । ଜ୍ଞାନୀ ବ୍ୟକ୍ତି ଉଭୟଙ୍କୁ ବିଚାର କରି ଗୋଟିକୁ ଅନ୍ୟ ଗୋଟିକଠାରୁ ପୃଥକ୍ ବୋଲି ଜାଣନ୍ତି । ସେ ଶ୍ରେୟଃକୁ ପ୍ରେୟଃଠାରୁ ଭଲ ବୋଲି ଗ୍ରହଣ କରନ୍ତି; କିନ୍ତୁ ଅଜ୍ଞାନ ବ୍ୟକ୍ତି ନିଜ ଦେହର ସୁଖ ସକାଶେ ପ୍ରେୟଃକୁ ଗ୍ରହଣ କରନ୍ତି । ହେ ନଚିକେତ, ତୁମେ ଆପାତରମ୍ୟ ବିଷୟସକଳର ନଶ୍ୱରତା ଚିନ୍ତା କରି ଏମାନଙ୍କୁ ପରିତ୍ୟାଗ କରିଛ ।' ଏହା ପରେ ଯମ ନଚିକେତାଙ୍କୁ ପରମ

ତତ୍ତ୍ୱ ବିଷୟରେ ଶିକ୍ଷା ଦେବାକୁ ଆରମ୍ଭ କଲେ ।

ବର୍ତ୍ତମାନ ଆମେମାନେ ବୈଦିକ ବୈରାଗ୍ୟ ଓ ଜ୍ଞାନର ଏହି ଉନ୍ନତ ଧାରଣା ପ୍ରାପ୍ତ ହେଲୁ ଯେ, ଯେପର୍ଯ୍ୟନ୍ତ ମନୁଷ୍ୟ ଭୋଗ-ବାସନାକୁ ଜୟ ନ କରୁଛି, ସେ-ପର୍ଯ୍ୟନ୍ତ ତାହାର ହୃଦୟରେ ସତ୍ୟ-ଜ୍ୟୋତିର ପ୍ରକାଶ ହେବ ନାହିଁ । ଯେପର୍ଯ୍ୟନ୍ତ ଏହିସବୁ ବୃଥା ବିଷୟବାସନା ,ଭୂମିଳ କୋଳାହଳ କରୁଛନ୍ତି, ଯେପର୍ଯ୍ୟନ୍ତ ଏମାନେ ପ୍ରତି ମୁହୂର୍ତ୍ତରେ ଆମମାନଙ୍କୁ ଯେପରି ବାହାରକୁ ଟାଣି ନେଇ ଯାଉଛନ୍ତି ଏବଂ ଆମମାନଙ୍କୁ ବାହାରର ପ୍ରତ୍ୟେକ ବସ୍ତୁର—ଗୋଟିଏ ବିନ୍ଦୁ ରୂପର, ଗୋଟିଏ ବିନ୍ଦୁ ଆସ୍ୱାଦର, ଗୋଟିଏ ବିନ୍ଦୁ ସ୍ପର୍ଶର ଦାସ କରୁଛନ୍ତି, ସେତେ ଦିନ ଆମେମାନେ ଯେତେ ଜ୍ଞାନର ଗରିମା କରୁନା କାହିଁକି, ସତ୍ୟ କିପରି ଆମମାନଙ୍କର ହୃଦୟରେ ପ୍ରକାଶିତ ହେବ ?

ଯମ କହୁଛନ୍ତି, 'ଯେଉଁ ଆତ୍ମା ସମ୍ବନ୍ଧରେ, ଯେଉଁ ପରଲୋକତତ୍ତ୍ୱ ସମ୍ବନ୍ଧରେ ତୁମେ ପ୍ରଶ୍ନ କରିଛ, ତାହା ଧନମୋହରେ ମୂଢ଼ ବାଳକମାନଙ୍କର ହୃଦୟରେ ପ୍ରତିଭାତ ହୁଏ ନାହିଁ । ଏହି ଜଗତର ହିଁ ଅସ୍ତିତ୍ୱ ଅଛି, ପରଲୋକର ଅସ୍ତିତ୍ୱ ନାହିଁ, ଏହିଭଳି ଚିନ୍ତା କରି ସେମାନେ ପୁନଃ ପୁନଃ ମୋ ବଶକୁ ଆସନ୍ତି ।'

ଆହୁରି ମଧ୍ୟ ଏହି ସତ୍ୟକୁ ବୁଝିବା ଅତି କଠିନ । ଅନେକେ କ୍ରମାଗତ ଏହି ବିଷୟ ଶୁଣି ମଧ୍ୟ ବୁଝିପାରନ୍ତି ନାହିଁ; ବକ୍ତା ଏବିଷୟରେ ଆଶ୍ଚର୍ଯ୍ୟ ହୁଅନ୍ତି, ଶ୍ରୋତା ମଧ୍ୟ ଆଶ୍ଚର୍ଯ୍ୟ ହୁଅନ୍ତି । ଗୁରୁ ଅଦ୍ଭୁତ ଶକ୍ତିସମ୍ପନ୍ନ ହେବା ଆବଶ୍ୟକ; ଶିଷ୍ୟର ମଧ୍ୟ ସେହିଭଳି ହେବା ଦରକାର । ମନକୁ ବୃଥା ତର୍କଦ୍ୱାରା ଚଞ୍ଚଳ କରିବା ଉଚିତ ନୁହେଁ । କାରଣ, ପରମାର୍ଥତତ୍ତ୍ୱ ତର୍କର ବିଷୟ ନୁହେଁ, ପ୍ରତ୍ୟକ୍ଷର ବିଷୟ । ଆମେମାନେ ବରାବର ଶୁଣି ଆସିଛୁ ଯେ, ପ୍ରତ୍ୟେକ ଧର୍ମ ବିଶ୍ୱାସ ଉପରେ ଖୁବ୍ ଜୋର୍ ଦିଏ । ଆମେମାନେ ଅନ୍ଧବିଶ୍ୱାସ କରିବାକୁ ଶିକ୍ଷା ପାଇଛୁଁ । ଅବଶ୍ୟ ଏହି ଅନ୍ଧବିଶ୍ୱାସ ଯେ ଖରାପ ଜିନିଷ, ସେଥିରେ କୌଣସି ସନ୍ଦେହ ନାହିଁ; କିନ୍ତୁ ଏହି ଅନ୍ଧବିଶ୍ୱାସ ବିଷୟଟିକୁ ଟିକିଏ ତଳେଇ ଦେଖିଲେ ବୁଝିବା, ଏହାର ପଶ୍ଚାତ୍ତରେ ଗୋଟିଏ ମହାନ୍ ସତ୍ୟ ରହିଛି । ଯେଉଁମାନେ ଅନ୍ଧବିଶ୍ୱାସର କଥା କହନ୍ତି, ସେମାନଙ୍କର ବାସ୍ତବିକ ଉଦ୍ଦେଶ୍ୟ ଏହି 'ଅପରୋକ୍ଷାନୁଭୂତି'—ଆମେମାନେ ବର୍ତ୍ତମାନ ଯାହାର ଆଲୋଚନା କରୁଛୁଁ । ମନକୁ ବୃଥା ତର୍କଦ୍ୱାରା ଚଞ୍ଚଳ କଲେ ଚଳିବ ନାହିଁ, କାରଣ ତର୍କଦ୍ୱାରା କଦାପି ଈଶ୍ୱରଲାଭ ହୁଏ ନାହିଁ । ଈଶ୍ୱର ପ୍ରତ୍ୟକ୍ଷର ବିଷୟ, ତର୍କର ବିଷୟ ନୁହନ୍ତି । ସମୁଦାୟ ତର୍କ କେତେଗୁଡ଼ିଏ ଅନୁଭୂତି ଉପରେ ସ୍ଥାପିତ । ଏହା ବ୍ୟତୀତ ତର୍କ ହୋଇପାରେ ନାହିଁ । ଆମେମାନେ ପୂର୍ବରୁ ଯାହା ସୁନିଶ୍ଚିତ ଭାବରେ ପ୍ରତ୍ୟକ୍ଷ କରିଛୁଁ, ଏପରି କେତେଗୁଡ଼ିଏ ବିଷୟ ମଧ୍ୟରେ ତୁଳନାର ପ୍ରଣାଳୀକୁ 'ଯୁକ୍ତି' କୁହାଯାଏ । ଏହି ସୁନିଶ୍ଚିତ ପ୍ରତ୍ୟକ୍ଷ-ବିଷୟଗୁଡ଼ିକ ନ ଥିଲେ ଯୁକ୍ତି ହୋଇପାରିବ ନାହିଁ । ବାହ୍ୟଜଗତ ସମ୍ବନ୍ଧରେ ଯଦି ଏହା ସତ୍ୟ ହୁଏ, ତେବେ

ଆନ୍ତର୍ଜଗତ ସମ୍ବନ୍ଧରେ ନ ହେବ ବା କାହିଁକି ?

ଆମେମାନେ ପୁନଃପୁନଃ ଏହି ମହାଭ୍ରମରେ ପଡ଼ି ସ୍ୱୀକାର କରିଥାଉଁ ଯେ, ବହିର୍ବିଷୟର ଜ୍ଞାନ ପ୍ରତ୍ୟକ୍ଷ ଉପରେ ନିର୍ଭର କରେ । ବହିର୍ବିଷୟକୁ କେହି ବିଶ୍ୱାସ କରିନେବାକୁ କହେ ନାହିଁ ବା ବିଷୟ ଓ ଇନ୍ଦ୍ରିୟ ମଧ୍ୟରେ ସମ୍ବନ୍ଧବିଷୟକ ନିୟମାବଳୀ କୌଣସି ଯୁକ୍ତି ଉପରେ ନିର୍ଭର କରେ ନାହିଁ; ପ୍ରତ୍ୟକ୍ଷାନୁଭୂତିଦ୍ୱାରା ସେଗୁଡ଼ିକ ଲବ୍ଧ ହୁଅନ୍ତି । ପୁଣି ସମୁଦାୟ ତର୍କ ହିଁ କେତେଗୁଡ଼ିଏ ପ୍ରତ୍ୟକ୍ଷାନୁଭୂତି ଉପରେ ସ୍ଥାପିତ । ରସାୟନବିତ୍ କେତେଗୁଡ଼ିଏ ଦ୍ରବ୍ୟ ନେଲେ—ତାହା ମଧ୍ୟରୁ ଆଉ କେତେଗୁଡ଼ିଏ ଦ୍ରବ୍ୟ ଉତ୍ପନ୍ନ ହେଲା । ଏହା ଗୋଟିଏ ଘଟଣା । ଆମେମାନେ ଏହା ସ୍ପଷ୍ଟ ଦେଖୁଁ, ପ୍ରତ୍ୟକ୍ଷ କରୁଁ ଏବଂ ଏହାକୁ ଭିତ୍ତି କରି ରସାୟନର ସମୁଦାୟ ବିଚାର କରିଥାଉଁ । ପଦାର୍ଥବେତ୍ତାଗଣ ମଧ୍ୟ ତାହା ହିଁ କରିଥାଆନ୍ତି—ସମସ୍ତ ବିଜ୍ଞାନ ସମ୍ବନ୍ଧରେ ମଧ୍ୟ ଏହିଭଳି । ସର୍ବପ୍ରକାର ଜ୍ଞାନ ହିଁ କେତେଗୁଡ଼ିଏ ବିଷୟର ଅନୁଭୂତି ଉପରେ ସ୍ଥାପିତ । ତାହା ଉପରେ ନିର୍ଭର କରି ଆମେମାନେ ବିଚାରଯୁକ୍ତି କରିଥାଉଁ; କିନ୍ତୁ ଆଶ୍ଚର୍ଯ୍ୟର ବିଷୟ, ଅଧିକାଂଶ ଲୋକ—ବିଶେଷତଃ ବର୍ତ୍ତମାନ କାଳରେ—ଭାବନ୍ତି, ଧର୍ମରେ ପ୍ରତ୍ୟକ୍ଷ କରିବାର କିଛି ନାହିଁ; ଯଦି ଧର୍ମଲାଭ କରିବାକୁ ହୁଏ, ତେବେ ତାହା ବାହାରର ବୃଥା ତର୍କଦ୍ୱାରା ଲାଭ କରିବାକୁ ହେବ । କିନ୍ତୁ ବାସ୍ତବିକ ଧର୍ମ ଯୁକ୍ତିବିଚାରର ବିଷୟ ନୁହେଁ—ପ୍ରତ୍ୟକ୍ଷର ବିଷୟ । ଆମମାନଙ୍କୁ ଆମର ଆତ୍ମା ଭିତରେ ଅନ୍ୱେଷଣ କରି ଦେଖିବାକୁ ହେବ, ସେଠାରେ କଅଣ ଅଛି । ଆମମାନଙ୍କୁ ତାହା ବୁଝିବାକୁ ହେବ, ଆଉ ଯାହା ବୁଝିବୁଁ, ତାହାକୁ ଉପଲବ୍ଧି କରିବାକୁ ହେବ । ଏହା ହିଁ ଧର୍ମ । ଯେତେ ଚିତ୍କାର କର ନା କାହିଁକି, ତଦ୍ୱାରା ଧର୍ମ ଲାଭ ହେବ ନାହିଁ । ଅତଏବ ଜଣେ ଈଶ୍ୱର ଅଛନ୍ତି କି ନାହାନ୍ତି, ତାହା ବୃଥା ତର୍କଦ୍ୱାରା ପ୍ରମାଣିତ ହେବାର ନୁହେଁ, କାରଣ, ଯୁକ୍ତି ଉଭୟ ଦିଗରେ ସମାନ—କିନ୍ତୁ ଯଦି କୌଣସି ଈଶ୍ୱର ଥାଆନ୍ତି, ତେବେ ସେ ଆମମାନଙ୍କର ଅନ୍ତରରେ ଅଛନ୍ତି । ତୁମେ କଅଣ ତାଙ୍କୁ କେବେ ଦେଖିଛ ? ଏହା ହିଁ ପ୍ରଶ୍ନ । ଯେପରି ଜଗତର ଅସ୍ତିତ୍ୱ ଅଛି କି ନାହିଁ —ଏହି ପ୍ରଶ୍ନ ବର୍ତ୍ତମାନ ସୁଦ୍ଧା ମୀମାଂସିତ ହୋଇ ନାହିଁ; ପ୍ରତ୍ୟକ୍ଷବାଦୀ ଓ ବିଜ୍ଞାନବାଦୀମାନଙ୍କର ତର୍କ ଅନନ୍ତକାଳ ଧରି ଚାଲିଛି । ଏହିଭଳି ଭାବରେ ତର୍କ ଚାଲିଛି ସତ୍ୟ, କିନ୍ତୁ ଆମେମାନେ ଜାଣୁ—ଜଗତ୍ ରହିଛି ଓ ଚାଲୁଛି । ଆମେମାନେ କେବଳ ଗୋଟିଏ ଶବ୍ଦର ଭିନ୍ନ ଭିନ୍ନ ଅର୍ଥ କରି ଏହି ତର୍କ କରିଥାଉ । ଆମମାନଙ୍କର ଜୀବନର ଅନ୍ୟାନ୍ୟ ସକଳ ପ୍ରଶ୍ନ ସମ୍ବନ୍ଧରେ ମଧ୍ୟ ସେହି ଏକା କଥା—ଆମମାନଙ୍କୁ ପ୍ରତ୍ୟକ୍ଷ ଜ୍ଞାନ ଲାଭ କରିବାକୁ ହେବ । ଯେପରି ବହିର୍ବିଜ୍ଞାନରେ, ସେହିପରି ପରମାର୍ଥ-ବିଜ୍ଞାନରେ ମଧ୍ୟ ଆମମାନଙ୍କୁ କେତେଗୁଡ଼ିଏ ସତ୍ୟ ଘଟଣା ପ୍ରତ୍ୟକ୍ଷ କରିବାକୁ ହେବ, ତାହା ଉପରେ ମତାମତ ସ୍ଥାପିତ ହେବ । ଅବଶ୍ୟ ଧର୍ମର ଯେକୌଣସି ମତକୁ ବିଶ୍ୱାସ କରିବାକୁ ହେବ—ଏପରି ଅଯୌକ୍ତିକ ଦାବୀ ଉପରେ

କୌଣସି ଆସ୍ଥା କରାଯାଇପାରେ ନାହିଁ, ଏହା ମନୁଷ୍ୟ ମନର ଅବନତିସାଧକ । ଯେଉଁ ବ୍ୟକ୍ତି ତୁମକୁ ସବୁ ବିଷୟ ବିଶ୍ୱାସ କରିବାକୁ କହେ, ସେ ନିଜକୁ ଅବନତ କରେ, ଆଉ ତୁମେ ଯଦି ତାହାର କଥାକୁ ବିଶ୍ୱାସ କର, ତୁମେ ମଧ୍ୟ ଅବନତ ହେବ । ଜଗତର ସାଧୁ ପୁରୁଷମାନଙ୍କର ଆମମାନଙ୍କୁ କେବଳ ଏତିକି କହିବାର ଅଧିକାର ଅଛି ଯେ, ସେମାନେ ନିଜ ନିଜର ମନକୁ ବିଶ୍ଳେଷଣ କରିଛନ୍ତି, କେତେଗୁଡ଼ିଏ ସତ୍ୟ ମଧ୍ୟ ପାଇଛନ୍ତି ଏବଂ ସେହି ଉପଲବ୍ଧ ସତ୍ୟର କଥା ହିଁ ସେମାନେ କହୁଛନ୍ତି । ସତ୍ୟ ଲାଭ କଲେ ଆମେମାନେ ସେସବୁ କଥା ବିଶ୍ୱାସ କରିବୁ, ତାହା ପୂର୍ବରୁ ନୁହେଁ । ଏହା ହିଁ ଧର୍ମର ମୂଳ ଭିତ୍ତି । କିନ୍ତୁ ବାସ୍ତବିକ ଦେଖିବ, ଯେଉଁମାନେ ଧର୍ମ ବିରୋଧରେ ତର୍କ କରନ୍ତି, ସେମାନଙ୍କ ମଧ୍ୟରୁ ଶତକଡ଼ା ଅନେଶତ ଜଣ ସେମାନଙ୍କ ମନକୁ ବିଶ୍ଳେଷଣ କରି ଦେଖି ନାହାନ୍ତି, ସେମାନେ ସତ୍ୟ ଲାଭ କରିବାର ଚେଷ୍ଟା ମଧ୍ୟ କରି ନାହାନ୍ତି । ଅତଏବ ଧର୍ମ ବିରୋଧରେ ସେମାନଙ୍କର ଯୁକ୍ତିର କୌଣସି ମୂଲ୍ୟ ନାହିଁ । ଯଦି କୌଣସି ଅନ୍ଧ ଲୋକ ଠିଆ ହୋଇ କହେ, 'ତୁମେମାନେ ଯେଉଁମାନେ ସୂର୍ଯ୍ୟର ଅସ୍ତିତ୍ୱରେ ବିଶ୍ୱାସୀ, ସମସ୍ତେ ଭ୍ରାନ୍ତ'—ତାହାର କଥାର ଯେତିକି ମୂଲ୍ୟ, ଏମାନଙ୍କ କଥାର ମଧ୍ୟ ସେତିକି ମୂଲ୍ୟ । ଅତଏବ ଯେଉଁମାନେ ନିଜର ମନକୁ ବିଶ୍ଳେଷଣ କରି ନାହାନ୍ତି, ଅଥଚ ଧର୍ମକୁ ଏକାବେଳକେ ଉଡ଼ାଇ ଦେବାକୁ, ଲୋପ କରିବାକୁ ଅଗ୍ରସର, ସେମାନଙ୍କର କଥାରେ ଆମମାନଙ୍କର କିଛିମାତ୍ର ଆସ୍ଥା ସ୍ଥାପନ କରିବାର ଆବଶ୍ୟକତା ନାହିଁ ।

ଏହି ବିଷୟଟିକୁ ଭଲଭାବରେ ବୁଝିବା ଉଚିତ ଏବଂ ଅପରୋକ୍ଷାନୁଭୂତିର ଭାବ ସବୁବେଳେ ମନରେ ଜାଗରୂକ ରଖିବା ଉଚିତ । ଧର୍ମ ପାଇଁ ଏହିସବୁ ଗଣ୍ଡଗୋଳ, ମରାମରି, ବିବାଦ ବିସମ୍ବାଦ ସେତେବେଳେ ତୁଟିଯିବ, ଯେତେବେଳେ ଆମେମାନେ ବୁଝିବୁ, ଧର୍ମ ଗ୍ରନ୍ଥବିଶେଷରେ ବା ମନ୍ଦିରବିଶେଷରେ ଆବଦ୍ଧ ନୁହେଁ, ଅଥବା ଇନ୍ଦ୍ରିୟଦ୍ୱାରା ମଧ୍ୟ ଏହାର ଅନୁଭୂତି ସମ୍ଭବ ନୁହେଁ । ଏହା ଅତୀନ୍ଦ୍ରିୟ ତତ୍ତ୍ୱର ପ୍ରତ୍ୟକ୍ଷାନୁଭୂତି । ଯେଉଁ ବ୍ୟକ୍ତି ଈଶ୍ୱର ଏବଂ ଆତ୍ମାଙ୍କୁ ଉପଲବ୍ଧି କରିଛନ୍ତି, ସେ ହିଁ ପ୍ରକୃତ ଧାର୍ମିକ । ସେହି ପ୍ରତ୍ୟକ୍ଷାନୁଭୂତିବିହୀନ ଉଚ୍ଚତମ ଧର୍ମ-ଶାସ୍ତ୍ରବିତ୍, ଯେ ଅନର୍ଗଳ ଧର୍ମବକ୍ତୃତା କରିପାରନ୍ତି, ତାଙ୍କ ସହିତ ଅତି ସାମାନ୍ୟ ଅଜ୍ଞ ଜଡ଼ବାଦୀର କୌଣସି ପ୍ରଭେଦ ନାହିଁ । ଆମେମାନେ ସମସ୍ତେ ନାସ୍ତିକ—ଏକଥା ଆମେମାନେ ମାନି ନେଉ ନାହିଁ କାହିଁକି ? କେବଳ ବିଚାରପୂର୍ବକ ଧର୍ମର ତତ୍ତ୍ୱଗୁଡ଼ିକୁ ସମ୍ମତିଦାନ କଲେ ମନୁଷ୍ୟ ଧାର୍ମିକ ହୁଏ ନାହିଁ । ଜଣେ ଖ୍ରୀଷ୍ଟିୟାନ ବା ମୁସଲମାନ ଅଥବା ଅନ୍ୟ କୌଣସି ଧର୍ମାବଲମ୍ବୀର କଥା ଧର । ଖ୍ରୀଷ୍ଟଙ୍କର ସେହି ପର୍ବତ ଉପରେ ଧର୍ମୋପଦେଶଦାନର କଥାକୁ ମନେ ପକାଅ । ଯେ କୌଣସି ବ୍ୟକ୍ତି ଏହି ଉପଦେଶ କାର୍ଯ୍ୟରେ ପାଳନ କରେ, ସେ ତତ୍କ୍ଷଣାତ୍ ଦେବତା ହୋଇଯିବ, ସିଦ୍ଧ ହୋଇଯିବ । କୁହାଯାଏ, ପୃଥିବୀରେ ଏତେ କୋଟି ଖ୍ରୀଷ୍ଟିୟାନ ଅଛନ୍ତି । ତେବେ ତୁମେ କଅଣ

କହିବାକୁ ଗ୍ରହିଁ ଯେ, ଏମାନେ ସମସ୍ତେ ଖ୍ରୀଷ୍ଟିୟାନ ? ବାସ୍ତବିକ ଏହାର ଅର୍ଥ ହେଉଛି, ଏମାନେ କୌଣସି ନା କୌଣସି ସମୟରେ ଏହି ଉପଦେଶାନୁଯାୟୀ କାର୍ଯ୍ୟ କରିବାକୁ ଚେଷ୍ଟା କରିବେ । ଦୁଇ କୋଟି ଲୋକଙ୍କ ଭିତରେ ପ୍ରକୃତ ଖ୍ରୀଷ୍ଟିୟାନ ଜଣେ ଥିବେ କି ନାହିଁ ସନ୍ଦେହ ।

ଭାରତବର୍ଷରେ ମଧ୍ୟ ଏହିଭଳି କଥିତ ହୋଇଥାଏ ଯେ, ତିରିଶ କୋଟି ବୈଦାନ୍ତିକ ଅଛନ୍ତି । ଯଦି ସହସ୍ର ଲୋକଙ୍କ ଭିତରେ ଜଣେ ପ୍ରତ୍ୟକ୍ଷାନୁଭୂତିସମ୍ପନ୍ନ ବ୍ୟକ୍ତି ଥାଆନ୍ତେ, ତେବେ ଏହି ଜଗତ ପାଞ୍ଚ ମିନିଟରେ ଆଉ ଗୋଟିଏ ଆକାର ଧାରଣ କରିଥାଆନ୍ତା । ଆମେମାନେ ସମସ୍ତେ ନାସ୍ତିକ; କିନ୍ତୁ ଯେଉଁ ଲୋକ ଏହା ସ୍ପଷ୍ଟ ସ୍ୱୀକାର କରେ, ଆମେ ତାହା ସହିତ ବିବାଦରେ ପ୍ରବୃତ୍ତ ହେଉ । ଆମେମାନେ ସମସ୍ତେ ଅନ୍ଧକାରରେ ରହିଛେ । ଧର୍ମ ଆମମାନଙ୍କ ନିକଟରେ ଯେପରି କିଛି ନୁହେଁ, କେବଳ ବିଗ୍ରରଲବ୍ଧ କେତେଗୁଡ଼ିଏ ମତର ଅନୁମୋଦନ ମାତ୍ର, କେବଳ କଥାର କଥା—ଅମୁକ ଲୋକ ବେଶ୍ ଭଲ କହିପାରେ, ଅମୁକ ଲୋକ ପାରେ ନାହିଁ । କିନ୍ତୁ ଏହା ଧର୍ମ ନୁହେଁ; 'ଶବ୍ଦ ଯୋଜନା କରିବାର ସୁନ୍ଦର କୌଶଳ, ଅଳଙ୍କାର-ପୂର୍ଣ୍ଣ ବର୍ଣ୍ଣନାର କ୍ଷମତା, ନାନା ଭାବରେ ଶାସ୍ତ୍ରର ଶ୍ଳୋକବ୍ୟାଖ୍ୟା—ଏହିସବୁ କେବଳ ପଣ୍ଡିତମାନଙ୍କର ଆମୋଦ ପାଇଁ—ମୁକ୍ତି ନିମିତ୍ତ ନୁହେଁ ।'* ଯେତେବେଳେ ଆତ୍ମା ପ୍ରତ୍ୟକ୍ଷ ଭାବରେ ଅନୁଭୂତ ହେବେ, ସେତେବେଳେ ଧର୍ମର ଆରମ୍ଭ ହେବ । ସେତିକିବେଳେ ତୁମେ ଧାର୍ମିକ ହେବ ଏବଂ କେବଳ ସେତିକିବେଳେ, ତୁମର ନୈତିକ ଜୀବନ ମଧ୍ୟ ଆରମ୍ଭ ହେବ । ଆମେମାନେ ବର୍ତ୍ତମାନ ପଶୁମାନଙ୍କ ଅପେକ୍ଷା ଅଧିକ ନୀତିପରାୟଣ ନୋହୁଁ । ଆମେମାନେ ବର୍ତ୍ତମାନ କେବଳ ସମାଜର ଶାସନ ଭୟରେ ବେଶୀ ଉଚ୍ଚବାଚ୍ୟ କରୁ ନାହିଁ । ଯଦି ଆଜି ସମାଜ କହେ, ଚୋରି କଲେ ଆଉ ଶାସ୍ତି ଦିଆଯିବ ନାହିଁ, ଆମେମାନେ ସଙ୍ଗେ ସଙ୍ଗେ ଅନ୍ୟର ସମ୍ପତ୍ତି ଚୋରି କରିବାକୁ ଦୌଡ଼ିବୁ । ଆମମାନଙ୍କର ସଚ୍ଚରିତ୍ର ହେବାର କାରଣ ହେଉଛି ପୁଲିସ । ସାମାଜିକ ପ୍ରତିପତ୍ତିଲୋପର ଆଶଙ୍କା ଆମମାନଙ୍କର ନୀତିପରାୟଣ ହେବାର ଏକ ପ୍ରଧାନ କାରଣ, ଏବଂ ବାସ୍ତବିକ ଆମେମାନେ ପଶୁମାନଙ୍କଠାରୁ ଖୁବ୍ ଅଳ୍ପ ମାତ୍ର ଉନ୍ନତ । ଆମେମାନେ ଆମମାନଙ୍କ ଅନ୍ତରକୁ ଅନୁସନ୍ଧାନ କରି ବୁଝିପାରିବା ଏକଥା କେତେଦୂର ସତ୍ୟ । ଅତଏବ ଆସ, ଆମେ ଏହି କପଟତା ତ୍ୟାଗ କରିବା । ଆସ ସ୍ୱୀକାର କରିବା ଯେ, ଆମେମାନେ ଧାର୍ମିକ ନୋହୁଁ ଏବଂ ଅନ୍ୟପ୍ରତି ଘୃଣା କରିବାର କୌଣସି ଅଧିକାର ଆମମାନଙ୍କର ନାହିଁ । ଆମ ସମସ୍ତଙ୍କ ମଧ୍ୟରେ ବାସ୍ତବିକ ଭ୍ରାତୃ-ସମ୍ବନ୍ଧ, ଏବଂ ଧର୍ମର ପ୍ରତ୍ୟକ୍ଷାନୁଭୂତି ହେଲେ ଯାଇ ଆମେମାନେ ଯଥାର୍ଥ ନୀତି-ପରାୟଣ ହେବାର ଆଶା କରିପାରିବା ।

* ବିବେକଚୂଡ଼ାମଣି, ୬୦

ମନେକର, ତୁମେ କୌଣସି ଗୋଟିଏ ଦେଶ ଦେଖିଛ । କୌଣସି ଲୋକ ତୁମକୁ କାଟି ଖଣ୍ଡ ଖଣ୍ଡ କରି ଫୋପାଡ଼ି ଦେଇପାରେ; କିନ୍ତୁ ତୁମେ ନିଜର ଅନ୍ତରରେ କଦାପି ଏ କଥା ଭାବିପାରିବ ନାହିଁ ଯେ, ତୁମେ ସେ ଦେଶ ଦେଖି ନାହଁ । ଅବଶ୍ୟ, ଅତିରିକ୍ତ ଶାରୀରିକ ବଳପ୍ରୟୋଗ କଲେ ତୁମେ ମୁହଁରେ କହିପାର ଯେ, 'ମୁଁ ସେ ଦେଶ ଦେଖିନାହିଁ'; କିନ୍ତୁ ତୁମେ ମନେ ମନେ ଜାଣ ଯେ ତୁମେ ସେହି ଦେଶ ଦେଖିଛ । ବାହ୍ୟ ଜଗତକୁ ତୁମେ ଯେଉଁଭଳି ଭାବରେ ପ୍ରତ୍ୟକ୍ଷ କର, ଯେତେବେଳେ ତାହା ଅପେକ୍ଷା ସ୍ପଷ୍ଟତର ଭାବରେ ଧର୍ମ ଓ ଈଶ୍ୱରଙ୍କର ସାକ୍ଷାତ୍କାର ହେବ, ସେତେବେଳେ କୌଣସି କିଛି ତୁମର ବିଶ୍ୱାସକୁ ଟଳାଇପାରିବ ନାହିଁ ଏବଂ ସେତିକିବେଳେ ପ୍ରକୃତ ବିଶ୍ୱାସର ଆରମ୍ଭ ହେବ । ବାଇବେଲ୍‌ର କଥା 'ଯାହାର ଗୋଟିଏ ସୋରିଷ ପରିମାଣର ବିଶ୍ୱାସ ଅଛି, ସେ ପାହାଡ଼କୁ ଘୁଞ୍ଚିଯିବାକୁ କହିଲେ ପାହାଡ଼ଟି ତାହାର କଥା ଶୁଣିବ'*—ଏହି କଥାର ତାତ୍ପର୍ଯ୍ୟ—ସେତେବେଳେ ତୁମେ ସ୍ୱୟଂ ସତ୍ୟସ୍ୱରୂପ ହୋଇଯାଇଛ ବୋଲି ସତ୍ୟକୁ ଜାଣିପାରିବ—କେବଳ ବିଚାର-ପୂର୍ବକ ସତ୍ୟରେ ସମ୍ମତି ଦେବାଟା କିଛି ନୁହେଁ ।

ଗୋଟିଏ ମାତ୍ର ପ୍ରଶ୍ନ ହେଉଛି—ତୁମେ କଅଣ ସତ୍ୟକୁ ପ୍ରତ୍ୟକ୍ଷ କରିଛ ? ଏହା ହିଁ ବେଦାନ୍ତର ମୂଳ କଥା—ଧର୍ମକୁ ସାକ୍ଷାତ୍କାର କର—କେବଳ କଥାରେ କିଛି ହେବ ନାହିଁ; କିନ୍ତୁ ସାକ୍ଷାତ୍କାର ଅତ୍ୟନ୍ତ କଠିନ । ଯେ ପରମାଣୁର ଅଭ୍ୟନ୍ତରରେ ଅତି ଗୂଢ଼ ଭାବରେ ଅବସ୍ଥାନ କରୁଛନ୍ତି, ସେହି ପୁରାଣ-ପୁରୁଷ ପ୍ରତ୍ୟେକ ମାନବହୃଦୟର ଅନ୍ତରତମ ପ୍ରଦେଶରେ ଅବସ୍ଥାନକରୁଛନ୍ତି ।** ସାଧୁମାନେ ତାଙ୍କୁ ଅନ୍ତର୍ଦୃଷ୍ଟିଦ୍ୱାରା ଉପଲବ୍ଧି କରିଛନ୍ତି ଏବଂ ସୁଖଦୁଃଖ ଉଭୟର ପରପାରକୁ ଯାଇଛନ୍ତି । ଆମେମାନେ ଯାହାକୁ ଧର୍ମ କହୁ, ଆମେମାନେ ଯାହାକୁ ଅଧର୍ମ କହୁ —ଶୁଭାଶୁଭ ସକଳ କର୍ମ, ସତ୍-ଅସତ୍—ସବୁର ପରପାରକୁ ସେ ଯାଇଛି, ଯେ ତାଙ୍କୁ ଦେଖିଛି । ସେ ସେହି ସତ୍ୟକୁ ଉପଲବ୍ଧି କରିଛି । କିନ୍ତୁ ତାହାହେଲେ ସ୍ୱର୍ଗର କଥା କଅଣ ହେଲା ? ସ୍ୱର୍ଗ ସମ୍ବନ୍ଧରେ ଆମର ଧାରଣା ହେଉଛି, ଏହା ଦୁଃଖଶୂନ୍ୟ ସୁଖ, ଅର୍ଥାତ୍ ଆମେମାନେ ଚାହୁଁ ସଂସାରର ସମସ୍ତ ସୁଖ କେବଳ ଦୁଃଖଗୁଡ଼ିକୁ ବାଦ ଦେଇ । ଅବଶ୍ୟ ଏହା ଅତି ସୁନ୍ଦର ଧାରଣା ଏବଂ ଏହା ସ୍ୱାଭାବିକ ଭାବରେ ଆସିଥାଏ; କିନ୍ତୁ ଏ ଧାରଣାଟି ଏକାବେଳକେ ଆମୂଳଚୂଳ ଭୁଲ; କାରଣ ପୂର୍ଣ୍ଣ ସୁଖ ବା ପୂର୍ଣ୍ଣ ଦୁଃଖ ବୋଲି କୌଣସି କିଛି ନାହିଁ ।

ରୋମ୍‌ରେ ଜଣେ ଖୁବ୍ ଧନୀ ବ୍ୟକ୍ତି ଥିଲେ । ସେ ଦିନେ ଜାଣିପାରିଲେ, ତାଙ୍କର ସମ୍ପତ୍ତି ମଧ୍ୟରୁ ମାତ୍ର ଦଶ ଲକ୍ଷ ପାଉଣ୍ଡ ଅବଶିଷ୍ଟ ଅଛି । ଶୁଣିବାମାତ୍ରେ ସେ

* St. Matthew, Ch. 17. v, 20

** କଠ ଉପ., ୧।୨।୨୦; ଶ୍ୱେତାଶ୍ୱ. ଉପ., ୩।୨୦

କହିଲେ, 'ତାହାହେଲେ ମୁଁ କାଲି କ'ଣ କରିବ ?'—ଏହା କହି ସେ ଆତ୍ମହତ୍ୟା କଲେ । ଦଶ ଲକ୍ଷ ପାଉଣ୍ଡ ତାଙ୍କ ପକ୍ଷରେ ଦାରିଦ୍ର୍ୟ, କିନ୍ତୁ ମୋ ପକ୍ଷରେ ନୁହେଁ । ତାହା ମୋର ସାରାଜୀବନରେ ଯେତିକି ଦରକାର ତାହାଠାରୁ ମଧ୍ୟ ବେଶୀ । ବାସ୍ତବିକ ସୁଖ ବା କ'ଣ, ଦୁଃଖ ବା କ'ଣ ? ସେମାନେ କ୍ରମାଗତ ବିଭିନ୍ନ ରୂପ ଧାରଣ କରୁଛନ୍ତି । ମୁଁ ଯେତେବେଳେ ଶିଶୁ ଥିଲି, ସେତେବେଳେ ମୋର ମନେ-ହେଉଥିଲା—ଗୋଟାଏ କୋଚୁଆନ ହୋଇପାରିଲେ ମୁଁ ସୁଖର ପରାକାଷ୍ଠା ଲାଭ କରିବି । ଏବେ ଆଉ ମୋର ସେଭଳି ମନେ ହୁଏ ନାହିଁ । ଏବେ ତୁମେ କେଉଁ ସୁଖକୁ ଧରି ରହିବ ? ଏକଥା ଆମମାନଙ୍କର ଭଲ ଭାବେ ବୁଝିବାକୁ ଚେଷ୍ଟା କରିବା ଉଚିତ ।

ଆମମାନଙ୍କର ଏ ଭଳି କୁସଂସ୍କାର ବହୁ ବିଳମ୍ବରେ ଦୂର ହୁଏ । ପ୍ରତ୍ୟେକଙ୍କର ସୁଖର ଧାରଣା ଭିନ୍ନ ଭିନ୍ନ । ମୁଁ ଗୋଟିଏ ଲୋକକୁ ଦେଖିଛି, ପ୍ରତିଦିନ ଢେଲାଏ ଅଫିମ ନ ଖାଇଲେ ସୁଖୀ ହୁଏ ନାହିଁ । ସେ ହୁଏତ ଭାବୁଥିବ, ସ୍ୱର୍ଗର ମାଟି ସବୁ ଅଫିମରେ ତିଆରି । କିନ୍ତୁ ମୋ ପକ୍ଷରେ ସେଭଳି ସ୍ୱର୍ଗ ବିଶେଷ ସୁବିଧାଜନକ ନୁହେଁ । ଆମେମାନେ ଆରବୀ କବିତାରେ ପଢ଼ିଥାଉ, ସ୍ୱର୍ଗ ନାନା ମନୋହର ଉଦ୍ୟାନରେ ପୂର୍ଣ୍ଣ ଏବଂ ସେଠାରେ ଅସଂଖ୍ୟ ନଦୀ ପ୍ରବାହିତ ହେଉଛନ୍ତି । ମୁଁ ମୋର ଜୀବନର ଅଧିକାଂଶ ଏପରି ଏକ ଦେଶରେ ବାସ କରିଛି, ଯେଉଁଠାରେ ଅତ୍ୟନ୍ତ ଅଧିକ ପାଣି, ପ୍ରତିବର୍ଷ ଅନେକ ଗ୍ରାମ ଓ ସହସ୍ର ସହସ୍ର ବ୍ୟକ୍ତି ଜଳପ୍ଲାବନରେ ଧ୍ୱଂସମୁଖରେ ପତିତ ହୁଅନ୍ତି । ଅତଏବ ମୋର କଳ୍ପିତ ସ୍ୱର୍ଗ ନିମ୍ନ ଦେଶରେ ନଦୀପ୍ରବାହଯୁକ୍ତ ଉଦ୍ୟାନପୂର୍ଣ୍ଣ ହେଲେ ଚଳିବ ନାହିଁ; ମୋର ସ୍ୱର୍ଗରେ ଅଳ୍ପ ବର୍ଷା ହେବା ଆବଶ୍ୟକ । ଆମମାନଙ୍କ ଜୀବନ ସମ୍ବନ୍ଧରେ ମଧ୍ୟ ତଦ୍ରୂପ । ଆମମାନଙ୍କର ସୁଖର ଧାରଣା କ୍ରମାଗତ ବଦଳୁଛି । କୌଣସି ଯୁବକ ଯଦି ସ୍ୱର୍ଗର ଚିନ୍ତା କରେ, ଏପରି ଏକ ସ୍ୱର୍ଗର ବିଷୟ ଚିନ୍ତା ସେ କରିବ, ଯେଉଁଠାରେ ସେ ସୁନ୍ଦରୀ ସ୍ତ୍ରୀ ପାଇବ । ସେହି ବ୍ୟକ୍ତି ପୁଣି ବୃଦ୍ଧ ହେଲେ ତାହାର ଆଉ ସ୍ତ୍ରୀର ଆବଶ୍ୟକତା ରହିବ ନାହିଁ । ଆମମାନଙ୍କର ପ୍ରୟୋଜନ ହିଁ ଆମମାନଙ୍କ ସ୍ୱର୍ଗର ନିର୍ମାତା ଏବଂ ଆମମାନଙ୍କର ପ୍ରୟୋଜନର ପରିବର୍ତ୍ତନ ସଙ୍ଗେ ସଙ୍ଗେ ଆମମାନଙ୍କର ସ୍ୱର୍ଗ ମଧ୍ୟ ବିଭିନ୍ନ ରୂପ ଧାରଣ କରେ । ଯଦି ଆମେମାନେ ଏପରି ଏକ ସ୍ୱର୍ଗକୁ ଯାଉ, ଯେଉଁଠାରେ ଅନନ୍ତ ଇନ୍ଦ୍ରିୟସୁଖ ଲାଭ ହେବ, ସେଠାରେ ଆମମାନଙ୍କର ବିଶେଷ କିଛି ଉନ୍ନତି ହେବ ନାହିଁ—ଯେଉଁମାନେ ବିଷୟଭୋଗକୁ ଜୀବନର ଏକମାତ୍ର ଉଦ୍ଦେଶ୍ୟ ବୋଲି ବିବେଚନା କରନ୍ତି, ସେମାନେ ହିଁ ଏଭଳି ସ୍ୱର୍ଗ ପାଇବାକୁ ଚାହାଁନ୍ତି । ଏହା ବାସ୍ତବରେ ମଙ୍ଗଳକର ନ ହୋଇ ମହା ଅମଙ୍ଗଳକର ହେବ । ଏହା କ'ଣ ଆମ-ମାନଙ୍କର ଚରମ ଗତି ? ଟିକିଏ ମାତ୍ର ହସ ଆଉ କାନ୍ଦ, ତା'ପରେ କୁକୁର ଭଳି ମୃତ୍ୟୁ ? ଯେତେବେଳେ ଏହିସବୁ ବିଷୟଭୋଗର ପ୍ରାର୍ଥନା କର, ସେତେବେଳେ ମାନବ-

କାତର ଯେ କି ଘୋର ଅମଙ୍ଗଳ କାମନା କରୁଛ, ତାହା ତୁମେ ଜାଣ ନାହିଁ । ବାସ୍ତବିକ ଐହିକ ସୁଖଭୋଗର କାମନା କରି ତୁମେ ତାହା ହିଁ କରୁଛ, କାରଣ, ପ୍ରକୃତ ଆନନ୍ଦ କଅଣ ତୁମେ ଜାଣ ନାହିଁ । ବାସ୍ତବରେ ଦର୍ଶନଶାସ୍ତ୍ର ଆନନ୍ଦ ତ୍ୟାଗ କରିବାକୁ ଉପଦେଶ ଦିଏ ନାହିଁ, ପ୍ରକୃତ ଆନନ୍ଦ କ'ଣ, ତାହା ଶିକ୍ଷା ଦିଏ । ନରଓ୍ୱେ-ବାସୀମାନଙ୍କର ସ୍ୱର୍ଗ ସମ୍ବନ୍ଧରେ ଧାରଣା ଏହି ଯେ, ତାହା ଗୋଟିଏ ଭୟଙ୍କର ଯୁଦ୍ଧ କ୍ଷେତ୍ର—ସେଠାରେ ସମସ୍ତେ ଓଡ଼ିନ୍ (Odin) ଦେବତାଙ୍କ ସମ୍ମୁଖରେ ଉପ-ବେଶନ କରିଥାଆନ୍ତି । କିଛିକ୍ଷଣ ପରେ ବନ୍ୟ ବରାହ ଶିକାର ଆରମ୍ଭ ହୁଏ । ପରେ ସେମାନେ ନିଜ ନିଜ ଭିତରେ ଯୁଦ୍ଧ କରନ୍ତି ଏବଂ ପରସ୍ପରକୁ ଖଣ୍ଡ ବିଖଣ୍ଡ କରିପକାନ୍ତି । କିନ୍ତୁ ଏଭଳି ଯୁଦ୍ଧରେ କିଛିକ୍ଷଣ ପରେ କୌଣସିପ୍ରକାରେ ସେମାନଙ୍କର କ୍ଷତସବୁ ଆରୋଗ୍ୟ ହୋଇଯାଏ—ସେତେବେଳେ ସେମାନେ ଗୋଟିଏ ବଡ଼ ଘରକୁ ଯାଇ ସେହି ବରାହର ମାଂସ ଦଗ୍ଧ କରି ଭୋଜନ ଓ ଆମୋଦପ୍ରମୋଦ କରନ୍ତି । ତା' ପର ଦିନ ପୁଣି ସେହି ବରାହଟି ଜୀବିତ ହୁଏ—ପୁଣି ସେହିଭଳି ଶିକାର ଆଦି ହୋଇଥାଏ । ଏହା ଆମମାନଙ୍କର ଧାରଣାର ଅନୁରୂପ, ତେବେ ଆମମାନଙ୍କର ଧାରଣାଟି ହୁଏତ ଟିକିଏ ମାର୍ଜିତ । ଆମେମାନେ ସମସ୍ତେ ଏହିଭଳି 'ଶୂକର' ଶିକାର କରିବାକୁ ଭଲ ପାଉ—ଆମେମାନେ ଏପରି ଏକ ସ୍ଥାନକୁ ଯିବାକୁ ଚାହୁଁ, ଯେଉଁଠାରେ ଏହି ଭୋଗ ପୂର୍ଣ୍ଣମାତ୍ରାରେ କ୍ରମାଗତ ଚାଲିବ, ଯେପରି କି ନରଓ୍ୱେବାସୀମାନେ କଳ୍ପନା କରନ୍ତି ଯେ, ଯେଉଁମାନେ ସ୍ୱର୍ଗକୁ ଯାଆନ୍ତି, ବନ୍ୟ ଶୂକର ପ୍ରତିଦିନ ଶିକାର କରି ଖାଇଥାଆନ୍ତି—ଅଥଚ ପର ଦିନ ପୁନର୍ବାର ଶୂକରଟି ବଞ୍ଚି ଉଠେ—ଠିକ୍ ସେହିଭଳି ଘଟିବ ।

ଦର୍ଶନ କହେ, ଏପରି ଗୋଟିଏ ଆନନ୍ଦ ଅଛି, ଯାହା ନିରପେକ୍ଷ, ଯାହାର ପରିଣାମ ନାହିଁ; ସୁତରାଂ ଆମମାନଙ୍କର ଐହିକ ସୁଖଭୋଗର—ଆମେମାନେ ଯାହା ସାଧାରଣତଃ କରିଥାଉ, ତାହା ସହିତ ଏ ସୁଖର କୌଣସି ସମ୍ବନ୍ଧ ନାହିଁ । କିନ୍ତୁ ଆହୁରି ମଧ୍ୟ ବେଦାନ୍ତ ପ୍ରମାଣ କରନ୍ତି ଯେ, ଏହି ଜଗତରେ ଯାହା କିଛି ଆନନ୍ଦକର ଅଛି, ତାହା ସେହି ପ୍ରକୃତ ଆନନ୍ଦର ଅଂଶମାତ୍ର, କାରଣ ସେହି ବ୍ରହ୍ମାନନ୍ଦର ହିଁ ବାସ୍ତବିକ ଅସ୍ତିତ୍ୱ ଅଛି । ଆମେମାନେ ପ୍ରତିମୁହୂର୍ତ୍ତରେ ସେହି ବ୍ରହ୍ମାନନ୍ଦ ଉପଭୋଗ କରୁଛୁଁ; କିନ୍ତୁ ଏହାକୁ ବ୍ରହ୍ମାନନ୍ଦ ବୋଲି ଜାଣିପାରୁନାହୁଁ । ଯେଉଁଠାରେ ଦେଖିବ, କୌଣସି ଆନନ୍ଦ, ଏପରିକି, ଚୋରର ଚୌର୍ଯ୍ୟରେ ମଧ୍ୟ ଯେଉଁ ଆନନ୍ଦ, ତାହା ମଧ୍ୟ ବାସ୍ତବିକ ସେହି ପୂର୍ଣ୍ଣାନନ୍ଦ, କେବଳ ଏହା କେତେଗୁଡ଼ିଏ ବାହ୍ୟ ବସ୍ତୁ ସଂସ୍ପର୍ଶରେ ମଳିନ ହୋଇଯାଇଛି ମାତ୍ର । କିନ୍ତୁ ଏହା ବୁଝିବାକୁ ହେଲେ, ପ୍ରଥମେ ଆମମାନଙ୍କୁ ସମୁଦାୟ ସୁଖଭୋଗ ତ୍ୟାଗ କରିବାକୁ ହେବ—ଏହା ତ୍ୟାଗ କଲେ ହିଁ ପ୍ରକୃତ ଆନନ୍ଦର ଉପଲବ୍ଧି ହେବ । ପ୍ରଥମେ ଅଜ୍ଞାନ, ମିଥ୍ୟା ସମୁଦାୟ ତ୍ୟାଗ କରିବାକୁ ହେବ, ତେବେ ଯାଇ ସତ୍ୟର ପ୍ରକାଶ ହେବ । ସେତେବେଳେ

ଆମେମାନେ ସତ୍ୟକୁ ଦୃଢ଼ଭାବରେ ଧରିପାରିବୁ, ସେତେବେଳେ ପ୍ରଥମେ ଆମେମାନେ ଯାହା କିଛି ତ୍ୟାଗ କରିଥିଲୁ ତାହା ଆଉ ଗୋଟିଏ ରୂପ ଧାରଣ କରିବ, ନୂତନ ଆକାରରେ ପ୍ରତିଭାତ ହେବ, ସେତେବେଳେ ସମୁଦାୟ—ସମୁଦାୟ ବ୍ରହ୍ମାଣ୍ଡ—ବ୍ରହ୍ମମୟ ହୋଇଯିବ, ସେତେବେଳେ ସମୁଦାୟ ଉନ୍ନତ ଭାବ ଧାରଣ କରିବ, ସେତେବେଳେ ଆମେମାନେ ସମୁଦାୟ ପଦାର୍ଥକୁ ନୂତନ ଆଲୋକରେ ବୁଝିବୁ । କିନ୍ତୁ ପ୍ରଥମେ ଆମମାନଙ୍କୁ ସେଗୁଡ଼ିକୁ ତ୍ୟାଗ କରିବାକୁ ହେବ; ପରେ ସତ୍ୟର ଅନ୍ତତଃ ଗୋଟିଏ ବିନ୍ଦୁ ଆଭାସ ପାଇଲେ ପୁନଶ୍ଚ ତାହାକୁ ଗ୍ରହଣ କରିବାକୁ ହେବ; କିନ୍ତୁ ଅନ୍ୟ ରୂପରେ—ବ୍ରହ୍ମାକାରରେ ପରିଣତ ରୂପରେ । ଅତଏବ ଆମମାନଙ୍କୁ ସୁଖଦୁଃଖ ସବୁ ତ୍ୟାଗ କରିବାକୁ ହେବ । ଏଗୁଡ଼ିକ ସେହି ଏକ ଅନୁଭୂତିର ବିଭିନ୍ନ କ୍ରମ ମାତ୍ର । ବେଦ ସବୁ ଯାହାକୁ ଘୋଷଣା କରନ୍ତି, ସମସ୍ତ ପ୍ରକାର ତପସ୍ୟା ଯାହାଙ୍କର ପ୍ରାପ୍ତି ନିମିତ୍ତ ଅନୁଷ୍ଠିତ ହୁଏ, ଯାହାଙ୍କୁ ଲାଭକରିବା ସକାଶେ ଲୋକମାନେ ବ୍ରହ୍ମଚର୍ଯ୍ୟର ଅନୁଷ୍ଠାନ କରନ୍ତି, ମୁଁ ସଂକ୍ଷେପରେ ତାଙ୍କ ସମ୍ବନ୍ଧରେ ତୁମକୁ କହିବି—ସେ 'ଓଁ' । ବେଦରେ ଏହି ଓଁକାରର ଅତିଶୟ ମହିମା ଓ ପବିତ୍ରତା ବ୍ୟାଖ୍ୟାତ ହୋଇଛି ।

ମନୁଷ୍ୟର ମୃତ୍ୟୁ ପରେ ତା'ର କି ଅବସ୍ଥା ହୁଏ, ନଚିକେତାଙ୍କର ଏହି ପ୍ରଶ୍ନର ଉତ୍ତର ଯମ ଦେଉଛନ୍ତି : 'ବିପଶ୍ଚିତ୍' ବା ଅବିଲୁପ୍ତଚୈତନ୍ୟ ଆତ୍ମା କଦାପି ମରନ୍ତି ନାହିଁ, କଦାପି ଜାତ ହୁଅନ୍ତି ନାହିଁ; କୌଣସି ପଦାର୍ଥରୁ ଉତ୍ପନ୍ନ ହୁଅନ୍ତି ନାହିଁ; ସେ ଅଜ, ନିତ୍ୟ, ଶାଶ୍ୱତ ଓ ପୁରାଣ । ଦେହ ନଷ୍ଟ ହେଲେ ମଧ୍ୟ ସେ ନଷ୍ଟ ହୁଅନ୍ତି ନାହିଁ । 'ହନ୍ତା ଯଦି ମନେ କରନ୍ତି, ମୁଁ କାହାକୁ ହନନ କରିପାରେ, ଅଥବା ହତ ବ୍ୟକ୍ତି ଯଦି ମନେ କରନ୍ତି, ମୁଁ ହତ ହେଲି, ତେବେ ଉଭୟଙ୍କୁ ସତ୍ୟ ସମ୍ବନ୍ଧରେ ଅନଭିଜ୍ଞ ବୋଲି ବୁଝିବାକୁ ହେବ । ଆତ୍ମା କାହାରିକୁ ହେଲେ ହନନ କରନ୍ତି ନାହିଁ ଅଥବା ସ୍ୱୟଂ ହତ ହୁଅନ୍ତି ନାହିଁ ।'* ଏହା ଏକ ବିଷମ କଥା ହେଲା । ପ୍ରଥମ ଶ୍ଳୋକରେ ଆତ୍ମାର ବିଶେଷଣ 'ବିପଶ୍ଚିତ୍' ଶବ୍ଦଟିକୁ ବିଶେଷଭାବରେ ଲକ୍ଷ୍ୟ କର । କ୍ରମଶଃ ଦେଖିପାରିବ, ବେଦାନ୍ତର ପ୍ରକୃତ ମତ ଏହି ଯେ, ସମୁଦାୟ ଜ୍ଞାନ, ସମୁଦାୟ ପବିତ୍ରତା, ପ୍ରଥମରୁ ହିଁ ଆତ୍ମାରେ ଅବସ୍ଥିତ, କେଉଁଠାରେ ହୁଏତ ବେଶୀ ପ୍ରକାଶ, କେଉଁଠାରେ ବା କମ୍—ଏହି ମାତ୍ର ପ୍ରଭେଦ । ମନୁଷ୍ୟ ସହିତ ମନୁଷ୍ୟର ଅଥବା ଏହି ବ୍ରହ୍ମାଣ୍ଡର ଯେ କୌଣସି ବସ୍ତୁର ପାର୍ଥକ୍ୟ ପ୍ରକାରଗତ ନୁହେଁ, ପରିମାଣଗତ । ପ୍ରତ୍ୟେକର ଅନ୍ତରରେ ଅବସ୍ଥିତ ସତ୍ୟ ସେହି ଏକମାତ୍ର ଅନନ୍ତ, ନିତ୍ୟାନନ୍ଦମୟ, ନିତ୍ୟଶୁଦ୍ଧ, ନିତ୍ୟ-ପୂର୍ଣ୍ଣବ୍ରହ୍ମ, ସେ ସେହି ଆତ୍ମା । ସେ ପୁଣ୍ୟବାନ୍, ପାପୀ, ସୁଖୀ, ଦୁଃଖୀ, ସୁନ୍ଦର, କୁତ୍ସିତ, ମନୁଷ୍ୟ, ପଶୁ ସର୍ବତ୍ର ଏକ ରୂପ । ସେ ଜ୍ୟୋତିର୍ମୟ । ତାଙ୍କର ପ୍ରକାଶର

* କଠ ଉପ., ୧।୨। ୧୮

ତାରତମ୍ୟରେ ନାନାରୂପ ପ୍ରଭେଦ । କାହା ଭିତରେ ସେ ଅଧିକ ପ୍ରକାଶିତ, କାହା ଭିତରେ ବା ଅଳ୍ପ, କିନ୍ତୁ ସେହି ଆତ୍ମାଙ୍କ ନିକଟରେ ଏହି ଭେଦର କୌଣସି ଅର୍ଥ ନାହିଁ । କାହାର ପୋଷାକ ଭିତର ଦେଇ ତାହାର ଶରୀରର ଅଧିକାଂଶ ଦେଖାଯାଉଛି, ଆଉ ଅନ୍ୟ ଜଣକର ଶରୀରର ଅଳ୍ପାଂଶ ଦେଖାଯାଉଛି, ଏହାଦ୍ୱାରା ଶରୀରର କୌଣସି ପାର୍ଥକ୍ୟ ରହୁନାହିଁ । ଖାଲି ପୋଷାକରେ—ଯାହା ଶରୀରର ଅଧିକାଂଶ ବା ଅଳ୍ପାଂଶ ଆବୃତ ରଖିଛି—ସେଥିରେ ଭେଦ ଦେଖାଯାଉଛି । ଅର୍ଥାତ୍ ଦେହ ଓ ମନର ତାରତମ୍ୟାନୁସାରେ ଆତ୍ମାର ଶକ୍ତି ଓ ପବିତ୍ରତା ପ୍ରକାଶ ପାଇଥାଏ । ଅତଏବ ଏହିଠାରେ ବୁଝି ରଖିବା ଉଚିତ ଯେ, ବେଦାନ୍ତ ଦର୍ଶନରେ ଭଲ ଓ ମନ୍ଦ ବୋଲି ଦୁଇଟି ପୃଥକ୍ ବସ୍ତୁ ନାହିଁ । ସେହି ଗୋଟିଏ ଜିନିଷ ଭଲମନ୍ଦ ଉଭୟ ହେଉଛି ଏବଂ ସେମାନଙ୍କ ମଧ୍ୟରେ ବିଭିନ୍ନତା କେବଳ ପରିମାଣଗତ ଏବଂ ବାସ୍ତବିକ କାର୍ଯ୍ୟକ୍ଷେତ୍ରରେ ଆମେମାନେ ତାହା ହିଁ ଦେଖୁଛୁଁ । ଆଜି ଯେଉଁ ଜିନିଷକୁ ମୁଁ ସୁଖକର କହୁଛି, କାଲି ପୁଣି ପୂର୍ବାପେକ୍ଷା ଟିକିଏ ଭଲ ଅବସ୍ଥା ହେଲେ ତାହାକୁ ଦୁଃଖକର ବୋଲି ଘୃଣା କରିବି । ଅତଏବ ବାସ୍ତବିକ ବସ୍ତୁଟିର ବିକାଶର ବିଭିନ୍ନ ମାତ୍ରା ପାଇଁ ଭେଦ ଉପଲବ୍ଧ ହୁଏ, ସେହି ଜିନିଷଟିରେ ବାସ୍ତବିକ କୌଣସି ଭେଦ ନାହିଁ । ବାସ୍ତବିକ ଭଲ ବା ମନ୍ଦ ବୋଲି କୌଣସି ଜିନିଷ ନାହିଁ । ଯେଉଁ ଉତ୍ତାପ ମୋର ଶୀତ ନିବାରଣ କରୁଛି, ତାହା ଗୋଟିଏ ଶିଶୁକୁ ଦଗ୍ଧ କରିପାରେ । ଏହା କଅଣ ଅଗ୍ନିର ଦୋଷ ? ଅତଏବ ଆତ୍ମା ଯଦି ଶୁଦ୍ଧସ୍ୱରୂପ ଓ ପୂର୍ଣ୍ଣ ହୁଏ, ତେବେ ଯେଉଁ ବ୍ୟକ୍ତି ଅସତ୍ କାର୍ଯ୍ୟ କରିବାକୁ ଯାଏ, ସେ ଆପଣା ସ୍ୱରୂପର ବିପରୀତାଚରଣ କରୁଛି, ସେ ନିଜର ସ୍ୱରୂପ ଜାଣେ ନାହିଁ । ଘାତକ ବ୍ୟକ୍ତି ଭିତରେ ମଧ୍ୟ ଶୁଦ୍ଧସ୍ୱଭାବ ଆତ୍ମା ରହିଛନ୍ତି । ସେ ଭ୍ରମବଶତଃ ତାହାଙ୍କୁ ଘୋଡ଼ାଇ ରଖିଛି ମାତ୍ର, ତାଙ୍କର ଜ୍ୟୋତିଃ ପ୍ରକାଶ ହେବାକୁ ଦେଉ ନାହିଁ । ଆଉ ଯେଉଁ ବ୍ୟକ୍ତି ମନେକରେ ଯେ, ସେ ହତ ହେଲ, ତାହାର ଆତ୍ମା ମଧ୍ୟ ହତ ହୁଅନ୍ତି ନାହିଁ । ଆତ୍ମା ନିତ୍ୟ—କଦାପି ତାଙ୍କର ଧ୍ୱଂସ ହୋଇପାରେ ନାହିଁ ।* 'ଅଣୁରୁ ଅଣୁ, ବୃହତ୍ତରୁ ବୃହତ୍ ସେହି ସକଳର ପ୍ରଭୁ ପ୍ରତ୍ୟେକ ମାନବହୃଦୟ ଭିତରେ ଅବସ୍ଥାନ କରୁଛନ୍ତି । ନିଷ୍ପାପ ବ୍ୟକ୍ତି ବିଧାତାଙ୍କର କୃପାରେ ତାହାଙ୍କୁ ଦେଖି ଶୋକଶୂନ୍ୟ ହୁଅନ୍ତି । ସେ ଦେହଶୂନ୍ୟ ହୋଇ ଦେହରେ ଅବସ୍ଥିତ, ସେ ଦେଶବିହୀନ ହୋଇ ଦେଶରେ ଅବସ୍ଥିତ ହେଲି-ଭଲି—ସେହି ଅନନ୍ତ ଓ ସର୍ବବ୍ୟାପୀ ଆତ୍ମାଙ୍କୁ ଏହିପରି ଜାଣି ଜ୍ଞାନୀ ବ୍ୟକ୍ତିମାନେ ଆଉ ଦୁଃଖ କରନ୍ତି ନାହିଁ ।'** 'ଏହି ଆତ୍ମାକୁ ବହୁଭାଷିତା, ତୀକ୍ଷ୍ଣ ମେଧା ଅଥବା ବେଦାଧ୍ୟୟନଦ୍ୱାରା ଲାଭ କରାଯାଏ ନାହିଁ ।'***

* କଠ ଉପ., ୧।୨।୨୦

** କଠ ଉପ., ୧।୨।୨୨

*** କଠ ଉପ., ୧।୨।୨୩

'ଏହାଙ୍କୁ ଯେ ବେଦଦ୍ୱାରା ଲାଭ କରାଯାଏ ନାହିଁ'—ଏ କଥା କହିବା ଋଷିମାନଙ୍କ ପକ୍ଷରେ ବଡ଼ ସାହସର କର୍ମ । ପୂର୍ବରୁ କହିଛି ଋଷିମାନେ ଚିନ୍ତା-ଜଗତରେ ବଡ଼ ସାହସୀ ଥିଲେ, ସେମାନେ କଦାପି କେଉଁଠି ଚୁପ୍ ହୋଇ ରହିବାର ପାତ୍ର ନ ଥିଲେ । ହିନ୍ଦୁମାନେ ବେଦକୁ ଯେଉଁଭଳି ଭାବରେ ସମ୍ମାନଚକ୍ଷୁରେ ଦେଖୁଥିଲେ, ଖ୍ରୀଷ୍ଟିୟାନମାନେ ବାଇବେଲକୁ କଦାପି ସେହିଭଳି ଭାବରେ ଦେଖି-ନାହାନ୍ତି । ଖ୍ରୀଷ୍ଟିୟାନମାନଙ୍କର ଈଶ୍ୱରବାଣୀର ଧାରଣା ଏହି, କୌଣସି ମନୁଷ୍ୟ ଈଶ୍ୱରାନୁପ୍ରାଣିତ ହୋଇ ତାହା ଲେଖିଛନ୍ତି; କିନ୍ତୁ ହିନ୍ଦୁମାନଙ୍କର ଧାରଣା— ଜଗତରେ ଯେଉଁସବୁ ବିଭିନ୍ନ ପଦାର୍ଥ ରହିଛି, ତାହାର କାରଣ, ବେଦରେ ଏସବୁ ବସ୍ତୁର ନାମ ଉଲ୍ଲେଖ ଅଛି । ସେମାନଙ୍କର ବିଶ୍ୱାସ ବେଦଦ୍ୱାରା ଜଗତର ସୃଷ୍ଟି ହୋଇଛି । ଜ୍ଞାନ କହିଲେ ଯାହା କିଛି ବୁଝାଏ, ସବୁ ବେଦରେ ଅଛି । ଯେପରି ଜୀବାତ୍ମା ଅନନ୍ତ, ସେହିପରି ବେଦର ପ୍ରତ୍ୟେକଶବ୍ଦ ପବିତ୍ର ଓ ଅନନ୍ତ । ସୃଷ୍ଟିକର୍ତ୍ତାଙ୍କର ସମୁଦାୟ ମନର ଭାବ ଯେପରି କି ଏହି ଗ୍ରନ୍ଥରେ ପ୍ରକାଶିତ । ସେମାନେ ଏହି ଭାବରେ ବେଦକୁ ଦେଖିଛନ୍ତି । ଏ କାର୍ଯ୍ୟ ନୀତିସଙ୍ଗତ କାହିଁକି ? କାରଣ ବେଦ କହିଛନ୍ତି । ଏ କାର୍ଯ୍ୟ ଅନ୍ୟାୟ କାହିଁକି ? କାରଣ ବେଦ କହିଛନ୍ତି । ବେଦ ପ୍ରତି ପ୍ରାଚୀନମାନଙ୍କର ଏତାଦୃଶୀ ଶ୍ରଦ୍ଧା ସତ୍ତ୍ୱେ ଏହି ଋଷିମାନଙ୍କର ସତ୍ୟାନୁସନ୍ଧାନରେ କି ସାହସ, ଦେଖ । ସେମାନେ କହିଲେ, 'ନା, ବାରମ୍ବାର ବେଦ ପାଠ କଲେ ମଧ୍ୟ ସତ୍ୟଲାଭର କୌଣସି ସମ୍ଭାବନା ନାହିଁ । ଅତଏବ ସେହି ଆତ୍ମା ଯାହା ପ୍ରତି ପ୍ରସନ୍ନ ହୁଅନ୍ତି, ତାହା ନିକଟରେ ଆତ୍ମା ସ୍ୱରୂପ ପ୍ରକାଶ କରନ୍ତି ।'[1] କିନ୍ତୁ ଏଠାରେ ଆଶଙ୍କା ହୋଇପାରେ, ଏ ତ ପକ୍ଷପାତିତ୍ୱ ହେଲା । ସେଥିପାଇଁ ନିମ୍ନଲିଖିତ ବାକ୍ୟଗୁଡ଼ିକ ଏଥିସଙ୍ଗରେ ଲିଖାହୋଇଛି । 'ଯେଉଁମାନେ ଅସତ୍କର୍ମକାରୀ ଓ ଯେଉଁମାନଙ୍କର ମନ ଶାନ୍ତ ନୁହେଁ, ସେମାନେ କଦାପି ଏହାଙ୍କୁ ଲାଭ କରିପାରନ୍ତି ନାହିଁ ।'[2] 'କେବଳ ଯେଉଁ-ମାନଙ୍କର ହୃଦୟ ପବିତ୍ର, ଯେଉଁମାନଙ୍କର କାର୍ଯ୍ୟ ପବିତ୍ର, ଯେଉଁମାନଙ୍କର ଇନ୍ଦ୍ରିୟଗଣ ସଂଯତ, ସେହିମାନଙ୍କ ନିକଟରେ ସେହି ଆତ୍ମା ପ୍ରକାଶିତ ହୁଅନ୍ତି ।'[3]

ଆତ୍ମା ସମ୍ବନ୍ଧରେ ଗୋଟିଏ ସୁନ୍ଦର ଉପମା ଦିଆହୋଇଛି । ଆତ୍ମାକୁ ରଥୀ, ଶରୀରକୁ ରଥ, ବୁଦ୍ଧିକୁ ସାରଥି, ମନକୁ ରଶ୍ମି ଏବଂ ଇନ୍ଦ୍ରିୟମାନଙ୍କୁ ଅଶ୍ୱ ବୋଲି ଜାଣିବାକୁ ହେବ । ଯେଉଁ ରଥରେ ଅଶ୍ୱଗଣ ଉତ୍ତମରୂପେ ସଂଯତ ହୋଇ-ଥାଆନ୍ତି, ଯେଉଁ ରଥର ରଶ୍ମି ଦୃଢ଼ ଥାଏ ଓ ସାରଥିର ହସ୍ତରେ ଦୃଢ଼ଭାବରେ ଧୃତ ଥାଏ, ସେହି ରଥ ବିଷ୍ଣୁଙ୍କର ସେହି ପରମପଦରେ ପହଞ୍ଚିପାରେ; କିନ୍ତୁ ଯେଉଁ ରଥରେ ଇନ୍ଦ୍ରିୟରୂପକ ଅଶ୍ୱଗଣ ସଂଯତ ନ ଥାନ୍ତି, ମନରୂପକ ରଶ୍ମି ମଧ୍ୟ ଦୃଢ଼ଭାବରେ

[1] କଠ ଉପ., ୧।୨।୨୩
[2] କଠ ଉପ., ୧।୨।୨୪
[3] କଠ ଉପ., ୧।୩।୮

ସଂଯତ ନ ଥାଏ, ସେହି ରଥ ଅବଶେଷରେ ବିନାଶଦଶା ପ୍ରାପ୍ତ ହୁଏ ।[୧] ସକଳ ପ୍ରାଣୀ ମଧ୍ୟରେ ଅବସ୍ଥିତ ଆତ୍ମା ଚକ୍ଷୁ ଅଥବା ଅନ୍ୟ କୌଣସି ଇନ୍ଦ୍ରିୟ ନିକଟରେ ପ୍ରକାଶିତ ହୁଅନ୍ତି ନାହିଁ; କିନ୍ତୁ ଯେଉଁମାନଙ୍କର ମନ ପବିତ୍ର ହୋଇଛି, ସେମାନେ ତାହାଙ୍କୁ ଦେଖିବାକୁ ପାଆନ୍ତି ।[୨] ଯେ ଶବ୍ଦ ସ୍ପର୍ଶ ରୂପ ରସ ଗନ୍ଧର ଅତୀତ, ଯେ ଅବ୍ୟୟ, ଯାହାଙ୍କର ଆଦି ଅନ୍ତ ନାହିଁ, ଯେ ପ୍ରକୃତିର ଅତୀତ, ଅପରିଣାମୀ, ତାହାଙ୍କୁ ଯେ ଉପଲବ୍ଧି କରନ୍ତି, ସେ ମୃତ୍ୟୁ-ମୁଖରୁ ମୁକ୍ତ ହୁଅନ୍ତି ।[୩] କିନ୍ତୁ ତାହାଙ୍କୁ ଉପଲବ୍ଧି କରିବା ବଡ଼ କଠିନ—ଏହି ପଥ ଶାଣିତ କ୍ଷୁରଧାର ପରି ଦୁର୍ଗମ । ପଥ ବଡ଼ ଦୀର୍ଘ ଓ ବିପଦସଙ୍କୁଳ, କିନ୍ତୁ ନିରାଶ ହୁଅ ନାହିଁ, ଦୃଢ଼ଭାବରେ ଗମନ କର । ଉଠ, ଜାଗ ଏବଂ ଯେପର୍ଯ୍ୟନ୍ତ ସେହି ଚରମ ଲକ୍ଷ୍ୟ ସ୍ଥଳରେ ପହଞ୍ଚି ନ ପାରିଛ, ସେପର୍ଯ୍ୟନ୍ତ ନିବୃତ୍ତ ହୁଅ ନାହିଁ ।[୪]

ବର୍ତ୍ତମାନ ମୁଁ ଦେଖୁଅଛୁ, ସମୁଦାୟ ଉପନିଷଦ୍ ଭିତରେ ପ୍ରଧାନ କଥା ଏହି 'ଅପରୋକ୍ଷାନୁଭୂତି' । ଏହି ସମ୍ବନ୍ଧରେ ମନରେ ସମୟେ ସମୟେ ନାନା ପ୍ରଶ୍ନ ଉଠେ—ବିଶେଷତଃ ଆଧୁନିକ ବ୍ୟକ୍ତି ଏହାର ଉପକାରିତା ସମ୍ବନ୍ଧରେ ପ୍ରଶ୍ନ କରିବେ —ଆଉ ମଧ୍ୟ ନାନା ସନ୍ଦେହ ଆସିବ, କିନ୍ତୁ ସବୁ କ୍ଷେତ୍ରରେ ଦେଖିବା, ଆମେମାନେ ଆମମାନଙ୍କର ପୂର୍ବ ସଂସ୍କାରଦ୍ୱାରା ଚାଳିତ ହେଉଛୁଁ । ଆମମାନଙ୍କର ମନରେ ଏହି ପୂର୍ବ ସଂସ୍କାରର ଅତିଶୟ ପ୍ରଭାବ, ଯେଉଁମାନେ ବାଲ୍ୟକାଳରୁ କେବଳ ସଗୁଣ ଈଶ୍ୱରଙ୍କର ଏବଂ ମନର ବ୍ୟକ୍ତିଗତ ତତ୍ତ୍ୱକଥା ଶୁଣୁଛନ୍ତି, ସେମାନଙ୍କ ପକ୍ଷରେ ପୂର୍ବୋକ୍ତ କଥାଗୁଡ଼ିକ ଅବଶ୍ୟ ଅତି କର୍କଶ ଲାଗିବ; କିନ୍ତୁ ଯଦି ଆମେମାନେ ଏହା ଗ୍ରହଣ କରିବୁ, ଆଉ ଯଦି ଦୀର୍ଘକାଳ ଧରି ଏହାର ଚିନ୍ତା କରିବୁ, ତେବେ ସେଗୁଡ଼ିକ ଆମମାନଙ୍କ ପ୍ରାଣରେ ଗୁନ୍ଥି ହୋଇଯିବ, ଆମେମାନେ ଏହିସବୁ କଥା ଶୁଣିଲେ ଭୟ ପାଇବୁ ନାହିଁ । ପ୍ରଧାନ ପ୍ରଶ୍ନ ଅବଶ୍ୟ ଦର୍ଶନର ଉପକାରିତା, କାର୍ଯ୍ୟକାରିତା ସମ୍ବନ୍ଧରେ । ଏହାର କେବଳ ଗୋଟିଏ ଉତ୍ତର ଦିଆଯାଇପାରେ । ଯଦି ପ୍ରୟୋଜନ-ବାଦୀଙ୍କ ମତରେ ସୁଖର ଅନ୍ୱେଷଣ କରିବା ଅନେକଙ୍କ ପକ୍ଷରେ କର୍ତ୍ତବ୍ୟ ହୁଏ, ତେବେ ଆଧ୍ୟାତ୍ମିକ ଚିନ୍ତାରେ ଯାହାଙ୍କର ସୁଖ, ସେମାନେ କାହିଁକି ଆଧ୍ୟାତ୍ମିକ ଚିନ୍ତାର ସୁଖ ଅନ୍ୱେଷଣ ନ କରିବେ ? ଅନେକେ ବିଷୟଭୋଗରେ ସୁଖୀ ହୁଅନ୍ତି ବୋଲି ବିଷୟସୁଖର ଅନ୍ୱେଷଣ କରନ୍ତି; କିନ୍ତୁ ଆହୁରି ଏପରି ଅନେକ ଲୋକ ଥାଇପାରନ୍ତି, ଯେଉଁମାନେ ଉଚ୍ଚତର ଭୋଗର ଅନ୍ୱେଷଣ କରନ୍ତି । କୁକୁର ସୁଖୀ କେବଳ ଖାଇବା ପିଇବାରେ । କୌଣସି ବୈଜ୍ଞାନିକ ସମସ୍ତ ବିଷୟସୁଖରେ ଜଳାଞ୍ଜଳି ଦେଇ କେବଳ

---

[୧] କଠ ଉପ., ୧।୩।୩–୯

[୨] କଠ ଉପ., ୧।୩।୧୨

[୩] କଠ ଉପ., ୧।୩।୧୫

[୪] କଠ ଉପ., ୧।୩।୧୪

କତିପୟ ତାଙ୍କ ଅବସ୍ଥାନ ଜାଣିବା ସକାଶେ ହୁଏତ କୌଣସି ପର୍ବତଚୂଡ଼ାରେ ବାସ କରୁଛନ୍ତି; ସେ ଯେ ଅପୂର୍ବ ସୁଖର ଆସ୍ୱାଦ ଲାଭ କରୁଛନ୍ତି, କୁକୁର ତାହା ବୁଝିବାକୁ ଅକ୍ଷମ । କୁକୁର ସେମାନଙ୍କୁ ଦେଖି ହାସ୍ୟ କରିବ ଓ ସେମାନଙ୍କୁ ପାଗଳ ବୋଲି କହିବ । ହୁଏତ ବୈଜ୍ଞାନିକ ବିଗ୍ରହର ବିବାଦ କରିବା ପାଇଁ ସଙ୍ଗତ ନାହିଁ । ସେ ହୁଏତ କେତୋଟି ଶ୍ରେଷ୍ଠ ରୁଟି ଓ ଟିକିଏ ପାଣି ଖାଇ ପର୍ବତଶିଖରରେ ବସିଛନ୍ତି; କିନ୍ତୁ ବୈଜ୍ଞାନିକ କହିବେ, 'ଭାଇ କୁକୁର, ତୁମର ସୁଖ କେବଳ ଇନ୍ଦ୍ରିୟରେ ଆବଦ୍ଧ, ତୁମେ ଏହି ସୁଖ ଭୋଗ କରୁଛ । ତୁମେ ଏହାଠାରୁ ଉଚ୍ଚତର ସୁଖ କିଛି ଜାଣ ନାହିଁ; କିନ୍ତୁ ମୋ ପକ୍ଷରେ ଏହା ସର୍ବାପେକ୍ଷା ସୁଖକର । ଆଉ ଯଦି ତୁମର ନିଜ ଭାବରେ ସୁଖ ଅନ୍ୱେଷଣ କରିବାର ଅଧିକାର ଥାଏ, ତେବେ ମୋର ବି ଅଛି ।' ଏହା ଆମମାନଙ୍କର ଏକ ଭ୍ରମ ଯେ, ଆମେମାନେ ସମୁଦାୟ ଜଗତକୁ ନିଜ ଭାବରେ ପରିଚାଳନା କରିବାକୁ ଚାହୁଁ । ଆମେମାନେ ଆମମାନଙ୍କର ମନକୁ ସମୁଦାୟ ଜଗତର ମାପକାଠି କରିବାକୁ ଚାହୁଁ । ତୁମ ପକ୍ଷରେ ଇନ୍ଦ୍ରିୟର ବିଷୟଗୁଡ଼ିକ ସର୍ବାପେକ୍ଷା ଅଧିକ ସୁଖକର; କିନ୍ତୁ ମୋର ସୁଖ ମଧ୍ୟ ଯେ ତଦ୍ଭାବ ହେବ, ତାହାର କୌଣସି ଅର୍ଥ ନାହିଁ । ଯେତେବେଳେ ତୁମେ ଏହି ବିଷୟ ନେଇ ଜିଦ୍ କର, ସେତେବେଳେ ତୁମ ସାଙ୍ଗରେ ମୋର ମତଭେଦ ହୁଏ । ସାଂସାରିକ ପ୍ରୟୋଜନବାଦୀଙ୍କ* ସହିତ ଧର୍ମବାଦୀର ଏହି ପ୍ରଭେଦ । ସାଂସାରିକ ପ୍ରୟୋଜନବାଦୀ କହନ୍ତି, 'ଦେଖ ! ମୁଁ କେମିତି ସୁଖୀ ! ମୋର ଯଥେଷ୍ଟ ଟଙ୍କା ଅଛି, କିନ୍ତୁ ଏ ସମସ୍ତ ଧର୍ମତତ୍ତ୍ୱ ନେଇ ମୁଁ ମୁଣ୍ଡ ଖେଳାଉ ନାହିଁ । ଧର୍ମ ଅନୁସନ୍ଧାନର ଅତୀତ । ଏଗୁଡ଼ିକର ଅନ୍ୱେଷଣରେ ନ ଯାଇ ମୁଁ ବେଶ୍ ସୁଖରେ ଅଛି ।' ବେଶ୍ ଭଲ କଥା । ପ୍ରୟୋଜନବାଦୀଗଣ, ତୁମେମାନେ ଯେପରି ସୁଖରେ ଥାଅ, ତାହା ଭଲ, କିନ୍ତୁ ଏହି ସଂସାର ବଡ଼ ଭୟଙ୍କର । ଯଦି କୌଣସି ବ୍ୟକ୍ତି ତାହାର ଭାଇର କୌଣସି ଅନିଷ୍ଟ ନ କରି ସୁଖଲାଭ କରିପାରେ, ଈଶ୍ୱର ତାହାର ଉନ୍ନତି କରନ୍ତୁ; କିନ୍ତୁ ଯେପରି ସେହି ବ୍ୟକ୍ତି ଆସି ଆମମାନଙ୍କୁ ତାହାର ମତାନୁଯାୟୀ କାର୍ଯ୍ୟ କରିବାକୁ ପରାମର୍ଶ ଦେଇ ନ କହେ, 'ତୁମେ ଯେବେ ଏହିଭଳି ନ କର, ତେବେ ତୁମେ ମୂର୍ଖ ।' ମୁଁ କହେ, 'ତୁମେ ଭ୍ରାନ୍ତ, କାରଣ, ତୁମ ପକ୍ଷରେ ଯାହା ସୁଖକର, ତାହା ଯଦି ମତେ କରିବାକୁ ହୁଏ, ମୁଁ ପ୍ରାଣଧାରଣ କରିବାକୁ ସମର୍ଥ ହେବି ନାହିଁ । ଯଦି ମତେ କେତେଖଣ୍ଡ ସୁନା ସକାଶେ ଦୌଡ଼ିବାକୁ ହୁଏ, ତେବେ ମୋର ଜୀବନଧାରଣ କରିବା ବୃଥା ହେବ ।' ଧାର୍ମିକ ବ୍ୟକ୍ତି ପ୍ରୟୋଜନବାଦୀଙ୍କୁ ଏହିମାତ୍ର ଉତ୍ତର ଦିଅନ୍ତି । ବାସ୍ତବିକ କଥା । ଯେଉଁମାନଙ୍କର ଏହି ନିମ୍ନତର ଭୋଗବାସନା ଶେଷ ହୋଇଛି, ସେମାନଙ୍କ ପକ୍ଷରେ ହିଁ ଧର୍ମାଚରଣ ସମ୍ଭବ । ଆମମାନଙ୍କୁ ଭୋଗ କରି ଠିକ ଶିଖିବାକୁ ହେବ; ଯେତେଦୂର ଆମ-

---

* Utilitarian

ମାନଙ୍କର ଦୌଡ଼, ଦୌଡ଼ାଇ ନେବାକୁ ହେବ । ଯେତେବେଳେ ଆମମାନଙ୍କର ଇହସଂସାରର ଦୌଡ଼ ନିବୃତ୍ତ ହୁଏ, ସେତେବେଳେ ଆମମାନଙ୍କର ଅକ୍ଷି ସମକ୍ଷରେ ପରଲୋକ ପ୍ରତିଭାତ ହୋଇଥାଏ ।

ଏ ବିଷୟରେ ଆଉ ଗୋଟିଏ ବିରାଟ ପ୍ରଶ୍ନ ମୋର ମନରେ ଉଠୁଛି । ଏହା ଶୁଣିବାକୁ ଖୁବ୍ କର୍କଶ ସତ୍ୟ, କିନ୍ତୁ ଏହା ବାସ୍ତବିକ ସତ କଥା । ଏହି ବିଷୟ-ବାସନା କେବେ କେବେ ଏଉ ଏକ ରୂପ ଧାରଣ କରି ଉଦିତ ହୁଏ—ସେଥିରେ ଅତ୍ୟନ୍ତ ବିପଦାଶଙ୍କା ରହିଛି, କିନ୍ତୁ ତାହା ବଡ଼ ଆପାତରମଣୀୟ । ଏ କଥା ତୁମେ ସବୁବେଳେ ଶୁଣିବାକୁ ପାଇବ । ଅତି ପ୍ରାଚୀନ କାଳରେ ମଧ୍ୟ ଏହି ଧାରଣା ଥିଲା—ଏହା ପ୍ରତ୍ୟେକ ଧର୍ମବିଶ୍ୱାସର ଅନ୍ତର୍ଗତ । ତାହା ଏହି ଯେ, ଏପରି ଏକ ସମୟ ଆସିବ, ଯେତେବେଳେ ଜଗତର ସବୁ ଦୁଃଖ ଚାଲିଯିବ, କେବଳ ଏହାର ସୁଖ-ଗୁଡ଼ିକ ଅବଶିଷ୍ଟ ରହିବ, ଆଉ ପୃଥିବୀ ସ୍ୱର୍ଗରାଜ୍ୟରେ ପରିଣତ ହୋଇଯିବ । ମୁଁ ଏ କଥା ବିଶ୍ୱାସ କରେ ନାହିଁ । ଆମମାନଙ୍କର ପୃଥିବୀ ଯେପରି, ତାହା ସେହିପରି ରହିବ । ଅବଶ୍ୟ ଏଭଳି କଥା କହିବା ନିଶ୍ଚୟ ଖୁବ୍ ମାରାତ୍ମକ, କିନ୍ତୁ ଏ କଥା ନ କହି ତ ଆଉ ପଥ ଦେଖୁନାହିଁ । ଜଗତର ଦୁଃଖ ଦେହର ପୁରୁଣା ବାତରୋଗ ଭଳି । ଦେହର ଗୋଟିଏ ଅଙ୍ଗରୁ ବାତକୁ ଦୂର କର, ତାହା ଯାଇ ତୁମ ଗୋଡ଼ରେ ଗଡ଼ିବ, ଗୋଡ଼ରୁ ବାତ ଭଲ ହୋଇଗଲେ ଅନ୍ୟ ସ୍ଥାନରେ ଦେଖା ଦେବ । ଯାହା କିଛି କରନା କାହିଁକି ତାହା କୌଣସି ଭାବରେ ଯିବ ନାହିଁ । କେଉଁଠି ନା କେଉଁଠି ରହିବ । ଦୁଃଖ ମଧ୍ୟ ସେହିଭଳି । ଅତି ପ୍ରାଚୀନ କାଳରେ ଲୋକେ ବନରେ ବାସ କରୁଥିଲେ ଏବଂ ପରସ୍ପରକୁ ମାରି ଖାଉଥିଲେ । ବର୍ତ୍ତମାନ କାଳରେ ପରସ୍ପର ପରସ୍ପରର ମାଂସ ଖାଆନ୍ତି ନାହିଁ ସତ୍ୟ, ମାତ୍ର ପରସ୍ପରକୁ ପ୍ରବଞ୍ଚନା କରିଥାଆନ୍ତି । ଲୋକେ ପ୍ରତାରଣା କରି ନଗରକୁ ନଗର, ଦେଶକୁ ଦେଶ ଧ୍ୱଂସ କରି ପକାଉଛନ୍ତି । ଅବଶ୍ୟ ଏହା ବେଶୀ ଉନ୍ନତିର ପରିଚାୟକ ନୁହେଁ । ଆଉ ଯାହାକୁ ତୁମେମାନେ ଉନ୍ନତି କହ, ତାହା ମଧ୍ୟ ମୁଁ ଭଲକରି ବୁଝିପାରେ ନାହିଁ; କାରଣ ତାହା ତ ବାସନାର କ୍ରମାଗତ ବୃଦ୍ଧି ମାତ୍ର । ଯଦି ମୋର କୌଣସି ବିଷୟ ଅତି ସୁସ୍ପଷ୍ଟରୂପେ ବୋଧଗମ୍ୟ ହୁଏ, ତାହା ଏହି ଯେ—ବାସନା କେବଳ ଦୁଃଖ ହିଁ ଆଣେ—ତାହା ତ ଭିକ୍ଷୁକର ଅବସ୍ଥା ମାତ୍ର । ସର୍ବଦା ହିଁ କିଛି ପାଇବା ପାଇଁ ବାସନା—କୌଣସି ଦୋକାନକୁ ଯାଇ କିଛି ଦେଖି ତୃପ୍ତ ହୋଇପାରେ ନାହିଁ—ଦେଖିଲମାତ୍ରକେ କିଛି ପାଇବାକୁ ଇଚ୍ଛା ହୁଏ । କେବଳ ପାଇବାର ଇଚ୍ଛା—ପାଇବାର ଇଚ୍ଛା—ସବୁ ଜିନିଷ ପାଇବାର ଇଚ୍ଛା । ସମୁଦାୟ ଜୀବନଟି କେବଳ ତୃଷ୍ଣାଗ୍ରସ୍ତ ଯାଚକର ଅବସ୍ଥା—ବାସନାର ଦୁରପନେୟ ତୃଷ୍ଣା । ଯଦି ବାସନା ପୂରଣ କରିବାର ଶକ୍ତି ଯୋଗ-ଖଡ଼ର ନିୟମାନୁସାରେ ବର୍ଦ୍ଧିତ ହୁଏ, ତେବେ ବାସନାର ଶକ୍ତି ଗୁଣଖଡ଼ର ନିୟମାନୁସାରେ ବର୍ଦ୍ଧିତ ହୋଇଥାଏ । ଅନ୍ତତଃ ଜଗତର ସମୁଦାୟ ସୁଖ-ଦୁଃଖର

ସମଷ୍ଟି ସର୍ବଦା ସମାନ । ସମୁଦ୍ରରେ ଯଦି ଗୋଟିଏ ତରଙ୍ଗ କେଉଁଠାରେ ଉତ୍ଥିତ ହେଲା, ଅନ୍ୟ କେଉଁଠାରେ ନିଶ୍ଚୟ ଗୋଟିଏ ଗର୍ତ୍ତ ଉତ୍ପନ୍ନ ହେବ । ଯଦି କୌଣସି ମନୁଷ୍ୟର ସୁଖ ଉତ୍ପନ୍ନ ହୁଏ, ତେବେ ନିଶ୍ଚୟ ଅପର କୌଣସି ମନୁଷ୍ୟର ଅଥବା କୌଣସି ଜୀବଜନ୍ତୁର ଦୁଃଖ ଉତ୍ପନ୍ନ ହୋଇଥାଏ । ମନୁଷ୍ୟର ସଂଖ୍ୟା ବଢ଼ୁଛି—ପଶୁର ସଂଖ୍ୟା ହ୍ରାସ ହେଉଛି । ଆମେମାନେ ସେମାନଙ୍କୁ ବିନାଶ କରି ସେମାନଙ୍କର ଭୂମି କାଢ଼ି ନେଉଛୁ—ଆମେମାନେ ସେମାନଙ୍କର ସମୁଦାୟ ଖାଦ୍ୟଦ୍ରବ୍ୟ କାଢ଼ି ନେଉଛୁ । ତେବେ କିପରି କହିବ—ସୁଖ କ୍ରମାଗତ ବଢ଼ୁଛି ? ପ୍ରବଳ-ଜାତି ଦୁର୍ବଳ ଜାତିକୁ ଗ୍ରାସ କରୁଛି; କିନ୍ତୁ ତୁମେମାନେ କଅଣ ମନେକର, ପ୍ରବଳଜାତି ତଦ୍ୱାରା ବେଶୀ ସୁଖୀ ହେବ ? ନା, ସେମାନେ ପୁଣି ପରସ୍ପରକୁ ସଂହାର କରିବେ । କିପରି ସୁଖର ଯୁଗ ଆସିବ, ତାହା ତ ମୁଁ ବୁଝିପାରୁ ନାହିଁ । ଏ ତ ପ୍ରତ୍ୟକ୍ଷର ବିଷୟ । ଆନୁମାନିକ ବିଚାରଦ୍ୱାରା ମୁଁ ଦେଖିପାରୁଛି, ଏହା କଦାପି ହେବାର ନୁହେଁ ।

ପୂର୍ଣ୍ଣତା ସର୍ବଦା ହିଁ ଅନନ୍ତ । ଆମେମାନେ ବାସ୍ତବିକ ସେହି ଅନନ୍ତସ୍ୱରୂପ—ସେହି ଅନନ୍ତସ୍ୱରୂପକୁ ବ୍ୟକ୍ତ କରିବାକୁ ଚେଷ୍ଟା କରୁଛୁଁ ମାତ୍ର । ତୁମେ ଆମେ ସମସ୍ତେ ସେହି ଅନନ୍ତ-ସ୍ୱରୂପକୁ ବ୍ୟକ୍ତ କରିବା ପାଇଁ ଚେଷ୍ଟା କରୁଛୁଁ । ଏପର୍ଯ୍ୟନ୍ତ ଯେଉଁସବୁ କଥା ହେଲା, ତାହା ବେଶ୍ ଭଲ କଥା; କିନ୍ତୁ ଏଥିରୁ କେତେକଗୁଡ଼ିଏ ଜର୍ମାନ ଦାର୍ଶନିକ ଏକ ଅଦ୍ଭୁତ ଦାର୍ଶନିକ ସିଦ୍ଧାନ୍ତ ବାହାର କରିବାକୁ ଚେଷ୍ଟା କରିଛନ୍ତି—ତାହା ଏହି ଯେ, ଏହିରୂପେ ଅନନ୍ତ କ୍ରମଶଃ ଅଧିକରୁ ଅଧିକତର ବ୍ୟକ୍ତ ହେଉଥିବେ, ଯେତେଦିନ ପର୍ଯ୍ୟନ୍ତ ଆମେମାନେ ପୂର୍ଣ୍ଣ ବ୍ୟକ୍ତ ନ ହେବା, ଯେତେଦିନ ପର୍ଯ୍ୟନ୍ତ ଆମେମାନେ ସମସ୍ତେ ପୂର୍ଣ୍ଣ ମାନବ ହୋଇ ନ ପାରିବା । ତେବେ ପୂର୍ଣ୍ଣ ଅଭିବ୍ୟକ୍ତିର ଅର୍ଥ କ'ଣ ? ପୂର୍ଣ୍ଣତାର ଅର୍ଥ ଅନନ୍ତ, ଆଉ ଅଭିବ୍ୟକ୍ତିର ଅର୍ଥ ସୀମା—ଅତଏବ ଏହାର ତାତ୍ପର୍ଯ୍ୟ ଏହି ଯେ, ଆମେମାନେ ଅସୀମଭାବରେ ସସୀମ ହେବା, ଏ କଥା ଅସମ୍ବଦ୍ଧ ପ୍ରଳାପମାତ୍ର । ଶିଶୁଗଣ ଏଥିରେ ସନ୍ତୁଷ୍ଟ ହୋଇପାରନ୍ତି, ପିଲା-ମାନଙ୍କୁ ସନ୍ତୁଷ୍ଟ କରିବା ପାଇଁ, ସେମାନଙ୍କୁ ଖେଳର ଉପକରଣସ୍ୱରୂପ ଧର୍ମଟିଏ ଦେବା ପାଇଁ ଏହା ବେଶ୍ ଉପଯୋଗୀ; କିନ୍ତୁ ଏହାଦ୍ୱାରା ସେମାନଙ୍କୁ ମିଥ୍ୟାବିଷରେ ଜର୍ଜ୍ଜରିତ କରାହୁଏ—ଧର୍ମ ପକ୍ଷରେ ଏହା ମହାନ୍ କ୍ଷତିକାରକ । ଆମମାନଙ୍କର ଜାଣିବା ଉଚିତ, ଜଗତ ଏବଂ ମାନବ—ଈଶ୍ୱରଙ୍କର ଅବନତ ଭାବମାତ୍ର । ତୁମମାନଙ୍କର ବାଇବେଲରେ ଲେଖା ଅଛି—ଆଦମ୍ ପ୍ରଥମେ ପୂର୍ଣ୍ଣମାନବ ଥିଲେ, ପରେ ଭ୍ରଷ୍ଟ ହୋଇଥିଲେ । ଏପରି କୌଣସି ଧର୍ମ ନାହିଁ, ଯାହା କହେ ନାହିଁ ଯେ ମାନବ ପୂର୍ବାବସ୍ଥାଠାରୁ ହୀନାବସ୍ଥାରେ ପତିତ ହୋଇଛି । ଆମେମାନେ ପଶୁ ହୋଇ ପଡ଼ି ରହିଛୁ । ବର୍ତ୍ତମାନ ଆମେମାନେ ପୁଣି ଉନ୍ନତିର ପଥରେ ଯାଉଛୁ, ଏହି ବନ୍ଧନରୁ ବାହାର ହିବାର ଚେଷ୍ଟା କରୁଛୁ; କିନ୍ତୁ ଆମେମାନେ କଦାପି ଅନନ୍ତଙ୍କୁ ଏଠାରେ ଅଭିବ୍ୟକ୍ତ କରିପାରିବୁ ନାହିଁ । ଆମେମାନେ ପ୍ରାଣପଣେ ଚେଷ୍ଟା କରିପାରୁ; କିନ୍ତୁ

ଦେଖିବୁ—ଏହା ଅସମ୍ଭବ । ସେତେବେଳେ ଏପରି ଏକ ସମୟ ଆସିବ, ଯେତେବେଳେ ଆମେମାନେ ଦେଖିବୁ ଯେ, ଯେତେଦିନ ଆମେମାନେ ଇନ୍ଦ୍ରିୟଦ୍ୱାରା ଆବଦ୍ଧ, ସେତେଦିନ ପର୍ଯ୍ୟନ୍ତ ପୂର୍ଣ୍ଣତା ଲାଭ ଅସମ୍ଭବ । ସେତେବେଳେ ଆମେମାନେ ଯେଉଁ ଦିଗରେ ଅଗ୍ରସର ହୋଇଥିଲୁ, ସେହିଦିଗରୁ ଫେରି ମୂଳ ଅବସ୍ଥା—ଅନନ୍ତ ଆଡ଼କୁ ଯାତ୍ରା ଆରମ୍ଭ କରିବୁ ।

ଏହାର ନାମ ତ୍ୟାଗ । ଆମେମାନେ ଯେଉଁ ଜାଲ ଭିତରେ ପଡ଼ିଛୁ, ସେଥିରୁ ଆମକୁ ବାହାରି ଯିବାକୁ ହେବ—ସେତେବେଳେ ହିଁ ନୀତି ଓ ଦୟାଧର୍ମ ଆରମ୍ଭ ହେବ । ସମୁଦାୟ ନୈତିକ ଅନୁଶାସନର ମୂଳମନ୍ତ୍ର କଅଣ ? 'ନାହଂ ନାହଂ, ତୁହୁଁ ତୁହୁଁ ।' ଆମମାନଙ୍କର ପଶ୍ଚାଦ୍ଦେଶରେ ଯେଉଁ ଅନନ୍ତ ରହିଛନ୍ତି, ସେ ନିଜକୁ ବହିର୍ଜଗତରେ ବ୍ୟକ୍ତ କରିବାକୁ ଯାଇ ଏହି 'ଅହଂ'ର ଆକାର ଧାରଣ କରିଛନ୍ତି । ସେହି ଅନନ୍ତରୁ ଏହି କ୍ଷୁଦ୍ର 'ମୁଁ' ଓ 'ତୁମେ'ର ଉତ୍ପତ୍ତି । ଅଭିବ୍ୟକ୍ତିର ଚେଷ୍ଟାରେ ଏହାର ଉତ୍ପତ୍ତି । ବର୍ତ୍ତମାନ ଏହି 'ମୁଁ'କୁ ଆହୁରି ପଛକୁ ହଟି ଯାଇ ତାହାର ନିଜ-ସ୍ୱରୂପ ଅନନ୍ତରେ ମିଶିବାକୁ ହେବ । ସେ ବୁଝିବେ ଯେ, ଏତେ ଦିନ ସେ ବୃଥା ଚେଷ୍ଟା କରୁଥିଲେ; ସେ ନିଜକୁ ଚକ୍ରରେ ପକାଇ ଦେଇଛନ୍ତି—ତାଙ୍କୁ ଏହି ଚକ୍ରରୁ ବାହାରିଯିବାକୁ ହେବ । ପ୍ରତିଦିନ ଏହା ଆମମାନଙ୍କର ପ୍ରତ୍ୟକ୍ଷ ହେଉଛି । ଯେତେଥର ତୁମେ କହ—'ନାହଂ ନାହଂ' 'ତୁଁହି, ତୁଁହି', ସେତେଥର ତୁମେ ଫେରିବାକୁ ଚେଷ୍ଟା କର, ଏବଂ ଯେତେଥର ତୁମେ ଅନନ୍ତଙ୍କୁ ଏଠାରେ ଅଭିବ୍ୟକ୍ତ କରିବାକୁ ଚେଷ୍ଟା କର, ସେତେଥର ତୁମକୁ କହିବାକୁ ହୁଏ—'ଅହଂ, ଅହଂ, ନତ୍ୱଂ' । ସେଥିରୁ ଜଗତର ପ୍ରତିଦ୍ୱନ୍ଦ୍ୱିତା, ସଂଘର୍ଷ ଓ ଅନିଷ୍ଟର ଉତ୍ପତ୍ତି; କିନ୍ତୁ ଅବଶେଷରେ ତ୍ୟାଗ—ଅନନ୍ତ ତ୍ୟାଗ ଆରମ୍ଭ ହେବ ହିଁ ହେବ । ମୁଁ ମରିଯିବ, ମୋର ଜୀବନ ସକାଶେ ସେତେବେଳେ କିଏ ଯତ୍ନ କରିବ ? ଏଠାରେ ଥାଇ ଏହି ଜୀବନ ସମ୍ଭୋଗ କରିବାର ଯେଉଁ ସମସ୍ତ ବୃଥା ବାସନା, ଆହୁରି ତା'ପରେ ସ୍ୱର୍ଗକୁ ଯାଇ ଏହିରୂପେ ରହିବାର ବାସନା—ସର୍ବଦା ଇନ୍ଦ୍ରିୟ ଓ ଇନ୍ଦ୍ରିୟସୁଖରେ ଲିପ୍ତ ରହିବାର ବାସନା ହିଁ ମୃତ୍ୟୁକୁ ଆନୟନ କରେ ।

ଯଦି ଆମେମାନେ ପଶୁମାନଙ୍କର ଉନ୍ନତ ଅବସ୍ଥା ମାତ୍ର ହେଉ, ତେବେ ଯେଉଁ ଯୁକ୍ତିରେ ଏହି ସିଦ୍ଧାନ୍ତ ହେଲା, ସେଥିରୁ ଏହା ମଧ୍ୟ ସିଦ୍ଧାନ୍ତ ହୋଇପାରେ ଯେ, ପଶୁଗଣ ମନୁଷ୍ୟର ଅବନତ ଅବସ୍ଥା ମାତ୍ର; ତୁମେ କିପରି ଜାଣିଲ ଯେ ତାହା ନୁହେଁ ? ତୁମେମାନେ ଜାଣ, କ୍ରମ-ବିକାଶବାଦର ପ୍ରମାଣ କେବଳ ଏହା ଯେ, ନିମ୍ନତମଠାରୁ ଉଚ୍ଚତମ ପ୍ରାଣୀ ପର୍ଯ୍ୟନ୍ତ ସମସ୍ତଙ୍କ ଦେହ ପରସ୍ପର ସଦୃଶ; କିନ୍ତୁ ଏଥିରୁ ତୁମେ କିପରି ସିଦ୍ଧାନ୍ତ କରିବ ଯେ ନିମ୍ନତମ ପ୍ରାଣୀଠାରୁ କ୍ରମଶଃ ଉଚ୍ଚତମ ପ୍ରାଣୀ ଜନ୍ମିଛି ଏବଂ ଉଚ୍ଚତମରୁ କ୍ରମଶଃ ନିମ୍ନତର ଜାତ ହୋଇ ନାହିଁ ? ଦୁଇଦିଗରେ ସମାନ ଯୁକ୍ତି—ଆଉ ଯଦି ଏହି ମତବାଦରେ ବାସ୍ତବିକ କିଛି ସତ୍ୟତା ଥାଏ,

ତେବେ ମୋର ବିଶ୍ୱାସ ଏହି ଯେ, ଥରେ ନିମ୍ନରୁ ଉଚ୍ଚକୁ ଓ ପୁଣି ଥରେ ଉଚ୍ଚରୁ ନିମ୍ନକୁ ଯାଉଛି—କ୍ରମାଗତ ଏହି ଦେହ-ଶ୍ରେଣୀର ଆବର୍ତ୍ତନ ହେଉଛି । କ୍ରମ-ସଙ୍କୋଚବାଦ ସ୍ୱୀକାର ନ କଲେ କ୍ରମବିକାଶବାଦ କିପରି ବା ସତ୍ୟ ହେବ ? ଯାହାହେଉ, ମୁଁ ଯାହା କହୁଥିଲି ଯେ ମନୁଷ୍ୟର କ୍ରମାଗତ ଅନନ୍ତ ଉନ୍ନତି ହୋଇ ପାରେ ନାହିଁ, ତାହା ଏଥିରୁ ଭଲରୂପେ ବୁଝାଗଲା ।

ଅବଶ୍ୟ 'ଅନନ୍ତ'—ଜଗତରେ ଅଭିବ୍ୟକ୍ତ ହୋଇପାରେ, ଯଦି ମତେ କେହି ତାହା ବୁଝାଇଦେଇପାରେ, ତେବେ ମୁଁ ବୁଝିବାକୁ ପ୍ରସ୍ତୁତ ଅଛି; କିନ୍ତୁ ଆମେ-ମାନେ କ୍ରମାଗତ ସରଳରେଖାରେ ଚାଲି ଉନ୍ନତି କରୁଛୁ, ଏ କଥା ମୁଁ ଆଦୌ ବିଶ୍ୱାସ କରେ ନାହିଁ; ଏହା ଅସମ୍ବନ୍ଧ ପ୍ରଳାପ ମାତ୍ର । ସରଳରେଖାରେ କୌଣସି ଗତି ହୋଇପାରେ ନାହିଁ । ଯଦି ତୁମେ ତୁମର ସମ୍ମୁଖ ଦିଗକୁ ଗୋଟିଏ ପଥର ନିକ୍ଷେପ କର ତେବେ ଏପରି ଏକ ସମୟ ଆସିବ, ଯେତେବେଳେ ଏହା ବୁଲି ବୃତ୍ତାକାରରେ ତୁମ ନିକଟକୁ ଫେରି ଆସିବ । ତୁମମାନେ କ'ଣ ଗଣିତର ସେହି ସ୍ୱତଃସିଦ୍ଧ ନିୟମ ପଢ଼ିନାହିଁ ଯେ, ସରଳରେଖା ଅନନ୍ତରୂପରେ ବର୍ଦ୍ଧିତ ହେଲେ ବୃତ୍ତାକାର ଧାରଣ କରେ ? ଅବଶ୍ୟ ଏହା ଏହିପରି ହେବ—ତେବେ ହୁଏତ ପଥରେ ଘୂରିବା ସମୟରେ ଟିକିଏ ଏପାଖ ସେପାଖ ହୋଇପାରେ । ଏହି କାରଣରୁ ମୁଁ ସର୍ବଦା ପ୍ରାଚୀନ ଧର୍ମସକଳର ମତ ଧରିଥାଏ । ମୁଁ ଦେଖେ—କି ଖ୍ରୀଷ୍ଟ, କି ବୁଦ୍ଧ, କି ବେଦାନ୍ତ, କି ବାଇବେଲ୍, ସମସ୍ତେ କହନ୍ତି : କେବଳ ଏହି ଅପୂର୍ଣ୍ଣ ଜଗତକୁ ତ୍ୟାଗ କରି ଆମେମାନେ ସମସ୍ତେ ଦିନେ ପୂର୍ଣ୍ଣତା ଲାଭ କରିବୁ । ଏହି ଜଗତ କିଛି ନୁହେଁ । ଖୁବ୍ ବେଶୀ, ଏହା ସେହି ସତ୍ୟର ଗୋଟିଏ ଭୟଙ୍କର ବିସଦୃଶ ଅନୁକୃତି—ଛାୟା ମାତ୍ର । ସକଳ ଅଜ୍ଞାନ ବ୍ୟକ୍ତି ଏହି ଇନ୍ଦ୍ରିୟସୁଖ ସମ୍ଭୋଗ କରିବା ସକାଶେ ଦଉଡ଼ୁଛନ୍ତି ।

ଇନ୍ଦ୍ରିୟରେ ଆସକ୍ତ ହେବା ଖୁବ୍ ସହଜ । ଆଉ ସହଜ—ଆମର ପ୍ରାଚୀନ ଅଭ୍ୟାସର ବଶବର୍ତ୍ତୀ ହୋଇ କେବଳ ଆହାର-ପାନରେ ମତ୍ତ ରହିବା; କିନ୍ତୁ ଆମମାନଙ୍କର ଆଧୁନିକ ଦାର୍ଶନିକମାନେ ଚେଷ୍ଟା କରନ୍ତି, ଏହି ସକଳ ସୁଖକର ଭାବ ନେଇ ତାହା ଉପରେ ଧର୍ମର ଛାପ ଦେବାକୁ; କିନ୍ତୁ ଏହି ମତ ସତ୍ୟ ନୁହେଁ । ଇନ୍ଦ୍ରିୟର ମୃତ୍ୟୁ ଅଛି—ଆମମାନଙ୍କୁ ମୃତ୍ୟୁର ଅତୀତ ହେବାକୁ ହେବ ! ମୃତ୍ୟୁ କଦାପି ସତ୍ୟ ନୁହଁ । ତ୍ୟାଗ ହିଁ ଆମମାନଙ୍କୁ ସତ୍ୟକୁ ନେଇଯିବ । ନୀତିର ଅର୍ଥ ହିଁ ତ୍ୟାଗ । ଆମମାନଙ୍କର ପ୍ରକୃତ ଜୀବନର ଭିତ୍ତିର ପ୍ରତି ଅଂଶ ହିଁ ତ୍ୟାଗ । ଆମେ-ମାନେ ଜୀବନର ସେହି ସେହି ମୁହୂର୍ତ୍ତରେ ବାସ୍ତବିକ ସାଧୁଭାବାପନ୍ନ ହେଉ ଓ ପ୍ରକୃତ ଜୀବନ ଯାପନ କରୁଁ, ଯେଉଁ ଯେଉଁ ମୁହୂର୍ତ୍ତରେ ଆମେମାନେ 'ମୁଁ'ର ଚିନ୍ତାରୁ ବିରତ ହେଉ । 'ମୁଁ'ର ଯେତେବେଳେ ବିନାଶ ହୁଏ—ଆମମାନଙ୍କର ଭିତରର 'ପ୍ରାଚୀନ ମନୁଷ୍ୟ' କ୍ଷୁଦ୍ର 'ମୁଁ'ର ମୃତ୍ୟୁ ହୁଏ—ସେତେବେଳେ ଆମେମାନେ

ସତ୍ୟରେ ଉପନୀତ ହେଉ । ଆଉ ବେଦାନ୍ତ କହନ୍ତି ସେହି ସତ୍ୟ ହିଁ ଈଶ୍ୱର—ସେ ଆମମାନଙ୍କର ପ୍ରକୃତ ସ୍ୱରୂପ, ସେ ସର୍ବଦା ଆମମାନଙ୍କ ମଧ୍ୟରେ ଓ ଆମମାନଙ୍କ ସହିତ ରହିଛନ୍ତି । ତାଙ୍କ ମଧ୍ୟରେ ସର୍ବଦା ବାସ କରନ୍ତୁ । ଯଦିଓ ଏହା ଅତି କଠିନ ବୋଧହୁଏ, ତଥାପି କ୍ରମଶଃ ଏହା ସହଜ ହୋଇ ଆସିବ । ସେତେବେଳେ ଆମେ ଦେଖିବୁ, ତାଙ୍କ ମଧ୍ୟରେ ଅବସ୍ଥାନ ହିଁ ଏକମାତ୍ର ଆନନ୍ଦପୂର୍ଣ୍ଣ ଅବସ୍ଥା ଏବଂ ଅନ୍ୟ ସକଳ ଅବସ୍ଥା ହିଁ ମୃତ୍ୟୁ । ଆତ୍ମଭାବରେ ପୂର୍ଣ୍ଣ ରହିବା ହିଁ ଜୀବନ—ଆଉ ସକଳ ଭାବ ହିଁ ମୃତ୍ୟୁ ମାତ୍ର । ଆମମାନଙ୍କର ବର୍ତ୍ତମାନ ଜୀବନକୁ—କେବଳ ଶିକ୍ଷା ନିମିତ୍ତ ଗୋଟିଏ ବିଦ୍ୟାଳୟ ବୋଲି କୁହାଯାଇପାରେ । ପ୍ରକୃତ ଜୀବନ ଲାଭ କରିବାକୁ ହେଲେ ଆମମାନଙ୍କୁ ଏହାର ବାହାରକୁ ଯିବାକୁ ହେବ ।

# ଆତ୍ମାର ମୁକ୍ତସ୍ୱଭାବ

[ ଲଣ୍ଡନରେ ପ୍ରଦତ୍ତ—୫ ନଭେମ୍ବର, ୧୮୯୭ ]

ଆମେମାନେ ପୂର୍ବରୁ ଯେଉଁ କଠୋପନିଷଦ୍‌ର ଆଲୋଚନା କରୁଥିଲୁ, ତାହା —ଆମେମାନେ ବର୍ତ୍ତମାନ ଯାହାର ଆଲୋଚନା କରିବୁ, ସେହି ଛାନ୍ଦୋଗ୍ୟ ଉପନିଷଦ୍‌ର—ଅନେକ ପରେ ରଚିତ ହୋଇଥିଲା । କଠୋପନିଷଦ୍‌ର ଭାଷା ଅପେକ୍ଷାକୃତ ଆଧୁନିକ, ଏହାର ଚିନ୍ତାପ୍ରଣାଳୀ ମଧ୍ୟ ପୂର୍ବାପେକ୍ଷା ଅଧିକ ପ୍ରଣାଳୀବଦ୍ଧ । ପ୍ରାଚୀନତର ଉପନିଷଦ୍‌ଗୁଡ଼ିକର ଭାଷା ଅନ୍ୟ ଏକରୂପ, ଅତି ପ୍ରାଚୀନ—ଅନେକ ପରିମାଣରେ ବେଦର ସଂହିତାଭାଗର ଭାଷାସ୍ୱରୂପ । ଆଉ ମଧ୍ୟ ଏହା ମଧ୍ୟରେ —ବହୁତ ସମୟ ଧରି ଅନେକ ଅନାବଶ୍ୟକୀୟ କଥାରେ ବୁଲି ବୁଲି ଏହାର ଭିତରର ସାର ମତଗୁଡ଼ିକୁ ଆସିବାକୁ ହୁଏ । ଏହି ପ୍ରାଚୀନ ଉପନିଷଦ୍‌ଟିରେ ବେଦର କର୍ମକାଣ୍ଡର ଯଥେଷ୍ଟ ପ୍ରଭାବ ଅଛି—ଏହି କାରଣରୁ ଏହାର ଅର୍ଦ୍ଧାଂଶରୁ ବେଶୀ ଏପର୍ଯ୍ୟନ୍ତ କର୍ମକାଣ୍ଡାତ୍ମକ । କିନ୍ତୁ ଅତିପ୍ରାଚୀନ ଉପନିଷଦ୍‌ଗୁଡ଼ିକ ପାଠରେ ଗୋଟିଏ ମହତ୍ ଲାଭ ହୋଇଥାଏ । ଏହାଦ୍ୱାରା ଆଧ୍ୟାତ୍ମିକ ଭାବଗୁଡ଼ିକର ଐତିହାସିକ ବିକାଶ ବୁଝାଯାଇପାରେ । ଅପେକ୍ଷାକୃତ ଆଧୁନିକ ଉପନିଷଦ୍‌ଗୁଡ଼ିକରେ ଆଧ୍ୟାତ୍ମିକ ତତ୍ତ୍ୱଗୁଡ଼ିକ ସମୁଦାୟ ଏକତ୍ର ସଂଗୃହୀତ ଓ ସଜ୍ଜିତ । ଉଦାହରଣ ସ୍ଥଳରେ ଆମେମାନେ ଭଗବଦ୍‌ଗୀତାର ଉଲ୍ଲେଖ କରିପାରୁ; ଏହି ଭଗବଦ୍‌ଗୀତାକୁ ଆମେମାନେ ସର୍ବଶେଷ ଉପନିଷଦ୍ ବୋଲି ଧରିପାରୁ, ଏଥିରେ କର୍ମକାଣ୍ଡ ଲେଶମାତ୍ର ନାହିଁ । ଗୀତାର ପ୍ରତିଶ୍ଳୋକ କୌଣସି ନା କୌଣସି ଉପନିଷଦ୍‌ରୁ ସଂଗୃହୀତ—ଯେପରି କେତେଗୁଡ଼ିଏ ପୁଷ୍ପ ନେଇ ଗୋଟିଏ ତୋଡ଼ା ନିର୍ମିତ ହୋଇଛି; କିନ୍ତୁ ଏଥିରେ ତୁମେ ସେହି ସକଳ ତତ୍ତ୍ୱର କ୍ରମବିକାଶ ଦେଖିବାକୁ ପାଅ ନାହିଁ ।

ଆଉ ଅନେକେ ଏହି ଆଧ୍ୟାତ୍ମିକ ତତ୍ତ୍ୱର କ୍ରମବିକାଶ ବୁଝିବାର ସୁବିଧାକୁ ବେଦପାଠର ଗୋଟିଏ ବିଶେଷ ଉପକାରିତା ବୋଲି ଉଲ୍ଲେଖ କରିଛନ୍ତି— ବାସ୍ତବିକ ଏହା ସତ କଥା; କାରଣ ବେଦକୁ ଲୋକମାନେ ଏଭଳି ପବିତ୍ରତାର ଚକ୍ଷୁରେ ଦେଖନ୍ତି ଯେ, ଜଗତର ଅନ୍ୟାନ୍ୟ ଧର୍ମଶାସ୍ତ୍ର ଭିତରେ ଯେଉଁଭଳି ନାନାବିଧ ପ୍ରକ୍ଷିପ୍ତ ବିଷୟ ରହିଛି, ବେଦରେ ତାହା ହୋଇପାରି ନାହିଁ । ବେଦରେ ଖୁବ୍ ଉଚ୍ଚତମ ଚିନ୍ତା ଓ ଆହୁରି ଅତି ନିମ୍ନତର ଚିନ୍ତାର ସମାବେଶ—ସାର, ଅସାର, ଅତି ଉନ୍ନତ ଚିନ୍ତା, ପୁଣି ଟିକିନିଖି—ସମସ୍ତ ସନ୍ନିବେଶିତ ଅଛି; କେହି ଏହାର କିଛି ପରିବର୍ତ୍ତନ ବା ପରିବର୍ଦ୍ଧନ କରିବାକୁ ସାହସ କରେ ନାହିଁ । ଅବଶ୍ୟ ଟୀକାକାରମାନେ ଆସି ବ୍ୟାଖ୍ୟାବଳରେ ଅତି ପ୍ରାଚୀନ ବିଷୟସମୂହରୁ ଅଦ୍ଭୁତ ନୂତନ ଭାବସକଳ ବାହାର

କରିବାକୁ ଆରମ୍ଭ କଲେ; ମାତ୍ର ସାଧାରଣତଃ ଅନେକ ବର୍ଣ୍ଣନା ଭିତରେ ସେମାନେ ଆଧ୍ୟାତ୍ମିକ ତତ୍ତ୍ୱସକଳ ଦେଖିବାକୁ ଲାଗିଲେ; କିନ୍ତୁ ମୂଳ ଯେପରି ସେହିପରି ରହିଗଲା—ଏହି ମୂଳ ଭିତରେ ଐତିହାସିକ ଗବେଷଣାର ବିଷୟ ଯଥେଷ୍ଟ ଅଛି । ଆମେମାନେ ଜାଣୁ ଲୋକଙ୍କର ଚିନ୍ତାଶକ୍ତି ଯେତେ ଉନ୍ନତ ହୋଇଥାଏ, ଲୋକମାନେ ସେତେ ଧର୍ମସକଳର ପୂର୍ବ ଭାବ ପରିବର୍ତ୍ତନ କରି ତାହାକୁ ନୂତନ ନୂତନ ଉଚ୍ଚ ଭାବରେ ସଂଯୋଜନ କରିଥାଆନ୍ତି । ଏଠାରେ ଗୋଟିଏ ସେଠାରେ ଗୋଟିଏ ନୂତନ କଥା ବସାଇ ଦିଆଯାଏ—କେଉଁଠି ବା ପଦେଅଧେ କଥା ଉଠାଇ ଦିଆଯାଏ, ତା'ପରେ ଟୀକାକାରମାନେ ତ ଅଛନ୍ତି । ସମ୍ଭବତଃ ବୈଦିକ ସାହିତ୍ୟରେ ଏପରି କଦାପି କରାଯାଇ ନାହିଁ—ଆଉ ଯଦି ହୋଇଥାଏ, ତାହା ଆଦୌ ଧର୍ତ୍ତବ୍ୟ ନୁହେଁ । ଆମମାନଙ୍କର ଏହାଦ୍ୱାରା ଲାଭ ଏହି ଯେ, ଆମେମାନେ ଚିନ୍ତାର ମୂଳ ଉତ୍ପତ୍ତିସ୍ଥଳକୁ ଯାଇପାରୁ—ଦେଖିବାକୁ ପାଉଁ, କିପରି କ୍ରମଶଃ ଉଚ୍ଚରୁ ଉଚ୍ଚତର ଚିନ୍ତାର, କିପରି ସ୍ଥୂଳ ଆଧିଭୌତିକ ଧାରଣାସକଳଠାରୁ ସୂକ୍ଷ୍ମତର ଆଧ୍ୟାତ୍ମିକ ଧାରଣାସକଳର ବିକାଶ ହୋଇଛି—ଅବଶେଷରେ କିପରି ଭାବରେ ବେଦାନ୍ତରେ ଏହା ଚରମ ପରିଣତି ଲାଭ କରିଛି । ବୈଦିକ ସାହିତ୍ୟରେ ଅନେକ ପ୍ରାଚୀନ ଆଚାର ବ୍ୟବହାରର ଆଭାସ ମଧ୍ୟ ମିଳେ, ତେବେ ଉପନିଷଦ୍‌ରେ ଏସବୁର ବର୍ଣ୍ଣନା ବେଶୀ ନାହିଁ । ଏହା ଏପରି ଏକ ଭାଷାରେ ଲେଖା, ଯାହା ଖୁବ୍ ସଂକ୍ଷିପ୍ତ ଏବଂ ଖୁବ୍ ସହଜରେ ମନେ ରଖାଯାଇପାରେ ।

ଏହି ଗ୍ରନ୍ଥର ଲେଖକଗଣ କେବଳ କେତେଗୁଡ଼ିଏ ଘଟଣା ସ୍ମରଣ ରଖିବାର ଉପାୟସ୍ୱରୂପ ଯେପରି ଲେଖୁଛନ୍ତି; ସେମାନଙ୍କର ଯେପରି ଧାରଣା—ଏ ସମସ୍ତ କଥା ସମସ୍ତେ ହିଁ ଜାଣନ୍ତି; ଏଥିରେ ଏତିକିମାତ୍ର ମୁସ୍କିଲ ଯେ, ଆମେମାନେ ଉପନିଷଦ୍‌ରେ ଲେଖା ଗଳ୍ପଗୁଡ଼ିକର ବାସ୍ତବିକ ତାତ୍ପର୍ଯ୍ୟ ସଂଗ୍ରହ କରିପାରୁ ନାହିଁ । ଏହାର କାରଣ—ଏଗୁଡ଼ିକ ଯେଉଁମାନଙ୍କ ସମୟର ଲେଖା, ସେମାନେ ଅବଶ୍ୟ ଘଟଣାଗୁଡ଼ିକ ଜାଣିଥିଲେ; କିନ୍ତୁ ବର୍ତ୍ତମାନ ତାହାର କିମ୍ବଦନ୍ତୀ ପର୍ଯ୍ୟନ୍ତ ନାହିଁ—ଆଉ ଯାହା କିଛି ସାମାନ୍ୟ ଅଛି, ତାହା ପୁଣି ଅତିରଞ୍ଜିତ ହୋଇଛି; ସେଗୁଡ଼ିକର ଏତେ ନୂତନ ବ୍ୟାଖ୍ୟା ହୋଇଛି ଯେ, ଯେତେବେଳେ ଆମେମାନେ ପୁରାଣରେ ସେଗୁଡ଼ିକର ବିବରଣ ପାଠ କରୁ, ସେତେବେଳେ ଦେଖିବାକୁ ପାଉ ଯେ ସେଗୁଡ଼ିକ ଉଚ୍ଛ୍ୱାସାତ୍ମକ କାବ୍ୟ ହୋଇ ପଡ଼ିଛି ।

ପାଶ୍ଚାତ୍ୟ ଜାତିର ରାଜନୈତିକ ଉନ୍ନତି ବିଷୟରେ ଆମେମାନେ ଗୋଟିଏ ବିଶେଷଭାବ ଲକ୍ଷ୍ୟ କରୁଁ ଯେ, ସେମାନେ କୌଣସି ପ୍ରକାର ସ୍ୱେଚ୍ଛାତନ୍ତ୍ର ବା ଏକନାୟକତ୍ୱ ସହ୍ୟ କରିପାରନ୍ତି ନାହିଁ; ସବୁ ପ୍ରକାର ବନ୍ଧନର ବିରୋଧରେ ସବୁବେଳେ ସଂଗ୍ରାମ କରି ସେମାନେ ଯେପରି କ୍ରମଶଃ ଉଚ୍ଚରୁ ଉଚ୍ଚତର ପ୍ରଜାତନ୍ତ୍ର-ଶାସନ-ପ୍ରଣାଳୀ ଆଡ଼କୁ ଅଗ୍ରସର ହେଉଛନ୍ତି, ବାହ୍ୟ ସ୍ୱାଧୀନତାର ଉଚ୍ଚରୁ ଉଚ୍ଚତର ଧାରଣା

ଲାଭ କରୁଛନ୍ତି । ଭାରତରେ ମଧ୍ୟ ଠିକ୍ ସେହିପରି ଘଟଣା ଘଟିଅଛି, ତେବେ ଏହା ଦର୍ଶନ ଓ ଆଧ୍ୟାତ୍ମିକ ଜୀବନ-କ୍ଷେତ୍ରରେ—ଏହି ମାତ୍ର ପ୍ରଭେଦ । ବହୁଦେବବାଦରୁ କ୍ରମଶଃ ଲୋକେ ଏକେଶ୍ୱରବାଦରେ ଉପନୀତ ହୁଅନ୍ତି । ଉପନିଷଦ୍‌ରେ ପୁଣି ଯେପରି କି ଏହି ଏକେଶ୍ୱରବାଦର ବିରୋଧରେ ବିଦ୍ରୋହ ଘୋଷିତ ହୋଇଛି । ଜଗତରେ ଅନେକ ଶାସନକର୍ତ୍ତା ସେମାନଙ୍କର ଅଦୃଷ୍ଟ ନିୟନ୍ତ୍ରିତ କରିଛନ୍ତି, କେବଳ ଏହି ଧାରଣା ସେମାନଙ୍କର ଅସହ୍ୟ ହେଲା ତାହା ନୁହେଁ, ଜଣେ ସେମାନଙ୍କର ଅଦୃଷ୍ଟର ବିଧାତା ହେବେ—ଏହି ଧାରଣା ମଧ୍ୟ ସେମାନଙ୍କର ଅସହ୍ୟ ହେଲା । ଉପନିଷଦ୍ ଆଲୋଚନା କରିବାକୁ ଗଲେ ଏହି କଥା ଆମମାନଙ୍କର ପ୍ରଥମେ ଦୃଷ୍ଟି ଆକର୍ଷଣ କରେ । ଏହି ଧାରଣା ଧୀରେ ଧୀରେ ବଢ଼ି ଅବଶେଷରେ ଏହାର ଚରମ ପରିଣତି ହୋଇଛି । ପ୍ରାୟ ସକଳ ଉପନିଷଦ୍‌ର ଶେଷରେ ଆମେମାନେ ଏହି ପରିଣତି ଦେଖିବାକୁ ପାଉ ଏବଂ ତାହା ହେଉଛି ଜଗତର 'ଏକେଶ୍ୱର'-ସିଂହାସନଚ୍ୟୁତିକରଣ ।

ଈଶ୍ୱରଙ୍କର ସଗୁଣ ଧାରଣା ଯାଇ ନିର୍ଗୁଣ ଧାରଣା ଉପସ୍ଥିତ ହୁଏ । ଈଶ୍ୱର ସେତେବେଳେ ଜଗତର ଶାସନକର୍ତ୍ତା ଜଣେ ବ୍ୟକ୍ତି ହୋଇ ରହନ୍ତି ନାହିଁ; ସେ ସେତେବେଳେ ଆଉ ଜଣେ ଅନନ୍ତ ଗୁଣସମ୍ପନ୍ନ ମନୁଷ୍ୟଧର୍ମବିଶିଷ୍ଟ ନୁହନ୍ତି; ସେ ସେତେବେଳେ ଭାବମାତ୍ର, ଏକ ପରମ ତତ୍ତ୍ୱମାତ୍ର ରୂପରେ ଜ୍ଞାତ ହୁଅନ୍ତି; ଆମମାନଙ୍କ ଭିତରେ, ଜଗତର ସକଳ ପ୍ରାଣୀଙ୍କର ଭିତରେ, ଏପରିକି ସମୁଦାୟ ଜଗତରେ ସେହି ତତ୍ତ୍ୱ ଓତଃପ୍ରୋତ ଭାବରେ ବିରାଜିତ । ଆମେ ଅବଶ୍ୟ ସେତେବେଳେ ଈଶ୍ୱରଙ୍କର ସଗୁଣ ଧାରଣାରୁ ନିର୍ଗୁଣ ଧାରଣାରେ ପହଞ୍ଚିଲୁ, ସେତେବେଳେ ମନୁଷ୍ୟ ମଧ୍ୟ ଆଉ ସଗୁଣ ରହିପାରିଲା ନାହିଁ । ଅତଏବ ମନୁଷ୍ୟର ସଗୁଣତ୍ୱ ମଧ୍ୟ ଉଡ଼ିଗଲା—ମନୁଷ୍ୟ ଗୋଟିଏ ତତ୍ତ୍ୱମାତ୍ରରେ ପରିଣତ ହେଲା । ସଗୁଣ ବ୍ୟକ୍ତି ବହିର୍ଦ୍ଦେଶରେ ବିରାଜିତ, ପ୍ରକୃତ ତତ୍ତ୍ୱ ଅନ୍ତର୍ଦ୍ଦେଶରେ । ଏହିରୂପେ ଉଭୟ ଦିଗରୁ କ୍ରମଶଃ ସଗୁଣତ୍ୱ ଚାଲିଯାଇଥାଏ ଏବଂ ନିର୍ଗୁଣତ୍ୱର ଆବିର୍ଭାବ ହୋଇଥାଏ । ସଗୁଣ ଈଶ୍ୱର କ୍ରମଶଃ ନିର୍ଗୁଣ ଭାବକୁ ଆସୁଥାଆନ୍ତି ଏବଂ ସଗୁଣ ମନୁଷ୍ୟଠାରେ ନିର୍ଗୁଣ ମନୁଷ୍ୟ-ଭାବ ଆସିଥାଏ; ତପୂରେ ନିର୍ଗୁଣଭାବ ଓ ନିର୍ଗୁଣ ଈଶ୍ୱରଭାବ କ୍ରମଶଃ ଅଗ୍ରସର ହୋଇ କେତେଗୁଡ଼ିଏ ସ୍ତରର ଅନୁଭୂତି ପରେ ମିଳିତ ହୋଇଥାଏ । ଆଉ ଏହି ଦୁଇଟି ଧାରା ଯେଉଁ ଯେଉଁ କ୍ରମରେ କ୍ରମଶଃ ଅଗ୍ରସର ହୋଇ ମିଶିଯାଏ, ଉପନିଷଦ୍ ତାହାର ବର୍ଣ୍ଣନାରେ ପରିପୂର୍ଣ୍ଣ ଏବଂ ପ୍ରତ୍ୟେକ ଉପନିଷଦ୍‌ର ଶେଷ କଥା—'ତତ୍ତ୍ୱମସି' । ଏକମାତ୍ର ନିତ୍ୟ ଆନନ୍ଦମୟ ପୁରୁଷ ହିଁ ଅଛନ୍ତି, ଆଉ ସେହି ପରମତତ୍ତ୍ୱ ହିଁ ଏହି ଜଗତରୂପେ ବହୁ ଭାବରେ ପ୍ରକାଶ ପାଉଛନ୍ତି ।

ଏଥର ଦାର୍ଶନିକମାନେ ଆସିଲେ । ଉପନିଷଦ୍‌ର କାର୍ଯ୍ୟ ଏହିଠାରେ ଶେଷ ହେଲା—ଦାର୍ଶନିକମାନେ ତାହା ପରେ ଅନ୍ୟାନ୍ୟ ପ୍ରଶ୍ନ ନେଇ ବିଚାର ଆରମ୍ଭ

କଲେ । ଉପନିଷଦ୍‌ରେ ମୁଖ୍ୟ କଥାଗୁଡ଼ିକ ମିଳିଗଲା—ବିସ୍ତାରିତ ବ୍ୟାଖ୍ୟା-ବିସ୍ତାର ଦାର୍ଶନିକମାନଙ୍କ ପାଇଁ ରହିଲା । ସ୍ୱଭାବତଃ ପୂର୍ବୋକ୍ତ ସିଦ୍ଧାନ୍ତର ନାନା ପ୍ରଶ୍ନ ମନରେ ଉଦିତ ହୁଏ । ଯଦି ସ୍ୱୀକାର କରାଯାଏ ଯେ, ଏକ ନିର୍ଗୁଣତତ୍ତ୍ୱ ହିଁ ପରିଦୃଶ୍ୟ-ମାନ ନାନାରୂପରେ ପ୍ରକାଶ ପାଉଛି, ତାହାହେଲେ ଏହି ପ୍ରଶ୍ନ—'ଗୋଟିଏ' କାହିଁକି 'ବହୁତ' ହେଲା ? ଏହା ସେହି ପ୍ରାଚୀନ ପ୍ରଶ୍ନ—ଯାହା ମନୁଷ୍ୟର ଅମାର୍ଜିତ ବୁଦ୍ଧିରେ ସ୍ଥୂଳଭାବରେ ଉଦିତ ହୁଏ : ଜଗତରେ ଦୁଃଖ ଅଶୁଭ ରହିଛି କାହିଁକି ? ସେହି ପ୍ରଶ୍ନଟି ସ୍ଥୂଳଭାବକୁ ପରିତ୍ୟାଗ କରି ସୂକ୍ଷ୍ମ ମୂର୍ତ୍ତି ପରିଗ୍ରହ କରିଛି । ବର୍ତ୍ତମାନ ଆଉ ଆମ-ମାନଙ୍କର ବାହ୍ୟ ଦୃଷ୍ଟି ବା ଇନ୍ଦ୍ରିୟାନୁଭୂତିରୁ ଏହି ପ୍ରଶ୍ନ ଜିଜ୍ଞାସିତ ହେଉ ନାହିଁ, ବର୍ତ୍ତମାନ ଭିତରୁ ଦାର୍ଶନିକ-ଦୃଷ୍ଟିରେ ଏହି ପ୍ରଶ୍ନର ବିଚାର । କାହିଁକି ସେହି ଗୋଟିଏ ତତ୍ତ୍ୱ ବହୁ ହେଲା ? ଆଉ ତାହାର ଉତ୍ତର, ସର୍ବୋତ୍ତମ ଉତ୍ତର ଭାରତବର୍ଷରେ ପ୍ରଦତ୍ତ ହୋଇଛି । ଏହାର ଉତ୍ତର—ମାୟାବାଦ; ବାସ୍ତବିକ ସେହି ଏକ ତତ୍ତ୍ୱ ବହୁ ହୋଇ ନାହିଁ, ବାସ୍ତବିକ ତାହାର ପ୍ରକୃତ ସ୍ୱରୂପର କିଛି ମାତ୍ର ହାନି ହୋଇ ନାହିଁ । ଏହି ବହୁତ୍ୱ କେବଳ ଆପାତ-ପ୍ରତୀୟମାନ ମାତ୍ର, ମନୁଷ୍ୟ ନିଜେ ଆପାତଦୃଷ୍ଟିରେ ବ୍ୟକ୍ତି ବୋଲି ପ୍ରତୀୟମାନ ହେଉଅଛି; କିନ୍ତୁ ବାସ୍ତବିକ ସେ ନିର୍ଗୁଣ । ଈଶ୍ୱର ମଧ୍ୟ ଆପାତତଃ ସଗୁଣ ବା ବ୍ୟକ୍ତି-ରୂପରେ ପ୍ରତୀୟମାନ ହେଉଛନ୍ତି । ବାସ୍ତବିକ ସେ ଏହି ସମଗ୍ର ବିଶ୍ୱ ବ୍ରହ୍ମାଣ୍ଡରେ ଅବସ୍ଥିତ ନିର୍ଗୁଣ ପୁରୁଷ ।

ଏହି ଉତ୍ତର ମଧ୍ୟ ଏକାଥରକେ ଆସି ନାହିଁ, ବିଭିନ୍ନ ସ୍ତର ଦେଇ ଏହି ଉତ୍ତର ବିକଶିତ ହୋଇଅଛି । ଏହି ଉତ୍ତର ସମ୍ବନ୍ଧରେ ଦାର୍ଶନିକମାନଙ୍କ ଭିତରେ ମତଭେଦ ଅଛି । ମାୟାବାଦ ଭାରତୀୟ ସକଳ ଦାର୍ଶନିକଙ୍କଦ୍ୱାରା ସମର୍ଥିତ ନୁହେଁ । ସମ୍ଭବତଃ ସେମାନେ ଅଧିକାଂଶ ଏହି ମତକୁ ସ୍ୱୀକାର କରନ୍ତି ନାହିଁ । ଦ୍ୱୈତବାଦୀ-ମାନେ ଅଛନ୍ତି—ସେମାନଙ୍କର ମତ ଦ୍ୱୈତବାଦ—ଏହି ମତ ଅତି ଉନ୍ନତ ବା ମାର୍ଜିତ ନୁହେଁ । ସେମାନେ ଏହି ପ୍ରଶ୍ନ ପଚାରିବାକୁ ଦେବେ ନାହିଁ—ସେମାନେ ଏହି ପ୍ରଶ୍ନର ଉଦୟ ହେଉ ନ ହେଉଣୁ ଏହାକୁ ଚାପି ଦିଅନ୍ତି । ସେମାନେ କହନ୍ତି, ତୁମର ଏହିଭଳି ପ୍ରଶ୍ନ କରିବାର ଅଧିକାର ନାହିଁ—କାହିଁକି ଏଭଳି ହେଲା, ଏହାର ବ୍ୟାଖ୍ୟା ପଚାରିବା ପାଇଁ ତୁମର କିଛିମାତ୍ର ଅଧିକାର ନାହିଁ । ତାହା ଈଶ୍ୱରଙ୍କର ଇଚ୍ଛା—ଆମକୁ ଶାନ୍ତଭାବରେ ଏହାର ସମ୍ମୁଖରେ ଆତ୍ମସମର୍ପଣ କରିବାକୁ ହେବ । ଜୀବାତ୍ମାର କିଛିମାତ୍ର ସ୍ୱାଧୀନତା ନାହିଁ, ସମୁଦାୟ ପୂର୍ବରୁ ନିର୍ଦ୍ଦିଷ୍ଟ—ଆମେ-ମାନେ କ'ଣ କରିବୁ, ଆମମାନଙ୍କର କ'ଣ କ'ଣ ଅଧିକାର, କେଉଁ କେଉଁ ସୁଖ ଦୁଃଖ ଭୋଗ କରିବୁ—ସବୁଗୁଡ଼ିକ ପୂର୍ବରୁ ନିର୍ଦ୍ଦିଷ୍ଟ ଅଛି; ଆମମାନଙ୍କର କର୍ତ୍ତବ୍ୟ—ଧୀର ଭାବରେ ସେଗୁଡ଼ିକୁ ଭୋଗ କରିଯିବା । ଯଦି ତାହା ନ ପାରୁ, ଆମେମାନେ ଅବଶ୍ୟ ଆହୁରି ଅଧିକ କଷ୍ଟ ପାଇବୁ । କିପରି ଭାବରେ ତୁମେ ଏହା ଜାଣିଲ ? ବେଦ କହି-ଛନ୍ତି । ସେମାନେ ମଧ୍ୟ ବେଦର ଶ୍ଳୋକ ଉଦ୍ଧାର କରନ୍ତି; ସେମାନଙ୍କର ମତସମ୍ମତ

ବେଦର ଅର୍ଥ ମଧ୍ୟ ଅଛୁ; ସେମାନେ ସେହିଗୁଡ଼ିକୁ ପ୍ରାମାଣ୍ୟ କରି ସମସ୍ତଙ୍କୁ ତାହା ମାନିବାକୁ କହନ୍ତି ଏବଂ ତଦନୁସାରେ ଉପଦେଶ ଦିଅନ୍ତି ।

ଆଉ କେତେକ ଦାର୍ଶନିକ ଅଛନ୍ତି, ସେମାନେ ମାୟାବାଦ ସ୍ୱୀକାର ନକଲେ ମଧ୍ୟ ସେମାନଙ୍କର ମତ ମାୟାବାଦୀ ଓ ଦ୍ୱୈତବାଦୀଙ୍କର ମଝିଆମଝି । ସେମାନେ ପରିଣାମବାଦୀ । ସେମାନେ କହନ୍ତି ଯେ, ସମୁଦାୟ ଜଗତ ଯେପରି ଭଗବାନଙ୍କର ଶରୀର । ଈଶ୍ୱର ସମୁଦାୟ ପ୍ରକୃତିର ଏବଂ ସକଳ ଆତ୍ମାର ଆତ୍ମାସ୍ୱରୂପ । ସୃଷ୍ଟିର ଅର୍ଥ ଈଶ୍ୱରଙ୍କର ସ୍ୱରୂପର ବିକାଶ—କିଛି କାଳ ଏହି ବିକାଶ ହୋଇ ପୁଣି ସଙ୍କୁଚିତ ହୋଇଥାଏ । ପ୍ରତ୍ୟେକ ଜୀବାତ୍ମା ପକ୍ଷରେ ଏହି ସଙ୍କୋଚର କାରଣ ଅସତ୍ କର୍ମ । ମନୁଷ୍ୟ ଅସତ୍ କାର୍ଯ୍ୟ କଲେ ତାହାର ଆତ୍ମାର ଶକ୍ତି କ୍ରମଶଃ ସଙ୍କୁଚିତ ହୋଇଥାଏ, ପୁଣି ସେ ଯେତେବେଳେ ସତ୍‌କର୍ମ କରିବାକୁ ଆରମ୍ଭ କରେ, ସେତେବେଳେ ଏହାର ବିକାଶ ଆରମ୍ଭ ହୁଏ । ଭାରତୀୟ ଏହି ସକଳ ବିଭିନ୍ନ ମତ ଭିତରେ ଏବଂ ମୋର ମନେହୁଏ, ଜ୍ଞାତସାରରେ ବା ଅଜ୍ଞାତସାରରେ ଜଗତର ସକଳ ମତବାଦ ଭିତରେ ଗୋଟିଏ ସାଧାରଣ ଭାବ ଦେଖିବାକୁ ମିଳେ; ମୁଁ ଏହାକୁ 'ମନୁଷ୍ୟର ଦେବତ୍ୱ' କହିବାକୁ ଇଚ୍ଛା କରେ । ଜଗତରେ ଏପରି କୌଣସି ମତ ନାହିଁ, ଏପରି କୌଣସି ଯଥାର୍ଥ ଧର୍ମ ନାହିଁ, ଯାହା କୌଣସି ନା କୌଣସି ରୂପରେ—ପୌରାଣିକ ବା ରୂପକ ଭାବରେ ହେଉ ଅଥବା ଦର୍ଶନର ମାର୍ଜିତ ସୁସ୍ପଷ୍ଟ ଭାଷାରେ ହେଉ, ଏହି ଭାବ ପ୍ରକାଶ କରେ ନାହିଁ ଯେ, ଜୀବାତ୍ମା ଯାହା ହେଉନା କାହିଁକି ଅଥବା ଈଶ୍ୱରଙ୍କ ସହିତ ଏହାର ସମ୍ବନ୍ଧ ଯାହା ହେଉ, ଏହା ସ୍ୱରୂପତଃ ଶୁଦ୍ଧ ଏବଂ ପୂର୍ଣ୍ଣ । ଜୀବାତ୍ମାର ପ୍ରକୃତ ସ୍ୱରୂପ ଆନନ୍ଦ ଓ ଶକ୍ତି—ଦୁଃଖ ଓ ଦୁର୍ବଳତା ନୁହେଁ । ଏହି ଦୁଃଖ କୌଣସିରୂପେ ସେଥିରେ ଆସି ପଡ଼ିଛି । ଅମାର୍ଜିତ ମତସକଳ ଏହି ଦୁଃଖକୁ ମୂର୍ତ୍ତିମାନ୍ ଅଶୁଭ, ସଇତାନ ବା ଅହିମାନ ବୋଲି କଳ୍ପନା ଓ ବ୍ୟାଖ୍ୟା କରିପାରେ । ଅନ୍ୟାନ୍ୟ ମତ ଏକାଧାରରେ ଈଶ୍ୱର ଓ ସଇତାନ ଦ୍ୱୟର ଭାବ ଆରୋପ କରିପାରେ ଏବଂ କୌଣସି ପ୍ରକାର ଯୁକ୍ତି ନ କରି କହିପାରେ, ସେ କାହାକୁ ସୁଖୀ, କାହାକୁ ବା ଦୁଃଖୀ କରିଛନ୍ତି । ଆହୁରି ଅପେକ୍ଷାକୃତ ଚିନ୍ତାଶୀଳ ବ୍ୟକ୍ତିଗଣ 'ମାୟାବାଦ' ପ୍ରଭୃତି ଦ୍ୱାରା ଏହା ବ୍ୟାଖ୍ୟା କରିବାର ଚେଷ୍ଟା କରିପାରନ୍ତି । କିନ୍ତୁ ଗୋଟିଏ ବିଷୟ ସବୁ-ଗୁଡ଼ିକରେ ଅତି ସ୍ପଷ୍ଟଭାବେ ପ୍ରକାଶିତ—ଏହା ଆମମାନଙ୍କ ପ୍ରସ୍ତାବିତ ବିଷୟ—ଆତ୍ମାର ମୁକ୍ତସ୍ୱଭାବ । ଏହି ସକଳ ଦାର୍ଶନିକ ମତ ଓ ପ୍ରଣାଳୀଗୁଡ଼ିକ କେବଳ ମନର ବ୍ୟାୟାମ—ବୁଦ୍ଧିର ଚାଳନା ମାତ୍ର । ଗୋଟିଏ ମହତ୍ ଉଜ୍ଜ୍ୱଳ ଧାରଣା—ଯାହା ମୋ ନିକଟରେ ଅତି ସ୍ପଷ୍ଟ ବୋଲି ବୋଧହୁଏ ଏବଂ ଯାହା ସକଳ ଦେଶ ଓ ସକଳ ଧର୍ମର କୁସଂସ୍କାରଗୁଡ଼ିକୁ ଅତିକ୍ରମ କରି ପ୍ରକାଶ ପାଇଛି, ତାହା ଏହି ଯେ—ମନୁଷ୍ୟ ଦେବ-ସ୍ୱଭାବ, ଦେବଭାବ ହିଁ ଆମମାନଙ୍କର ସ୍ୱଭାବ, ଆମେମାନେ ବ୍ରହ୍ମସ୍ୱରୂପ ।

ବେଦାନ୍ତ କହେ, ଅନ୍ୟ ଯାହା କିଛି, ତାହା ଏହାର ଉପାଧି ମାତ୍ର । କିଛି

ଯେପରି ତା' ଉପରେ ଆରୋପିତ ହୋଇଛି; କିନ୍ତୁ ତା' ଦେବସ୍ୱଭାବର କୌଣସିଥିରେ ବିନାଶ ହୁଏ ନାହିଁ । ଅତିସାଧୁପ୍ରକୃତିଠାରେ ଯେପରି, ଅତିଶୟ ପତିତଠାରେ ମଧ୍ୟ ସେହିପରି ଏହା ବିଦ୍ୟମାନ । ଏହି ଦେବସ୍ୱଭାବର ଉଦ୍‌ବୋଧନ କରିବାକୁ ହେବ, ତେବେ ଏହାର କାର୍ଯ୍ୟ ହୋଇପାରିବ । ଏହି ଦେବଭାବକୁ ହିଁ ଆହ୍ୱାନ କରିବାକୁ ହେବ, ତେବେ ଯାଇ ଏହା ପ୍ରକାଶିତ ହେବ । ପ୍ରାଚୀନମାନେ ଭାବୁଥିଲେ, ଚକମକି ପଥରରେ ଅଗ୍ନି ବାସ କରେ, ସେହି ଅଗ୍ନିକୁ ବାହାର କରିବାକୁ ହେଲେ କେବଳ ଇସ୍ପାତର ଘର୍ଷଣ ଆବଶ୍ୟକ । ଦୁଇ ଖଣ୍ଡ ଶୁଷ୍କ କାଠ ମଧ୍ୟରେ ଅଗ୍ନି ବାସ କରେ, ଘର୍ଷଣ ଆବଶ୍ୟକ କେବଳ ଏହାକୁ ପ୍ରକାଶ କରିବା ପକାଶେ । ଅତଏବ ଏହି ଅଗ୍ନି, ଏହି ସ୍ୱାଭାବିକ ମୁକ୍ତଭାବ ଓ ପବିତ୍ରତା ପ୍ରତ୍ୟେକ ଆତ୍ମାର ସ୍ୱଭାବ, ଆତ୍ମାର ଗୁଣ ନୁହେଁ । କାରଣ, ଗୁଣ ଉପାର୍ଜନ କରାଯାଇପାରେ, ସୁତରାଂ ସେସବୁ ପୁଣି ନଷ୍ଟ ମଧ୍ୟ ହୋଇପାରେ । ମୁକ୍ତ ବା ମୁକ୍ତସ୍ୱଭାବ କହିଲେ ଯାହା ବୁଝାଯାଏ, ଆତ୍ମା କହିଲେ ତାହା ହିଁ ବୁଝାଏ—ସେହିପରି ସତ୍ତା ବା ଅସ୍ତିତ୍ୱ ଏବଂ ଜ୍ଞାନ ମଧ୍ୟ ଆତ୍ମାର ସ୍ୱରୂପ—ଆତ୍ମା ସହିତ ଅଭେଦ । ଏହି ସତ୍-ଚିତ୍-ଆନନ୍ଦ ଆତ୍ମାର ସ୍ୱଭାବ, ଆମର ଜନ୍ମଗତ ଅଧିକାର; ଆମେମାନେ ଯେଉଁସବୁ ଅଭିବ୍ୟକ୍ତି ଦେଖୁଛୁ, ସେସବୁ ଆତ୍ମାର ସ୍ୱରୂପର ବିଭିନ୍ନ ପ୍ରକାଶ ମାତ୍ର—ଏହା କେବେ ଆପଣାକୁ ମୃଦୁ, କେତେବେଳେ ବା ଉଜ୍ଜ୍ୱଳ ଭାବରେ ପ୍ରକାଶ କରୁଛି । ଏପରି କି ମୃତ୍ୟୁ ବା ବିନାଶ ମଧ୍ୟ ସେହି ପ୍ରକୃତ ସତ୍ତାର ପ୍ରକାଶ ମାତ୍ର । ଜନ୍ମ ମୃତ୍ୟୁ, କ୍ଷୟ ବୃଦ୍ଧି, ଉନ୍ନତି ଅବନତି, ସକଳ ହିଁ ସେହି ଏକତ୍ୱର ବିଭିନ୍ନ ବିକାଶ ମାତ୍ର । ଏହିପରି ଆମର ସାଧାରଣ ଜ୍ଞାନ ମଧ୍ୟ – ଏହା ବିଦ୍ୟା ବା ଅବିଦ୍ୟା ଯେଉଁ ରୂପରେ ପ୍ରକାଶିତ ହେଉନା କାହିଁକି—ସେହି 'ଚିତ୍'ର ସେହି ଜ୍ଞାନ-ସ୍ୱରୂପର ପ୍ରକାଶ ମାତ୍ର; ଏମାନଙ୍କର ବିଭିନ୍ନତା ପ୍ରକାରଗତ ନୁହେଁ, ପରିମାଣଗତ । କ୍ଷୁଦ୍ର କୀଟ, ଯାହା ତୁମର ପାଦଦେଶ ନିକଟରେ ବୁଲୁଛି, ତାହାର ଜ୍ଞାନ ଏବଂ ସ୍ୱର୍ଗର ଶ୍ରେଷ୍ଠତମ ଦେବତାଙ୍କର ଜ୍ଞାନରେ ପ୍ରଭେଦ ପ୍ରକାରଗତ ନୁହେଁ, ପରିମାଣଗତ । ଏହି କାରଣରୁ ବୈଦାନ୍ତିକ ମନୀଷୀଗଣ ନିର୍ଭୟରେ କହନ୍ତି ଯେ, ଆମମାନଙ୍କ ଜୀବନରେ ଆମେମାନେ ଯେଉଁସବୁ ସୁଖ ଭୋଗ କରୁ, ଏପରି କି ଅତି ଘୃଣିତ ସୁଖ ପର୍ଯ୍ୟନ୍ତ, ଆତ୍ମାର ସ୍ୱରୂପଭୂତ ସେହି ଏକ ବ୍ରହ୍ମାନନ୍ଦର ପ୍ରକାଶ ମାତ୍ର ।

ଏହି ଭାବଟି ବେଦାନ୍ତର ସର୍ବପ୍ରଧାନ ଭାବ ବୋଲି ବୋଧ ହୁଏ; ଆଉ ମୁଁ ପୂର୍ବରୁ କହିଛି, ମୋର ମନେହୁଏ, ସକଳ ଧର୍ମର ଏହି ମତ । ମୁଁ ଏପରି କୌଣସି ଧର୍ମର କଥା ଜାଣେ ନାହିଁ, ଯାହାର ମୂଳରେ ଏହି ଭାବ ନାହିଁ । ସକଳ ଧର୍ମ ଭିତରେ ଏହି ସାର୍ବଭୌମ ଭାବ ରହିଛି । ଉଦାହରଣସ୍ୱରୂପ ବାଇବେଲ୍‌ର କଥା ଧର । ସେଥିରେ ରୂପକଭାବରେ ବର୍ଣ୍ଣିତ ହୋଇଛି, 'ପ୍ରଥମ ମାନବ ଆଦମ୍ ଅତି ପବିତ୍ର-ସ୍ୱଭାବ ଥିଲେ, ଅବଶେଷରେ ପାପ କାର୍ଯ୍ୟଦ୍ୱାରା ତାଙ୍କର ଏହି ପବିତ୍ରତା ନଷ୍ଟ ହେଲା ।' ଏହି ରୂପକ-ବର୍ଣ୍ଣନାରୁ ପ୍ରମାଣିତ ହୁଏ ଯେ, ଏହି ଗ୍ରନ୍ଥଲେଖକଗଣ ବିଶ୍ୱାସ

କରୁଥିଲେ ଯେ ଆଦମ ମାନବର—ଅଥବା ସେମାନେ ଯେଉଁ ଭାବରେ ବର୍ଣ୍ଣନା କରନ୍ତୁ ନା କାହିଁକି—ପ୍ରକୃତ ମାନବର ସ୍ୱରୂପ ପ୍ରଥମରୁ ପୂର୍ଣ୍ଣ ଥିଲା । ଆମେମାନେ ଯେଉଁ ସକଳ ଦୁର୍ବଳତା ଦେଖୁଛୁଁ, ଆମେମାନେ ଯେଉଁ ସକଳ ଅପବିତ୍ରତା ଦେଖୁଛୁଁ, ସେସବୁ ଏହା ଉପରେ ଆରୋପିତ ଆବରଣ ବା ଉପାଧି ମାତ୍ର ଏବଂ ଖ୍ରୀଷ୍ଟଧର୍ମର ପରବର୍ତ୍ତୀ ଇତିହାସରେ ଦେଖାଯାଏ—ସେମାନେ ସେହି ପୂର୍ବ-ଅବସ୍ଥା ପୁନର୍ବାର ଲାଭ କରିବାର କେବଳ ସମ୍ଭାବନୀୟତା ନୁହେଁ, ତାହାର ନିଶ୍ଚିତତାରେ ମଧ୍ୟ ବିଶ୍ୱାସ କରନ୍ତି । ପ୍ରାଚୀନ ଓ ନବୀନ 'ଟେଷ୍ଟାମେଣ୍ଟ' ଯେନ ସମଗ୍ର ବାଇବେଲର ଏହି ଇତିହାସ । ମୁସଲମାନମାନଙ୍କ ସମ୍ବନ୍ଧରେ ମଧ୍ୟ ଏହିପରି । ସେମାନେ ମଧ୍ୟ ଆଦମ୍ ଏବଂ ଆଦମ୍‌ର ଜନ୍ମଗତ ପବିତ୍ରତାରେ ବିଶ୍ୱାସୀ; ଆଉ ସେମାନଙ୍କର ଧାରଣା ଏହି, ମହମ୍ମଦଙ୍କର ଆଗମନ ପରଠାରୁ ସେହି ଲୁପ୍ତ ପବିତ୍ରତାର ପୁନରୁଦ୍ଧାରର ଉପାୟ ହୋଇଛି । ବୌଦ୍ଧମାନଙ୍କ ସମ୍ବନ୍ଧରେ ମଧ୍ୟ ସେହିପରି, ସେମାନେ ମଧ୍ୟ ନିର୍ବାଣନାମକ ଅବସ୍ଥାବିଶେଷରେ ବିଶ୍ୱାସୀ; ଏହା ଏହି ଦ୍ୱୈତ ଜଗତର ଅତୀତ ଅବସ୍ଥା । ବୈଦାନ୍ତିକମାନେ ଯାହାକୁ ବ୍ରହ୍ମ କହନ୍ତି, ଏହି ନିର୍ବାଣ-ଅବସ୍ଥା ମଧ୍ୟ ଠିକ୍ ତାହା ହିଁ; ଆଉ ବୌଦ୍ଧମାନଙ୍କର ସମୁଦାୟ ଉପଦେଶର ମର୍ମ ଏହି, ସେହି ବିନଷ୍ଟ ନିର୍ବାଣ-ଅବସ୍ଥା ପୁନଃପ୍ରାପ୍ତ ହେବା । ଏହିରୂପେ ଦେଖାଯାଉଛି, ସକଳ ଧର୍ମରେ ଏହି ଏକ ତତ୍ତ୍ୱ ମିଳୁଛି ଯେ, ଯାହା ତୁମର ନୁହେଁ, ତାହା ତୁମେ କଦାପି ପାଇପାରିବ ନାହିଁ । ଏହି ବିଶ୍ୱବ୍ରହ୍ମାଣ୍ଡର କାହାରି ନିକଟରେ ତୁମେ ଋଣୀ ନୁହଁ । ତୁମେ ତୁମ ନିଜର ଜନ୍ମଗତ ଅଧିକାରଟି ପ୍ରାର୍ଥନା କରିବ । ଜଣେ ପ୍ରଧାନ ବୈଦାନ୍ତିକ ଆଚାର୍ଯ୍ୟ ଏହି ଭାବଟି ତାଙ୍କର ନିଜକୃତ କୌଣସି ଗ୍ରନ୍ଥର ନାମ ପ୍ରଦାନଚ୍ଛଳରେ ବଡ଼ ସୁନ୍ଦର-ଭାବରେ ବ୍ୟକ୍ତ କରିଛନ୍ତି । ଗ୍ରନ୍ଥଖଣ୍ଡର ନାମ 'ସ୍ୱାରାଜ୍ୟସିଦ୍ଧି', ଅର୍ଥାତ୍ ମୋର ନିଜର ରାଜ୍ୟ, ଯାହା ହରାଇଥିଲି ତାହାର ପୁନଃପ୍ରାପ୍ତି । ସେହି ରାଜ୍ୟ ଆମମାନଙ୍କର, ଆମେମାନେ ଏହା ହରାଇଛୁଁ, ଆମମାନଙ୍କୁ ଏହା ପୁନର୍ବାର ଲାଭ କରିବାକୁ ହେବ । ତେବେ ମାୟାବାଦୀ କହନ୍ତି, ଏହି ରାଜ୍ୟନାଶ କେବଳ ଆମମାନଙ୍କର ଭ୍ରମମାତ୍ର । ତୁମେ କେବେହେଲେ ରାଜ୍ୟଭ୍ରଷ୍ଟ ହୋଇ ନାହଁ—କେବଳ ଏହି ପ୍ରଭେଦ ।

ଯଦିଓ ସକଳ ଧର୍ମପ୍ରଣାଳୀ ଏହି ଗୋଟିଏ ବିଷୟରେ ଏକମତ ଯେ, ଆମ-ମାନଙ୍କର ଯେଉଁ ରାଜ୍ୟ ଥିଲା, ତାହା ଆମେମାନେ ହରାଇଦେଇଛୁଁ; ତଥାପି ସେମାନେ ଏହା ପୁନଃପ୍ରାପ୍ତ ହେବାର ବିଭିନ୍ନ ଉପଦେଶ ଦେଇଥାଆନ୍ତି । କେହି କହନ୍ତି, ବିଶେଷ କେତେଗୁଡ଼ିଏ କ୍ରିୟାକଳାପ କରି ପ୍ରତିମାଦିର ପୂଜା ଅର୍ଚ୍ଚନା କଲେ ଓ ନିଜେ କୌଣସି ବିଶେଷ ନିୟମରେ ଜୀବନଯାପନ କଲେ ସେହି ରାଜ୍ୟର ଉଦ୍ଧାର ହୋଇପାରେ । ପୁଣି କେହି କେହି କହନ୍ତି, 'ତୁମେ ଯଦି ପ୍ରକୃତିର ଅତୀତ ପୁରୁଷଙ୍କ ସମ୍ମୁଖରେ ନିଜକୁ ପତିତ କରି କାନ୍ଦି କାନ୍ଦି ତାଙ୍କ ନିକଟରେ କ୍ଷମାପ୍ରାର୍ଥନା କର, ତେବେ ତୁମେ ସେହି ରାଜ୍ୟ ଫେରି ପାଇବ ।' ଅନ୍ୟ କେହି କେହି କହନ୍ତି, 'ତୁମେ

ଯଦି ଏହି ପୁରୁଷଙ୍କୁ ସର୍ବାନ୍ତଃକରଣରେ ଭଲପାଇପାର, ତେବେ ତୁମେ ଏହି ରାଜ୍ୟ ପୁନଶ୍ଚ ପ୍ରାପ୍ତ ହେବ ।' ଉପନିଷଦ୍‌ରେ ଏଭଳି ବିଭିନ୍ନ ପ୍ରକାରର ଉପଦେଶ ମିଳେ । କ୍ରମଶଃ ତୁମେ ଏହା ବୁଝିପାରିବ; କିନ୍ତୁ ସର୍ବଶ୍ରେଷ୍ଠ ଉପଦେଶ ହେଉଛି—ବୈଦାନ୍ତର ତିଳେମାତ୍ର ପ୍ରୟୋଜନ ନାହିଁ । ତୁମର ଏହି ସମସ୍ତ କ୍ରିୟାକଲାପର କିଛିମାତ୍ର ପ୍ରୟୋଜନ ନାହିଁ; ରାଜ୍ୟ କିପରି ପୁନଃପ୍ରାପ୍ତ ହେବ, ଏପରି ଚିନ୍ତାରେ ମଧ୍ୟ ତୁମର କୌଣସି ଆବଶ୍ୟକତା ନାହିଁ, କାରଣ, ତୁମର ରାଜ୍ୟ କଦାପି ନଷ୍ଟ ହୋଇ ନାହିଁ । ଯାହା ତୁମେ କେବେହେଲେ ହରାଇ ନାହଁ, ତାହା ପାଇବା ପାଇଁ ପୁଣି ଚେଷ୍ଟା କରିବ କିଅଣ ? ତୁମେମାନେ ସ୍ୱଭାବତଃ ମୁକ୍ତ, ତୁମେମାନେ ସ୍ୱଭାବତଃ ଶୁଦ୍ଧସ୍ୱଭାବ । ଯଦି ତୁମେମାନେ ନିଜକୁ ମୁକ୍ତ ବୋଲି ଭାବିପାର, ତୁମେମାନେ ଏହି ମୁହୂର୍ତ୍ତରେ ମୁକ୍ତ ହୋଇଯିବ; ଆଉ ଯଦି ନିଜକୁ ବଦ୍ଧ ବୋଲି ବିବେଚନା କର, ତେବେ ବଦ୍ଧ ହୋଇ ରହିଥିବ । କେବଳ ସେତିକି ନୁହେଁ, ଏବେ ଯାହା କହିବି, ତାହା ମୋତେ ଅତି ସାହସର ସହିତ କହିବାକୁ ହେବ—ଏହି ସମସ୍ତ ବକ୍ତୃତା ଆରମ୍ଭ କରିବାପୂର୍ବରୁ ମୁଁ ତୁମମାନଙ୍କୁ ଏ କଥା କହିଛି । ଏହା ଶୁଣି ତୁମେମାନେ ଡର ଯାଇପାର; କିନ୍ତୁ ତୁମେମାନେ ଯେତେ ଏହା ଚିନ୍ତା କରିବ ଏବଂ ପ୍ରାଣେ ପ୍ରାଣେ ଅନୁଭବ କରିବ, ସେତେ ଦେଖିବ, ମୋର ଏ କଥା କେତେଦୂର ସତ୍ୟ । ମନେକର —ମୁକ୍ତଭାବ ତୁମର ସ୍ୱଭାବସିଦ୍ଧ ନୁହେଁ, ତାହାହେଲେ ତୁମେ କୌଣସିପ୍ରକାରେ ମୁକ୍ତ ହୋଇ-ପାରିବ ନାହିଁ । ମନେକର, ତୁମେମାନେ ମୁକ୍ତ ଥିଲ, ବର୍ତ୍ତମାନ କୌଣସି କାରଣରୁ ସେହି ମୁକ୍ତସ୍ୱଭାବ ହରାଇ ବଦ୍ଧ ହୋଇଛ; ତାହାହେଲେ ପ୍ରମାଣିତ ହେଉଛି ଯେ ତୁମେମାନେ ପ୍ରଥମରୁ ମୁକ୍ତ ନ ଥିଲ । ଯଦି ମୁକ୍ତ ଥିଲ, ତେବେ କିଏ ତୁମକୁ ବଦ୍ଧ କଲା ? ଯେ ସ୍ୱତନ୍ତ୍ର, ସେ କଦାପି ପରତନ୍ତ୍ର ହୋଇପାରେ ନାହିଁ; ଯଦି ହୁଏ, ତେବେ ପ୍ରମାଣିତ ହେଲା, ସେ କଦାପି ସ୍ୱତନ୍ତ୍ର ନ ଥିଲା—ସ୍ୱାତନ୍ତ୍ର୍ୟ-ପ୍ରତୀତିର ଭ୍ରମ ମାତ୍ର ଥିଲା ।

ତାହାହେଲେ ଦୁଇ ପକ୍ଷରୁ କେଉଁ ପକ୍ଷ ଗ୍ରହଣ କରିବ ? ଉଭୟ ପକ୍ଷର ଯୁକ୍ତିପରମ୍ପରା ବିବୃତ କଲେ ଏହିପରି ଦେଖାଯାଏ : ଯଦି କହ, ଆତ୍ମା ସ୍ୱଭାବତଃ ଶୁଦ୍ଧ-ସ୍ୱରୂପ ଓ ମୁକ୍ତ, ତେବେ ଅବଶ୍ୟ ସିଦ୍ଧାନ୍ତ କରିବାକୁ ହେବ—ଜଗତରେ ଏପରି କିଛି ନାହିଁ, ଯାହା ଏହାକୁ ବଦ୍ଧ କରିପାରେ; କିନ୍ତୁ ଯଦି ଜଗତରେ ଏପରି କିଛି ଥାଏ, ଯାହା ତାହାକୁ ବଦ୍ଧ କରିପାରେ, ତେବେ ଅବଶ୍ୟ କହିବାକୁ ହେବ—ଆତ୍ମା ମୁକ୍ତ-ସ୍ୱଭାବ ନ ଥିଲେ; ସୁତରାଂ ତୁମେ ଯେ ଏହାଙ୍କୁ ମୁକ୍ତସ୍ୱଭାବ କହିଥିଲ, ତାହା ତୁମର ଭ୍ରମ ମାତ୍ର । ଅତଏବ ତୁମକୁ ଅବଶ୍ୟ ଏହି ସିଦ୍ଧାନ୍ତ ଗ୍ରହଣ କରିବାକୁ ହେବ ଯେ, ଆତ୍ମା ସ୍ୱଭାବତଃ ହିଁ ମୁକ୍ତ, ଅନ୍ୟଥା ହୋଇପାରେ ନାହିଁ । ମୁକ୍ତସ୍ୱଭାବର ଅର୍ଥ—ବାହ୍ୟ ସକଳ ବସ୍ତୁର ଅନଧୀନତା, ଅର୍ଥାତ୍ ବାହାରର କୌଣସି ବସ୍ତୁ ଏହା ଉପରେ କାରଣ ରୂପେ କୌଣସି କାର୍ଯ୍ୟ କରିପାରେ ନାହିଁ । ଆତ୍ମା କାର୍ଯ୍ୟକାରଣସମ୍ବନ୍ଧର

ଅତୀତ—ଏଥିରୁ ଆତ୍ମା ସମ୍ବନ୍ଧରେ ଆମମାନଙ୍କର ଉଚ୍ଚ ଉଚ୍ଚ ଧାରଣା ଆସିଥାଏ । ଆତ୍ମାକୁ ସ୍ୱଭାବତଃ ମୁକ୍ତ ବୋଲି ସ୍ୱୀକାର ନ କଲେ, ଆତ୍ମାର ଅମରତ୍ୱର ପ୍ରମାଣ କରାଯାଇପାରେ ନାହିଁ । କାରଣ, ବହିଃସ୍ଥ କୌଣସି ଶକ୍ତି ଦ୍ୱାରା ମୃତ୍ୟୁ ସମ୍ପାଦିତ ହୁଏ । ଏଥିରୁ ବୁଝାଯାଉଛି ଯେ ମୋର ଶରୀର ଉପରେ ବହିଃସ୍ଥ ଅନ୍ୟ କିଛି କାର୍ଯ୍ୟ କରିପାରେ । ମୁଁ ଟିକିଏ ବିଷ ଖାଇଲି, ସେଥିରେ ମୋର ମୃତ୍ୟୁ ହେଲା; ଏଥିରୁ ବୋଧ ହେଉଛି, ମୋର ଶରୀର ଉପରେ ବିଷନାମକ ବହିଃସ୍ଥ କୌଣସି ବସ୍ତୁ କାର୍ଯ୍ୟ କରିପାରେ । ଯଦି ଆତ୍ମା ସମ୍ବନ୍ଧରେ ଏହା ସତ୍ୟ ହୁଏ, ତେବେ ଆତ୍ମା ମଧ୍ୟ ବଦ୍ଧ । କିନ୍ତୁ ଯଦି ଏହା ସତ୍ୟ ହୁଏ ଯେ ଆତ୍ମା ମୁକ୍ତସ୍ୱଭାବ, ତେବେ ଏହା ସ୍ୱତଃସିଦ୍ଧ ଯେ, ବହିଃସ୍ଥ କୌଣସି ବସ୍ତୁ ଏହା ଉପରେ କାର୍ଯ୍ୟ କରିପାରିବ ନାହିଁ, କଦାପି ପାରିବ ନାହିଁ । ତାହାହେଲେ ଆତ୍ମା କଦାପି ମରିବ ନାହିଁ, ଆତ୍ମା କାର୍ଯ୍ୟକାରଣସମ୍ବନ୍ଧର ଅତୀତ । ଆତ୍ମାର ମୁକ୍ତସ୍ୱଭାବ, ଅମରତ୍ୱ ଏବଂ ଆନନ୍ଦସ୍ୱଭାବ—ଏସବୁ ନିର୍ଭର କରୁଛି—ଆତ୍ମା କାର୍ଯ୍ୟକାରଣସମ୍ବନ୍ଧର ଅତୀତ—ମାୟାର ଅତୀତ, ଏହିଭାବ ଉପରେ । ଭଲ କଥା, ବର୍ତ୍ତମାନ ଯଦି କହ ; ଆତ୍ମାର ସ୍ୱଭାବ ପ୍ରଥମେ ସମ୍ପୂର୍ଣ୍ଣ ମୁକ୍ତ ଥିଲା, ଏବଂ ଏବେ ବଦ୍ଧ ହୋଇଛି, ତାହାହେଲେ ବୋଧହେବ, ବାସ୍ତବିକ ଏହା ମୁକ୍ତସ୍ୱଭାବ ନ ଥିଲା । ତୁମେ ଯେ କହୁଛ, ଏହା ମୁକ୍ତସ୍ୱଭାବ ଥିଲା, ତାହା ଅସତ୍ୟ । ବରଂ ଅନ୍ୟ ପକ୍ଷରେ ଦେଖାଯାଏ, ଆମେମାନେ ବାସ୍ତବିକ ମୁକ୍ତସ୍ୱଭାବ; ଏହି ଯେ ବଦ୍ଧ ହୋଇଛୁ ବୋଲି ବୋଧ ହେଉଛି, ଏହା ଭ୍ରାନ୍ତିମାତ୍ର । ଏହି ଦୁଇ ପକ୍ଷରୁ କେଉଁ ପକ୍ଷଟିକୁ ଗ୍ରହଣ କରିବା ? ହୁଏତ କହିବାକୁ ହେବ, ପ୍ରଥମଟି ଭ୍ରାନ୍ତ ନତୁବା ଦ୍ୱିତୀୟଟିକୁ ଭୁଲ ବୋଲି ସ୍ୱୀକାର କରିବାକୁ ହେବ । ମୁଁ ଅବଶ୍ୟ ଦ୍ୱିତୀୟଟିକୁ ଭ୍ରାନ୍ତ କହିବି । ଏହା ହିଁ ଆମମାନଙ୍କର ସମୁଦାୟ ଭାବ ଓ ଅନୁଭୂତି ସହିତ ଅଧିକତର ସଙ୍ଗତ । ମୁଁ ସମ୍ପୂର୍ଣ୍ଣ ରୂପେ ଜାଣେ, ମୁଁ ସ୍ୱଭାବତଃ ମୁକ୍ତ । ବଦ୍ଧଭାବ ସତ୍ୟ ଓ ମୁକ୍ତଭାବ ଭ୍ରମାତ୍ମକ—ଏହା ମୁଁ କ୍ଷଣକ ପାଇଁ ମଧ୍ୟ ମାନିନେଇପାରିବି ନାହିଁ ।

ସକଳ ଦର୍ଶନରେ କୌଣସି ନା କୌଣସି ଭାବରେ ଏହି ବିଚାର ଚାଲିଛି । ଏପରିକି ଦେଖିବାକୁ ମିଳେ, ଖୁବ୍ ଆଧୁନିକ ଦର୍ଶନରେ ମଧ୍ୟ ଏହି ବିଚାର ପ୍ରବେଶ କରିଛି । ଦୁଇ ଦଳ ଅଛନ୍ତି, ଗୋଟିଏ ଦଳ କହନ୍ତି, ଆତ୍ମା ବୋଲି କିଛି ନାହିଁ, ଆତ୍ମାର ଧାରଣା ଭ୍ରାନ୍ତି ମାତ୍ର, ଏହି ଭ୍ରାନ୍ତିର କାରଣ ଜଡ଼କଣାସକଳର ପୁନଃ ପୁନଃ ସ୍ଥାନ ପରିବର୍ତ୍ତନ; ଏହି ସଂହତି—ଯାହାକୁ ତୁମେ ଶରୀର ମସ୍ତିଷ୍କ ପ୍ରଭୃତି ନାମ ଦିଅ, ତାହାର ସ୍ପନ୍ଦନ, ତାହାର ହିଁ ଗତିବିଶେଷ ଏବଂ ତାହାର ମଧ୍ୟସ୍ଥ ଅଂଶସକଳର କ୍ରମାଗତ ସ୍ଥାନପରିବର୍ତ୍ତନରେ ଏହି ମୁକ୍ତସ୍ୱଭାବର ଧାରଣା ଆସୁଛି । କେତେଗୁଡ଼ିଏ ବୌଦ୍ଧ ସମ୍ପ୍ରଦାୟ ଥିଲେ, ସେମାନେ କହୁଥିଲେ—ଗୋଟିଏ ମଶାଲ ନେଇ ତୁମର ଚତୁର୍ଦ୍ଦିଗରେ କ୍ରମାଗତ ଶୀଘ୍ର ଶୀଘ୍ର ଘୂରାଇଲେ, ଗୋଟିଏ ଆଲୋକର ବୃତ୍ତ ଦେଖାଯିବ । ବାସ୍ତବିକ ଏହି ଆଲୋକବୃତ୍ତର କୌଣସି ଅସ୍ତିତ୍ୱ ନାହିଁ; କାରଣ, ଏହି

ମଣାଲ ପ୍ରତି ମୁହୂର୍ତ୍ତରେ ସ୍ଥାନ ପରିବର୍ତ୍ତନ କରୁଛି । ଆମେମାନେ ମଧ୍ୟ କ୍ଷୁଦ୍ର କ୍ଷୁଦ୍ର ପରମାଣୁର ସମଷ୍ଟି-ମାତ୍ର, ସେମାନଙ୍କର ଦ୍ରୁତ ଘୂର୍ଣ୍ଣନରେ ଏହି 'ଅହଂ'-ଭ୍ରାନ୍ତି ଜନ୍ମୁଛି ।

ଅତଏବ ଗୋଟିଏ ମତ ହେଲା—ଏହି ଶରୀର ହିଁ ସତ୍ୟ, ଆତ୍ମାର ଅସ୍ତିତ୍ୱ ନାହିଁ । ଅନ୍ୟ ମତ ଏହି ଯେ ଚିନ୍ତାଶକ୍ତିର ଦ୍ରୁତ ସ୍ପନ୍ଦନରେ ଜଡ଼ରୂପ ଏକ ଭ୍ରାନ୍ତିର ଉତ୍ପତ୍ତି ହେଉଛି, ବାସ୍ତବିକ ଜଡ଼ର କୌଣସି ଅସ୍ତିତ୍ୱ ନାହିଁ । ଏହି ତର୍କ ଆଧୁନିକ କାଳ ପର୍ଯ୍ୟନ୍ତ ଚାଲି ଆସୁଛି—ଗୋଟିଏ ଦଳ କହୁଛନ୍ତି ଆତ୍ମା ଭ୍ରମ ମାତ୍ର, ଅନ୍ୟ-ମାନେ ଜଡ଼କୁ ଭ୍ରମ ବୋଲି କହୁଛନ୍ତି । ଆମ୍ଭେ କେଉଁ ମତକୁ ଗ୍ରହଣ କରିବା ? ଆମେମାନେ ଆତ୍ମବାଦର ପକ୍ଷ ଗ୍ରହଣ କରି ଜଡ଼ବାଦକୁ ଅସ୍ୱୀକାର କରିବୁ । ଯୁକ୍ତି ଦୁଇ ଦିଗରେ ସମାନ, କେବଳ ଆତ୍ମାର ନିରପେକ୍ଷ ଅସ୍ତିତ୍ୱ ଦିଗରେ ଯୁକ୍ତି ଅପେକ୍ଷା-କୃତ ପ୍ରବଳ; କାରଣ ଜଡ଼ କଅଣ ତାହା କେହି କେବେହେଲେ ଦେଖି ନାହାନ୍ତି । ଆମେମାନେ କେବଳ ଆପଣାକୁ ଅନୁଭବ କରିପାରୁ । ମୁଁ ଏପରି ଲୋକ ଦେଖି ନାହିଁ, ଯେ ନିଜର ବାହାରକୁ ଯାଇ ଜଡ଼କୁ ଅନୁଭବ କରିପାରିଛନ୍ତି । କେହି କେବେହେଲେ ଡେଇଁପଡ଼ି ନିଜ ଆତ୍ମାର ବାହାରକୁ ଯାଇପାରେ ନାହିଁ । ଅତଏବ ଆତ୍ମା ସପକ୍ଷରେ ଯୁକ୍ତି ଟିକିଏ ଦୃଢ଼ତର ହେଲା । ଦ୍ୱିତୀୟତଃ ଆତ୍ମବାଦ ଜଗତର ବାସ୍ତବ ବ୍ୟାଖ୍ୟା ଦେଇପାରେ, ଜଡ଼ବାଦ ପାରେ ନାହିଁ । ସୁତରାଂ ଜଡ଼ବାଦ ଦୃଷ୍ଟିରୁ ଜଗତର ବ୍ୟାଖ୍ୟା ଅଯୌକ୍ତିକ । ଆତ୍ମାର ସ୍ୱାଭାବିକ ମୁକ୍ତ ଓ ବଦ୍ଧଭାବ ସମ୍ବନ୍ଧରେ ଯେଉଁ ବିଚାର ପୂର୍ବେ ହୋଇଥିଲା, ଜଡ଼ବାଦ ଓ ଆତ୍ମାବାଦର ତର୍କ ତାହାର ହିଁ ସ୍ଥୂଳଭାବ । ଏହି ଦର୍ଶନଗୁଡ଼ିକୁ ସୂକ୍ଷ୍ମଭାବରେ ବିଶ୍ଳେଷଣ କଲେ ତୁମେ ଦେଖିବ, ଏହି ଦୁଇଟି ମତର ହିଁ ସଂଘର୍ଷ ଚାଲିଛି । ଆଧୁନିକ ଦର୍ଶନରେ ମଧ୍ୟ ଆମେ ଅନ୍ୟ ଆକାରରେ ସେହି ପ୍ରାଚୀନ ବିଚାରକୁ ହିଁ ଦେଖିବାକୁ ପାଉ । ଗୋଟିଏ ଦଳ ମାନବର ମୁକ୍ତଭାବକୁ ଭ୍ରମାତ୍ମକ କହନ୍ତି ଏବଂ ଅନ୍ୟ ଦଳ ବଦ୍ଧଭାବକୁ ଭ୍ରମାତ୍ମକ ବୋଲି କହନ୍ତି । ଏଠାରେ ଆମେମାନେ ଦ୍ୱିତୀୟ ଦଳ ସହିତ ଏକମତ—ଅର୍ଥାତ୍ ବଦ୍ଧଭାବ ହିଁ ଭ୍ରମାତ୍ମକ ।

ଅତଏବ ବେଦାନ୍ତର ସିଦ୍ଧାନ୍ତ ଏହି ଯେ—ଆମେମାନେ ବଦ୍ଧ ନୋହୁଁ, ଆମେମାନେ ନିତ୍ୟମୁକ୍ତ । କେବଳ ସେତିକ ନୁହେଁ, ଆମେମାନେ ବଦ୍ଧ, ଏହି କଥା କହିବା ବା ଭାବିବା ହିଁ ଅନିଷ୍ଟକର, ଏହା ଭ୍ରମ; ଏହା ନିଜକୁ ନିଜେ ସମ୍ମୋହିତ କରିବା । ଯେତେବେଳେ ତୁମେ କହ—ମୁଁ ବଦ୍ଧ, ମୁଁ ଦୁର୍ବଳ, ମୁଁ ଅସହାୟ—ସେତେବେଳେ ଆରମ୍ଭ ହୁଏ ତୁମର ଦୁର୍ଭାଗ୍ୟ, ତୁମେ ନିଜର ପାଦରେ ଆଉ ଗୋଟିଏ ଶିକୁଳି ଗୁଡ଼ାଇ ଦିଅ । ଏଭଳି କହ ନାହିଁ କିମ୍ବା ଏଭଳି ଭାବ ନାହିଁ ।

ମୁଁ ଗୋଟିଏ ଲୋକର କଥା ଶୁଣିଛି—ସେ ବଣରେ ବାସ କରୁଥିଲେ ଏବଂ ଦିନରାତି 'ଶିବୋଽହଂ' 'ଶିବୋଽହଂ' ଉଚ୍ଚାରଣ କରୁଥିଲେ । ଦିନେ ଗୋଟିଏ ବାଘ

ତାଙ୍କୁ ଆକ୍ରମଣ କରି ଆହାର କରିବା ସକାଶେ ଟାଣି ନେଇ ଯିବାକୁ ଲଗିଲା । ନଦୀର ଅନ୍ୟ ପାରରେ ଲୋକମାନେ ଏହା ଦେଖିଲେ ଏବଂ ଶୁଣିଲେ ତାଙ୍କ କଣ୍ଠ-ନିଃସୃତ 'ଶିବୋଽହଂ, ଶିବୋଽହଂ' ଧ୍ୱନି । ଯେତେ ସମୟ ତାଙ୍କର କଥା କହିବାର ଶକ୍ତି ଥିଲା, ବାଘ କବଳରେ ପଡ଼ି ମଧ୍ୟ ସେ 'ଶିବୋଽହଂ' 'ଶିବୋଽହଂ' କହିବାରୁ ବିରତ ହୋଇ ନାହାନ୍ତି । ଏହିଭଳି ଅନେକ ଲୋକଙ୍କ କଥା ଶୁଣାଯାଏ, ଯେଉଁ-ମାନେ ଶତ୍ରୁ ଦ୍ୱାରା ଖଣ୍ଡ ଖଣ୍ଡ ହୋଇ ମଧ୍ୟ ତାହାକୁ ଆଶୀର୍ବାଦ କରିଛନ୍ତି । ସୋଽହଂ ସୋଽହଂ—ମୁଁ ସେହି, ମୁଁ ସେହି, ତୁମେ ମଧ୍ୟ ସେହି । ମୁଁ ନିଶ୍ଚୟ ମୁକ୍ତ ଓ ପୂର୍ଣ୍ଣ-ସ୍ୱରୂପ, ମୋର ସକଳ ଶତ୍ରୁ ମଧ୍ୟ ତଦ୍ରୂପ । 'ତୁମେ ହିଁ ସେ ଏବଂ ମୁଁ ମଧ୍ୟ ସେ'—ଏହା ବୀରର କଥା ।

ଅବଶ୍ୟ ଦ୍ୱୈତବାଦୀମାନଙ୍କ ଧର୍ମରେ ମଧ୍ୟ ଅନେକ ଅପୂର୍ବ ମହତ୍ତ୍ୱ ଭାବ ରହିଛି—ପ୍ରକୃତିଠାରୁ ପୃଥକ୍ ଆମମାନଙ୍କର ଉପାସ୍ୟ ଓ ପ୍ରେମାସ୍ପଦ ସଗୁଣ ଈଶ୍ୱର-ବାଦ ଅତି ଅପୂର୍ବ—ଅନେକ ସମୟରେ ଏହା ଆମ ପ୍ରାଣକୁ ଶୀତଳ କରିଥାଏ; କିନ୍ତୁ ବେଦାନ୍ତ କହେ, ପ୍ରାଣର ଏହି ଶୀତଳତା ଅଫିମଖୋରର ନିଶା ପରି ଅସ୍ୱାଭାବିକ । ଦ୍ୱିତୀୟତଃ ଏହା ଦୁର୍ବଳତା ଆନୟନ କରେ; ବର୍ତ୍ତମାନ ଜଗତରେ ପୂର୍ବାପେକ୍ଷା ବେଶୀ ଆବଶ୍ୟକ—ବଳସଞ୍ଚାର, ଶକ୍ତି-ସଞ୍ଚାର । ବେଦାନ୍ତ କହେ, ଦୁର୍ବଳତା ହିଁ ସଂସାରର ସମୁଦାୟ ଦୁଃଖର କାରଣ, ଦୁର୍ବଳତା ସମୁଦାୟ ଦୁଃଖଭୋଗର ଏକମାତ୍ର କାରଣ । ଆମେମାନେ ଦୁର୍ବଳ ବୋଲି ଏତେ ଦୁଃଖ ଭୋଗ କରୁଁ । ଆମେମାନେ ଦୁର୍ବଳ ବୋଲି ଚୋରି, ଡକାୟତି, ମିଥ୍ୟା, ଜୁଆଚୋରି ବା ଅନ୍ୟାନ୍ୟ ପାପ କରିଥାଉଁ । ଦୁର୍ବଳ ବୋଲି ଆମେମାନେ ମୃତ୍ୟୁମୁଖରେ ପତିତ ହେଉ । ଯେଉଁଠାରେ ଆମମାନଙ୍କୁ ଦୁର୍ବଳ କରିବାର କିଛି ନାହିଁ, ସେଠାରେ ମୃତ୍ୟୁ ବା କୌଣସି ପ୍ରକାର ଦୁଃଖ ରହିପାରେ ନାହିଁ । ଆମେମାନେ ଭ୍ରାନ୍ତିବଶତଃ ଦୁଃଖ ଭୋଗ କରୁଛୁଁ । ଏହି ଭ୍ରାନ୍ତିକୁ ତଡ଼ିଦିଅ, ସବୁ ଦୁଃଖ ଚାଲିଯିବ । ଏହା ତ ଖୁବ୍ ସହଜ କଥା । ଏହି ସକଳ ଦାର୍ଶନିକ ବିଚାର ଓ କଠୋର ମାନସିକ ବ୍ୟାୟାମ ଭିତର ଦେଇ ଆମେ-ମାନେ ସମୁଦାୟ ଜଗତ ମଧ୍ୟରେ ସର୍ବାପେକ୍ଷା ସହଜ ଓ ସରଳ ଆଧ୍ୟାତ୍ମିକ ସିଦ୍ଧାନ୍ତରେ ଉପନୀତ ହେଲୁ ।

ଅଦ୍ୱୈତବେଦାନ୍ତ ଯେପରି ଭାବରେ ଆଧ୍ୟାତ୍ମିକ ସତ୍ୟ ପ୍ରକାଶ କରନ୍ତି, ତାହା ସର୍ବାପେକ୍ଷା ସରଳ ଓ ସହଜ । ଭାରତରେ ଏବଂ ଅନ୍ୟାନ୍ୟ ଦେଶରେ ମଧ୍ୟ ଏ ବିଷୟରେ ଗୋଟିଏ ଗୁରୁତର ଭ୍ରାନ୍ତ ଧାରଣା ହୋଇଥିଲା । ବେଦାନ୍ତର ଆଚାର୍ଯ୍ୟ-ଗଣ ସ୍ଥିର କରିଥିଲେ, ଏହି ଶିକ୍ଷାକୁ ସାର୍ବଜନୀନ କରାଯାଇପାରିବ ନାହିଁ; କାରଣ, ସେମାନେ ଯେଉଁ ସିଦ୍ଧାନ୍ତଗୁଡ଼ିକରେ ଉପନୀତ ହୋଇଥିଲେ, ତାହା ଉପରେ ଲକ୍ଷ୍ୟ ନ ରଖି ଯେଉଁ ପ୍ରଣାଳୀରେ ସେମାନେ ଏହି ସକଳ ସିଦ୍ଧାନ୍ତ ଲାଭ କରିଥିଲେ, ସେହି ପ୍ରଣାଳୀ ଉପରେ ହିଁ ବେଶୀ ଲକ୍ଷ୍ୟ ରଖିଥିଲେ । ଅବଶ୍ୟ ଏହି ପ୍ରଣାଳୀ ଅତି-

ଶସ୍ତ କଠିନ । ଏହି ବିଷମ ଦାର୍ଶନିକ ଓ ନୈତ୍ୟାୟିକ ଉକ୍ତିଗୁଡ଼ିକୁ ଦେଖି ସେମାନେ ଡରି ଯାଇଥିଲେ । ସେମାନେ ସର୍ବଦା ଭାବୁଥିଲେ, ଏଗୁଡ଼ିକୁ ପ୍ରାତ୍ୟହିକ କର୍ମ-ଜୀବନରେ ଶିକ୍ଷା କରାଯାଇପାରିବ ନାହିଁ ଏବଂ ଏପରି ଉଚ୍ଚଦର୍ଶନର ଆବରଣରେ ଅତ୍ୟନ୍ତ ନୈତିକ ଶିଥିଳତା ଦେଖାଦେବ ।

କିନ୍ତୁ ମୁଁ ଏ କଥା ଆଦୌ ବିଶ୍ୱାସ କରିବି ନାହିଁ ଯେ, ଜଗତରେ ଅଦ୍ୱୈତ ତତ୍ତ୍ୱ ପ୍ରଚାରିତ ହେଲେ ଦୁର୍ନୀତି ଓ ଦୁର୍ବଳତାର ପ୍ରାଦୁର୍ଭାବ ହେବ । ବରଂ ମୋର ଏହା ବିଶ୍ୱାସ କରିବାର ଯଥେଷ୍ଟ କାରଣ ଅଛି ଯେ, ଏହା ହିଁ ଦୁର୍ନୀତି ଓ ଦୁର୍ବଳତା ଦୂର କରିବାର ଏକମାତ୍ର ଔଷଧ । ଅତଏବ ଯେତେବେଳେ ନିକଟରେ ଅମୃତର ସ୍ରୋତ ବହୁଛି, ସେତେବେଳେ ଲୋକମାନଙ୍କୁ ପଙ୍କ-ପାଣି ପିଇବାକୁ କାହିଁକି ଦେଉଛ ? ଯଦି ଏହା ସତ୍ୟ ହୁଏ ଯେ, ସମସ୍ତେ ଶୁଦ୍ଧସ୍ୱରୂପ, ତେବେ ଏହି ମୁହୂର୍ତ୍ତିରୁ ସମୁଦାୟ ଜଗତକୁ ଏହି ଶିକ୍ଷା କାହିଁକି ଦେବ ନାହିଁ ? ସାଧୁ ଅସାଧୁ, ନର ନାରୀ, ବାଳକ ବାଳିକା, ବଡ଼ ଛୋଟ, ସମସ୍ତଙ୍କୁ କାହିଁକି ବଜ୍ରନିର୍ଘୋଷରେ ଏହା ଶିକ୍ଷା ଦେବ ନାହିଁ ? ଯେ କୌଣସି ବ୍ୟକ୍ତି ଜଗତରେ ଦେହଧାରଣ କରିଛି ଏବଂ ଯେଉଁ-ମାନେ ଭବିଷ୍ୟତରେ କରିବେ—ସେ ସିଂହାସନରେ ଉପବିଷ୍ଟ ରାଜା ହେଉ ଅଥବା ବାଟର ଝାଡ଼ୁଦାର ହେଉ, ଧନୀ ଦରିଦ୍ର—ସମସ୍ତଙ୍କୁ କାହିଁକି ଏ ଶିକ୍ଷା ନ ଦେବ ? ମୁଁ ରାଜାର ରାଜା, ମୋ ଅପେକ୍ଷା ବଡ଼ ରାଜା ନାହିଁ । ମୁଁ ଦେବତାର ଦେବତା, ମୋ ଅପେକ୍ଷା ବଡ଼ ଦେବତା ନାହିଁ ।

ବର୍ତ୍ତମାନ ଏହା ବଡ଼ କଠିନ କାର୍ଯ୍ୟ ବୋଲି ବୋଧ ହୋଇପାରେ; ବାସ୍ତବିକ ଅନେକଙ୍କ ପକ୍ଷରେ ଏହା ବଡ଼ ବିସ୍ମୟକର ବୋଲି ବୋଧହୁଏ; କିନ୍ତୁ ତାହା କେବଳ କୁସଂସ୍କାର ସକାଶେ, ଅନ୍ୟ କାରଣରୁ ନୁହେଁ । ସକଳ ପ୍ରକାର କଦର୍ଯ୍ୟ ଓ ଦୁଷ୍ପାଚ୍ୟ ଖାଦ୍ୟ ଖାଇ ଏବଂ ଉପବାସ କରି ଆମେମାନେ ନିଜକୁ ସୁଖାଦ୍ୟ ଖାଇବାର ଅନୁପ-ଯୁକ୍ତ କରି ପକାଇଛୁ । ଆମେମାନେ ଶିଶୁକାଳରୁ ଦୁର୍ବଳତାର କଥା ଶୁଣିଆସିଛୁ । ଏ ଠିକ୍ ଭୂତକୁ ବିଶ୍ୱାସ କରିବା ଭଳି । ଲୋକମାନେ ପ୍ରାୟ କହିଥାଆନ୍ତି, ଆମେମାନେ ଭୂତ ମାନୁ ନାହିଁ, କିନ୍ତୁ ଖୁବ୍ କମ୍ ଲୋକ ଦେଖିବ, ଅନ୍ଧକାରରେ ଯେଉଁମାନଙ୍କର ଦେହ ଶୀତେଇ ନ ଉଠେ । ଏହା କେବଳ କୁସଂସ୍କାର । ଠିକ୍ ସେହିପରି ଲୋକେ କହନ୍ତି, ଆମେମାନେ ଏହା ମାନୁ ନାହିଁ, ତାହା ମାନୁ ନାହିଁ, ଇତ୍ୟାଦି; କିନ୍ତୁ ବିପଦ ପଡ଼ିଲେ ଅନେକେ ମନେ ମନେ କହିଥାଆନ୍ତି ଯଦି କୌଣସି ଦେବତା ବା ଈଶ୍ୱର ଥାଆନ୍ତି, ତେବେ ସେ ଆମକୁ ରକ୍ଷା କରନ୍ତୁ ।

ଆନନ୍ଦ ସହକାରେ ବାରମ୍ବାର କହ—ସତ୍ୟାନୁଭୂତିର ଶକ୍ତିରେ କହ—ମୁଁ ମୁକ୍ତ, ମୁଁ ମୁକ୍ତ ଥିଲି, ଚିରଦିନ ମୁକ୍ତ ରହିବି । ବେଦାନ୍ତରୁ ଏହି ଅଦ୍ୱୈତଭାବର ମହାନ୍ ତତ୍ତ୍ୱ ଆସିଛି ଓ ଏହା ଚିରକାଳ ପ୍ରାଣବନ୍ତ ରହିବାର ଉପଯୁକ୍ତ । ବେଦାନ୍ତ-ଗ୍ରନ୍ଥଗୁଡ଼ିକ କାଲି ନଷ୍ଟ ହୋଇଯାଇପାରେ । ପ୍ରଥମେ ଏହି ତତ୍ତ୍ୱ

ହିନ୍ଦୁମାନଙ୍କର ଅଥବା ଉତ୍ତର-ମେରୁବାସୀମାନଙ୍କ ମସ୍ତିଷ୍କରୁ ଉଦ୍ଭୂତ ହୋଇଥିଲା, ସେଥିରେ କିଛି ଯାଏ ଆସେ ନାହିଁ । ଏହି ତତ୍ତ୍ୱଟି ସତ୍ୟ ଏବଂ ଯାହା ସତ୍ୟ ତାହା ସନାତନ । ସତ୍ୟ ଆମମାନଙ୍କୁ ଏହି ଶିକ୍ଷା ଦିଏ ଯେ, ଏହା କାହାର ବିଶେଷ ସମ୍ପତ୍ତି ନୁହେଁ । ମନୁଷ୍ୟ, ପଶୁ, ଦେବତା ସମସ୍ତେ ଏହି ସତ୍ୟର ଅଧିକାରୀ; ସେମାନଙ୍କୁ ଏହି ସତ୍ୟ ଶିଖାଅ । ଜୀବନକୁ ଦୁଃଖମୟ କରିବା କଅଣ ଦରକାର ? ଲୋକଙ୍କୁ ନାନାପ୍ରକାର କୁସଂସ୍କାରରେ କାହିଁକି ବାନ୍ଧୁଛ ? କେବଳ ଏଠାରେ (ଇଂଲଣ୍ଡରେ) ନୁହେଁ, ଏହି ତତ୍ତ୍ୱର ଜନ୍ମଭୂମିରେ ତୁମେ ଯଦି ଲୋକଙ୍କୁ ଏହା କହ, ସେମାନେ ଡରିଯିବେ । ସେମାନେ କହନ୍ତି, ଏହା ସନ୍ନ୍ୟାସୀମାନଙ୍କ ସକାଶେ—ଯେଉଁମାନେ ସଂସାର ତ୍ୟାଗ କରି ବଣରେ ବାସ କରନ୍ତି; କିନ୍ତୁ ଆମେମାନେ ସାମାନ୍ୟ ଗୃହସ୍ଥ ଲୋକ, ଧର୍ମ କରିବାକୁ ଗଲେ ଆମମାନଙ୍କର କୌଣସି ନା କୌଣସି ପ୍ରକାର ଭୟ ଦରକାର, କ୍ରିୟାକାଣ୍ଡ ଦରକାର ଇତ୍ୟାଦି ।

ଦ୍ୱୈତବାଦ ଜଗତକୁ ବହୁ ଦିନ ଶାସନ କରିଛି; ଆଉ ତାହାର ଫଳ ଏହି । କାହିଁକି ଗୋଟିଏ ନୂତନ ପରୀକ୍ଷା କରୁ ନାହଁ ? ହୁଏତ ସମସ୍ତେ ଏହି ଭାବ ଧାରଣା କରିବାକୁ ଲକ୍ଷ ଲକ୍ଷ ବର୍ଷ ଲାଗିବ, କିନ୍ତୁ ବର୍ତ୍ତମାନ ଆରମ୍ଭ କରୁ ନାହଁ କାହିଁକି ? ଯଦି ଆମେମାନେ ଆମମାନଙ୍କର ଜୀବନରେ କୋଡ଼ିଏଟି ଲୋକଙ୍କୁ ଏହା କହିପାରୁ, ଆମେମାନେ ଖୁବ୍ ବଡ଼ କାମ କଲୁ ।

ଭାରତବର୍ଷରେ ଆଉ ଗୋଟିଏ ଧାରଣା ଅଛି, ଯାହା ପୂର୍ବୋକ୍ତ ତତ୍ତ୍ୱପ୍ରଚାରର ବିରୋଧୀ । ତା' ହେଉଛି—'ମୁଁ ଶୁଦ୍ଧ, ମୁଁ ଆନନ୍ଦସ୍ୱରୂପ' ଏହି କଥା କହିବା ବେଶ୍ ଭଲ; କିନ୍ତୁ ଆମେ ଜୀବନରେ ତ ସର୍ବଦା ଏହା ଦେଖାଇପାରୁ ନାହିଁ । ଏହା ସତ୍ୟ । ଆଦର୍ଶ ସବୁବେଳେ ଅତି କଠିନ । ପ୍ରତ୍ୟେକ ଶିଶୁ ଆକାଶକୁ ବହୁ ଉପରେ ଦେଖେ; କିନ୍ତୁ ତା' ବୋଲି ଆମେମାନେ କଅଣ ଆକାଶକୁ ଯିବାକୁ କାହିଁକି ଚେଷ୍ଟା କରିବା ନାହିଁ ? କୁସଂସ୍କାର ଆଡ଼କୁ ଗଲେ କଅଣ ସବୁ ଭଲ ହୋଇଯିବ ? ଅମୃତ ଲାଭ ଯଦି ନ କରିପାରୁ ତେବେ କଅଣ ବିଷପାନ କଲେ ମଙ୍ଗଳ ହେବ ? ଆମେ ଏବେ ସତ୍ୟକୁ ଅନୁଭବ କରିପାରୁନାହୁଁ ବୋଲି କଅଣ ଅନ୍ଧକାର, ଦୁର୍ବଳତା ଓ କୁସଂସ୍କାର ଆଡ଼କୁ ଗଲେ ମଙ୍ଗଳ ହେବ ?

ନାନା ପ୍ରକାର ଦ୍ୱୈତବାଦ ସମ୍ବନ୍ଧରେ ମୋର କୌଣସି ଆପତ୍ତି ନାହିଁ; କିନ୍ତୁ ଯଦି କୌଣସି ଉପଦେଶ ଦୁର୍ବଳତା ଶିକ୍ଷା ଦିଏ, ସେଠାରେ ମୋର ବିଶେଷ ଆପତ୍ତି । ନର ନାରୀ ବା ବାଳକ ବାଳିକା ଯେତେବେଳେ ଦୈହିକ, ମାନସିକ ବା ଆଧ୍ୟାତ୍ମିକ ଶିକ୍ଷା ପାଆନ୍ତି, ମୁଁ ସେମାନଙ୍କୁ ଏହି ଗୋଟିଏ ପ୍ରଶ୍ନ ପଚାରିଥାଏ, 'ତୁମେ-ମାନେ କଅଣ ଶକ୍ତି ଅନୁଭବ କରୁଛ ?' କାରଣ ମୁଁ ଜାଣେ, ସତ୍ୟ ହିଁ ଏକମାତ୍ର ବଳ ବା ଶକ୍ତି ପ୍ରଦାନ କରେ । ମୁଁ ଜାଣେ, ସତ୍ୟ ହିଁ ଏକମାତ୍ର ପ୍ରାଣପ୍ରଦ, ସତ୍ୟ ଆଡ଼କୁ ନ ଗଲେ କଦାପି ଆମେମାନେ ବୀର୍ଯ୍ୟବାନ୍ ହେବୁ ନାହିଁ; ଆଉ ବୀର ନ

ହେଲେ ସତ୍ୟ ଉପଲବ୍ଧି କରିବା ସମ୍ଭବ ହେବ ନାହିଁ । ତେଣୁ ଯେ କୌଣସି ମତ ଯେକୌଣସି ଶିକ୍ଷାପ୍ରଣାଳୀ ମନକୁ ଓ ମସ୍ତିଷ୍କକୁ ଦୁର୍ବଳ କରିପକାଏ, ମନୁଷ୍ୟକୁ କୁସଂସ୍କାରବିଷ୍ଟ କରିପକାଏ, ଯାହାଦ୍ୱାରା ମନୁଷ୍ୟ ଅନ୍ଧକାରରେ ଅଣ୍ଡାଳ ହୁଏ, ଯାହା ମନୁଷ୍ୟମାନଙ୍କୁ ସକଳ ପ୍ରକାର ବିକୃତମସ୍ତିଷ୍କପ୍ରସୂତ ଅସମ୍ଭବ ଅଦ୍ଭୁତ କୁସଂସ୍କାରପୂର୍ଣ୍ଣ ବିଷୟର ଅନ୍ୱେଷଣ କରାଏ, ମୁଁ ସେହି ପ୍ରଣାଳୀଗୁଡ଼ିକୁ ପସନ୍ଦ କରେ ନାହିଁ; କାରଣ ମନୁଷ୍ୟ ଉପରେ ସେମାନଙ୍କର ପ୍ରଭାବ ଅତି ସାଙ୍ଘାତିକ ଏବଂ ତଦ୍ୱାରା କୌଣସି ଉପକାର ହୁଏ ନାହିଁ, ସେଗୁଡ଼ିକ ନିତାନ୍ତ ନିଷ୍ଫଳ ।

ଯେଉଁମାନେ ଏହି ବିଷୟରେ ଚିନ୍ତା କରିଛନ୍ତି, ସେମାନେ ମୋ ସହିତ ଏ ବିଷୟରେ ଏକମତ ହେବେ ଯେ ଏଗୁଡ଼ିକ ମନୁଷ୍ୟକୁ ବିକୃତ ଓ ଦୁର୍ବଳ କରିପକାଏ —ଏତେ ଦୁର୍ବଳ କରେ ଯେ କ୍ରମଶଃ ତା' ପକ୍ଷରେ ସତ୍ୟ ଲାଭ କରିବା ଓ ସେହି ସତ୍ୟର ଆଲୋକରେ ଜୀବନଯାପନ କରିବା ଏକପ୍ରକାର ଅସମ୍ଭବ ହୋଇପଡ଼େ । ଅତଏବ ଆମମାନଙ୍କର ଏକମାତ୍ର ଆବଶ୍ୟକ ଶକ୍ତି । ଶକ୍ତି ହିଁ ଏହି ପାର୍ଥିବ ଦୁର୍ଭୋଗର ଏକମାତ୍ର ମହୌଷଧି । ଦରିଦ୍ରମାନେ ଯେତେବେଳେ ଧନୀମାନଙ୍କଦ୍ୱାରା ପଦଦଳିତ ହୁଅନ୍ତି, ସେତେବେଳେ ଶକ୍ତି ସେମାନଙ୍କର ଏକମାତ୍ର ଔଷଧ । ମୂର୍ଖ ଯେତେବେଳେ ବିଦ୍ୱାନ୍‌ଦ୍ୱାରା ଉତ୍ପୀଡ଼ିତ ହୁଏ, ସେତେବେଳେ ଏହି ଶକ୍ତି ହିଁ ତାହାର ଏକମାତ୍ର ଔଷଧ । ଆଉ ଯେତେବେଳେ ପାପୀମାନେ ଅନ୍ୟ ପାପୀମାନଙ୍କଦ୍ୱାରା ଉତ୍ପୀଡ଼ିତ ହୁଅନ୍ତି, ସେତେବେଳେ ଏହି ଶକ୍ତି ହିଁ ଏକମାତ୍ର ଔଷଧ । ଅଦ୍ୱୈତବାଦ ଯେପରି ଶକ୍ତି ବା ବଳ ପ୍ରଦାନ କରେ, ଅନ୍ୟ କିଛି ସେପରି କରିପାରେ ନାହିଁ । ଅଦ୍ୱୈତବାଦ ଆମମାନଙ୍କୁ ଯେପରି ନୀତିପରାୟଣ କରେ, ଅନ୍ୟ କୌଣସି ମତ ସେପରି କରିପାରେ ନାହିଁ । ଯେତେବେଳେ ସମୁଦାୟ ଦାୟିତ୍ୱ ଆମମାନଙ୍କ କାନ୍ଧ ଉପରେ ପଡ଼େ, ସେତେବେଳେ ଆମେମାନେ ସର୍ବଶକ୍ତି ପ୍ରୟୋଗ କରି ଯେତେ ଭଲ ଭାବରେ କାର୍ଯ୍ୟ କରିପାରୁ, ଅନ୍ୟ କୌଣସି ଅବସ୍ଥାରେ ସେପରି କରିପାରୁ ନାହିଁ । ମୁଁ ତୁମ ସମସ୍ତଙ୍କୁ ଡାକି କହୁଛି, କହ ତ, ଯଦି ଗୋଟିଏ ଶ୍ରେଷ୍ଠ ଶିଶୁକୁ ମୁଁ ତୁମମାନଙ୍କ ହାତରେ ଦିଏ, ତୁମେମାନେ ତାହା ପ୍ରତି କିପରି ବ୍ୟବହାର କରିବ ? ମୁହୂର୍ତ୍ତକ ମଧ୍ୟରେ ତୁମମାନଙ୍କର ଜୀବନ ବଦଳିଯିବ । ତୁମମାନଙ୍କର ଯେଉଁପରି ସ୍ୱଭାବ ହେଉନା କାହିଁକି, ତୁମେମାନେ ଅନ୍ତତଃ ସେହି ସମୟ ପାଇଁ ସମ୍ପୂର୍ଣ୍ଣ ନିଃସ୍ୱାର୍ଥ ହୋଇଯିବ । ତୁମମାନଙ୍କ ଉପରେ ଦାୟିତ୍ୱ ଲଦିଦେଲେ ତୁମମାନଙ୍କର ସମସ୍ତ ପାପପ୍ରବୃତ୍ତି ପଳାୟନ କରିବ; ତୁମମାନଙ୍କର ଚରିତ୍ର ବଦଳିଯିବ । ଏହିପରି ଯେତେବେଳେ ସମୁଦାୟ ଦାୟିତ୍ୱ ଆମମାନଙ୍କ ଉପରେ ପଡ଼େ, ସେତେବେଳେ ଆମମାନଙ୍କ ମଧ୍ୟରେ ଶ୍ରେଷ୍ଠ ଭାବର ସ୍ଫୁରଣ ହୁଏ । ଯେତେବେଳେ ଆମେ ସବୁ ଦୋଷକୁ ଅନ୍ୟ ଉପରେ ଆରୋପ ନ କରୁ ଯେତେବେଳେ ସଇତାନ ବା ଈଶ୍ୱର କାହାରିକୁ ହେଲେ ଦୋଷ ସକାଶେ ଆମେ ଦାୟୀ ନ କରୁ, ସେତେବେଳେ ଆମେ-

ମାନେ ଯଥାଶକ୍ତି ଭଲଭାବରେ କର୍ମ କରୁ । ମୁଁ ମୋର ଅଦୃଷ୍ଟ ପାଇଁ ଦାୟୀ । ମୁଁ ନିଜର ଶୁଭାଶୁଭ ଉଭୟର କର୍ତ୍ତା; କିନ୍ତୁ ମୁଁ ଶୁଦ୍ଧ ଓ ଆନନ୍ଦସ୍ୱରୂପ । ସବୁପ୍ରକାର ବିରୋଧୀ ଭାବ ବର୍ଜନ କରିବାକୁ ହେବ ।

'ନ ମୃତ୍ୟୁ ନ ଶଙ୍କା ନ ମେ ଜାତିଭେଦଃ,
ପିତା ନୈବ ମେ ନୈବ ମାତା ନ ଜନ୍ମ ।
ନ ବନ୍ଧୁର୍ନ ମିତ୍ରଂ ଗୁରୁର୍ନୈବ ଶିଷ୍ୟଃ,
ଚିଦାନନ୍ଦରୂପଃ ଶିବୋଽହଂ ଶିବୋଽହମ୍ ॥
ନ ପୁଣ୍ୟଂ ନ ପାପଂ ନ ସୌଖ୍ୟଂ ନ ଦୁଃଖଂ
ନ ମନ୍ତ୍ରଂ ନ ତୀର୍ଥଂ ନ ବେଦା ନ ଯଜ୍ଞାଃ ।
ଅହଂ ଭୋଜନଂ ନୈବ ଭୋଜ୍ୟଂ ନ ଭୋକ୍ତା,
ଚିଦାନନ୍ଦରୂପଃ ଶିବୋଽହଂ ଶିବୋଽହମ୍ ॥'

(ନିର୍ବାଣଷଟ୍‌କମ୍)

ବେଦାନ୍ତ କହେ, ଏହି ସ୍ତବ ହିଁ ଏକମାତ୍ର ଅବଲମ୍ବନୀୟ । ଏହା ସେହି ପରମ ଲକ୍ଷ୍ୟରେ ପହଞ୍ଚିବାର ଏକମାତ୍ର ଉପାୟ—ନିଜକୁ ଏବଂ ସମସ୍ତଙ୍କୁ କହ ଯେ ଆମେମାନେ ସେହି । ପୁନଃ ପୁନଃ ଏହିପରି କହିଲେ ଶକ୍ତି ଆସେ । ଯେ ପ୍ରଥମେ ଛୋଟେଇ ଚାଲେ, ସେ କ୍ରମଶଃ ପାଦରେ ବଳ ପାଇ ମାଟି ଉପରେ ପାଦ ସିଧାରଖି ଚାଲିପାରେ । 'ଶିବୋଽହଂ'—ରୂପକ ଏହି ଅଭୟବାଣୀ କ୍ରମଶଃ ଗଭୀରରୁ ଗଭୀରତର ହୋଇ ଆମମାନଙ୍କର ହୃଦୟକୁ ଅଧିକାର କରେ, ପରଶେଷରେ ଆମ-ମାନଙ୍କର ପ୍ରତି ଶିରାରେ, ପ୍ରତି ଧମନୀରେ, ଶରୀରର ପ୍ରତ୍ୟେକ ଅଂଶରେ ପରିବ୍ୟାପ୍ତ ହୋଇପଡ଼େ । ଜ୍ଞାନ-ସୂର୍ଯ୍ୟର କିରଣ ଯେତେ ଉଜ୍ଜ୍ୱଳରୁ ଉଜ୍ଜ୍ୱଳତର ହୁଏ, ଆମମାନଙ୍କର ମୋହ ସେତେ ଚାଲିଯାଏ, ଅଜ୍ଞାନରାଶି ଦୂର ହୋଇଯାଏ—କ୍ରମଶଃ ଏପରି ଏକ ସମୟ ଆସେ, ଯେତେବେଳେ ସମୁଦାୟ ଅଜ୍ଞାନ ଏକାବେଳକେ ଚାଲିଯାଏ ଏବଂ ଏକମାତ୍ର ଜ୍ଞାନସୂର୍ଯ୍ୟ ଅବଶିଷ୍ଟ ରହେ ।

ଅବଶ୍ୟ ଏହି ବେଦାନ୍ତତତ୍ତ୍ୱ ଅନେକଙ୍କ ପକ୍ଷରେ ଭୀଷଣ ବୋଲି ବୋଧ ହୋଇପାରେ; କିନ୍ତୁ ତାହାର କାରଣ ଯେ କୁସଂସ୍କାର, ତାହା ମୁଁ ପୂର୍ବରୁ କହିଛି । ଏହି ଦେଶରେ (ଇଂଲଣ୍ଡରେ) ଏପରି ଅନେକ ଲୋକ ଅଛନ୍ତି, ସେମାନଙ୍କୁ ମୁଁ ଯଦି କହେ ସଇତାନ ବୋଲି କେହି ନାହିଁ, ସେମାନେ ଭାବନ୍ତି, ଯାଃ—ସବୁ ଧର୍ମ ଗଲା ! ଅନେକ ଲୋକ ମୋତେ କହିଛନ୍ତି, ସଇତାନ ନ ଥିଲେ ଧର୍ମ କିପରି ରହିବ ? ସେମାନେ କହନ୍ତି, ଆମମାନଙ୍କୁ କେହି ଚଳାଇବାକୁ ନ ଥିଲେ ଆଉ ଧର୍ମ କଅଣ ହେଲା ? କେହି ଆମମାନଙ୍କୁ ଶାସନ କରିବାକୁ ନ ରହିଲେ ଆମେମାନେ ଜୀବନ-ଯାତ୍ରା ନିର୍ବାହ କରିବୁ କିପରି ? ବାସ୍ତବିକ କଥା ଏହି, ଆମେମାନେ ଏହିପରି ନିୟନ୍ତ୍ରିତ ହେବାକୁ ଭଲ ପାଉ । ଆମେମାନେ ଏହିଭଳି ଭାବରେ ରହିବାକୁ ଅଭ୍ୟସ୍ତ

ହୋଇଛୁ, ସୁତରାଂ ଏହାକୁ ଆମେମାନେ ଭଲପାଉ । ପ୍ରତିଦିନ କେହି ନା କେହି ଆମମାନଙ୍କୁ ତିରସ୍କାର ନ କଲେ ଆମେମାନେ ସୁଖୀ ହୋଇପାରୁ ନାହିଁ । ସେହି କୁସଂସ୍କାର । କିନ୍ତୁ ବର୍ତ୍ତମାନ ଏହା ଯେତେ ଭୟଙ୍କର ବୋଲି ବୋଧ ହେଲେ ମଧ୍ୟ ଏପରି ଏକ ସମୟ ଆସିବ, ଯେତେବେଳେ ଆମେମାନେ ଅତୀତର ଇତିହାସ ସ୍ମରଣ କରି ଶୁଦ୍ଧ ଅନନ୍ତ ଆତ୍ମାକୁ ଯେଉଁ ସକଳ କୁସଂସ୍କାରରେ ଆବୃତ କରି ରଖିଥିଲୁ, ତାହା ସ୍ମରଣ କରି ହସିବୁ, ଏବଂ ଆନନ୍ଦ ଓ ଦୃଢ଼ତାର ସହିତ କହିବୁ—ମୁଁ ହିଁ ସେହି ଆତ୍ମା, ଚିରକାଳ ତାହା ଥିଲି ଏବଂ ସର୍ବଦା ତାହା ହିଁ ରହିବି ।

# କର୍ମ-ଜୀବନରେ ବେଦାନ୍ତ

## ପ୍ରଥମ ପ୍ରସ୍ତାବ

[ଲଣ୍ଡନରେ ପ୍ରଦତ୍ତ—୧୦ ନଭେମ୍ବର, ୧୮୯୬]

ମୋତେ ଅନେକେ କର୍ମ-ଜୀବନରେ ବେଦାନ୍ତ ଦର୍ଶନର ଉପଯୋଗିତା ସମ୍ବନ୍ଧରେ କିଛି କହିବାକୁ କହିଛନ୍ତି । ମୁଁ ତୁମମାନଙ୍କୁ ପୂର୍ବରୁ କହିଛି, ମତବାଦ ହିସାବରେ ଏହା ଖୁବ୍ ଭଲ । ହେଲେ ମଧ୍ୟ ଏହାକୁ କିଭଳି କାର୍ଯ୍ୟରେ ପରିଣତ କରାଯିବ, ଏହା ହିଁ ପ୍ରକୃତ ସମସ୍ୟା । ଯଦି ଏହାକୁ କାର୍ଯ୍ୟରେ ପରିଣତ କରିବା ଏକାବେଳକେ ଅସମ୍ଭବ ହୁଏ, ତେବେ ବୁଦ୍ଧିର ଟିକିଏ ବ୍ୟାୟାମ ବ୍ୟତୀତ କୌଣସି ମତବାଦର କୌଣସି ମୂଲ୍ୟ ନାହିଁ । ଅତଏବ ବେଦାନ୍ତ ଯଦି ଧର୍ମର ଆସନ ଅଧିକାର କରିବାକୁ ଚାହେଁ, ତେବେ ଏହାକୁ ବିଶେଷରୂପେ କାର୍ଯ୍ୟକର ହେବାକୁ ହେବ । ଆମେମାନେ ଯେପରି ଆମ ଜୀବନର ସକଳ ଅବସ୍ଥାରେ ଏହାକୁ କାର୍ଯ୍ୟରେ ପରିଣତ କରିପାରୁ । କେବଳ ତାହା ନୁହେଁ, ଆଧ୍ୟାତ୍ମିକ ଓ ବ୍ୟାବହାରିକ ଜୀବନ ମଧ୍ୟରେ ଯେଉଁ ଗୋଟିଏ କାଳ୍ପନିକ ଭେଦ ଅଛି, ତାହା ମଧ୍ୟ ଯେପରି ଦୂର ହୋଇଯାଏ । କାରଣ ବେଦାନ୍ତ ଏକ ଅଖଣ୍ଡ ବସ୍ତୁ ସମ୍ବନ୍ଧରେ ଶିକ୍ଷା ଦିଏ—ବେଦାନ୍ତ କହେ, ଏକପ୍ରାଣ ସର୍ବତ୍ର ବିରାଜିତ । ଧର୍ମର ଆଦର୍ଶସମୂହ ଯେପରି ସମଗ୍ର ଜୀବନକୁ ଆଚ୍ଛାଦନ କରେ, ତାହା ଯେପରି ଆମର ପ୍ରତ୍ୟେକ ଚିନ୍ତା ଭିତରେ ପ୍ରବେଶ କରେ ଓ କାର୍ଯ୍ୟରେ ମଧ୍ୟ ଯେପରି ସେଗୁଡ଼ିକର ପ୍ରଭାବ ଉତ୍ତରୋତ୍ତର ବୃଦ୍ଧିପାଏ । ମୁଁ କ୍ରମଶଃ କର୍ମ-ଜୀବନରେ ବେଦାନ୍ତର ପ୍ରଭାବର କଥା କହିବି; କିନ୍ତୁ ଏହି ବକ୍ତୃତାଗୁଡ଼ିକ ଭବିଷ୍ୟତ ବକ୍ତୃତାସମୂହର ଉପକ୍ରମଣିକାରୂପରେ ସଂକଳ୍ପିତ; ସୁତରାଂ ଆମମାନଙ୍କୁ ପ୍ରଥମେ ମତବାଦଗୁଡ଼ିକ ବିଷୟରେ ଆଲୋଚନା କରିବାକୁ ହେବ । ଆମମାନଙ୍କୁ ବୁଝିବାକୁ ହେବ, ପର୍ବତଗହ୍ୱର ଓ ନିବିଡ଼ ଅରଣ୍ୟରୁ ସମୁଦ୍‌ଭୂତ ହୋଇ କିପରି ସେଗୁଡ଼ିକ କର୍ମମୁଖର ନଗରୀର ରାଜପଥରେ କାର୍ଯ୍ୟରେ ପରିଣତ ହୋଇଛି । ଆମେ ଏହି ମତଗୁଡ଼ିକର ଆଉ ଗୋଟିଏ ବିଶେଷତ୍ୱ ଦେଖିବା ଯେ, ଏହି ଚିନ୍ତାଗୁଡ଼ିକର ଅଧିକାଂଶ କେବଳ ନିର୍ଜନ ଅରଣ୍ୟବାସର ଫଳ ନୁହେଁ; କିନ୍ତୁ ଯେଉଁସବୁ ବ୍ୟକ୍ତି-ମାନଙ୍କୁ ଆମେ ସର୍ବାପେକ୍ଷା ଅଧିକ କର୍ମ-ବ୍ୟସ୍ତ ବୋଲି ମନେ କରୁଁ, ସିଂହାସନୋପବିଷ୍ଟ ସେହି ରାଜାମାନେ ଏସବୁର ପ୍ରଣେତା ।

ଶ୍ୱେତକେତୁ* ଆରୁଣି ଋଷିଙ୍କର ପୁତ୍ର । ଏହି ଋଷି ବୋଧହୁଏ ବାନପ୍ରସ୍ଥୀ ଥିଲେ । ଶ୍ୱେତକେତୁ ବନରେ ପ୍ରତିପାଳିତ ହୋଇଥିଲେ; କିନ୍ତୁ ସେ ପାଞ୍ଚାଳ

* ଛାନ୍ଦୋଗ୍ୟ ଉପ., ୫।୩

ଦେଶର ରାଜସଭାରେ ରାଜା ପ୍ରବାହଣ ଜୈବଲଙ୍କ ନିକଟକୁ ଯାଇଥିଲେ । ରାଜା ତାଙ୍କୁ ପଚାରିଲେ, 'ମୃତ୍ୟୁକାଳରେ ପ୍ରାଣୀମାନେ କିପରି ଭାବରେ ଏହି ଲୋକରୁ ଗମନ କରନ୍ତି, ତାହା କଅଣ ତୁମେ ଜାଣ ?'—'ନା ।' 'କିପରି ସେମାନେ ଏଠାକୁ ପୁନର୍ବାର ଆସିଥାଆନ୍ତି, ତାହା କଅଣ ତୁମେ ଜାଣ ?'—'ନା' । 'ତୁମେ କଅଣ ପିତୃଯାନ ଓ ଦେବଯାନର ବିଷୟ ଅବଗତ ଅଛ ?' ରାଜା ତାଙ୍କୁ ଏହିଭଳି ଆହୁରି ଅନେକ ପ୍ରଶ୍ନ ପଚାରିଲେ । ଶ୍ୱେତକେତୁ କୌଣସି ପ୍ରଶ୍ନର ଉତ୍ତର ଦେଇପାରିଲେ ନାହିଁ । ତେଣୁ ରାଜା ତାଙ୍କୁ କହିଲେ, 'ତୁମେ କିଛି ଜାଣ ନାହିଁ ।' ବାଳକ ପିତାଙ୍କ ନିକଟକୁ ଫେରିଆସି ଏ କଥା କହିବାରୁ ପିତା କହିଲେ, 'ମୁଁ ମଧ୍ୟ ଏସବୁ ପ୍ରଶ୍ନର ଉତ୍ତର ଜାଣେ ନାହିଁ । ଯଦି ଜାଣିଥାଆନ୍ତି, ତାହାହେଲେ କଅଣ ତୁମକୁ ଶିଖାଇ ନ ଥାନ୍ତି ?' ସେତେବେଳେ ପିତା ରାଜାଙ୍କ ପାଖରେ ପହଞ୍ଚି ତାଙ୍କୁ ଏହି ରହସ୍ୟ-ବିଦ୍ୟା ଶିକ୍ଷା ଦେବା ସକାଶେ ଅନୁରୋଧ କଲେ । ରାଜା କହିଲେ, 'ଏହି ବିଦ୍ୟା—ଏହି ବ୍ରହ୍ମବିଦ୍ୟା କେବଳ ରାଜାମାନେ ଜାଣନ୍ତି, ଯଜ୍ଞକାରୀ ବ୍ରାହ୍ମଣମାନେ କଦାପି ଏହା ଜାଣନ୍ତି ନାହିଁ ।' ଯାହା ହେଉ; ସେ ଏହା ସମ୍ବନ୍ଧରେ ଯାହା ଜାଣିଥିଲେ, ତାହା ଶିକ୍ଷା ଦେବାକୁ ଆରମ୍ଭ କଲେ । ଆମେମାନେ ଅନେକ ଉପନିଷଦ୍‌ରେ ଏହା ପଢ଼ିଛୁ ଯେ, ବେଦାନ୍ତଦର୍ଶନ କେବଳ ଅରଣ୍ୟରେ ଧ୍ୟାନଲବ୍ଧ ନୁହେଁ; ବରଂ ଏହାର ସର୍ବୋତ୍କୃଷ୍ଟ ଅଂଶଗୁଡ଼ିକ ସାଂସାରିକ କାର୍ଯ୍ୟରେ ବ୍ୟସ୍ତ ବ୍ୟକ୍ତିଙ୍କ ଦ୍ୱାରା ଚିନ୍ତିତ ଓ ପ୍ରକାଶିତ । ଲକ୍ଷ ଲକ୍ଷ ପ୍ରଜାଙ୍କର ଶାସକ ସାର୍ବଭୌମ ରାଜାଙ୍କ ଅପେକ୍ଷା ଅଧିକ କର୍ମବ୍ୟସ୍ତ ମନୁଷ୍ୟ କଳ୍ପନା କରାଯାଇପାରେ ନାହିଁ; ତଥାପି ସେହି ରାଜାମାନେ ଗଭୀର ଚିନ୍ତାଶୀଳ ଥିଲେ ।

ଏହିପରି ବିଭିନ୍ନ ଦିଗରୁ ଦେଖିଲେ ଏହା ସ୍ପଷ୍ଟ ଅନୁମିତ ହୁଏ ଯେ, ଏହି ଦର୍ଶନର ଆଲୋକରେ ଜୀବନ ଗଠନ ଓ ଜୀବନ ଯାପନ କରିବା ଅବଶ୍ୟ ସମ୍ଭବ । ପରବର୍ତ୍ତୀ କାଳରେ ରଚିତ ଭଗବଦ୍‌ଗୀତା ଯେତେବେଳେ ଆମେମାନେ ଆଲୋଚନା କରୁ—ଆପଣମାନେ ବୋଧହୁଏ ଅନେକେ ଏହା ପଢ଼ିଛନ୍ତି, ଏହା ବେଦାନ୍ତଦର୍ଶନର ଗୋଟିଏ ସର୍ବୋତ୍ତମ ଭାଷ୍ୟ—ସେତେବେଳେ ଆମେ ଏକ ଆଶ୍ଚର୍ଯ୍ୟ ବିଷୟ ଦେଖିବାକୁ ପାଉ ଯେ, ଯେଉଁ ସଂଗ୍ରାମସ୍ଥଳ ଏହି ଉପଦେଶର ସ୍ଥାନ ବୋଲି ନିର୍ବାଚିତ—ସେଠାରେ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ଏହି ଦର୍ଶନର ଉପଦେଶ ଦେଉଛନ୍ତି ଏବଂ ଗୀତାର ପ୍ରତ୍ୟେକ ପୃଷ୍ଠାରେ ଏହି ମତ ସ୍ପଷ୍ଟଭାବରେ ପ୍ରକାଶିତ ରହିଛି—ତୀବ୍ର କର୍ମଶୀଳତା; କିନ୍ତୁ ଏହା ମଧ୍ୟରେ ପୁଣି ଅନନ୍ତ ଶାନ୍ତଭାବ । ଏହି ତତ୍ତ୍ୱକୁ 'କର୍ମରହସ୍ୟ' ବୋଲି କୁହାଯାଇଛି । ଏହି ଅବସ୍ଥା ଲାଭ କରିବା ହିଁ ବେଦାନ୍ତର ଲକ୍ଷ୍ୟ । ଆମେମାନେ 'ଅକର୍ମ' କହିଲେ ସାଧାରଣତଃ ଯାହା ବୁଝୁଁ ଅର୍ଥାତ୍ ନିଶ୍ଚେଷ୍ଟତା, ତାହା କେବେହେଲେ ଆମମାନଙ୍କର ଆଦର୍ଶ ହୋଇ ନ ପାରେ । ତାହା ଯଦି ହୋଇଥାଆନ୍ତା, ତେବେ ତ ଆମମାନଙ୍କର ଚତୁଃପାର୍ଶ୍ୱବର୍ତ୍ତୀ କାନ୍ଥଗୁଡ଼ିକ ପରମଜ୍ଞାନୀ ହୋଇ-

ଥାଆନ୍ତେ, କାରଣ ସେମାନେ ଯେ ନିଶ୍ଚେଷ୍ଟ । ମୃତ୍ତିକାଖଣ୍ଡ, ଗଛର ଗଣ୍ଡି—ଏହିଗୁଡ଼ିକ ତ ତାହାହେଲେ ଜଗତରେ ମହା ତପସ୍ୱୀ ବୋଲି ବିଖ୍ୟାତ ହୁଅନ୍ତେ, କାରଣ ସେମାନେ ତ ନିଶ୍ଚେଷ୍ଟ । ପୁନଶ୍ଚ କାମନାଯୁକ୍ତ ହେଲେ ଯେ ନିଶ୍ଚେଷ୍ଟତା କର୍ମରେ ପରିଣତ ହୁଏ, ତାହା ମଧ୍ୟ ନୁହେଁ । ବେଦାନ୍ତର ଆଦର୍ଶ ଯେଉଁ ପ୍ରକୃତ କର୍ମ, ତାହା ଅନନ୍ତ ସ୍ଥିରତା ସହିତ ଜଡ଼ିତ—ଯାହା କିଛି ଘଟୁନା କାହିଁକି, ସେହି ସ୍ଥିରତା କେବେହେଲେ ନଷ୍ଟ ହେବାର ନୁହେଁ—ଚିତ୍ତର ସେହି ସମଭାବ କଦାପି ଭାଙ୍ଗିବ ନାହିଁ । ଆମେମାନେ ନିଜ ଅଭିଜ୍ଞତାଦ୍ୱାରା ଏହା ଜାଣିଛୁ, କାର୍ଯ୍ୟ କରିବା ନିମିତ୍ତ ଏହିପରି ମନୋଭାବ ହିଁ ସର୍ବାପେକ୍ଷା ଉପଯୁକ୍ତ ।

ଲୋକେ ମୋତେ ଅନେକ ଥର ପଚାରିଛନ୍ତି, ଆମେମାନେ କାର୍ଯ୍ୟ ପ୍ରତି ଯେଉଁଭଳି ଏକ ଆକର୍ଷଣ ବୋଧ କରିଥାଉ, ସେଭଳି ଆଗ୍ରହ ନ ରହିଲେ କାର୍ଯ୍ୟ କରିବୁ କିପରି ? ମୁଁ ମଧ୍ୟ ପୂର୍ବେ ଏହିପରି ଭାବୁଥିଲି; କିନ୍ତୁ ମୋର ଯେତେ ବୟସ ବଢ଼ୁଛି, ମୁଁ ଯେତେ ଅଭିଜ୍ଞତା ଲାଭ କରୁଛି, ସେତେ ମୁଁ ଦେଖୁଛି ଯେ, ଏହା ସତ୍ୟ ନୁହେଁ । କାର୍ଯ୍ୟର ପଶ୍ଚାତ୍ତରେ ଯେତେ କମ୍ ଆକର୍ଷଣ ବା କାମନା ଥାଏ, ଆମେ ସେତେ ସୁନ୍ଦର ଭାବରେ କାର୍ଯ୍ୟ କରିବାକୁ ସମର୍ଥ ହୋଇଥାଉ । ଆମେମାନେ ଯେତେ ଶାନ୍ତ ହେବୁ, ଆମ ନିଜର ସେତିକି ମଙ୍ଗଳ, ସେତେ ଅଧିକ କାର୍ଯ୍ୟ ଆମେ କରିପାରିବୁ । ଯେତେବେଳେ ଆମେମାନେ ଭାବାବେଗରେ ପରିଚାଳିତ ହୋଇ-ଥାଉ, ସେତେବେଳେ ଆମେମାନେ ଶକ୍ତିର ବିଶେଷ ଅପବ୍ୟୟ କରିଥାଉ; ଆମ-ମାନଙ୍କର ସ୍ନାୟୁମଣ୍ଡଳୀକୁ ବିକୃତ କରିପକାଉ—ମନ ଚଞ୍ଚଳ ହୋଇଉଠେ, ଅଥଚ କାର୍ଯ୍ୟ ଖୁବ୍ କମ୍ ହୁଏ । ଯେଉଁ ଶକ୍ତି କାର୍ଯ୍ୟରୂପରେ ପରିଣତ ହେବା ଉଚିତ ଥିଲା, ତାହା ବୃଥା ହୃଦୟାବେଗରେ ପର୍ଯ୍ୟବସିତ ହୋଇଯାଏ । ମନ ଯେତେବେଳେ ବିଶେଷ ଶାନ୍ତ ଓ ସ୍ଥିର ଥାଏ, କେବଳ ସେତେବେଳେ ଆମର ସମୁଦାୟ ଶକ୍ତି ସତ୍ କାର୍ଯ୍ୟରେ ବ୍ୟୟିତ ହୋଇଥାଏ । ଯଦି ତୁମେମାନେ ଜଗତରେ ବଡ଼ ବଡ଼ କାର୍ଯ୍ୟ-କୁଶଳ ବ୍ୟକ୍ତିମାନଙ୍କର ଜୀବନୀ ପାଠ କର, ତାହାହେଲେ ଦେଖିବ, ସେମାନେ ଅଦ୍ଭୁତ ଶାନ୍ତ ପ୍ରକୃତିର ଲୋକ ଥିଲେ; କୌଣସି କିଛି ସେମାନଙ୍କର ଚିତ୍ତର ସମତା ନଷ୍ଟ କରିପାରୁ ନଥିଲା । ତେଣୁ ଯେଉଁ ବ୍ୟକ୍ତି ସହଜରେ ରାଗିଯାଆନ୍ତି, ସେ କୌଣସି ବଡ଼ କାମ କରିପାରନ୍ତି ନାହିଁ । ଯେଉଁ ବ୍ୟକ୍ତି କେବେହେଲେ ରାଗନ୍ତି ନାହିଁ, ସେ ସର୍ବାପେକ୍ଷା ବେଶୀ କାମ କରିପାରନ୍ତି । ଯେଉଁ ବ୍ୟକ୍ତି କ୍ରୋଧ, ଘୃଣା ବା ଅନ୍ୟ କୌଣସି ରିପୁର ବଶୀଭୂତ ହୁଏ, ସେ ଏ ଜଗତରେ ବେଶୀ କିଛି କରିପାରେ ନାହିଁ; ସେ ଯେପରି ନିଜକୁ ଖଣ୍ଡ ଖଣ୍ଡ କରିପକାଏ; ସେ ସେପରି କିଛି କାମିକା ଲୋକ ହୁଏ ନାହିଁ । କେବଳ ଶାନ୍ତ, କ୍ଷମାଶୀଳ, ସ୍ଥିରଚିତ୍ତ ବ୍ୟକ୍ତି ସର୍ବାପେକ୍ଷା ଅଧିକ କାର୍ଯ୍ୟ କରିଥାଆନ୍ତି ।

ବେଦାନ୍ତ ଆମମାନଙ୍କୁ ଆଦର୍ଶ ସମ୍ବନ୍ଧରେ ଉପଦେଶ ଦେଇଥାଏ; ଆଦର୍ଶ

ଅବଶ୍ୟ ବାସ୍ତବରୁ, ଅର୍ଥାତ୍ କାର୍ଯ୍ୟକାରୀ ବିଷୟଠାରୁ ଅନେକ ଉଚ୍ଚରେ । ଆମମାନଙ୍କ ଜୀବନରେ ଦୁଇଟି ପ୍ରବଣତା ଦେଖିବାକୁ ମିଳେ—ଗୋଟିଏ ଆମମାନଙ୍କର ଆଦର୍ଶକୁ ଜୀବନୋପଯୋଗୀ କରିବା ଏବଂ ଅନ୍ୟଟି ଏହି ଜୀବନକୁ ଆଦର୍ଶୋପଯୋଗୀ ଗଠନ କରିବା । ଏହି ପାର୍ଥକ୍ୟଟିକୁ ଭଲଭାବରେ ବୁଝିବା ଉଚିତ, କାରଣ ଆଦର୍ଶକୁ ଜୀବନୋପଯୋଗୀ କରିବା ପାଇଁ ଆମେମାନେ ଅନେକ ସମୟରେ ପ୍ରଲୁବ୍ଧ ହୋଇ-ଥାଉଁ । ମୋର ଧାରଣା, ମୁଁ କୌଣସି ବିଶେଷପ୍ରକାର କାର୍ଯ୍ୟ କରିପାରିବି, ହୁଏତ ତାହାର ଅଧିକାଂଶ ଖରାପ । ଏହାର ଅଧିକାଂଶର ପଶ୍ଚାତ୍‌ରେ ହୁଏତ କ୍ରୋଧ, ଘୃଣା ଅଥବା ସ୍ୱାର୍ଥପରତାରୂପକ ଅଭିସନ୍ଧି ରହିଛି । ମନେକର କୌଣସି ବ୍ୟକ୍ତି ମୋତେ କୌଣସି ବିଶେଷ ଆଦର୍ଶ ସମ୍ବନ୍ଧରେ ଉପଦେଶ ଦେଲେ—ଅବଶ୍ୟ ତାଙ୍କର ପ୍ରଥମ ଉପଦେଶ ହେବ ଯେ--ସ୍ୱାର୍ଥପରତା, ଆତ୍ମସୁଖ ତ୍ୟାଗ କର । ମୁଁ ଭାବିଲି, ଏହା କାର୍ଯ୍ୟରେ ପରିଣତ କରିବା ଅସମ୍ଭବ; କିନ୍ତୁ ଯଦି କେହି ଏପରି ଏକ ଆଦର୍ଶ ବିଷୟରେ ଉପଦେଶ ଦିଅନ୍ତି, ଯାହା ମୋର ସମୁଦାୟ ସ୍ୱାର୍ଥପରତା ଓ ସମୁଦାୟ ଅସାଧୁଭାବକୁ ସମର୍ଥନ କରେ, ମୁଁ ତତ୍‌କ୍ଷଣାତ୍ କହି ଉଠେ, ଏହା ହିଁ ମୋର ଆଦର୍ଶ—ମୁଁ ସେହି ଆଦର୍ଶକୁ ଅନୁସରଣ କରିବା ପାଇଁ ବ୍ୟଗ୍ର ହୋଇ ଉଠେ । ଯେପରି 'ଶାସ୍ତ୍ରୀୟ' ଓ 'ଅଶାସ୍ତ୍ରୀୟ' କଥାର ଅର୍ଥ ନେଇ ଲୋକମାନେ ଗୋଳମାଳ କରିଥାଆନ୍ତି; ମୁଁ ଯାହା ବୁଝିଲି, ତାହା ଶାସ୍ତ୍ରୀୟ ଓ ତୁମର ମତ ଅଶାସ୍ତ୍ରୀୟ । 'କାର୍ଯ୍ୟକର' (practical) କଥାଟି ନେଇ ମଧ୍ୟ ଏହିପରି ଗୋଳମାଳ ହୋଇଅଛି । ମୁଁ ଯାହାକୁ କାର୍ଯ୍ୟକର ବୋଲି ମନେ କରେ, ଜଗତରେ ତାହା ହିଁ ଏକମାତ୍ର କାର୍ଯ୍ୟକର । ଯଦି ମୁଁ ଦୋକାନଦାର ହୁଏ, ତେବେ ମୁଁ ଭାବେ ଯେ, ଦୋକାନ-ଦାରୀ ହିଁ ଏକମାତ୍ର କାର୍ଯ୍ୟକର ଧର୍ମ । ଯଦି ମୁଁ ଚୋର ହୁଏ, ମୁଁ ଭାବେ ଯେ, ଚୋରି କରିବାର ଉତ୍ତମ କୌଶଳଟି ସର୍ବୋତ୍ତମ କାର୍ଯ୍ୟକର ଧର୍ମ । ସୁତରାଂ ତୁମେ-ମାନେ ଦେଖୁଛ, ଏହି 'କାର୍ଯ୍ୟକର' ଶବ୍ଦଟିକୁ ଆମେ ନିଜେ ଯାହା ଭଲପାଉ ଓ ଯାହା କରିପାରୁ କେବଳ ସେହି ବିଷୟରେ ପ୍ରୟୋଗ କରିଥାଉ । ସେଥିପାଇଁ ମୁଁ ତୁମମାନଙ୍କୁ ବୁଝିବାକୁ କହୁଛି ଯେ, ଯଦିଓ ବେଦାନ୍ତ ଚୂଡ଼ାନ୍ତଭାବରେ କାର୍ଯ୍ୟକର, ଏହା ସାଧାରଣ ଅର୍ଥରେ କାର୍ଯ୍ୟକର ନୁହେଁ; ଆଦର୍ଶ ହିସାବରେ ଏହା କାର୍ଯ୍ୟକର । ଏହାର ଆଦର୍ଶ ଯେତେ ଉଚ୍ଚ ହେଉନା କାହିଁକି, ଏହା କୌଣସି ଅସମ୍ଭବ ଆଦର୍ଶକୁ ଆମମାନଙ୍କର ସମ୍ମୁଖରେ ସ୍ଥାପନ କରେ ନାହିଁ, ଅଥଚ ଏହି ଆଦର୍ଶ 'ଆଦର୍ଶ' ନାମର ଉପଯୁକ୍ତ । ଗୋଟିଏ କଥାରେ ଏହାର ଉପଦେଶ 'ତତ୍ତ୍ୱମସି'—'ତୁମେ ହିଁ ସେହି ବ୍ରହ୍ମ'—ଏହା ହିଁ ସମୁଦାୟ ଉପଦେଶର ଶେଷ ପରିଣତି । ନାନାବିଧ ତର୍କ ବିଚାର ପରେ ଏହି ସିଦ୍ଧାନ୍ତରେ ଆମେ ଉପନୀତ ହେଉ ଯେ, ମାନବାତ୍ମା ଶୁଦ୍ଧସ୍ୱଭାବ ଓ ସର୍ବଜ୍ଞ । ଆତ୍ମା ସମ୍ବନ୍ଧରେ ଜନ୍ମ ବା ମୃତ୍ୟୁର କଥା କହିବା ବାତୁଳତା ମାତ୍ର । ଆତ୍ମା କଦାପି ଜାତ ହୁଏ ନାହିଁ କି ମରେ ନାହିଁ; ମୁଁ ମରିବି ବା ମରିବାକୁ

ଭରେ, ଏସବୁ ଭାବ କେବଳ କୁସଂସ୍କାର ମାତ୍ର । ମୁଁ ଏହା କରିପାରିବି ବା କରିପାରିବି ନାହିଁ— ଏହା ମଧ୍ୟ କୁସଂସ୍କାର । ମୁଁ ସବୁ କରିପାରିବି । ବେଦାନ୍ତ ମନୁଷ୍ୟଙ୍କୁ ପ୍ରଥମେ ନିଜ ଉପରେ ବିଶ୍ୱାସ ସ୍ଥାପନ କରିବାକୁ କହେ । ଯେପରି ଜଗତରେ କୌଣସି କୌଣସି ଧର୍ମ କହେ—ଯେଉଁ ବ୍ୟକ୍ତି ନିଜଠାରୁ ପୃଥକ୍ ସଗୁଣ ଈଶ୍ୱରଙ୍କର ଅସ୍ତିତ୍ୱ ସ୍ୱୀକାର ନ କରେ, ସେ ନାସ୍ତିକ; ସେହିଭଳି ବେଦାନ୍ତ କହେ —ଯେଉଁ ଲୋକ ନିଜକୁ ବିଶ୍ୱାସ ନ କରେ, ସେ ନାସ୍ତିକ । ଆତ୍ମମହିମାରେ ବିଶ୍ୱାସ ସ୍ଥାପନ ନ କରିବା ବେଦାନ୍ତ ମତରେ ନାସ୍ତିକତା । ଅନେକଙ୍କ ପକ୍ଷରେ ଏହି ଧାରଣା ଅତି ସାଂଘାତିକ, ସେଥିରେ କୌଣସି ସନ୍ଦେହ ନାହିଁ; ଆଉ ଆମେମାନେ ଅନେକେ ବିବେଚନା କରୁ ଯେ, ଆମେ କେବେହେଲେ ଏହି ଆଦର୍ଶରେ ପ୍ରତିଷ୍ଠିତ ହୋଇପାରିବୁ ନାହିଁ; କିନ୍ତୁ ବେଦାନ୍ତ ଦୃଢ଼ ଭାବରେ କହେ ଯେ, ପ୍ରତ୍ୟେକେ ହିଁ ଏହି ସତ୍ୟଙ୍କୁ ଜୀବନରେ ପ୍ରତ୍ୟକ୍ଷ କରିପାରିବେ । ଏ ବିଷୟରେ ସ୍ତ୍ରୀ-ପୁରୁଷ ଭେଦ ନାହିଁ, ବାଳକ-ବାଳିକା ଭେଦ ନାହିଁ, ଜାତିଭେଦ ନାହିଁ—ଆବାଳବୃଦ୍ଧବନିତା ଜାତିଧର୍ମନିର୍ବିଶେଷରେ ଏହି ସତ୍ୟଙ୍କୁ ଉପଲବ୍ଧି କରିପାରିବେ—କୌଣସି କିଛି ଏହାର ପ୍ରତିବନ୍ଧକ ହୋଇପାରେ ନାହିଁ; କାରଣ ବେଦାନ୍ତ ଦେଖାଇ ଦିଏ ଯେ, ଏହା ପୂର୍ବରୁ ଅନୁଭୂତ, ପୂର୍ବରୁ ହିଁ ଏହା ରହିଛି ।

ବ୍ରହ୍ମାଣ୍ଡର ସମୁଦାୟ ଶକ୍ତି ଆମମାନଙ୍କଠାରେ ପୂର୍ବରୁ ରହିଛି । ଆମେ ନିଜେ ଆମ ଆଖିରେ ହାତ ଦେଇ 'ଅନ୍ଧକାର' ବୋଲି ଚିତ୍କାର କରୁଛୁ । ହାତ କାଢ଼ିନିଅ, ଦେଖିବ, ପ୍ରଥମରୁ ହିଁ ଆଲୋକ ଥିଲା । ଅନ୍ଧକାର କେବେହେଲେ ନ ଥିଲା, ଦୁର୍ବଳତା କଦାପି ନ ଥିଲା । ଆମେମାନେ ନିର୍ବୋଧ ବୋଲି ଚିତ୍କାର କରୁ —'ଆମେମାନେ ଦୁର୍ବଳ, ଆମେମାନେ ଅପବିତ୍ର ।' ସୁତରାଂ ବେଦାନ୍ତ ଯେ ଆଦର୍ଶକୁ କେବଳ କାର୍ଯ୍ୟରେ ପରିଣତ କରିହୁଏ ବୋଲି କହେ, ତାହା ନୁହେଁ; ବରଂ କହେ ଯେ, ଏହା ଆମମାନଙ୍କର ପୂର୍ବରୁ ଉପଲବ୍ଧ; ଆଉ ଯାହାକୁ ଆମେ-ମାନେ ବର୍ତ୍ତମାନ ଆଦର୍ଶ କହୁଛୁ, ତାହା ହିଁ ବାସ୍ତବ ସତ୍ତା—ତାହା ହିଁ ଆମମାନଙ୍କର ସ୍ୱରୂପ ଏବଂ ଯାହା କିଛି ଦେଖୁଛୁ, ସମୁଦାୟ ମିଥ୍ୟା । ଯେତେବେଳେ ତୁମେ କହ, 'ମୁଁ ମରଣଶୀଳ କ୍ଷୁଦ୍ର ଜୀବ', ସେତେବେଳେ ତୁମେ ମିଥ୍ୟା କହୁଛ; ତୁମେ ଯେପରି ଯାଦୁ-ବଳରେ ନିଜକୁ ଅସତ୍, ଦୁର୍ବଳ, ହତଭାଗ୍ୟ କରିପକାଇଛ ।

ବେଦାନ୍ତ ପାପ ସ୍ୱୀକାର କରେ ନାହିଁ, ଭ୍ରମ ସ୍ୱୀକାର କରେ । ବେଦାନ୍ତ କହେ, ସର୍ବାପେକ୍ଷା ବିଷମ ଭ୍ରମ ହେଉଛି—ନିଜକୁ ଦୁର୍ବଳ, ପାପୀ ଏବଂ ହତଭାଗ୍ୟ ବୋଲି କହିବା । ମୋର କୌଣସି ଶକ୍ତି ନାହିଁ, ମୁଁ ଏହା କରିପାରିବି ନାହିଁ, ମୁଁ ତାହା କରିପାରିବି ନାହିଁ, ଏହା ହିଁ ବିଷମ ଭ୍ରମ । କାରଣ, ଯେତେବେଳେ ତୁମେ ଏହିଭଳି ଚିନ୍ତା କର, ସେତେବେଳେ ତୁମେ, ଯେଉଁ ଶୃଙ୍ଖଳ ତୁମକୁ ବାନ୍ଧି ରଖିଛି, ତାହାକୁ ଆହୁରି ଦୃଢ଼କର; ତୁମେ ତୁମର ଆତ୍ମାକୁ ପୂର୍ବଠାରୁ ଅଧିକ ମାୟାବରଣରେ

ଆବୃତ କର । ଅତଏବ ଯେ ନିଜକୁ ଦୁର୍ବଳ ବୋଲି ଚିନ୍ତା କରେ, ସେ ଭ୍ରାନ୍ତ; ଯେ ନିଜକୁ ଅପବିତ୍ର ବୋଲି ମନେ କରେ ସେ ଭ୍ରାନ୍ତ, ସେ ଜଗତରେ ଗୋଟିଏ ଅସତ୍ ଚିନ୍ତାର ସ୍ରୋତ ବିସ୍ତାର କରେ । ଆମମାନଙ୍କୁ ସର୍ବଦା ମନେ ରଖିବାକୁ ହେବ ଯେ, ବେଦାନ୍ତରେ ଆମମାନଙ୍କର ଏହି ବର୍ତ୍ତମାନ ଜୀବନକୁ, ଏହି ମାୟାମୟ ମିଥ୍ୟା-ଜୀବନକୁ—ଆଦର୍ଶ ସହିତ ମିଳାଇବାର କୌଣସି ଚେଷ୍ଟା ନାହିଁ । ବେଦାନ୍ତ କହେ, ଏହି ମିଥ୍ୟା-ଜୀବନକୁ ପରିତ୍ୟାଗ କରିବାକୁ ହେବ, ତାହାହେଲେ ଏହାର ଅନ୍ତରାଳରେ ଯେଉଁ ସତ୍ୟ-ଜୀବନ ସର୍ବଦା ବିଦ୍ୟମାନ, ତାହା ପ୍ରକାଶିତ ହେବ । ଏପରି ନୁହେଁ ଯେ, ମନୁଷ୍ୟ ପୂର୍ବେ ଅଳ୍ପ ପବିତ୍ର ଥିଲା, ଏବଂ ତାହାଠାରୁ ପବିତ୍ରତର ହେଲା; କିନ୍ତୁ ବାସ୍ତବିକ ସେ ପୂର୍ବରୁ ହିଁ ଶୁଦ୍ଧ ଅଛି—ତାହାର ସେହି ଶୁଦ୍ଧ ସ୍ୱଭାବ ଅଳ୍ପ ଅଳ୍ପ ହୋଇ ପ୍ରକାଶ ପାଇଥାଏ ମାତ୍ର । ଆବରଣ ଚାଲିଯାଏ ଏବଂ ଆତ୍ମାର ସ୍ୱାଭାବିକ ପବିତ୍ରତା ପ୍ରକାଶିତ ହେବାକୁ ଆରମ୍ଭ କରେ । ପୂର୍ବରୁ ଆମମାନଙ୍କ ମଧ୍ୟରେ ଅନନ୍ତ ପବିତ୍ରତା, ମୁକ୍ତସ୍ୱଭାବ, ପ୍ରେମ ଓ ଐଶ୍ୱର୍ଯ୍ୟ ରହିଛି ।

ବେଦାନ୍ତ ଆହୁରି ମଧ୍ୟ କହେ, ଏହା ଯେ କେବଳ ବଣରେ ଅଥବା ପର୍ବତ-ଗୁହାରେ ଉପଲବ୍ଧି କରାଯାଇପାରେ, ତାହା ନୁହେଁ । ଆମେମାନେ ପୂର୍ବରୁ ଦେଖିଛୁଁ, ପ୍ରଥମେ ଯେଉଁମାନେ ଏହି ସତ୍ୟସକଳ ଆବିଷ୍କାର କରିଛନ୍ତି, ସେମାନେ ବଣରେ ଅଥବା ପର୍ବତଗୁହାରେ ବାସ କରୁ ନ ଥିଲେ, ଅଥବା ସେମାନେ ସାଧାରଣ ଲୋକ ମଧ୍ୟ ନ ଥିଲେ; ବରଂ ସେମାନେ ଅତ୍ୟନ୍ତ କର୍ମମୟ ଜୀବନଯାପନ କରୁଥିଲେ । ଯେଉଁମାନଙ୍କୁ ସୈନ୍ୟ ପରିଚାଳନା କରିବାକୁ ହେଉଥିଲା, ଯେଉଁ-ମାନଙ୍କୁ ସିଂହାସନରେ ବସି ପ୍ରଜାମାନଙ୍କର ମଙ୍ଗଳାମଙ୍ଗଳ ଦେଖିବାକୁ ହେଉଥିଲା, ସେହି ରାଜାମାନେ ହିଁ ଏହି ସତ୍ୟସକଳ ଉପଲବ୍ଧି କରିଥିଲେ । ସେତେବେଳେ ରାଜାମାନେ ସର୍ବମୟକର୍ତ୍ତା ଥିଲେ—ଆଜିକାଲି ଭଳି ସାକ୍ଷୀଗୋପାଳ ନ ଥିଲେ; ତଥାପି ସେମାନେ ଏହିସବୁ ତତ୍ତ୍ୱ ଚିନ୍ତା କରିବା, ଏଗୁଡ଼ିକୁ ଜୀବନରେ ପରିଣତ କରିବା ଏବଂ ମାନବଜାତିକୁ ତାହା ଶିକ୍ଷା ଦେବା ପାଇଁ ସମୟ ପାଉଥିଲେ । ଅତଏବ ସେମାନଙ୍କ ଅପେକ୍ଷା ଆମମାନଙ୍କର ଏହି ତତ୍ତ୍ୱ ଅନୁଭବ କରିବା ତ ବରଂ ଅନେକ ସହଜ, କାରଣ ସେମାନଙ୍କ ତୁଳନାରେ ଆମ ଜୀବନରେ ଅଧିକ ଅବସର ରହିଛି । ଅତଏବ ଆମମାନଙ୍କର ଯେତେବେଳେ ଏତେ ବେଶୀ ଅବସର, ଆମେମାନେ ଯେତେବେଳେ ସେମାନଙ୍କ ଅପେକ୍ଷା ଅଧିକ ପରିମାଣରେ ସ୍ୱାଧୀନ, ସେତେବେଳେ ଆମେମାନେ ଯଦି ଏହି ସକଳ ସତ୍ୟ ଅନୁଭବ କରି ନ ପାରିବା, ତେବେ ତ ଏହା ଆମମାନଙ୍କ ପକ୍ଷରେ ଅତି ଲଜ୍ଜାର କଥା । ପୂର୍ବକାଳୀନ ସର୍ବମୟ ସମ୍ରାଟ୍‌ମାନଙ୍କ ତୁଳନାରେ ଆମମାନଙ୍କର ସମୟର ଅଭାବ ତ କିଛି ନୁହେଁ । କୁରୁକ୍ଷେତ୍ର ଯୁଦ୍ଧକ୍ଷେତ୍ରରେ ଅବସ୍ଥିତ ଅଗଣିତ ଅକ୍ଷୌହିଣୀ-ପରିଚାଳକ ଅର୍ଜୁନଙ୍କ ତୁଳନାରେ ଆମମାନଙ୍କର କାର୍ଯ୍ୟ-ତାଡ଼ନା କିଛି ନୁହେଁ; ତଥାପି ଏହି ଯୁଦ୍ଧ-

କୋଲାହଳ ମଧ୍ୟରେ ସେ ଉଚ୍ଚତମ ଦର୍ଶନର କଥା ଶୁଣିବାକୁ ଏବଂ ଏହାକୁ କାର୍ଯ୍ୟରେ ପରିଣତ କରିବାକୁ ସମୟ ପାଇଥିଲେ; ସୁତରାଂ ଆମର ଏହି ଅପେକ୍ଷାକୃତ ସ୍ୱଚ୍ଛନ୍ଦ ଓ ଆରାମଦାୟକ ଜୀବନରେ ଏହା ପାରିବା ଉଚିତ । ଆମେମାନେ ଯଦି ବାସ୍ତବିକ ସଦ୍ଭାବରେ ସମୟ କଟାଇବାକୁ ଇଚ୍ଛା କରୁ, ତାହାହେଲେ ଦେଖିବୁ— ଆମେମାନେ ଯେତେଟା ଭାବୁ ତାହା ଅପେକ୍ଷା ଆମ ଅଧିକାଂଶଙ୍କର ଅଧିକ ସମୟ ରହିଛି । ଆମମାନଙ୍କର ଯେତେ ଅବକାଶ ଅଛି, ସେଥିରେ ଯଦି ଆମେମାନେ ବାସ୍ତବିକ ଇଚ୍ଛା କରୁ, ତେବେ ଆମେମାନେ ଗୋଟାଏ ଆଦର୍ଶ କାହିଁକି, ପଚାଶଟି ଆଦର୍ଶ ଅନୁସରଣ କରିବାକୁ ସମର୍ଥ ହେବୁ; କିନ୍ତୁ ଆଦର୍ଶକୁ କଦାପି ଅବନତ କରିବା ଉଚିତ ନୁହେଁ । ଏହା ଆମମାନଙ୍କର ଜୀବନରେ ଏକ ବିଶେଷ ପ୍ରଲୋଭନ । ଅନେକ ବ୍ୟକ୍ତି ଅଛନ୍ତି – ତାଙ୍କର ମିଥ୍ୟା ଅଭାବ ଓ ବାସନା ସକାଶେ ନାନାପ୍ରକାର ଆପତ୍ତି ପ୍ରଦର୍ଶନ କରନ୍ତି ଏବଂ ଆମେମାନେ ମଧ୍ୟ ଭାବୁ ଯେ, ଏହାଠାରୁ ଉଚ୍ଚତର ଆଦର୍ଶ ବୋଧହୁଏ ଆଉ କିଛି ନାହିଁ, କିନ୍ତୁ ବାସ୍ତବିକ ତାହା ନୁହେଁ । ବେଦାନ୍ତ ଏଭଳି ଶିକ୍ଷା କଦାପି ଦିଏ ନାହିଁ । ପ୍ରତ୍ୟକ୍ଷ ଜୀବନକୁ ଆଦର୍ଶ ସହିତ ଏକୀଭୂତ କରିବାକୁ ହେବ, ବର୍ତ୍ତମାନ ଜୀବନକୁ ଅନନ୍ତ ଜୀବନ ସହିତ ଏକୀଭୂତ କରିବାକୁ ହେବ ।

ତୁମମାନଙ୍କୁ ସର୍ବଦା ମନେ ରଖିବାକୁ ହେବ ଯେ, ବେଦାନ୍ତର ମୂଳକଥା ଏହି ଏକତ୍ୱ ବା ଅଖଣ୍ଡ ଭାବ । ଦୁଇ ବୋଲି କିଛି ନାହିଁ, ଦୁଇ ପ୍ରକାର ଜୀବନ ନାହିଁ ଅଥବା ଦୁଇଟି ଜଗତ ମଧ୍ୟ ନାହିଁ । ତୁମେମାନେ ଦେଖିବ, ବେଦ ପ୍ରଥମତଃ ସ୍ୱର୍ଗାଦିର କଥା କହିଛନ୍ତି; କିନ୍ତୁ ଶେଷରେ ଯେତେବେଳେ ଦର୍ଶନର ଉଚ୍ଚତମ ଆଦର୍ଶର ବିଷୟ କହିବାକୁ ଆରମ୍ଭ କରିଛନ୍ତି, ସେତେବେଳେ ସେହି ସମସ୍ତ କଥା ଏକାବେଳକେ ପରିତ୍ୟକ୍ତ ହୋଇଛି । ଗୋଟିଏ ମାତ୍ର ଜୀବନ ଅଛି, ଗୋଟିଏ ମାତ୍ର ଜଗତ ଅଛି, ଗୋଟିଏ ମାତ୍ର ଅସ୍ତିତ୍ୱ ଅଛି । ସବୁ ସେହି ଗୋଟିଏ ସତ୍ତା; ପ୍ରଭେଦ ପରିମାଣଗତ, ପ୍ରକାରଗତ ନୁହେଁ । ଭିନ୍ନ ଭିନ୍ନ ଜୀବନ ମଧ୍ୟରେ ପ୍ରଭେଦ ପ୍ରକାରଗତ ନୁହେଁ । ପଶୁଗଣ ମନୁଷ୍ୟଠାରୁ ସମ୍ପୂର୍ଣ୍ଣ ପୃଥକ୍ ଏବଂ ସେମାନେ ଈଶ୍ୱରଙ୍କଦ୍ୱାରା ଆମମାନଙ୍କର ଖାଦ୍ୟରୂପରେ ବ୍ୟବହୃତ ହେବା ସକାଶେ ସୃଷ୍ଟି ହୋଇଛନ୍ତି— ବେଦାନ୍ତ ଏହିଭଳି କଥାସବୁ ଏକାବେଳକେ ଅସ୍ୱୀକାର କରେ ।

କେତେଗୁଡ଼ିଏ ଲୋକ ଦୟାପରବଶ ହୋଇ ଜୀବିତ-ବ୍ୟବଚ୍ଛେଦ-ନିବାରଣୀ ସଭା (Anti-vivisection Society) ସ୍ଥାପନ କରିଛନ୍ତି । ମୁଁ ଏହି ସଭାର ଜଣେ ସଭ୍ୟଙ୍କୁ ପଚାରିଲି, 'ବନ୍ଧୁ, ଆପଣମାନେ ଖାଦ୍ୟ ସକାଶେ ପଶୁହତ୍ୟା ସମ୍ପୂର୍ଣ୍ଣ ନ୍ୟାୟସଙ୍ଗତ ବୋଲି ଭାବନ୍ତି, ଅଥଚ ବୈଜ୍ଞାନିକ ପରୀକ୍ଷା ସକାଶେ ଗୋଟିଏ ଦୁଇଟି ପଶୁ ହତ୍ୟାର ଏତେ ବିରୋଧୀ କାହିଁକି ?' ସେ ଉତ୍ତର ଦେଲେ, 'ପଶୁମାନେ ଯେହେତୁ ଆମମାନଙ୍କର ଖାଦ୍ୟ ସକାଶେ ପ୍ରଦତ୍ତ ହୋଇଛନ୍ତି, ସେଥିପାଇଁ ତାଙ୍କୁ ହତ୍ୟାକଲେ

କୌଣସି କ୍ଷତି ନାହିଁ; କିନ୍ତୁ ଜୀବନର ବ୍ୟବଚ୍ଛେଦ ଅତି ଭୟଙ୍କର କଥା ।' କି ଅଦ୍ଭୁତ ବାସ୍ତବିକ ଯୁକ୍ତି ! ପଶୁମାନେ ମଧ୍ୟ ସେହି ଅଖଣ୍ଡ ସତ୍ତାର ଅନ୍ତର୍ଭୁକ୍ତ । ଯଦି ମନୁଷ୍ୟର ଜୀବନ ଅନନ୍ତ ହୁଏ, ପଶୁର ମଧ୍ୟ ତଦ୍ରୂପ । ପ୍ରଭେଦ କେବଳ ପରିମାଣ-ଗତ, ପ୍ରକାରଗତ ନୁହେଁ । ମୁଁ ଯେପରି, କ୍ଷୁଦ୍ର ଜୀବାଣୁ ମଧ୍ୟ ତଦ୍ରୂପ—ପ୍ରଭେଦ କେବଳ ପରିମାଣଗତ, ଏବଂ ସେହି ସର୍ବୋଚ୍ଚ ସତ୍ତାର ଦୃଷ୍ଟିରୁ ଦେଖିଲେ ଏ ସକଳ ପ୍ରଭେଦ ମଧ୍ୟ ଦେଖାଯାଏ ନାହିଁ । ତୃଣ ଓ ଗୋଟିଏ କ୍ଷୁଦ୍ର ବୃକ୍ଷ ଭିତରେ ଅନେକ ପ୍ରଭେଦ ଦେଖାଯାଏ; କିନ୍ତୁ ଯଦି ତୁମେ ଖୁବ୍ ଉଚ୍ଚକୁ ଆରୋହଣ କର, ତେବେ ସେହି ତୃଣ ଓ ବୃହତ୍ତମ ବୃକ୍ଷ ସମାନ ବୋଧ ହୁଅନ୍ତି । ସେହିପରି ସେହି ଉଚ୍ଚତମ ସତ୍ତାର ଦୃଷ୍ଟିରୁ ସବୁ କିଛି ସମାନ—ଆଉ ଯଦି ତୁମେ ଈଶ୍ୱରଙ୍କର ଅସ୍ତିତ୍ୱରେ ବିଶ୍ୱାସୀ ହୁଅ, ତେବେ ତୁମକୁ ନିମ୍ନତମ ପଶୁମାନଙ୍କଠାରୁ ଉଚ୍ଚତମ ପ୍ରାଣୀ ପର୍ଯ୍ୟନ୍ତ ସମସ୍ତଙ୍କର ସମତା ମାନିବାକୁ ହେବ, ତାହା ନ ହେଲେ ଭଗବାନ ଜଣେ ମହାପକ୍ଷ-ପାତୀ ବୋଲି ପ୍ରମାଣିତ ହେବେ । ଯେଉଁ ଭଗବାନ ମନୁଷ୍ୟ ନାମକ ତାଙ୍କ ସନ୍ତାନ-ମାନଙ୍କ ପ୍ରତି ଏତେ ପକ୍ଷପାତୀ ଏବଂ ପଶୁ ନାମକ ଅନ୍ୟ ସନ୍ତାନମାନଙ୍କ ପ୍ରତି ଏତେ ନିର୍ଦ୍ଦୟ, ସେ ମନୁଷ୍ୟଠାରୁ ମଧ୍ୟ ଅଧମ । ଏହିଭଳି ଈଶ୍ୱରଙ୍କର ଉପାସନା କରିବା ଅପେକ୍ଷା ବରଂ ମୁଁ ଶହ ଶହ ଥର ମରିବାକୁ ପ୍ରସ୍ତୁତ, ଏବଂ ମୋର ସମୁଦାୟ ଜୀବନ ଏଭଳି ଈଶ୍ୱରଙ୍କ ବିରୋଧରେ ଯୁଦ୍ଧରେ ଅତିବାହିତ ହେବ । କିନ୍ତୁ ବାସ୍ତବିକ ଈଶ୍ୱର ଏଭଳି ନୁହନ୍ତି । ଯେଉଁମାନେ ଏଭଳି କହନ୍ତି, ସେମାନେ ଜାଣନ୍ତି ନାହିଁ ଯେ, ସେମାନେ କେତେ ଦାୟିତ୍ୱବୋଧହୀନ, ହୃଦୟହୀନ ବ୍ୟକ୍ତି । ସେମାନେ କ'ଣ କହୁଛନ୍ତି, ତାହା ଜାଣନ୍ତି ନାହିଁ । ଏଠାରେ 'କାର୍ଯ୍ୟକର' ଶବ୍ଦଟି ଭୁଲ ଅର୍ଥରେ ବ୍ୟବହୃତ ହୋଇଛି । ପ୍ରକୃତ କଥା ହେଉଛି, ଆମେମାନେ ଯାହା ଖାଇବାକୁ ଚାହୁଁ, ତାହା ଆମେ ଖାଉଁ । ମୁଁ ନିଜେ ଜଣେ ସମ୍ପୂର୍ଣ୍ଣ ନିରାମିଷଭୋଜୀ ନ ହୋଇପାରେ, କିନ୍ତୁ ମୁଁ ନିରାମିଷଭୋଜନର ଆଦର୍ଶ କ'ଣ ତାହା ବୁଝେ । ଯେତେବେଳେ ମୁଁ ମାଂସ ଖାଏ, ସେତେବେଳେ ମୁଁ ଜାଣେ, ମୁଁ ଅନ୍ୟାୟ କରୁଛି । ଘଟଣାବିଶେଷରେ ଏହା ଖାଇବାକୁ ବାଧ୍ୟ ହେଲେ ମଧ୍ୟ ମୁଁ ଜାଣେ, ଏହା ଅନ୍ୟାୟ । ମୁଁ ଆଦର୍ଶକୁ ତଳକୁ ଖସାଇ ମୋର ଦୁର୍ବଳତାର ସମର୍ଥନ କରିବାକୁ ଚେଷ୍ଟା କରିବି ନାହିଁ । ଆଦର୍ଶ ହେଉଛି ମାଂସ ଭୋଜନ ନ କରିବା, କୌଣସି ପ୍ରାଣୀର ଅନିଷ୍ଟ ନ କରିବା, କାରଣ ପଶୁମାନେ ହିଁ ମୋର ଭାଇ—ବିରାଡ଼ି ଓ କୁକୁର ମଧ୍ୟ । ଯଦି ଏହିଭଳି ଚିନ୍ତା କରିପାର, ତେବେ ତୁମେ ସର୍ବପ୍ରାଣୀର ଭ୍ରାତୃତ୍ୱ ଦିଗକୁ କିଛି ପରିମାଣରେ ଅଗ୍ରସର ହୋଇଛ; କେବଳ ମନୁଷ୍ୟପ୍ରତି ଭ୍ରାତୃଭାବ ଏହି ମହା ସାମ୍ୟଭାବର ନିଦର୍ଶନ ନୁହେଁ, ପିଲାଖେଳ ମାତ୍ର । ତୁମେମାନେ ସଚରାଚର ଦେଖିବ, ଏହା ଅନେକଙ୍କର ରୁଚିସଙ୍ଗତ ହୁଏ ନାହିଁ—କାରଣ, ବାସ୍ତବକୁ ତ୍ୟାଗକରି ଆଦର୍ଶଆଡ଼କୁ ଯିବା ପାଇଁ ସେମାନଙ୍କୁ ଶିକ୍ଷା ଦିଆହୁଏ; କିନ୍ତୁ ଯଦି ତୁମେ ଏପରି ଗୋଟିଏ ମତର

କଥା କହ, ଯାହା ସେମାନଙ୍କର ବର୍ତ୍ତମାନ କାର୍ଯ୍ୟ ବା ଆଚରଣ ସହିତ ଖାପଖାଏ, ତେବେ ସେମାନେ କହିବେ ଏହା ଜଣଷ୍ଟୟ କାର୍ଯ୍ୟକର ।

ମନୁଷ୍ୟ-ସ୍ୱଭାବରେ ଅତ୍ୟନ୍ତ ରକ୍ଷଣଶୀଳ ପ୍ରବୃତ୍ତି ରହିଛି । ଆମେମାନେ ଗୋଟିଏ ପାଦ ମଧ୍ୟ ସମ୍ମୁଖକୁ ଅଗ୍ରସର ହେବାକୁ ଚାହୁଁ ନାହିଁ । ତୁଷାରମଗ୍ନ ବ୍ୟକ୍ତି-ମାନଙ୍କ ସମ୍ବନ୍ଧରେ ଯେପରି ପଢ଼ାଯାଏ, ମନୁଷ୍ୟ ଜାତି ସମ୍ବନ୍ଧରେ ମଧ୍ୟ ମୋର ସେହି ପ୍ରକାର ଧାରଣା । ଶୁଣାଯାଏ ଯେ, ଏହିଭଳି ଅବସ୍ଥାରେ ଲୋକମାନେ ଶୋଇବାକୁ ଚାହାଁନ୍ତି । ଯଦି କେହି ସେମାନଙ୍କୁ ଜୋର୍ କରି ଟାଣି ଉଠାଇବାକୁ ଯାଏ, ସେମାନେ କହନ୍ତି, 'ଆମମାନଙ୍କୁ ଶୋଇବାକୁ ଦିଅ—ବରଫରେ ଶୋଇବା ଭାରି ଆରାମଦାୟକ ।' ସେମାନଙ୍କର ସେହି ନିଦ୍ରା ହିଁ ମହାନିଦ୍ରାରେ ପରିଣତ ହୁଏ । ଆମର ପ୍ରକୃତି ମଧ୍ୟ ତଦ୍ରୂପ । ଆମେମାନେ ମଧ୍ୟ ସାରା ଜୀବନ ତାହା ହିଁ କରୁଛୁ —ପାଦରୁ ଆରମ୍ଭ ହୋଇ ଉପରକୁ ବରଫ ଜମିଯାଉଛି, ତଥାପି ଆମେମାନେ ଶୋଇବାକୁ ଚାହୁଁଛୁ । ଅତଏବ ସର୍ବଦା ଆଦର୍ଶ ଅବସ୍ଥାରେ ପହଞ୍ଚିବାକୁ ଚେଷ୍ଟା କରିବ, ଆଉ ଯଦି କୌଣସି ବ୍ୟକ୍ତି ଆଦର୍ଶକୁ ଟାଣି ତଳ ସ୍ତରକୁ ଆଣିବାକୁ ଚେଷ୍ଟା କରେ, ଯଦି କେହି ତୁମମାନଙ୍କୁ ଶିକ୍ଷା ଦିଏ ଯେ, ଧର୍ମ ଉଚ୍ଚତମ ଆଦର୍ଶ ନୁହେଁ, ତେବେ ତାହାର କଥାରେ କର୍ଣ୍ଣପାତ କର ନାହିଁ । ଏପରି ଧର୍ମାଚରଣ ମୋ ପକ୍ଷରେ ଅସମ୍ଭବ; କିନ୍ତୁ ଯଦି କେହି ଆସି ମୋତେ କହେ, 'ଧର୍ମ ହିଁ ଜୀବନର ସର୍ବୋଚ୍ଚ ପ୍ରୟାସ', ତେବେ ମୁଁ ତାହାର କଥା ଶୁଣିବାକୁ ପ୍ରସ୍ତୁତ ଅଛି । ଏହି ବିଷୟରେ ବିଶେଷ ସାବଧାନ ହେବାକୁ ହେବ । ଯେତେବେଳେ କୌଣସି ବ୍ୟକ୍ତି କୌଣସି ପ୍ରକାରର ଦୁର୍ବଳତାକୁ ସମର୍ଥନ କରିବା ପାଇଁ ଚେଷ୍ଟା କରେ, ସେତେ-ବେଳେ ବିଶେଷ ସାବଧାନ ହୁଅ । ଆମେମାନେ ପ୍ରଥମତଃ ଇନ୍ଦ୍ରିୟସମୂହରେ ଆବଦ୍ଧ ହୋଇ ଆପଣାକୁ ଏକାବେଳକେ ଅପଦାର୍ଥ କରି ପକାଇଛୁଁ, ସେଥିରେ ପୁଣି ଯଦି କେହି ଆସି ପୂର୍ବୋକ୍ତ ଭାବରେ ଶିକ୍ଷା ଦେବାକୁ ଚାହେଁ, ଏବଂ ତୁମେ ଏହି ଉପଦେଶକୁ ଅନୁସରଣ କର, ତେବେ ତୁମେ କୌଣସି ଉନ୍ନତି କରିପାରିବ ନାହିଁ । ମୁଁ ଏହିପରି ଅନେକଙ୍କୁ ଦେଖିଛି, ଜଗତ ସମ୍ବନ୍ଧରେ ମୁଁ କିଛି ଅଭିଜ୍ଞତା ଲାଭ କରିଛି । ମୋ ଦେଶରେ ଧର୍ମସଂପ୍ରଦାୟଗୁଡ଼ିକ ଛତୁ ପରି ବୃଦ୍ଧି ପାଇଥାଏ । ପ୍ରତିବର୍ଷ ନୂତନ ନୂତନ ସଂପ୍ରଦାୟ ବାହାରୁଛି; କିନ୍ତୁ ଗୋଟିଏ ଜିନିଷ ମୁଁ ବିଶେଷ ଭାବରେ ଲକ୍ଷ୍ୟ କରିଛି ଯେ, ଯେଉଁସବୁ ସଂପ୍ରଦାୟ ସଂସାର ଓ ଧର୍ମକୁ ଏକାଠି ମିଶାଇ ପକାଇବାକୁ ଚେଷ୍ଟା ନ କରନ୍ତି, କେବଳ ସେହିମାନେ ହିଁ ଉନ୍ନତି କରିଥାନ୍ତି; ଆଉ ଯେଉଁ ସଂପ୍ରଦାୟରେ ଉଚ୍ଚତମ ଆଦର୍ଶକୁ ସାଂସାରିକ ଅନିତ୍ୟ ବାସନା ସହିତ ମିଳିତ କରିବାର—ଈଶ୍ୱରଙ୍କୁ ମନୁଷ୍ୟ-ଭୂମିକୁ ଟାଣି ଆଣିବାର—ମିଥ୍ୟା ଚେଷ୍ଟା ରହିଛି, ସେଠାରେ ରୋଗ ପ୍ରବେଶ କରେ । ମନୁଷ୍ୟ ଯେଉଁଠାରେ ପଡ଼ିରହିଛି, ସେଠାରେ ରହିଗଲେ ଚଳିବ ନାହିଁ—ତାକୁ ଦେବତ୍ୱପଦକୁ ଉନ୍ନୀତ ହେବାକୁ ହେବ ।

ଏ ପ୍ରଶ୍ନର ଅନ୍ୟ ଗୋଟିଏ ଦିଗ ମଧ୍ୟ ଅଛି । ଆମେମାନେ ଅନ୍ୟକୁ ଯେପରି ଘୃଣାଚକ୍ଷୁରେ ନ ଦେଖୁ । ଆମେମାନେ ସମସ୍ତେ ସେହି ଏକ ଲକ୍ଷ୍ୟସ୍ଥଳକୁ ଚାଲିଛୁ । ଦୁର୍ବଳତା ଓ ସବଳତା ମଧ୍ୟରେ ପ୍ରଭେଦ କେବଳ ପରିମାଣଗତ । ଆଲୋକ ଓ ଅନ୍ଧକାର ମଧ୍ୟରେ ପ୍ରଭେଦ କେବଳ ପରିମାଣଗତ, ପାପ ଓ ପୁଣ୍ୟ ମଧ୍ୟରେ ପ୍ରଭେଦ କେବଳ ପରିମାଣଗତ, ଜୀବନ ଓ ମୃତ୍ୟୁ ମଧ୍ୟରେ ପ୍ରଭେଦ କେବଳ ପରିମାଣଗତ; ଯେକୌଣସି ବସ୍ତୁ ସହିତ ଅନ୍ୟ ବସ୍ତୁର ପ୍ରଭେଦ କେବଳ ପରିମାଣଗତ—ପ୍ରକାର-ଗତ ନୁହେଁ—କାରଣ, ସବୁକିଛି ସେହି ଅଖଣ୍ଡ ବସ୍ତୁ । ସମସ୍ତ କିଛି ଏକ—ତାହା ଚିନ୍ତା ରୂପରେ ହେଉ, ଜୀବନ ରୂପରେ ହେଉ, ଅଥବା ଆତ୍ମାରୂପରେ ହେଉ, ସବୁ ହିଁ ଏକ; ପ୍ରଭେଦ କେବଳ ପରିମାଣର ତାରତମ୍ୟରେ, ମାତ୍ରାର ତାରତମ୍ୟରେ । ସେଥିପାଇଁ ଯେଉଁମାନେ ଠିକ୍ ଆମମାନଙ୍କ ପରି ଉନ୍ନତି କରିପାରି ନାହାନ୍ତି, ସେମାନଙ୍କୁ ଘୃଣା କରିବା ଉଚିତ ନୁହେଁ । କାହାରି ନିନ୍ଦା କର ନାହିଁ, ସାହାଯ୍ୟ କରିପାରିବ ତ କର; ତାହା ଯଦି ନ ପାର, ହାତ ହଟାଇ ନିଅ; ସମସ୍ତଙ୍କୁ ଆଶୀର୍ବାଦ କର, ସମସ୍ତଙ୍କୁ ନିଜ ନିଜ ପଥରେ ଚାଲିବାକୁ ଦିଅ । ଗାଳି ଦେଲେ, ନିନ୍ଦା କଲେ କୌଣସି ଉନ୍ନତି ହୁଏ ନାହିଁ । ଏ ଭାବରେ କେବେହେଲେ କାହାରି ଉନ୍ନତି ହୁଏ ନାହିଁ । ଅନ୍ୟର ନିନ୍ଦା କଲେ କେବଳ ବୃଥା ଶକ୍ତିକ୍ଷୟ ହୁଏ । ସମାଲୋଚନା ଓ ନିନ୍ଦାଦ୍ୱାରା କେବଳ ଆମମାନଙ୍କର ବୃଥା ଶକ୍ତିକ୍ଷୟ ହୁଏ ଏବଂ ଶେଷରେ ଆମେମାନେ ଜାଣିପାରୁ—ଅନ୍ୟମାନେ ଯେଉଁ ଦିଗରେ ଚାଲିଛନ୍ତି, ଆମେମାନେ ମଧ୍ୟ ଠିକ୍ ସେହି ଦିଗରେ ଚାଲୁଛୁଁ; ଆମମାନଙ୍କର ଅଧିକାଂଶ ମତଭେଦ ଭାଷାର ବିଭିନ୍ନତା ମାତ୍ର ।

ଏପରିକି, ପାପର କଥା ଧରାଯାଉ । ବେଦାନ୍ତର ଧାରଣା ଓ 'ମନୁଷ୍ୟ ପାପୀ' ବୋଲି ଯେଉଁ ଧାରଣା—ଏହି ଦୁଇଟି ଭାବ ହିଁ କାର୍ଯ୍ୟତଃ ଏକ; ତେବେ ଗୋଟିଏ ଭୁଲ ପଥରେ ଚାଲିତ ହେଉଛି । ପ୍ରଚଳିତ ମତଟି ନେତିଭାବାପନ୍ନ, ବେଦାନ୍ତ ଇତିଭାବାପନ୍ନ । ଗୋଟିଏ ମତ ମନୁଷ୍ୟକୁ ତାହାର ଦୁର୍ବଳତା ଦେଖାଇ-ଦିଏ; ଅପରଟି କହେ—ଦୁର୍ବଳତା ଥାଇପାରେ, କିନ୍ତୁ ସେଆଡ଼କୁ ଦୃଷ୍ଟିପାତ କର ନାହିଁ; ଆମମାନଙ୍କୁ ଉନ୍ନତି କରିବାକୁ ହେବ । ମନୁଷ୍ୟ ଯେତେବେଳେ ପ୍ରଥମେ ଜାତ ହୋଇଛି, ସେତେବେଳୁ ତାହାର ରୋଗ ଜଣାଯାଇଛି । ସମସ୍ତେ ଜାଣନ୍ତି ନିଜର କି ରୋଗ; ଅନ୍ୟ କେହି ତାହା କହିଦେବା ଦରକାର ହୁଏ ନାହିଁ । ଆମେମାନେ ବହିର୍ଜଗତ ନିକଟରେ କପଟ ଆଚରଣ କରିପାରୁ; କିନ୍ତୁ ଅନ୍ତରରେ ଆମେମାନେ ଆମମାନଙ୍କର ଦୁର୍ବଳତାକୁ ଜାଣୁଁ । ବେଦାନ୍ତ କହେ, କେବଳ ଦୁର୍ବଳତା ସ୍ମରଣ କରାଇଦେଲେ ବିଶେଷ କିଛି ଉପକାର ହେବ ନାହିଁ, ତାହାକୁ ଔଷଧ ଦିଅ । ମନୁଷ୍ୟକୁ କେବଳ ସର୍ବଦା ରୋଗଗ୍ରସ୍ତ ଭାବିବାକୁ କହିବା ରୋଗର ଔଷଧ ନୁହେଁ—ରୋଗ ପ୍ରତିକାରର ଉପାୟ ନୁହେଁ । ମନୁଷ୍ୟକୁ ସର୍ବଦା ତାହାର ଦୁର୍ବଳତାର ବିଷୟ ଭାବିବାକୁ କହିବା ତାହାର ଦୁର୍ବଳତାର ପ୍ରତିକାର ନୁହେଁ—

ତାହାକୁ ତାହାର ଶକ୍ତି ସମ୍ବନ୍ଧରେ ସଚେତନ କରାଇଦେବା ହିଁ ପ୍ରତିକାରର ଉପାୟ । ତାହା ମଧ୍ୟରେ ଯେଉଁ ଶକ୍ତି ପୂର୍ବରୁ ବିଦ୍ୟମାନ, ସେ ବିଷୟ ତାକୁ ସ୍ମରଣ କରାଇଦିଅ । ମନୁଷ୍ୟଙ୍କୁ ପାପୀ ନ କହି ବେଦାନ୍ତ ବରଂ ଠିକ୍ ବିପରୀତ କଥା କହନ୍ତି; ତୁମେ ପୂର୍ଣ୍ଣ ଓ ଶୁଦ୍ଧସ୍ୱରୂପ—ଯାହାକୁ ତୁମେ ପାପ କହ, ତାହା ତୁମଠାରେ ନାହିଁ । ପାପ ସବୁ ତୁମର ନିମ୍ନତମ ପ୍ରକାଶ, ଯଦି ପାର ତେବେ ଉଚ୍ଚତର ଭାବରେ ଆପଣାକୁ ପ୍ରକାଶିତ କର । ଗୋଟିଏ ବିଷୟ ଆମେ ମନେରଖିବା ଉଚିତ ଯେ, ଆମେମାନେ ସବୁ କିଛି କରିପାରୁ । କେତେବେଳେ ହେଲେ 'ନା' କହ ନାହିଁ, କେତେବେଳେ ହେଲେ 'ପାରିବି ନାହିଁ' ବୋଲି କହ ନାହିଁ । ଏପରି କେବେହେଲେ ହୋଇପାରେ ନାହିଁ, କାରଣ, ତୁମେ ଅନନ୍ତସ୍ୱରୂପ । ତୁମର ଯଥାର୍ଥ ସ୍ୱରୂପ ତୁଳନାରେ ଦେଶକାଳ ମଧ୍ୟ କିଛି ନୁହେଁ । ତୁମର ଯାହା ଇଚ୍ଛା, ତୁମେ ତାହା କରିପାର, ତୁମେ ସର୍ବଶକ୍ତିମାନ ।

ଅବଶ୍ୟ ଯାହା କୁହାହେଲା, ତାହା ନୀତିର ମୂଳସୂତ୍ର ମାତ୍ର । ଆମମାନଙ୍କୁ ମତବାଦରୁ ଖସିଆସି ଜୀବନର ବିଶେଷ ବିଶେଷ ଅବସ୍ଥାରେ ଏହାକୁ ପ୍ରୟୋଗ କରିବାକୁ ହେବ । ଆମମାନଙ୍କୁ ଦେଖିବାକୁ ହେବ, କିଭଳି ଭାବରେ ଏହି ବେଦାନ୍ତକୁ ଆମମାନଙ୍କର ପ୍ରାତ୍ୟହିକ ଜୀବନରେ, ନାଗରିକ ଜୀବନରେ, ଗ୍ରାମ୍ୟ ଜୀବନରେ, ପ୍ରତ୍ୟେକ ଜାତିର ଜୀବନରେ, ପ୍ରତ୍ୟେକ ଜାତିର ଗାର୍ହସ୍ଥ୍ୟ ଜୀବନରେ କାର୍ଯ୍ୟରେ ପରିଣତ କରାଯାଇପାରେ । କାରଣ, ଧର୍ମ ଯଦି ମନୁଷ୍ୟର ସର୍ବାବସ୍ଥାରେ ତାହାକୁ ସାହାଯ୍ୟ କରି ନ ପାରେ, ତେବେ ଏହାର କୌଣସି ମୂଲ୍ୟ ନାହିଁ—ଏହା କେବଳ କେତେଜଣଙ୍କ ପାଇଁ ମତବାଦ ରୂପେ ରହିଯିବ । ଧର୍ମ ସମଗ୍ର ମାନବଜାତିର କଲ୍ୟାଣକାରୀ ହେବାକୁ ହେଲେ ତାହା ଏପରି ହେବା ଉଚିତ, ଯଦ୍ଦ୍ୱାରା ମନୁଷ୍ୟ ସର୍ବାବସ୍ଥାରେ ଏହାର ସାହାଯ୍ୟ ନେଇପାରେ—ଦାସତ୍ୱରେ ବା ପୂର୍ଣ୍ଣ ସ୍ୱାଧୀନତାରେ, ଅଧଃପତନର ଗହ୍ୱରରେ ବା ପବିତ୍ରତାର ଉଚ୍ଚଶିଖରରେ—ସର୍ବଦା ଯେପରି ଏହା ସମାନଭାବରେ ମାନବଜାତିକୁ ସାହାଯ୍ୟ କରିପାରେ । ତେବେ ଯାଇ ବେଦାନ୍ତର ସକଳ ତତ୍ତ୍ୱ ଅଥବା 'ଧର୍ମର ଆଦର୍ଶ'—ଅଥବା ସେଗୁଡ଼ିକର ଯେଉଁ ନାମ ଦିଅନା କାହିଁକି—କାମରେ ଆସିବ ।

ଆତ୍ମବିଶ୍ୱାସରୂପ ଆଦର୍ଶ ହିଁ ମାନବଜାତିର ସର୍ବାଧିକ କଲ୍ୟାଣ ସାଧନ କରିପାରେ । ଯଦି ଏହି ଆତ୍ମବିଶ୍ୱାସ ଆହୁରି ବିସ୍ତାରିତଭାବରେ ପ୍ରଚାରିତ ଓ କାର୍ଯ୍ୟରେ ପରିଣତ କରାହୁଅନ୍ତା, ମୋର ଦୃଢ଼ ବିଶ୍ୱାସ ଯେ, ଜଗତରେ ଯେତେ ଦୁଃଖକଷ୍ଟ ରହିଛି, ତାହା ବହୁ ପରିମାଣରେ ଦୂରୀଭୂତ ହୋଇଯାଆନ୍ତା । ସମଗ୍ର ମାନବଜାତିର ଇତିହାସରେ ମହାପ୍ରାଣ ନରନାରୀଙ୍କ ମଧ୍ୟରେ ଯଦି କୌଣସି ପ୍ରେରଣା ବିଶେଷ ଶକ୍ତି ସଞ୍ଚାର କରିଥାଏ, ତେବେ ତାହା ଏହି ଆତ୍ମବିଶ୍ୱାସ । ସେମାନଙ୍କର ଜନ୍ମଗତ ଚେତନା ଥିଲା ଯେ, ସେମାନେ ମହତ୍ତ୍ୱ ହେବେ ଏବଂ ସେମାନେ ମହତ୍ତ୍ୱ

ହୋଇଥିଲେ । ମନୁଷ୍ୟ ଯେତେଦୂର ଅବନତଭାବାପନ୍ନ ହେଉନା କାହିଁକି, କିନ୍ତୁ ଏପରି ଏକ ସମୟ ଅବଶ୍ୟ ଆସିବ, ଯେତେବେଳେ ଏହି ଅବସ୍ଥାରେ ବିରକ୍ତ ହୋଇ ତାହାକୁ ଉନ୍ନତର ଚେଷ୍ଟା କରିବାକୁ ପଡ଼ିବ; ସେତେବେଳେ ସେ ନିଜ ଉପରେ ବିଶ୍ୱାସ କରିବାକୁ ଶିଖିବ । କିନ୍ତୁ ଆମେମାନେ ଏହା ମୂଳରୁ ଜାଣିରଖିବା ଭଲ । ଆମେମାନେ ଆତ୍ମବିଶ୍ୱାସ ଶିଖିବାକୁ ଏତେ କାହିଁକି ଭୁଲ କରିବୁ ? ମନୁଷ୍ୟ ମନୁଷ୍ୟ ମଧ୍ୟରେ ପ୍ରଭେଦ କେବଳ ଏହି ଆତ୍ମବିଶ୍ୱାସର ତାରତମ୍ୟ ଉପରେ ନିର୍ଭର କରେ । ଏହି ଆତ୍ମବିଶ୍ୱାସ ବଳରେ ସବୁ କିଛି ସମ୍ଭବ । ମୁଁ ନିଜ ଜୀବନରେ ଏହା ଦେଖିଛି, ବର୍ତ୍ତମାନ ମଧ୍ୟ ଦେଖୁଛି ଏବଂ ମୋର ଯେତେ ବୟସ ହେଉଛି, ସେତେ ଏହି ବିଶ୍ୱାସ ଦୃଢ଼ରୁ ଦୃଢ଼ତର ହେଉଛି—ଯେ ନିଜକୁ ବିଶ୍ୱାସ ନ କରେ, ସେ ନାସ୍ତିକ । ପ୍ରାଚୀନ ଧର୍ମ କହେ, ଯେ ଈଶ୍ୱରଙ୍କୁ ବିଶ୍ୱାସ ନ କରେ, ସେ ନାସ୍ତିକ । ନୂତନ ଧର୍ମ କହୁଛି, ଯେ ନିଜକୁ ବିଶ୍ୱାସ ନ କରେ, ସେ ନାସ୍ତିକ । କିନ୍ତୁ ଏହି ବିଶ୍ୱାସ କେବଳ ଏହି କ୍ଷୁଦ୍ର 'ମୁଁ' କୁ ନେଇ ନୁହେଁ, କାରଣ, ବେଦାନ୍ତ ଏକତ୍ୱବାଦର ଶିକ୍ଷା ଦେଉଛନ୍ତି । ଏହି ବିଶ୍ୱାସର ଅର୍ଥ ସମସ୍ତଙ୍କ ପ୍ରତି ବିଶ୍ୱାସ, କାରଣ, ସମସ୍ତଙ୍କ ମଧ୍ୟରେ ତୁମେ ଆତ୍ମାରୂପେ ରହିଅଛ । ଆତ୍ମପ୍ରୀତିର ଅର୍ଥ ସର୍ବଭୂତରେ ପ୍ରୀତି, ସକଳ ଜୀବଜନ୍ତୁଙ୍କ ଉପରେ ପ୍ରୀତି, ସକଳ ବସ୍ତୁପ୍ରତି ପ୍ରୀତି । ଏହି ମହାନ୍ ବିଶ୍ୱାସ ବଳରେ ଜଗତର ଉନ୍ନତି ହେବ । ଏହା ମୋର ଧ୍ରୁବ ବିଶ୍ୱାସ । ସେ ସର୍ବଶ୍ରେଷ୍ଠ ମନୁଷ୍ୟ, ଯେ ସାହସ କରି କହିପାରନ୍ତି, ମୁଁ ମୋ ନିଜ ସମ୍ବନ୍ଧରେ ସମ୍ପୂର୍ଣ୍ଣରୂପେ ଜାଣେ । ତୁମେ କଅଣ ଜାଣ, ତୁମମାନଙ୍କର ଏହି ଦେହ ଭିତରେ କେତେ ଶକ୍ତି, କେତେ କ୍ଷମତା ବର୍ତ୍ତମାନ ଲୁକ୍କାୟିତ ରହିଛି ? କୌଣସି ବୈଜ୍ଞାନିକ କଅଣ ମାନବ ଭିତରେ ଯାହା ଯାହା ଅଛି ସମୁଦାୟ ଜ୍ଞାତ ହୋଇଛନ୍ତି ? ଲକ୍ଷ ଲକ୍ଷ ବର୍ଷ ପୂର୍ବରୁ ମନୁଷ୍ୟ ପୃଥିବୀରେ ବାସ କରୁଛି; କିନ୍ତୁ ତାହାର ଶକ୍ତିର ଅତି ସାମାନ୍ୟ ଅଂଶ ମାତ୍ର ଏପର୍ଯ୍ୟନ୍ତ ପ୍ରକାଶିତ ହୋଇଛି । ଅତଏବ ତୁମେ କିପରି ନିଜକୁ ଦୁର୍ବଳ ବୋଲି କହୁଛ ? ଆପାତପ୍ରତୀୟମାନ ଏହି ଅବନତିର ପଶ୍ଚାତ୍ତରେ କଅଣ ରହିଛି, ତାହା ତୁମେ କଅଣ ଜାଣ ? ତୁମ ଭିତରେ କଅଣ ଅଛି, ତାହା ତୁମେ ଜାଣ କି ? ତୁମର ପଶ୍ଚାତ୍ତରେ ଅନନ୍ତ ଶକ୍ତି ଓ ଆନନ୍ଦର ଅପାର ସମୁଦ୍ର ରହିଛି ।

'ଆତ୍ମା ବା ଅରେ ଶ୍ରୋତବ୍ୟଃ'—ଏହି ଆତ୍ମାର କଥା ପ୍ରଥମେ ଶୁଣିବାକୁ ହେବ । ଦିନରାତି ଶ୍ରବଣ କର ଯେ, ତୁମେ ହିଁ ସେହି ଆତ୍ମା । ଦିନରାତି ତାହା ପୁନରାବୃତ୍ତି କର, ଯେପର୍ଯ୍ୟନ୍ତ ଏ ଭାବ ତୁମର ପ୍ରତି ରକ୍ତବିନ୍ଦୁରେ, ପ୍ରତି ଶିରା ଓ ଧମନୀରେ ସ୍ପନ୍ଦିତ ନ ହୋଇଛି, ଯେପର୍ଯ୍ୟନ୍ତ ଏହା ତୁମର ମଜ୍ଜାଗତ ନ ହୋଇଛି । ସମୁଦାୟ ଦେହଟିକୁ ଏହି ଏକ ଆଦର୍ଶର ଭାବରେ ପୂର୍ଣ୍ଣ କରିଦିଅ; 'ମୁଁ ଅଜ, ଅବିନାଶୀ, ଆନନ୍ଦମୟ, ସର୍ବଜ୍ଞ, ସର୍ବଶକ୍ତିମାନ୍, ନିତ୍ୟ, ଜ୍ୟୋତିର୍ମୟ ଆତ୍ମା'— ଦିନରାତି ଏହି ଚିନ୍ତା କର, ଯେପର୍ଯ୍ୟନ୍ତ ଏହା ତୁମର ପ୍ରାଣରେ ଗୁନ୍ଥି ନ ହୋଇଛି ।

ଏହାର ଧ୍ୟାନ କରୁଥାଅ—ଏଥିରୁ ପ୍ରକୃତ କର୍ମ ଆସିବ । 'ହୃଦୟ ପୂର୍ଣ୍ଣ ହେଲେ ମୁହଁ କଥା କହେ'—ହୃଦୟ ପୂର୍ଣ୍ଣ ହେଲେ ହାତ ମଧ୍ୟ କାମ କରଥାଏ । ଏହି ଅବସ୍ଥାରେ ଯଥାର୍ଥ କାର୍ଯ୍ୟ କରିବାକୁ ସକ୍ଷମ ହେବ । ନିଜକୁ ଏହି ଆଦର୍ଶଭାବରେ ପୂର୍ଣ୍ଣ କର—ଯାହା କରନା କାହିଁକି ପ୍ରଥମେ ଏହା ସମ୍ବନ୍ଧରେ ଉତ୍ତମରୂପେ ଚିନ୍ତା କର । ସେତେବେଳେ ଏହି ଚିନ୍ତାଶକ୍ତିର ପ୍ରଭାବରେ ତୁମର ସମୁଦାୟ କର୍ମ ପରିବର୍ତ୍ତିତ ହୋଇ ଉନ୍ନତ ଦେବଭାବାପନ୍ନ ହୋଇଯିବ । ଯଦି ଜଡ଼ ଶକ୍ତିଶାଳୀ ହୁଏ, ତେବେ ଚିନ୍ତା ସର୍ବଶକ୍ତିମତୀ । ସେହି ଚିନ୍ତା, ସେହି ଧ୍ୟାନ ନେଇଆସ, ନିଜକୁ ନିଜର ସର୍ବଶକ୍ତିମତ୍ତା ଓ ମହତ୍ତ୍ୱଭାବରେ ପୂର୍ଣ୍ଣ କରିଦିଅ । କୁସଂସ୍କାରପୂର୍ଣ୍ଣ ଭାବ ତୁମମାନଙ୍କର ମୁଣ୍ଡରେ ଯଦି ଈଶ୍ୱରେଚ୍ଛାରେ ପ୍ରବେଶ କରି ନ ଥାଆନ୍ତା ! ଈଶ୍ୱରେଚ୍ଛାରେ ଆମେମାନେ ଏହି କୁସଂସ୍କାରର ପ୍ରଭାବ, ଦୁର୍ବଳତା ଓ ନୀଚତ୍ୱର ଭାବଦ୍ୱାରା ଯଦି ପରିବେଷ୍ଟିତ ନ ହୋଇଥାଆନ୍ତେ ! ଈଶ୍ୱରେଚ୍ଛାରେ ଯଦି ମନୁଷ୍ୟ ଅପେକ୍ଷାକୃତ ସହଜ ଉପାୟରେ ଉଚ୍ଚତମ, ମହତ୍ତମ ସତ୍ୟସମୂହରେ ପହଞ୍ଚି ପାରନ୍ତା ! କିନ୍ତୁ ତାହାକୁ ଏହି ସମସ୍ତ ଭିତର ଦେଇ ଯିବାକୁ ହେବ । ଯେଉଁମାନେ ତୁମମାନଙ୍କ ପରେ ଆସୁଛନ୍ତି, ସେମାନଙ୍କ ପାଇଁ ପଥକୁ ଦୁର୍ଗମତର କରି ଯାଅ ନାହିଁ ।

ବହୁ ସମୟରେ ଏହି ସକଳ ତତ୍ତ୍ୱ ଲୋକମାନଙ୍କ ନିକଟରେ ଭୟଙ୍କର ବୋଲି ପ୍ରତୀତ ହୋଇଥାଏ । ମୁଁ ଜାଣେ, ଅନେକେ ଏହିସବୁ ଉପଦେଶ ଶୁଣି ଭୀତ ହୋଇଥାନ୍ତି; କିନ୍ତୁ ଯେଉଁମାନେ ଯଥାର୍ଥ ଏହି ଭାବକୁ କାର୍ଯ୍ୟରେ ପରିଣତ କରିବାକୁ ଚାହାଁନ୍ତି, ସେମାନଙ୍କ ପକ୍ଷରେ ଏହା ପ୍ରଥମ ଶିକ୍ଷା । ନିଜକୁ ଅଥବା ଅନ୍ୟକୁ ଦୁର୍ବଳ ବୋଲି କହନାହିଁ । ଯଦି ପାରି ଲୋକମାନଙ୍କର ଭଲ କର । ଜଗତର ଅନିଷ୍ଟ କର ନାହିଁ । ତୁମେମାନେ ନିଜ ଅନ୍ତରରେ ଜାଣ ଯେ ତୁମମାନଙ୍କର ଏହି କ୍ଷୁଦ୍ର କ୍ଷୁଦ୍ର ଭାବ—ନିଜକୁ କାଳ୍ପନିକ ପୁରୁଷଙ୍କ ସମକ୍ଷରେ ଅବନତ କରି ରୋଦନ କରିବା—କୁସଂସ୍କାର ମାତ୍ର । ମୋତେ ଗୋଟିଏ ମାତ୍ର ଉଦାହରଣ ଦେଖାଅ, ଯେଉଁଥିରେ ଏହି ପ୍ରାର୍ଥନାଗୁଡ଼ିକର ଉତ୍ତର ତୁମେ ବାହାରୁ ପାଇଛ । ଯାହା କିଛି ଉତ୍ତର ପାଇଛ, ତାହା ନିଜର ହୃଦୟରୁ ଆସିଛି । ତୁମେମାନେ ସମସ୍ତେ ଜାଣ—ଭୂତ ନାହିଁ; କିନ୍ତୁ ଅନ୍ଧାରରେ ଦେହ ନିଶ୍ଚୟ ଟିକିଏ ଶୀତେଇଉଠେ । ଏହାର କାରଣ, ଅତି ଶୈଶବ କାଳରୁ ଏହି ଭୟ ଆମ ମୁଣ୍ଡରେ ଭର୍ତ୍ତି କରି ଦିଆହୋଇଛି । ସମାଜ ଭୟରେ, ଲୋକମାନେ କଅଣ କହିବେ ଏହି ଭୟରେ, ବନ୍ଧୁ-ବାନ୍ଧବମାନଙ୍କର ଘୃଣା ଭୟରେ, ଅତି ପ୍ରିୟ କୁସଂସ୍କାର ନଷ୍ଟ ହେବା ଭୟରେ ଅନ୍ୟକୁ ଏହା ଶିଖାଅ ନାହିଁ । ଏହି ପ୍ରବୃତ୍ତିକୁ ଜୟ କର । ଧର୍ମ ବିଷୟରେ ଶିଖାଇବା ପାଇଁ ଆଉ କ'ଣ ଅଛି ? କେବଳ ବିଶ୍ୱବ୍ରହ୍ମାଣ୍ଡର ଏକତ୍ୱ ଓ ଆତ୍ମବିଶ୍ୱାସ ।

କେବଳ ଏତିକି ଶିକ୍ଷା ଦେବାର ଅଛି । ଲକ୍ଷ ଲକ୍ଷ ବର୍ଷ ଧରି ମନୁଷ୍ୟ ଏହି ଏକତ୍ୱ ଅନୁଭବ କରିବାର ଚେଷ୍ଟା କରି ଆସିଛି, ଆଉ ଏବେ ମଧ୍ୟ କରୁଛି । ତୁମେ-

ମାନେ ମଧ୍ୟ ବର୍ତ୍ତମାନ ଏହି ଶିକ୍ଷା ଦେଉଛି, ଏହା ଆମେମାନେ ଜାଣୁ । ସକଳ ଦିଗରୁ ଏହି ଶିକ୍ଷା ଆମେମାନେ ପାଉଛୁ । କେବଳ ଦର୍ଶନ ଓ ମନୋବିଜ୍ଞାନ ନୁହେଁ, ଜଡ଼ ବିଜ୍ଞାନ ମଧ୍ୟ ଏହା ଘୋଷଣା କରୁଛି । ଏପରି ବୈଜ୍ଞାନିକ କିଏ ଅଛନ୍ତି, ଯିଏ ଏକତ୍ୱବାଦ ଅସ୍ୱୀକାର କରିବେ ? ଜଗତର ନାନାତ୍ୱବାଦ ପ୍ରଚାର କରିବାକୁ କିଏ ଏବେ ସାହସ କରିବେ ? ଏସବୁ ତ କୁସଂସ୍କାର ମାତ୍ର ! ଗୋଟିଏ ପ୍ରାଣ ଓ ଗୋଟିଏ ଜଗତ ବିଦ୍ୟମାନ, ତାହା ଆମମାନଙ୍କ ଆଖିରେ ନାନାରୂପରେ ପ୍ରତିଭାତ ହେଉଛି —ଯେପରି ସ୍ୱପ୍ନ-ଦର୍ଶନବେଳେ ଗୋଟିଏ ସ୍ୱପ୍ନ ପରେ ଆଉ ଗୋଟିଏ ସ୍ୱପ୍ନ ଆସେ । ସ୍ୱପ୍ନରେ ଯାହା ଦେଖ, ତାହା ତ ସତ୍ୟ ନୁହେଁ । ଗୋଟିଏ ସ୍ୱପ୍ନ ପରେ ଅନ୍ୟ ସ୍ୱପ୍ନ ଆସେ—ବିଭିନ୍ନ ଦୃଶ୍ୟ ତୁମମାନଙ୍କର ନୟନ ସମ୍ମୁଖରେ ଉଦ୍‌ଘାଟିତ ହୋଇଥାଏ । ଏହି ଜଗତ୍ ସମ୍ବନ୍ଧରେ ମଧ୍ୟ ସେହି ଏକାକଥା । ବର୍ତ୍ତମାନ ଏହା ପନ୍ଦର ଅଣା ଦୁଃଖ ଓ ଏକ ଅଣା ସୁଖରୂପରେ ପ୍ରତିଭାତ ହେଉଛି । ହୁଏତ କିଛିଦିନ ପରେ ଏହା ହିଁ ପନ୍ଦର ଅଣା ସୁଖରେ ପରିପୂର୍ଣ୍ଣ ହେବ—ସେତେବେଳେ ଆମେମାନେ ଏହାକୁ ସ୍ୱର୍ଗ କହିବୁଁ । କିନ୍ତୁ ସିଦ୍ଧ ହେଲେ ଏପରି ଏକ ଅବସ୍ଥା ଆସିବ, ଯେତେବେଳେ ଏହି ସମୁଦାୟ ଜଗତ-ପ୍ରପଞ୍ଚ ସମ୍ପୂର୍ଣ୍ଣ ଚାଲିଯିବ—ଏହା ବ୍ରହ୍ମରୂପରେ ପ୍ରତିଭାତ ହେବ ଏବଂ ଆମମାନଙ୍କର ଆତ୍ମା ମଧ୍ୟ ବ୍ରହ୍ମ ବୋଲି ଅନୁଭୂତ ହେବ । ଅତଏବ ନାନା ଜଗତ ଓ ନାନା ଜୀବନ ବୋଲି କିଛି ନାହିଁ । ଏହି ବହୁ ସେହି ଏକର ହିଁ ବିକାଶ ମାତ୍ର; ସେହି ଏକ ହିଁ ନିଜକୁ ବହୁରୂପରେ ପ୍ରକାଶ କରୁଛନ୍ତି— ଜଡ଼ ବା ଚୈତନ୍ୟ, ମନ ବା ଚିନ୍ତାଶକ୍ତି ଅଥବା ଅନ୍ୟ କୌଣସି ରୂପରେ । ସେହି ଏକ ହିଁ ନିଜକୁ ବହୁରୂପରେ ପ୍ରକାଶ କରିଛନ୍ତି । ଅତଏବ ଆମମାନଙ୍କର ପ୍ରଥମ ସାଧନା—ଏହି ତତ୍ତ୍ୱ ନିଜକୁ ଓ ଅନ୍ୟକୁ ଶିକ୍ଷା ଦେବା ।

ଏହି ମହାନ୍ ଆଦର୍ଶର ଘୋଷଣାରେ ପୃଥିବୀ ପ୍ରତିଧ୍ୱନିତ ହେଉ—କୁସଂସ୍କାରସବୁ ଦୂର ହେଉ । ଦୁର୍ବଳ ମନୁଷ୍ୟକୁ ଏହା ଶୁଣାଉଥାଅ—କ୍ରମାଗତ ଶୁଣାଇଚାଲ—ତୁମେ ଶୁଦ୍ଧ-ସ୍ୱରୂପ; ଉଠ, ଜାଗ ହେ ମହାନ୍ ! ଏହି ନିଦ୍ରା ତୁମକୁ ସାଜେ ନାହିଁ । ଉଠ, ଏହି ମୋହ ତୁମକୁ ସାଜେ ନାହିଁ । ତୁମେ ନିଜକୁ ଦୁର୍ବଳ ଓ ଦୁଃଖୀ ମନେ କର ନାହିଁ । ହେ ସର୍ବଶକ୍ତିମାନ୍, ଉଠ, ଜାଗ, ସ୍ୱରୂପ ପ୍ରକାଶ କର । ତୁମେ ନିଜକୁ ପାପୀ ବୋଲି ବିବେଚନା କରୁଛ କାହିଁକି ? ଏହା ତୁମକୁ ଶୋଭା ପାଏ ନାହିଁ । ତୁମେ ନିଜକୁ ଦୁର୍ବଳ ବୋଲି ଭାବ, ଏହା ତୁମର ଉପଯୁକ୍ତ ନୁହେଁ । ଜଗତକୁ ଏହା କହୁଥାଅ, ନିଜକୁ ଏହା କହୁଥାଅ—ଦେଖ, ଏହାର କି ଶୁଭଫଳ ହୁଏ; ଦେଖ, କିପରି ବିଦ୍ୟୁତ୍ ଝଲକରେ ସମୁଦାୟ ତତ୍ତ୍ୱ ପ୍ରକାଶିତ ହୁଏ, ସମୁଦାୟ ପରିବର୍ତ୍ତିତ ହୋଇଯାଏ । ମନୁଷ୍ୟଜାତିକୁ ଏହା କହୁଥାଅ—ସେମାନଙ୍କୁ ତାଙ୍କର ଅନ୍ତର୍ନିହିତ ଶକ୍ତି ଦେଖାଇଦିଅ । ତାହା ହେଲେ ଆମେମାନେ ଦୈନିକ ଜୀବନରେ ଏହାକୁ ଅନୁଶୀଳନ କରିବାକୁ ଶିଖିବୁ ।

'ବିବେକ' ସମ୍ବନ୍ଧରେ ଆମେମାନେ ପରେ ଆଲୋଚନା କରିବା । ସେତେବେଳେ ଶିଖିବା, ଜୀବନର ପ୍ରତି ମୁହୂର୍ତ୍ତରେ, ଆମମାନଙ୍କର ପ୍ରତି କାର୍ଯ୍ୟରେ କିପରି ଭାବରେ ସଦସତ୍ ବିଚାର କରିବାକୁ ହୁଏ, କିଭଳି ସତ୍ୟାସତ୍ୟ ନିର୍ଦ୍ଧାରଣ କରିବାକୁ ହୁଏ । ଆମମାନଙ୍କର ଜାଣିରଖିବା ଉଚିତ ଯେ, ପବିତ୍ରତା ଓ ଏକତ୍ୱ ହିଁ ସତ୍ୟର ପରୀକ୍ଷା । ଯଦ୍ଦ୍ୱାରା ଏକତ୍ୱ ହୁଏ, ଯଦ୍ଦ୍ୱାରା ମିଳନ ହୁଏ, ତାହା ହିଁ ସତ୍ୟ । ପ୍ରେମ ହିଁ ସତ୍ୟ, କାରଣ, ଏହା ମିଳନ-ସମ୍ପାଦକ; ଘୃଣା ଅସତ୍ୟ, କାରଣ ଏହା ବହୁତ୍ୱବିଧାୟକ—ପୃଥକ୍‌କାରକ । ଘୃଣା ହିଁ ତୁମଠାରୁ ମୋତେ ପୃଥକ୍ କରେ—ଅତଏବ ଏହା ଅନ୍ୟାୟ ଓ ଅସତ୍ୟ; ଏହା ଗୋଟିଏ ବିଘଟନୀ ଶକ୍ତି; ଏହା ପୃଥକ୍ କରେ—ବିନାଶ କରେ ।

ପ୍ରେମ ବାନ୍ଧେ, ପ୍ରେମ ଏକତ୍ୱସଂପାଦକ । ତୁମେ ସମସ୍ତେ ଏକ ହୋଇଯାଅ—ମା ସନ୍ତାନ ସହିତ ଏକତ୍ୱପ୍ରାପ୍ତ ହୁଅନ୍ତି, ପରିବାର ନଗର ସହିତ ଏକତ୍ୱପ୍ରାପ୍ତ ହୁଏ । ଏପରିକି ସମୁଦାୟ ବ୍ରହ୍ମାଣ୍ଡ ସମସ୍ତ ପ୍ରାଣୀଙ୍କ ସହିତ ଏକୀଭୂତ ହୋଇଯାଏ । କାରଣ, ପ୍ରେମ ହିଁ ବାସ୍ତବିକ ଅସ୍ତିତ୍ୱ, ପ୍ରେମ ହିଁ ସ୍ୱୟଂ ଭଗବାନ; ଏବଂ ସବୁକିଛି ପ୍ରେମର ବିଭିନ୍ନ ବିକାଶ—ସ୍ପଷ୍ଟ ବା ଅସ୍ପଷ୍ଟରୂପେ ପ୍ରକାଶିତ । ପ୍ରଭେଦ କେବଳ ମାତ୍ରାର ତାରତମ୍ୟରେ; ବାସ୍ତବିକ ସବୁ ପ୍ରେମର ପ୍ରକାଶ । ଅତଏବ ଆମମାନଙ୍କର କର୍ମ ଏକତ୍ୱ-ସଂପାଦକ କିମ୍ବା ବହୁତ୍ୱ-ବିଧାୟକ, ତାହା ଦେଖିବାକୁ ହେବ । ଯଦି ବହୁତ୍ୱ-ବିଧାୟକ ହୁଏ, ତେବେ ଏହାକୁ ତ୍ୟାଗ କରିବାକୁ ହେବ; ଆଉ ଯଦି ଏକତ୍ୱସଂପାଦକ ହୁଏ, ତେବେ ଏହାକୁ ସତ୍‌କର୍ମ ବୋଲି ଜାଣିବ । ଚିନ୍ତା ସମ୍ବନ୍ଧରେ ମଧ୍ୟ ଏହିପରି । ଦେଖିବାକୁ ହେବ, ଏହା ବହୁତ୍ୱବିଧାୟକ ବା ଏକତ୍ୱ-ସଂପାଦକ; ଦେଖିବାକୁ ହେବ—ଏହା ଆତ୍ମାରେ ଆତ୍ମାକୁ ମିଶାଇ ଦେଇ ଗୋଟିଏ ମହାଶକ୍ତି ଉତ୍ପାଦନ କରୁଛି କି ନାହିଁ । ଯଦି ତାହା କରେ, ତେବେ ଏହିପରି ଚିନ୍ତା ଗ୍ରହଣ କରିବାକୁ ହେବ—ଯଦି ନ କରେ, ତେବେ ଏହାକୁ ପାପ-ଚିନ୍ତା ବୋଲି ପରିତ୍ୟାଗ କରିବାକୁ ହେବ ।

ବୈଦାନ୍ତିକ ନୀତିବିଜ୍ଞାନର ସାର କଥା ଏହି—ଏହା କୌଣସି ଅଜ୍ଞେୟବସ୍ତୁ ଉପରେ ନିର୍ଭର କରେ ନାହିଁ, ଅଥବା ଏହା ଅଜ୍ଞେୟ କିଛି ଶିଖାଏ ନାହିଁ; ବରଂ ସେଣ୍ଟ ପଲ୍ ଯାହା ରୋମ୍‌ବାସୀଙ୍କୁ କହିଥିଲେ, ତାହା ହିଁ କହେ—'ଯାହାଙ୍କୁ ତୁମେମାନେ ଅଜ୍ଞେୟ ମନେକରି ଉପାସନା କରୁଛ, ମୁଁ ତାଙ୍କର ସମ୍ବନ୍ଧରେ ତୁମକୁ ଶିକ୍ଷା ଦେଉଛି ।' ମୁଁ ଏହି ଚୌକି ଖଣ୍ଡିକର ଜ୍ଞାନଲାଭ କରିଛି; କିନ୍ତୁ ଏହି ଚୌକି ଖଣ୍ଡିକୁ ଜାଣିବାକୁ ହେଲେ ପ୍ରଥମେ ମୋର 'ମୁଁ'ତ୍ୱର ଜ୍ଞାନ ହୁଏ, ତାହା ପରେ ଚୌକିଟିର ଜ୍ଞାନ ହୁଏ । ଏହି ଆତ୍ମା ଭିତର ଦେଇ ଚୌକିଟି ଜ୍ଞାତ ହୁଏ । ଏହି ଆତ୍ମା ମଧ୍ୟଦେଇ ମୁଁ ତୁମର ଜ୍ଞାନ ଲାଭ କରେ—ସମୁଦାୟ ଜଗତର ଜ୍ଞାନ ଲାଭ କରେ । ଅତଏବ ଆତ୍ମାକୁ ଅଜ୍ଞାତ କହିବା ପ୍ରଳାପବାକ୍ୟମାତ୍ର । ଆତ୍ମାକୁ ଘୁଞ୍ଚାଇ

ନିଅ—ସମୁଦାୟ ଜଗତ ଉଡ଼ିଯିବ—ଆତ୍ମା ମାଧ୍ୟମରେ ହିଁ ସମୁଦାୟ ଜ୍ଞାନ ଆସେ,* ଅତଏବ ଏହା ସର୍ବାପେକ୍ଷା ଅଧିକ ଜ୍ଞାତ । ଏହା ହିଁ 'ତୁମେ'—ଯାହାକୁ ତୁମେ 'ମୁଁ' କହ । ତୁମେମାନେ ଭାବି ଆଶ୍ଚର୍ଯ୍ୟ ହୋଇପାର ଯେ, ମୋର 'ମୁଁ' ପୁଣି ତୁମର 'ମୁଁ' କିପରି ହୋଇପାରେ ? ତୁମେମାନେ ଆଶ୍ଚର୍ଯ୍ୟ ହୋଇପାର ଏହି ସାନ୍ତ 'ମୁଁ' କିପରି ଅନନ୍ତ ଅସୀମସ୍ୱରୂପ ହେବ ? କିନ୍ତୁ ବସ୍ତୁତଃ 'ମୁଁ' ଅନନ୍ତ, ସାନ୍ତ 'ମୁଁ' କେବଳ କାଳ୍ପନିକ କଥା ମାତ୍ର । ସେହି ଅନନ୍ତ ଉପରେ ଯେପରି ଗୋଟିଏ ଆବରଣ ପଡ଼ିଛି ଏବଂ ଏହାର କେତେକାଂଶ ଏହି 'ମୁଁ'ରୂପେ ପ୍ରକାଶିତ ହୋଇଛି; କିନ୍ତୁ ଏହା ବାସ୍ତବିକ ସେହି ଅନନ୍ତର ଅଂଶ । ବାସ୍ତବିକ ପକ୍ଷରେ ଅସୀମ କଦାପି ସସୀମ ହୁଏ ନାହିଁ—'ସସୀମ' କେବଳ କଥାର କଥା ମାତ୍ର । ଅତଏବ ସେହି 'ଆତ୍ମା' ନରନାରୀ, ବାଳକବାଳିକା, ଏପରିକି ପଶୁପକ୍ଷୀ ସମସ୍ତଙ୍କର ଜ୍ଞାତ । ତାଙ୍କୁ ନ ଜାଣି ଆମେମାନେ କ୍ଷଣମାତ୍ର ଜୀବନ ଧାରଣ କରିପାରିବା ନାହିଁ । ସେହି ସର୍ବେଶ୍ୱର ପ୍ରଭୁଙ୍କୁ ନ ଜାଣି ଆମେମାନେ ଗୋଟିଏ ନିଃଶ୍ୱାସ ପର୍ଯ୍ୟନ୍ତ ନେଇପାରିବା ନାହିଁ କିମ୍ବା ଜୀବନ-ଧାରଣ କରିପାରିବା ନାହିଁ; କାରଣ, ଆମମାନଙ୍କର ଗତି, ଶକ୍ତି, ଚିନ୍ତା, ଜୀବନ—ସମସ୍ତ ତାଙ୍କଦ୍ୱାରା ପରିଚାଳିତ । ବେଦାନ୍ତର ଈଶ୍ୱର ସର୍ବାଧିକ ଜ୍ଞାତ—କେବେ ହେଲେ କଳ୍ପନାପ୍ରସୂତ ନୁହନ୍ତି ।

ଯଦି ଏହି ଈଶ୍ୱର ପ୍ରତ୍ୟକ୍ଷ ନ ହୁଅନ୍ତି, ତେବେ ଆଉ କିଏ ପ୍ରତ୍ୟକ୍ଷ ଈଶ୍ୱର ? ଈଶ୍ୱର, ଯେ କି ସକଳପ୍ରାଣୀରେ ବିରାଜିତ, ଆମମାନଙ୍କର ଇନ୍ଦ୍ରିୟଗଣଙ୍କଠାରୁ ମଧ୍ୟ ଅଧିକ ସତ୍ୟ, ମୁଁ ଯାହାଙ୍କୁ ସମ୍ମୁଖରେ ଦେଖୁଛି, ତାହାଠାରୁ ପ୍ରତ୍ୟକ୍ଷ ଈଶ୍ୱର ଆଉ କାହାକୁ ଦେଖିବାକୁ ଚାହଁ ? କାରଣ, ତୁମେ ହିଁ ସେହି—ସର୍ବବ୍ୟାପୀ ସର୍ବଶକ୍ତିମାନ୍ ଈଶ୍ୱର । ଆଉ ଯଦି ମୁଁ କହେ, ତୁମେ ତାହା ନୁହଁ, ତେବେ ମୁଁ ମିଥ୍ୟା କଥା କହୁଛି । ସର୍ବଦା ମୁଁ ଏହା ଉପଲବ୍ଧି କରେ ବା ନ କରେ, ତଥାପି ମୁଁ ଏହା ଜାଣେ । ସେ ହିଁ ଏକ ଅଖଣ୍ଡ ସତ୍ତା, ସର୍ବବସ୍ତୁର ଏକତ୍ୱ ସ୍ୱରୂପ, ସମୁଦାୟ ଜୀବନ ଓ ସମୁଦାୟ ଅସ୍ତିତ୍ୱର ଯଥାର୍ଥ ସ୍ୱରୂପ ।

ବେଦାନ୍ତର ଏହି ସକଳ ଭାବକୁ ପୁଙ୍ଖାନୁପୁଙ୍ଖ ରୂପରେ କାର୍ଯ୍ୟରେ ପରିଣତ କରିବାକୁ ହେବ । ଅତଏବ ଟିକିଏ ଧୈର୍ଯ୍ୟାବଲମ୍ବନ ଆବଶ୍ୟକ । ପୂର୍ବରୁ କହିଛି, ଆମମାନଙ୍କୁ ଏହା ବିସ୍ତାରିତ ଭାବରେ ଆଲୋଚନା କରିବାକୁ ହେବ—ବିଶେଷକରି ଜୀବନର ପ୍ରତ୍ୟେକ ଘଟଣାରେ ଏହାକୁ କିଭଳି କାର୍ଯ୍ୟରେ ପରିଣତ କରାଯାଏ, ତାହା ଦେଖିବାକୁ ହେବ । ଆଉ ମଧ୍ୟ ଦେଖିବାକୁ ହେବ ଯେ କିପରି ଏହି ଆଦର୍ଶ ନିମ୍ନତର ଆଦର୍ଶସମୂହରୁ କ୍ରମଶଃ ବିକଶିତ ହେଉଛି, କିପରି ଏହି ଏକତ୍ୱର ଆଦର୍ଶ ଆମର ପାରିପାର୍ଶ୍ୱିକ ସମୁଦାୟ ଭାବରୁ ଧୀରେଧୀରେ ବିକଶିତ ହୋଇ କ୍ରମଶଃ ସାର୍ବଭୌମିକ

---

* କେନୋପନିଷଦ୍, ୨।୪

ପ୍ରେମରୂପେ ପରିଣତ ହେଉଛୁ । ସବୁ ଦିଗରୁ ଏହାର ଆଲୋଚନା କଲେ ଆମେମାନେ ଆଉ ବିପଦରେ ପଡ଼ିବା ନାହିଁ । କିନ୍ତୁ ଜଗତ ଏହି ନିମ୍ନତମ ଆଦର୍ଶରୁ ଉଚ୍ଚକୁ ଆରୋହଣ କରିବା ପାଇଁ ସମସ୍ତ ନ ପାରିପାରେ; କିନ୍ତୁ ଆମମାନଙ୍କର ଉଚ୍ଚ ସୋପାନରେ ଆରୋହଣର କି ସାର୍ଥକତା—ଯଦି ପରବର୍ତ୍ତୀମାନଙ୍କୁ ଆମେ ଏହି ସତ୍ୟ ଶିକ୍ଷା ନ ଦେଇପାରୁ? ଅତଏବ ଏହାକୁ ଆମମାନଙ୍କର ପୁଙ୍ଖାନୁପୁଙ୍ଖ ଭାବରେ ଆଲୋଚନା କରିବା ଆବଶ୍ୟକ । ପ୍ରଥମତଃ ଏହାର ଜ୍ଞାନଭାଗ—ବିଚାରାଂଶ —ବିଶେଷରୂପେ ବୁଝିବା ଆବଶ୍ୟକ, ଯଦିଚ ଆମେମାନେ ଜାଣୁ ଯେ, ବିଚାରର ବିଶେଷ କିଛି ମୂଲ୍ୟ ନାହିଁ, ହୃଦୟବସ୍ତୁର ହିଁ ବିଶେଷ ପ୍ରୟୋଜନ । ହୃଦୟଦ୍ୱାରା ହିଁ ଭଗବତ୍-ସାକ୍ଷାତ୍କାର ହୁଏ, ବୁଦ୍ଧିଦ୍ୱାରା ନୁହେଁ । ବୁଦ୍ଧି କେବଳ ଝାଡ଼ୁଦାରମାନଙ୍କ ପରି ରାସ୍ତା ସଫା କରିଦିଏ ମାତ୍ର—ତାହା ଗୌଣଭାବରେ ଉନ୍ନତିର ସହାୟକ । ବୁଦ୍ଧି ଚୌକିଦାର ପରି, କିନ୍ତୁ ସମାଜର ସୁପରିଚାଳନା ପାଇଁ ଚୌକିଦାରର ବେଶୀ ପ୍ରୟୋଜନ ନାହିଁ । ତାହାକୁ କେବଳ ଗୋଳମାଳ ରୋଧ କରିବାକୁ ହୁଏ—ଅନ୍ୟାୟ ନିବାରଣ କରିବାକୁ ହୁଏ । ବିଚାରଶକ୍ତିର—ବୁଦ୍ଧିର କାର୍ଯ୍ୟ ମଧ୍ୟ ସେତିକି । ଯେତେବେଳେ କୌଣସି ବିଚାରାତ୍ମକ ପୁସ୍ତକ ତୁମେ ପଢ଼, ସେତେବେଳେ ଥରେ ଏହା ଆୟତ୍ତ ହେଲେ ତୁମେ ଭାବ ଯେ ଈଶ୍ୱରେଚ୍ଛାରେ ଯାହାହେଉ ଏଥିରୁ ବାହାର ହେଲି । କାରଣ ବିଚାରଶକ୍ତି ଅନ୍ଧ, ଏହାର ନିଜର ଗତିଶକ୍ତି ନାହିଁ, ଏହାର ଗୋଡ଼ ହାତ ନାହିଁ । ହୃଦୟ ବା ଅନୁଭବ ହିଁ ବାସ୍ତବିକ କାର୍ଯ୍ୟ କରେ, ଏହା ବିଦ୍ୟୁତ୍ ଅଥବା ତଦପେକ୍ଷା ଦ୍ରୁତଗାମୀ ପଦାର୍ଥ ଅପେକ୍ଷା ଅଧିକ ଗତିଶୀଳ । ପ୍ରଶ୍ନ ଏହି—ତୁମର ହୃଦୟ ଅଛି କି ? ଯଦି ତାହା ଥାଏ, ତେବେ ତୁମେ ତାହାଦ୍ୱାରା ଈଶ୍ୱରଙ୍କୁ ଦେଖିବ । ଆଜି ତୁମର ହୃଦୟରେ ଯେଉଁ ଅଳ୍ପ ଅନୁଭବ-ଶକ୍ତି ଅଛି, ତାହା କ୍ରମଶଃ ପ୍ରବଳ ହେବ, ଦେବଭାବାପନ୍ନ ହେବ, ଯେପର୍ଯ୍ୟନ୍ତ ଏହା ସକଳ ବସ୍ତୁରେ ଏକତ୍ୱ ଅନୁଭବ ନ କରିଛି—ନିଜ ଅନ୍ତରରେ ଓ ଅନ୍ୟମାନଙ୍କ ମଧ୍ୟରେ ଈଶ୍ୱରଙ୍କୁ ଅନୁଭବ ନ କରିଛି । ବୁଦ୍ଧି ତାହା କରିପାରେ ନାହିଁ । 'ବିଭିନ୍ନ ଭାବରେ ଶବ୍ଦଯୋଜନାର କୌଶଳ, ଶାସ୍ତ୍ରବ୍ୟାଖ୍ୟା କରିବାର ବିଭିନ୍ନ ପ୍ରଣାଳୀ, କେବଳ ପଣ୍ଡିତମାନଙ୍କର ଆମୋଦ ସକାଶେ, ମୁକ୍ତି ପାଇଁ ନୁହେଁ ।'*

ତୁମମାନଙ୍କ ମଧ୍ୟରୁ ଯେଉଁମାନେ ଟମାସ୍-ଆ-କେମ୍ପିସ୍‌ଙ୍କର 'ଈଶା-ଅନୁସରଣ' ବହିଟି ପଢ଼ିଛନ୍ତି, ସେମାନେ ଜାଣନ୍ତି, ପ୍ରତି ପୃଷ୍ଠାରେ ସେ କିପରି ଏହି ଅନୁଭବଶକ୍ତି ଉପରେ ଜୋର୍ ଦେଇଛନ୍ତି । ଜଗତରେ ପ୍ରାୟ ସବୁ ମହାପୁରୁଷ ଏହା ଉପରେ ଜୋର୍ ଦେଇଛନ୍ତି । ବିଚାର ଆବଶ୍ୟକ । ବିଚାର ନ କଲେ ଆମେମାନେ ନାନା ବିଷମ ଭ୍ରମରେ ପଡ଼ିବୁ । ବିଚାରଶକ୍ତି ଭ୍ରମ ନିବାରଣ କରେ; ଏତଦ୍

* ବିବେକଚୂଡ଼ାମଣି, ୬୦

ବ୍ୟତୀତ ବିଶ୍ବରଭିତ୍ତିରେ ଆଉ କିଛି ନିର୍ମାଣ କରିବାକୁ ଚେଷ୍ଟା କର ନାହିଁ । ଏହା ଗୋଟିଏ ନିଷ୍କ୍ରିୟ ଗୌଣ ସାହାଯ୍ୟ ମାତ୍ର—ପ୍ରକୃତ ସାହାଯ୍ୟ ଆସେ ଅନୁଭବ ଓ ପ୍ରେମରୁ । ତୁମେ କ'ଣ ଅନ୍ୟ ପାଇଁ ପ୍ରାଣରେ କିଛି ଅନୁଭବ କରୁଛ ? ଯଦି ତୁମେ ତାହା କର, ତେବେ ତୁମ ହୃଦୟରେ ଏକତ୍ବର ଭାବ ବର୍ଦ୍ଧିତ ହେଉଛି । ଯଦି ତୁମେ ତାହା ନ କର, ତେବେ ତୁମେ ଜଣେ ବଡ଼ ବୁଦ୍ଧିଜୀବୀ ହୋଇପାର, କିନ୍ତୁ ତୁମର କିଛି ହେବ ନାହିଁ—ତୁମେ କେବଳ ଶୁଷ୍କ ବୁଦ୍ଧିବାଦୀ ହୋଇ ରହିବ । ଆଉ ଯଦି ତୁମର ହୃଦୟ ଥାଏ, ତେବେ ତୁମେ ଖଣ୍ଡିଏ ବହି ପଢ଼ି ନ ପାରିଲେ ମଧ୍ୟ, କୌଣସି ଭାଷା ନ ଜାଣିଲେ ମଧ୍ୟ ତୁମେ ଠିକ୍ ପଥରେ ଚାଲୁଛ । ଈଶ୍ବର ତୁମର ସହାୟ ହେବେ ।

ଜଗତର ଇତିହାସରେ ମହାପୁରୁଷଙ୍କ ଶକ୍ତିର କଥା କଅଣ ପାଠ କରି-ନାହଁ ? ଏ ଶକ୍ତି ସେମାନେ କେଉଁଠାରୁ ପାଇଥିଲେ ?—ବୁଦ୍ଧିରୁ ? ସେମାନଙ୍କ ମଧ୍ୟରୁ କେହି କଅଣ ଦର୍ଶନସମ୍ବନ୍ଧୀୟ ବା ନ୍ୟାୟର କୂଟ ବିଚାରସମ୍ବନ୍ଧୀୟ ସୁନ୍ଦର ପୁସ୍ତକ ଲେଖିଯାଇଛନ୍ତି ?—କେହି ଏପରି କରି ନାହାନ୍ତି । ସେମାନେ କେବଳ କେତେଗୁଡ଼ିଏ କଥା କହିଯାଇଛନ୍ତି । ଖ୍ରୀଷ୍ଟଙ୍କ ପରି ହୃଦୟସମ୍ପନ୍ନ ହୁଅ, ତୁମେ ମଧ୍ୟ ଯୀଶୁଖ୍ରୀଷ୍ଟ ହେବ—ବୁଦ୍ଧଙ୍କ ପରି ହୃଦୟସମ୍ପନ୍ନ ହୁଅ, ତୁମେ ମଧ୍ୟ ଜଣେ ବୁଦ୍ଧ ହୋଇଯିବ । ହୃଦୟ ହିଁ ଜୀବନ, ହୃଦୟ ହିଁ ବଳ, ହୃଦୟ ହିଁ ତେଜ—ହୃଦୟ ବ୍ୟତୀତ ତୁମେ ଯେତେ ବୁଦ୍ଧିର ଚାଳନା କରନା କାହିଁକି, କୌଣସିମତେ ଈଶ୍ବରଙ୍କୁ ପାଇବ ନାହିଁ ।

ବୁଦ୍ଧି ଯେପରିକି ଚାଳନା-ଶକ୍ତିଶୂନ୍ୟ ଅଙ୍ଗ ପ୍ରତ୍ୟଙ୍ଗ ପରି । ଯେତେବେଳେ ହୃଦୟ ତାହାକୁ ଅନୁପ୍ରାଣିତ କରି ଗତିଯୁକ୍ତ କରେ, ସେତେବେଳେ ତାହା ଅନ୍ୟର ହୃଦୟକୁ ସ୍ପର୍ଶ କରିଥାଏ । ଜଗତରେ ଚିରକାଳ ଏହିପରି ହୋଇଆସୁଛି, ସୁତରାଂ ଏହା ତୁମମାନଙ୍କର ସ୍ମରଣ ରଖିବା ଆବଶ୍ୟକ । ବୈଦାନ୍ତିକ ନୀତିତତ୍ତ୍ବରେ ଏହା ଗୋଟିଏ ବିଶେଷ କାର୍ଯ୍ୟକାରୀ ଶିକ୍ଷା; କାରଣ, ବେଦାନ୍ତ କହେ, ତୁମେ ସମସ୍ତେ ମହାପୁରୁଷ—ତୁମ ସମସ୍ତଙ୍କୁ ମହାପୁରୁଷ ହେବାକୁ ହେବ । କୌଣସି ଶାସ୍ତ୍ର ତୁମ କାର୍ଯ୍ୟର ପ୍ରମାଣ ନୁହେଁ; ବରଂ ତୁମେ ହିଁ ଶାସ୍ତ୍ରର ପ୍ରମାଣ । କେଉଁ ଶାସ୍ତ୍ର କି ସତ୍ୟ କହୁଛି, ତାହା ତୁମେ କିପରି ଜାଣ ? —ତୁମେ ମଧ୍ୟ ସେଭଳି ଅନୁଭବ କର ବୋଲି ! ବେଦାନ୍ତ ଏହା ହିଁ କହେ । ଜଗତରେ ଖ୍ରୀଷ୍ଟ, ବୁଦ୍ଧମାନଙ୍କର ବାକ୍ୟର ପ୍ରମାଣ କଅଣ ? ପ୍ରମାଣ ଏହି ଯେ ତୁମେ ଓ ମୁଁ ମଧ୍ୟ ସେହିପରି ଅନୁଭବ କରିଥାଉଁ, ସେଥିରୁ ତୁମେ ଓ ମୁଁ ବୁଝିପାରୁ—ସେଗୁଡ଼ିକ ସତ୍ୟ । ଆମମାନଙ୍କର ଦିବ୍ୟ ଆତ୍ମା ସେମାନଙ୍କର ଦିବ୍ୟ ଆତ୍ମାର ପ୍ରମାଣ । ଏପରି କି ତୁମର ଦେବତ୍ବ ହିଁ ଈଶ୍ବରଙ୍କର ପ୍ରମାଣ । ଯଦି ତୁମେ ବାସ୍ତବିକ ମହାପୁରୁଷ ନ ହୁଅ, ତେବେ ଈଶ୍ବରଙ୍କ ସମ୍ବନ୍ଧରେ କୌଣସି କଥା ସତ୍ୟ ନୁହେଁ । ତୁମେ ଯଦି ଈଶ୍ବର ନ ହୁଅ, ତେବେ କୌଣସି

ଈଶ୍ୱର ନାହାନ୍ତି, କେବେ ମଧ୍ୟ ହେବେ ନାହିଁ । ବେଦାନ୍ତ କହେ, ଏହି ଆଦର୍ଶ ହିଁ ଅନୁସରଣୀୟ । ଆମମାନଙ୍କ ମଧ୍ୟରୁ ପ୍ରତ୍ୟେକଙ୍କୁ ମହାପୁରୁଷ ହେବାକୁ ହେବ— ଆଉ ତୁମେ ସ୍ୱରୂପତଃ ତାହା ହିଁ ଅଛ; କେବଳ ଏହା ଅବଗତ ହୁଅ । ଆତ୍ମା ପକ୍ଷରେ କିଛି ଅସମ୍ଭବ, ଏ କଥା କଦାପି ଭାବ ନାହିଁ । ଏପରି କହିବା ଭୟଙ୍କର ନାସ୍ତିକତା । ଯଦି ପାପ ବୋଲି କିଛି ଥାଏ, ତେବେ 'ମୁଁ ଦୁର୍ବଳ' ବା 'ଅନ୍ୟମାନେ ଦୁର୍ବଳ', ଏ କଥା କହିବା ହିଁ ଏକମାତ୍ର ପାପ ।

# କର୍ମ-ଜୀବନରେ ବେଦାନ୍ତ

## ଦ୍ୱିତୀୟ ପ୍ରସ୍ତାବ

[ଲଣ୍ଡନରେ ପ୍ରଦତ୍ତ—୧୨ ନଭେମ୍ବର, ୧୮୯୭]

ମୁଁ ଛାନ୍ଦୋଗ୍ୟ ଉପନିଷଦ୍‌ରୁ ଗୋଟିଏ 'ଗଳ୍ପ'* କହିବି—ଗୋଟିଏ ବାଳକର କେଉଁପରି ଜ୍ଞାନଲାଭ ହୋଇଥିଲା । ଅବଶ୍ୟ ଗଳ୍ପଟି ପ୍ରାଚୀନ ଧରଣର ସତ୍ୟ, କିନ୍ତୁ ଏହା ଭିତରେ ଗୋଟିଏ ସାରତତ୍ତ୍ୱ ନିହିତ ଅଛି । ଗୋଟିଏ ଅଳ୍ପବୟସ୍କ ବାଳକ ତାହାର ମାଆଙ୍କୁ କହିଲା, 'ମା, ମୁଁ ବେଦ ଶିକ୍ଷା କରିବାକୁ ଯିବି, ମୋର ବାପାଙ୍କର ନାମ କଅଣ ଓ ମୋର ଗୋତ୍ର କଅଣ ତାହା କହ ।'

ତାହାର ମା ବିବାହିତା ସ୍ତ୍ରୀ ନ ଥିଲେ । ଭାରତବର୍ଷରେ ଅବିବାହିତା ସ୍ତ୍ରୀର ସନ୍ତାନ ସମାଜରେ ନଗଣ୍ୟ ବୋଲି ବିବେଚିତ ହୁଏ—କୌଣସି କାର୍ଯ୍ୟରେ ତାହାର ଅଧିକାର ନାହିଁ, ବେଦପାଠ କରିବା ତ ଦୂରର କଥା । ତେଣୁ ତା'ର ମା କହିଲେ, 'ମୁଁ ଯୌବନରେ ଅନେକଙ୍କର ପରିଚର୍ଯ୍ୟା କରିଥିଲି; ସେହି ଅବସ୍ଥାରେ ତୋତେ ଲାଭ କରିଛି, ସୁତରାଂ ତୋ ପିତାଙ୍କ ନାମ ଏବଂ ତୋର କେଉଁ ଗୋତ୍ର, ତାହା ମୁଁ ଜାଣି ନାହିଁ, କେବଳ ଏତିକି ଜାଣେ ଯେ ମୋର ନାମ ଜବାଲା ।'

ବାଳକ ଋଷିମାନଙ୍କ ନିକଟକୁ ଗଲା, ସେମାନେ ତାହାକୁ ସେହି ପ୍ରଶ୍ନ ପଚାରିଲେ । ସେ ବ୍ରହ୍ମଚର୍ଯ୍ୟ-ଶିଷ୍ୟ ହେବା ପାଇଁ ପ୍ରାର୍ଥନା କରିବାରୁ ସେମାନେ ପଚାରିଲେ, 'ତୁମ ପିତାଙ୍କର ନାମ କଅଣ ଏବଂ ତୁମର ଗୋତ୍ର କଅଣ ?' ବାଳକ ମା'ଠାରୁ ଯାହା ଶୁଣିଥିଲା, ତାହା ହିଁ କହିଲା । ଅନେକେ ଏହି ଉତ୍ତର ଶୁଣି ସନ୍ତୁଷ୍ଟ ହେଲେ ନାହିଁ; କିନ୍ତୁ ସେମାନଙ୍କ ମଧ୍ୟରୁ ଜଣେ କହିଲେ, 'ବତ୍ସ, ତୁମେ ସତ୍ୟ କହିଛ, ତୁମେ ଧର୍ମପଥରୁ ବିଚଳିତ ହୋଇନାହଁ—ଏହି ସତ୍ୟବାଦିତା ହିଁ ବ୍ରାହ୍ମଣର ଲକ୍ଷଣ, ଅତଏବ ତୁମକୁ ମୁଁ ବ୍ରାହ୍ମଣ ବୋଲି ନିଶ୍ଚୟ କଲି—ମୁଁ ତୁମକୁ ଶିଷ୍ୟ କରିବି ।' ଏହା କହି ସେ ତାହାକୁ ନିଜ ପାଖରେ ରଖି ଶିକ୍ଷା ଦେବାକୁ ଲାଗିଲେ । ସେ ବାଳକଟିର ନାମ ଦେଲେ 'ସତ୍ୟକାମ' ଅର୍ଥାତ୍, ଯିଏ ସତ୍ୟକାମନା କରେ ।

ତାହା ପରେ ପ୍ରାଚୀନ କାଳର ଶିକ୍ଷାପ୍ରଣାଳୀ ଅନୁସାରେ ସତ୍ୟକାମର ଶିକ୍ଷା ହେବାକୁ ଲାଗିଲା । ଗୁରୁ ସତ୍ୟକାମକୁ କେତେ ଶହ ଗୋରୁ ଦେଇ କହିଲେ, 'ଏଗୁଡ଼ିକ ନେଇ ତୁମେ ଅରଣ୍ୟକୁ ଯାଅ—ଯେତେବେଳେ ମୋଟରେ ସହସ୍ର

---

* ଛାନ୍ଦୋଗ୍ୟ ଉପ., ୪।୪-୫

ଗୋରୁ ହେବ, ସେତେବେଳେ ତୁମେ ଫେରି ଆସିବ ।' ସେ ତାହା ହିଁ କଲା । କିଛି ବର୍ଷ ପରେ ସେହି ଗୋରୁଙ୍କ ମଧ୍ୟରୁ ଗୋଟିଏ ବଡ଼ ଷଣ୍ଢ ସତ୍ୟକାମଙ୍କୁ କହିଲା, 'ଆମେମାନେ ବର୍ତ୍ତମାନ ଏକ ସହସ୍ର ହୋଇଛୁ; ଆମମାନଙ୍କୁ ତୁମର ଗୁରୁଙ୍କ ନିକଟକୁ ନେଇଯାଅ । ମୁଁ ତୁମକୁ ବ୍ରହ୍ମ ସମ୍ବନ୍ଧରେ କିଛି ଶିକ୍ଷା ଦେବି ।' ସତ୍ୟକାମ କହିଲେ, 'କହନ୍ତୁ ପ୍ରଭୁ ।' ଷଣ୍ଢ କହିଲା, 'ଉତ୍ତରଦିଗ ବ୍ରହ୍ମର ଗୋଟିଏ ଅଂଶ, ପୂର୍ବଦିଗ, ଦକ୍ଷିଣଦିଗ, ପଶ୍ଚିମଦିଗ ମଧ୍ୟ ତାଙ୍କର ଗୋଟିଏ ଗୋଟିଏ ଅଂଶ । ଚାରି ଦିଗରେ ବ୍ରହ୍ମର ଚାରି ଅଂଶ । ଅଗ୍ନି ତୁମକୁ ଆଉ କିଛି ଶିକ୍ଷା ଦେବେ ।' ସେହି ଯୁଗରେ ଅଗ୍ନି ବ୍ରହ୍ମର ବିଶିଷ୍ଟ ପ୍ରତୀକ ରୂପରେ ପୂଜା ପାଉଥିଲେ । ପ୍ରତ୍ୟେକ ବ୍ରହ୍ମଚାରୀଙ୍କୁ ଅଗ୍ନି ଚୟନ କରି ସେଥିରେ ଆହୁତି ଦେବାକୁ ହେଉଥିଲା । ଯାହା ହେଉ, ସତ୍ୟକାମ ସ୍ନାନାଦି କରି ଅଗ୍ନିରେ ହୋମ କରି ତାହା ନିକଟରେ ଉପବିଷ୍ଟ ହୋଇଛନ୍ତି, ଏପରି ସମୟରେ ଅଗ୍ନି ଭିତରୁ ଗୋଟିଏ ବାଣୀ ଶୁଣିବାକୁ ପାଇଲେ —'ସତ୍ୟକାମ !' ସତ୍ୟକାମ କହିଲେ, 'ପ୍ରଭୁ, ଆଜ୍ଞା କରନ୍ତୁ ।' ତୁମମାନଙ୍କର ସ୍ମରଣ ଥାଇପାରେ, ବାଇବେଲର ପ୍ରାଚୀନ ସଂହିତାରେ ଏହିପରି ଗୋଟିଏ ଗଳ୍ପ ଅଛି—ସାମୁୟେଲ୍ ଏହିପରି ଗୋଟିଏ ଅଦ୍ଭୁତ ବାଣୀ ଶୁଣିଥିଲେ । ଅଗ୍ନି କହିଲେ, 'ମୁଁ ତୁମକୁ ବ୍ରହ୍ମ ସମ୍ବନ୍ଧରେ କିଛି ଶିକ୍ଷା ଦେବି । ଏହି ପୃଥିବୀ ବ୍ରହ୍ମର ଗୋଟିଏ ଅଂଶ । ଅନ୍ତରୀକ୍ଷ ଗୋଟିଏ ଅଂଶ, ସ୍ୱର୍ଗ ଗୋଟିଏ ଅଂଶ, ସମୁଦ୍ର ଗୋଟିଏ ଅଂଶ । ଏ ବିଷୟରେ ଗୋଟିଏ ହଂସ ମଧ୍ୟ ତୁମକୁ କିଛି ଶିକ୍ଷା ଦେବେ ।' ଗୋଟିଏ ହଂସ ଦିନେ ଆସି ସତ୍ୟକାମଙ୍କୁ କହିଲା, 'ମୁଁ ତୁମକୁ ବ୍ରହ୍ମ ସମ୍ବନ୍ଧରେ କିଛି ଶିକ୍ଷା ଦେବି । ହେ ସତ୍ୟକାମ ! ଏହି ଅଗ୍ନି, ଯାହାର ତୁମେ ଉପାସନା କରୁଛ, ତାହା ବ୍ରହ୍ମର ଗୋଟିଏ ଅଂଶ, ସୂର୍ଯ୍ୟ ଗୋଟିଏ ଅଂଶ, ଚନ୍ଦ୍ର ଗୋଟିଏ ଅଂଶ, ବିଦ୍ୟୁତ୍ ମଧ୍ୟ ଗୋଟିଏ ଅଂଶ । ମଦ୍‌ଗୁ ନାମକ ଗୋଟିଏ ପକ୍ଷୀ ତୁମକୁ ଆଉ କିଛି ଶିଖାଇବେ ।' ଦିନେ ସେହି ପକ୍ଷୀ ଆସି ତାହାଙ୍କୁ କହିଲା, 'ମୁଁ ତୁମକୁ ବ୍ରହ୍ମ ସମ୍ବନ୍ଧରେ କିଛି ଶିଖାଇବି । ପ୍ରାଣ ତାଙ୍କର ଗୋଟିଏ ଅଂଶ, ଚକ୍ଷୁ ଗୋଟିଏ ଅଂଶ, କାନ ଗୋଟିଏ ଅଂଶ ଏବଂ ମନ ଗୋଟିଏ ଅଂଶ ।' ତାହା ପରେ ସତ୍ୟକାମ ଗୁରୁଙ୍କ ନିକଟରେ ଯାଇ ଉପସ୍ଥିତ ହେଲେ; ଗୁରୁ ଦୂରରୁ ତାଙ୍କୁ ଦେଖି କହିଲେ, 'ବତ୍ସ, ତୁମର ମୁଖ ଯେ ବ୍ରହ୍ମବିଦ୍ ପରି ଉଦ୍ଭାସିତ ଦେଖୁଛି । କିଏ ତୁମକୁ ଶିକ୍ଷା ଦେଲା ?' ସତ୍ୟକାମ କହିଲେ, 'କୌଣସି ବ୍ୟକ୍ତିବିଶେଷଙ୍କ ନିକଟରୁ ମୁଁ ଶିକ୍ଷାଲାଭ କରିନାହିଁ । ଆପଣ ଅନୁଗ୍ରହ କରି କିଛି ଶିକ୍ଷା ଦିଅନ୍ତୁ; କାରଣ ମୁଁ ଶୁଣିଛି, ଆପଣଙ୍କ ପରି ସଦ୍‌ଗୁରୁଙ୍କ ନିକଟରୁ ଶିକ୍ଷାଲାଭ କଲେ ବିଦ୍ୟା କଲ୍ୟାଣକାରୀ ହୁଏ ।' ଦେବତାମାନଙ୍କ ନିକଟରୁ ସତ୍ୟକାମ ଯାହା ଶିଖିଥିଲେ, ଗୁରୁ ତାହାର ପୁନରାବୃତ୍ତି କଲେ । ସେ ଗୁରୁଙ୍କୁ ବ୍ରହ୍ମ ସମ୍ବନ୍ଧରେ ଆହୁରି ଉପଦେଶ ଦେବା ପାଇଁ ଅନୁରୋଧ କଲେ । ଗୁରୁ କହିଲେ, 'ତୁମେ ବ୍ରହ୍ମ ସମ୍ବନ୍ଧରେ ତ ପୂର୍ବରୁ ଜାଣିଛ ।'

ଏସବୁ ରୂପକ କଥା ଛାଡ଼ି ଦେଇ—ଷଣ୍ଢ କଅଣ ଶିଖାଇଲା, ଅଗ୍ନି କଅଣ ଶିଖାଇଲା, ଆଉ ସମସ୍ତେ କଅଣ ଶିଖାଇଲେ—ଏସବୁ କଥା ଛାଡ଼ିଦେଇ ଆମେ-ମାନେ ଲକ୍ଷ୍ୟ କରି ଦେଖିବା, ତେବେ ଜାଣିବା, ଚିନ୍ତାର ଗତି କେଉଁ ଦିଗକୁ ଯାଉଛି । ଆମେମାନେ ବର୍ତ୍ତମାନ ଏହି ତତ୍ତ୍ୱର ଆଭାସ ପାଉଛୁ ଯେ, ଏ ସକଳ ବାଣୀ ଆମମାନଙ୍କ ଭିତରେ ଅଛି । ଆମେମାନେ ଆହୁରି ଅଧିକ ପାଠ କଲେ ବୁଝିବୁ ଅବଶେଷରେ ଏହି ତତ୍ତ୍ୱ ଓ ବାଣୀ ବାସ୍ତବିକ ଆମମାନଙ୍କର ହୃଦୟାଭ୍ୟନ୍ତରରୁ ଉତ୍ଥିତ । ଶିଷ୍ୟ ବରାବର ସତ୍ୟ ସମ୍ବନ୍ଧରେ ଉପଦେଶ ପାଉଛନ୍ତି; କିନ୍ତୁ ସେ ଏହାର ଯେପରି ବ୍ୟାଖ୍ୟା କରିଛନ୍ତି, ଅର୍ଥାତ୍ ଏହା ଯେ ବହିର୍ଦ୍ଦେଶରୁ ମିଳିଛି, ତାହା ସତ୍ୟ ନୁହେଁ । ଆଉ ଗୋଟିଏ ତତ୍ତ୍ୱ ମଧ୍ୟ ଏଥିରୁ ଆମେ ପାଉଛୁ—କର୍ମଜୀବନରେ ବ୍ରହ୍ମୋପଲବ୍ଧି ବା ବ୍ୟାବହାରିକ ଜୀବନରେ ବ୍ରହ୍ମଜ୍ଞାନର ପ୍ରୟୋଗ । ଧର୍ମରୁ କାର୍ଯ୍ୟତଃ କେଉଁ ସତ୍ୟ ମିଳିପାରେ, ଏହା ସର୍ବଦା ଅନ୍ୱେଷିତ ହେଉଛି ଏବଂ ଏହିସବୁ ଉପାଖ୍ୟାନରୁ ଆମେମାନେ ଏହା ଦେଖିବାକୁ ପାଉ, ଦିନକୁ ଦିନ କିପରି ଏହି ଏକତ୍ୱର ଧାରଣା ସେମାନଙ୍କ ଦୈନନ୍ଦିନ ଜୀବନର ଅନ୍ତର୍ଗତ ହୋଇଯାଇଛି । ଯେଉଁ ସକଳ ଜିନିଷର ସଂସ୍ପର୍ଶରେ ସେମାନଙ୍କୁ ସର୍ବଦା ଆସିବାକୁ ହେଉଥିଲା, ସେଥିରେ ମଧ୍ୟ ସେମାନେ ବ୍ରହ୍ମଙ୍କୁ ଉପଲବ୍ଧି କରୁଥିଲେ । ଅଗ୍ନି, ଯାହାକୁ ସେମାନେ ପ୍ରତ୍ୟହ ଉପାସନା କରୁଥିଲେ, ସେଥିରେ ସେମାନେ ବ୍ରହ୍ମ ସାକ୍ଷାତ୍କାର କରୁଥିଲେ; ଏହି ପରିଦୃଶ୍ୟମାନ ପୃଥିବୀକୁ ସେମାନେ ବ୍ରହ୍ମର ଏକାଂଶ ବୋଲି ଜାଣୁଥିଲେ—ଇତ୍ୟାଦି ଇତ୍ୟାଦି ।

ପରବର୍ତ୍ତୀ ଉପାଖ୍ୟାନଟି* ସତ୍ୟକାମଙ୍କ ଗୋଟିଏ ଶିଷ୍ୟସମ୍ବନ୍ଧୀୟ । ସେ ସତ୍ୟକାମଙ୍କଠାରୁ ଶିକ୍ଷାଲାଭାର୍ଥେ କିଛିକାଳ ତାଙ୍କ ନିକଟରେ ବାସ କରିଥିଲା । ଥରେ ସତ୍ୟକାମ କାର୍ଯ୍ୟବଶତଃ ଯେତେବେଳେ କୌଣସି ସ୍ଥାନକୁ ଗଲେ, ଶିଷ୍ୟଟି ଦୁଃଖରେ ଭାଙ୍ଗି ପଡ଼ିଲା । ଯେତେବେଳେ ଗୁରୁପତ୍ନୀ ତାଙ୍କ ନିକଟକୁ ଆସି ପଚାରିଲେ, 'ବତ୍ସ ! ତୁମେ କିଛି ଖାଉ ନାହଁ କାହିଁକି ?' ସେତେବେଳେ ବାଳକଟି କହିଲା, 'ମୋର ମନ ଭଲ ନାହିଁ, କିଛି ଖାଇବାକୁ ଇଚ୍ଛା ହେଉ ନାହିଁ ।' ଏପରି ସମୟରେ ସେ ଯେଉଁ ଅଗ୍ନିରେ ହୋମ କରୁଥିଲା, ସେଥିରୁ ଏହି ବାଣୀ ଶୁଭିଲା, 'ପ୍ରାଣ ବ୍ରହ୍ମ, ସୁଖ ବ୍ରହ୍ମ, ଆକାଶ ବ୍ରହ୍ମ, ତୁମେ ତାହା ଜ୍ଞାତ ହୁଅ ।' ସେତେବେଳେ ସେ କହିଲା, 'ପ୍ରାଣ ଯେ ବ୍ରହ୍ମ, ତାହା ମୁଁ ଜାଣେ, କିନ୍ତୁ ସେ ଯେ ଆକାଶ ଓ ସୁଖସ୍ୱରୂପ ତାହା ମୁଁ ଜାଣେ ନାହିଁ ।' ସେତେବେଳେ ଅଗ୍ନି ଆହୁରି କହିବାକୁ ଲାଗିଲେ, 'ଏହି ପୃଥିବୀ, ଏହି ଅନ୍ନ, ଏହି ସୂର୍ଯ୍ୟ—ତୁମେ ଯାହାଙ୍କୁ ଉପାସନା କରୁଛ, ସେ ଏହି ସବୁଥିରେ ବାସ କରୁଛନ୍ତି, ସେ ତୁମ ସମସ୍ତଙ୍କ ମଧ୍ୟରେ ରହିଛନ୍ତି । ଯେ ଏହା ଜାଣନ୍ତି

* ଛାନ୍ଦୋଗ୍ୟ ଉପ., ୪।୧୦-୧୭

ଏବଂ ଏହିପରି ଭାବରେ ଉପାସନା କରନ୍ତି, ତାଙ୍କର ସକଳ ପାପ ନଷ୍ଟ ହୋଇଯାଏ; ସେ ଦୀର୍ଘଜୀବନ ଲାଭ କରନ୍ତି ଓ ସୁଖୀ ହୁଅନ୍ତି । ଯେ ସମସ୍ତ ସ୍ଥାନରେ ବାସ କରନ୍ତି, ମୁଁ ହିଁ ସେ । ଯେ ଏହି ପ୍ରାଣରେ, ଏହି ଆକାଶରେ, ସ୍ୱର୍ଗସମୂହରେ ଓ ବିଦ୍ୟୁତରେ ବାସ କରନ୍ତି, ସେ ହିଁ ମୁଁ ।'

ଏଠାରେ ମଧ୍ୟ ଆମେମାନେ କର୍ମଜୀବନରେ ଧର୍ମ-ଅନୁଭୂତିର କଥା ପାଉ-ଅଛୁ । ସେମାନେ ଯାହାକୁ ଅଗ୍ନି, ସୂର୍ଯ୍ୟ, ଚନ୍ଦ୍ର ପ୍ରଭୃତି ରୂପରେ ଉପାସନା କରୁ-ଥିଲେ, ଯେଉଁ ସକଳ ବସ୍ତୁ ସହିତ ସେମାନେ ପରିଚିତ, ସେମାନଙ୍କର ବ୍ୟାଖ୍ୟା କରାଗଲା । ସେମାନଙ୍କୁ ଗୋଟିଏ ଉଚ୍ଚତର ଅର୍ଥ ଦିଆହେଲା, ଏବଂ ଏହା ହିଁ ବାସ୍ତବିକ ବେଦାନ୍ତର ସାଧନକାଣ୍ଡ । ବେଦାନ୍ତ ଜଗତକୁ ଅସ୍ୱୀକାର କରେ ନାହିଁ, ବରଂ ଏହାକୁ ବ୍ୟାଖ୍ୟା କରେ । ଏହା ବ୍ୟକ୍ତିକୁ ଅସ୍ୱୀକାର କରେ ନାହିଁ, ତାହାକୁ ବ୍ୟାଖ୍ୟା କରେ—ଏହା ଆମର ମୁଁ ତ୍ୱକୁ ବିନାଶ କରେ ନାହିଁ, ବରଂ ପ୍ରକୃତ ମୁଁ ତ୍ୱ କଅଣ ତାହା ବୁଝାଇ ଦିଏ । ଏହା କହେ ନାହିଁ ଯେ, ଜଗତ ବୃଥା, ଅଥବା ଏହାର ଅସ୍ତିତ୍ୱ ନାହିଁ; ବରଂ କହେ ଯେ, ଜଗତ କଅଣ ତାହା ବୁଝ, ଯଦ୍ୱାରା ଏହା ତୁମର କୌଣସି ଅନିଷ୍ଟ କରି ନ ପାରେ ।

ସେହି ବାଣୀ ସତ୍ୟକାମ ବା ତାଙ୍କର ଶିଷ୍ୟକୁ କହି ନାହିଁ ଯେ, ଅଗ୍ନି, ସୂର୍ଯ୍ୟ, ଚନ୍ଦ୍ର, ବିଦ୍ୟୁତ୍ ଅଥବା ଅନ୍ୟ ଯାହା କିଛି ସେମାନେ ଉପାସନା କରୁଥିଲେ, ତାହା ଏକାବେଳକେ ଭ୍ରମ—ସେମାନେ ବରଂ ଏହା କହିଥିଲେ ଯେ, ଯେଉଁ ଚୈତନ୍ୟ, ସୂର୍ଯ୍ୟ, ଚନ୍ଦ୍ର, ବିଦ୍ୟୁତ୍, ଅଗ୍ନି ଏବଂ ପୃଥିବୀ ଭିତରେ ରହିଛନ୍ତି, ସେ ସେମାନଙ୍କ ଭିତରେ ମଧ୍ୟ ରହିଛନ୍ତି; ସୁତରାଂ ସେମାନଙ୍କ ଚକ୍ଷୁରେ ସମସ୍ତ ଦୃଶ୍ୟ ଆଉ ଗୋଟିଏ ରୂପ ଧାରଣ କଲା । ଯେଉଁ ଅଗ୍ନି ପୂର୍ବେ କେବଳ ମାତ୍ର ହୋମ କରିବାର ଜଡ଼ ଅଗ୍ନି ଥିଲା, ତାହା ଏକ ନୂତନ ରୂପ ଧାରଣ କଲା ଓ ଈଶ୍ୱରସ୍ୱରୂପ ହୋଇଗଲା । ପୃଥିବୀ ଆଉ ଗୋଟିଏ ରୂପ ଧାରଣ କଲା, ପ୍ରାଣ ଆଉ ଗୋଟିଏ ରୂପ ଧାରଣ କଲା; ସୂର୍ଯ୍ୟ, ଚନ୍ଦ୍ର, ନକ୍ଷତ୍ର, ବିଦ୍ୟୁତ୍—ସମସ୍ତେ ଈଶ୍ୱର-ରୂପ ଧାରଣ କଲେ, ବ୍ରହ୍ମଭାବାପନ୍ନ ହୋଇଗଲେ । ସେମାନଙ୍କର ପ୍ରକୃତ ସ୍ୱରୂପ ସେତେବେଳେ ପରିଜ୍ଞାତ ହେଲା । କାରଣ, ଆମେମାନେ ଏହା ବିଶେଷରୂପେ ଜାଣିବା ଉଚିତ ଯେ, ବେଦାନ୍ତର ଏହି ଉଦ୍ଦେଶ୍ୟ—ସମୁଦାୟ ବସ୍ତୁରେ ଭଗବତ୍-ଦର୍ଶନ କରିବା; ସେମାନେ ଯେଉଁରୂପେ ପ୍ରତୀୟମାନ ହେଉଛନ୍ତି, ସେପରି ଭାବରେ ନ ଦେଖି ସେମାନଙ୍କୁ ସେମାନଙ୍କର ପ୍ରକୃତ ସ୍ୱରୂପରେ ଜ୍ଞାତ ହେବା ।

ତାହା ପରେ ଆଉ ଗୋଟିଏ ବିଷୟରେ ଶିକ୍ଷା ଦିଆହୁଏ—ଏହା ଗୋଟିଏ ଅଦ୍ଭୁତ ପ୍ରକାରର ଉପଲବ୍ଧି । 'ଯେ ଚକ୍ଷୁ ମଧ୍ୟରେ ଦୀପ୍ତି ପାଉଛନ୍ତି, ସେ ବ୍ରହ୍ମ, ସେ ସୁନ୍ଦର ଓ ଜ୍ୟୋତିର୍ମୟ; ସେ ସମୁଦାୟ ଜଗତକୁ ଦୀପ୍ତ କରୁଛନ୍ତି ।' ଏଠାରେ ଭାଷ୍ୟକାର କହନ୍ତି, ପବିତ୍ରାତ୍ମା ପୁରୁଷମାନଙ୍କ ଚକ୍ଷୁରେ ଯେଉଁ ଏକ ବିଶେଷ ପ୍ରକାର

ଜ୍ୟୋତିର ଆବିର୍ଭାବ ହୁଏ, ତାହା ଏଠାରେ ଗୁଣ୍ଠୁଣ୍ଠ ଜ୍ୟୋତିର ଅର୍ଥ । ଏହାକୁ ସେହି ସର୍ବବ୍ୟାପୀ ଆତ୍ମାର ଜ୍ୟୋତି ବୋଲି ବର୍ଣ୍ଣନା କରାଯାଇଥାଏ । ସେହି ଜ୍ୟୋତି ସୂର୍ଯ୍ୟ-ଚନ୍ଦ୍ର-ତାରାରେ ପ୍ରକାଶ ପାଉଛି ।

ତୁମମାନଙ୍କ ନିକଟରେ ବର୍ତ୍ତମାନ ଜନ୍ମ, ମୃତ୍ୟୁ ପ୍ରଭୃତି ସମ୍ବନ୍ଧରେ ଏହି ପ୍ରାଚୀନ ଉପନିଷଦ୍‌ସକଳର କେତେଗୁଡ଼ିଏ ଅଦ୍ଭୁତ ଅଦ୍ଭୁତ ମତର* କଥା କହିବି । ହୁଏତ ଏହା ତୁମମାନଙ୍କୁ ଭଲ ଲାଗିପାରେ । ଶ୍ୱେତକେତୁ ପାଞ୍ଚାଳ ରାଜାଙ୍କ ନିକଟକୁ ଯାଇଥିଲେ । ରାଜା ତାଙ୍କୁ ଏହିସବୁ ପ୍ରଶ୍ନ ପଚାରିଥିଲେ, 'ହେ ଶ୍ୱେତକେତୁ ! ତୁମେ କଅଣ ଜାଣ, ଲୋକମାନଙ୍କର ମୃତ୍ୟୁ ହେଲେ ସେମାନେ କୁଆଡ଼େ ଯାଆନ୍ତି ? ତୁମେ କଅଣ ଜାଣ, ସେମାନେ କିପରି ପୁଣି ଫେରି ଆସନ୍ତି ? ତୁମେ କଅଣ ଜାଣ, ପୃଥିବୀ ଏକାବେଳକେ ପରିପୂର୍ଣ୍ଣ ହୋଇଯାଏ ନାହିଁ କାହିଁକି, ଶୂନ୍ୟ ମଧ୍ୟ ହୋଇଯାଏ ନାହିଁ କାହିଁକି ?' ବାଳକ କହିଲେ, 'ନା, ମୁଁ ଏସବୁ କିଛି ଜାଣି ନାହିଁ ।' ସେ ସେତେବେଳେ ନିଜ ପିତାଙ୍କ ନିକଟକୁ ଯାଇ ତାଙ୍କୁ ସେହିସବୁ ପ୍ରଶ୍ନର ଉତ୍ତର ପଚାରିଲେ । ପିତା କହିଲେ, 'ମୁଁ ମଧ୍ୟ ଜାଣେ ନାହିଁ ।' ସେତେବେଳେ ସେମାନେ ଉଭୟେ ରାଜାଙ୍କ ନିକଟକୁ ଗଲେ । ରାଜା କହିଲେ, 'ଏହି ଜ୍ଞାନ ପୂର୍ବେ ବ୍ରାହ୍ମଣମାନେ ଜାଣି ନ ଥିଲେ, ରାଜାମାନେ ହିଁ କେବଳ ଏହା ଜାଣିଥିଲେ ଏବଂ ସେହି ଜ୍ଞାନବଳରେ ହିଁ ରାଜାମାନେ ପୃଥିବୀକୁ ଶାସନ କରୁଥିଲେ ।'

ତା'ପରେ ଶ୍ୱେତକେତୁଙ୍କ ପିତା କିଛି ଦିନ ରାଜାଙ୍କ ନିକଟରେ ରହିଲେ ଓ ଅବଶେଷରେ ରାଜା ତାଙ୍କୁ ଶିକ୍ଷା ଦେବାକୁ ସ୍ୱୀକୃତ ହେଲେ । ରାଜା ଉପଦେଶ ଦେବାକୁ ଲାଗିଲେ, 'ହେ ଗୌତମ, ତୁମେ ଯେ ଏହି ଅଗ୍ନିର ଉପାସନା କରୁଛ, ତାହା ବାସ୍ତବିକ ଅତି ନିମ୍ନ ଧରଣର । ଏହି ପୃଥିବୀ ହିଁ ସେହି ଅଗ୍ନିସ୍ୱରୂପ, ସମ୍ବତ୍ସର ଏହାର କାଷ୍ଠସ୍ୱରୂପ, ରାତ୍ରି ଏହାର ଧୂମସ୍ୱରୂପ, ଦିଗମାନେ ଏହାର ଶିଖାସ୍ୱରୂପ, କୋଣସକଳ ଏହାର ସ୍ଫୁଲିଙ୍ଗସ୍ୱରୂପ, ଏହି ଅଗ୍ନିରେ ଦେବତାମାନେ ବୃଷ୍ଟିରୂପକ ଆହୁତି ଦେଉଥାଆନ୍ତି, ଯେଉଁଥିରୁ ଅନ୍ନ ଉତ୍ପନ୍ନ ହୁଏ ।' ରାଜା ଏହି ଭାବରେ ବିଭିନ୍ନ ଉପଦେଶ ଦେବାକୁ ଲାଗିଲେ । ଏହାର ତାତ୍ପର୍ଯ୍ୟ ଏହି : ତୁମର ଏହି କ୍ଷୁଦ୍ର ଅଗ୍ନିରେ ହୋମ କରିବାର କୌଣସି ପ୍ରୟୋଜନ ନାହିଁ, ସମୁଦାୟ ଜଗତ ସେହି ଅଗ୍ନି ଏବଂ ଦିବାରାତ୍ରି ସେଥିରେ ହୋମ ହେଉଛି । ଦେବତା ମାନବ ସମସ୍ତ ଦିବାରାତ୍ରି ଉପାସନା କରୁଛନ୍ତି—'ହେ ଗୌତମ, ମନୁଷ୍ୟଶରୀର ହିଁ ସର୍ବଶ୍ରେଷ୍ଠ ଅଗ୍ନି ।'

ଏଠାରେ ମଧ୍ୟ ଆମେ ଦେଖିବାକୁ ପାଉଛୁ ଯେ—ଧର୍ମକୁ କାର୍ଯ୍ୟରେ ପରିଣତ କରାଯାଇଅଛି, ବ୍ରହ୍ମଙ୍କୁ ସାଂସାରିକ ସ୍ତରକୁ ଅଣାହୋଇଛି । ଆଉ ଏହି ସବୁ ରୂପକ ଗଳ୍ପ ଭିତରେ ଏହି ଗୋଟିଏ ତତ୍ତ୍ୱ ଆମେ ଦେଖୁଛୁ ଯେ, ମନୁଷ୍ୟକୃତ ପ୍ରତିମା ଲୋକମାନଙ୍କର ହିତକାରୀ ଓ ସହାୟକ ହୋଇପାରେ; କିନ୍ତୁ ଏହାଠାରୁ

* ଛାନ୍ଦୋଗ୍ୟ ଉପ., ୫।୪-୧୦

ଶ୍ରେଷ୍ଠ ପ୍ରତିମା ପୂର୍ବରୁ ରହିଛି । ଯଦି ଈଶ୍ୱର-ଉପାସନା କରିବା ସକାଶେ ପ୍ରତିମା ଆବଶ୍ୟକ ହୁଏ, ତାହାହେଲେ ଜୀବନ୍ତ ମାନବ-ପ୍ରତିମା ବିଦ୍ୟମାନ ରହିଛି ।— ଯଦି ଈଶ୍ୱର-ଉପାସନା ସକାଶେ ମନ୍ଦିର ନିର୍ମାଣ କରିବାକୁ ଚାହଁ, ଭଲ କଥା; କିନ୍ତୁ ପୂର୍ବରୁ ଏହାଠାରୁ ଉଚ୍ଚତର, ଏହାଠାରୁ ଶ୍ରେଷ୍ଠତର ମାନବ-ଦେହ-ରୂପକ ମନ୍ଦିର ବିଦ୍ୟମାନ ରହିଛି ।

ଆମମାନଙ୍କର ସ୍ମରଣ ରଖିବା ଉଚିତ ଯେ, ବେଦ ଦୁଇଭାଗରେ ବିଭକ୍ତ— କର୍ମକାଣ୍ଡ ଓ ଜ୍ଞାନକାଣ୍ଡ । ଉପନିଷଦ୍‌ର ଅଭ୍ୟୁଦୟ ସମୟରେ କର୍ମକାଣ୍ଡ ଏତେ ଜଟିଳ ଓ ବର୍ଦ୍ଧିତାୟତନ ହୋଇଥିଲା ଯେ, ସେଥିରୁ ମୁକ୍ତ ହେବା ପ୍ରାୟ ଅସମ୍ଭବ ହୋଇପଡ଼ିଥିଲା । ଉପନିଷଦ୍‌ରେ କର୍ମକାଣ୍ଡ ଏକାବେଳକେ ପରିତ୍ୟକ୍ତ ହୋଇଛି କହିଲେ ଚଳେ; ତଥାପି ଏଥିରେ ବୁଝାଇବାର ଚେଷ୍ଟା କରାଯାଇଛି ଯେ ପ୍ରତ୍ୟେକ କର୍ମକାଣ୍ଡ ଭିତରେ ଗୋଟିଏ ଉଚ୍ଚତର ଓ ଗମ୍ଭୀରତର ଅର୍ଥ ଅଛି । ଅତି ପ୍ରାଚୀନ କାଳରେ ଏହିସବୁ ଯାଗଯଜ୍ଞାଦି ପ୍ରଚଳିତ ଥିଲା; ପରେ ଜ୍ଞାନୀମାନେ ଆସିଲେ । ସେମାନେ କଅଣ କଲେ ? ଆଧୁନିକ ସଂସ୍କାରକମାନଙ୍କ ପରି ସେମାନେ ଯାଗ-ଯଜ୍ଞାଦିକୁ ମିଥ୍ୟା ବୋଲି ଉଡ଼ାଇ ଦେବାକୁ ଚେଷ୍ଟା କଲେ ନାହିଁ; ବରଂ ସେମାନେ ଏହିଗୁଡ଼ିକର ଉଚ୍ଚତର ତାତ୍ପର୍ଯ୍ୟ ବୁଝାଇ ଦେଇ ମନୁଷ୍ୟକୁ ଅବଲମ୍ବନର ବସ୍ତୁ ଯୋଗାଇଦେଲେ ।

ସେମାନେ କହିଲେ, 'ଅଗ୍ନିରେ ହବନ କର, ଏହା ଉତ୍ତମ; କିନ୍ତୁ ଏହି ପୃଥିବୀରେ ଦିବାରାତ୍ର ହବନ ହେଉଛି । ଏହି କ୍ଷୁଦ୍ର ମନ୍ଦିର ରହିଛି, ଭଲ କଥା; କିନ୍ତୁ ସମୁଦାୟ ବ୍ରହ୍ମାଣ୍ଡ ମୋର ମନ୍ଦିର; ଯେଉଁଠାରେ ହେଲେ ମୁଁ ଉପାସନା କରେନା କାହିଁକି, କୌଣସି କ୍ଷତି ନାହିଁ । ତୁମେମାନେ ବେଦୀ ନିର୍ମାଣ କରିଥାଅ; କିନ୍ତୁ ମୋ ପକ୍ଷରେ ଜୀବନ୍ତ, ଚେତନ ମନୁଷ୍ୟଦେହରୂପକ ବେଦୀ ରହିଛି ଏବଂ ଏଠାରେ ପୂଜା ଅନ୍ୟ ଅଚେତନ ପ୍ରତୀକର ପୂଜାଠାରୁ ଶ୍ରେୟସ୍କର ।'

ଏଠାରେ ଅନ୍ୟ ଏକ ବିଶେଷ ମତ ବର୍ଣ୍ଣିତ ହେଉଛି । ମୁଁ ଏହାର ଅର୍ଥ ସମ୍ପୂର୍ଣ୍ଣ ବୁଝିପାରି ନାହିଁ । କାଳେ ତୁମେମାନେ ଏଥିରୁ କିଛି ସଂଗ୍ରହ କରିପାରିବ, ତେଣୁ ତୁମମାନଙ୍କ ନିକଟରେ ତାହା ପାଠ କରୁଛି : ଯେଉଁ ବ୍ୟକ୍ତି ଧ୍ୟାନ ବଳରେ ବିଶୁଦ୍ଧଚିତ୍ତ ହୋଇ ଜ୍ଞାନଲାଭ କରିଛି, ସେ ଯେତେବେଳେ ମୃତ୍ୟୁମୁଖରେ ପତିତ ହୁଏ, ସେତେବେଳେ ସେ ପ୍ରଥମେ ଅର୍ଚ୍ଚିପଥରେ, ତା'ପରେ କ୍ରମାନ୍ୱୟରେ ଦିନ, ଶୁକ୍ଳପକ୍ଷ ଓ ଉତ୍ତରାୟଣ ପଥରେ ଗମନ କରେ । ଏହିପରି ମାସ ହୋଇ ବର୍ଷରେ, ବର୍ଷ ହୋଇ ସୂର୍ଯ୍ୟଲୋକରେ, ସୂର୍ଯ୍ୟଲୋକରୁ ଚନ୍ଦ୍ରଲୋକରେ, ଚନ୍ଦ୍ରଲୋକରୁ ବିଦ୍ୟୁଲ୍ଲୋକକୁ ଗମନ କରେ । ସେଠାରେ ଜଣେ ଅତିମାନବ ପୁରୁଷ ତାହାକୁ ବ୍ରହ୍ମଲୋକକୁ ନେଇଯାଆନ୍ତି । ଏହି ଗତିର ନାମ 'ଦେବଯାନ' । ଯେତେବେଳେ ସାଧୁ ଓ ଜ୍ଞାନୀମାନଙ୍କର ମୃତ୍ୟୁ ହୁଏ, ସେତେବେଳେ ସେମାନେ ଏହି ପଥ ଦେଇ

ଗମନ କରନ୍ତି । ଏହି ମାସ, ବର୍ଷ ପ୍ରଭୃତି ଶବ୍ଦର ଅର୍ଥ କଅଣ, କେହି ଭଲ ଭାବରେ ବୁଝି ନାହାନ୍ତି; ସମସ୍ତେ କପୋଳକଳ୍ପିତ ଅର୍ଥ କରିଥାଆନ୍ତି । ଆହୁରି ଅନେକେ କହନ୍ତି, ଏସବୁ ବାଜେ କଥା ମାତ୍ର । ଏହି ଚନ୍ଦ୍ରଲୋକ, ଏହି ସୂର୍ଯ୍ୟଲୋକ ପ୍ରଭୃତିକୁ ଯିବାର ଅର୍ଥ କଅଣ ? ଆହୁରି ଏହି ଯେ ଅତିମାନବ ପୁରୁଷ ଆସି ବିଦ୍ୟୁଲ୍ଲୋକରୁ ବ୍ରହ୍ମଲୋକକୁ ନେଇଯାଆନ୍ତି, ଏହାର ଅର୍ଥ ପୁଣି କଅଣ ? ହିନ୍ଦୁମାନଙ୍କ ମଧ୍ୟରେ ଗୋଟିଏ ଧାରଣା ଥିଲା ଯେ, ଚନ୍ଦ୍ରଲୋକରେ ପ୍ରାଣୀମାନଙ୍କର ବାସ ଅଛି । ପରେ ଆମେମାନେ ପାଇବୁ, କିପରି ଚନ୍ଦ୍ରଲୋକରୁ ପତିତ ହୋଇ ମନୁଷ୍ୟ ପୃଥିବୀରେ ଜନ୍ମଗ୍ରହଣ କରେ । ଯେଉଁମାନେ ଜ୍ଞାନଲାଭ କରିନାହାନ୍ତି, ଅଥଚ ଏହି ଜୀବନରେ ଶୁଭ କର୍ମ କରିଛନ୍ତି, ସେମାନଙ୍କର ଯେତେବେଳେ ମୃତ୍ୟୁ ହୁଏ, ସେମାନେ ପ୍ରଥମେ ଧୂମପଥ ଦେଇ ଗମନ କରନ୍ତି, ପରେ ରାତ୍ରି, ତାହା ପରେ କୃଷ୍ଣପକ୍ଷ, ତାହା ପରେ ଦକ୍ଷିଣାୟନ ଛଅ ମାସ, ତାହାପରେ ବର୍ଷ ମଧ୍ୟ ଦେଇ ପିତୃଲୋକକୁ ଗମନ କରନ୍ତି । ପିତୃଲୋକରୁ ଆକାଶକୁ, ସେଠାରୁ ଚନ୍ଦ୍ରଲୋକକୁ ଗମନ କରନ୍ତି । ସେଠାରେ ଦେବତାମାନଙ୍କର ଭୋଗ୍ୟରୂପେ ପରିଣତ ହୋଇ ଦେବଜନ୍ମ ଗ୍ରହଣ କରନ୍ତି ଓ ଯେତେ ଦିନ ସେମାନଙ୍କର ପୁଣ୍ୟ କ୍ଷୟ ନ ହୁଏ, ସେତେ ଦିନ ସେଠାରେ ବାସ କରିଥାଆନ୍ତି । କର୍ମଫଳ ଶେଷ ହେଲେ ପୁନର୍ବାର ସେମାନଙ୍କୁ ପୃଥିବୀକୁ ଆସିବାକୁ ହୁଏ । ସେମାନେ ପ୍ରଥମେ ଆକାଶରେ ପରିଣତ ହୁଅନ୍ତି; ପରେ ବାୟୁ, ଧୂମ, ମେଘ ପ୍ରଭୃତିରେ ପରିଣତ ହୋଇ ଶେଷରେ ବୃଷ୍ଟିକଣାକୁ ଆଶ୍ରୟ କରି ଭୂପୃଷ୍ଠରେ ପତିତ ହୁଅନ୍ତି । ସେଠାରେ ଶସ୍ୟକ୍ଷେତ୍ରରେ ପତିତ ହୋଇ ଶସ୍ୟରେ ପରିଣତ ହୋଇ ମନୁଷ୍ୟଦ୍ୱାରା ଖାଦ୍ୟରୂପେ ଗୃହୀତ ହୁଅନ୍ତି, ଅବଶେଷରେ ସେମାନେ ମନୁଷ୍ୟର ସନ୍ତାନାଦି ହୋଇ ଜାତ ହୁଅନ୍ତି । ଯେଉଁମାନେ ଖୁବ୍ ସତ୍ କର୍ମ କରିଥାଆନ୍ତି, ସେମାନେ ସଦ୍‌ବଂଶରେ ଜନ୍ମଗ୍ରହଣ କରନ୍ତି । ଯେଉଁମାନେ ଖୁବ୍ ଅସତ୍ କର୍ମ କରିଥାଆନ୍ତି, ସେମାନେ ଅତି ନୀଚ ଜନ୍ମଲାଭ କରନ୍ତି, ଏପରିକି କ୍ଷେତ୍ରବିଶେଷରେ ଶୂକର ଜନ୍ମ ପର୍ଯ୍ୟନ୍ତ ଗ୍ରହଣ କରିବାକୁ ହୁଏ । ଯେଉଁ ସକଳ ପ୍ରାଣୀ ଦେବଯାନ କିମ୍ବା ପିତୃଯାନ ପଥରେ ଗମନ କରିପାରନ୍ତି ନାହିଁ, ସେମାନେ ବାରମ୍ବାର ଜନ୍ମଗ୍ରହଣ କରନ୍ତି ଓ ବାରମ୍ବାର ମୃତ୍ୟୁମୁଖରେ ପତିତ ହୋଇଥାଆନ୍ତି । ଏଥିପାଇଁ ପୃଥିବୀ ଏକାବେଳକେ ପରିପୂର୍ଣ୍ଣ ହୁଏ ନାହିଁ କି ଏକାବେଳକେ ଶୂନ୍ୟ ମଧ୍ୟ ହୁଏ ନାହିଁ । ଆମେମାନେ ଏଥିରୁ କେତେଗୁଡ଼ିଏ ଭାବ ପାଉଛୁ, ପରେ ହୁଏତ ଆମେ-ମାନେ ଏହାର ଅର୍ଥ ଆହୁରି ସ୍ପଷ୍ଟଭାବରେ ବୁଝିପାରିବୁ । ଶେଷ କଥାଗୁଡ଼ିକ ଅର୍ଥାତ୍ ଜୀବ ସ୍ୱର୍ଗକୁ ଗମନ କରି ପୁଣି କିପରି ଫେରିଆସେ, ତାହା ପୂର୍ବ କଥାଗୁଡ଼ିକ ଅପେକ୍ଷା ସ୍ପଷ୍ଟତର ମନେହୁଏ । କିନ୍ତୁ ଏହି ସମସ୍ତ କଥାର ତାତ୍ପର୍ଯ୍ୟ ବୋଧହୁଏ ଏହା ଯେ, ବ୍ରହ୍ମାନୁଭୂତି ବ୍ୟତୀତ ସ୍ୱର୍ଗାଦି ଲାଭ ବୃଥା । ଯେଉଁମାନେ ଅଦ୍ୟାପି ବ୍ରହ୍ମାନୁଭବ କରିପାରି ନାହାନ୍ତି, କିନ୍ତୁ ଇହଲୋକରେ ଫଳକାମନା କରି

କେତେଗୁଡ଼ିଏ ସତ୍କର୍ମ କରିଛନ୍ତି, ସେମାନଙ୍କର ମୃତ୍ୟୁ ହେଲେ ସେମାନେ ଏଣେ-ତେଣେ ନାନା ସ୍ଥାନ ଦେଇ ଯାଇ ସ୍ୱର୍ଗରେ ଉପସ୍ଥିତ ହୁଅନ୍ତି ଏବଂ ଆମେମାନେ ଯେପରି ଏଠାରେ ଜନ୍ମିଥାଉ, ସେମାନେ ମଧ୍ୟ ଠିକ୍ ସେହିପରି ଦେବତାମାନଙ୍କର ସନ୍ତାନରୂପରେ ଜନ୍ମିଥାଆନ୍ତି, ଆଉ ଯେତେ ଦିନ ସେମାନଙ୍କର ଶୁଭ କାର୍ଯ୍ୟର ଫଳ ଶେଷ ହୋଇନାହିଁ, ସେତେ ଦିନ ଯାଏ ସେମାନେ ସେଠାରେ ବାସ କରନ୍ତି । ଏଥିରୁ ବେଦାନ୍ତର ଗୋଟିଏ ମୂଳତତ୍ତ୍ୱ ମିଳେ ଯେ ଯାହାର ନାମରୂପ ଅଛି, ତାହା ହିଁ ନଶ୍ୱର । ସୁତରାଂ ସ୍ୱର୍ଗ ମଧ୍ୟ ଅବଶ୍ୟ ନଶ୍ୱର ହେବ, କାରଣ ଏଠାରେ ମଧ୍ୟ ନାମ ଓ ରୂପ ରହିଛି । 'ଅନନ୍ତ ସ୍ୱର୍ଗ' ସ୍ୱବିରୋଧୀ ବାକ୍ୟମାତ୍ର; ଏହି ପୃଥିବୀ ମଧ୍ୟ କଦାପି ଅନନ୍ତ ହୋଇପାରେ ନାହିଁ, କାରଣ ଯେ କୌଣସି ବସ୍ତୁର ନାମ-ରୂପ ଅଛି, ତାହାର କାଳରେ ଉତ୍ପତ୍ତି—କାଳରେ ସ୍ଥିତି ଏବଂ କାଳରେ ବିନାଶ ହୁଏ । ବେଦାନ୍ତର ଏହା ହିଁ ସିଦ୍ଧାନ୍ତ, ସୁତରାଂ ଅନନ୍ତ ସ୍ୱର୍ଗର ଧାରଣା ପରିତ୍ୟକ୍ତ ହେଲା ।

ଆମେ ଦେଖିଛୁ, ବେଦର ସଂହିତାଭାଗରେ ଅନନ୍ତ ସ୍ୱର୍ଗର କଥା ରହିଛି, ଯେପରି ମୁସଲମାନ, ଖ୍ରୀଷ୍ଟିୟାନମାନଙ୍କର ମଧ୍ୟ ଅଛି । ମୁସଲମାନମାନେ ସ୍ୱର୍ଗର ଅତି ସ୍ଥୂଳ ଧାରଣା କରିଥାଆନ୍ତି । ସେମାନେ କହନ୍ତି, ସ୍ୱର୍ଗରେ ଉଦ୍ୟାନ ଅଛି, ତା' ନିକଟରେ ନଦୀ ପ୍ରବାହିତ ହେଉଛି । ଆରବର ମରୁରେ ପାଣି ଗୋଟିଏ ଅତିବାଞ୍ଛନୀୟ ପଦାର୍ଥ । ସେଥିପାଇଁ ମୁସଲମାନମାନେ ସ୍ୱର୍ଗକୁ ସର୍ବଦା ଜଳପୂର୍ଣ୍ଣ ବୋଲି ବର୍ଣ୍ଣନା କରନ୍ତି । ମୋର ଯେଉଁଠାରେ ଜନ୍ମ, ସେଠାରେ ବର୍ଷକ ମଧ୍ୟରେ ଛ'ମାସ ବର୍ଷା । ମୁଁ ହୁଏତ ସ୍ୱର୍ଗକୁ ଗୋଟିଏ ଶୁଷ୍କ ସ୍ଥାନ ଭାବିବି, ଇଂରେଜମାନେ ମଧ୍ୟ ତାହା ଭାବିବେ । ସଂହିତାରେ ବର୍ଣ୍ଣିତ ସ୍ୱର୍ଗ ଅନନ୍ତ, ମୃତ ବ୍ୟକ୍ତିମାନେ ସେଠାକୁ ଗମନ କରିଥାଆନ୍ତି । ସେମାନେ ସେଠାରେ ସୁନ୍ଦର ଦେହ ଲାଭ କରି ପିତୃଗଣଙ୍କ ସହିତ ଅତି ସୁଖରେ ଚିରକାଳ ବାସ କରିଥାଆନ୍ତି, ସେଠାରେ ସେମାନଙ୍କର ପିତା, ମାତା, ସ୍ତ୍ରୀ, ପୁତ୍ରାଦିଙ୍କର ସାକ୍ଷାତ୍ ହୁଏ । ସେଠାରେ ସବୁକିଛି ଏହି ପୃଥିବୀପରି, ତେବେ ଅପେକ୍ଷାକୃତ ଅଧିକ ସୁଖରେ ଜୀବନଯାପନ କରିଥାଆନ୍ତି । ଏହି ଜୀବନରେ ସୁଖର ଯେଉଁ ସକଳ ବାଧାବିଘ୍ନ ଅଛି, ସେଠାରେ ସେସବୁ ଚାଲିଯିବ; କେବଳ ଯାହା କିଛି ସୁଖକର, ତାହା ହିଁ ଅବଶିଷ୍ଟ ରହିବ । କିନ୍ତୁ ମନୁଷ୍ୟ ଯାହା ଭାବୁନା କାହିଁକି, ସୁଖକର ଓ ସତ୍ୟ—ଏ ଦୁଇଟି ସଂପୂର୍ଣ୍ଣ ପୃଥକ୍ । ବାସ୍ତବିକ ଚରମ ସୀମାକୁ ନ ଉଠିଲେ ସତ୍ୟ କଦାପି ସୁଖକର ହୁଏ ନାହିଁ । ମନୁଷ୍ୟର ସ୍ୱଭାବ ବଡ଼ ରକ୍ଷଣଶୀଳ । ମନୁଷ୍ୟ କୌଣସି କାର୍ଯ୍ୟ ଥରେ ଆରମ୍ଭ କଲେ ତାହାକୁ ତ୍ୟାଗ କରିବା ତା' ପକ୍ଷରେ ଅତି କଷ୍ଟକର ହୋଇପଡ଼େ । ତାର ମନ କୌଣସି ନୂତନ ଚିନ୍ତା ଗ୍ରହଣ କରିବାକୁ ଚାହେଁ ନାହିଁ, କାରଣ ଏହା ଅତି କଷ୍ଟକର ।

ଆମେମାନେ ଦେଖୁଛୁ ଯେ, ଉପନିଷଦ୍‌ରେ ପୂର୍ବପ୍ରଚଳିତ ଧାରଣାର ବିଶେଷ ବ୍ୟତିକ୍ରମ ହୋଇଛି । ଉପନିଷଦ୍‌ରେ କଥିତ ହୋଇଛି—ଏହି ସମସ୍ତ ସ୍ୱର୍ଗ,

ଯେଉଁଠାକୁ ମନୁଷ୍ୟ ଯାଇ ପିତୃପୁରୁଷମାନଙ୍କ ସହିତ ବାସ କରେ, ତାହା କଦାପି ନିତ୍ୟ ହୋଇପାରେ ନାହିଁ; କାରଣ, ନାମରୂପାତ୍ମକ ବସ୍ତୁମାନେ ହିଁ ବିନାଶଶୀଳ । ଯଦି ରୂପବିଶିଷ୍ଟ ସ୍ୱର୍ଗ ଥାଏ, ତେବେ କାଳକ୍ରମେ ଅବଶ୍ୟ ସେହି ସ୍ୱର୍ଗର ଧ୍ୱଂସ ହେବ । ହୋଇପାରେ ଏହା ଲକ୍ଷ ଲକ୍ଷ ବର୍ଷ ରହିବ; କିନ୍ତୁ ଅବଶେଷରେ ଏପରି ଏକ ସମୟ ଆସିବ, ଯେତେବେଳେ ତାହାର ଧ୍ୱଂସ ହେବ ହିଁ ହେବ । ଏଥି ମଧ୍ୟରେ ଆହୁରି ଗୋଟିଏ ଧାରଣା ଲୋକମାନଙ୍କ ମନରେ ଉଦିତ ହୋଇଛି ଯେ, ଏହି ସକଳ ଆତ୍ମା ଆହୁରି ଥରେ ଏହି ପୃଥିବୀକୁ ଫେରି ଆସନ୍ତି, ଏବଂ ସ୍ୱର୍ଗ କେବଳ ସେମାନଙ୍କର ଶୁଭ କର୍ମର ଫଳଭୋଗର ସ୍ଥାନ ମାତ୍ର । ଫଳଭୋଗ ହୋଇଗଲେ ସେମାନେ ଆହୁରି ଥରେ ଆସି ପୃଥିବୀରେ ଜନ୍ମଗ୍ରହଣ କରନ୍ତି । ଗୋଟିଏ କଥା ଏଥିରୁ ବେଶ୍ ସ୍ପଷ୍ଟ ବୋଧ ହେଉଛି ଯେ, ମନୁଷ୍ୟ ଅତି ପ୍ରାଚୀନ କାଳରୁ କାର୍ଯ୍ୟକାରଣର ତତ୍ତ୍ୱ ଜାଣିଥିଲା । ପରେ ଆମେମାନେ ଦେଖିବୁ, ଆମମାନଙ୍କର ଦାର୍ଶନିକମାନେ ଦର୍ଶନ ଓ ନ୍ୟାୟର ଭାଷାରେ ଏହି ତତ୍ତ୍ୱ ବର୍ଣ୍ଣନା କରିଛନ୍ତି; କିନ୍ତୁ ଏଠାରେ ଗୋଟିଏ ଶିଶୁର ଅସ୍ପଷ୍ଟ ଭାଷା ପରି ଏହା କଥିତ ହୋଇଛି । ଏହିସବୁ ଗ୍ରନ୍ଥ ପଢ଼ିବା ସମୟରେ ତୁମେମାନେ ବୋଧହୁଏ ଏହା ଲକ୍ଷ୍ୟ କରିଛ ଯେ,ଏଗୁଡ଼ିକ ସବୁ ଅନ୍ତରର ଅନୁଭୂତି । ଯଦି ତୁମେ-ମାନେ ପଚାରିବ ଯେ, ଏହା କାର୍ଯ୍ୟରେ ପରିଣତ ହୋଇପାରିବ କି ନାହିଁ, ମୁଁ କହିବି, ଏହା ଆଗରୁ କାର୍ଯ୍ୟରେ ପରିଣତ ହୋଇଛି; ତା'ପରେ ଦର୍ଶନରେ ରୂପାୟିତ ହୋଇଛି । ତୁମେମାନେ ଦେଖୁଛ, ଏଗୁଡ଼ିକ ପ୍ରଥମେ ଅନୁଭୂତ ଓ ପରେ ଲିଖିତ ହୋଇଛି । ପ୍ରାଚୀନ ଋଷିମାନଙ୍କ ନିକଟରେ ବିଶ୍ୱପ୍ରକୃତି କଥା କହୁଥିଲା । ପକ୍ଷୀମାନେ ସେମାନଙ୍କ ସହିତ କଥା କହୁଥିଲେ, ପଶୁମାନେ କଥା କହୁଥିଲେ, ଚନ୍ଦ୍ର ସୂର୍ଯ୍ୟ ମଧ୍ୟ ସେମାନଙ୍କ ସହିତ କଥା କହୁଥିଲେ । ସେମାନେ ଅଳ୍ପ ଅଳ୍ପ କରି ସବୁ ଜିନିଷ ଅନୁଭବ କରିବାକୁ ଲାଗିଲେ, ପ୍ରକୃତିର ଅନ୍ତସ୍ଥଳରେ ପ୍ରବେଶ କରିବାକୁ ଲାଗିଲେ । ସେମାନେ ଚିନ୍ତାଦ୍ୱାରା ବା ନ୍ୟାୟବିଚାରଦ୍ୱାରା ଏହା ଲାଭ କରି ନାହାନ୍ତି କିମ୍ବା ଆଧୁନିକ କାଳରେ ଯେପରି ପ୍ରଥା, ଅନ୍ୟର ମସ୍ତିଷ୍କପ୍ରସୂତ କେତେଗୁଡ଼ିଏ ବିଷୟ ସଂଗ୍ରହ କରି ଖଣ୍ଡିଏ ଗ୍ରନ୍ଥ ପ୍ରଣୟନ କରି ନାହାନ୍ତି, ଅଥବା ମୁଁ ଯେପରି ସେମାନଙ୍କର ଖଣ୍ଡିଏ ଗ୍ରନ୍ଥ ନେଇ ଦୀର୍ଘ ବକ୍ତୃତା କରିଥାଏ, ତାହା ମଧ୍ୟ କରି ନାହାନ୍ତି । ସେମାନଙ୍କୁ ସତ୍ୟ ଆବିଷ୍କାର କରିବାକୁ ହୋଇଥିଲା । ଅଭ୍ୟାସ ହିଁ ଏହାର ସାଧନ ଥିଲା, ଆଉ ଚିରକାଳ ହିଁ ତାହା ରହିବ । ଧର୍ମ ଚିରକାଳ ହିଁ ଗୋଟିଏ ବ୍ୟାବହାରିକ ବିଜ୍ଞାନ ହୋଇ ରହିବ । ଏପରି ଧର୍ମ କେବେହେଲେ ନ ଥିଲା, ଯାହା କେବଳ ଦେବତା-ତତ୍ତ୍ୱ ଉପରେ ପ୍ରତିଷ୍ଠିତ, ଏପରି ଧର୍ମ କଦାପି ରହିବ ନାହିଁ । ପ୍ରଥମେ ଅଭ୍ୟାସ, ତା'ପରେ ଜ୍ଞାନ । ଜୀବାତ୍ମାଗଣ ଯେ ଏଠାକୁ ଫେରି ଆସନ୍ତି, ଏ ଧାରଣା ଏହି ଉପନିଷଦ୍‌ରେ ହିଁ ରହିଛି । ଯେଉଁମାନେ ଫଳ-କାମନା କରି କୌଣସି ସତ୍‌କର୍ମ କରନ୍ତି, ସେମାନେ ସେହି ସତ୍‌କର୍ମର ଫଳ ପ୍ରାପ୍ତ ହୁଅନ୍ତି, କିନ୍ତୁ

ଏହି ଫଳ ନିତ୍ୟ ନୁହେଁ । କାର୍ଯ୍ୟକାରଣବାଦର ଧାରଣା ଏଠାରେ ସୁନ୍ଦରରୂପେ ବର୍ଣ୍ଣିତ ହୋଇଛି; କଥିତ ହୋଇଛି ଯେ କାରଣ ଅନୁସାରେ କାର୍ଯ୍ୟ ହୋଇଥାଏ, କାରଣ ଯାହା କାର୍ଯ୍ୟ ମଧ୍ୟ ତାହା ହେବ । କାରଣ ଯେତେବେଳେ ଅନିତ୍ୟ, କାର୍ଯ୍ୟ ମଧ୍ୟ ସେତେବେଳେ ଅନିତ୍ୟ ହେବ । କାରଣ ଯଦି ନିତ୍ୟ ହୁଏ, କାର୍ଯ୍ୟ ମଧ୍ୟ ନିତ୍ୟ ହେବ । ସତ୍କର୍ମ କରିବାରୂପକ କାରଣଗୁଡ଼ିକ ଅନିତ୍ୟ—ସସୀମ, ସୁତରାଂ ସେମାନଙ୍କର ଫଳ କଦାପି ନିତ୍ୟ ହୋଇପାରିବ ନାହିଁ ।

ଏହି ତତ୍ତ୍ୱକୁ ଅନ୍ୟ ଏକ ଦିଗରୁ ଦେଖିଲେ ଏହା ବେଶ୍ ବୋଧଗମ୍ୟ ହେବ ଯେ, ଯେଉଁ କାରଣରୁ 'ଅନନ୍ତ ସ୍ୱର୍ଗ' ଅସମ୍ଭବ, ସେହି କାରଣରୁ ଅନନ୍ତ ନରକ ମଧ୍ୟ ଅସମ୍ଭବ । ମନେକର, ମୁଁ ଜଣେ ଖୁବ୍ ଖରାପ ଲୋକ । ମନେକର, ମୁଁ ଜୀବନର ପ୍ରତି ମୁହୂର୍ତ୍ତରେ ଅନ୍ୟାୟ କର୍ମ କରୁଛି; ତଥାପି ଏହି ସାରା ଜୀବନ ଅନନ୍ତ ଜୀବନର ତୁଳନାରେ କିଛି ନୁହେଁ । ଯଦି ଅନନ୍ତ ଶାସ୍ତି ଥାଏ, ତାହାର ଅର୍ଥ ଏହି ଯେ ସାନ୍ତ କାରଣଦ୍ୱାରା ଅନନ୍ତ ଫଳର ଉତ୍ପତ୍ତି ହୁଏ । ଏହି ଜୀବନର କାର୍ଯ୍ୟରୂପକ ସାନ୍ତ କାରଣ ଦ୍ୱାରା ଅନନ୍ତ ଫଳର ଉତ୍ପତ୍ତି ହେଲା—ତାହା ହୋଇପାରେ ନାହିଁ । ସେହିପରି ସାରା ଜୀବନ ସତ୍କର୍ମ କରି ଅନନ୍ତ ସ୍ୱର୍ଗଲାଭ କରିବା କଳ୍ପନା ମଧ୍ୟ ସମାନ ଦୋଷରେ ଦୂଷିତ । ପୂର୍ବରୁ ଯେଉଁ ସକଳ ପଥର କଥା ବର୍ଣ୍ଣିତ ହେଲା, ତଦ୍‌ବ୍ୟତୀତ, ଯେଉଁମାନେ ସତ୍ୟକୁ ଜାଣିଛନ୍ତି, ସେମାନଙ୍କ ସକାଶେ ଅନ୍ୟ ଗୋଟିଏ ପଥ ଅଛି । ଏହା ହିଁ ମାୟାବରଣରୁ ବାହାର ହେବାର ଏକମାତ୍ର ଉପାୟ —'ସତ୍ୟକୁ ଅନୁଭବ କର ।' ଉପନିଷଦ୍‌ସମୂହ ଏହି ସତ୍ୟାନୁଭବ କାହାକୁ କୁହାଯାଏ, ତାହା ବୁଝାଇଛନ୍ତି ।

ଭଲମନ୍ଦ କିଛି ଦେଖ ନାହିଁ, ସକଳ ବସ୍ତୁ ଏବଂ ସକଳ କାର୍ଯ୍ୟ ଆତ୍ମାରୁ ପ୍ରସୂତ ବୋଲି ଚିନ୍ତା କରିବ । ଆତ୍ମା ସବୁଥିରେ ରହିଛନ୍ତି । କହ—ଜଗତ ବୋଲି କିଛି ନାହିଁ, ବାହ୍ୟଦୃଷ୍ଟି ରୁଦ୍ଧ କର, ସ୍ୱର୍ଗ ନରକ ସବୁଠାରେ ସେହି ପ୍ରଭୁଙ୍କୁ ଦେଖ । ମୃତ୍ୟୁରେ ଏବଂ ଜୀବନରେ ତାଙ୍କୁ ଉପଲବ୍ଧି କର । ମୁଁ ପୂର୍ବରୁ ତୁମମାନଙ୍କୁ ଯାହା ପଢ଼ି ଶୁଣାଇଛି, ସେଥିରେ ମଧ୍ୟ ଏହି ଭାବ—ଏହି ପୃଥିବୀ ଭଗବାନଙ୍କର ଗୋଟିଏ ପାଦ, ଆକାଶ ଭଗବାନଙ୍କର ଗୋଟିଏ ପାଦ ଇତ୍ୟାଦି । ସବୁ ହିଁ ବ୍ରହ୍ମ । ଏହା ଦେଖିବାକୁ ହେବ, ଅନୁଭବ କରିବାକୁ ହେବ, କେବଳ ଏହି ବିଷୟକୁ ଆଲୋଚନା କଲେ କିମ୍ବା ଚିନ୍ତା କଲେ ଚଳିବ ନାହିଁ । ମନେକର, ଜୀବାତ୍ମା ଜଗତର ପ୍ରତ୍ୟେକ ବସ୍ତୁର ସ୍ୱରୂପ ବୁଝିପାରିଲା, ପ୍ରତ୍ୟେକ ବସ୍ତୁ ବ୍ରହ୍ମମୟ ବୋଧ ହେଲା, ସେତେବେଳେ ସେ ସ୍ୱର୍ଗକୁ ଯାଉ କି ନରକକୁ ଯାଉ ବା ଅନ୍ୟ ଯେଉଁଠାକୁ ଯାଉ, କିଛି ଯାଏଆସେ ନାହିଁ । ମୁଁ ପୃଥିବୀରେ ଜନ୍ମଗ୍ରହଣ କରେ ଅଥବା ସ୍ୱର୍ଗକୁ ଯାଏ, ସେଥିରେ କିଛି ଯାଏ ଆସେ ନାହିଁ । ମୋ ପକ୍ଷରେ ଏଗୁଡ଼ିକର କୌଣସି ଅର୍ଥ ନାହିଁ, କାରଣ, ମୋ ପକ୍ଷରେ ସବୁ ସ୍ଥାନ ସମାନ, ସବୁ ସ୍ଥାନ ହିଁ ଭଗବାନଙ୍କର ମନ୍ଦିର, ସକଳ ସ୍ଥାନ ହିଁ

ପବିତ୍ର, କାରଣ ସ୍ୱର୍ଗରେ, ନରକରେ ବା ଅନ୍ୟତ୍ର ମୁଁ କେବଳ ଭଗବାନଙ୍କର ସତ୍ତା ଅନୁଭବ କରୁଛି । ଭଲମନ୍ଦ ବା ଜୀବନମୃତ୍ୟୁ ବୋଲି କିଛି ନାହିଁ—କେବଳ ଏକ ଅନନ୍ତ ବ୍ରହ୍ମ ହିଁ ବିଦ୍ୟମାନ ରହିଛନ୍ତି ।

ବେଦାନ୍ତମତରେ ମନୁଷ୍ୟ ଯେତେବେଳେ ଏପରି ଅନୁଭୂତିସମ୍ପନ୍ନ ହୁଏ, ସେତେବେଳେ ସେ ମୁକ୍ତ ହୋଇଯାଏ, ଏବଂ ବେଦାନ୍ତ କହେ, କେବଳ ସେହି ବ୍ୟକ୍ତି ହିଁ ଜଗତରେ ବାସ କରିବାର ଉପଯୁକ୍ତ, ଅନ୍ୟ କେହି ନୁହେଁ । ଯେଉଁ ଲୋକ ଜଗତରେ ଅନ୍ୟାୟ ଦେଖେ, ସେ କିଭଳି ଜଗତରେ ବାସ କରିପାରିବ ? ତାହାର ଜୀବନ ତ ଦୁଃଖମୟ । ଯେଉଁ ବ୍ୟକ୍ତି ଏଠାରେ ନାନା ବାଧାବିଘ୍ନ ବିପଦ ଦେଖେ, ତାହାର ଜୀବନ ତ ଦୁଃଖମୟ; ଯେଉଁ ବ୍ୟକ୍ତି ଜଗତରେ ମୃତ୍ୟୁ ଦେଖେ, ତାହାର ଜୀବନ ମଧ୍ୟ ଦୁଃଖମୟ । ଯେଉଁ ଲୋକ ପ୍ରତ୍ୟେକ ବସ୍ତୁରେ ସେହି ସତ୍ୟରୂପକୁ ଦର୍ଶନ କରିଛି, କେବଳ ସେହି ବ୍ୟକ୍ତି ଜଗତରେ ବାସ କରିବା ପାଇଁ ଉପଯୁକ୍ତ; କେବଳ ସେ ହିଁ କହିପାରେ, 'ମୁଁ ଏହି ଜୀବନ ସମ୍ଭୋଗ କରୁଛି, ମୁଁ ଏହି ଜୀବନରେ ସୁଖୀ ।' ଏଠାରେ ମୁଁ ଏହା କହି ରଖୁଛି ଯେ, ବେଦରେ କୌଣସିଠାରେ ନରକର କଥା ନାହିଁ । ବେଦର ଅନେକ ପରବର୍ତ୍ତୀ ପୁରାଣଗୁଡ଼ିକରେ ଏହି ନରକ-ପ୍ରସଙ୍ଗର ଅବତାରଣା ଅଛି । ବେଦରେ ସର୍ବାପେକ୍ଷା ଅଧିକ ଶାସ୍ତିର କଥା ହେଉଛି ପୁନର୍ଜନ୍ମ, ଅର୍ଥାତ୍ ଆଉ ଥରେ ଉନ୍ନତିର ସୁବିଧା ଲାଭ କରିବା । ବେଦରେ ପ୍ରଥମରୁ ହିଁ ନିର୍ଗୁଣର ଭାବ ଦେଖିବାକୁ ମିଳେ । ପୁରସ୍କାର ଓ ଶାସ୍ତିର ଭାବ ଖୁବ୍ ଜଡ଼ଭାବାତ୍ମକ ଏବଂ ଏହି ଭାବ ମନୁଷ୍ୟ ପରି ସଗୁଣ ଈଶ୍ୱରଙ୍କ ପକ୍ଷରେ ହିଁ ସମ୍ଭବ, ଯେ ଆମମାନଙ୍କ ପରି ଜଣକୁ ଭଲ ପାଆନ୍ତି, ଅନ୍ୟକୁ ଭଲ ପାଆନ୍ତି ନାହିଁ । ଏପରି ଈଶ୍ୱର-ଧାରଣା ସହିତ ପୁରସ୍କାର ଓ ଶାସ୍ତିର ଭାବ ସଙ୍ଗତ ହୋଇପାରେ । ସଂହିତାର ଈଶ୍ୱର ଏହି-ପରି ଥିଲେ । ସେଠାରେ ଏହି ଧାରଣା ସହିତ ଭୟ ମଧ୍ୟ ମିଶ୍ରିତ ଥିଲା; କିନ୍ତୁ ଉପନିଷଦ୍‌ରେ ଏହି ଭୟର ଭାବ ଏକାବେଳକେ ଲୋପ ପାଇଛି; ଏହା ସହିତ ନିର୍ଗୁଣର ଧାରଣା ଆସୁଛି—ମାତ୍ର ପ୍ରତ୍ୟେକ ଦେଶରେ ଏହି ବ୍ୟକ୍ତିଭାବଶୂନ୍ୟ ନିର୍ଗୁଣର ଧାରଣା ଅତି କଠିନ ବିଷୟ । ମନୁଷ୍ୟ ସର୍ବଦା ସଗୁଣ ବ୍ୟକ୍ତିତ୍ୱ ନେଇ ରହିବାକୁ ଚାହେଁ ।

ଅନେକ ବଡ଼ ବଡ଼ ଚିନ୍ତାଶୀଳ ବ୍ୟକ୍ତି, ଅନ୍ତତଃ ଜଗତରେ ଯେଉଁମାନଙ୍କୁ ଖୁବ୍ ଚିନ୍ତାଶୀଳ ବ୍ୟକ୍ତି ବୋଲି କୁହାଯାଏ, ସେମାନେ ଏହି ନିର୍ଗୁଣବାଦ ଉପରେ ବିରକ୍ତ; କିନ୍ତୁ ମୋ ପକ୍ଷରେ ମାନବଦେହଧାରୀ ଈଶ୍ୱରଙ୍କର ଚିନ୍ତା କରିବା ଅତିଶୟ ଅବାସ୍ତବ । ମୋ ପକ୍ଷରେ ଏହି ସଗୁଣବାଦ ଅତିଶୟ ହାସ୍ୟାସ୍ପଦ, ଅତିଶୟ ନିମ୍ନଭାବା-ପନ୍ନ, ଅତିଶୟ ସ୍ଥୂଳ, ଏପରିକି ଅଧର୍ମ ବୋଲି ବୋଧହୁଏ । ବାଳକ ପକ୍ଷରେ ଭଗବାନଙ୍କୁ ଜଣେ ସାକାର ମନୁଷ୍ୟ ବୋଲି ଭାବିବା ଶୋଭାପାଏ, ସେ ସେଭଳି ଭାବିଲେ ତାହାକୁ କ୍ଷମା ଦିଆଯାଇପାରେ; କିନ୍ତୁ ବୟସ୍କ ବ୍ୟକ୍ତି ପକ୍ଷରେ—ଚିନ୍ତା-

ଶୀଳ ନରନାରୀ ପକ୍ଷରେ—ଭଗବାନଙ୍କୁ ସ୍ତ୍ରୀ ବା ପୁରୁଷ ବୋଲି ଚିନ୍ତା କରିବା ବଡ଼ ଲଜ୍ଜାର କଥା । ଉଭୟର ଭିତରେ କେଉଁଟି—ଜୀବନ୍ତ ଈଶ୍ୱର ନା ମୃତ ଈଶ୍ୱର—ଯେଉଁ ଈଶ୍ୱରଙ୍କୁ କେହି ଦେଖିପାରେ ନାହିଁ, କେହି ଯାହାଙ୍କ ସମ୍ବନ୍ଧରେ କିଛି ଜାଣେନାହିଁ ସେହି ଈଶ୍ୱର, ଅଥବା ଅନୁଭୂତ ଈଶ୍ୱର ? ସମୟ ସମୟରେ ସେ ଜଗତକୁ ତାଙ୍କର ଜଣେ ଜଣେ ଦୂତକୁ ପଠାଇଥାଆନ୍ତି, ତାଙ୍କର ଗୋଟିଏ ହାତରେ ତରବାରି ଓ ଅନ୍ୟ ଗୋଟିଏ ହାତରେ ଅଭିଶାପ ଏବଂ ଆମେମାନେ ଯଦି ତାଙ୍କର କଥା ବିଶ୍ୱାସ ନ କରୁ, ତେବେ ଏକାବେଳକେ ବିନାଶ ! ସେ କାହିଁକି ନିଜେ ଆସି କଅଣ କରିବାକୁ ହେବ ଆମମାନଙ୍କୁ କହି ଦିଅନ୍ତି ନାହିଁ ? ସେ କାହିଁକି କ୍ରମାଗତ ଦୂତ ପଠାଇ ଆମମାନଙ୍କୁ ଶାସ୍ତି ଓ ଅଭିଶାପ ଦେଉଛନ୍ତି ? କିନ୍ତୁ ଏହି ବିଶ୍ୱାସରେ ଅନେକ ଲୋକ ସନ୍ତୁଷ୍ଟ । ଆମମାନଙ୍କର କଳ୍ପନାର କି ହୀନତା !

ଅନ୍ୟ ପକ୍ଷରେ, ନିର୍ଗୁଣ ଈଶ୍ୱରଙ୍କୁ ଜୀବନ୍ତରୂପରେ ମୋର ସମ୍ମୁଖରେ ଦେଖୁଛି; ସେ ଗୋଟିଏ ତତ୍ତ୍ୱମାତ୍ର । ସଗୁଣ ଓ ନିର୍ଗୁଣ ମଧ୍ୟରେ ପ୍ରଭେଦ ଏହି—ସଗୁଣ ଈଶ୍ୱର ଜଣେ ବ୍ୟକ୍ତି ମାତ୍ର, ଆଉ ନିର୍ଗୁଣ ଈଶ୍ୱର—ମନୁଷ୍ୟ, ପଶୁ, ଦେବ-ଦୂତ ଏବଂ ଆଉ ଯାହା କିଛି ଆମେମାନେ ଦେଖିବାକୁ ପାଉନାହୁଁ, କାରଣ, ସଗୁଣ ନିର୍ଗୁଣର ଅନ୍ତର୍ଗତ—ଏହା ଜଗତରେ ସମୁଦାୟ ବସ୍ତୁର ସମଷ୍ଟି ଏବଂ ତଦତିରିକ୍ତ ଆହୁରି ଅନେକ । 'ଯେପରି ଗୋଟିଏ ଅଗ୍ନି ଜଗତରେ ଭିନ୍ନ ଭିନ୍ନ ରୂପରେ ପ୍ରକାଶ ପାଉଛି, ଆହୁରି ତଦତିରିକ୍ତ ଅଗ୍ନିର ମଧ୍ୟ ଅସ୍ତିତ୍ୱ ଅଛି,'* ନିର୍ଗୁଣ ମଧ୍ୟ ତଦ୍ରୂପ । ଆମେମାନେ ଜୀବନ୍ତ ଈଶ୍ୱରଙ୍କୁ ପୂଜା କରିବାକୁ ଚାହୁଁ । ମୁଁ ସାରା ଜୀବନ ଈଶ୍ୱର ବ୍ୟତୀତ ଆଉ କିଛି ଦେଖି ନାହିଁ, ତୁମେ ମଧ୍ୟ ଦେଖି ନାହଁ । ଏହି ଚୌକି ଖଣ୍ଡିକ ଦେଖିବାକୁ ହେଲେ ତୁମକୁ ପ୍ରଥମେ ଈଶ୍ୱରଙ୍କୁ ଦେଖିବାକୁ ହୁଏ, ତାହା ପରେ ତାଙ୍କ ଭିତର ଦେଇ ଚୌକି ଖଣ୍ଡିକୁ ଦେଖିବାକୁ ହୁଏ । ସେ ଦିନରାତି ଜଗତରେ ଥାଇ 'ମୁଁ ଅଛି' 'ମୁଁ ଅଛି' କହୁଛନ୍ତି । ଯେଉଁ ମୁହୂର୍ତ୍ତରେ ତୁମେ କହ 'ମୁଁ ଅଛି' ସେହି ମୁହୂର୍ତ୍ତରେ ତୁମେ ସେହି ସତ୍ତାକୁ ଜାଣୁଛ । ତୁମେ କେଉଁଠାକୁ ଈଶ୍ୱରଙ୍କୁ ଖୋଜିବାକୁ ଯିବ, ଯଦି ତୁମେ ତାହାଙ୍କୁ ନିଜ ହୃଦୟରେ—ସବୁ ପ୍ରାଣୀମାନଙ୍କ ଭିତରେ ନ ଦେଖିପାର—ଯଦି ତାଙ୍କୁ ଏହି ଯେ ସାମନାରେ ଲୋକଟା ରାସ୍ତାରେ ବୋଝ ବୋହି ଗଳଦ୍‌ଘର୍ମ ହେଉଛି, ତାହା ମଧ୍ୟରେ ନ ଦେଖିପାର ?

'ତ୍ୱଂ ସ୍ତ୍ରୀ ତ୍ୱ ପୁମାନସି ତ୍ୱଂ କୁମାର ଉତ ବା କୁମାରୀ
ତ୍ୱଂ ଜୀର୍ଣ୍ଣୋ ଦଣ୍ଡେନ ବଞ୍ଚସି, ତ୍ୱଂ ଜାତୋ ଭବସି ବିଶ୍ୱତୋମୁଖଃ ॥'**

—ତୁମେ ସ୍ତ୍ରୀ, ତୁମେ ପୁରୁଷ, ତୁମେ ବାଳକ, ତୁମେ ବାଳିକା, ତୁମେ ବୃଦ୍ଧ, ବାଡ଼ି ଭରି ଦେଇ ବୁଲୁଅଛ, ତୁମେ ଜଗତରେ ଜନ୍ମଗ୍ରହଣ କରିଛ । ତୁମେ ଏହିସବୁ ।

* କଠୋପନିଷଦ୍, ୨।୨।୯

** ଶ୍ୱେତାଶ୍ୱତର ଉପ., ୪।୩

ତୁମେ ହିଁ ଅପୂର୍ବ ଜୀବନ୍ତ ଈଶ୍ୱର ! ଜଗତ ମଧ୍ୟରେ ସେହି ଏକମାତ୍ର ବସ୍ତୁ । ଏହା ଅନେକଙ୍କ ପକ୍ଷରେ ଭୟଙ୍କର ବୋଲି ବୋଧହୁଏ । ବାସ୍ତବିକ ଏହା ପୂର୍ବପ୍ରଚଳିତ ଈଶ୍ୱରଧାରଣାର ବିରୋଧୀ ଅଟେ । ସେ ଈଶ୍ୱର କୌଣସି ବିଶେଷ ସ୍ଥାନରେ କୌଣସି ଆବରଣର ପଛଆଡ଼େ ଲୁଚିକରି ରହିଛନ୍ତି, ଯାହାଙ୍କୁ କେହି କେଉଁଠି ଦେଖିବାକୁ ପାଏ ନାହିଁ । ପୁରୋହିତମାନେ ଆମମାନଙ୍କୁ କେବଳ ଏହି ଆଶ୍ୱାସ ଦିଅନ୍ତି ଯେ,ଯଦି ଆମେମାନେ ସେମାନଙ୍କର କଥା ଅନୁସରଣ କରୁ, ସେମାନଙ୍କର ପାଦଧୂଳି ଗ୍ରହଣ କରୁ ଓ ସେମାନଙ୍କର ପୂଜା କରୁ, ତେବେ ଆମେମାନେ ଏହି ଜୀବନରେ ଈଶ୍ୱରଙ୍କୁ ଦେଖିବୁ ନାହିଁ ସତ୍ୟ, କିନ୍ତୁ ମୃତ୍ୟୁ ସମୟରେ ସେମାନେ ଆମମାନଙ୍କୁ ଖଣ୍ଡିଏ ଛାଡ଼ପତ୍ର ଦେବେ—ସେତେବେଳେ ଆମେମାନେ ଈଶ୍ୱରଙ୍କୁ ଦର୍ଶନ କରିପାରିବୁ । ଏ କଥା ବେଶ୍ ବୁଝିହୁଏ ଯେ ଏହି ସକଳ ସ୍ୱର୍ଗବାଦ କେବଳ ପୁରୋହିତମାନଙ୍କର ମୂର୍ଖତା ଛଡ଼ା ଆଉ କଅଣ ?

ଅବଶ୍ୟ ନିର୍ଗୁଣବାଦ ଅନେକ କିଛି ଭାଙ୍ଗିପକାଏ, ଏହା ପୁରୋହିତମାନଙ୍କ ହାତରୁ ସବୁ ବ୍ୟବସାୟ କାଢ଼ିନିଏ—ଏହାଦ୍ୱାରା ମନ୍ଦିର, ଚର୍ଚ୍ଚ ପ୍ରଭୃତି ସବୁ ଉଡ଼ିଯାଏ । ଭାରତରେ ବର୍ତ୍ତମାନ ଦୁର୍ଭିକ୍ଷ ପଡ଼ିଛି; କିନ୍ତୁ ଅନେକ ମନ୍ଦିର ଅଛି, ଯେଉଁଠାରେ ଅସଂଖ୍ୟ ହୀରା ଜହରତ ରହିଛି । ଯଦି ଲୋକଙ୍କୁ ଏହି ନିର୍ଗୁଣ ବ୍ରହ୍ମର ବିଷୟ ଶିଖାଇ ଦିଆଯାଏ, ସେମାନଙ୍କର ବ୍ୟବସାୟ ଗୁଲିଯିବ; କିନ୍ତୁ ଆମମାନଙ୍କୁ ପୌରୋହିତ୍ୟର ଭାବ ଛାଡ଼ିଦେଇ ଏହାକୁ ନିଃସ୍ୱାର୍ଥ ଭାବରେ ଶିଖାଇବାକୁ ପଡ଼ିବ । ତୁମେ ଈଶ୍ୱର, ମୁଁ ମଧ୍ୟ ତାହା—ତେବେ କିଏ କାହାର ଆଜ୍ଞା ପାଳନ କରିବ ? କିଏ କାହାର ଉପାସନା କରିବ ? ତୁମେ ହିଁ ଈଶ୍ୱରଙ୍କର ସର୍ବଶ୍ରେଷ୍ଠ ମନ୍ଦିର; ମୁଁ କୌଣସି ପ୍ରକାର ମନ୍ଦିରରେ କୌଣସି ପ୍ରକାର ପ୍ରତିମା ବା କୌଣସି ପ୍ରକାର ଶାସ୍ତ୍ର ଉପାସନା ନ କରି ବରଂ ତୁମର ଉପାସନା କରିବି । ଲୋକମାନେ ଏତେ ପରସ୍ପର-ବିରୋଧୀ ଚିନ୍ତା କରନ୍ତି କାହିଁକି ? ଲୋକମାନେ କହନ୍ତି, ଆମେମାନେ ପ୍ରତ୍ୟକ୍ଷବାଦୀ; ବେଶ୍ କଥା । କିନ୍ତୁ ଏଠାରେ ତୁମକୁ ଉପାସନା କରିବା ବ୍ୟତୀତ ଆଉ କଅଣ ଅଧିକ ପ୍ରତ୍ୟକ୍ଷ ହୋଇପାରେ ? ମୁଁ ତୁମକୁ ଦେଖୁଛି, ତୁମକୁ ବେଶ୍ ଅନୁଭବ କରୁଛି, ଆଉ ଜାଣୁଛି, ତୁମେ ଈଶ୍ୱର । ମୁସଲମାନମାନେ କହନ୍ତି, ଆଲ୍ଲା ବ୍ୟତୀତ ଈଶ୍ୱର ନାହିଁ; କିନ୍ତୁ ବେଦାନ୍ତ କହେ ମନୁଷ୍ୟ ବ୍ୟତୀତ ଈଶ୍ୱର ନାହିଁ । ଏହା ଶୁଣି ତୁମମାନଙ୍କ ମଧ୍ୟରେ ଅନେକଙ୍କର ଭୟ ହୋଇପାରେ; କିନ୍ତୁ ତୁମେମାନେ କ୍ରମଶଃ ଏହା ବୁଝିବ, ଜୀବନ୍ତ ଈଶ୍ୱର ତୁମମାନଙ୍କ ସଙ୍ଗରେ ରହିଛନ୍ତି, ତଥାପି ତୁମେମାନେ ମନ୍ଦିର, ଗୀର୍ଜା ନିର୍ମାଣ କରୁଅଛ ଏବଂ ସର୍ବପ୍ରକାର କାଳ୍ପନିକ ମିଥ୍ୟା ବସ୍ତୁରେ ବିଶ୍ୱାସ କରୁଛ । ମାନବାତ୍ମା ଅଥବା ମାନବଦେହ ହିଁ ଏକମାତ୍ର ଉପାସ୍ୟ ଈଶ୍ୱର । ଅବଶ୍ୟ ତିର୍ଯ୍ୟକ୍ ପ୍ରାଣୀମାନେ ଭଗବାନଙ୍କର ମନ୍ଦିର ସତ; କିନ୍ତୁ ମନୁଷ୍ୟ ହିଁ ସର୍ବଶ୍ରେଷ୍ଠ ମନ୍ଦିର—ମନ୍ଦିର ମଧ୍ୟରେ ତାଜମହଲ-ସ୍ୱରୂପ । ଯଦି ମୁଁ ତାଙ୍କର ଉପାସନା ମନୁଷ୍ୟ ମଧ୍ୟରେ

କରି ନ ପାରେ, ତେବେ କୌଣସି ମନ୍ଦିରରେ କିଛି ଉପକାର ହେବ ନାହିଁ । ଯେଉଁ ମୁହୂର୍ତ୍ତରେ ମୁଁ ପ୍ରତ୍ୟେକ ମନୁଷ୍ୟଦେହରୂପକ ମନ୍ଦିରରେ ଉପବିଷ୍ଟ ଈଶ୍ୱରଙ୍କୁ ଉପଲବ୍ଧି କରିପାରିବି, ଯେଉଁ ମୁହୂର୍ତ୍ତରେ ମୁଁ ପ୍ରତ୍ୟେକ ମନୁଷ୍ୟ ସମ୍ମୁଖରେ ଭକ୍ତିଭାବରେ ଠିଆ ହୋଇପାରିବି, ଆଉ ବାସ୍ତବିକ ତାହା ମଧ୍ୟରେ ଈଶ୍ୱରଙ୍କୁ ଦେଖିବି, ଯେଉଁ ମୁହୂର୍ତ୍ତରେ ମୋ ଭିତରେ ଏହି ଭାବ ଆସିବ, ସେହି ମୁହୂର୍ତ୍ତରେ ମୁଁ ସମୁଦାୟ ବନ୍ଧନରୁ ମୁକ୍ତ ହେବି—ଅନ୍ୟ ସବୁ କିଛି ମୋ ଦୃଷ୍ଟିରୁ ଅପସାରିତ ହୋଇଯିବ, ମୁଁ ମୁକ୍ତ ହେବି ।

ଏହା ସର୍ବାପେକ୍ଷା ଅଧିକ କାର୍ଯ୍ୟକାରୀ ଉପାସନା । ମତମତାନ୍ତର ନେଇ ମୋର କୌଣସି ପ୍ରୟୋଜନ ନାହିଁ; କିନ୍ତୁ ଏ କଥା କହିଲେ ଅନେକ ଲୋକ ଡରି ଯାଆନ୍ତି । ସେମାନେ କହନ୍ତି, ଏହା ଠିକ୍ ନୁହେଁ । ସେମାନେ ସେମାନଙ୍କର ପିତାମହମାନେ କଅଣ କହିଯାଇଛନ୍ତି, ଏହିସବୁ କଥା ବିଗ୍ଭର କରିବାରେ ବ୍ୟସ୍ତ । କଥାଟା ଏହି, ସ୍ୱର୍ଗର କୌଣସି ସ୍ଥାନରେ ଅବସ୍ଥିତ ଜଣେ ଈଶ୍ୱର କାହାକୁ କହିଛନ୍ତି, ମୁଁ ଈଶ୍ୱର । ସେହି ସମୟଠାରୁ କେବଳ ମତାନ୍ତରର ଆଲୋଚନା ଗ୍ଭଲିଛି । ସେମାନଙ୍କ ମତରେ କେବଳ ଏହା କାମର କଥା; ଆମମାନଙ୍କର ମତ କାର୍ଯ୍ୟକର ନୁହେଁ । ବେଦାନ୍ତ କହେ, ସମସ୍ତେ ନିଜ ନିଜ ପଥରେ ଗ୍ଭଲନ୍ତୁ, କ୍ଷତି ନାହିଁ; କିନ୍ତୁ ପଥ ତ ଲକ୍ଷ୍ୟ ନୁହେଁ । ସ୍ୱର୍ଗସ୍ଥ ଈଶ୍ୱରଙ୍କର ଉପାସନା ପ୍ରଭୃତି ମନ୍ଦ ନୁହେଁ; କିନ୍ତୁ ଏହା ସତ୍ୟର ସୋପାନ ମାତ୍ର, ସତ୍ୟ ନୁହେଁ । ଏହି ସମସ୍ତ ମଧ୍ୟରେ ସୁନ୍ଦର ମହତ୍ତ୍ୱ ଭାବ ସବୁ ଅଛି; କିନ୍ତୁ ବେଦାନ୍ତ ପ୍ରତିପଦରେ କହେ—ବନ୍ଧୋ ! ତୁମେ ଯାହାଙ୍କୁ ଅଜ୍ଞାତ ବୋଲି ଉପାସନା କରୁଛ ଏବଂ ସାରା ଜଗତରେ ଯାହାଙ୍କୁ ଖୋଜି ବୁଲୁଛ, ସେ ସର୍ବଦା ଏହିଠାରେ ହିଁ ବିରାଜିତ । ତୁମେ ଯେ ଜୀବିତ ରହିଛ, ତାହା ମଧ୍ୟ ସେ ଅଛନ୍ତି ବୋଲି । ସେ ଜଗତର ନିତ୍ୟ ସାକ୍ଷୀ । ସମୁଦାୟ ବେଦ ଯାହାଙ୍କର ଉପାସନା କରୁଛନ୍ତି, କେବଳ ସେ ନୁହନ୍ତି, ଯେ ନିତ୍ୟ 'ମୁଁ'ରେ ସଦା ବିଦ୍ୟମାନ, ସେ ଅଛନ୍ତି ବୋଲି ସମୁଦାୟ ବ୍ରହ୍ମାଣ୍ଡ ରହିଛି । ସେ ସମୁଦାୟ ବ୍ରହ୍ମାଣ୍ଡର ଆଲୋକସ୍ୱରୂପ । ସେ ଯଦି ତୁମଠାରେ ବିଦ୍ୟମାନ ନ ଥାନ୍ତି, ତେବେ ତୁମେ ସୂର୍ଯ୍ୟଙ୍କୁ ମଧ୍ୟ ଦେଖିପାରିବ ନାହିଁ, ସମୁଦାୟ ତୁମ ନିକଟରେ ଅନ୍ଧକାର ଜଡ଼ରାଶି ବୋଲି ପ୍ରତୀତ ହେବ । ସେ ଦୀପ୍ତ ରହିଛନ୍ତି ବୋଲି ତୁମେ ଜଗତକୁ ଦେଖୁଛ ।

ଏ ବିଷୟରେ ସାଧାରଣତଃ ଗୋଟିଏ ପ୍ରଶ୍ନ ଜିଜ୍ଞାସିତ ହୋଇଥାଏ—ଏହାଦ୍ୱାରା ତ ଭୟଙ୍କର ଗୋଲମାଲ ଉପସ୍ଥିତ ହୋଇପାରେ । ଆମମାନଙ୍କ ମଧ୍ୟରେ ସମସ୍ତେ ଭାବିବେ, 'ମୁଁ ଈଶ୍ୱର—ଯାହା କିଛି ମୁଁ ଭାବୁଛି ବା କରୁଛି, ତାହା ଭଲ—ଈଶ୍ୱରଙ୍କର ଆଉ ପାପ କ'ଣ ?' ପ୍ରଥମତଃ ଏହି ପ୍ରକାର ଅପବ୍ୟାଖ୍ୟାରୂପକ ଆଶଙ୍କାର ସମ୍ଭାବନାକୁ ସ୍ୱୀକାର କରିନେଲେ ମଧ୍ୟ ଅନ୍ୟ ପକ୍ଷରେ କଅଣ ଏହି ଆଶଙ୍କା ନାହିଁ ? ଲୋକମାନେ ନିଜଠାରୁ ପୃଥକ୍ ସ୍ୱର୍ଗସ୍ଥ ଯେଉଁ ଈଶ୍ୱରଙ୍କର ଉପାସନା

କରୁଛନ୍ତି, ତାହାଙ୍କୁ ସେମାନେ ଖୁବ୍ ଭୟ କରିଥାଆନ୍ତି । ସେମାନେ କେବଳ ଭୟରେ କମ୍ପୁଥାଆନ୍ତି ଏବଂ ସାରା ଜୀବନ ଏହିପରି କମ୍ପି କଟାଇ ଦିଅନ୍ତି । ଏହାଦ୍ୱାରା କଅଣ ଜଗତ ପୂର୍ବାପେକ୍ଷା ଭଲ ହୋଇଛି ? ତୁମେ ଅନ୍ୟ ପକ୍ଷକୁ ଏହି ପ୍ରଶ୍ନ ପଚାର । ଯେଉଁମାନେ ସଗୁଣ-ଈଶ୍ୱରବାଦ ଜାଣି ତାଙ୍କୁ ଉପାସନା କରିଛନ୍ତି ଏବଂ ଯେଉଁମାନେ ନିର୍ଗୁଣ-ଈଶ୍ୱର-ତତ୍ତ୍ୱ ବୁଝି ତାଙ୍କର ଉପାସନା କରିଛନ୍ତି, ତାହା ମଧ୍ୟରେ କେଉଁ ସମ୍ପ୍ରଦାୟ ଭିତରୁ ଜଗତରେ ବଡ଼ ବଡ଼ ଲୋକ ଜାତ ହୋଇଛନ୍ତି ? ମହାନ୍ କର୍ମୀମାନେ ଓ ଚରିତ୍ରବଳଶାଳୀମାନେ ଅବଶ୍ୟ ନିର୍ଗୁଣ-ସାଧକମାନଙ୍କ ମଧ୍ୟରୁ ହୋଇଛନ୍ତି । ଭୟରୁ ନୈତିକଶକ୍ତିସମ୍ପନ୍ନ ପୁରୁଷ ଜନ୍ମ ନେବେ, ଏହା କିପରି ଆଶା କରିପାର ? ଅବଶ୍ୟ ଏହା କେବେହେଲେ ହୋଇପାରେ ନାହିଁ । 'ଯେଉଁଠାରେ ଜଣେ ଅନ୍ୟକୁ ଦେଖେ, ଯେଉଁଠାରେ ଜଣେ ଅନ୍ୟକୁ ହିଂସା କରେ, ସେହିଠାରେ ହିଁ ମାୟା । ଯେଉଁଠାରେ ଜଣେ ଅନ୍ୟକୁ ଦେଖେ ନାହିଁ, ଜଣେ ଅନ୍ୟକୁ ହିଂସା କରେ ନାହିଁ, ଯେଉଁଠାରେ ସବୁ ଆତ୍ମମୟ ହୋଇଯାଏ, ସେଠାରେ ଆଉ ମାୟା ରହେ ନାହିଁ ।'* ସେତେବେଳେ ସବୁ ସେ ଅଥବା ସବୁ ମୁଁ—ସେତେବେଳେ ଆତ୍ମା ପବିତ୍ର ହୋଇଯାଏ । ସେତେବେଳେ କେବଳ ଆମେମାନେ ପ୍ରେମ କାହାକୁ କହନ୍ତି, ତାହା ବୁଝିପାରୁ । ଭୟରୁ କଅଣ ଏହି ପ୍ରେମର ଉତ୍ପତ୍ତି ସମ୍ଭବ ? ପ୍ରେମର ଭିତ୍ତି ସ୍ୱାଧୀନତା । ସ୍ୱାଧୀନତା—ମୁକ୍ତଭାବ ହେଲେ ତେବେ ପ୍ରେମ ଆସେ । ସେତେବେଳେ ଆମେମାନେ ଜଗତକୁ ବାସ୍ତବିକ୍ ଭଲ ପାଇବାକୁ ଆରମ୍ଭ କରୁ ଓ ସାର୍ବଜନୀନ ଭ୍ରାତୃଭାବର ଅର୍ଥ ବୁଝିପାରୁ—ତାହା ପୂର୍ବରୁ ନୁହେଁ ।

ଅତଏବ ଏହି ମତଦ୍ୱାରା ସମୁଦାୟ ଜଗତରେ ଭୀଷଣ ପାପର ସ୍ରୋତ ପ୍ରବାହିତ ହେବ, ଏ କଥା କହିବା ଉଚିତ ନୁହେଁ । ଅନ୍ୟ ମତଟି ଯେପରି କଦାପି ଲୋକଙ୍କୁ ଅନ୍ୟାୟ ବାଟରେ ନେଇଯାଏ ନାହିଁ, ଯେପରି କି ତାହାଦ୍ୱାରା ସମସ୍ତ ଜଗତକୁ ରକ୍ତରେ ପ୍ଲାବିତ କରେ ନାହିଁ, ଯେପରି କି ତାହାଦ୍ୱାରା ଲୋକଙ୍କୁ ପରସ୍ପର ପୃଥକ୍ କରି ସାମ୍ପ୍ରଦାୟିକତାର ସୃଷ୍ଟି କରେ ନାହିଁ ! 'ମୋର ଈଶ୍ୱର ହିଁ ସର୍ବଶ୍ରେଷ୍ଠ; ଆସ, ଯୁଦ୍ଧ କରି ଏହାର ସତ୍ୟତା ପ୍ରମାଣ କରିବା ।'—ଦ୍ୱୈତବାଦର ଏହା ହିଁ ଫଳ ସର୍ବତ୍ର । କ୍ଷୁଦ୍ର ସଂକୀର୍ଣ୍ଣ ପଥସମୂହରେ ନ ଯାଇ ପ୍ରଶସ୍ତ ଉଜ୍ଜ୍ୱଳ ଦିବାଲୋକକୁ ଆସ । ମହତ୍ତ୍ୱ ଅନନ୍ତ ଆତ୍ମା କିପରି ସଂକୀର୍ଣ୍ଣ ଭାବରେ ଆବଦ୍ଧ ହୋଇ ରହିପାରନ୍ତି ? ଆମ ସମ୍ମୁଖରେ ଏହି ଆଲୋକମୟ ବ୍ରହ୍ମାଣ୍ଡ ରହିଛି, ଏହାର ପ୍ରତ୍ୟେକ ବସ୍ତୁ ଆମମାନଙ୍କର । ବାହୁ ପ୍ରସାରିତ କରି ସମୁଦାୟ ଜଗତକୁ ପ୍ରେମାଲିଙ୍ଗନ କରିବାକୁ ଚେଷ୍ଟା କର । ଯଦି କେତେବେଳେ ଏହିପରି କରିବାର ଇଚ୍ଛା

---

* ତୁଳନୀୟ : ବୃହଦାରଣ୍ୟକ ଉପ., ୪।୫।୧୫, ୨।୪।୧୪; ଛାନ୍ଦୋଗ୍ୟ ଉପ., ୭।୨୪।୧

ଅନୁଭବ କରଥାଅ, ତେବେ ତୁମେ ଈଶ୍ୱରଙ୍କୁ ଅନୁଭବ କରଛ ।

ବୁଦ୍ଧଦେବଙ୍କର ଉପଦେଶାବଳୀ ମଧ୍ୟରେ ସେହ୍ବ ଅଂଶଟି ଅବଶ୍ୟ ତୁମ-ମାନଙ୍କର ମନେ ଅଛୁ—ସେ କପର ଉତ୍ତରରେ, ଦକ୍ଷିଣରେ, ପୂର୍ବରେ, ପଶ୍ଚିମରେ, ଉପରେ, ନମ୍ନରେ ପ୍ରେମ-ଚନ୍ତାପ୍ରବାହ ପ୍ରେରଣ କରଥିଲେ, ଯେତେବେଳଯାଏ ସମୁଦାୟ ଜଗତ ସେହ୍ବ ମହାନ୍ ଅନନ୍ତ ପ୍ରେମରେ ପୂର୍ଣ୍ଣ ହୋଇଯାଇ ନ ଥିଲା । ଯେତେବେଳେ ସେହ୍ବ ଭାବ ତୁମମାନଙ୍କର ଆସିବ, ସେତେବେଳେ ତୁମମାନଙ୍କର ଯଥାର୍ଥ ବ୍ୟକ୍ତିତ୍ୱ ଆସିବ । ସେତେବେଳେ ସମୁଦାୟ ଜଗତ ଗୋଟିଏ ବ୍ୟକ୍ତ ହୋଇ-ଯାଏ, ସେତେବେଳେ କ୍ଷୁଦ୍ର କ୍ଷୁଦ୍ର ଜନଷରେ ମନ ଆଉ ରହେ ନାହିଁ । ଏହ୍ବ ଅନନ୍ତ ସୁଖ ସକାଶେ କ୍ଷୁଦ୍ର କ୍ଷୁଦ୍ର ସୁଖ ପରତ୍ୟାଗ କର । ଏହସବୁ କ୍ଷୁଦ୍ର କ୍ଷୁଦ୍ର ଆନନ୍ଦ ନେଇ ତୁମର ଲାଭ କଅଣ ? ବାସ୍ତବକ ଏହ୍ବ କ୍ଷୁଦ୍ର କ୍ଷୁଦ୍ର ସୁଖକୁ ମଧ୍ୟ ତୁମର ଛାଡ଼ିବା ଦରକାର ନାହିଁ; କାରଣ, ଆମେ ଆଗରୁ ଦେଖିଅଛୁ ଯେ, ସଗୁଣ ନର୍ଗୁଣର ଅନ୍ତର୍ଗତ । ଅତଏବ ଈଶ୍ୱର—ସଗୁଣ ଓ ନର୍ଗୁଣ ଉଭୟ । ମନୁଷ୍ୟ—ଅନନ୍ତସ୍ୱରୂପ ନର୍ଗୁଣ ମନୁଷ୍ୟ ମଧ୍ୟ ନଜକୁ ସଗୁଣରୂପରେ, ବ୍ୟକ୍ତିରୂପରେ ଦେଖୁଛନ୍ତି । ଅନନ୍ତ-ସ୍ୱରୂପ ଆମେ ଯେପର ନଜକୁ କ୍ଷୁଦ୍ର ରୂପରେ ସୀମାବଦ୍ଧ କର ପକାଇଛୁ । ବେଦାନ୍ତ କହେ ଯେ, ଏହା ଆମର ପ୍ରତ୍ୟକ୍ଷଦୃଷ୍ଟ—ଏହାକୁ ଅସ୍ୱୀକାର କରବାର ଉପାୟ ନାହିଁ । ଆମେମାନେ ଆମମାନଙ୍କର କର୍ମଦ୍ୱାରା ନଜକୁ ସୀମାବଦ୍ଧ କରପକାଉଛୁ ଏବଂ ତାହା ଯେପର ଆମମାନଙ୍କ ବେକରେ ଶିକୁଳି ଦେଇ ଆମମାନଙ୍କୁ ବାନ୍ଧି ରଖିଛି । ଶୃଙ୍ଖଳ ଭାଙ୍ଗିପକାଅ ଓ ମୁକ୍ତ ହୁଅ, ନୟମକୁ ପାଦରେ ଦଳଦଅ । ମନୁଷ୍ୟର ପ୍ରକୃତ ସ୍ୱରୂପର କୌଣସି ବଧି ନାହିଁ, କୌଣସି ଦୈବ ନାହିଁ, କୌଣସି ଅଦୃଷ୍ଟ ନାହିଁ । ଅନନ୍ତର କୌଣସି ବିଧାନ ବା ନୟମ କପର ରହବ ? ସ୍ୱାଧୀନତା ହିଁ ଏହାର ମୂଳ-ମନ୍ତ୍ର, ସ୍ୱାଧୀନତା ହିଁ ଏହାର ସ୍ୱରୂପ—ଏହାର ଜନ୍ମଗତ ସ୍ୱତ୍ୱ । ପ୍ରଥମେ ମୁକ୍ତ ହୁଅ, ତା'ପରେ ଯେତେ ଇଚ୍ଛା କ୍ଷୁଦ୍ର ବ୍ୟକ୍ତିତ୍ୱ ରଖିବାକୁ ହୁଏ, ରଖ । ସେତେବେଳେ ଆମେମାନେ ରଙ୍ଗମଞ୍ଚରେ ଅଭିନେତାମାନଙ୍କ ପର ଅଭିନୟ କରବୁ । ଯେତେବେଳେ ଜଣେ ଯଥାର୍ଥ ରାଜା ଭିକାରୀ ବେଶରେ ରଙ୍ଗମଞ୍ଚରେ ଅବତୀର୍ଣ୍ଣ ହେଲେ, ସେତେ-ବେଳେ ଯିଏ ବାସ୍ତବକ ଭିକ୍ଷୁକ, ସେ ରାସ୍ତାରେ ରାସ୍ତାରେ ଭ୍ରମଣ କରୁଛି । ଉଭୟଙ୍କ ମଧ୍ୟରେ କେତେ ପ୍ରଭେଦ ଦେଖ ! ଦୃଶ୍ୟ ଉଭୟ ସ୍ଥଳରେ ସମାନ, ବାକ୍ୟ ମଧ୍ୟ ସମାନ; କନ୍ତୁ କ ପାର୍ଥକ୍ୟ ! ଜଣେ ଭିକାରର ଅଭିନୟ କର ଆନନ୍ଦ ଉପଭୋଗ କରୁଛି, ଅନ୍ୟ ପକ୍ଷରେ ଭିକାରୀଟି ଯଥାର୍ଥ ଦାରଦ୍ର୍ୟକଷ୍ଟରେ ପ୍ରପୀଡ଼ିତ । କାହିଁକ ଏହ୍ବ ପାର୍ଥକ୍ୟ ହୁଏ ? କାରଣ ଜଣେ ମୁକ୍ତ, ଅନ୍ୟଟି ବଦ୍ଧ । ରାଜା ଜାଣନ୍ତି, ତାଙ୍କର ଏହ୍ବ ଦାରଦ୍ର୍ୟ ସତ୍ୟ ନୁହେଁ; ଏହା କେବଳ ସେ କ୍ରୀଡ଼ା ସକାଶେ ଅବଲମ୍ବନ କରଛନ୍ତି; କନ୍ତୁ ଯଥାର୍ଥ ଭିକ୍ଷୁକ ଜାଣେ ଯେ, ଏହା ତାହାର ଚରପରଚତ ଅବସ୍ଥା —ତାହାର ଇଚ୍ଛା ଥାଉ ବା ନ ଥାଉ, ତାହାକୁ ଏହ୍ବ ଦାରଦ୍ର୍ୟ ସହ୍ୟ କରବାକୁ

ହେବ । ତାହା ପକ୍ଷରେ ଏହା ଅଭେଦ୍ୟ ନିଯ୍ମସ୍ୱରୂପ, ସୁତରାଂ ସେ କଷ୍ଟ ପାଏ । ତୁମେ ମୁଁ ଯେତେବେଳ ଯାଏ ଆମମାନଙ୍କର ସ୍ୱରୂପ ଜ୍ଞାତ ନ ହେଉଛୁ, ସେତେବେଳ ଯାଏ ଭିକ୍ଷୁକ ମାତ୍ର । ପ୍ରକୃତିର ଅନ୍ତର୍ଗତ ପ୍ରତ୍ୟେକ ବସ୍ତୁ ଆମମାନଙ୍କୁ ଦାସ କରି ରଖିଛି । ସମୁଦାୟ ଜଗତରୁ ସାହାଯ୍ୟ ମାଗି ଆମେ ଚତ୍କାର କରି ବୁଲୁଛୁ—ଶେଷରେ ପୌରାଣିକ କାଳ୍ପନିକ ଜୀବମାନଙ୍କ ନିକଟରୁ ସାହାଯ୍ୟ ଚାହୁଁଛୁ; କିନ୍ତୁ କେବେ-ହେଲେ ଏହି ସାହାଯ୍ୟ ଆସିଲି ନାହିଁ । ତଥାପି ଭାବୁଛୁ, ଏହି ଥର ସାହାଯ୍ୟ ମିଳିବ —ଏହା ଭାବି କାନ୍ଦୁଛୁ, ଚତ୍କାର କରୁଛୁ, ଆଶା କରି ବସିଛୁ; ଏହିଭାବରେ ଗୋଟିଏ ଜୀବନ କଟିଗଲା, ପୁଣି ସେହି ଖେଳ ଚାଲିଲା ।

ମୁକ୍ତ ହୁଅ, ଅନ୍ୟ କାହାରି ନିକଟରୁ କିଛି ଆଶା କର ନାହିଁ । ମୁଁ ନିଶ୍ଚିତ ଭାବରେ କହିପାରେ, ତୁମେମାନେ ଯଦି ତୁମମାନଙ୍କର ଜୀବନର ଅତୀତ ଘଟଣା ସ୍ମରଣ କରିବ, ତେବେ ଦେଖିବ, ତୁମେମାନେ ସର୍ବଦା ବୃଥା ଅନ୍ୟ ନିକଟରୁ ସାହାଯ୍ୟ ପାଇବା ପାଇଁ ଚେଷ୍ଟା କରିଛ, କିନ୍ତୁ କଦାପି ପାଇ ନାହଁ; ଯାହା କିଛି ସାହାଯ୍ୟ ପାଇଛ, ସବୁ ନିଜ ଭିତରୁ । ତୁମେ ଯେଉଁ କାମରେ ନିଜେ ଚେଷ୍ଟା କରିଛ, ତାହାର ଫଳ ପାଇଛ; ତଥାପି କି ଆଶ୍ଚର୍ଯ୍ୟ, ତୁମେ ସବୁବେଳେ ଅନ୍ୟ ପାଖରୁ ସାହାଯ୍ୟ ପ୍ରାର୍ଥନା କରୁଛ । ଧନୀମାନଙ୍କର ବୈଠକଖାନାରେ କେତେ ସମୟ ବସି ଯଦି ଲକ୍ଷ୍ୟ କର, ତାହାହେଲେ ଭଲ ତାମସା ଦେଖିପାରିବ । ଦେଖିବ, ଏହା ସର୍ବଦା ପୂର୍ଣ୍ଣ, କିନ୍ତୁ ବର୍ତ୍ତମାନ ଯେଉଁ ଦଳ ରହିଛନ୍ତି, ସେହି ଦଳକୁ ଆଉ ଦ୍ୱିତୀୟଥର ଦେଖିବ ନାହିଁ । ସବୁବେଳେ ସେମାନେ ଆଶା କରିଥାଆନ୍ତି ଯେ, ଧନୀ ବ୍ୟକ୍ତିଙ୍କ ପାଖରୁ କିଛି ଆଦାୟ କରିବେ, କିନ୍ତୁ କଦାପି ତାହା କରିପାରନ୍ତି ନାହିଁ । ଆମମାନଙ୍କ ଜୀବନ ମଧ୍ୟ ତଦ୍ରୂପ; କେବଳ ଆଶା କରି ଚାଲିଛୁ, ଏହାର ଶେଷ ନାହିଁ । ବେଦାନ୍ତ କହେ, ଏହି ଆଶା ତ୍ୟାଗ କର । କାହିଁକି ଆଶା କରିବାକୁ ଯିବ ? ସବୁ ତୁମର ରହିଛି । ତୁମେ ଆତ୍ମା, ତୁମେ ସମ୍ରାଟ୍‌ସ୍ୱରୂପ, ତୁମେ ପୁଣି ଆଉ କଅଣ ଆଶା କରୁଛ ? ଯଦି ରାଜା ପାଗଳ ହୋଇ ନିଜ ଦେଶରେ 'ରାଜା କେଉଁଠି, ରାଜା କେଉଁଠି' କହି ଖୋଜି ବୁଲିବେ, ସେ କଦାପି ରାଜାଙ୍କ ସନ୍ଧାନ ପାଇବେ ନାହିଁ; କାରଣ, ସେ ସ୍ୱୟଂ ରାଜା । ସେ ତାଙ୍କ ରାଜ୍ୟର ପ୍ରତ୍ୟେକ ଗ୍ରାମ, ପ୍ରତ୍ୟେକ ନଗର—ଏପରିକି, ପ୍ରତ୍ୟେକ ଘର ତନ୍ନ ତନ୍ନ କରି ଦେଖିପାରନ୍ତି, ସେ ମହାଚତ୍କାର କରି କାନ୍ଦିପାରନ୍ତି, ତଥାପି ରାଜାଙ୍କର ଖବର ପାଇବେ ନାହିଁ; କାରଣ, ସେ ନିଜେ ରାଜା । ଆମେମାନେ ଯଦି ଜାଣିପାରୁ, ଆମେମାନେ ନିଜେ ଈଶ୍ୱର ଏବଂ ଏହି ଈଶ୍ୱରଙ୍କର ଅନ୍ୱେଷଣରୂପକ ଅନର୍ଥକ ଚେଷ୍ଟା ତ୍ୟାଗ କରିପାରୁ, ତେବେ ବଡ଼ ଭଲ ହୁଅନ୍ତା । ବେଦାନ୍ତ କହେ, ଏହିପରି ନିଜକୁ ରାଜାସ୍ୱରୂପ ଜାଣିପାରିଲେ ଆମେମାନେ ସନ୍ତୁଷ୍ଟ ଓ ସୁଖୀ ହୋଇ ପାରିବୁ । ନିର୍ବୋଧ ପରି ଏହିସବୁ ଅନ୍ୱେଷଣ ଛାଡ଼ିଦେଇ ଶିଶୁଙ୍କ ପରି ଜଗତରେ ଖେଳିବାକୁ ଶିଖ ।

ଏହିପରି ଅବସ୍ଥା ଲାଭ କଲେ ଆମମାନଙ୍କର ଦୃଷ୍ଟି ପରିବର୍ତ୍ତିତ ହୋଇଯାଏ । ଅନନ୍ତ କାରାସ୍ୱରୂପ ନ ହୋଇ ଏ ଜଗତ କ୍ରୀଡ଼ାଙ୍ଗନରେ ପରିଣତ ହୁଏ, ପ୍ରତି-ଯୋଗିତାର କ୍ଷେତ୍ର ନ ହୋଇ ଏହା ଭ୍ରମରଗୁଞ୍ଜିତ ପୂର୍ଣ୍ଣ ବସନ୍ତକାଳର ରୂପ ଧାରଣ କରେ । ପୂର୍ବେ ଯେଉଁ ଜଗତ ନରକକୁଣ୍ଡ ଥିଲା, ଏବେ ତାହା ସ୍ୱର୍ଗରେ ପରିଣତ ହୋଇଯାଏ । ବଦ୍ଧର ଦୃଷ୍ଟିରେ ଜଗତ ଗୋଟିଏ ମହା ଯନ୍ତ୍ରଣାର ସ୍ଥାନ; କିନ୍ତୁ ମୁକ୍ତ ଲୋକର ଦୃଷ୍ଟିରେ ଏହା ହିଁ ସ୍ୱର୍ଗ—ସ୍ୱର୍ଗ ଅନ୍ୟତ୍ର ନାହିଁ । ଗୋଟିଏ ପ୍ରାଣ ସର୍ବତ୍ର ବିରାଜିତ । ପୁନର୍ଜନ୍ମାଦିରେ ଯାହା କିଛି ହୁଏ, ସବୁ ଏଠାରେ ହୋଇଥାଏ । ଦେବତା ପ୍ରଭୃତି ସମସ୍ତେ ଏଠାରେ—ସେମାନେ ହିଁ ମନୁଷ୍ୟର ପ୍ରତିରୂପ । ଦେବତା-ମାନେ ମନୁଷ୍ୟକୁ ସେମାନଙ୍କ ଆଦର୍ଶରେ ନିର୍ମାଣ କରି ନାହାନ୍ତି, କିନ୍ତୁ ମନୁଷ୍ୟମାନେ ଦେବତାଙ୍କୁ ସୃଷ୍ଟି କରିଛନ୍ତି । ଏଠାରେ ଇନ୍ଦ୍ର ରହିଛନ୍ତି, ତାଙ୍କର ସ୍ୱର୍ଗଆଡ଼େ ସମୁଦାୟ ବ୍ରହ୍ମାଣ୍ଡର ଦେବତାମାନେ ଉପବିଷ୍ଟ ରହିଛନ୍ତି । ତୁମେମାନେ ତୁମ-ମାନଙ୍କର ଗୋଟିଏ ଅଂଶକୁ ବାହାରେ ପ୍ରକ୍ଷେପ କରୁଛ, ତୁମେମାନେ ହିଁ ମୂଳ ଅସଲ ଜିନିଷ—ତୁମେମାନେ ପ୍ରକୃତ ଉପାସ୍ୟ ଦେବତା । ଏହା ହିଁ ବେଦାନ୍ତର ମତ ଏବଂ ଏଥିପାଇଁ ଏହାକୁ କାର୍ଯ୍ୟରେ ପରିଣତ କରାଯାଇପାରେ । ଅବଶ୍ୟ ଆମେମାନେ ମୁକ୍ତ ହୋଇଛୁ ବୋଲି ଉନ୍ମତ୍ତ ହୋଇ ସମାଜ ତ୍ୟାଗ କରି ଅରଣ୍ୟରେ ବା ଗୁହାରେ ମରିବାକୁ ଯିବୁ ନାହିଁ । ତୁମେ ଯେଉଁଠାରେ ଥିଲ, ସେହିଠାରେ ରହିବ; ତେବେ ତଫାତ୍ ହେବ ଏହି ଟିକକ ଯେ, ତୁମେ ସମୁଦାୟ ଜଗତର ରହସ୍ୟ ଅବଗତ ହେବ । ପୂର୍ବର ଦୃଶ୍ୟସମସ୍ତ ଆସିବ, କିନ୍ତୁ ଏହାର ଅର୍ଥ ସେତେବେଳେ ଅନ୍ୟ ପ୍ରକାର ହେବ । ତୁମେମାନେ ବର୍ତ୍ତମାନ ଜଗତର ସ୍ୱରୂପ ଜାଣ ନାହିଁ; କେବଳ ମୁକ୍ତ ହେଲେ ଏହାର ସ୍ୱରୂପ ବୁଝାଯିବ । ସୁତରାଂ ଆମେମାନେ ଦେଖିଲୁ —ବିଧି, ଦୈବ ବା ଅଦୃଷ୍ଟ ଆମମାନଙ୍କର ପ୍ରକୃତିର ଅତି କ୍ଷୁଦ୍ର ଅଂଶକୁ ନେଇ ବ୍ୟାପୃତ । ଏହା କେବଳ ଆମମାନଙ୍କ ପ୍ରକୃତିର ଗୋଟିଏ ଦିଗ, ଅନ୍ୟ ଦିଗରେ ମୁକ୍ତି ସର୍ବଦା ବିରାଜିତ—ଏବଂ ଆମେମାନେ ଶିକାରିଦ୍ୱାରା ଅନୁସୃତ ଶଶକ ପରି ମାଟିରେ ଆମମାନଙ୍କର ମୁଖକୁ ଲୁଚାଇ ନିଜକୁ ଅଶୁଭକବଳରୁ ରକ୍ଷା କରିବାର ଚେଷ୍ଟା କରୁଛୁ ।

ଅତଏବ ଦେଖାଗଲା, ଆମେମାନେ ଭ୍ରମବଶତଃ ଆମମାନଙ୍କର ସ୍ୱରୂପ ଭୁଲିବାକୁ ଚେଷ୍ଟା କରୁଛୁ, କିନ୍ତୁ ଏହା ଏକାବେଳକେ ଭୁଲିପାରୁ ନାହୁଁ; ସର୍ବଦା ଏହା କୌଣସି ନା କୌଣସି ରୂପରେ ଆମମାନଙ୍କର ସମ୍ମୁଖକୁ ଆସୁଛି । ଆମେମାନେ ଯେ ଦେବତା ଈଶ୍ୱର ପ୍ରଭୃତିଙ୍କର ଅନୁସନ୍ଧାନ କରିଥାଉ, ଆମେମାନେ ଯେ ବହିର୍ଜଗତରେ ସ୍ୱାଧୀନତା ଲାଭ ସକାଶେ ପ୍ରାଣପଣେ ଲାଗିଥାଉ, ଏସବୁ କିଛି ନୁହେଁ —ଆମମାନଙ୍କର ମୁକ୍ତ ପ୍ରକୃତି ଯେପରି କୌଣସି ନା କୌଣସି ରୂପରେ ନିଜକୁ ପ୍ରକାଶ କରିବା ପାଇଁ ଚେଷ୍ଟା କରୁଛି । ଏହା ସବୁବେଳେ ଆମକୁ ଆହ୍ୱାନ କରୁଛି ।

କେଉଁଠାରୁ ଏହି ବାଣୀ ଉଠୁଛି, ତାହା ବୁଝିବାକୁ ଆମେ ଭୁଲ କରୁଛୁ ମାତ୍ର । ଆମେମାନେ ପ୍ରଥମେ ଭାବୁ, ଏହି ବାଣୀ, ଅଗ୍ନି, ଚନ୍ଦ୍ର, ସୂର୍ଯ୍ୟ, ତାରା ବା କୌଣସି ଦେବତାଙ୍କଠାରୁ ଉତ୍ଥିତ—ଅବଶେଷରେ ଆମେ ଦେଖିପାରୁ ଏହି ବାଣୀ ଆମମାନଙ୍କ ଭିତରେ । ଏ ସେହି ଅନନ୍ତ ବାଣୀ—ଅନନ୍ତ ମୁକ୍ତିର ସମାଚାର ଘୋଷଣା କରୁଛି । ଏହି ସଙ୍ଗୀତ ଅନନ୍ତ କାଳ ଧରି ଚାଲିଛି । ଆତ୍ମାର ସଙ୍ଗୀତର କିୟଦଂଶ ଏହି ପୃଥିବୀରୂପରେ, ଏହି ନିୟମରୂପରେ, ଏହି ବିଶ୍ୱବ୍ରହ୍ମାଣ୍ଡରୂପରେ ପରିଣତ ହୋଇଛି; କିନ୍ତୁ ଏହି ସଙ୍ଗୀତ ସର୍ବଦା ଆମ ନିଜ ଭିତରେ ଥିଲା ଏବଂ ଚିରକାଳ ରହିବ । ଗୋଟିଏ କଥାରେ, ବେଦାନ୍ତର ଆଦର୍ଶ—ଏହି ଜଗତରେ ମନୁଷ୍ୟର **ଯଥାର୍ଥ** ସ୍ୱରୂପର ଉପାସନା, ଆଉ ବେଦାନ୍ତର ଏହା ହିଁ ଘୋଷଣା **ଯେ,** ଯଦି ତୁମେ ବ୍ୟକ୍ତ **ଈଶ୍ୱର**ସ୍ୱରୂପ ତୁମର ଭ୍ରାତାଙ୍କୁ ଉପାସ**ନା** କରି ନ ପାର, ତେବେ ବେଦାନ୍ତ ତୁମର ଉପାସନାରେ ବିଶ୍ୱାସ କରେ ନାହିଁ ।

ତୁମମାନଙ୍କର କଅଣ ବାଇବେଲ୍‌ର ସେହି କଥା ସ୍ମରଣ ନାହିଁ ଯେ, ଯଦି ତୁମେ ତୁମର ଭାଇକୁ ଯାହାକୁ ତୁମେ ଦେଖୁଛ—ଭଲ ନ ପାଅ, ତେବେ ଈଶ୍ୱର, ଯାହାଙ୍କୁ ତୁମେ କଦାପି ଦେଖିନାହଁ, ତାଙ୍କୁ କିପରି ଭଲ ପାଇବ ? ଯଦି ତାଙ୍କୁ ଦେବଭାବାପନ୍ନ ମନୁଷ୍ୟ-ମୁଖରେ ନ ଦେଖିପାର, ତେବେ ତାଙ୍କୁ ମେଘରେ, ଅଥବା କୌଣସି ଜଡ଼ ପଦାର୍ଥରେ ଅଥବା ତୁମ ନିଜ ମସ୍ତିଷ୍କର କଳ୍ପିତ ଗଳ୍ପରେ କିପରି ଦେଖିବ ? ଯେଉଁଦିନଠାରୁ ତୁମେମାନେ ସମସ୍ତ ନରନାରୀଙ୍କଠାରେ ଈଶ୍ୱରଙ୍କୁ ଦେଖିପାରିବ, ସେହିଦିନଠାରୁ ମୁଁ ତୁମମାନଙ୍କୁ ଧାର୍ମିକ କହିବ, ଏବଂ ସେତେବେଳେ ତୁମେମାନେ ବୁଝିବ ଡାହାଣ ଗାଲରେ ଚାପୁଡ଼ା ମାଇଲେ ବାମ ଗାଲ ଦେଖାଇବାର ଅର୍ଥ କଅଣ । ଯେତେବେଳେ ତୁମେ ମନୁଷ୍ୟଙ୍କୁ ଈଶ୍ୱରରୂପରେ ଦେଖିବ, ସେତେ-ବେଳେ ସମସ୍ତ ପ୍ରାଣୀ, ଏପରିକି ବ୍ୟାଘ୍ର ମଧ୍ୟ ତୁମ ନିକଟକୁ ଆସିଲେ ତୁମେ ସ୍ୱାଗତ ଜଣାଇବ । ଯାହା କିଛି ତୁମ ନିକଟକୁ ଆସେ, ସବୁ ସେହି ଅନନ୍ତ ଆନନ୍ଦମୟ ପ୍ରଭୁ ନାନା ରୂପରେ ଆସୁଛନ୍ତି—ସେ ଆମମାନଙ୍କର ପିତା, ମାତା, ବନ୍ଧୁ । ଆମମାନଙ୍କର ନିଜ ଆତ୍ମା ହିଁ ଆମମାନଙ୍କ ସଙ୍ଗରେ ଖେଳୁଛନ୍ତି ।

ଭଗବାନଙ୍କୁ 'ପିତା' କହିବାଠାରୁ ଶ୍ରେଷ୍ଠତର ଭାବ ଅଛି, ସାଧକମାନେ ତାଙ୍କୁ 'ମାତା' ବୋଲି କହନ୍ତି । ତାହା ଅପେକ୍ଷା ମଧ୍ୟ ଉଚ୍ଚତର ଭାବ ଅଛି—ତାଙ୍କୁ 'ପ୍ରିୟ ସଖା' କହିବା । ସର୍ବାପେକ୍ଷା ଶ୍ରେଷ୍ଠ ଭାବ, 'ମୋର ପ୍ରେମାସ୍ପଦ' କହିବା । ଏହାର କାରଣ ଏହି ଯେ—ପ୍ରେମ ଓ ପ୍ରେମାସ୍ପଦ ମଧ୍ୟରେ କୌଣସି ପ୍ରଭେଦ ନ ଦେଖିବା ହିଁ ସର୍ବୋଚ୍ଚ ଭାବ । ତୁମମାନଙ୍କର ସେହି ପ୍ରାଚୀନ ପାରସ୍ୟ ଦେଶର ଗଳ୍ପ ମନେ ଥାଇପାରେ । ଜଣେ ପ୍ରେମିକ ଆସି ତାଙ୍କର ପ୍ରେମାସ୍ପଦର ଦୁଆରରେ ଆଘାତ

କଲେ ! ପ୍ରଶ୍ନ ହେଲା 'କିଏ ?' ସେ କହିଲେ, 'ମୁଁ ।' ଦୁଆର ଖୋଲିଲା ନାହିଁ । ଦ୍ୱିତୀୟ ଥର ସେ ଆସିଲେ ଏବଂ କହିଲେ, 'ମୁଁ ଆସିଛି'; କିନ୍ତୁ ଦୁଆର ଖୋଲିଲା ନାହିଁ । ତୃତୀୟ ଥର ସେ ଆସିଲେ, ଭିତରୁ ପଚରାଗଲା, 'କିଏ ?' ସେତେବେଳେ ସେ କହିଲେ, 'ପ୍ରେମାସ୍ପଦ, ମୁଁ ତୁମେ'—ସେତେବେଳେ ଦ୍ୱାର ଉଦ୍‌ଘାଟିତ ହେଲା । ଭଗବାନ ଏବଂ ଆମମାନଙ୍କ ମଧ୍ୟରେ ମଧ୍ୟ ଠିକ୍ ସେହିପରି ହୋଇଥାଏ, 'ତୁମେ ସବୁଠାରେ ଓ ତୁମେ ହିଁ ସବୁ ।' ପ୍ରତ୍ୟେକ ନରନାରୀ ସେହି ପ୍ରତ୍ୟକ୍ଷ ଜୀବନ୍ତ ଆନନ୍ଦମୟ ଈଶ୍ୱରଙ୍କର ରୂପ । କିଏ କହେ, ତୁମେ ଅଜ୍ଞାତ ? କିଏ କହେ ତୁମକୁ ଅନୁସନ୍ଧାନ କରିବାକୁ ହେବ ? ଆମେମାନେ ତୁମକୁ ଅନନ୍ତ କାଳ ସକାଶେ ପାଇଛୁ । ଆମେମାନେ ତୁମଠାରେ ଅନନ୍ତ କାଳ ସକାଶେ ବାସ କରୁଛୁ—ଅନନ୍ତ କାଳ ଧରି ଜ୍ଞାତ, ଅନନ୍ତ କାଳ ଧରି ଉପାସିତ ତୁମକୁ ଆମେ ସବଂଦା ଲାଭ କରୁଛୁ ।

ଗୋଟିଏ କଥା ଏହି—ଅନ୍ୟାନ୍ୟ ପ୍ରକାରର ଉପାସନା ଭ୍ରମାତ୍ମକ ନୁହେଁ । ଏହି ବିଷୟଟି କୌଣସିମତେ ଭୁଲିବା ଉଚିତ ନୁହେଁ ଯେ, ଯେଉଁମାନେ ନାନା ପ୍ରକାର କ୍ରିୟାକାଣ୍ଡଦ୍ୱାରା ଭଗବାନଙ୍କର ଉପାସନା କରନ୍ତି, ଆମେମାନେ ସେମାନଙ୍କୁ ଯେତେ ଅପରିଣତ ବୋଲି ଭାବୁନା କାହିଁକି—ସେମାନେ ବାସ୍ତବିକ ଭ୍ରାନ୍ତ ନୁହନ୍ତି । କାରଣ, ମନୁଷ୍ୟ ସତ୍ୟରୁ ସତ୍ୟକୁ, ନିମ୍ନତର ସତ୍ୟରୁ ଉଚ୍ଚତର ସତ୍ୟକୁ ଆରୋହଣ କରେ । ଅନ୍ଧକାର କହିଲେ ବୁଝିବାକୁ ହେବ, ଅଳ୍ପ ଆଲୁଅ; ମନ୍ଦ କହିଲେ ବୁଝିବାକୁ ହେବ, ଅଳ୍ପ ଭଲ; ଅପବିତ୍ରତା କହିଲେ ବୁଝିବାକୁ ହେବ, ଅଳ୍ପ ପବିତ୍ରତା । ଅତଏବ ସତ୍ୟ ଧାରଣାର ଏହା ମଧ୍ୟ ଗୋଟିଏ ଦିଗ ଯେ, ଆମେ ଅନ୍ୟକୁ ପ୍ରେମ ଓ ସହାନୁଭୂତିର ସହିତ ଦେଖିବା । ଆମେମାନେ ଯେଉଁ ପଥ ଦେଇ ଆସିଛୁ, ସେମାନେ ମଧ୍ୟ ସେହି ପଥ ଦେଇ ଗ୍ଲୁଛନ୍ତି । ଯଦି ବାସ୍ତବିକ ତୁମେ ମୁକ୍ତ ହୁଅ, ତେବେ ତୁମକୁ ଅବଶ୍ୟ ଜାଣିବାକୁ ହେବ; ସେମାନେ ଶୀଘ୍ର ବା ବିଳମ୍ବରେ ମୁକ୍ତ ହେବେ ଏବଂ ତୁମେ ଯେତେବେଳେ ମୁକ୍ତ ହେଲ, ସେତେବେଳେ ଅନିତ୍ୟ ବୋଲି କିଛି ତୁମେ ଦେଖୁଛ କିପରି ? ଯଦି ତୁମେ ବାସ୍ତବିକ ପବିତ୍ର ହୁଅ, ତେବେ ତୁମେ ଅପବିତ୍ରତା କିପରି ଦେଖିବ ? କାରଣ, ଭିତରେ ଯାହା ଥାଏ, ତାହା ହିଁ ବାହାରେ ଦେଖା ଯାଏ । ଆମମାନଙ୍କ ଭିତରେ ଅପବିତ୍ରତା ନ ଥିଲେ ଆମେ କଦାପି ବାହାରେ ଏହାକୁ ଦେଖିପାରନ୍ତୁ ନାହିଁ । ବେଦାନ୍ତରେ ଏହା ସାଧନାର ଗୋଟିଏ ଦିଗ । ଆଶାକରୁ, ଆମେମାନେ ସମସ୍ତେ ଏହାକୁ ଜୀବନରେ ରୂପାୟିତ କରିବାକୁ ଚେଷ୍ଟା କରିବା । ଏହାକୁ ଅଭ୍ୟାସ କରିବା ପାଇଁ ସାରା ଜୀବନଟା ପଡ଼ି ରହିଛି; କିନ୍ତୁ ଏହିସବୁ ବିଷୟର ଆଲୋଚନାରେ ଆମେମାନେ ଏହି ଫଳ ଲାଭ କଲୁ ଯେ, ଅଶାନ୍ତି ଓ ଅସନ୍ତୋଷ ପରିବର୍ତ୍ତେ ଆମେମାନେ ଶାନ୍ତି ଓ ସନ୍ତୋଷର ସହିତ

କାର୍ଯ୍ୟ କରବୁ; କାରଣ, ଆମେମାନେ ଜାଣିଲୁ—ସବୁ କିଛୁ ଆମମାନଙ୍କ ଭିତରେ ଆମର ହୋଇ ରହିଛି, ଆମମାନଙ୍କର ଜନ୍ମପ୍ରାପ୍ତ ଅଧିକାର । ଆମମାନଙ୍କର କର୍ତ୍ତବ୍ୟ କେବଳ ତାହାକୁ ପ୍ରକାଶ କରିବା, ପ୍ରତ୍ୟକ୍ଷଗୋଚର କରିବା ।

# କର୍ମ-ଜୀବନରେ ବେଦାନ୍ତ

## ତୃତୀୟ ପ୍ରସ୍ତାବ

[ ଲଣ୍ଡନରେ ପ୍ରଦତ୍ତ ବକ୍ତୃତା—୧୭ ନଭେମ୍ବର, ୧୮୯୬ ]

ପୂର୍ବୋକ୍ତ ଛାନ୍ଦୋଗ୍ୟ ଉପନିଷଦ୍‌ରୁ ଆମେମାନେ ପାଉଛୁ ଯେ, ଦେବର୍ଷି ନାରଦ ଥରେ ସନତ୍କୁମାରଙ୍କ ନିକଟକୁ ଆସି ଅନେକ ପ୍ରଶ୍ନ ପଚାରିଥିଲେ । ସନତ୍‌କୁମାର ତାଙ୍କୁ 'ସୋପାନାରୋହଣ ନ୍ୟାୟ'ରେ ଧୀରେ ଧୀରେ ନେଇଯାଇ ଅବଶେଷରେ ଆକାଶତତ୍ତ୍ୱରେ ପହଞ୍ଚିଲେ । 'ଆକାଶ ତେଜଠାରୁ ମହତ୍ତର, କାରଣ, ଆକାଶରେ ଚନ୍ଦ୍ର, ସୂର୍ଯ୍ୟ, ବିଦ୍ୟୁତ୍, ତାରା ସମସ୍ତ ରହିଛି । ଆକାଶରେ ଆମେମାନେ ଶ୍ରବଣ କରୁଛୁ, ଆକାଶରେ ଜୀବନଧାରଣ କରୁଛୁ, ଆକାଶରେ ହିଁ ମରୁଛୁ ।'* ବର୍ତ୍ତମାନ ପ୍ରଶ୍ନ ହେଉଛି, ଆକାଶଠାରୁ ମହତ୍ତର କିଛି ଅଛି କି ନାହିଁ । ସନତ୍କୁମାର କହିଲେ, ପ୍ରାଣ ଆକାଶଠାରୁ ବଡ଼ । ବେଦାନ୍ତ ମତରେ ଏହି ପ୍ରାଣ ହିଁ ଜୀବନର ମୂଳୀଭୂତ ଶକ୍ତି । ଆକାଶପରି ଏହା ଗୋଟିଏ ସର୍ବବ୍ୟାପୀ ତତ୍ତ୍ୱ ଏବଂ ଆମମାନଙ୍କର ଶରୀରରେ ବା ଅନ୍ୟତ୍ର ଯାହା କିଛି ଗତି ଦେଖାଯାଏ, ସବୁ ପ୍ରାଣର କାର୍ଯ୍ୟ । ପ୍ରାଣ ଆକାଶଠାରୁ ମହତ୍ତର । ପ୍ରାଣଦ୍ୱାରା ସକଳ ବସ୍ତୁ ବଞ୍ଚି ରହିଛି, ପ୍ରାଣ ହିଁ ମାତା, ପ୍ରାଣ ହିଁ ପିତା, ପ୍ରାଣ ହିଁ ଭଗିନୀ, ପ୍ରାଣ ହିଁ ଆଚାର୍ଯ୍ୟ, ପ୍ରାଣ ହିଁ ଜ୍ଞାତା ।

ମୁଁ ତୁମମାନଙ୍କ ନିକଟରେ ଏହି ଉପନିଷଦ୍‌ରୁ ଅନ୍ୟ ଗୋଟିଏ ଅଂଶ ପାଠ କରିବି । ଶ୍ୱେତକେତୁ ପିତା ଆରୁଣିଙ୍କୁ ସତ୍ୟ ସମ୍ବନ୍ଧରେ ପ୍ରଶ୍ନ କରିବାକୁ ଲାଗିଲେ । ପିତା ତାଙ୍କୁ ନାନା ବିଷୟ ଶିଖାଇ ଅବଶେଷରେ କହିଲେ, 'ଏହିସବୁ ବସ୍ତୁର ଯେଉଁ ସୂକ୍ଷ୍ମ କାରଣ, ଯେଉଁଥିରୁ ଏଗୁଡ଼ିକ ନିର୍ମିତ, ଏହା ହିଁ ସବୁ, ଏହା ହିଁ ସତ୍ୟ; ହେ ଶ୍ୱେତକେତୁ, ତୁମେ ହିଁ ତାହା ।' ତାହାପରେ ସେ ଏହା ବୁଝାଇବା ପ୍ରକାରେ ନାନା ଉଦାହରଣ ଦେବାକୁ ଲାଗିଲେ । 'ହେ ଶ୍ୱେତକେତୁ, ଯେପରି ମହୁମାଛି ବିଭିନ୍ନ ଫୁଲରୁ ମଧୁ ସଞ୍ଚୟ କରି ଏକତ୍ର କରେ ଏବଂ ଏହି ଏକୀଭୂତ ବିଭିନ୍ନ ମଧୁଗୁଡ଼ିକ ଯେପରି ଜାଣନ୍ତି ନାହିଁ ଯେ, ସେମାନେ କେଉଁଠାରୁ ଆସିଛନ୍ତି, ସେହିପରି ଆମେମାନେ ସେହି ସତ୍ତାରୁ ଉତ୍ପନ୍ନ ହୋଇ ତାହା ଭୁଲିଯାଇଛୁ । ଅତଏବ ହେ ଶ୍ୱେତକେତୁ, ତୁମେ ହିଁ ତାହା । ଯେପରି ବିଭିନ୍ନ ନଦୀ ବିଭିନ୍ନ ସ୍ଥାନରୁ ଉତ୍ପନ୍ନ ହୋଇ ସମୁଦ୍ରରେ ପତିତ ହୁଅନ୍ତି, କିନ୍ତୁ ଏହି ନଦୀସବୁ ଜାଣନ୍ତି ନାହିଁ ଯେ, ଏମାନେ କେଉଁଠାରୁ ଉତ୍ପନ୍ନ ହୋଇଛନ୍ତି, ସେହିପରି ଆମେମାନେ ସେହି ସତ୍‌ସ୍ୱରୂପରୁ ଆସିଛୁ ସତ୍ୟ, କିନ୍ତୁ

* ଛାନ୍ଦୋଗ୍ୟ ଉପ., ୭।୧୨।୧

ଆମେମାନେ ଜାଣି ନାହୁଁ ଯେ, ଆମେମାନେ ତାହା ହିଁ । ହେ ଶ୍ୱେତକେତୁ, ତୁମେ ହିଁ ତାହା ।'* ପିତା ପୁତ୍ରକୁ ଏହିପରି ଉପଦେଶ ଦେବାକୁ ଲାଗିଲେ ।

ବର୍ତ୍ତମାନ କଥା ଏହି, ସମସ୍ତ ଜ୍ଞାନଲାଭର ଦୁଇଟି ମୂଳସୂତ୍ର ଅଛି । ଗୋଟିଏ ସୂତ୍ର ଏହି ଯେ, ବିଶେଷକୁ ସାଧାରଣରେ ଏବଂ ସାଧାରଣକୁ ପୁଣି ସାର୍ବଭୌମ ତତ୍ତ୍ୱରେ ସମାଧାନ କରି ଜ୍ଞାନଲାଭ କରିବାକୁ ହେବ । ଦ୍ୱିତୀୟ ସୂତ୍ର ଏହି ଯେ, କୌଣସି ବସ୍ତୁର ବ୍ୟାଖ୍ୟା କରିବାକୁ ହେଲେ ଯେତେଦୂର ସମ୍ଭବ, ସେହି ବସ୍ତୁ ମଧ୍ୟରେ ହିଁ ତାହାର ବ୍ୟାଖ୍ୟା ଅନ୍ୱେଷଣ କରିବାକୁ ହେବ । ପ୍ରଥମ ସୂତ୍ରଟି ଧରି ଆମେମାନେ ଦେଖିବାକୁ ପାଉ, ଆମମାନଙ୍କର ସମୁଦାୟ ଜ୍ଞାନ ବାସ୍ତବିକ ଉଚ୍ଚରୁ ଉଚ୍ଚତର ଶ୍ରେଣୀବିଭାଗ ମାତ୍ର । ଗୋଟିଏ ଘଟଣା ଯେତେବେଳେ ପ୍ରଥମେ ଘଟେ, ସେତେବେଳେ ଆମେ ଯେପରି ଅତୃପ୍ତ ବୋଧ କରୁ । ଯେତେବେଳେ ଏହା ଦେଖାଇ ଦିଆଯାଏ ଯେ, ସେହି ଗୋଟିଏ ଘଟନା ବାରମ୍ବାର ଘଟୁଛି, ସେତେବେଳେ ଆମେମାନେ ତୃପ୍ତ ହୋଇ ଏହାକୁ 'ନିୟମ' ଆଖ୍ୟା ଦେଇଥାଉ । ଯେତେବେଳେ ଗୋଟିଏ ପଥର ଅଥବା ଆପେଲ ପଡ଼ିବାର ଦେଖିବାକୁ ପାଉ, ସେତେବେଳେ ଆମେମାନେ ଅତୃପ୍ତ ହେଉ; କିନ୍ତୁ ଯେତେବେଳେ ଦେଖୁ ସମସ୍ତ ପଥର ଓ ଆପେଲ ପଡ଼ୁଛି, ସେତେବେଳେ ଆମେମାନେ ଏହାକୁ ମାଧ୍ୟାକର୍ଷଣର ନିୟମ ବୋଲି କହୁ ଏବଂ ତୃପ୍ତ ହୋଇଥାଉ । କଥା ହେଉଛି, ଆମେମାନେ ବିଶେଷରୁ ସାଧାରଣ ତତ୍ତ୍ୱକୁ ଯାଉ । ଧର୍ମତତ୍ତ୍ୱର ଆଲୋଚନାରେ ମଧ୍ୟ ଏହା ହିଁ ଏକମାତ୍ର ବୈଜ୍ଞାନିକ ପ୍ରଣାଳୀ ।

ଧର୍ମତତ୍ତ୍ୱ ଆଲୋଚନା କରିବାକୁ ଗଲେ ଏବଂ ଏହାକୁ ବୈଜ୍ଞାନିକଭାବରେ ବ୍ୟାଖ୍ୟା କରିବାକୁ ଗଲେ ଆମମାନଙ୍କୁ ସେହି ମୂଳସୂତ୍ରର ଅନୁସରଣ କରିବାକୁ ହେବ । ବାସ୍ତବିକ ଆମେମାନେ ଦେଖିବାକୁ ପାଉ, ଏହି ପ୍ରଣାଳୀଟି ଅନୁସୃତ ହୋଇଛି । ଏହି ଉପନିଷଦ୍‌ରେ, ଯେଉଁଥିରୁ ତୁମମାନଙ୍କୁ ଶୁଣାଉଛି, ସେଥିରେ ମଧ୍ୟ ଦେଖିବାକୁ ମିଳେ ଯେ, ସର୍ବପ୍ରଥମେ ଏହି ଭାବର ଅଭ୍ୟୁଦୟ ହୋଇଛି—ବିଶେଷରୁ ସାଧାରଣକୁ ଗମନ । ଆମେମାନେ ଦେଖିବାକୁ ପାଉ, କିପରି ଦେବଗଣ ପରସ୍ପର ଅନ୍ତର୍ଭୁକ୍ତ ହୋଇ ଗୋଟିଏ ତତ୍ତ୍ୱରେ ପରିଣତ ହେଉଛନ୍ତି; ଜଗତର ଧାରଣାରେ ମଧ୍ୟ ପ୍ରାଚୀନଗଣ କ୍ରମଶଃ କିପରି ଅଗ୍ରସର ହେଉଛନ୍ତି, କିପରି ଭାବରେ ସ୍ଥୂଳଭୂତରୁ ସେମାନେ ସୂକ୍ଷ୍ମତର ଓ ଅଧିକତର ବ୍ୟାପକ ଭୂତକୁ ଯାଉଛନ୍ତି, କିପରି ଭାବରେ ସେମାନେ ବିଶେଷ ବିଶେଷ ଭୂତଠାରୁ ଆରମ୍ଭ କରି ଅବଶେଷରେ ଏକ ସର୍ବବ୍ୟାପୀ ଆକାଶତତ୍ତ୍ୱରେ ଉପନୀତ ହେଉଛନ୍ତି, କିପରି ତାହାଠାରୁ ଅଗ୍ରସର ହୋଇ ସେମାନେ ପ୍ରାଣନାମକ ସର୍ବବ୍ୟାପିନୀ ଶକ୍ତିରେ ଉପନୀତ ହେଉଛନ୍ତି ଏବଂ ଏହି ସମସ୍ତ ଭିତରେ ଆମେମାନେ ଏହି ଗୋଟିଏ ତତ୍ତ୍ୱ ପାଉଛୁଁ ଯେ, ଗୋଟିଏ ବସ୍ତୁ ଅନ୍ୟାନ୍ୟ ବସ୍ତୁ-

---

* ଛାନ୍ଦୋଗ୍ୟ ଉପ., ୬।୯-୧୦

ଠାରୁ ପୃଥକ୍ ନୁହେଁ । ଆକାଶ ସୂକ୍ଷ୍ମ ହୋଇ ପ୍ରାଣ ଏବଂ ପ୍ରାଣ ସ୍ଥୂଳ ହୋଇ ଆକାଶ ହୁଏ, ଆକାଶ ପୁଣି ସ୍ଥୂଳରୁ ସ୍ଥୂଳତର ହୋଇଥାଏ, ଇତ୍ୟାଦି ।

ସଗୁଣ ଈଶ୍ୱର ମଧ୍ୟ ଏହି ମୂଳସୂତ୍ରର ଆଉ ଗୋଟିଏ ଉଦାହରଣ । ଆମେମାନେ ପୂର୍ବରୁ ଦେଖିଛୁ, ସଗୁଣ ଈଶ୍ୱରଙ୍କର ଧାରଣା ମଧ୍ୟ ଏହିପରି ସାମାନ୍ୟୀକରଣର ଫଳ । ଏଥିରୁ ଏହା ପାଇଛୁ ଯେ, ସଗୁଣ ଈଶ୍ୱର ସମୁଦାୟ ଜ୍ଞାନର ସମଷ୍ଟିସ୍ୱରୂପ; କିନ୍ତୁ ଏଠାରେ ଗୋଟିଏ ଶଙ୍କା ଉଠୁଛି । ଏହା ତ ପର୍ଯ୍ୟାପ୍ତ ସାମାନ୍ୟୀକରଣ ହେଲା ନାହିଁ । ଆମେମାନେ ପ୍ରାକୃତିକ ଘଟଣାର ଗୋଟିଏ ଦିଗ ଅର୍ଥାତ୍ ଜ୍ଞାନର ଦିଗ ନେଲୁ, ତାହାଦ୍ୱାରା ଆମେମାନେ ସାମାନ୍ୟୀକରଣ ପ୍ରଣାଳୀରେ ସଗୁଣ ଈଶ୍ୱରଙ୍କଠାରେ ଉପନୀତ ହେଲୁ; କିନ୍ତୁ ତାଙ୍କ ପ୍ରକୃତିର ସବୁ ବାଦ୍ ଗଲା । ସୁତରାଂ ପ୍ରଥମତଃ, ଏହି ସାମାନ୍ୟୀକରଣ ଅସମ୍ପୂର୍ଣ୍ଣ । ଏଠାରେ ଆଉ ଗୋଟିଏ ଅସମ୍ପୂର୍ଣ୍ଣତା ଅଛି, ତାହା ଦ୍ୱିତୀୟ ସୂତ୍ରର ଅନ୍ତର୍ଗତ । ପ୍ରତ୍ୟେକ ବସ୍ତୁକୁ ତାହାର ସ୍ୱରୂପଦୃଷ୍ଟିରୁ ବ୍ୟାଖ୍ୟା କରିବାକୁ ହେବ । ଅନେକ ଲୋକ ହୁଏତ ଏକ ସମୟରେ ଭାବୁଥିଲେ ମାଟିରେ ଯେ କୌଣସି ଜିନିଷ ପଡ଼େ, ତାହା ଭୂତ ପକାଏ; କିନ୍ତୁ ମାଧ୍ୟାକର୍ଷଣ ହିଁ ଏହାର ଯଥାର୍ଥ ବ୍ୟାଖ୍ୟା । ଯଦିଚ ଆମେମାନେ ଜାଣୁ ଏହା ସମ୍ପୂର୍ଣ୍ଣ ବ୍ୟାଖ୍ୟା ନୁହେଁ, କିନ୍ତୁ ଏହା ଅନ୍ୟ ବ୍ୟାଖ୍ୟାଠାରୁ ଯେ ଗ୍ରହଣୀୟ ତାହା ନିଶ୍ଚୟ; କାରଣ ଗୋଟିଏ ବ୍ୟାଖ୍ୟା ବସ୍ତୁର ବହିର୍ଦ୍ଦେଶସ୍ଥ କାରଣରୁ ଏବଂ ଅନ୍ୟଟି ବସ୍ତୁର ସ୍ୱଭାବରୁ ଲବ୍ଧ; ଏହା ଆମମାନଙ୍କର ସମୁଦାୟ ଜ୍ଞାନ ସମ୍ବନ୍ଧରେ ସତ୍ୟ । ଯେ କୌଣସି ବ୍ୟାଖ୍ୟା ବସ୍ତୁର ପ୍ରକୃତିରୁ ଲବ୍ଧ ତାହା ବୈଜ୍ଞାନିକ ଏବଂ ଯେକୌଣସି ବ୍ୟାଖ୍ୟା ବସ୍ତୁର ବହିର୍ଦ୍ଦେଶରୁ ଲବ୍ଧ, ତାହା ଅବୈଜ୍ଞାନିକ ।

ବର୍ତ୍ତମାନ 'ସଗୁଣ ଈଶ୍ୱର ଜଗତର ସୃଷ୍ଟିକର୍ତ୍ତା'—ଏହି ତତ୍ତ୍ୱଟିକୁ ସୂତ୍ରଦ୍ୱାରା ପରୀକ୍ଷା କରାଯାଉ । ଯଦି ଏହି ଈଶ୍ୱର ପ୍ରକୃତିର ବହିର୍ଦ୍ଦେଶରେ ଥାଆନ୍ତି, ଯଦି ପ୍ରକୃତି ସଙ୍ଗରେ ତାଙ୍କର କୌଣସି ସମ୍ବନ୍ଧ ନ ଥାଏ ଏବଂ ଯଦି ଏହି ପ୍ରକୃତି ସେହି ଈଶ୍ୱରଙ୍କର ଆଜ୍ଞାରେ ଶୂନ୍ୟରୁ ଉତ୍ପନ୍ନ ହୁଏ, ତାହା ହେଲେ ସ୍ୱଭାବତଃ ଏହା ଅତି ଅବୈଜ୍ଞାନିକ ମତ ହେଲା । ସଗୁଣ ଈଶ୍ୱରବାଦର ଏହା ହିଁ ପ୍ରଧାନ ଦୁର୍ବଳତା । ଏହି ମତରେ ଈଶ୍ୱର ମାନବଗୁଣସମ୍ପନ୍ନ, କେବଳ ସେହି ଗୁଣଗୁଡ଼ିକ ଅପେକ୍ଷାକୃତ ବହୁ-ପରିମାଣରେ ବର୍ଦ୍ଧିତ । ଈଶ୍ୱର ଶୂନ୍ୟରୁ ଏହି ଜଗତ ସୃଷ୍ଟି କରିଛନ୍ତି, ଅଥଚ ସେ ଜଗତଠାରୁ ସମ୍ପୂର୍ଣ୍ଣ ପୃଥକ୍—ଈଶ୍ୱରବାଦରେ ଏହି ଦୁଇଟି ଦୋଷ ଦେଖିବାକୁ ମିଳେ ।

ଆମେମାନେ ପୂର୍ବରୁ ଦେଖିଛୁ, ପ୍ରଥମତଃ, ସଗୁଣ ଈଶ୍ୱରବାଦ ପର୍ଯ୍ୟାପ୍ତ ସାମାନ୍ୟୀକରଣ ନୁହେଁ । ଦ୍ୱିତୀୟତଃ, ଏହା ପ୍ରକୃତିରୁ ଲବ୍ଧ ତଥ୍ୟଦ୍ୱାରା ପ୍ରକୃତିର ବ୍ୟାଖ୍ୟା ନୁହେଁ । ଏହା କାରଣଠାରୁ କାର୍ଯ୍ୟକୁ ପୃଥକ୍ ବୋଲି ବ୍ୟାଖ୍ୟା କରେ; କିନ୍ତୁ ମନୁଷ୍ୟ ଯେତେ ଜ୍ଞାନଲାଭ କରୁଛି, ସେତେ ବେଶୀ ତାହାର ଧାରଣା ଦୃଢ଼ୀଭୂତ

ହେଉଛି ଯେ, କାର୍ଯ୍ୟ କାରଣର ରୂପାନ୍ତର ମାତ୍ର । ଆଧୁନିକ ବିଜ୍ଞାନର ସମୁଦାୟ ଆବିଷ୍କ୍ରିୟା ଏହି ଦିଗକୁ ଇଙ୍ଗିତ କରୁଛି; ଆଉ ଆଧୁନିକ ସର୍ବବାଦୀସମ୍ମତ କ୍ରମବିକାଶବାଦର ତାତ୍ପର୍ଯ୍ୟ ଏହି ଯେ, କାର୍ଯ୍ୟ କାରଣର ରୂପାନ୍ତର ମାତ୍ର । ବର୍ତ୍ତମାନର କାରଣ ମଧ୍ୟ ଗୋଟିଏ ପୁରାତନ କାରଣର କାର୍ଯ୍ୟ । ଶୂନ୍ୟରୁ ସୃଷ୍ଟି— ଆଧୁନିକ ବୈଜ୍ଞାନିକମାନଙ୍କର ଉପହାସର ବିଷୟ ।

ପୂର୍ବୋକ୍ତ ଦୁଇଟି ପରୀକ୍ଷାପରେ ଧର୍ମ କଅଣ ତିଷ୍ଠିରହିପାରେ ? ଯଦି ଏପରି କୌଣସି ଧର୍ମମତ ଥାଏ, ଯାହା ଏହି ଦୁଇଟି ପରୀକ୍ଷାରେ ତିଷ୍ଠିରହେ, ତାହା ଆଧୁନିକ ଚିନ୍ତାଶୀଳ ମନର ଗ୍ରାହ୍ୟ ହେବ । ଯଦି ଆଧୁନିକ ଲୋକମାନଙ୍କୁ ପୁରୋହିତ, ଚର୍ଚ୍ଚ ଅଥବା କୌଣସି ଶାସ୍ତ୍ରର ଦୁହାଇ ଦେଇ କୌଣସି ମତକୁ ବିଶ୍ୱାସ କରିବାକୁ କହି, ତେବେ ସେମାନେ ଏହା ବିଶ୍ୱାସ କରିବେ ନାହିଁ; ତାହାର ଫଳ ହେବ— ଘୋର ଅବିଶ୍ୱାସ । ଯେଉଁମାନେ ବାହାରେ ଦେଖିବାକୁ ଖୁବ୍ ବିଶ୍ୱାସୀ, ସେମାନେ ବାସ୍ତବିକ ଭିତରେ ଘୋର ଅବିଶ୍ୱାସୀ । ଅବଶିଷ୍ଟ ଲୋକମାନେ ଧର୍ମକୁ ଏକାବେଳକେ ଛାଡ଼ିଦିଅନ୍ତି, ଏହାଠାରୁ ଦୂରକୁ ପଳାଇ ଯାଆନ୍ତି, ଯେପରିକି ଏହା ସହିତ କୌଣସି ସମ୍ପର୍କ ରଖିବାକୁ ଚାହାଁନ୍ତି ନାହିଁ, ଏହାକୁ ପୁରୋହିତମାନଙ୍କର ଜୁଆଚୋରି ବୋଲି ଭାବନ୍ତି ।

ବର୍ତ୍ତମାନ ଧର୍ମ ଏକ ପ୍ରକାର ଜାତୀୟଭାବରେ ପରିଣତ ହୋଇଛି । ଧର୍ମ ଆମ ପ୍ରାଚୀନ ସମାଜର ଗୋଟିଏ ମହାନ୍ ଉତ୍ତରାଧିକାର; ଅତଏବ ଏହାକୁ ରହିବାକୁ ଦିଅ—ଏହା ହିଁ ଆମମାନଙ୍କର ମନୋଭାବ । କିନ୍ତୁ ପୂର୍ବପୁରୁଷମାନେ ଏହା ପାଇଁ ଯେଉଁ ପ୍ରକୃତ ଆଗ୍ରହବୋଧ କରୁଥିଲେ, ଆଧୁନିକ ଲୋକଙ୍କର ତାହା ନାହିଁ; ସେମାନେ ଏହାକୁ ଯୁକ୍ତି ବୋଲି ଭାବନ୍ତି । ଏହିପରି ସଗୁଣ ଈଶ୍ୱର ଓ ସୃଷ୍ଟିର ଧାରଣା, ଯାହାକୁ ସଚରାଚର ସମସ୍ତ ଧର୍ମରେ 'ଏକେଶ୍ୱରବାଦ' ବୋଲି କୁହାଯାଏ, ସେଥିରେ ବର୍ତ୍ତମାନ ଲୋକଙ୍କର ପ୍ରାଣ ତୃପ୍ତ ହୁଏ ନାହିଁ । ଭାରତରେ ବୌଦ୍ଧମାନଙ୍କର ପ୍ରଭାବରେ ଏହା ପ୍ରବଳ ହୋଇପାରି ନାହିଁ, ମାତ୍ର ଏହି ବିଷୟରେ ବୌଦ୍ଧମାନେ ପ୍ରାଚୀନ କାଳରେ ଜୟଲାଭ କରିଥିଲେ । ସେମାନେ ଏହା ଦେଖାଇ ଦେଲେ ଯେ, ଯଦି ପ୍ରକୃତିକୁ ଅନନ୍ତ ଶକ୍ତିସମ୍ପନ୍ନ ବୋଲି ମାନି ନିଆଯାଏ, ଯଦି ପ୍ରକୃତି ଏହାର ନିଜ ଅଭାବ ନିଜେ ପୂରଣ କରିପାରେ, ତେବେ ପ୍ରକୃତିର ଅତୀତ କିଛି ଅଛି ବୋଲି ସ୍ୱୀକାର କରିବା ଅନାବଶ୍ୟକ । ଆତ୍ମାର ଅସ୍ତିତ୍ୱ ସ୍ୱୀକାର କରିବାର କୌଣସି ପ୍ରୟୋଜନ ନାହିଁ । ଏହି ବିଷୟରେ ପ୍ରାଚୀନ କାଳରୁ ତର୍କବିତର୍କ ଚାଲି ଆସିଛି । ଏବେ ମଧ୍ୟ ସେହି ପ୍ରାଚୀନ କୁସଂସ୍କାର ଜୀବିତ ରହିଛି—ଦ୍ରବ୍ୟ ଓ ଗୁଣର ବିଚାର ।

ଇଉରୋପରେ ମଧ୍ୟଯୁଗରେ, ଏପରିକି—ଦୁଃଖର ସହିତ ମୋତେ କହିବାକୁ ପଡ଼ୁଛି—ତାହାର ଅନେକ ଦିନ ପର୍ଯ୍ୟନ୍ତ ଏହା ଗୋଟିଏ ବିଶେଷ ବିଚାରର ବିଷୟ ଥିଲା—ଦ୍ରବ୍ୟଭିତରେ ଗୁଣ ରହିଛି ନା ଗୁଣ ବ୍ୟତୀତ ଦ୍ରବ୍ୟର ଅସ୍ତିତ୍ୱ ଅଛି ? ଦୈର୍ଘ୍ୟ,

ପ୍ରଶ୍ନ, ତେବେ କଅଣ ଜଡ଼ ପଦାର୍ଥ ନାମକ ଦ୍ରବ୍ୟବିଶେଷରେ ଲାଗିରହିଛି ? ଆଉ ଏହି ଗୁଣଗୁଡ଼ିକ ନ ଥିଲେ ଦ୍ରବ୍ୟଟିର ଅସ୍ତିତ୍ୱ ରହେ କି ନାହିଁ ? ବୌଦ୍ଧମାନେ କହନ୍ତି, ଏପରି ଗୋଟିଏ ଦ୍ରବ୍ୟର ଅସ୍ତିତ୍ୱ ସ୍ୱୀକାର କରିବା ଆଦୌ ଦରକାର ନାହିଁ; କେବଳ ଗୁଣଗୁଡ଼ିକର ଅସ୍ତିତ୍ୱ ଅଛି; ଏହାର ଅତିରିକ୍ତ ତୁମେ ଆଉ କିଛି ଦେଖିବାକୁ ପାଅ ନାହିଁ । ଏହା ହିଁ ଅଧିକାଂଶ ଆଧୁନିକ ଅଜ୍ଞେୟବାଦୀଙ୍କର ମତ । ଏହି ଦ୍ରବ୍ୟ-ଗୁଣର ବିଚାର ଆଉ ଟିକିଏ ଉଚ୍ଚଭୂମିକୁ ନେଇଗଲେ ଦେଖାଯାଏ, ଏହା ବ୍ୟାବହାରିକ ଓ ପାରମାର୍ଥିକ ସତ୍ତାର ବିଚାରରେ ପରିଣତ ହୋଇଛି । ଏହି ଦୃଶ୍ୟ ଜଗତ୍—ନିତ୍ୟପରିଣାମଶୀଳ ଜଗତ୍ ରହିଛି ଏବଂ ଏହା ସଙ୍ଗେ ସଙ୍ଗେ ଏପରି କିଛି ରହିଛି, ଯାହାର କେବେହେଲେ ପରିଣାମ ହୁଏ ନାହିଁ; ଆଉ କେହି କେହି କହନ୍ତି, ଏହି ଦ୍ୱିବିଧ ପଦାର୍ଥର ଅସ୍ତିତ୍ୱ ଅଛି । ଆହୁରି ଅନେକେ ଅଧିକତର ଯୁକ୍ତିର ସହିତ କହନ୍ତି, ଏହି ଉଭୟ ପଦାର୍ଥ ମାନିବାର କୌଣସି ଆବଶ୍ୟକତା ନାହିଁ; କାରଣ, ଆମେମାନେ ଯାହା ଦେଖୁ, ଅନୁଭବ କରୁ ବା ଚିନ୍ତା କରୁ, ତାହା କେବଳ 'ଦୃଶ୍ୟ' ପଦାର୍ଥ ମାତ୍ର । ଦୃଶ୍ୟର ଅତିରିକ୍ତ କୌଣସି ପଦାର୍ଥ ମାନିବାର କୌଣସି ଅଧିକାର ଆମମାନଙ୍କର ନାହିଁ । ଏହି କଥାର କୌଣସି ଯୁକ୍ତିସଙ୍ଗତ ଉତ୍ତର ପ୍ରାଚୀନ କାଳରେ କେହି ଦେଇପାରି ନାହାନ୍ତି । କେବଳ ଆମେମାନେ ବେଦାନ୍ତର ଅଦ୍ୱୈତବାଦରେ ଏହାର ଉତ୍ତର ପାଇଥାଉ—କେବଳ ଗୋଟିଏ ବସ୍ତୁର ଅସ୍ତିତ୍ୱ ଅଛି, ତାହା କେତେବେଳେ ଦ୍ରଷ୍ଟା କେତେବେଳେ ବା ଦୃଶ୍ୟରୂପରେ ପ୍ରକାଶ ପାଉଛି । ଏହା ସତ୍ୟ ନୁହେଁ ଯେ—ପରିଣାମଶୀଳ ବସ୍ତୁର ସତ୍ତା ଅଛି ଏବଂ ତାହାର ଅଭ୍ୟନ୍ତରରେ ଅପରିଣାମୀ ବସ୍ତୁ ରହିଛି; ସେହି ଏକ ଅପରିଣାମୀ ବସ୍ତୁ ହିଁ ପରିଣାମଶୀଳ ବୋଲି ପ୍ରତୀତ ହେଉଛି ।

ବୁଝିବାର ଉପଯୁକ୍ତ ଗୋଟିଏ ଦାର୍ଶନିକ ଧାରଣା କରିବା ପାଇଁ ଆମେମାନେ ଦେହ, ମନ, ଆତ୍ମା ପ୍ରଭୃତି ନାନା ଭେଦ କରିଥାଉଁ; କିନ୍ତୁ ପ୍ରକୃତପକ୍ଷେ ଗୋଟିଏ ସତ୍ତା ହିଁ ବିରାଜିତ । ସେହି ଗୋଟିଏ ବସ୍ତୁ ନାନା ରୂପରେ ପ୍ରତୀତ ହେଉଛି । ଅଦ୍ୱୈତବାଦୀମାନଙ୍କର ଚିରପରିଚିତ ଉପମାନୁସାରେ କହିବାକୁ ଗଲେ ଆମେମାନେ କହିବା ଯେ, ରଜ୍ଜୁ ହିଁ ସର୍ପାକାରରେ ପ୍ରତୀତ ହେଉଛି । ଅନ୍ଧକାରବଶତଃ ଅଥବା ଅନ୍ୟ କୌଣସି କାରଣରୁ ଅନେକେ ରଜ୍ଜୁକୁ ସର୍ପ ବୋଲି ଭ୍ରମ କରିଥାଆନ୍ତି; କିନ୍ତୁ ଜ୍ଞାନର ଉଦୟ ହେଲେ ସର୍ପଭ୍ରମ ଘୁଞ୍ଚିଯାଏ, ଆଉ ଏହା ରଜ୍ଜୁ ବୋଲି ବୋଧହୁଏ । ଏହି ଉଦାହରଣଦ୍ୱାରା ଆମେମାନେ ବେଶ୍ ବୁଝୁଁଛୁ ଯେ ମନରେ ଯେତେବେଳେ ସର୍ପଜ୍ଞାନ ଥାଏ, ସେତେବେଳେ ରଜ୍ଜୁଜ୍ଞାନ ନ ଥାଏ; ପୁଣି ଯେତେବେଳେ ରଜ୍ଜୁଜ୍ଞାନର ଉଦୟ ହୁଏ, ସେତେବେଳେ ସର୍ପଜ୍ଞାନ ଚାଲିଯାଏ । ଯେତେବେଳେ ଆମେମାନେ ବ୍ୟବହାରିକ ସତ୍ତା ଦେଖୁଁ, ସେତେବେଳେ ପାରମାର୍ଥିକ ସତ୍ତା ନ ଥାଏ ଏବଂ ଯେତେବେଳେ ଆମେମାନେ ସେହି ଅପରିଣାମୀ ପାରମାର୍ଥିକ ସତ୍ତାକୁ ଦେଖୁ,

ସେତେବେଳେ ଅବଶ୍ୟ ବ୍ୟାବହାରିକ ସତ୍ତା ଆଉ ପ୍ରତିଷ୍ଠିତ ହୁଏ ନାହିଁ ।

ବର୍ତ୍ତମାନ ଆମେମାନେ ପ୍ରତ୍ୟକ୍ଷବାଦୀ (Realist) ଓ ବିଜ୍ଞାନବାଦୀ (Idealist) ଉଭୟଙ୍କର ମତ ବେଶ୍ ପରିଷ୍କାର ବୁଝିଛୁ । ପ୍ରତ୍ୟକ୍ଷବାଦୀ କେବଳ ବ୍ୟାବହାରିକ ସତ୍ତା ଦେଖନ୍ତି ଏବଂ ବିଜ୍ଞାନବାଦୀ ପାରମାର୍ଥିକ ସତ୍ତାର ଦିଗଟି ଦେଖିବାକୁ ଚେଷ୍ଟା କରନ୍ତି । ପ୍ରକୃତ ବିଜ୍ଞାନବାଦୀ, ଯେ ଅପରିଣାମୀ ସତ୍ତାକୁ ପ୍ରତ୍ୟକ୍ଷ କରିଛନ୍ତି, ତାଙ୍କ ପକ୍ଷରେ ପରିଣାମଶୀଳ ଜଗତ ଆଉ ନ ଥାଏ, ତାଙ୍କର କେବଳ କହିବାର ଅଧିକାର ଅଛି ଯେ, ଜଗତ ସମସ୍ତ ମିଥ୍ୟା, ପରିଣାମ ବୋଲି କିଛି ନାହିଁ । ପ୍ରତ୍ୟକ୍ଷବାଦୀ କିନ୍ତୁ ପରିଣାମକୁ ହିଁ ଲକ୍ଷ୍ୟ କରିଥାଆନ୍ତି; ତାଙ୍କ ପକ୍ଷରେ ଅପରିଣାମୀ ସତ୍ତା ବୋଲି କିଛି ନାହିଁ; ସୁତରାଂ ଏହି ଜଗତକୁ ବାସ୍ତବ ବୋଲି କହିବାର ଅଧିକାର ତାଙ୍କର ଅଛି ।

ଏହି ବିଚାରର ଫଳ କଅଣ ହେଲା ? ଏହି ଫଳ ହେଲା ଯେ, ଈଶ୍ବରଙ୍କର ସଗୁଣ ଧାରଣା ପର୍ଯ୍ୟାପ୍ତ ନୁହେଁ । ଆମମାନଙ୍କୁ ଆହୁରି ଉଚ୍ଚତର ଧାରଣା ଅର୍ଥାତ୍ ନିର୍ଗୁଣର ଧାରଣା କରିବାକୁ ହେବ । ଏହାଦ୍ୱାରା ଯେ ସଗୁଣ-ଧାରଣା ନଷ୍ଟ ହେବ, ତାହା ନୁହେଁ । ସଗୁଣ ଈଶ୍ବରଙ୍କର ଅସ୍ତିତ୍ୱ ନାହିଁ—ଏହା ଆମେମାନେ ପ୍ରମାଣ କରୁ ନାହୁଁ; କିନ୍ତୁ ଆମେମାନେ ଦେଖାଉଛୁ ଯେ, ଯାହା ପ୍ରମାଣ କଲୁ, ତାହା ଏକମାତ୍ର ନ୍ୟାୟସଙ୍ଗତ ସିଦ୍ଧାନ୍ତ । ମନୁଷ୍ୟକୁ ମଧ୍ୟ ଆମେ ଏହିପରି ସଗୁଣ ନିର୍ଗୁଣ ଉଭୟାତ୍ମକ କହିଥାଉ । ଆମେମାନେ ସଗୁଣ ଏବଂ ନିର୍ଗୁଣ ଉଭୟ । ଅତଏବ ଆମମାନଙ୍କର ପ୍ରାଚୀନ ଈଶ୍ବରଧାରଣା ଅର୍ଥାତ୍ ଈଶ୍ବରଙ୍କର ସଗୁଣ ଧାରଣା—ତାଙ୍କୁ ଗୋଟିଏ ବ୍ୟକ୍ତି ବୋଲି ଧାରଣା—ଅବଶ୍ୟ ରହିଯିବା ଦରକାର; କାରଣ, ମନୁଷ୍ୟକୁ ଯେଉଁ ଭାବରେ ସଗୁଣ ନିର୍ଗୁଣ ଉଭୟ ବୋଲି କୁହାଯାଏ, ଆଉ ଟିକିଏ ଉଚ୍ଚତର ଭାବରେ ଈଶ୍ବରଙ୍କୁ ମଧ୍ୟ ସେହିପରି ସଗୁଣ ଓ ନିର୍ଗୁଣ ଉଭୟ କୁହାଯାଏ । ଅତଏବ ସଗୁଣର ବ୍ୟାଖ୍ୟା କରିବାକୁ ଗଲେ ଅବଶ୍ୟ ଅବଶେଷରେ ଆମମାନଙ୍କୁ ନିର୍ଗୁଣ-ଧାରଣାକୁ ଯିବାକୁ ହେବ, କାରଣ ନିର୍ଗୁଣ-ଧାରଣା ସଗୁଣ-ଧାରଣାଠାରୁ ଆହୁରି ବ୍ୟାପକ । ଅନନ୍ତ କେବଳ ନିର୍ଗୁଣ ହୋଇପାରେ, ସଗୁଣ କେବଳ ଶାନ୍ତ ମାତ୍ର । ଅତଏବ ଏହି ବ୍ୟାଖ୍ୟାଦ୍ୱାରା ଆମେମାନେ ସଗୁଣକୁ ରକ୍ଷା କଲୁ, ଏହାକୁ ଉଡ଼ାଇଦେଲୁ ନାହିଁ । ଅନେକ ସମୟରେ ସଂଶୟ ଆସେ ଯେ—ନିର୍ଗୁଣ ଈଶ୍ବରଙ୍କର ଧାରଣାଦ୍ୱାରା ସଗୁଣ-ଧାରଣା ନଷ୍ଟ ହୋଇଯିବ, ନିର୍ଗୁଣ ଜୀବାତ୍ମାର ଧାରଣାରେ ସଗୁଣ ଜୀବାତ୍ମାର ଭାବ ନଷ୍ଟ ହୋଇଯିବ; ବାସ୍ତବିକ କିନ୍ତୁ ବେଦାନ୍ତ ମତରେ 'ମୁଁ ତ୍ୱ'ର ନାଶ ହୁଏ ନାହିଁ, ବରଂ ଏହାକୁ ଯଥାର୍ଥ ଭାବରେ ରକ୍ଷା କରାଯାଏ । ଆମେମାନେ ସେହି ଅନନ୍ତ ସତ୍ତାର ସମାଧାନ ନ କରି ବ୍ୟକ୍ତିର ଅସ୍ତିତ୍ୱ କୌଣସି ପ୍ରକାରେ ପ୍ରମାଣ କରିପାରୁ ନାହିଁ । ଯଦି ଆମେମାନେ ବ୍ୟକ୍ତିକୁ ସମୁଦାୟ ଜଗତଠାରୁ ପୃଥକ୍ ବୋଲି ଭାବିବାକୁ ଚେଷ୍ଟା କରିବୁ, ତେବେ କଦାପି ସେଥିରେ ଆମେ ସମର୍ଥ ହେବୁ ନାହିଁ,

ମୁହୂର୍ତ୍ତିକ ପାଇଁ ମଧ୍ୟ ସେପରି ଭାବହୁଏ ନାହିଁ ।

ଦ୍ୱିତୀୟତଃ ପୂର୍ବୋକ୍ତ ଦ୍ୱିତୀୟ ତତ୍ତ୍ୱର ଆଲୋକରେ ଆମେମାନେ ଆହୁରି କଠିନ ଓ ଦୁର୍ବୋଧ ତତ୍ତ୍ୱରେ ଉପନୀତ ହେଉ । ଯଦି ସକଳ ବସ୍ତୁକୁ ତାହାର ସ୍ୱରୂପ ଦୃଷ୍ଟିରୁ ବ୍ୟାଖ୍ୟା କରିବାକୁ ହୁଏ, ତାହାହେଲେ ଏହି ସିଦ୍ଧାନ୍ତ ହୁଏ ଯେ, ସେହି ନିର୍ଗୁଣ ପୁରୁଷ—ସାମାନ୍ୟୀକରଣ ପ୍ରକ୍ରିୟାରେ ଆମେମାନେ ଯେଉଁ ସର୍ବୋଚ୍ଚ ତତ୍ତ୍ୱରେ ଉପନୀତ ହୋଇଛୁ, ତାହା ଆମମାନଙ୍କର ଭିତରେ ରହିଛନ୍ତି, ବସ୍ତୁତଃ ଆମେମାନେ ହିଁ ସେ । 'ହେ ଶ୍ୱେତକେତୁ, ତତ୍ତ୍ୱମସି'*—ତୁମେ ହିଁ ସେ, ତୁମେ ହିଁ ସେହି ନିର୍ଗୁଣ ସତ୍ତା; ତୁମେ ସେହି ବ୍ରହ୍ମ, ଯାହାଙ୍କୁ ତୁମେ ସମୁଦାୟ ଜଗତରେ ଖୋଜି ବୁଲୁଛ, ସର୍ବଦା ତୁମେ ସ୍ୱୟଂ ସେହି ! 'ତୁମେ' କିନ୍ତୁ ବ୍ୟକ୍ତି ଅର୍ଥରେ ନୁହେଁ, ତାହା ନିର୍ଗୁଣ ଅର୍ଥରେ । ଆମେମାନେ ଏହି ଯେଉଁ ମନୁଷ୍ୟକୁ ଜାଣୁଛୁ, ଯାହାଙ୍କୁ ବ୍ୟକ୍ତି ଦେଖୁଛୁ, ସେ ବାସ୍ତବିକ ସଗୁଣ ହୋଇଛନ୍ତି; କିନ୍ତୁ ତାଙ୍କର ପ୍ରକୃତ ସତ୍ତା ନିର୍ଗୁଣ ଅବ୍ୟକ୍ତ । ଏହି ସଗୁଣକୁ ଜାଣିବାକୁ ହେଲେ ଆମମାନଙ୍କୁ ନିର୍ଗୁଣ ଭିତର ଦେଇ ଜାଣିବାକୁ ହେବ; ବିଶେଷକୁ ଜାଣିବାକୁ ହେଲେ ସାଧାରଣ ଭିତର ଦେଇ ଜାଣିବାକୁ ହେବ । ସେହି ନିର୍ଗୁଣ ସତ୍ତା ହିଁ ବାସ୍ତବିକ ସତ୍ୟ, ସେ ମନୁଷ୍ୟର ଆତ୍ମା-ସ୍ୱରୂପ—ଏହି ସଗୁଣ ବ୍ୟକ୍ତି ପୁରୁଷକୁ ଚରମ ସତ୍ୟ ବୋଲି କୁହାଯାଇ ନାହିଁ ।

ଏ ସମ୍ବନ୍ଧରେ ଅନେକ ପ୍ରଶ୍ନ ଉଠିବ । ମୁଁ କ୍ରମଶଃ ସେହିଗୁଡ଼ିକର ଉତ୍ତର ଦେବାକୁ ଚେଷ୍ଟା କରିବି । ଅନେକ କୂଟ ପ୍ରଶ୍ନ ଉଠିବ, କିନ୍ତୁ ସେଗୁଡ଼ିକର ମୀମାଂସା ପୂର୍ବରୁ ଆମେମାନେ ଅଦ୍ୱୈତବାଦ କଅଣ କହେ, ତାହା ବୁଝିବାକୁ ଚେଷ୍ଟା କରିବା । ଅଦ୍ୱୈତବାଦ କହେ—ଏହି ଯେଉଁ ବ୍ରହ୍ମାଣ୍ଡ ଦେଖୁଛ, ଏହାର ଏକମାତ୍ର ଅସ୍ତିତ୍ୱ ଅଛି, ଅନ୍ୟତ୍ର ସତ୍ୟର ଅନ୍ୱେଷଣ କରିବା ଆଦୌ ଦରକାର ନାହିଁ । ସ୍ଥୂଳ ସୂକ୍ଷ୍ମ ସମସ୍ତ ଏଠାରେ, କାର୍ଯ୍ୟକାରଣ ସବୁ ଏଠାରେ, ଜଗତର ବ୍ୟାଖ୍ୟା ଏଠାରେ ହିଁ ରହିଛି । ଯାହା ବିଶେଷ ବୋଲି ପରିଚିତ, ତାହା ସେହି ସର୍ବାନୁସ୍ୟୂତ ସତ୍ତାର ସୂକ୍ଷ୍ମ ଭାବରେ ପୁନରାବୃତ୍ତିମାତ୍ର । ଆମେମାନେ ଆମମାନଙ୍କର ଆତ୍ମା ସମ୍ବନ୍ଧରେ ଆଲୋଚନା କରି ଜଗତ ସମ୍ବନ୍ଧରେ ଗୋଟିଏ ଧାରଣା କରିଥାଉ । ଏହି ଅନ୍ତର୍ଜଗତ ସମ୍ବନ୍ଧରେ ଯାହା ସତ୍ୟ, ବହିର୍ଜଗତ ସମ୍ବନ୍ଧରେ ମଧ୍ୟ ତାହା ହିଁ ସତ୍ୟ । ସ୍ୱର୍ଗ ନରକ ବୋଲି ବାସ୍ତବିକ ଯଦି କୌଣସି ସ୍ଥାନ ଥାଏ, ତାହା ମଧ୍ୟ ଏହି ଜଗତର ଅନ୍ତର୍ଗତ, ସମୁଦାୟ ମିଶି ଏହି ଗୋଟିଏ ବ୍ରହ୍ମାଣ୍ଡ ହୋଇଛି । ଅତଏବ ପ୍ରଥମ କଥା ଏହି ଯେ ନାନା କ୍ଷୁଦ୍ର କ୍ଷୁଦ୍ର ପରମାଣୁର ସମଷ୍ଟି ରୂପେ ଯାହା ପ୍ରତିଭାତ ହୁଏ, ତାହା ଏକ ଅଖଣ୍ଡ ବସ୍ତୁ ଏବଂ ଆମେମାନେ ପ୍ରତ୍ୟେକେ ଯେପରି ସେହି ଏକର ଅଂଶସ୍ୱରୂପ । ବ୍ୟକ୍ତି ଜୀବ-ଭାବରେ ଆମେମାନେ ଯେପରିକି ପୃଥକ୍ ହୋଇ ରହିଛୁ, କିନ୍ତୁ ସେହି ଗୋଟିଏ

---

* ଛାନ୍ଦୋଗ୍ୟ ଉପ., ୬।୮।୭

ସତ୍ୟସ୍ୱରୂପ । ପୁନଶ୍ଚ ଆମେମାନେ ଯେତେ ନିଜକୁ ଏହାଠାରୁ କମ ପୃଥକ୍ ବୋଲି ମନେକରିବା, ଆମମାନଙ୍କ ପକ୍ଷରେ ସେତେ ବେଶୀ ମଙ୍ଗଳ ଏବଂ ଯେତେ ଆମେମାନେ ଏ ସମଷ୍ଟିଠାରୁ ନିଜକୁ ପୃଥକ୍ ବୋଲି ଭାବିବା, ସେତେ ଆମମାନଙ୍କର କଷ୍ଟ ବଢ଼ିବ । ଏହି ଅଦ୍ୱୈତ ତତ୍ତ୍ୱରୁ ଆମେମାନେ ନୀତିର ମୂଳ ଭିତ୍ତି ପାଉ; ମୁଁ ସ୍ପର୍ଦ୍ଧା କରି କହିପାରେ, ଆଉ କୌଣସି ମତରୁ ଆମେମାନେ କୌଣସି ପ୍ରକାର ନୀତିତତ୍ତ୍ୱ ପ୍ରାପ୍ତ ହେଉ ନାହିଁ । ଆମେମାନେ ଜାଣୁ, ନୀତିର ପ୍ରାଚୀନତମ ଧାରଣା ଥିଲା—କୌଣସି ପୁରୁଷବିଶେଷ ଅଥବା କେତେଗୁଡ଼ିଏ ପୁରୁଷଙ୍କର ଯାହା ଇଚ୍ଛା ତାହା ହିଁ କର୍ତ୍ତବ୍ୟ । ବର୍ତ୍ତମାନ ଆଉ କେହି ଏହା ମାନିବାକୁ ପ୍ରସ୍ତୁତ ନୁହନ୍ତି; କାରଣ ଏହା ଆଂଶିକ ବ୍ୟାଖ୍ୟା ମାତ୍ର । ହିନ୍ଦୁମାନେ କହନ୍ତି—ଏହି କାର୍ଯ୍ୟ କରିବା ଉଚିତ ନୁହେଁ, କାରଣ, ବେଦ ଏହା ନିଷେଧ କରୁଛି; କିନ୍ତୁ ଖ୍ରୀଷ୍ଟିୟାନ ବେଦର ପ୍ରମାଣ ସ୍ୱୀକାର କରିବାକୁ ପ୍ରସ୍ତୁତ ନୁହନ୍ତି । ଖ୍ରୀଷ୍ଟିୟାନମାନେ କହନ୍ତି—ଏ କାମ କର ନାହିଁ, ସେ କାମ କର ନାହିଁ, କାରଣ ବାଇବେଲ୍‌ରେ ଏହି ସମସ୍ତ କାର୍ଯ୍ୟ କରିବା ନିଷିଦ୍ଧ ଅଛି । ଯେଉଁମାନେ ବାଇବେଲ୍ ମାନନ୍ତି ନାହିଁ, ସେମାନେ ଅବଶ୍ୟ ଏ କଥା ଶୁଣିବେ ନାହିଁ । ଆମମାନଙ୍କୁ ଏପରି ଗୋଟିଏ ତତ୍ତ୍ୱ ବାହାର କରିବାକୁ ପଡ଼ିବ, ଯାହା ଏହି ନାନାବିଧ ବିଭିନ୍ନ ଭାବର ସମନ୍ୱୟ କରିପାରେ । ଯେପରି ଲକ୍ଷ ଲକ୍ଷ ଲୋକ ସଗୁଣ ସୃଷ୍ଟିକର୍ତ୍ତାଙ୍କୁ ବିଶ୍ୱାସ କରିବାକୁ ପ୍ରସ୍ତୁତ, ସେହିପରି ଏହି ଜଗତରେ ସହସ୍ର ସହସ୍ର ମନୀଷୀ ଅଛନ୍ତି, ଯାହାଙ୍କ ପକ୍ଷରେ ଏହି ସମସ୍ତ ଧାରଣା ପର୍ଯ୍ୟାପ୍ତ ବୋଲି ବୋଧହୁଏ ନାହିଁ । ସେମାନେ ଏହା ଅପେକ୍ଷା ଉଚ୍ଚତର କିଛି ଆଶା କରନ୍ତି ଏବଂ ଯେତେବେଳେ ଧର୍ମସମ୍ପ୍ରଦାୟଗୁଡ଼ିକ ଏହି ସମସ୍ତ ମନୀଷୀଙ୍କୁ ନିଜ ଭିତରେ ଅନ୍ତର୍ଭୁକ୍ତ କରିବା ଭଳି ଉଦାରଭାବାପନ୍ନ ହୋଇ ନାହାନ୍ତି, ସେତେବେଳେ ଏହି ଫଳ ହୋଇଛି ଯେ, ସମାଜର ଉଜ୍ଜ୍ୱଳତମ ରତ୍ନଗୁଡ଼ିକୁ ଧର୍ମସମ୍ପ୍ରଦାୟ ପରିତ୍ୟାଗ କରିଛନ୍ତି । ବର୍ତ୍ତମାନ କାଳରେ ପ୍ରଧାନତଃ ୟୁରୋପଖଣ୍ଡରେ ଏହା ଯେତେ ସ୍ପଷ୍ଟ ଦେଖାଯାଉଛି, ଅନ୍ୟ କେଉଁଠାରେ ସେପରି ଦେଖାଯାଇ ନାହିଁ ।

ମନୀଷୀମାନଙ୍କୁ ଧର୍ମ ଭିତରେ ରଖିବାକୁ ହେଲେ ଧର୍ମକୁ ଅବଶ୍ୟ ଖୁବ୍ ଉଦାର ହେବାକୁ ପଡ଼ିବ । ଧର୍ମ ଯାହା କିଛି କହେ, ସେସବୁକୁ ଯୁକ୍ତିର କଷଟିରେ ପକାଇ ପରୀକ୍ଷା କରିବା ଆବଶ୍ୟକ । ସକଳ ଧର୍ମ ଯେ କାହିଁକି ଏହି ଗୋଟିଏ ଦାବୀ କରିଥାଆନ୍ତି ଯେ, ସେମାନେ ଯୁକ୍ତିଦ୍ୱାରା ପରୀକ୍ଷିତ ହେବାକୁ ଚାହାନ୍ତି ନାହିଁ, ଏକଥା କେହି କହିପାରିବେ ନାହିଁ । ବାସ୍ତବିକ ଏହାର କାରଣ—ମୂଳରେ ଗଲ୍‌ତି ରହିଛି । ଯୁକ୍ତିର ମାନଦଣ୍ଡ ବ୍ୟତୀତ ଧର୍ମ ବିଷୟରେ କୌଣସି ପ୍ରକାର ବିଚାର ବା ସିଦ୍ଧାନ୍ତ ସମ୍ଭବ ନୁହେଁ । କୌଣସି ଧର୍ମ ହୁଏତ କିଛି ବୀଭତ୍ସ କର୍ମ କରିବାକୁ ଆଜ୍ଞା ଦେଲେ । ...ମନେକର, ମୁସଲମାନ ଧର୍ମର କୌଣସି ଆଦେଶ ଉପରେ ଜଣେ ଖ୍ରୀଷ୍ଟିୟାନ ଗୋଟିଏ ଦୋଷାରୋପ କଲେ ଏବଂ ମୁସଲମାନ ସ୍ୱଭାବତଃ ପ୍ରଶ୍ନ କଲେ, 'ତୁମେ

କିପରି ଜାଣିଲ ଏହା ଭଲ କି ମନ୍ଦ ? ତୁମର ଭଲ-ମନ୍ଦର ଧାରଣା ତୁମ ଶାସ୍ତ୍ରରୁ ତୁମେ ପାଇଛ । ମୋର ଶାସ୍ତ୍ର କହୁଛି, ଏହା ସତ୍କାର୍ଯ୍ୟ ।' ଯଦି ତୁମେ କହ, ତୁମର ଶାସ୍ତ୍ର ପ୍ରାଚୀନ, ତାହାହେଲେ ବୌଦ୍ଧମାନେ କହିବେ, 'ଆମମାନଙ୍କର ଶାସ୍ତ୍ର ତୁମ-ମାନଙ୍କ ଅପେକ୍ଷା ପ୍ରାଚୀନତର ।' ଆଉ ହିନ୍ଦୁମାନେ କହିବେ, ସେମାନଙ୍କର ଶାସ୍ତ୍ର ସର୍ବାପେକ୍ଷା ପ୍ରାଚୀନ । ଅତଏବ ଶାସ୍ତ୍ରର ଦୋହାଇ ଦେଲେ ଚଳିବ ନାହିଁ । ତୁମର ମାନଦଣ୍ଡ କ'ଣ ଯେଉଁଥିରେ ତୁମେ ଏସବୁକୁ ତଉଲି ପାରିବ ? ଖ୍ରୀଷ୍ଟିୟାନ କହିବେ, 'ଯୀଶୁଙ୍କର ପର୍ବତ ଉପରୁ ପ୍ରଦତ୍ତ ଉପଦେଶାବଳୀ' ଦେଖ; ମୁସଲମାନ କହିବେ, କୋରାନ ପ୍ରତି ଦୃଷ୍ଟି ଦିଅ । ମୁସଲମାନ କହିବେ, ଉଭୟଙ୍କ ମଧ୍ୟରେ ଶ୍ରେଷ୍ଠ କିଏ, ତାହା କିଏ ବିଗ୍ଭର କରିବ, ମଧ୍ୟସ୍ଥ କିଏ ହେବ ? ବାଇବେଲ୍ ଓ କୋରାନ୍ ଭିତରେ ଯେତେବେଳେ ବିବାଦ, ସେତେବେଳେ ଉଭୟଙ୍କ ମଧ୍ୟରୁ କେହିହେଲେ ମଧ୍ୟସ୍ଥ ହୋଇପାରିବେ ନାହିଁ । କୌଣସି ସ୍ୱତନ୍ତ୍ର ବ୍ୟକ୍ତି ଏହାର ମୀମାଂସକ ହେଲେ ଭଲ ହୁଅନ୍ତା । ଏହି କାର୍ଯ୍ୟ କୌଣସି ଗ୍ରନ୍ଥ କରିପାରିବ ନାହିଁ; ସାର୍ବଭୌମ କିଛି ଏହାର ମୀମାଂସକ ହେବା ଆବଶ୍ୟକ । ଯୁକ୍ତି ଅପେକ୍ଷା ସାର୍ବଭୌମ ଆଉ କଅଣ ଅଛି ? କେହି କେହି କହନ୍ତି ଯୁକ୍ତି ସର୍ବଦା ସତ୍ୟାନୁସନ୍ଧାନରେ ସମର୍ଥ ନୁହେଁ । ଅନେକ ସମୟରେ ଏହା ଭ୍ରମରେ ପତିତ ହୁଏ ବୋଲି ସିଦ୍ଧାନ୍ତ ହୋଇଛି ଯେ, କୌଣସି ପୁରୋହିତ-ସମ୍ପ୍ରଦାୟର ଶାସନରେ ବିଶ୍ୱାସ କରିବାକୁ ହେବ ।···ମୁଁ କିନ୍ତୁ କହେ, ଯଦି ଯୁକ୍ତି ଦୁର୍ବଳ ହୁଏ, ତେବେ ପୁରୋହିତ-ସମ୍ପ୍ରଦାୟ ଆହୁରି ଅଧିକ ଦୁର୍ବଳ; ମୁଁ ସେମାନଙ୍କ କଥା ନ ଶୁଣି ଯୁକ୍ତିକୁ ଶୁଣିବି; କାରଣ, ଯୁକ୍ତିରେ ଯେତେ ଦୋଷ ଥାଉ ପଛକେ ଏଥିରୁ କିଛି ସତ୍ୟ ପାଇବାର ସମ୍ଭାବନା ଅଛି; କିନ୍ତୁ ଅନ୍ୟ କୌଣସି ଉପାୟରେ ସତ୍ୟଲାଭର କୌଣସି ସମ୍ଭାବନା ନାହିଁ ।

ଅତଏବ ଆମମାନଙ୍କୁ ଯୁକ୍ତିର ଅନୁସରଣ କରିବାକୁ ହେବ ଏବଂ ଯେଉଁମାନେ ଯୁକ୍ତିର ଅନୁସରଣ ନ କରି କୌଣସି ବିଶ୍ୱାସରେ ଉପନୀତ ହୁଅନ୍ତି, ସେମାନଙ୍କ ପ୍ରତି ସହାନୁଭୂତିଶୀଳ ହେବାକୁ ପଡ଼ିବ । କାରଣ କାହାରି ମତକୁ ଅନୁସରଣ କରି କୋଡ଼ିଏ ଲକ୍ଷ ଦେବତାଙ୍କୁ ବିଶ୍ୱାସ କରିବାଠାରୁ ଯୁକ୍ତିକୁ ଅନୁସରଣ କରି ନାସ୍ତିକ ହେବା ବରଂ ଭଲ । ଆମେ ଚାହୁଁ ଉନ୍ନତି, ବିକାଶ, ପ୍ରତ୍ୟକ୍ଷାନୁଭୂତି । କୌଣସି ମତ ଅବଲମ୍ବନ କରି ମନୁଷ୍ୟ ବଡ଼ ହୁଏ ନାହିଁ । କୋଟି କୋଟି ଶାସ୍ତ୍ର ମଧ୍ୟ ଆମମାନଙ୍କୁ ପବିତ୍ର ହେବାରେ ସାହାଯ୍ୟ କରିପାରିବ ନାହିଁ । ପବିତ୍ର ହେବାର ଶକ୍ତି ଏକମାତ୍ର ଆମମାନଙ୍କ ଭିତରେ ଅଛି । ପ୍ରତ୍ୟକ୍ଷାନୁଭୂତି ହିଁ ଆମମାନଙ୍କୁ ପବିତ୍ର ହେବାରେ ସାହାଯ୍ୟ କରେ ଏବଂ ଏହି ପ୍ରତ୍ୟକ୍ଷାନୁଭୂତି ମନନରୁ ଆସିଥାଏ । ମନୁଷ୍ୟ ଚିନ୍ତା କରେ, ମୃତ୍ତିକାଖଣ୍ଡ କଦାପି ଚିନ୍ତା କରେ ନାହିଁ । ମୃତ୍ତିକା ସବୁ କିଛି ବିଶ୍ୱାସ କରେ, ଏ କଥା ମାନିନେଲେ ମଧ୍ୟ ତାହା ମୃତ୍ତିକାଖଣ୍ଡ ହିଁ ରହିଥାଏ । ଗୋଟିଏ ଗାଈକୁ ଯାହା ଇଚ୍ଛା ତାହା ବିଶ୍ୱାସ କରାଇ ଦିଆଯାଇପାରେ । କୁକୁର

ସର୍ବାପେକ୍ଷା ଚନ୍ଦ୍ରାଳୀନ ଜନ୍ତୁ । ଏମାନେ କିନ୍ତୁ ଯେଉଁ କୁକୁର, ଯେଉଁ ଗାଈ, ଯେଉଁ ମୃତ୍ତିକାଖଣ୍ଡ, ସେହିପରି ରହିଯାଆନ୍ତି, କିଛି ଉନ୍ନତ କରିପାରନ୍ତି ନାହିଁ । କିନ୍ତୁ ମନୁଷ୍ୟର ମହତ୍ତ୍ୱ ଯେ ସେ ମନନଶୀଳ ଜୀବ, ପଶୁମାନଙ୍କ ସହିତ ଆମମାନଙ୍କର ଏହି ପ୍ରଭେଦ । ମନୁଷ୍ୟର ଏହି ମନନଶକ୍ତି ସ୍ୱାଭାବିକ ଧର୍ମ, ଅତଏବ ଆମମାନଙ୍କୁ ଅବଶ୍ୟ ମନର ଚାଳନା କରିବାକୁ ହେବ । ସେଥିପାଇଁ ମୁଁ ଯୁକ୍ତିରେ ବିଶ୍ୱାସ କରେ ଏବଂ ଯୁକ୍ତିର ଅନୁସରଣ କରେ; କେବଳ ଲୋକମାନଙ୍କର କଥାରେ ବିଶ୍ୱାସ କଲେ କଅଣ ଅନିଷ୍ଟ ହୁଏ, ତାହା ମୁଁ ଭଲଭାବରେ ଦେଖିଛି; କାରଣ, ମୁଁ ଯେଉଁ ଦେଶରେ ଜନ୍ମିଛି, ସେଠାରେ ଅନ୍ୟର କଥାରେ ବିଶ୍ୱାସ କରିବା ଚୂଡ଼ାନ୍ତରେ ପହଞ୍ଚିଛି ।

ହିନ୍ଦୁମାନେ ବିଶ୍ୱାସ କରନ୍ତି, ବେଦରୁ ଏ ସମସ୍ତ ସୃଷ୍ଟ ହୋଇଛି । ଗୋଟିଏ ଗୋରୁ ଯେ ଅଛି, ତାହା କିପରି ଜାଣିଲ ? କାରଣ, 'ଗୋ'ଶବ୍ଦ ବେଦରେ ରହିଛି । ମନୁଷ୍ୟ ଅଛି, କିପରି ଜାଣିଲ ? କାରଣ, ବେଦରେ 'ମନୁଷ୍ୟ' ଶବ୍ଦ ରହିଛି । ହିନ୍ଦୁମାନେ ଏପରି କହନ୍ତି । ଏହା ବିଶ୍ୱାସର ଚରମ ସୀମା । କିନ୍ତୁ ମୁଁ ଯେଉଁ ଭାବରେ ଏହାର ଆଲୋଚନା କରୁଛି, ସେ ଭାବରେ ଏହାର ଆଲୋଚନା ହୁଏ ନାହିଁ । କେତେଜଣ ତୀକ୍ଷ୍ଣବୁଦ୍ଧି ବ୍ୟକ୍ତି ଏହା ଉପରେ ଅପୂର୍ବ ଦାର୍ଶନିକ ତତ୍ତ୍ୱସବୁ ବାହାର କରିଛନ୍ତି ଏବଂ ସହସ୍ର ସହସ୍ର ବୁଦ୍ଧିମାନ ବ୍ୟକ୍ତି ସହସ୍ର ସହସ୍ର ବର୍ଷବ୍ୟାପୀ ଏହିସବୁ ତତ୍ତ୍ୱକୁ କାର୍ଯ୍ୟରେ ରୂପାୟିତ କରିବା ପାଇଁ ଜୀବନ ଉତ୍ସର୍ଗ କରିଛନ୍ତି । ଲୋକମାନଙ୍କ କଥାରେ ବିଶ୍ୱାସର ଯେତେ ଶକ୍ତି, ସେଥିରେ ବିପଦ ମଧ୍ୟ ସେତେ ବେଶୀ । ଏହା ମନୁଷ୍ୟଜାତିର ଉନ୍ନତିର ସ୍ରୋତକୁ ଅବରୁଦ୍ଧ କରେ । ଆମେ ବିସ୍ମୃତ ହେବା ଉଚିତ ନୁହେଁ ଯେ, ଆମମାନଙ୍କର ଉନ୍ନତି ଆବଶ୍ୟକ । ଆପେକ୍ଷିକ ସତ୍ୟ କ୍ଷେତ୍ରରେ ମଧ୍ୟ ସତ୍ୟଲାଭ ଅପେକ୍ଷା ସତ୍ୟର ଅନୁସନ୍ଧିତ୍ସା ହିଁ ଆମ ନିକଟରେ ବେଶୀ ଆବଶ୍ୟକ । ସତ୍ୟାନୁସନ୍ଧିତ୍ସା ହିଁ ଆମମାନଙ୍କର ଜୀବନ ।

ଅଦ୍ୱୈତବାଦର ବୈଶିଷ୍ଟ୍ୟ ହେଉଛି, ଏହାକୁ ଅନେକାଂଶରେ ନିଃସଂଶୟ ଭାବରେ ପ୍ରମାଣ କରାଯାଇପାରେ । ନିର୍ଗୁଣ ଈଶ୍ୱର, ପ୍ରକୃତରେ ତାଙ୍କର ଅବସ୍ଥିତି ଏବଂ ପ୍ରକୃତ ଯେ ସେହି ନିର୍ଗୁଣ ପୁରୁଷଙ୍କର ପରିଣାମ, ଏହି ସତ୍ୟଗୁଡ଼ିକ ଅନେକାଂଶରେ ପ୍ରମାଣଯୋଗ୍ୟ; କିନ୍ତୁ ଆଂଶିକ ଓ ସଗୁଣ ଈଶ୍ୱରଧାରଣାର ଅନ୍ୟାନ୍ୟ ଭାବଗୁଡ଼ିକ ବିଚାରସଙ୍ଗତ ନୁହେଁ । ଏହି ଯୁକ୍ତିସଂଗତ ଈଶ୍ୱରବାଦର ଗୋଟିଏ ମହତ୍ତ୍ୱ ହେଉଛି ଯେ ଏହି ଆଂଶିକ ଧାରଣାଗୁଡ଼ିକ ଏହାର ଅନ୍ତର୍ଭୁକ୍ତ ଏବଂ ଏହି ଧାରଣାଗୁଡ଼ିକ ଅନେକଙ୍କ ପକ୍ଷରେ ଆବଶ୍ୟକ । ଏହି ମତଗୁଡ଼ିକର ଅସ୍ତିତ୍ୱର ପ୍ରୟୋଜନୀୟତା ସମ୍ବନ୍ଧରେ ଏହା ହିଁ ଏକମାତ୍ର ଯୁକ୍ତି । ଅନେକ ଲୋକ କହନ୍ତି, ଏହି ସଗୁଣବାଦ ଅଯୌକ୍ତିକ ହେଲେ ମଧ୍ୟ ଅତ୍ୟନ୍ତ ଶାନ୍ତିପ୍ରଦ । ସେମାନେ ସୌଖୀନ ଧର୍ମ ଚାହାଁନ୍ତି, ତେଣୁ ସେମାନଙ୍କ ପାଇଁ ଏହାର ପ୍ରୟୋଜନ ଅଛି । ଅତି ଅଳ୍ପ ଲୋକ

ସତ୍ୟର ବିମଳ ଆଲୋକ ସହ୍ୟ କରିପାରନ୍ତି, ତଦନୁସାରେ ଜୀବନଯାପନ କରିବା ତ ଦୂରର କଥା । ଅତଏବ ଏହି ସୌଖୀନ ଧର୍ମ ମଧ୍ୟ ରହିବା ଦରକାର; କାଳକ୍ରମେ ଏହା ଅନେକଙ୍କୁ ଉଚ୍ଚତର ଧର୍ମଲାଭରେ ସାହାଯ୍ୟ କରିବ । ଯେଉଁ ମନର ପରିଧି ସୀମାବଦ୍ଧ ଏବଂ କ୍ଷୁଦ୍ର କ୍ଷୁଦ୍ର ସାମାନ୍ୟ ବସ୍ତୁ ହିଁ ଯେଉଁ ମନର ଉପାଦାନ, ସେହି ମନ କଦାପି ଉଚ୍ଚ ଚିନ୍ତା-ରାଜ୍ୟରେ ବିଚରଣ କରିବାକୁ ସାହସ କରିବ ନାହିଁ । କ୍ଷୁଦ୍ର କ୍ଷୁଦ୍ର ଦେବତା, ପ୍ରତିମା ଓ ଆଦର୍ଶର ଧାରଣା ସେମାନଙ୍କ ପାଇଁ ଉତ୍ତମ ଓ ଉପକାରୀ; କିନ୍ତୁ ତୁମମାନଙ୍କୁ ନିର୍ଗୁଣବାଦ ମଧ୍ୟ ବୁଝିବାକୁ ହେବ; ଏବଂ ଏହି ନିର୍ଗୁଣବାଦର ଆଲୋକରେ ହିଁ ଏହିଗୁଡ଼ିକର ଉପକାରିତା ବୁଝାଯାଇପାରେ ।

ଉଦାହରଣସ୍ୱରୂପ, ଜନ୍ ଷ୍ଟୁଆର୍ଟ ମିଲ୍‌ଙ୍କର କଥା ନିଅ । ସେ ଈଶ୍ୱରଙ୍କର ନିର୍ଗୁଣଭାବ ବୁଝନ୍ତି ଓ ବିଶ୍ୱାସ କରନ୍ତି; ସେ କହନ୍ତି, ସଗୁଣ ଈଶ୍ୱରଙ୍କର ଅସ୍ତିତ୍ୱ ପ୍ରମାଣ କରାଯାଏ ନାହିଁ । ମୁଁ ଏ ବିଷୟରେ ତାଙ୍କ ସହିତ ଏକମତ; ତେବେ ମୁଁ କହେ, ମନୁଷ୍ୟ ବୁଦ୍ଧି ସାହାଯ୍ୟରେ ନିର୍ଗୁଣର ଯେତେଦୂର ଧାରଣା କରିପାରେ, ତାହା ହିଁ ସଗୁଣ ଈଶ୍ୱର । ବସ୍ତୁତଃ ଜଗତ ଆଉ କଅଣ କି ? ବିଭିନ୍ନ ମନ ସେହି ନିର୍ଗୁଣର ଯେତେଦୂର ଧାରଣା କରିପାରେ ତାହା; ତାହା ଯେପରି ଆମ ସମ୍ମୁଖରେ ପ୍ରସାରିତ ଖଣ୍ଡିଏ ପୁସ୍ତକ ପରି ଏବଂ ପ୍ରତ୍ୟେକେ ନିଜ ନିଜର ବୁଦ୍ଧିଦ୍ୱାରା ଏହାକୁ ପାଠ କରୁଛନ୍ତି । ପ୍ରତ୍ୟେକଙ୍କୁ ଏହା ନିଜେ ନିଜେ ପାଠ କରିବାକୁ ହୁଏ । ସବୁ ମନୁଷ୍ୟଙ୍କର ବୁଦ୍ଧି କେତେକାଂଶରେ ସମାନ, ସେଥିପାଇଁ ମନୁଷ୍ୟର ବୁଦ୍ଧିରେ କେତେଗୁଡ଼ିଏ ଜିନିଷ ଏକପ୍ରକାର ବୋଲି ପ୍ରତୀତ ହୁଏ । ତୁମେ ଓ ମୁଁ ଉଭୟେ ଖଣ୍ଡିଏ ଚଉକି ଦେଖୁଛୁ । ଏହାଦ୍ୱାରା ପ୍ରମାଣିତ ହେଉଛି ଯେ, ଆମ ଉଭୟଙ୍କର ମନ କେତେକାଂଶରେ ଏକଭାବରେ ଗଠିତ । ମନେକର, ଅନ୍ୟ ଏକ ପ୍ରକାର ଇନ୍ଦ୍ରିୟସମ୍ପନ୍ନ ଜୀବ ଆସିଲେ; ସେ ଆଉ ଆମମାନଙ୍କର ଅନୁଭୂତ ଚଉକିକୁ ଦେଖିବ ନାହିଁ; କିନ୍ତୁ ଯେଉଁମାନେ ସମପ୍ରକୃତିକ, ସେମାନେ ସମସ୍ତେ ଏକପ୍ରକାରେ ଦେଖିବେ । ଅତଏବ ଏହି ଜଗତ ସେହି ନିରପେକ୍ଷ ଅପରିଣାମୀ ପାରମାର୍ଥିକ ସତ୍ତା ଏବଂ ବ୍ୟାବହାରିକ ସତ୍ତା—ତାହାର ହିଁ ବିଭିନ୍ନ ଅନୁଭୂତି । ଏହାର କାରଣ—ପ୍ରଥମତଃ ବ୍ୟାବହାରିକ ସତ୍ତା ସର୍ବଦା ସସୀମ; ଆମେମାନେ ଯେକୌଣସି ବ୍ୟାବହାରିକ ସତ୍ତା ଦେଖୁ, ଅନୁଭବ କରୁ ବା ଚିନ୍ତା କରୁ, ତାହା ଅବଶ୍ୟ ଆମମାନଙ୍କର ଜ୍ଞାନଦ୍ୱାରା ସୀମାବଦ୍ଧ; ଅତଏବ ତାହା ସସୀମ । ସଗୁଣ ଈଶ୍ୱରଙ୍କ ସମ୍ବନ୍ଧରେ ଆମମାନଙ୍କର ଯେପରି ଧାରଣା, ସେଥିରେ ସେ ଏକ ବ୍ୟାବହାରିକ ସତ୍ତା ମାତ୍ର । କାର୍ଯ୍ୟ-କାରଣ-ଭାବ କେବଳ ବ୍ୟାବହାରିକ ଜଗତରେ ସମ୍ଭବ । ଆମେ ଯେତେବେଳେ ତାଙ୍କୁ ଜଗତର କାରଣ ବୋଲି ଭାବୁ, ସେତେବେଳେ ଅବଶ୍ୟ ତାଙ୍କୁ ସସୀମ ବୋଲି ଧାରଣା କରୁ, ଯଦ୍ୟପି ବାସ୍ତବିକ ସେ ସେହି ନିର୍ଗୁଣ ବ୍ରହ୍ମ । ଆମେ ପୂର୍ବରୁ ଦେଖିଛୁ, ଏହି ଜଗତ ଆମ ବୁଦ୍ଧିଦ୍ୱାରା ଦୃଷ୍ଟ ସେହି ନିର୍ଗୁଣ ବ୍ରହ୍ମ ମାତ୍ର । ପ୍ରକୃତ ପକ୍ଷରେ

ଜଗତ ସେହି ନିର୍ଗୁଣ ସତ୍ତା ମାତ୍ର, ଆମ ବୁଦ୍ଧିଦ୍ୱାରା କେବଳ ଏହା ଉପରେ ନାମରୂପ ଲିପ୍ତ ହୋଇଯାଇଛି । ଏହି ଟେବୁଲ ଭିତରେ ଯାହା ସତ୍ୟ, ତାହା ସେହି ସତ୍ତା; ଏବଂ ଏହି ଟେବୁଲର ଆକୃତି ଓ ଅନ୍ୟାନ୍ୟ ଯାହା କିଛି—ସବୁ ସଦ୍ଗୁଣ ମାନବ-ବୁଦ୍ଧିଦ୍ୱାରା ତାହା ଉପରେ ଆରୋପିତ ହୋଇଛି ।

ଉଦାହରଣସ୍ୱରୂପ 'ଗତି'ର କଥା ନିଆଯାଉ । ବ୍ୟାବହାରିକ ସତ୍ତାର ଏହା ନିତ୍ୟସହଚର । ଏହା କିନ୍ତୁ ସେହି ସାର୍ବଭୌମ ପାରମାର୍ଥିକ ସତ୍ତା ସମ୍ବନ୍ଧରେ ପ୍ରଯୁକ୍ତ ହୋଇପାରିବ ନାହିଁ । ପ୍ରତ୍ୟେକ କ୍ଷୁଦ୍ର ଅଣୁ, ଜଗତର ଅନ୍ତର୍ଗତ ପ୍ରତ୍ୟେକ ପରମାଣୁ ସର୍ବଦା ପରିବର୍ତ୍ତନଶୀଳ ଓ ଗତିଶୀଳ; କିନ୍ତୁ ସମଷ୍ଟି ଦୃଷ୍ଟିରୁ ଜଗତ ଅପରିଣାମୀ; କାରଣ ଗତି ବା ପରିଣାମ ଆପେକ୍ଷିକ ଭାବମାତ୍ର; ଆମେମାନେ କେବଳ ଗତିହୀନ ପଦାର୍ଥ ତୁଳନାରେ କୌଣସି ଗତିଶୀଳ ପଦାର୍ଥର କଥା ଭାବିପାରୁ । ଗତି ବୁଝିବାକୁ ଗଲେ ଦୁଇଟି ପଦାର୍ଥ ଆବଶ୍ୟକ । ସମୁଦାୟ ସମଷ୍ଟି-ଜଗତ ଏକ ଅଖଣ୍ଡ ସତ୍ତାସ୍ୱରୂପ; ଏହାର ଗତି ଅସମ୍ଭବ । କାହା ତୁଳନାରେ ଏହାର ଗତି ହେବ ? ଏହାର ପରିଣାମ ହୁଏ, ଏପରି ମଧ୍ୟ କୁହାଯାଇପାରିବ ନାହିଁ । କାହା ତୁଳନାରେ ଏହାର ପରିଣାମ ହେବ ? ଅତଏବ ସେହି ସମଷ୍ଟି ନିରପେକ୍ଷ ସତ୍ତା; କିନ୍ତୁ ଏହାର ଅନ୍ତର୍ଗତ ପ୍ରତ୍ୟେକ ଅଣୁ ନିରନ୍ତର ଗତିଶୀଳ; ଏହା ପରିଣାମୀ ଓ ଅପରିଣାମୀ, ସଗୁଣ ଓ ନିର୍ଗୁଣ ଉଭୟ । ଏହା ହିଁ ଆମମାନଙ୍କର ଜଗତ, ଗତି ଏବଂ ଈଶ୍ୱର ସମ୍ବନ୍ଧରେ ଧାରଣା; 'ତତ୍ତ୍ୱମସି'ର ଅର୍ଥ ମଧ୍ୟ ଏହା । ଆମମାନଙ୍କୁ ଆମର ପ୍ରକୃତ ସ୍ୱରୂପ ଜାଣିବାକୁ ହେବ ।

ସଗୁଣ ମନୁଷ୍ୟ ତାହାର ଉତ୍ପତ୍ତି-ସ୍ଥଳ ଭୁଲିଯାଏ । ଯେପରି ସମୁଦ୍ରର ଜଳ ସମୁଦ୍ରରୁ ବାହାରିଆସି ସମ୍ପୂର୍ଣ୍ଣ ସ୍ୱତନ୍ତ୍ର ହୋଇଯାଏ, ସେହିପରି ଆମେମାନେ ସଗୁଣ ହୋଇ, ବ୍ୟଷ୍ଟି ହୋଇ ଆମମାନଙ୍କର ପ୍ରକୃତ ସ୍ୱରୂପ ଭୁଲିଯାଉଛୁ । ଅଦ୍ୱୈତବାଦ ଆମମାନଙ୍କୁ ବିଭିନ୍ନ ଭାବରେ ପ୍ରତୀୟମାନ ଜଗତକୁ ତ୍ୟାଗ କରିବାକୁ ଶିକ୍ଷା ଦିଏ ନାହିଁ, ବରଂ ଏହା କଅଣ, ତାହା ବୁଝିବାକୁ କହେ । ଆମେମାନେ ସେହି ଅନନ୍ତ ପୁରୁଷ, ସେହି ଆତ୍ମା । ଆମେମାନେ ଜଳସ୍ୱରୂପ ଏବଂ ଏହି ଜଳ ସମୁଦ୍ରରୁ ଉତ୍ପନ୍ନ—ଏହାର ସତ୍ତା ସମୁଦ୍ର ଉପରେ ନିର୍ଭର କରୁଛି । ବାସ୍ତବିକ ପକ୍ଷରେ ଏହା ସମୁଦ୍ର, ସମୁଦ୍ରର ଅଂଶ ନୁହେଁ, ଏହା ସମୁଦ୍ରସ୍ୱରୂପ; କାରଣ, ଯେଉଁ ଅନନ୍ତ ଶକ୍ତିରାଶି ବ୍ରହ୍ମାଣ୍ଡରେ ବିଦ୍ୟମାନ, ତାହା ସମୁଦାୟ ତୁମର ଓ ମୋର । ତୁମେ, ମୁଁ, ପ୍ରତ୍ୟେକ ବ୍ୟକ୍ତି ଯେପରି କେତେଗୁଡ଼ିଏ ପ୍ରଣାଳୀ ପରି—ଯାହା ଭିତର ଦେଇ ସେହି ଅନନ୍ତସତ୍ତା ନିଜକୁ ପ୍ରକାଶ କରୁଛି । ଏହି ଯେ ପରିବର୍ତ୍ତନ-ସମଷ୍ଟିକୁ ଆମେମାନେ 'କ୍ରମବିକାଶ' ନାମ ଦେଉ, ତାହା ବାସ୍ତବିକ ପକ୍ଷରେ ଆତ୍ମାର ନାନାପ୍ରକାର ଶକ୍ତିର ବିକାଶ ମାତ୍ର । ଅନନ୍ତ ନ ହୋଇ ଆମେମାନେ ରହିପାରିବା ନାହିଁ; ଆମର ସମସ୍ତ ଶକ୍ତି, ଜ୍ଞାନ ଓ ଆନନ୍ଦ ଧୀରେ ଧୀରେ ବିକଶିତ ହୋଇ ଅନନ୍ତ ସ୍ୱରୂପ ଲାଭ କରିବ । ଅନନ୍ତ ସତ୍ତା, ଅନନ୍ତ ଶକ୍ତି, ଅନନ୍ତ ଆନନ୍ଦ ଆମ ଭିତରେ ରହିଛି । ସେସବୁ ଯେ

ଆମେମାନେ ଉପାର୍ଜ୍ଜନ କରୁ ତାହା ନୁହେଁ, ତାହା ଆମ ଭିତରେ ରହିଛି—ପ୍ରକାଶ କରିବାକୁ ହେବ ମାତ୍ର ।

ଅଦ୍ୱୈତବାଦରୁ ଏହି ମହତ୍ତ୍ୱ ସତ୍ୟ ଆମେ ପାଉଛୁ; କିନ୍ତୁ ଏହା ବୁଝିବା ଅତ୍ୟନ୍ତ କଠିନ । ମୁଁ ବାଲ୍ୟକାଳରୁ ଦେଖିଆସୁଛି, ସମସ୍ତେ ଦୁର୍ବଳତା ଶିକ୍ଷା ଦେଉଥାନ୍ତି; ଜନ୍ମାବଧି ମୁଁ ଶୁଣିଆସୁଛି, ମୁଁ ଦୁର୍ବଳ । ବର୍ତ୍ତମାନ ମୋ ପକ୍ଷରେ ମୋର ସ୍ୱକୀୟ ଅନ୍ତର୍ନିହିତ ଶକ୍ତିକୁ ଉପଲବ୍ଧି କରିବା କଠିନ ହୋଇପଡ଼ୁଛି; କିନ୍ତୁ ଯୁକ୍ତିବିଚାର ଦ୍ୱାରା ଜାଣିପାରୁଛି, ମୋତେ କେବଳ ମୋର ନିଜର ଅନ୍ତର୍ନିହିତ ଶକ୍ତି ସମ୍ବନ୍ଧରେ ଜ୍ଞାନ ଲାଭ କରିବାକୁ ହେବ । ଏହି ଜଗତରେ ଆମେମାନେ ଯେଉଁ ଜ୍ଞାନ ଲାଭ କରୁ, ତାହା କେଉଁଠାରୁ ଆସେ ? ତାହା ଆମମାନଙ୍କ ଭିତରେ ରହିଛି । ବହିର୍ଜଗତରେ କୌଣସି ଜ୍ଞାନ ନାହିଁ । ଜ୍ଞାନ କଦାପି ଜଡ଼ରେ ନ ଥିଲା, ଏହା ସର୍ବଦା ମନୁଷ୍ୟ ଭିତରେ ଥିଲା । କେହି କଦାପି ଜ୍ଞାନର ସୃଷ୍ଟି କରି ନାହିଁ; ମନୁଷ୍ୟ ଏହାକୁ ଆବିଷ୍କାର କରେ, ଏହାକୁ ଭିତରୁ ବାହାର କରେ, ଏହା ସେଠାରେ ଆଗରୁ ରହିଛି । ଏହି ଯେଉଁ କ୍ରୋଶବ୍ୟାପୀ ବୃହତ୍ ବଟବୃକ୍ଷ ରହିଛି, ତାହା ଗୋଟିଏ ସର୍ଷପ-ବୀଜର ଏକ ଅଷ୍ଟମାଂଶ ପରି ଗୋଟିଏ କ୍ଷୁଦ୍ର ବୀଜ ମଧ୍ୟରେ ଥିଲା—ମହାଶକ୍ତିରାଶି ସେଥିରେ ନିହିତ ଥିଲା । ଆମେମାନେ ଜାଣୁ, ଗୋଟିଏ ଜୀବାଣୁକୋଷ ଭିତରେ ସମସ୍ତ ଶକ୍ତି—ପ୍ରଖର ବୁଦ୍ଧି କୁଣ୍ଡଳୀଭୂତ ହୋଇ ଅବସ୍ଥାନ କରେ; ଅନନ୍ତ ଶକ୍ତି କାହିଁକି ବା ସେଠାରେ ନ ରହି ପାରିବ ? ଆମେମାନେ ଜାଣୁ, ଏହା ସେଠାରେ ଅଛି । ପ୍ରହେଳିକା ପରି ମନେ ହେଲେ ସୁଦ୍ଧା ଏହା ସତ୍ୟ । ଆମେମାନେ ସମସ୍ତେ ଗୋଟିଏ ଜୀବାଣୁକୋଷରୁ ଉତ୍ପନ୍ନ ହୋଇଛୁ । ଆମମାନଙ୍କର ଯାହା କିଛି ଶକ୍ତି ରହିଛି, ତାହା ଏହି ଜୀବାଣୁକୋଷରେ କୁଣ୍ଡଳୀଭୂତ ହୋଇ ଅବସ୍ଥାନ କରୁଥିଲା । ତୁମେମାନେ କହିପାରିବ ନାହିଁ, ଏହା ଖାଦ୍ୟରୁ ପ୍ରାପ୍ତ; ରାଶୀକୃତ ଖାଦ୍ୟ ନେଇ ଖାଦ୍ୟର ଏକ ପର୍ବତ ପ୍ରସ୍ତୁତ କର, ଦେଖ, ତାହା ମଧ୍ୟରୁ କି ଶକ୍ତି ବାହାର ହୁଏ; ଆମମାନଙ୍କ ଭିତରେ ଶକ୍ତି ପୂର୍ବରୁ ନିହିତ ଥିଲା—ଅବ୍ୟକ୍ତ ଭାବରେ, କିନ୍ତୁ ନିଶ୍ଚୟ ଏହା ଥିଲା । ଅତଏବ ସିଦ୍ଧାନ୍ତ ଏହି : ମନୁଷ୍ୟର ଆତ୍ମାରେ ଅନନ୍ତ ଶକ୍ତି ରହିଛି, ମନୁଷ୍ୟ ଏହା ସମ୍ବନ୍ଧରେ ନ ଜାଣିଲେ ମଧ୍ୟ ଏହା ରହିଛି । କେବଳ ଏହାକୁ ଜାଣିବା ପାଇଁ ଅପେକ୍ଷା । ଧୀରେ ଧୀରେ ଏହି ଅନନ୍ତ ଶକ୍ତିମାନ ସତ୍ତା ଯେପରି ଜାଗରିତ ହୋଇ ନିଜର ଶକ୍ତି ସମ୍ବନ୍ଧରେ ସଚେତନ ହେଉଛି ଏବଂ ଯେତେ ସେ ଏହି ଜ୍ଞାନ ଲାଭ କରୁଛି, ସେତେ ତାହାର ବନ୍ଧନ ପରେ ବନ୍ଧନ ଖସିଯାଉଛି, ଶୃଙ୍ଖଳ ଛିଣ୍ଡିଯାଉଛି ଏବଂ ଏପରି ଗୋଟିଏ ଦିନ ଅବଶ୍ୟ ଆସିବ, ଯେତେବେଳେ ଏହି ଅନନ୍ତ ଜ୍ଞାନ ଅନୁଭୂତ ହେବ; ସେତେବେଳେ ଜ୍ଞାନବାନ୍ ଓ ଶକ୍ତିମାନ୍ ହୋଇ ଏହି ମନୁଷ୍ୟ ଉଠି ଠିଆ ହେବ । ଆସ, ଆମେ ସମସ୍ତେ ଏହି ଅବସ୍ଥା ଆଣିବାରେ ସାହାଯ୍ୟ କରିବା ।

# କର୍ମ-ଜୀବନରେ ବେଦାନ୍ତ

## ଚତୁର୍ଥ ପ୍ରସ୍ତାବ

[ଲଣ୍ଡନରେ ପ୍ରଦତ୍ତ ବକ୍ତୃତା—୧୮ ନଭେମ୍ବର, ୧୮୯୬]

ଆମେମାନେ ଏପର୍ଯ୍ୟନ୍ତ ସମଷ୍ଟିର ଆଲୋଚନା କରିଆସିଛୁ । ଆଜି ସକାଳେ ମୁଁ ତୁମମାନଙ୍କୁ ବ୍ୟଷ୍ଟି ସହିତ ସମଷ୍ଟିର ସମ୍ବନ୍ଧ ବିଷୟରେ ବେଦାନ୍ତର ମତ ବୁଝାଇବାକୁ ଚେଷ୍ଟା କରିବ । ଆମେମାନେ ପ୍ରାଚୀନତର ଦ୍ୱୈତବାଦୀ ମୂଳକ ବୈଦିକ ମତଗୁଡ଼ିକରେ ଦେଖିବାକୁ ପାଉ, ପ୍ରତ୍ୟେକ ଜୀବର ଗୋଟିଏ ନିର୍ଦ୍ଦିଷ୍ଟ ସସୀମ ଆତ୍ମା ଅଛି । ପ୍ରତ୍ୟେକ ଜୀବରେ ଅବସ୍ଥିତ ଏହି ବିଶେଷ ଆତ୍ମା ସମ୍ବନ୍ଧରେ ଅନେକ ପ୍ରକାର ମତବାଦ ପ୍ରଚଳିତ । ପ୍ରାଚୀନ ବୌଦ୍ଧ ଓ ପ୍ରାଚୀନ ବୈଦାନ୍ତିକମାନଙ୍କ ମଧ୍ୟରେ ପ୍ରଧାନ ବିଚାରର ବିଷୟ ଥିଲା—ବୈଦାନ୍ତିକମାନେ ସ୍ୱୟଂପୂର୍ଣ୍ଣ ଜୀବାତ୍ମାରେ ବିଶ୍ୱାସ କରୁଥିଲେ, ବୌଦ୍ଧମାନେ ଏପରି ଜୀବାତ୍ମାର ଅସ୍ତିତ୍ୱ ଏକାବେଳକେ ଅସ୍ୱୀକାର କରୁଥିଲେ । ମୁଁ ପୂର୍ବରୁ ତୁମମାନଙ୍କୁ କହିଛି, ଇଉରୋପରେ ଦ୍ରବ୍ୟଗୁଣ ସମ୍ବନ୍ଧରେ ଯେଉଁ ବିଚାର ଚାଲିଥିଲା, ଏହା ଠିକ୍ ତାହାରି ପରି । ଗୋଟିଏ ମତରେ ଗୁଣଗୁଡ଼ିକର ପଶ୍ଚାତ୍ତରେ ଦ୍ରବ୍ୟରୂପୀ କିଛି ଅଛି, ଯହିଁରେ ଗୁଣଗୁଡ଼ିକ ଲାଗିଥାଏ; ଅନ୍ୟ ଗୋଟିଏ ମତରେ ଦ୍ରବ୍ୟ ସ୍ୱୀକାର କରିବାର କିଛିମାତ୍ର ଆବଶ୍ୟକତା ନାହିଁ, ଗୁଣଗୁଡ଼ିକ ନିଜେ ନିଜେ ରହିପାରନ୍ତି । ଅବଶ୍ୟ ଆତ୍ମା ସମ୍ବନ୍ଧରେ ସର୍ବପ୍ରାଚୀନ ମତ ଅହଂ-ସାରୂପ୍ୟଗତ ଯୁକ୍ତି ଉପରେ ସ୍ଥାପିତ—କାଲିକାର ଯେଉଁ 'ମୁଁ' ଆଜିର ମଧ୍ୟ ସେହି 'ମୁଁ' ଏବଂ ଆଜିର 'ମୁଁ' ପୁଣି ଆଗାମୀ କାଲିର 'ମୁଁ' ହେବ । ଶରୀରର ସମସ୍ତ ପରିଣାମ ସତ୍ତ୍ୱେ ମୁଁ ବିଶ୍ୱାସ କରେ ଯେ, 'ମୁଁ' ସର୍ବଦା ଏକ ପ୍ରକାର । ଯେଉଁମାନେ ସୀମାବଦ୍ଧ ଅଥଚ ସ୍ୱୟଂପୂର୍ଣ୍ଣ ଜୀବାତ୍ମାରେ ବିଶ୍ୱାସ କରୁଥିଲେ, ଏହା ସେମାନଙ୍କର ପ୍ରଧାନ ଯୁକ୍ତି ଥିଲା ବୋଲି ବୋଧହୁଏ ।

ଅନ୍ୟ ଦିଗରେ, ପ୍ରାଚୀନ ବୌଦ୍ଧମାନେ ଏପ୍ରକାର ଜୀବାତ୍ମାକୁ ସ୍ୱୀକାର କରିବାର ପ୍ରୟୋଜନକୁ ଅସ୍ୱୀକାର କରୁଥିଲେ । ସେମାନେ ଯୁକ୍ତି କରୁଥିଲେ ଯେ, ଆମେମାନେ ଯାହା କିଛି ଜାଣୁ, ଅଥବା ଯାହା କିଛି ଜାଣିବା ସମ୍ଭବ, ସେସବୁ କେବଳ ଏହି ପରିଣାମ ମାତ୍ର । ଗୋଟିଏ ଅପରିବର୍ତ୍ତନୀୟ ଓ ଅପରିଣାମୀ ଦ୍ରବ୍ୟକୁ ସ୍ୱୀକାର କରିବା ବାହୁଲ୍ୟ ମାତ୍ର । ବାସ୍ତବିକ୍ ଯଦି ଏଭଳି ଅପରିଣାମୀ ବସ୍ତୁ କିଛି ଥାଏ, ଆମେମାନେ କଦାପି ଏହା ବୁଝିପାରିବୁ ନାହିଁ ଏବଂ କଦାପି ଏହାକୁ ପ୍ରତ୍ୟକ୍ଷ କରିପାରିବୁ ନାହିଁ । ବର୍ତ୍ତମାନ କାଳରେ ମଧ୍ୟ ଇଉରୋପରେ ଧର୍ମବାଦୀ ଓ ବିଜ୍ଞାନ-

ବାଦୀ ଏବଂ ଆଧୁନିକ ପ୍ରତ୍ୟକ୍ଷବାଦୀ ଓ ଅଜ୍ଞେୟବାଦୀମାନଙ୍କ ଭିତରେ ସେହିଭଳି ବିଗ୍ରହ ଚାଲିଛି ।* ଗୋଟିଏ ଦଳର ବିଶ୍ୱାସ—ଅପରିଣାମୀ ପଦାର୍ଥ କିଛି ଅଛି । ଏମାନଙ୍କର ସର୍ବଶେଷ ପ୍ରତିନିଧି ହାର୍ବର୍ଟ ସ୍ପେନ୍ସର୍ କହନ୍ତି, ଆମେମାନେ ଯେପରି ଅପରିଣାମୀ କୌଣସି ପଦାର୍ଥର ଆଭାସ ପାଇଥାଉଁ । କୋଁତେଙ୍କର ଶିଷ୍ୟମାନେ ଓ ଆଧୁନିକ ଅଜ୍ଞେୟବାଦୀଗଣ ଅନ୍ୟ ମତର ପ୍ରତିନିଧି । କିଛି ବର୍ଷ ପୂର୍ବେ ମି: ଫ୍ରେଡେରିକ୍ ହାରିସନ୍ ଓ ମି: ହାର୍ବର୍ଟ ସ୍ପେନ୍ସରଙ୍କ ମଧ୍ୟରେ ଯେଉଁ ତର୍କ ହୋଇ-ଥିଲା, ତୁମମାନଙ୍କ ମଧ୍ୟରୁ ଯେଉଁମାନେ ଏହା ଆଗ୍ରହର ସହିତ ଆଲୋଚନା କରିଥିଲେ, ସେମାନେ ମଧ୍ୟ ଏଥିରେ ସେହି ପ୍ରାଚୀନ ସମସ୍ୟା ଲକ୍ଷ୍ୟ କରିଥିବେ—ଗୋଟିଏ ଦଳ ପରିଣାମୀ ବସ୍ତୁସମୂହର ପଶ୍ଚାତ୍ତରେ କୌଣସି ଅପରିଣାମୀ ସତ୍ତାର ଅସ୍ତିତ୍ୱ ସ୍ୱୀକାର କରୁଛନ୍ତି, ଅନ୍ୟ ଦଳ ଏହା ସ୍ୱୀକାର କରିବାର ଆବଶ୍ୟକତାକୁ ଏକାବେଳକେ ଅସ୍ୱୀକାର କରୁଛନ୍ତି । ଗୋଟିଏ ଦଳ କହୁଛନ୍ତି, ଆମେମାନେ ଅପରିଣାମୀ ସତ୍ତାର ଧାରଣା ବ୍ୟତୀତ ପରିଣାମ ଭାବିପାରିବା ନାହିଁ; ଅନ୍ୟ ଦଳ ଯୁକ୍ତି ଦେଖାଉଛନ୍ତି—ଏଭଳି ସ୍ୱୀକାର କରିବାର କୌଣସି ପ୍ରୟୋଜନ ନାହିଁ, ଆମେମାନେ କେବଳ ପରିଣାମୀ ପଦାର୍ଥର ଧାରଣା କରିପାରୁ; ଅପରିଣାମୀ ସତ୍ତାକୁ ଆମେମାନେ ଜାଣିବାକୁ, ଅନୁଭବ କରିବାକୁ ବା ପ୍ରତ୍ୟକ୍ଷ କରିବାକୁ ଅକ୍ଷମ ।

ଭାରତରେ ଏହି ପ୍ରଶ୍ନର ସମାଧାନ ଅତି ପ୍ରାଚୀନ କାଳରେ ହୋଇପାରି ନଥିଲା । କାରଣ ଆମେମାନେ ଦେଖିଛୁ—ଗୁଣସମୂହର ପଶ୍ଚାତ୍ତରେ ଅବସ୍ଥିତ ନିର୍ଗୁଣ ପଦାର୍ଥର ସତ୍ତା କଦାପି ପ୍ରମାଣିତ କରାଯାଇପାରେ ନାହିଁ । କେବଳ ସେତିକି ନୁହେଁ, ଅହଂ-ସାରୂପ୍ୟଗତ ଆତ୍ମାର ପ୍ରମାଣ, ସ୍ମୃତିରୁ ଆତ୍ମାର ଅସ୍ତିତ୍ୱର ଯେଉଁ ଯୁକ୍ତି—କାଲି ଯେଉଁ ମୁଁ ଥିଲି, ଆଜି ମଧ୍ୟ ସେହି ମୁଁ ଅଛି, କାରଣ, ମୋର ଏହା ସ୍ମରଣ ଅଛି, ଅତଏବ ମୁଁ ବରାବର ଅଛି—ଏପରି ଯୁକ୍ତି ସମସ୍ତ ସାରହୀନ । ଗୋଟିଏ ଯୁକ୍ତି ଯାହା ସଚରାଚର କଥିତ ହୋଇଥାଏ, ତାହା କେବଳ କଥାର ଖେଳମାତ୍ର । 'ମୁଁ ଯାଉଛି,' 'ମୁଁ ଖାଉଛି,' 'ମୁଁ ସ୍ୱପ୍ନ ଦେଖୁଛି,' 'ମୁଁ ଶୋଇଛି,' 'ମୁଁ ଚାଲୁଛି'—ଏହିପରି କେତେଗୁଡ଼ିଏ କଥା ନେଇ ସେମାନେ କହନ୍ତି : କରିବା, ଯିବା, ସ୍ୱପ୍ନ ଦେଖିବା, ଏସବୁ କେବଳ ବିଭିନ୍ନ ପରିଣାମ; କିନ୍ତୁ ଏହା ମଧ୍ୟରେ 'ମୁଁ'ଟି ନିତ୍ୟ । ଅତଏବ ସେମାନେ ସିଦ୍ଧାନ୍ତ କରନ୍ତି ଯେ, ଏହି 'ମୁଁ' ନିତ୍ୟ ଓ ସ୍ୱୟଂ ଗୋଟିଏ ବ୍ୟକ୍ତି ଏବଂ ଏହି ପରିଣାମଗୁଡ଼ିକ ଶରୀରର ଧର୍ମ । ଏହି ଯୁକ୍ତି ଆପାତତଃ ଖୁବ୍ ଉପାଦେୟ ଓ ସୁସ୍ପଷ୍ଟ ବୋଧ ହେଲେ ମଧ୍ୟ ବାସ୍ତବିକ ଏହା କେବଳ କଥାର ଚାତୁରୀ ଉପରେ ସ୍ଥାପିତ । ଏହି 'ମୁଁ' ଏବଂ କରିବା, ଯିବା, ସ୍ୱପ୍ନ ଦେଖିବା ପ୍ରଭୃତି କାଗଜ-କଲମରେ ପୃଥକ୍ ହୋଇପାରେ; କିନ୍ତୁ ମନରେ କେହି ଏମାନଙ୍କୁ ପୃଥକ୍ କରି-ପାରନ୍ତି ନାହିଁ ।

---

* Religionist, Idealist, Realist, Agnostic

ଯେତେବେଳେ ମୁଁ ଖାଏ, ଖାଉଛି ବୋଲି ଚିନ୍ତା କରେ, ସେତେବେଳେ ଆହାର-କାର୍ଯ୍ୟ ସହିତ ମୋର ତାଦାତ୍ମ୍ୟଭାବ ହୋଇଯାଏ । ଯେତେବେଳେ ମୁଁ ଦୌଡ଼ୁଥାଏ, ସେତେବେଳେ 'ମୁଁ' ଓ 'ଦୌଡ଼ିବା' ଦୁଇଟି ପୃଥକ୍ ବସ୍ତୁ ହୋଇ ରହେ ନାହିଁ । ଅତଏବ ଏହି ଯୁକ୍ତି ଖୁବ୍ ଦୃଢ଼ ବୋଲି ବୋଧ ହୁଏ ନାହିଁ । ଯଦି ମୋର ଅସ୍ତିତ୍ୱର ସାରୂପ୍ୟ ମୋର ସ୍ମୃତିଦ୍ୱାରା ପ୍ରମାଣ କରିବାକୁ ହୁଏ, ତେବେ ମୁଁ ମୋର ଯେଉଁ ଅବସ୍ଥାସବୁ ଭୁଲିଯାଇଛି, ସେସବୁ ଅବସ୍ଥାରେ ମୁଁ ନ ଥିଲି ବୋଲି କହିବାକୁ ହେବ । ଆମେମାନେ ଏହା ମଧ୍ୟ ଜାଣୁ, ଅନେକ ଲୋକ ବିଶେଷ ବିଶେଷ ଅବସ୍ଥାରେ ସମୁଦାୟ ଅତୀତର କଥା ଏକାବେଳକେ ବିସ୍ମୃତ ହୋଇଯାଆନ୍ତି । ଅନେକ ଉନ୍ମାଦରୋଗଗ୍ରସ୍ତ ବ୍ୟକ୍ତି ନିଜକୁ କାଚନିର୍ମିତ ଅଥବା କୌଣସି ପଶୁ ବୋଲି ଭାବିବାର ଦେଖାଯାଏ । ଯଦି ସ୍ମୃତି ଉପରେ ସେହି ବ୍ୟକ୍ତିର ଅସ୍ତିତ୍ୱ ନିର୍ଭର କରେ, ତାହାହେଲେ ସେ ଅବଶ୍ୟ କାଚ ଅଥବା ପଶୁବିଶେଷ ହୋଇଯାଇଛି ବୋଲି କହିବାକୁ ହେବ; କିନ୍ତୁ ବାସ୍ତବିକ ଯେତେବେଳେ ତାହା ନୁହେଁ, ସେତେବେଳେ ଆମେମାନେ ଏହି ଅହଂ-ସାରୂପ୍ୟକୁ ସ୍ମୃତିବିଷୟକ ଅକିଞ୍ଚିତ୍କର ଯୁକ୍ତି ଉପରେ ସ୍ଥାପିତ କରିପାରିବା ନାହିଁ । ତେବେ କଅଣ ପ୍ରମାଣିତ ହେଲା ? ପ୍ରମାଣିତ ହେଲା ଯେ, ସୀମାବଦ୍ଧ ଅଥଚ ସମ୍ପୂର୍ଣ୍ଣ ଓ ନିତ୍ୟ ଅହଂର ସାରୂପ୍ୟ ଆମେମାନେ ଗୁଣ-ସମୂହରୁ ପୃଥକ୍ ଭାବରେ ସ୍ଥାପନ କରିପାରୁ ନାହିଁ । ପୁନଶ୍ଚ ଆମେମାନେ ଏପରି ସଙ୍କୀର୍ଣ୍ଣ କୌଣସି ସୀମାବଦ୍ଧ ଅସ୍ତିତ୍ୱ ପ୍ରମାଣ କରିପାରୁ ନାହିଁ, ଯାହା ସହିତ ଗୁଣଗୁଡ଼ିକ ସଂଯୁକ୍ତ ହୋଇ ରହିଛି ।

ଅପର ପକ୍ଷରେ ପ୍ରାଚୀନ ବୌଦ୍ଧମାନଙ୍କର ଏହି ମତ ଦୃଢ଼ତର ବୋଲି ବୋଧହୁଏ ଯେ, ଗୁଣସମୂହର ଅତିରିକ୍ତ କୌଣସି ବସ୍ତୁ ସମ୍ବନ୍ଧରେ ଆମେମାନେ କିଛି ଜାଣୁ ନାହିଁ ଏବଂ ଜାଣି ମଧ୍ୟ ପାରୁ ନାହିଁ । ସେମାନଙ୍କ ମତରେ ଅନୁଭୂତି ଓ ଭାବରୂପକ କେତେଗୁଡ଼ିଏ ଗୁଣର ସମଷ୍ଟି ହିଁ ଆତ୍ମା । ଏହି ଗୁଣରାଶି ହିଁ ଆତ୍ମା ଏବଂ ସେମାନେ କ୍ରମାଗତ ପରିବର୍ତ୍ତନଶୀଳ । ଅଦ୍ୱୈତବାଦଦ୍ୱାରା ଏହି ଉଭୟ ମତର ସମନ୍ୱୟ ସାଧିତ ହୁଏ ।

ଅଦ୍ୱୈତବାଦର ସିଦ୍ଧାନ୍ତ ଏହି : ଆମେମାନେ ବସ୍ତୁକୁ ଗୁଣରୁ ପୃଥକ୍‌ରୂପେ ଚିନ୍ତା କରିପାରୁ ନାହିଁ, ଏ କଥା ସତ୍ୟ ଏବଂ ପରିଣାମ ଓ ଅପରିଣାମ ଏହି ଦୁଇଟିକୁ ଏକା ସଙ୍ଗରେ ଆମେ ଭାବିପାରୁ ନାହିଁ; ଏଭଳି ଚିନ୍ତା କରିବା ଅସମ୍ଭବ; କିନ୍ତୁ ଯାହାକୁ ଦ୍ରବ୍ୟ କହୁଛୁ, ତାହା ହିଁ ଗୁଣ । ଦ୍ରବ୍ୟ ଓ ଗୁଣ ପୃଥକ୍ ନୁହେଁ । ଅପରି-ଣାମୀ ବସ୍ତୁ ହିଁ ପରିଣାମୀରୂପେ ପ୍ରତିଭାତ ହେଉଛି । ଏହି ଅପରିଣାମୀ ସତ୍ତା ପରିଣାମୀ ଜଗତଠାରୁ ସମ୍ପୂର୍ଣ୍ଣ ପୃଥକ୍ ନୁହେଁ । ପାରମାର୍ଥିକ ସତ୍ତା ବ୍ୟାବହାରିକ ସତ୍ତାଠାରୁ ସମ୍ପୂର୍ଣ୍ଣ

ପୃଥକ୍ ବସ୍ତୁ ନୁହେଁ; କିନ୍ତୁ ସେହି ପାରମାର୍ଥିକ ସତ୍ତା ହିଁ ବ୍ୟାବହାରିକ ସତ୍ତା ହୋଇଛି । ଅପରିଣାମୀ ଆତ୍ମା ଅଛନ୍ତି ଏବଂ ଆମେମାନେ ଯାହାକୁ ଅନୁଭୂତି, ଭାବ ପ୍ରଭୃତି ଆଖ୍ୟା ଦେଇଥାଉ, ଏପରିକି ଗୋଟିଏ ଦୃଷ୍ଟିରୁ ଶରୀର ମଧ୍ୟ ସେହି ଆତ୍ମାସ୍ୱରୂପ । ଆମମାନଙ୍କ ଶରୀର ଅଛି, ମନ ଅଛି, ଆତ୍ମା ଅଛି, ଏପରି ଭାବିବା ଆମର ଅଭ୍ୟାସଗତ ହୋଇ-ଯାଇଛି, କିନ୍ତୁ ପ୍ରକୃତ ପକ୍ଷରେ କେବଳ ଗୋଟିଏ ବସ୍ତୁ ହିଁ ରହିଛି ।

ଯେତେବେଳେ ମୁଁ ନିଜକୁ ଶରୀର ବୋଲି ଚିନ୍ତା କରେ, ସେତେବେଳେ ମୁଁ ଶରୀର ମାତ୍ର; 'ମୁଁ ଏହାର ଅତିରିକ୍ତ କିଛି' କହିବା ବୃଥା । ଯେତେବେଳେ ମୁଁ ନିଜକୁ ଆତ୍ମା ବୋଲି ଚିନ୍ତା କରେ, ସେତେବେଳେ ଦେହ କୁଆଡ଼େ ଉଡ଼ିଯାଏ, ଦେହାନୁଭୂତି ଆଉ ରହେ ନାହିଁ । ଦେହଜ୍ଞାନ ଦୂର ନ ହେଲେ ଆତ୍ମାନୁଭୂତି କଦାପି ହୁଏ ନାହିଁ । ଗୁଣର ଅନୁଭୂତି ଚାଲି ନ ଗଲେ ବସ୍ତୁର ଅନୁଭବ କେହି କରି-ପାରନ୍ତି ନାହିଁ ।

ଏହା ପରିଷ୍କାର କରି ବୁଝାଇବା ସକାଶେ ଅଦ୍ୱୈତବାଦୀମାନଙ୍କର ପ୍ରାଚୀନ ରଜ୍ଜୁ-ସର୍ପର ଦୃଷ୍ଟାନ୍ତ ଗ୍ରହଣ କରାଯାଇପାରେ । ଯେତେବେଳେ ଲୋକମାନେ ଦଉଡ଼ିକୁ ସାପ ବୋଲି ଭୁଲ କରନ୍ତି, ସେତେବେଳେ ତାଙ୍କ ପାଇଁ ଦଉଡ଼ି ରହେ ନାହିଁ ଏବଂ ଯେତେବେଳେ ସେମାନେ ଏହାକୁ ଯଥାର୍ଥ ଦଉଡ଼ି ବୋଲି ଜାଣନ୍ତି, ସେତେବେଳେ ସେମାନଙ୍କର ସର୍ପଜ୍ଞାନ ଅନ୍ତର୍ହିତ ହୁଏ, ସେତେବେଳେ କେବଳ ଦଉଡ଼ିଟି ଅବଶିଷ୍ଟ ଥାଏ । ବିଶ୍ଳେଷଣ-ପ୍ରଣାଳୀ ଅନୁସରଣ କଲେ ଆମମାନଙ୍କର ଏହି ଦ୍ୱିତ୍ୱ ବା ତ୍ରିତ୍ୱର ଅନୁଭୂତି ହୋଇଥାଏ । ବିଶ୍ଳେଷଣ ପରେ ପୁସ୍ତକରେ ଏସବୁ ଲେଖା ହୋଇଛି । ଆମେମାନେ ଏହିସବୁ ଗ୍ରନ୍ଥ ପାଠ କରି ଅଥବା ଏସବୁ ଶୁଣି ଶୁଣି ଏହି ଭ୍ରମରେ ପଡ଼ିଥାଉ ଯେ, ଆମମାନଙ୍କର ଆତ୍ମା ଓ ଦେହ ଉଭୟର ଏକତ୍ର ଅନୁଭବ ହୋଇପାରେ—ବାସ୍ତବିକ କିନ୍ତୁ ତାହା କଦାପି ହୁଏ ନାହିଁ । ହୁଏତ ଦେହ, ନୋଚେତ୍ ଆତ୍ମାର ଅନୁଭବ ହୋଇଥାଏ । ଏହା ପ୍ରମାଣ କରିବା ପାଇଁ କୌଣସି ଯୁକ୍ତିର ପ୍ରୟୋଜନ ହୁଏ ନାହିଁ । ତୁମେ ନିଜେ ନିଜେ ଏହା ପରୀକ୍ଷା କରି ଦେଖିପାର ।

ତୁମେ ନିଜକୁ ଦେହଶୂନ୍ୟ ଆତ୍ମା ବୋଲି ଭାବିବାକୁ ଚେଷ୍ଟା କର, ତୁମେ ଦେଖିବ, ଏହା ପ୍ରାୟ ଅସମ୍ଭବ । ଯେଉଁ ଅଳ୍ପ ସଂଖ୍ୟକ ବ୍ୟକ୍ତିଙ୍କ ପକ୍ଷରେ ଏହା ସମ୍ଭବ, ସେମାନେ ଯେତେବେଳେ ନିଜକୁ ଆତ୍ମାସ୍ୱରୂପ ଅନୁଭବ କରନ୍ତି, ସେତେ-ବେଳେ ସେମାନଙ୍କର ଦେହଜ୍ଞାନ ନ ଥାଏ । ତୁମେମାନେ ହୁଏତ ଦେଖିଛ ବା ଶୁଣିଛ, ଅନେକ ବ୍ୟକ୍ତି ବଶୀକରଣ (Hypnotism) ପ୍ରଭାବରୁ ଅଥବା ମୂର୍ଚ୍ଛାରୋଗ ବା ଅନ୍ୟ କୌଣସି କାରଣରୁ ସମୟ ସମୟରେ ଗୋଟିଏ ବିଶେଷ ଅବସ୍ଥା ଲାଭ

କରନ୍ତି । ସେମାନଙ୍କ ଅଭିଜ୍ଞତାରୁ ଜଣାଯାଏ ଯେ, ସେତେବେଳେ ସେମାନେ ନିଜ ଅନ୍ତରରେ କିଛି ଅନୁଭବ କରୁଥିଲେ ଏବଂ ସେତେବେଳେ ସେମାନଙ୍କର ବାହ୍ୟଜ୍ଞାନ ଆଦୌ ନ ଥିଲା । ଅତଏବ ଅସ୍ତିତ୍ୱ ଗୋଟିଏ, ଦୁଇଟି ନୁହେଁ । ସେହି ଗୋଟିକ ନାନାରୂପରେ ପ୍ରତୀୟମାନ ହେଉଛି ଏବଂ ସେମାନଙ୍କ ମଧ୍ୟରେ କାର୍ଯ୍ୟକାରଣ-ସମ୍ବନ୍ଧ ଅଛି । କାର୍ଯ୍ୟକାରଣ-ସମ୍ବନ୍ଧର ଅର୍ଥ ପରିଣାମ, ଗୋଟିଏ ଅନ୍ୟଟିରେ ପରିଣତ ହୁଏ । ସମସ୍ତ ସମୟରେ ଯେପରି କାରଣର ଅନ୍ତର୍ଦ୍ଧାନ ହୁଏ ଓ ତତ୍ସ୍ଥଳେ କାର୍ଯ୍ୟ ଅବଶିଷ୍ଟ ଥାଏ । ଯଦି ଆତ୍ମା ଦେହର କାରଣ ହୁଏ, ତେବେ ଯଦି କିଛି ସମୟ ପାଇଁ ତାହାର ଅନ୍ତର୍ଦ୍ଧାନ ହୁଏ, ସେତେବେଳେ ଦେହ ଅବଶିଷ୍ଟ ଥାଏ ଏବଂ ଯେତେବେଳେ ଶରୀର ଭାବର ଅନ୍ତର୍ଦ୍ଧାନ ହୁଏ, ସେତେବେଳେ ଆତ୍ମା ଅବଶିଷ୍ଟ ରହେ । ଏହି ମତଦ୍ୱାରା ବୌଦ୍ଧମାନଙ୍କର ମତ ଖଣ୍ଡିତ ହେବ । ଆତ୍ମା ଓ ଶରୀର ପରସ୍ପରଠାରୁ ଯେ ପୃଥକ୍ —ଏହି ମତ ବିରୋଧରେ ବୌଦ୍ଧମାନେ ତର୍କ କରିଛନ୍ତି । ବର୍ତ୍ତମାନ ଅଦ୍ୱୈତବାଦ-ଦ୍ୱାରା ଏହି ଦ୍ୱୈତଭାବ ଅସ୍ୱୀକୃତ ହେବାରୁ ଏବଂ ଦ୍ରବ୍ୟ ଓ ଗୁଣ ଗୋଟିଏ ବସ୍ତୁର ବିଭିନ୍ନ ରୂପ ବୋଲି ପ୍ରଦର୍ଶିତ ହେବାରୁ ସେମାନଙ୍କର ମତ ଖଣ୍ଡିତ ହେଲା ।

ଆମେମାନେ ଏହା ମଧ୍ୟ ଦେଖିଛୁ ଯେ, ଅପରିଣାମିତ୍ୱ କେବଳ ସମଷ୍ଟି ସମ୍ବନ୍ଧରେ ସତ୍ୟ ହୋଇପାରେ, ବ୍ୟଷ୍ଟି ସମ୍ବନ୍ଧରେ ନୁହେଁ । ପରିଣାମ ବା ଗତି ଏହି ଭାବ ସହିତ ବ୍ୟଷ୍ଟିର ଧାରଣା ଜଡ଼ିତ । ଯାହା କିଛି ସସୀମ, ତାହା ହିଁ ପରିଣାମୀ; କାରଣ, ଅପର କୌଣସି ସସୀମ ପଦାର୍ଥ ବା ଅସୀମର ତୁଳନାରେ ତାହାର ପରିଣାମ ଚିନ୍ତା କରାଯାଇପାରେ; କିନ୍ତୁ ସମଷ୍ଟି ଅପରିଣାମୀ, କାରଣ ଏହା ବ୍ୟତୀତ ଅନ୍ୟ କିଛି ନାହିଁ, ଯାହା ସହିତ ତୁଳନା କରି ତାହାର ପରିଣାମ ବା ଗତି ଚିନ୍ତା କରାଯିବ । ପରିଣାମ କେବଳ କେଉଁ ଅଳ୍ପପରିଣାମୀ ବା ସମ୍ପୂର୍ଣ୍ଣ ଅପରିଣାମୀ ପଦାର୍ଥ ସହିତ ତୁଳନାରେ ଚିନ୍ତା କରାଯାଇପାରେ ।

ଅତଏବ ଅଦ୍ୱୈତବାଦ-ମତରେ ସର୍ବବ୍ୟାପୀ, ଅପରିଣାମୀ, ଅମର ଆତ୍ମାର ଅସ୍ତିତ୍ୱ ପ୍ରମାଣ କରାଯାଇପାରେ; ବ୍ୟଷ୍ଟି କ୍ଷେତ୍ରରେ କିନ୍ତୁ ତାହା ନୁହେଁ । ତାହା ହେଲେ ଆମମାନଙ୍କର ପ୍ରାଚୀନ ଦ୍ୱୈତବାଦାତ୍ମକ ମତସକଳର ସ୍ଥିତି କେଉଁଠାରେ ? ଏଗୁଡ଼ିକ ତ ଆମମାନଙ୍କ ଉପରେ ଏପର୍ଯ୍ୟନ୍ତ ପ୍ରବଳ ପ୍ରଭାବ ବିସ୍ତାର କରିଛନ୍ତି । ସସୀମ କ୍ଷୁଦ୍ର ବ୍ୟକ୍ତିଗତ ଆତ୍ମା ସମ୍ବନ୍ଧରେ କଅଣ ହେବ ? —ଏହା ହିଁ ପ୍ରଶ୍ନ ।

ଆମେମାନେ ଦେଖିଛୁ, ସମଷ୍ଟି ଭାବରେ ଆମେମାନେ ଅମର; କିନ୍ତୁ ସମସ୍ୟା ହେଲା—ଆମେମାନେ କ୍ଷୁଦ୍ର ବ୍ୟକ୍ତି ହିସାବରେ ମଧ୍ୟ ଅମର ହେବାକୁ ଇଚ୍ଛୁକ । ଏହା କଅଣ ସମ୍ଭବ ? ଆମେମାନେ ଦେଖିଛୁ, ଆମେମାନେ ଅନନ୍ତ ଏବଂ

ତାହା ହିଁ ଆମମାନଙ୍କର ଯଥାର୍ଥ ବ୍ୟକ୍ତିତ୍ୱ; କିନ୍ତୁ ଆମେମାନେ ଏହି କ୍ଷୁଦ୍ର ଜୀବାତ୍ମାକୁ ବ୍ୟକ୍ତିରୂପରେ ଗ୍ରହଣ କରି ଅମର ରଖିବାକୁ ଚାହୁଁ । ଏହି ସକଳ କ୍ଷୁଦ୍ର ବ୍ୟକ୍ତିତ୍ୱର କ'ଣ ହେବ ? ଆମେମାନେ ଦେଖିଛୁ, ଏମାନଙ୍କର ବ୍ୟକ୍ତିତ୍ୱ ଅଛି ସତ୍ୟ, କିନ୍ତୁ ଏହି ବ୍ୟକ୍ତିତ୍ୱ କ୍ରମବିକାଶଶୀଳ—ଏକ ସତ୍ୟ ଅଥଚ ଠିକ୍ ଏକ ନୁହେଁ । କାଲିର 'ମୁଁ' ଆଜିର 'ମୁଁ' ସତ, କିନ୍ତୁ ଏହା ସମ୍ପୂର୍ଣ୍ଣ ସତ୍ୟ ନୁହେଁ । ସାମାନ୍ୟ ପରିବର୍ତ୍ତନ ଘଟିଛି । ଏଠାରେ ଦ୍ୱୈତଭାବାତ୍ମକ ଧାରଣା ଅର୍ଥାତ୍ ପରିବର୍ତ୍ତନ ଭିତରେ ଅପରିବର୍ତ୍ତନୀୟ କିଛି ରହିଛି—ଏହି ମତ ପରିତ୍ୟକ୍ତ ହେଲା ଏବଂ ଆଧୁନିକ ଭାବ, ଯଥା କ୍ରମବିକାଶ-ବାଦ ଗ୍ରହଣ କରାଗଲା । ସିଦ୍ଧାନ୍ତ ହେଲା, ଏହାର ପରିଣାମ ହେଉଛି ସତ; କିନ୍ତୁ ଏହି ପରିଣାମ ଭିତରେ ଗୋଟିଏ ଅଭିନ୍ନଭାବ ରହିଛି, ଯାହା ସତତ ବିକାଶଶୀଳ ।

ଯଦି ଏହା ସତ୍ୟ ହୁଏ ଯେ ମନୁଷ୍ୟ ମାଂସଲ ଜନ୍ତୁବିଶେଷର (Mollusc) ପରିଣାମ ମାତ୍ର ତେବେ ସେହି ଜୀବ ଓ ମନୁଷ୍ୟ ଗୋଟିଏ ପଦାର୍ଥ, କେବଳ ମନୁଷ୍ୟ ସେହି ଜୀବବିଶେଷର ବହୁପରିମାଣରେ ବିକାଶ ମାତ୍ର । ଏହା କ୍ରମଶଃ ବିକାଶପ୍ରାପ୍ତ ହୋଇ ଅନନ୍ତ ଆଡ଼କୁ ଚାଲିଛି, ବର୍ତ୍ତମାନ ମନୁଷ୍ୟରୂପ ଧାରଣ କରିଛି । ଅତଏବ ସୀମାବଦ୍ଧ ଜୀବାତ୍ମାଙ୍କୁ ମଧ୍ୟ ବ୍ୟକ୍ତି କୁହାଯାଇପାରେ; ସେ କ୍ରମଶଃ ପୂର୍ଣ୍ଣ ବ୍ୟକ୍ତିତ୍ୱ ଆଡ଼କୁ ଅଗ୍ରସର ହେଉଛନ୍ତି । ପୂର୍ଣ୍ଣ ବ୍ୟକ୍ତିତ୍ୱ ଯେତେବେଳେ ଲାଭ ହେବ, ଯେତେ-ବେଳେ ସେ ଅନନ୍ତରେ ପହଞ୍ଚିବେ; କିନ୍ତୁ ସେହି ଅବସ୍ଥାଲାଭ ପୂର୍ବରୁ ତାଙ୍କ ବ୍ୟକ୍ତିତ୍ୱର କ୍ରମାଗତ ପରିଣାମ, କ୍ରମାଗତ ବିକାଶ ହେଉଛି ।

ଅଦ୍ୱୈତବେଦାନ୍ତର ଗୋଟିଏ ବିଶେଷତ୍ୱ ହେଲା ବିଭିନ୍ନ ମତବାଦ ମଧ୍ୟରେ ସମନ୍ୱୟ ସ୍ଥାପନ କରିବା । ଅନେକ ସମୟରେ ଏହି ସମନ୍ୱୟ ହେତୁ ଏହାର ଅନେକ ଉପକାର ହୋଇଥିଲା, କେବେ କେବେ ଏହାଦ୍ୱାରା କ୍ଷତି ମଧ୍ୟ ହୋଇଛି । ବର୍ତ୍ତମାନ କାଳରେ କ୍ରମବିକାଶବାଦୀମାନଙ୍କର ମତ ଆମର ପ୍ରାଚୀନ ଦାର୍ଶନିକଗଣ ଜାଣିଥିଲେ, ସେମାନେ ବୁଝିଥିଲେ ଯେ, ଦାର୍ଶନିକ ଚିନ୍ତା ମଧ୍ୟ ଧୀରେ ଧୀରେ ଗଢ଼ି ଉଠେ । ସୁତରାଂ ସେମାନେ ପୂର୍ବ ପୂର୍ବ ଦର୍ଶନ-ପ୍ରଣାଳୀ ମଧ୍ୟରେ ସାମଞ୍ଜସ୍ୟ-ବିଧାନରେ ସହଜରେ କୃତକାର୍ଯ୍ୟ ହୋଇଥିଲେ । ତେଣୁ କୌଣସି ମତ ପରିତ୍ୟକ୍ତ ହୋଇ ନାହିଁ । ବୌଦ୍ଧମତର ଗୋଟାଏ ବିଶେଷ ଦୋଷ ଥିଲା । ସେମାନେ କ୍ରମ-ବିକାଶବାଦ ବୁଝୁ ନ ଥିଲେ, ସୁତରାଂ ଆଦର୍ଶରେ ପହଞ୍ଚିବାର ପୂର୍ବବର୍ତ୍ତୀ ସୋପାନ-ଗୁଡ଼ିକ ସହିତ ସେମାନଙ୍କ ମତର ସାମଞ୍ଜସ୍ୟ କରିବାର କୌଣସି ଚେଷ୍ଟା କରି ନ ଥିଲେ; ବରଂ ସେଗୁଡ଼ିକ ନିରର୍ଥକ ଓ ଅନିଷ୍ଟକର ବୋଲି ପରିତ୍ୟାଗ କରିଥିଲେ ।

ଧର୍ମ-ଜଗତରେ ଏପରି ମନୋଭାବ ଅତ୍ୟନ୍ତ ଅନିଷ୍ଟକର । କୌଣସି ବ୍ୟକ୍ତି ଗୋଟିଏ ନୂତନ ଓ ଶ୍ରେଷ୍ଠତର କୌଣସି ଭାବ ପାଇଲା । ସେତେବେଳେ ସେ

ତାହାର ପୁରାତନ ଭାବଗୁଡ଼ିକ ପ୍ରତି ଦୃଷ୍ଟିପାତ କରି ସିଦ୍ଧାନ୍ତ କରେ—ସେଗୁଡ଼ିକ ଅନିଷ୍ଟକର ଓ ଅନାବଶ୍ୟକ । ସେ କଦାପି ଏହା ଭାବେ ନାହିଁ ଯେ, ବର୍ତ୍ତମାନ ଦୃଷ୍ଟିରୁ ସେଗୁଡ଼ିକ ଯେତେ ବିସଦୃଶ ବୋଧ ହୁଅନ୍ତୁ ନା କାହିଁକି, ଏକ ସମୟରେ ସେଗୁଡ଼ିକ ତା' ପାଇଁ ଅତ୍ୟାବଶ୍ୟକୀୟ ଥିଲି, ତାହାର ବର୍ତ୍ତମାନ ଅବସ୍ଥାରେ ପହଞ୍ଚିବା ପାଇଁ ସେଗୁଡ଼ିକର ବିଶେଷ ପ୍ରୟୋଜନ ଥିଲି । ଆମ ପ୍ରତ୍ୟେକଙ୍କୁ ଏହି ଉପାୟରେ ଆତ୍ମବିକାଶ କରିବାକୁ ହେବ—ପ୍ରଥମେ ସ୍ଥୂଳ ଭାବକୁ ଗ୍ରହଣ କରି ତାହାର ସାହାଯ୍ୟରେ କ୍ରମେ ଉଚ୍ଚତର ଅବସ୍ଥାରେ ଆରୋହଣ କରିବାକୁ ହେବ । ସେଥିପାଇଁ ଅଦ୍ୱୈତବାଦର ପ୍ରାଚୀନତମ ମତସମୂହ ସହ ବିରୋଧ ନାହିଁ ଏବଂ ଦ୍ୱୈତବାଦ ଓ ଅନ୍ୟାନ୍ୟ ପୂର୍ବବର୍ତ୍ତୀ ମତଗୁଡ଼ିକ ପ୍ରତି ତାହା ମିତ୍ରଭାବାପନ୍ନ । ଏପରି ନୁହେଁ ଯେ, ସେ ଉଚ୍ଚ ମଞ୍ଚ ଉପରେ ଠିଆ ହୋଇ ସେଗୁଡ଼ିକୁ ଯେପରିକି ଦୟା ଚକ୍ଷୁରେ ଦେଖୁଛନ୍ତି । ତାଙ୍କର ଧାରଣା, ସେଗୁଡ଼ିକ ମଧ୍ୟ ସତ୍ୟ; କେବଳ ଗୋଟିଏ ସତ୍ୟର ବିଭିନ୍ନ ବିକାଶମାତ୍ର ଏବଂ ଅଦ୍ୱୈତବାଦ ଯେଉଁ ସିଦ୍ଧାନ୍ତରେ ଆଜି ପହଞ୍ଚିଛି, ସେମାନେ ମଧ୍ୟ ସେହି ସିଦ୍ଧାନ୍ତରେ ଦିନେ ଉପନୀତ ହେବେ ।

ଅତଏବ ମନୁଷ୍ୟକୁ ଯେଉଁସବୁ ସୋପାନଶ୍ରେଣୀ ଦେଇ ଉଠିବାକୁ ହୁଏ, ସେଗୁଡ଼ିକ ପ୍ରତି କର୍କଶ ଭାଷା ପ୍ରୟୋଗ କରିବା ଉଚିତ ନୁହେଁ ବରଂ ସେମାନଙ୍କ ପ୍ରତି ଆଶୀର୍ବଚନ ପ୍ରୟୋଗ କରି ସେମାନଙ୍କୁ ରକ୍ଷା କରିବା ଉଚିତ । ସେଥିପାଇଁ ବେଦାନ୍ତରେ ଏହିସବୁ ଭାବ ଯଥାଯଥ ରକ୍ଷିତ ହୋଇଛି, ପରିତ୍ୟକ୍ତ ହୋଇ ନାହିଁ । ଏଥିସକାଶେ ଦ୍ୱୈତବାଦସଙ୍ଗତ ସସୀମ ଅଥଚ ପୂର୍ଣ୍ଣଜୀବାତ୍ମାବାଦ ମଧ୍ୟ ବେଦାନ୍ତରେ ସ୍ଥାନ ପାଇଛି ।

ଦ୍ୱୈତବାଦର ମତାନୁସାରେ ମନୁଷ୍ୟର ମୃତ୍ୟୁ ହେଲେ ଯେ ସେ ଅନ୍ୟାନ୍ୟ ଲୋକକୁ ଗମନ କରେ, ଏହି ସକଳ ଭାବ ମଧ୍ୟ ସମ୍ପୂର୍ଣ୍ଣ ରକ୍ଷିତ ହୋଇଛି; କାରଣ ଅଦ୍ୱୈତବାଦ ସ୍ୱୀକାର କରେଯେ, ଏହି ମତଗୁଡ଼ିକୁ ମଧ୍ୟ ସେମାନଙ୍କର ଯଥାସ୍ଥାନରେ ରକ୍ଷା କରାଯାଇପାରେ; କେବଳ ଏତିକି ମାନିବାକୁ ହେବ ଯେ, ଏଗୁଡ଼ିକ ପ୍ରକୃତ ସତ୍ୟର ଆଂଶିକ ବର୍ଣ୍ଣନା ମାତ୍ର ।

ଯଦି ତୁମେ କୌଣସି ବିଶେଷ ବା ଆଂଶିକ ଦୃଷ୍ଟିରେ ଜଗତକୁ ଦେଖ, ତେବେ ଜଗତ ତୁମ ନିକଟରେ ସେହିପରି ପ୍ରତୀୟମାନ ହେବ । ଦ୍ୱୈତବାଦୀର ଦୃଷ୍ଟିରେ ଏହି ଜଗତ କେବଳ ଜଡ଼ ବା ଶକ୍ତିର ସୃଷ୍ଟିରୂପରେ ଦୃଷ୍ଟ ହୋଇପାରେ; ଏହାକୁ କୌଣସି ବିଶେଷ ଇଚ୍ଛାଶକ୍ତିର କ୍ରୀଡ଼ା ବୋଲି ଚିନ୍ତା କରାଯାଇପାରେ ଏବଂ ସେହି ଇଚ୍ଛାଶକ୍ତିକୁ ଜଗତଠାରୁ ପୃଥକ୍‌ରୂପେ ଭାବିବା ମଧ୍ୟ ସମ୍ଭବ । ଏହି ଦୃଷ୍ଟିରୁ ମନୁଷ୍ୟ ନିଜକୁ ଆତ୍ମା ଓ ଦେହ ଉଭୟର ସମଷ୍ଟି ବୋଲି ଚିନ୍ତା କରିପାରେ । ଏହି

ଆତ୍ମା ସସୀମ ହେଲେ ମଧ୍ୟ ପୂର୍ଣ୍ଣ । ଏପରି ବ୍ୟକ୍ତିର ଅମରତ୍ୱ ଓ ଅନ୍ୟାନ୍ୟ ବିଷୟ ସମ୍ବନ୍ଧରେ ଯେଉଁ ଧାରଣା, ତାହା ମଧ୍ୟ ସେହି ଆତ୍ମା କ୍ଷେତ୍ରରେ ପ୍ରଯୁକ୍ତ ହେବ । ସେଥିପାଇଁ ଏହି ମତଗୁଡ଼ିକ ବେଦାନ୍ତରେ ରକ୍ଷିତ ହୋଇଛି ଏବଂ ଏହି କାରଣରୁ ଦ୍ୱୈତବାଦୀମାନଙ୍କର ପ୍ରଚଳିତ ସାଧାରଣ ମତଗୁଡ଼ିକୁ ତୁମମାନଙ୍କ ନିକଟରେ ମୋର କହିବା ଆବଶ୍ୟକ ।

ଏହି ମତାନୁସାରେ ଆମମାନଙ୍କର ସ୍ଥୂଳ ଶରୀର ରହିଛି । ଏହି ସ୍ଥୂଳ ଶରୀରର ପଶ୍ଚାତ୍‌ରେ ସୂକ୍ଷ୍ମ ଶରୀର । ଏହି ସୂକ୍ଷ୍ମ ଶରୀର ମଧ୍ୟ ଭୌତିକ, ତେବେ ଏହା ଅତି ସୂକ୍ଷ୍ମଭୂତରେ ନିର୍ମିତ । ଏହା ଆମମାନଙ୍କ ସମୁଦାୟ କର୍ମର ଆଧାରସ୍ୱରୂପ । ସମୁଦାୟ କର୍ମର ସଂସ୍କାର ଏହି ସୂକ୍ଷ୍ମଶରୀରରେ ବିଦ୍ୟମାନ, ସେଗୁଡ଼ିକ ସର୍ବଦା ଫଳ-ପ୍ରଦାନୋନ୍ମୁଖ ହୋଇ ରହିଛନ୍ତି । ଆମେମାନେ ଯାହା କିଛି ଚିନ୍ତା କରୁ, ଯେ କୌଣସି କାର୍ଯ୍ୟ କରୁ, ତାହା ହିଁ କ୍ରମଶଃ ସୂକ୍ଷ୍ମସ୍ୱରୂପ ଧାରଣ କରେ— ଯେପରି ବୀଜଭାବ ପ୍ରାପ୍ତ ହୁଏ ଏବଂ ତାହା ହିଁ ଏହି ଶରୀରରେ ଅବ୍ୟକ୍ତ ଭାବରେ ଅବସ୍ଥାନ କରେ, କିଛି କାଳ ପରେ ପୁନଶ୍ଚ ପ୍ରକାଶ ପାଇ ଫଳ ପ୍ରଦାନ କରେ । ଏହା ହିଁ ମନୁଷ୍ୟର ଜୀବନ । ସେ ନିଜର ଅଦୃଷ୍ଟ ନିଜେ ଗଠନ କରେ । ମନୁଷ୍ୟ ଅନ୍ୟ କୌଣସି ନିୟମଦ୍ୱାରା ବଦ୍ଧ ନୁହେଁ; ସେ ଆପଣାର ନିୟମରେ, ଆପଣାର ଜାଲରେ ହିଁ ବଦ୍ଧ । ଆମେମାନେ ଯେଉଁ ସମସ୍ତ କର୍ମ କରୁ, ଆମେମାନେ ଯେଉଁ ସକଳ ଚିନ୍ତା କରୁ, ସେଗୁଡ଼ିକୁ ଆମ ବନ୍ଧନଜାଲର ବିଭିନ୍ନ ସୂତ୍ର ପରି । ଥରେ କୌଣସି ଶକ୍ତିକୁ ଚାଳନା କରିଦେଲେ, ତାହାର ଶେଷ ପରିଣତି ଆମମାନଙ୍କୁ ଭୋଗ କରିବାକୁ ହେବ —ଏହା ହିଁ କର୍ମବିଧାନ । ଏହି ସୂକ୍ଷ୍ମ ଶରୀରର ପଶ୍ଚାତ୍‌ରେ ସସୀମ ଜୀବାତ୍ମା ରହିଛି । ଏହି ଜୀବାତ୍ମାର କୌଣସି ଆକୃତି ଅଛି କି ନାହିଁ, ଏହା ଅଣୁ, ବୃହତ୍ ବା ମଧ୍ୟମ ଆକାରର, ଏ କଥା ନେଇ ଅନେକ ତର୍କବିତର୍କ ଚାଲିଛି । କେଉଁ କେଉଁ ସମ୍ପ୍ରଦାୟ ମତରେ ଏହା ଅଣୁ, ଅପରଙ୍କ ମତରେ ଏହା ମଧ୍ୟମ ଏବଂ ଅନ୍ୟାନ୍ୟ ସମ୍ପ୍ରଦାୟ ମତରେ ଏହା ବିଭୁ । ଏହି ଜୀବ ସେହି ଅନନ୍ତ ସତ୍ତାର ଗୋଟିଏ ଅଂଶ ମାତ୍ର ଏବଂ ଏହା ଅନନ୍ତ କାଳ ଧରି ରହିଛି । ଏହା ଅନାଦି, ଏହା ସେହି ସର୍ବବ୍ୟାପୀ ସତ୍ତାର ଏକ ଅଂଶରୂପେ ଅବସ୍ଥାନ କରୁଛି । ଏହା ଅନନ୍ତ ଏବଂ ଏହା ନିଜର ପ୍ରକୃତ ସ୍ୱରୂପ ଶୁଦ୍ଧ ଭାବ ପ୍ରକାଶ କରିବାପାଇଁ ନାନାଦେହ ମଧ୍ୟଦେଇ ଗତି କରୁଛି । ଯେଉଁସବୁ କାର୍ଯ୍ୟଦ୍ୱାରା ଏହି ପ୍ରକାଶ ବ୍ୟାହତ ହୁଏ, ତାହାକୁ ଅସତ୍ କାର୍ଯ୍ୟ କୁହାଯାଏ; ଚିନ୍ତା ସମ୍ବନ୍ଧରେ ମଧ୍ୟ ତଦ୍ରୂପ । ଯେଉଁ କାର୍ଯ୍ୟଦ୍ୱାରା, ଯେଉଁ ଚିନ୍ତାଦ୍ୱାରା ତାହାର ସ୍ୱରୂପ ପ୍ରକାଶରେ ବିଶେଷ ସାହାଯ୍ୟ ହୁଏ, ତାହାକୁ ସତ୍‌କାର୍ଯ୍ୟ ବା ସତ୍‌ଚିନ୍ତା କୁହାଯାଏ । କିନ୍ତୁ ଭାରତରେ ଅତି ନିମ୍ନତମ ଦ୍ୱୈତବାଦୀ ଏବଂ ଅତି ଉନ୍ନତ ଅଦ୍ୱୈତବାଦୀ, ସମସ୍ତଙ୍କର ଏହି ସାଧାରଣ ମତ ଯେ, ଆତ୍ମାର ସମୁଦାୟ ଶକ୍ତି ଓ

କ୍ଷମତା ତାହାର ଭିତରେ ହିଁ ରହିଛି—ଏହା ଅନ୍ୟ କେଉଁଠାରୁ ଆସେ ନାହିଁ । ଏହି ଶକ୍ତିପୁଞ୍ଜ ଆତ୍ମାରେ ଅବ୍ୟକ୍ତଭାବରେ ଥାଏ ଏବଂ ସମୁଦାୟ ଜୀବନର କାର୍ଯ୍ୟ କେବଳ ଏହି ଅବ୍ୟକ୍ତ ଶକ୍ତିକୁ ବିକାଶ କରିବା ।

ସେମାନେ ପୁନର୍ଜନ୍ମବାଦକୁ ମଧ୍ୟ ମାନିଥାନ୍ତି—ଏହି ଦେହର ଧ୍ୱଂସ ହେଲେ ଜୀବ ଅନ୍ୟ ଗୋଟିଏ ଦେହ ଲାଭ କରିବ ଏବଂ ସେହି ଦେହ ନଷ୍ଟ ହେଲା ପରେ ଆଉ ଗୋଟିଏ ଦେହ ଗ୍ରହଣ କରିବ—ଏହା ଏହିପରି ଚାଲିବ । ଜୀବ ଏହି ପୃଥିବୀରେ ଜନ୍ମିପାରେ ବା ଅନ୍ୟ ଲୋକରେ ମଧ୍ୟ ଜାତ ହୋଇପାରେ । ତେବେ ଏହି ପୃଥିବୀକୁ ଶ୍ରେଷ୍ଠତର ବୋଲି କୁହାଯାଏ । ସେମାନଙ୍କର ମତ ଯେ, ଆମର ଉଦ୍ଦେଶ୍ୟ-ସାଧନ ସକାଶେ ଏହି ପୃଥିବୀ ହିଁ ଶ୍ରେଷ୍ଠସ୍ଥାନ । ଅନ୍ୟାନ୍ୟ ଲୋକରେ ଦୁଃଖକଷ୍ଟ ଖୁବ୍ କମ୍ ଅଛି ସତ୍ୟ; କିନ୍ତୁ ସାଧକମାନେ କହନ୍ତି, ସେହି କାରଣରୁ ହିଁ ସେହି ସମସ୍ତ ଲୋକରେ ଉଚ୍ଚତର ବିଷୟ ଚିନ୍ତା କରିବାର ସୁଯୋଗ ମଧ୍ୟ ଅଳ୍ପ । ଏହି ଜଗତରେ ବେଶ୍ ସାମଞ୍ଜସ୍ୟ ଅଛି—କିଛି ଦୁଃଖ ଅଛି, କିଛି ସୁଖ ମଧ୍ୟ ଅଛି; ସୁତରାଂ ଜୀବମାନଙ୍କର ଏଠାରେ କେବେ ନା କେବେ ସେମାନଙ୍କର ମୁକ୍ତିଲାଭର ଇଚ୍ଛା ହେବାର ସମ୍ଭାବନା; କିନ୍ତୁ ଏହି ଲୋକରେ ଯେପରି ଖୁବ୍ ଧନୀ ଲୋକମାନଙ୍କର ଉଚ୍ଚତର ବିଷୟ ଚିନ୍ତା କରିବାର ସୁଯୋଗ ଖୁବ୍ ଅଳ୍ପ, ସେହିପରି ଏହି ଜୀବ ଯଦି ସ୍ୱର୍ଗକୁ ଗମନ କରେ, ତାହାର ମଧ୍ୟ ଆତ୍ମୋନ୍ନତିର ସମ୍ଭାବନା ନ ଥାଏ । କେବଳ ଏଠାରେ ଯେଉଁ ସୁଖ, ସ୍ୱର୍ଗରେ ତାହା ତୀବ୍ରତର; ସେଠାରେ ସୂକ୍ଷ୍ମଦେହରେ କୌଣସି ବ୍ୟାଧି ରହିବ ନାହିଁ । ଆହାର ପାନ କରିବାର ଆବଶ୍ୟକତା ମଧ୍ୟ ରହିବ ନାହିଁ, ସକଳ ବାସନା ପରିପୂର୍ଣ୍ଣ ହେବ । ଜୀବ ସେଠାରେ କେବଳ ସୁଖ ସମ୍ଭୋଗ କରେ ଏବଂ ନିଜର ସ୍ୱରୂପ ଓ ଉଚ୍ଚଭାବ ସବୁ ଭୁଲିଯାଏ । ତଥାପି ଏହିସବୁ ଉଚ୍ଚତର ଲୋକରେ କେହି କେହି ଅଛନ୍ତି, ଯେଉଁମାନେ ଏହି ସକଳ ଭୋଗସତ୍ତ୍ୱେ ସେଠାରୁ ଆହୁରି ଉଚ୍ଚତର ଭାବକୁ ଆରୋହଣ କରନ୍ତି । ଏକପ୍ରକାର ସ୍ଥୂଳଦର୍ଶୀ ଦ୍ୱୈତବାଦୀମାନେ ଉଚ୍ଚତମ ସ୍ୱର୍ଗକୁ ଚରମ ଲକ୍ଷ୍ୟ ବିବେଚନା କରିଥାଆନ୍ତି—ଏହି ଆତ୍ମାଗଣ ସେଠାକୁ ଯାଇ ଚିରକାଳ ଭଗବାନଙ୍କ ସହିତ ବାସ କରନ୍ତି । ସେମାନେ ସେଠାରେ ଦିବ୍ୟ ଦେହ ଲାଭ କରିବେ; ସେମାନଙ୍କର ଆଉ ରୋଗ, ଶୋକ, ମୃତ୍ୟୁ ବା ଅନ୍ୟ କୌଣସି ପ୍ରକାର ଅଶୁଭ ରହିବ ନାହିଁ । ସେମାନଙ୍କର ସକଳ ବାସନା ପରିପୂର୍ଣ୍ଣ ହେବ ଏବଂ ସେମାନେ ଚିରକାଳ ସେଠାରେ ଭଗବାନଙ୍କ ସହିତ ବାସ କରିବେ । ସମୟ ସମୟରେ ସେମାନଙ୍କ ମଧ୍ୟରୁ କେହି କେହି ପୃଥିବୀକୁ ଆସି ଦେହ ଧାରଣ କରି ଲୋକଶିକ୍ଷା ଦେବେ ଏବଂ ଜଗତର ଶ୍ରେଷ୍ଠ ଧର୍ମାଚାର୍ଯ୍ୟମାନେ ମଧ୍ୟ ଏହି ସ୍ୱର୍ଗରୁ ଆସିଛନ୍ତି । ସେମାନେ ପୂର୍ବରୁ ମୁକ୍ତ ହୋଇ ଭଗବାନଙ୍କ ସହିତ ଏକ-ଲୋକରେ ବାସ କରୁଥିଲେ; କିନ୍ତୁ ଦୁଃଖାର୍ତ୍ତ ମାନବଜାତି ପ୍ରତି ସେମାନଙ୍କର ଏତେ ଅଧିକ କୃପା ହେଲା ଯେ, ସେମାନେ ଏଠାକୁ ଆସି

ପୁନର୍ବାର ଦେହ ଧାରଣ କରି ମନୁଷ୍ୟଙ୍କୁ ସ୍ୱର୍ଗର ପଥ ସମ୍ବନ୍ଧରେ ଉପଦେଶ ଦେଇଥିଲେ । ସେମାନେ ଅନ୍ୟାନ୍ୟ ଉଚ୍ଚତର ଦେବଲୋକାଦିକୁ ମଧ୍ୟ ଗମନ କରି-ଥାଆନ୍ତି ।

ଅବଶ୍ୟ ଅଦ୍ୱୈତବାଦୀ କହନ୍ତି, ଏହି ସ୍ୱର୍ଗ କଦାପି ଆମମାନଙ୍କର ଚରମ ଲକ୍ଷ୍ୟ ହୋଇ ନ ପାରେ । ସଂପୂର୍ଣ୍ଣ ଦେହଶୂନ୍ୟଭାବ ହିଁ ଆମମାନଙ୍କର ଚରମ ଲକ୍ଷ୍ୟ ହେବା ଉଚିତ । ଆମମାନଙ୍କର ସର୍ବୋଚ୍ଚ ଲକ୍ଷ୍ୟ, ସର୍ବଶ୍ରେଷ୍ଠ ଆଦର୍ଶ କଦାପି ସସୀମ ହୋଇ-ପାରିବ ନାହିଁ । ଅନନ୍ତ ବ୍ୟତୀତ ଆମର ଅନ୍ୟ କୌଣସି ଆଦର୍ଶ ହୋଇନପାରେ; କିନ୍ତୁ ଦେହ ତ କଦାପି ଅନନ୍ତ ହୁଏ ନାହିଁ; ଏହା ହେବା ଅସମ୍ଭବ, କାରଣ, ସସୀମତାରୁ ଶରୀରର ଉତ୍ପତ୍ତି । ଚିନ୍ତା ଅନନ୍ତ ହୋଇପାରେ ନାହିଁ, କାରଣ ସସୀମ ଭାବରୁ ଚିନ୍ତା ଆସିଥାଏ । ଅଦ୍ୱୈତବାଦୀ କହନ୍ତି, ଆମମାନଙ୍କୁ ଦେହ ଏବଂ ଚିନ୍ତାର ବାହାରକୁ ଯିବାକୁ ହେବ । ଆମେମାନେ ଅଦ୍ୱୈତବାଦର ଏହି ବିଶେଷ ମତ ପୂର୍ବରୁ ଦେଖିଛୁ—ଏହି ମୁକ୍ତି ଲାଭ କରିବାକୁ ହେବ ନାହିଁ, ଏହା ପୂର୍ବରୁ ବିଦ୍ୟମାନ ରହିଛି । ଆମେମାନେ କେବଳ ଏହାକୁ ଭୁଲିଯାଉ ଓ ଅସ୍ୱୀକାର କରୁ । ପୂର୍ଣ୍ଣତା ଲାଭ କରିବାକୁ ହେବ ନାହିଁ, ଏହା ବିଦ୍ୟମାନ ରହିଛି । ଏହି ଅମରତ୍ୱ ଓ ଆନନ୍ଦ ଲାଭ କରିବାକୁ ହେବ ନାହିଁ, ଏହା ପୂର୍ବରୁ ବିଦ୍ୟମାନ—ଏହା ନିତ୍ୟ ଆମଠାରେ ରହିଛି ।

ଯଦି ତୁମେ ସାହସ କରି କହିପାର, 'ମୁଁ ମୁକ୍ତ', ତେବେ ଏହି ମୁହୂର୍ତ୍ତରେ ତୁମେ ମୁକ୍ତ ହେବ । ଯଦି ତୁମେ କହ, 'ମୁଁ ବଦ୍ଧ', ତେବେ ତୁମେ ବଦ୍ଧ ହୋଇ ରହିଥିବ । ଯାହା ହେଉ, ଦ୍ୱୈତବାଦୀ ଓ ଅନ୍ୟାନ୍ୟ ଦାର୍ଶନିକମାନଙ୍କର ମତ ଏହାର ବିପରୀତ । ତୁମେମାନେ ଏହା ମଧ୍ୟରୁ ଯାହା ଇଚ୍ଛା, ତାହା ଗ୍ରହଣ କରିପାର ।

ବେଦାନ୍ତର ଏହି ଆଦର୍ଶକୁ ବୁଝିବା ଅତି କଠିନ । ସାଧାରଣ ଲୋକେ ସର୍ବଦା ଏହାକୁ ନେଇ ବିବାଦ କରିଥାଆନ୍ତି । ଅସୁବିଧା ଏହି ଯେ—ଯେ ଗୋଟିଏ ମତ ଅବଲମ୍ବନ କରେ, ସେ ଅପର ମତକୁ ଏକାବେଳକେ ଅସ୍ୱୀକାର କରି ତାହା ସହିତ ବିବାଦରେ ପ୍ରବୃତ୍ତ ହୁଏ । ତୁମ ପକ୍ଷରେ ଯାହା ଉପଯୁକ୍ତ, ତାହା ଗ୍ରହଣ କର; ତାହାର ଉପଯୋଗୀ ମତ ତାହାକୁ ଗ୍ରହଣ କରିବାକୁ ଦିଅ ! ଯଦି ତୁମେ ଏହି କ୍ଷୁଦ୍ର ବ୍ୟକ୍ତିତ୍ୱ, ଏହି ସସୀମ ମାନବତ୍ୱ ରଖିବାକୁ ଏତେ ଇଚ୍ଛୁକ, ତେବେ ତୁମେ ତାହା ଅନାୟାସରେ ରଖିପାର, ତୁମର ସକଳ ବାସନା ରଖିପାର ଓ ସେଥିରେ ସନ୍ତୁଷ୍ଟ ହୋଇ ରହିପାର । ଯଦି ମନୁଷ୍ୟ ଭାବରେ ରହିବାର ସୁଖ ତୁମ ପାଇଁ ଏତେ ସୁନ୍ଦର ଓ ମଧୁର, ତେବେ ତୁମେ ଯେତେ ଦିନ ଇଚ୍ଛା ଏହି ଭାବରେ ଅବସ୍ଥାନ କର;

କାରଣ, ତୁମେ ଜାଣ, ତୁମେ ହିଁ ତୁମ ଅଦୃଷ୍ଟର ନିର୍ମାତା, କେହି ତୁମକୁ କିଛି ବାଧ୍ୟ କରିପାରିବ ନାହିଁ । ତୁମର ଯେତେ ଦିନ ଇଚ୍ଛା, ସେତେ ଦିନ ମନୁଷ୍ୟ ହୋଇ ରହିପାର, କେହି ତୁମକୁ ଅନ୍ୟ କିଛି କରିବାକୁ ବାଧ୍ୟ କରିପାରିବେ ନାହିଁ । ଯଦି ଦେବତା ହେବାକୁ ଇଚ୍ଛା କର, ତେବେ ଦେବତା ହେବ । କିନ୍ତୁ ଏପରି ଅନେକ ଲୋକ ହୁଏତ ଅଛନ୍ତି, ଯେଉଁମାନେ ଦେବତା ହେବାକୁ ମଧ୍ୟ ଅନିଚ୍ଛୁକ । ସେମାନଙ୍କୁ ଏହା ଏକ ଭୟଙ୍କର କଥା ବୋଲି କହିବାରେ ତୁମର କି ଅଧିକାର ଅଛି ? ମାତ୍ର ଶହେ ଟଙ୍କା ନଷ୍ଟ ହେଲେ ତୁମର ହୁଏତ ଭୟ ହୋଇପାରେ; କିନ୍ତୁ ଏପରି ଅନେକ ଲୋକ ଅଛନ୍ତି, ଯେଉଁମାନଙ୍କର ଜଗତରେ ଯେତେ ଧନ ଅଛି, ସବୁ ନଷ୍ଟ ହେଲେ ମଧ୍ୟ ସେମାନଙ୍କର କିଛି କଷ୍ଟ ହେବ ନାହିଁ । ଏହିଭଳି ଲୋକ ପୂର୍ବେ ଅନେକ ଥିଲେ ଏବଂ ବର୍ତ୍ତମାନ ମଧ୍ୟ ଅଛନ୍ତି । ତୁମେ ସେମାନଙ୍କୁ ତୁମ ଆଦର୍ଶାନୁସାରେ ବିଚାର କରିବାକୁ କାହିଁକି ଯାଉଛ ? ତୁମେ କ୍ଷୁଦ୍ର କ୍ଷୁଦ୍ର ସୀମାବଦ୍ଧ ଜାଗତିକ ଭାବରେ ବଦ୍ଧ ହୋଇଅଛ; ଏହା ତୁମର ସର୍ବୋଚ୍ଚ ଆଦର୍ଶ । କିନ୍ତୁ ତୁମେ ଏତିକରେ ସନ୍ତୁଷ୍ଟ ହୁଅ ନାହିଁ କାହିଁକି ? ତୁମେ ଯେପରି ଚାହିଁ, ସେପରି ପାଇବ; କିନ୍ତୁ ତୁମ ଛଡ଼ା ଏପରି ଅନେକ ଲୋକ ଅଛନ୍ତି, ଯେଉଁମାନେ ସତ୍ୟକୁ ଦର୍ଶନ କରିଛନ୍ତି—ସେମାନେ ଏହି ସ୍ୱର୍ଗାଦିଭୋଗରେ ତୃପ୍ତ ହୋଇଛନ୍ତି, ସେମାନେ ଆଉ ସେଥିରେ ଆବଦ୍ଧ ହୋଇ ରହିବାକୁ ଚାହାଁନ୍ତି ନାହିଁ; ସେମାନେ ସମସ୍ତ ସୀମାର ବାହାରକୁ ଯିବାକୁ ଚାହାଁନ୍ତି, ଜଗତରେ କିଛି ହେଲେ ସେମାନଙ୍କୁ ପରିତୃପ୍ତ କରିପାରେ ନାହିଁ । ଜଗତ ଏବଂ ଏହାର ସମୁଦାୟ ଭୋଗ ସେମାନଙ୍କ ପକ୍ଷରେ ଗୋଷ୍ପଦତୁଲ୍ୟ । ତୁମେ ସେମାନଙ୍କୁ ତୁମର ଭାବରେ ବଦ୍ଧ କରି ରଖିବାକୁ କାହିଁକି ଚାହୁଁଛ ? ଏହି ଭାବଟି ଏକାବେଳକେ ଛାଡ଼ି ଦେବାକୁ ହେବ; ପ୍ରତ୍ୟେକଙ୍କୁ ନିଜ ନିଜର ଭାବରେ ରହିବାକୁ ଦିଅ ।

କିଛି ବର୍ଷ ତଳେ ମୁଁ 'ସଚିତ୍ର ଲଣ୍ଡନ ସମାଚାର' (illustrated London News) ନାମକ ସମ୍ବାଦପତ୍ରରେ ଗୋଟିଏ ସମ୍ବାଦ ପାଠ କରିଥିଲି । କେତେଗୁଡ଼ିଏ ଜାହାଜ* ପ୍ରଶାନ୍ତ ମହାସାଗରର 'ସାଉଥ ସି' ଦ୍ୱୀପପୁଞ୍ଜ ନିକଟରେ ଏକ ପ୍ରବଳ ଝଡ଼ର ସମ୍ମୁଖୀନ ହେଲ । ଏହି ପତ୍ରିକାରେ ଏହି ଘଟଣାର ଗୋଟିଏ ଚିତ୍ର ଥିଲା । ଗୋଟିଏ ବ୍ରିଟିଶ ଜାହାଜ ଛଡ଼ା ସବୁଗୁଡ଼ିକ ଭାଙ୍ଗିଯାଇ ବୁଡ଼ିଯାଇଥିଲା । ସେହି ବ୍ରିଟିଶ୍ ଜାହାଜ ଖଣ୍ଡିକ ଝଡ଼ ଅତିକ୍ରମ କରି ଚାଲିଆସିଥିଲା । ଛବି ଖଣ୍ଡିକରେ ଅଛି—ଯେଉଁ ଜାହାଜଗୁଡ଼ିକ ବୁଡ଼ିଯାଉଛି, ସେଗୁଡ଼ିକର ଡେକ୍‌ରେ ମଜ୍ଜମାନ ଆରୋହୀଦଳ ଠିଆ ହୋଇ, ଯେଉଁ ଜାହାଜଖଣ୍ଡିକ ଝଡ଼ ଅତିକ୍ରମ କରିଯାଉଛି, ସେହି ଜାହାଜର

* ପ୍ରଶାନ୍ତ ମହାସାଗରସ୍ଥ ସାମୋଆ ଦ୍ୱୀପପୁଞ୍ଜ ନିକଟରେ ବ୍ରିଟିଶ୍ ଜାହାଜ କ୍ୟାଲିଓପି (Calliope) ଓ ଆମେରିକାର କେତେଗୁଡ଼ିଏ ଯୁଦ୍ଧ-ଜାହାଜ ।

ଲୋକମାନଙ୍କୁ ଉତ୍ସାହ ଦେଉଛନ୍ତି । ଏଭଳି ସାହସୀ ଓ ଉଦାରଭାବାପନ୍ନ ହୁଅ । ଅପର ଲୋକଙ୍କୁ ଟାଣି ନିଜ ଭୂମିକୁ ନେଇଆସ ନାହିଁ ।

ଅନ୍ୟ ଏକ ନିର୍ବୋଧତା, ଆମେ ଦେଖିବାକୁ ପାଉ—ଯଦି ଆମେମାନେ ଆମମାନଙ୍କର ଏହି କ୍ଷୁଦ୍ର 'ମୁଁ ତ୍ୱ'କୁ ହରାଇପକାଉ, ତେବେ ଜଗତରେ କୌଣସି ପ୍ରକାର ନୀତିପରାୟଣତା ରହିବ ନାହିଁ, ମନୁଷ୍ୟ ଜାତିର କୌଣସି ଆଶାଭରସା ରହିବ ନାହିଁ—ଯେଉଁମାନେ ଏହିପରି କହନ୍ତି, ସତେ ଯେପରି ସେମାନେ ସମଗ୍ର ମନୁଷ୍ୟ-ଜାତି ସକାଶେ ସର୍ବଦା ପ୍ରାଣ ଦେବାକୁ ପ୍ରସ୍ତୁତ ହୋଇ ରହିଛନ୍ତି ! ଯଦି ପ୍ରତ୍ୟେକ ଦେଶରେ ଅନ୍ତତଃ ଦୁଇ ଶହ ନରନାରୀ ମନୁଷ୍ୟର ଯଥାର୍ଥ କଲ୍ୟାଣକାମୀ ହୁଅନ୍ତି, ତେବେ ପାଞ୍ଚ ଦିନ ମଧ୍ୟରେ ସତ୍ୟଯୁଗ ଉପସ୍ଥିତ ହେବ । ଆମେମାନେ ଜାଣୁ, ମନୁଷ୍ୟଜାତିର କଲ୍ୟାଣ ନିମିତ୍ତ ଆମେ କିପରି ଜୀବନୋତ୍ସର୍ଗ କରିବାକୁ ପ୍ରସ୍ତୁତ । ଏସବୁ ଅଭିସନ୍ଧି-ପ୍ରଣୋଦିତ ଲମ୍ବା ଲମ୍ବା କଥାମାତ୍ର । ଜଗତର ଇତିହାସରେ ଆମେ ଦେଖିବାକୁ ପାଉ, ଯେଉଁମାନେ ଏହି କ୍ଷୁଦ୍ର 'ମୁଁ' କୁ ଏକାବେଳକେ ଭୁଲିଯାଇଛନ୍ତି, ସେହିମାନେ ହିଁ ମନୁଷ୍ୟଜାତିର ସର୍ବଶ୍ରେଷ୍ଠ ହିତକାରୀ । ଲୋକମାନେ ଯେତେ ବେଶୀ ନିଜର କଥା ଭାବିବେ, ପରର ଉପକାର କରିବା ସେହି ପରିମାଣରେ କମିଯିବ । ଏହା ମଧ୍ୟରେ ଗୋଟିଏ ସ୍ୱାର୍ଥପରତା, ଅପରଟି ନିଃସ୍ୱାର୍ଥପରତା । କ୍ଷୁଦ୍ର କ୍ଷୁଦ୍ର ଭୋଗ-ସୁଖରେ ଆସକ୍ତ ହୋଇ ରହିବା ଏବଂ ଚିରକାଳ ଏହି ଭାବରେ ଚାଲିବା ଏବଂ ସମାନ ଅବସ୍ଥାର ପୁନରାବର୍ତ୍ତନ ଘୋର ସ୍ୱାର୍ଥପରତା । ଏହା ସତ୍ୟାନୁରାଗରୁ ଉତ୍ପନ୍ନ ହୁଏ ନାହିଁ; ଅପର ପ୍ରତି ଦୟା ମଧ୍ୟ ଏହି ଭାବର ଉତ୍ପତ୍ତିର କାରଣ ନୁହେଁ; ବରଂ ଏହାର ଉତ୍ପତ୍ତିର କାରଣ ଘୋର ସ୍ୱାର୍ଥପରତା । ଅନ୍ୟ କାହା ଆଡ଼କୁ ଦୃଷ୍ଟି ନ ଦେଇ ନିଜେ ହିଁ ସମସ୍ତ ଭୋଗ କରିବ, ଏହି ଭାବରୁ ଏହାର ଉତ୍ପତ୍ତି । ମୁଁ ଜଗତରେ ପ୍ରାଚୀନ ମହାପୁରୁଷ ଓ ସାଧୁମାନଙ୍କ ଭଳି ଚରିତ୍ରବାନ୍ ପୁରୁଷ ପୁନର୍ବାର ଦେଖିବାକୁ ଚାହେଁ —ଯେଉଁମାନେ କି ଗୋଟିଏ କ୍ଷୁଦ୍ର ପଶୁର ଉପକାର ସକାଶେ ସହସ୍ର ଜୀବନ ତ୍ୟାଗ କରିବାକୁ ପ୍ରସ୍ତୁତ ଥିଲେ । ନୀତି ଓ ପରୋପକାରର କଥା କଅଣ କହୁଛ ? ଏହା ତ ଆଧୁନିକ କାଳର ବାଜେକଥା ମାତ୍ର ।

ମୁଁ ସେହି ଗୌତମ ବୁଦ୍ଧଙ୍କ ପରି ଚରିତ୍ରବଳଶାଳୀ ଲୋକ ଦେଖିବାକୁ ଚାହେଁ, ଯେ ସଗୁଣ ଈଶ୍ୱର ବା ବ୍ୟକ୍ତିଗତ ଆତ୍ମାରେ ବିଶ୍ୱାସୀ ନ ଥିଲେ, ଯେ ଏ ସମ୍ବନ୍ଧରେ କେବେହେଲେ କୌଣସି ପ୍ରଶ୍ନ କରିନାହାନ୍ତି, ଯେ ଏ ସମ୍ବନ୍ଧରେ ସମ୍ପୂର୍ଣ୍ଣ ଅଜ୍ଞେୟବାଦୀ ଥିଲେ; କିନ୍ତୁ ଯେ ସମସ୍ତଙ୍କ ସକାଶେ ନିଜର ପ୍ରାଣ ଦେବାକୁ ପ୍ରସ୍ତୁତ ଥିଲେ—ସାରା ଜୀବନ ସମସ୍ତଙ୍କର ଉପକାର କରିବାରେ ନିଯୁକ୍ତ ଥିଲେ, ଅପରର ହିତ କିପରି ହେବ, ଏହା ହିଁ ଯାହାଙ୍କର ସାରା ଜୀବନ ଚିନ୍ତା ଥିଲା । ତାଙ୍କ ଜୀବନ-ଚରିତର

ଲେଖକ ଠିକ୍ କହୁଛନ୍ତି ଯେ ସେ 'ବହୁଜନହିତାୟ ବହୁଜନସୁଖାୟ' ଜନ୍ମଗ୍ରହଣ କରିଥିଲେ । ସେ ନିଜର ମୁକ୍ତି ପାଇଁ ବଣକୁ ଯାଇ ଧ୍ୟାନ କରି ନ ଥିଲେ । ଜଗତ ଜଳିଯାଉଛି—ବଞ୍ଚିବାର ବାଟ ବାହାର ନ କଲେ ନ ଚଳେ । ତାଙ୍କର ସାରା ଜୀବନବ୍ୟାପୀ ଏହି ଗୋଟିଏ ଚିନ୍ତା—ଜଗତରେ ଏତେ ଦୁଃଖ କାହିଁକି ? ତୁମେ-ମାନେ କଅଣ ମନେକର ଯେ ଆମେମାନେ ତାଙ୍କ ପରି ନୀତିପରାୟଣ ?

❊ ❊ ❊

ଯୀଶୁଖ୍ରୀଷ୍ଟ ଯେଉଁ ଧର୍ମ ପ୍ରଚାର କରିଥିଲେ, ସେହି ଖାଣ୍ଟି ଖ୍ରୀଷ୍ଟଧର୍ମ ଓ ବେଦାନ୍ତଧର୍ମ ଭିତରେ ଅତି ସାମାନ୍ୟ ପ୍ରଭେଦ । ସେହି ଖ୍ରୀଷ୍ଟଧର୍ମର ବିକୃତଭାବ ଖୁବ୍ ଅଳ୍ପ । ସେ ଅଦ୍ୱୈତବାଦ ପ୍ରଚାର କରିଛନ୍ତି ଏବଂ ସାଧାରଣଙ୍କର ଉପଯୋଗୀ ଓ ଉଚ୍ଚତମ ଆଦର୍ଶ ଧାରଣା କରିବାର ସୋପାନସ୍ୱରୂପ ଦ୍ୱୈତବାଦର କଥା ମଧ୍ୟ କହିଛନ୍ତି । 'ଆମମାନଙ୍କର ସ୍ୱର୍ଗସ୍ଥ ପିତା' ବୋଲି ପ୍ରାର୍ଥନା କରିବାକୁ ଉପଦେଶ ସେ ଯେପରି ଦେଇଛନ୍ତି, ସେହିପରି ଏହା ମଧ୍ୟ ସେ କହିଛନ୍ତି, 'ମୁଁ ଓ ମୋର ପିତା ଏକ ।' ସେ ଏହା ମଧ୍ୟ ଜାଣିଥିଲେ ଯେ ଏହି ସ୍ୱର୍ଗସ୍ଥ ପିତାଙ୍କୁ ଦ୍ୱୈତଭାବରେ ଉପାସନା କରୁ କରୁ କ୍ରମେ ଅଭେଦବୁଦ୍ଧି ଆସିଥାଏ । ପ୍ରଥମ ଅବସ୍ଥାରେ ଖ୍ରୀଷ୍ଟଧର୍ମ କେବଳ ପ୍ରେମ ଓ ଆଶୀର୍ବାଦପୂର୍ଣ୍ଣ ଥିଲା; କିନ୍ତୁ ଅବଶେଷରେ ନାନାବିଧ ଭାବ ପ୍ରବେଶ କରିବାଦ୍ୱାରା ଏହା ବିକୃତଭାବ ଧାରଣ କରି ଅବନତ ହେଲା ।

ଏହି ଯେଉଁ କ୍ଷୁଦ୍ର 'ମୁଁ' ସକାଶେ ମାରାମାରି, 'ମୁଁ' ପ୍ରତି ଅତିଶୟ ଅନୁରାଗ, ମୃତ୍ୟୁ ପରେ ମଧ୍ୟ ଏହି କ୍ଷୁଦ୍ର 'ମୁଁ' ଏହି କ୍ଷୁଦ୍ର ବ୍ୟକ୍ତିତ୍ୱ ନେଇ ରହିବାର ଇଚ୍ଛା, ଏହା ଧର୍ମର ବିକୃତଭାବରୁ ଉତ୍ପନ୍ନ ହୋଇଛି । ଲୋକେ କହନ୍ତି, ଏହା ନିଃସ୍ୱାର୍ଥପରତା —ଏହା ନୀତିର ଭିତ୍ତିସ୍ୱରୂପ । ଏହା ଯଦି ନୀତିର ଭିତ୍ତି ହୁଏ, ତେବେ ଆଉ ଦୁର୍ନୀତିର ଭିତ୍ତି କଅଣ ? ସ୍ୱାର୍ଥପରତା ପୁଣି ନୀତିର ଭିତ୍ତି ! ଏବଂ ଯେଉଁ ସମସ୍ତ ନରନାରୀଙ୍କ ନିକଟରୁ ଆମେମାନେ ଅଧିକ ଜ୍ଞାନ ପ୍ରତ୍ୟାଶା କରୁ, ସେମାନେ ମଧ୍ୟ ଏହି କ୍ଷୁଦ୍ର 'ମୁଁ' ନାଶ ହେଲେ ସବୁ ନୀତି ଏକାବେଳକେ ନଷ୍ଟ ହେବ, ଏହା ଭାବି ବ୍ୟାକୁଳ । ସର୍ବପ୍ରକାର ଶୁଭର, ସର୍ବପ୍ରକାର ନୈତିକ ମଙ୍ଗଳର ମୂଳମନ୍ତ୍ର 'ମୁଁ ନୁହେଁ, ତୁମେ' ।

କିଏ ଚିନ୍ତା କରେ—ସ୍ୱର୍ଗ ନରକ ଅଛି କି ନାହିଁ ? ମୋର ଆତ୍ମା ଅଛି କି ନାହିଁ ? କୌଣସି ଅପରିଣାମୀ ଅପରିବର୍ତ୍ତନୀୟ ସତ୍ତା ଅଛି କି ନାହିଁ ? ଏହି ସଂସାର ରହିଛି, ଏହା ମହାଦୁଃଖରେ ପରିପୂର୍ଣ୍ଣ । ବୁଦ୍ଧଙ୍କ ପରି ଏହି ସଂସାର-ସମୁଦ୍ରରେ

ଝାସ ଦଅ, ଦୁଃଖ ଲଘବ କରିବା ପାଇଁ ସଂଗ୍ରାମ କର, ନ ହେଲେ ଏହି ଚେଷ୍ଟାରେ ପ୍ରାଣ ବିସର୍ଜନ ଦିଅ । ଆସ୍ତିକ ହୁଅ ବା ନାସ୍ତିକ ହୁଅ, ଅଜ୍ଞେୟବାଦୀ ହୁଅ ବା ବୈଦାନ୍ତିକ ହୁଅ, ଖ୍ରୀଷ୍ଟିୟାନ ହୁଅ ବା ମୁସଲମାନ ହୁଅ, ନିଜକୁ ଭୁଲିଯାଅ—ଏହା ହିଁ ପ୍ରଥମ ଶିକ୍ଷାର ବିଷୟ । ଏହି ଶିକ୍ଷା, ଏହି ଉପଦେଶ ସମସ୍ତେ ବୁଝିପାରନ୍ତି—'ନାହଂ ନାହଂ, ତୁହୁଁ ତୁହୁଁ'—ଅହଂ-ନାଶ ଓ ପ୍ରକୃତ 'ମୁଁ'ର ବିକାଶ ।

ଦୁଇଟି ଶକ୍ତି ସର୍ବଦା ସମାନ ଭାବରେ କାର୍ଯ୍ୟ କରୁଛି । ଗୋଟିଏ 'ଅହଂ' ଓ ଅନ୍ୟଟି 'ନାହଂ' । କେବଳ ମନୁଷ୍ୟ ଭିତରେ ନୁହେଁ, ଜୀବଜନ୍ତୁମାନଙ୍କ ଭିତରେ ମଧ୍ୟ ଏହି ଦୁଇଟି ଶକ୍ତିର ବିକାଶ ଦେଖାଯାଏ—ଏପରିକି କ୍ଷୁଦ୍ରତମ କୀଟାଣୁ ଭିତରେ ମଧ୍ୟ ଏହି ଦୁଇ ଶକ୍ତିର ପ୍ରକାଶ । ନର-ଶୋଣିତ-ପାନରେ ଲୋଲଜିହ୍ୱ ବ୍ୟାଘ୍ର ତାହାର ଶାବକକୁ ରକ୍ଷା କରିବା ସକାଶେ ପ୍ରାଣ ଦେବାକୁ ପ୍ରସ୍ତୁତ । ଅତି ଦୁର୍ବୃତ୍ତ ବ୍ୟକ୍ତି, ଯେ ଅନାୟାସରେ ତାହାର ଭ୍ରାତୃବୃନ୍ଦମାନଙ୍କୁ ହତ୍ୟା କରିପାରେ, ସେ ମଧ୍ୟ ଅନାହାରରେ ମୁମୂର୍ଷୁ ତାହାର ସ୍ତ୍ରୀ ଅଥବା ପୁତ୍ର କନ୍ୟା ସକାଶେ ସବୁ କରିବାକୁ ପ୍ରସ୍ତୁତ । ଅତଏବ ଦେଖାଯାଏ, ସୃଷ୍ଟି ଭିତରେ ଏହି ଦୁଇଟି ଶକ୍ତି ପାଖାପାଖି କାର୍ଯ୍ୟ କରୁଛନ୍ତି—ଯେଉଁଠାରେ ଗୋଟିଏ ଶକ୍ତି ଦେଖିବ, ସେଠାରେ ଅପର ଶକ୍ତିଟିର ମଧ୍ୟ ଅସ୍ତିତ୍ୱ ଦେଖିବ । ଗୋଟିଏ ସ୍ୱାର୍ଥପରତା, ଅନ୍ୟଟି ନିଃସ୍ୱାର୍ଥପରତା । ଗୋଟିଏ ଗ୍ରହଣ, ଅନ୍ୟଟି ତ୍ୟାଗ । କ୍ଷୁଦ୍ରତମ ପ୍ରାଣୀଠାରୁ ଉଚ୍ଚତମ ପ୍ରାଣୀ ପର୍ଯ୍ୟନ୍ତ ସମୁଦାୟ ବ୍ରହ୍ମାଣ୍ଡ ଏହି ଦୁଇ ଶକ୍ତିର ଲୀଳାକ୍ଷେତ୍ର । ଏହା କୌଣସି ପ୍ରମାଣସାପେକ୍ଷ ନୁହେଁ—ଏହା ସ୍ୱତଃ ପ୍ରମାଣିତ ।

ସମାଜରେ ଗୋଟିଏ ସମ୍ପ୍ରଦାୟର ଲୋକମାନଙ୍କର କହିବାର କି ଅଧିକାର ଅଛି ଯେ, ଜଗତରେ ସମୁଦାୟ କାର୍ଯ୍ୟ ଓ ବିକାଶ ଏହି ଦୁଇ ଶକ୍ତି ମଧ୍ୟରୁ ଅନ୍ୟତମ ଶକ୍ତି ଅର୍ଥାତ୍ ସ୍ୱାର୍ଥଶକ୍ତି ବା ପ୍ରତିଦ୍ୱନ୍ଦ୍ୱିତା ଓ ସଂଘର୍ଷ ଉପରେ ସ୍ଥାପିତ ? ଜଗତରେ ସମସ୍ତ କାର୍ଯ୍ୟ ରାଗ, ଦ୍ୱେଷ, ବିବାଦ ଓ ପ୍ରତିଯୋଗିତା ଉପରେ ସ୍ଥାପିତ—ଏ କଥା କହିବା ପାଇଁ ସେମାନଙ୍କର କି ଅଧିକାର ଅଛି ? ଏହିପରି ପ୍ରବୃତ୍ତି ଯେ ଜଗତକୁ କେତେ କାଂଶରେ ପରିଚାଳିତ କରୁଛି, ଏହା ଆମେ ଅସ୍ୱୀକାର କରୁ ନାହୁଁ । କିନ୍ତୁ ଅନ୍ୟ ଶକ୍ତିଟିର ଅସ୍ତିତ୍ୱ ଓ କ୍ରିୟା ଅସ୍ୱୀକାର କରିବା ପାଇଁ ସେମାନଙ୍କର କି ଅଧିକାର ଅଛି ? ସେମାନେ କିଅଣ ଅସ୍ୱୀକାର କରିପାରିବେ ଯେ, ଏହି ପ୍ରେମ, ଏହି ଅହଂଶୂନ୍ୟତା, ଏହି ତ୍ୟାଗ ହିଁ ଜଗତର ଏକମାତ୍ର ପରା ଶକ୍ତି ? ଅନ୍ୟ ଶକ୍ତିଟି ଏହି 'ନାହଂ' ବା ପ୍ରେମଶକ୍ତିର ଅପପ୍ରୟୋଗର ଫଳ ଏବଂ ଏଥିରୁ ପ୍ରତିଦ୍ୱନ୍ଦ୍ୱିତାର ଉତ୍ପତ୍ତି । ଅଶୁଭର ଉତ୍ପତ୍ତି ମଧ୍ୟ ନିଃସ୍ୱାର୍ଥପରତାରୁ—ଅଶୁଭର ପରିଣାମ ମଧ୍ୟ ଶୁଭ ଛଡ଼ା ଆଉ କିଛି ନୁହେଁ । ଏହା କେବଳ ମଙ୍ଗଳବିଧାୟିନୀ ଶକ୍ତିର ଅପବ୍ୟବହାର ମାତ୍ର । ଗୋଟିଏ

ବ୍ୟକ୍ତି ଯେ ଅପର ବ୍ୟକ୍ତିକୁ ହତ୍ୟା କରେ, ତାହା ହୁଏତ ନିଜର ପୁତ୍ରାଦି ପ୍ରତି ସ୍ନେହର ପ୍ରେରଣାରେ—ସେମାନଙ୍କୁ ଭରଣପୋଷଣ କରିବା ପାଇଁ ତାହାର ପ୍ରେମ ଅନ୍ୟ ଲକ୍ଷ ଲକ୍ଷ ବ୍ୟକ୍ତିଙ୍କ ପାଖରୁ ପ୍ରତ୍ୟାହୃତ ହୋଇ, ତାହାର ଶିଶୁ ସନ୍ତାନ ଉପରେ ନିହିତ ହୋଇ ସସୀମଭାବ ଧାରଣ କରିଛି; କିନ୍ତୁ ସୀମାବଦ୍ଧ ହେଉ ବା ଅସୀମ ହେଉ, ଏହି ପ୍ରେମ ସେହି ଭଗବାନଙ୍କ ବ୍ୟତୀତ ଅନ୍ୟ କିଛି ନୁହେଁ ।

ଅତଏବ ସମଗ୍ର ଜଗତର ପ୍ରେରଣା-ଶକ୍ତି ଜଗତ ମଧ୍ୟରେ ଏକମାତ୍ର ପ୍ରକୃତ ଓ ଜୀବନ୍ତ ଶକ୍ତି ସେହି ଅଦ୍ଭୁତ ଭାବ—ତାହା ଯେକୌଣସି ଆକାରରେ ବ୍ୟକ୍ତ ହେଉ ନା କାହିଁକି, ଏହା ସେହି ପ୍ରେମ, ନିଃସ୍ୱାର୍ଥପରତା, ତ୍ୟାଗ ଛଡ଼ା ଅନ୍ୟ କିଛି ନୁହେଁ । ବେଦାନ୍ତ ଏଥିପାଇଁ ଦ୍ୱୈତବାଦ ତ୍ୟାଗ କରି ଅଦ୍ୱୈତ ଉପରେ ଜୋର୍ ଦିଅନ୍ତି । ଆମେମାନେ ଏହି ଅଦ୍ୱୈତ-ବ୍ୟାଖ୍ୟା ଉପରେ ବିଶେଷ ଜୋର୍ ଦେଉ; କାରଣ, ଆମମାନଙ୍କର ଜ୍ଞାନବିଜ୍ଞାନର ଅଭିମାନ ସତ୍ତ୍ୱେ ଆମେମାନେ ଜାଣୁ—ଗୋଟିଏ କାରଣଦ୍ୱାରା ଯେତେବେଳେ ଅନେକଗୁଡ଼ିଏ କାର୍ଯ୍ୟର ବ୍ୟାଖ୍ୟା କରାଯାଏ ଏବଂ ଅନେକଗୁଡ଼ିଏ କାରଣଦ୍ୱାରା ମଧ୍ୟ ଯଦି ସେହି କାର୍ଯ୍ୟଗୁଡ଼ିକର ବ୍ୟାଖ୍ୟା କରାଯାଏ, ତେବେ ସେହି ଅନେକଗୁଡ଼ିଏ କାରଣକୁ ସ୍ୱୀକାର ନ କରି ପୂର୍ବୋକ୍ତ ଗୋଟିଏ କାରଣ ହିଁ ସତ୍ୟ ବୋଲି ସ୍ୱୀକାର୍ଯ୍ୟ । ବର୍ତ୍ତମାନ ଆମେମାନେ ଯଦି କେବଳ ସ୍ୱୀକାର କରୁ ଯେ, ସେହି ଅପୂର୍ବ ପ୍ରେମ ସୀମାବଦ୍ଧ ହୋଇ ଅସତ୍‌ରୂପେ ପ୍ରତୀୟମାନ ହୁଏ, ତେବେ ଆମେମାନେ ଗୋଟିଏ ପ୍ରେମଶକ୍ତିଦ୍ୱାରା ସମୁଦାୟ ଜଗତର ବ୍ୟାଖ୍ୟା କରିବାକୁ ସମର୍ଥ ହେଲୁ । ନଚେତ୍ ଆମମାନଙ୍କୁ ଜଗତର ଦୁଇଟି କାରଣ ମାନିବାକୁ ହେବ—ଗୋଟିଏ ଶୁଭଶକ୍ତି, ଅନ୍ୟଟି ଅଶୁଭଶକ୍ତି—ଗୋଟିଏ ପ୍ରେମଶକ୍ତି, ଅନ୍ୟଟି ଦ୍ୱେଷଶକ୍ତି । ଏହି ଦୁଇଟି ସିଦ୍ଧାନ୍ତ ମଧ୍ୟରେ କେଉଁଟି ଅଧିକ ଯୁକ୍ତିସଙ୍ଗତ ? ଶକ୍ତିର ଏହି ଏକତ୍ୱକୁ ମାନି ସମୁଦାୟ ଜଗତର ବ୍ୟାଖ୍ୟା କରିବା ହିଁ ଅଧିକତର ଯୁକ୍ତିଯୁକ୍ତ ।

ମୁଁ ବର୍ତ୍ତମାନ ଏପରି ସବୁ ବିଷୟରେ ଆସି ପହଞ୍ଚିଛି, ଯାହା ସମ୍ଭବତଃ ଦ୍ୱୈତବାଦୀମାନଙ୍କର ଅଧିକାର-ବହିର୍ଭୂତ । ମୋର ବୋଧ ହେଉଛି, ମୁଁ ଦ୍ୱୈତ-ବାଦର ଆଲୋଚନା ବେଶୀ ସମୟ କରିପାରିବି ନାହିଁ । ମୋର ଏହା ଦେଖାଇବା ଉଦ୍ଦେଶ୍ୟ ଯେ—ନୀତି ଓ ନିଃସ୍ୱାର୍ଥପରତାର ଉଚ୍ଚତମ ଆଦର୍ଶ, ଉଚ୍ଚତମ ଦାର୍ଶନିକ ଧାରଣା ସହିତ ଅସଙ୍ଗତ ନୁହେଁ; ନୀତିପରାୟଣ ହେବା ପାଇଁ ତୁମର ଦାର୍ଶନିକ ଧାରଣାକୁ ଖର୍ବ କରିବାକୁ ହେବ ନାହିଁ; ବରଂ ଭିତ୍ତିଭୂମି ଲାଭକରିବା ପାଇଁ ନୀତିକୁ ଉଚ୍ଚତମ ଦାର୍ଶନିକ ଓ ବୈଜ୍ଞାନିକ ଧାରଣାସମ୍ପନ୍ନ ହେବାକୁ ହେବ । ମନୁଷ୍ୟର ଜ୍ଞାନ ମନୁଷ୍ୟର କଲ୍ୟାଣର ବିରୋଧୀ ନୁହେଁ; ବରଂ ଜୀବନର ପ୍ରତ୍ୟେକ ବିଭାଗରେ ଜ୍ଞାନ ଆମମାନଙ୍କୁ ରକ୍ଷା କରିଥାଏ । ଜ୍ଞାନ ହିଁ ଉପାସନା । ଆମେମାନେ ଯେତେ ଜ୍ଞାନ

ଲାଭ କରିପାରୁ, ସେତେ ଆମମାନଙ୍କର ମଙ୍ଗଳ । ବେଦାନ୍ତୀ କହନ୍ତି, ଏହି ଆପାତ-ପ୍ରତୀୟମାନ ଅଶୁଭର କାରଣ—ଅସୀମର ସୀମାବଦ୍ଧ ଭାବ । ଯେଉଁ ପ୍ରେମ ସୀମାବଦ୍ଧ ହୋଇ କ୍ଷୁଦ୍ରଭାବାପନ୍ନ ହୋଇଯାଏ ଓ ଅଶୁଭ ବୋଲି ପ୍ରତୀୟମାନ ହୁଏ, ତାହା ଅପର ପ୍ରାନ୍ତରେ ଅସୀମ ହୋଇ ବ୍ରହ୍ମରୂପେ ପ୍ରକାଶ ପାଏ । ବେଦାନ୍ତ ଏହା ମଧ୍ୟ କହନ୍ତି ଯେ, ଏହି ଆପାତପ୍ରତୀୟମାନ ସମୁଦାୟ ଅଶୁଭର କାରଣ ଆମ ଭିତରେ ହିଁ ରହିଛି । କୌଣସି ଅତିପ୍ରାକୃତ ସତ୍ତା ଉପରେ ଦୋଷାରୋପ କର ନାହିଁ, ଅଥବା ନିରାଶ ବା ବିଷଣ୍ଣ ହୋଇପଡ଼ ନାହିଁ, ଅଥବା ଏହା ମଧ୍ୟ ମନେକର ନାହିଁ ଯେ, ଆମେମାନେ ଗାତରେ ପଡ଼ିଛୁ—ଅନ୍ୟ କେହି ଆସି ଆମମାନଙ୍କୁ ସାହାଯ୍ୟ ନ କଲେ ଆମେ ଆଉ ସେଠାରୁ ଉଠିପାରିବୁ ନାହିଁ । ବେଦାନ୍ତ କହେ, ଅନ୍ୟର ସାହାଯ୍ୟରେ ଆମମାନଙ୍କର କିଛି ହୋଇପାରିବ ନାହିଁ । ଆମେମାନେ ସମସ୍ତେ ଏଣ୍ଡିପୋକ ପରି । ଆମେମାନେ ନିଜ ଦେହରୁ ଜାଲ ପ୍ରସ୍ତୁତ କରି ସେଥିରେ ଆବଦ୍ଧ ହୋଇ ରହିଛୁ; କିନ୍ତୁ ଏ ବଦ୍ଧଭାବ ଚିରକାଳ ସକାଶେ ନୁହେଁ । ଆମେମାନେ ଏଥିରୁ ପ୍ରଜାପତି ହୋଇ ବାହାରିବୁ ଓ ମୁକ୍ତ ହେବୁ । ଆମେମାନେ ଆମମାନଙ୍କର ଚତୁର୍ଦ୍ଦିଗରେ ଏହି କର୍ମଜାଲ ବିସ୍ତୃତ କରି ରଖିଛୁ; ଆମେମାନେ ଅଜ୍ଞାନବଶତଃ ମନେ କରୁଛୁ ଯେ, ଆମେମାନେ ବଦ୍ଧ ଏବଂ ବେଳେ ବେଳେ ସାହାଯ୍ୟ ପାଇଁ ଚିତ୍କାର ଓ କ୍ରନ୍ଦନ କରୁଛୁ; କିନ୍ତୁ ବାହାରୁ କୌଣସି ସାହାଯ୍ୟ ମିଳେ ନାହିଁ, ସାହାଯ୍ୟ ଭିତରୁ ମିଳେ । ସମସ୍ତ ଦେବଗଣଙ୍କ ନିକଟରେ ଉଚ୍ଚୈଃସ୍ୱରରେ କ୍ରନ୍ଦନ କରିପାର । ମୁଁ ଅନେକ ବର୍ଷ ଧରି ଏହିପରି କ୍ରନ୍ଦନ କରିଥିଲି; ଅବଶେଷରେ ଦେଖିଲି ମୁଁ ସାହାଯ୍ୟ ପାଇଛି; କିନ୍ତୁ ଏହି ସାହାଯ୍ୟ ଭିତରୁ ଆସିଲା । ଭ୍ରାନ୍ତିବଶତଃ ଏତେ ଦିନ ଧରି ଯାହା କରୁଥିଲି, ତାହାକୁ ନଷ୍ଟ କରିବାକୁ ପଡ଼ିଲା । ଏହା ହିଁ ଏକମାତ୍ର ଉପାୟ । ମୁଁ ନିଜେ ଯେଉଁ ଜାଲରେ ନିଜକୁ ବାନ୍ଧି ରଖିଛି, ତାହାକୁ ମୋତେ ହିଁ ଛିନ୍ନ କରିବାକୁ ହେବ ଏବଂ ତାହାକୁ ଛିନ୍ନ କରିବାର ଶକ୍ତି ମୋ ଭିତରେ ରହିଛି । ଏହା ମୁଁ ଦୃଢ଼ଭାବରେ କହିପାରେ ଯେ, ମୋ ଜୀବନର ସତ୍ କିମ୍ବା ଅସତ୍ କୌଣସି ପ୍ରବୃତ୍ତି ବୃଥା ଯାଇ ନାହିଁ—ମୁଁ ସେହି ଅତୀତ ଶୁଭାଶୁଭ ଉଭୟ କର୍ମର ସମଷ୍ଟିସ୍ୱରୂପ । ମୁଁ ଜୀବନରେ ଅନେକ ଭୁଲ କରିଛି; କିନ୍ତୁ ଏହିଗୁଡ଼ିକ ବ୍ୟତୀତ ମୁଁ ଆଜି ଯାହା, ତାହା କଦାପି ହୋଇ ନ ଥାନ୍ତି । ମୁଁ ମୋର ଜୀବନ ସମ୍ବନ୍ଧରେ ଅତ୍ୟନ୍ତ ସନ୍ତୁଷ୍ଟ । ମୋର ଏହା କହିବାର ଉଦ୍ଦେଶ୍ୟ ନୁହେଁ ଯେ, ତୁମେମାନେ ଘରକୁ ଯାଅ ଓ ସେଠାରେ ନାନା ପ୍ରକାର ଅନ୍ୟାୟ କର୍ମ କରୁଥାଅ । ମୋର କଥାକୁ ଭୁଲ ବୁଝ ନାହିଁ । ମୋର କହିବାର ଉଦ୍ଦେଶ୍ୟ ଏହି ଯେ, କେତେଗୁଡ଼ିଏ ଭୁଲ ହୋଇଯାଇଛି ବୋଲି ଏକାବେଳକେ ହତାଶ ହୁଅ ନାହିଁ; ଜାଣିରଖ, ପରିଣାମରେ ସେମାନଙ୍କର ଫଳ ଶୁଭ ହେବ । ଅନ୍ୟଥା ହୋଇପାରିବ ନାହିଁ; କାରଣ, ଶିବତ୍ୱ ଓ ଶୁଦ୍ଧତ୍ୱ ଆମମାନଙ୍କର ପ୍ରକୃତିସିଦ୍ଧ ଧର୍ମ, କୌଣସି ଉପାୟରେ ସେହି ପ୍ରକୃତିର ବ୍ୟତ୍ୟୟ ହେବ ନାହିଁ ।

ଆମମାନଙ୍କର ଯଥାର୍ଥ ସ୍ୱରୂପ ସମ୍ବନ୍ଧ ଏକପ୍ରକାର ।

ଆମମାନଙ୍କର ଏହା ବୁଝିବା ଆବଶ୍ୟକ ଯେ ଆମେମାନେ ଦୁର୍ବଳ ବୋଲି ନାନାବିଧ ଭ୍ରମରେ ପଡ଼ିଅଛୁ । ଆମ ଦୁର୍ବଳତାର ଏକମାତ୍ର କାରଣ ଅଜ୍ଞାନ । ମୁଁ 'ପାପ' ଶବ୍ଦ ବ୍ୟବହାର ନ କରି 'ଭ୍ରମ' ଶବ୍ଦ ବ୍ୟବହାର କରିବାକୁ ପସନ୍ଦ କରେ । ଆମମାନଙ୍କୁ ଭ୍ରମ ବା ଅଜ୍ଞାନରେ ପତିତ କରିଛି କିଏ ? ଆମେମାନେ ନିଜେ ନିଜକୁ ଅଜ୍ଞାନରେ ପତିତ କରିଛୁ । ଆମେମାନେ ନିଜ ନିଜର ଚକ୍ଷୁରେ ନିଜେ ହାତ ଦେଇ 'ଅନ୍ଧକାର' ବୋଲି ଚିତ୍କାର କରୁଛୁ । ହାତ କାଢ଼ିନିଅ, ତାହାହେଲେ ଦେଖିବ, ସେହି ଜୀବାତ୍ମାର ସ୍ୱପ୍ରକାଶ-ସ୍ୱରୂପର ଆଲୋକ ରହିଛି । ଆଧୁନିକ ବୈଜ୍ଞାନିକଗଣ କଅଣ କହୁଛନ୍ତି, ତାହା କଅଣ ଲକ୍ଷ୍ୟ କରିନାହିଁ ? ଏହି କ୍ରମ-ବିକାଶର ହେତୁ କଅଣ ? ବାସନା । କୌଣସି ଜନ୍ତୁ ଯେଉଁ ଭାବରେ ଅବସ୍ଥିତ, ତଦପେକ୍ଷା ଅନ୍ୟ କୌଣସି ଭାବରେ ସେ ରହିବାକୁ ଚାହେଁ; କାରଣ ସେ ଦେଖେ, ସେ ଯେଉଁ ଅବସ୍ଥାରେ ଅଛି, ତାହା ତା' ପକ୍ଷରେ ଉପଯୋଗୀ ନୁହେଁ—ସୁତରାଂ ସେ ଗୋଟିଏ ନୂତନ ଶରୀର ଗଠନ କରିଥାଏ । ତୁମେ ନିମ୍ନତମ ଜୀବାଣୁଠାରୁ ନିଜ ଇଚ୍ଛା-ଶକ୍ତି ବଳରେ ଉତ୍ପନ୍ନ ହୋଇଛ—ପୁନଶ୍ଚ ସେହି ଇଚ୍ଛା-ଶକ୍ତି ପ୍ରୟୋଗ କର, ଆହୁରି ଉନ୍ନତ ହୋଇପାରିବ । ଇଚ୍ଛା ସର୍ବଶକ୍ତିମତୀ । ତୁମେ କହିପାର, ଯଦି ଇଚ୍ଛା ସର୍ବ-ଶକ୍ତିମତୀ ହୁଏ, ତେବେ ମୁଁ ଯାହା ଇଚ୍ଛା ତାହା କରିପାରେ ନାହିଁ କାହିଁକି ? ତୁମେ ଯେତେବେଳେ ଏ କଥା କହ, ସେତେବେଳେ ତୁମେ ତୁମର କ୍ଷୁଦ୍ର 'ମୁଁ' ଟିକୁ ଲକ୍ଷ୍ୟ କରୁଛ ମାତ୍ର । ଭାବି ଦେଖ—ତୁମେ କ୍ଷୁଦ୍ର ଜୀବାଣୁଠାରୁ ଏହି ମନୁଷ୍ୟ ହୋଇଛ । କିଏ ତୁମକୁ ମନୁଷ୍ୟ କଲା ? ତୁମ ନିଜର ଇଚ୍ଛା-ଶକ୍ତି । ତୁମେ କଅଣ ଅସ୍ୱୀକାର କରିପାର ଯେ ଇଚ୍ଛା ସର୍ବଶକ୍ତିମତୀ ? ଯାହା ତୁମକୁ ଏତେଦୂର ଉନ୍ନତ କରିଛି, ତାହା ତୁମକୁ ଆହୁରି ଅଧିକ ଉନ୍ନତ କରିବ । ଆମମାନଙ୍କର ପ୍ରୟୋଜନ—ଚରିତ୍ର, ଇଚ୍ଛାଶକ୍ତିର ଦୃଢ଼ତା—ଦୁର୍ବଳତା ନୁହେଁ ।

ଅତଏବ ଯଦି ମୁଁ ତୁମକୁ ଉପଦେଶ ଦିଏ ଯେ, ତୁମର ପ୍ରକୃତିଟି ଅସତ୍, ଆଉ ତୁମେ କେତେଗୁଡ଼ିଏ ଭୁଲ କରିଛ ବୋଲି ଅନୁତାପ ଓ କ୍ରନ୍ଦନ କରି ତୁମକୁ ଜୀବନ କାଟିବାକୁ ପଡ଼ିବ, ତାହାହେଲେ ତୁମର ବିଶେଷ କିଛି ଉପକାର ହେବ ନାହିଁ; ବରଂ ଏହା ତୁମକୁ ଅଧିକତର ଦୁର୍ବଳ କରି ପକାଇବ ଏବଂ ତଦ୍ୱାରା ତୁମକୁ ଭଲ ହେବାର ପଥ ନ ଦେଖାଇ ବରଂ ଆହୁରି ମନ୍ଦ ହେବାର ପଥ ଦେଖାଇ ଦିଆଯିବ । ଯଦି ସହସ୍ର ବର୍ଷ ଧରି ଏହି ଗୃହ ଅନ୍ଧକାରାଚ୍ଛନ୍ନ ଥାଏ ଏବଂ ତୁମେ ସେହି ଗୃହ ଭିତରକୁ ଆସି 'ହାୟ, ହାୟ, ଭାରି ଅନ୍ଧକାର ! ଭାରି ଅନ୍ଧକାର !' ବୋଲି ରୋଦନ କରିବାକୁ ଆରମ୍ଭ କର, ତେବେ କଅଣ ଅନ୍ଧକାର ଚାଲିଯିବ ? ଗୋଟିଏ ଦିଆସିଲି କାଠି ଜାଳିଲେ ମୁହୂର୍ତ୍ତିକ ମଧ୍ୟରେ ଗୃହ ଆଲୋକିତ ହେବ । ଅତଏବ

ହାସ୍ ଜୀବନ 'ମୁଁ ଅନେକ ଦୋଷ କରିଛି, ମୁଁ ଅନେକ ଅନ୍ୟାୟ କରିଛି'—ଏଭଳି ଚିନ୍ତା କଲେ କଅଣ ତୁମର ଉପକାର ହେବ? ଆମେମାନେ ଯେ ନାନା ଦୋଷରେ ଦୋଷୀ, ଏହା କାହାକୁ କହିବା ଦରକାର ହୁଏ ନାହିଁ। ଜ୍ଞାନର ଆଲୋକ ଜାଳ, ମୁହୂର୍ତ୍ତିକ ମଧ୍ୟରେ ସବୁ ଅଶୁଭ ଚାଲିଯିବ। ନିଜର ପ୍ରକୃତ ସ୍ୱରୂପକୁ ପ୍ରକାଶ କର—ପ୍ରକୃତ 'ମୁଁ'କୁ, ସେହି ଜ୍ୟୋତିର୍ମୟ, ଉଜ୍ଜ୍ୱଳ, ନିତ୍ୟଶୁଦ୍ଧ 'ମୁଁ'କୁ ପ୍ରକାଶ କର; ପ୍ରତ୍ୟେକ ବ୍ୟକ୍ତି ମଧ୍ୟରେ ସେହି ଆତ୍ମାଙ୍କୁ ଦର୍ଶନ କର। ମୋର ଇଚ୍ଛା, ସକଳ ବ୍ୟକ୍ତି ଏଭଳି ଅବସ୍ଥା ଲାଭ କରନ୍ତୁ, ଯେପରିକି ଅତି ଜଘନ୍ୟ ପୁରୁଷକୁ ଦେଖିଲେ ମଧ୍ୟ ତାହାର ବାହାରର ଦୁର୍ବଳତାକୁ ଲକ୍ଷ୍ୟ ନ କରି ତାହାର ହୃଦୟାଭ୍ୟନ୍ତରବର୍ତ୍ତୀ ଭଗବାନଙ୍କୁ ଦେଖିପାରିବେ ଏବଂ ତାହାର ନିନ୍ଦା ନ କରି କହିପାରିବେ, 'ହେ ସ୍ୱପ୍ରକାଶ ଜ୍ୟୋତିର୍ମୟ ! ଉଠ ! ହେ ସଦାଶୁଦ୍ଧସ୍ୱରୂପ, ଉଠ ! ହେ ଅଜ, ଅବିନାଶୀ, ସର୍ବଶକ୍ତିମାନ୍, ଉଠ ! ଆତ୍ମସ୍ୱରୂପ ପ୍ରକାଶ କର ! ତୁମେ ଯେଉଁସବୁ କ୍ଷୁଦ୍ର ଭାବରେ ଆବଦ୍ଧ ହୋଇ ରହିଛ, ତାହା ତୁମକୁ ସାଜେ ନାହିଁ।' ଅଦ୍ୱୈତବାଦ ଏହି ଶ୍ରେଷ୍ଠ ପ୍ରାର୍ଥନାର ଶିକ୍ଷା ଦେଇଥାଆନ୍ତି। ଏହା ହିଁ ଏକମାତ୍ର ପ୍ରାର୍ଥନା—ନିଜ-ସ୍ୱରୂପ-ସ୍ମରଣ, ସଦା ସେହି ଅନ୍ତରସ୍ଥ ଈଶ୍ୱରଙ୍କୁ ସ୍ମରଣ, ତାହାଙ୍କୁ ସର୍ବଦା ଅନନ୍ତ, ସର୍ବଶକ୍ତିମାନ, ସଦାମଙ୍ଗଳମୟ ବୋଲି ସ୍ମରଣ। ତାଙ୍କଠାରେ ଏହି କ୍ଷୁଦ୍ର ଅହଂ ନାହିଁ, କ୍ଷୁଦ୍ର ବନ୍ଧନସମୂହ ନାହିଁ। ଏହି ପ୍ରାର୍ଥନା ନିଃସ୍ୱାର୍ଥ ବୋଲି ଭୟଶୂନ୍ୟ ଏବଂ ଶକ୍ତିସମ୍ପନ୍ନ। କାରଣ ସ୍ୱାର୍ଥରୁ ଭୟର ଉତ୍ପତ୍ତି। ଯାହାର ନିଜ ପାଇଁ କୌଣସି କାମନା ନାହିଁ, ସେ କାହାକୁ ଭୟ କରିବ ? କେଉଁ ବସ୍ତୁ ବା ତାହାକୁ ଭୀତ କରିପାରେ ? ମୃତ୍ୟୁ ତାହାକୁ କି ଭୟ ଦେଖାଇବ ? ଅଶୁଭ, ବିପଦ ତାହାକୁ କି ଭୟ ଦେଖାଇପାରେ ? ଅତଏବ ଯଦି ଆମେମାନେ ଅଦ୍ୱୈତବାଦୀ ହେଉ, ଆମମାନଙ୍କୁ ଅବଶ୍ୟ ଚିନ୍ତା କରିବାକୁ ହେବ ଯେ, ଆମେମାନେ ଏହି ମୁହୂର୍ତ୍ତିରୁ 'ମୃତ'। ସେତେବେଳେ ମୁଁ ସ୍ତ୍ରୀ, ମୁଁ ପୁରୁଷ—ଏସବୁ ଭାବ ଚାଲିଯାଏ; ସେଗୁଡ଼ିକ କେବଳ କୁସଂସ୍କାର ବୋଲି ମନେହୁଏ—ଅବଶିଷ୍ଟ ରହେ, ସେହି ନିତ୍ୟଶୁଦ୍ଧ, ସେହି ନିତ୍ୟ ଓଜଃସ୍ୱରୂପ ସର୍ବଶକ୍ତିମାନ୍ ସର୍ବଜ୍ଞସ୍ୱରୂପ। ସେତେବେଳେ ମୋର ସମସ୍ତ ଭୟ ଦୂର ହୁଏ। କିଏ ଏହି ସର୍ବବ୍ୟାପୀ 'ମୋର' ଅନିଷ୍ଟ କରିପାରିବ ? ଏହି ଭାବରେ ମୋର ସମୁଦାୟ ଦୁର୍ବଳତା ଦୂରୀଭୂତ ହେବ। ସେତେବେଳେ ସମସ୍ତଙ୍କ ଭିତରେ ସେହି ଶକ୍ତିର ଉଦ୍ଦୀପନା କରିଦେବା ହିଁ ମୋର ଏକମାତ୍ର କାର୍ଯ୍ୟ ହେବ। ମୁଁ ଦେଖୁଛି, ସମସ୍ତେ ସେହି ଆତ୍ମାସ୍ୱରୂପ; କିନ୍ତୁ ସେମାନେ ତାହା ଜାଣନ୍ତି ନାହିଁ। ସୁତରାଂ ସେମାନଙ୍କୁ ଶିଖାଇବାକୁ ହେବ, ତାଙ୍କର ସେହି ଅନନ୍ତସ୍ୱରୂପର ପ୍ରକାଶ ନିମିତ୍ତ ସାହାଯ୍ୟ କରିବାକୁ ହେବ।

ଜଗତରେ ଏହି ଭାବ ପ୍ରଚାର କରିବାର ବିଶେଷ ଆବଶ୍ୟକତା ମୁଁ ଦେଖୁଛି, ଏହିସବୁ ମତ ଅତି ପ୍ରାଚୀନ, ସମ୍ଭବତଃ ଅନେକ ପର୍ବତ ଅପେକ୍ଷା ଅଧିକ ପୁରାତନ।

ସକଳ ସତ୍ୟ ହିଁ ସନାତନ । ସତ୍ୟ ବ୍ୟକ୍ତିବିଶେଷର ସମ୍ପତ୍ତି ନୁହେଁ । କୌଣସି ଜାତି କୌଣସି ବ୍ୟକ୍ତି ଏହା ନିଜସ୍ୱ ବୋଲି ଦାବୀ କରିପାରିବେ ନାହିଁ । ସତ୍ୟ ସକଳ ଆତ୍ମାର ପ୍ରକୃତ ସ୍ୱରୂପ । କୌଣସି ବ୍ୟକ୍ତିବିଶେଷର ଏହା ଉପରେ ଦାବୀ ନାହିଁ; କିନ୍ତୁ ଏହାକୁ କାର୍ଯ୍ୟରେ ପରିଣତ କରିବାକୁ ହେବ, ସରଳଭାବରେ ଏହାର ପ୍ରଚାର କରିବାକୁ ହେବ; କାରଣ, ଉଚ୍ଚତମ ସତ୍ୟସକଳ ଅତି ସହଜ ଓ ସରଳ । ଅତି ସହଜ ଓ ସରଳ ଭାବରେ ଏହାର ପ୍ରଚାର ଆବଶ୍ୟକ, ଯଦ୍ଦ୍ୱାରା ଏହା ସମାଜର ସର୍ବାଂଶରେ ବ୍ୟାପ୍ତ ହୋଇପାରେ—ଯଦ୍ଦ୍ୱାରା ଏହା ଉଚ୍ଚତମ ମସ୍ତିଷ୍କଠାରୁ ଆରମ୍ଭ କରି ଅତି ସାଧାରଣ ମନକୁ ମଧ୍ୟ ପ୍ରଭାବିତ କରିପାରେ । ଏହି ସକଳ ନ୍ୟାୟର କୂଟତର୍କ, ଦାର୍ଶନିକ ମୀମାଂସାବଳୀ, ଏହି ସକଳ ଦେବତାତତ୍ତ୍ୱ ଓ କ୍ରିୟାକାଣ୍ଡ କୌଣସି ଏକ ସମୟରେ ଉପକାର କରିପାରିଥାଏ; କିନ୍ତୁ ବର୍ତ୍ତମାନ ଆସ, ଆମେମାନେ ଧର୍ମକୁ ସହଜ କରିବାର ଚେଷ୍ଟା କରିବା ଏବଂ ସେହି ସତ୍ୟଯୁଗ ଆଣିବାରେ ସହାୟତା କରିବା, ଯେତେବେଳେ ପ୍ରତ୍ୟେକ ବ୍ୟକ୍ତି ଉପାସକ ହେବେ ଓ ପ୍ରତ୍ୟେକ ବ୍ୟକ୍ତିର ଅନ୍ତର୍ନିହିତ ପ୍ରକୃତ ସତ୍ତା ସେହି ସତ୍ସ୍ୱରୂପ ହିଁ ଉପାସ୍ୟ ହେବେ ।

# ଆତ୍ମା

[ଆମେରିକାରେ ପ୍ରଦତ୍ତ ବକ୍ତୃତା]

ଆପଣମାନଙ୍କ ମଧ୍ୟରୁ ଅନେକେ ମ୍ୟାକ୍ସମୁଲରଙ୍କର ସୁବିଖ୍ୟାତ ପୁସ୍ତକ **'Three Lectures on the Vedanta Philosophy'** (ବେଦାନ୍ତ-ଦର୍ଶନ ସମ୍ବନ୍ଧରେ ତିନିଗୋଟି ବକ୍ତୃତା ) ପାଠ କରିଅଛନ୍ତି ଏବଂ ସମ୍ଭବତଃ ଆପଣମାନେ କେହି କେହି ଅଧ୍ୟାପକ ଡୟସନ୍‌ଙ୍କର ଜର୍ମାନ୍ ଭାଷାରେ ଲିଖିତ ସେହି ଏକା ଦାର୍ଶନିକ ମତବାଦ-ବିଷୟକ ଗ୍ରନ୍ଥଟି ମଧ୍ୟ ପାଠ କରିଅଛନ୍ତି । ଭାରତବର୍ଷର ଆଧ୍ୟାତ୍ମିକ ଚିନ୍ତାଧାରା ସମ୍ବନ୍ଧରେ ପାଶ୍ଚାତ୍ୟ ଜଗତରେ ବର୍ତ୍ତମାନ ଯାହା ଲେଖାଯାଉଛି ଅଥବା ଶିକ୍ଷା ଦିଆଯାଉଛି, ତାହା ପ୍ରଧାନତଃ ଗୋଟିଏ ମାତ୍ର ମତବାଦ ସମ୍ବନ୍ଧରେ— ତାହା ଅଦ୍ୱୈତବାଦ । ଏହି 'ଏକ-ତତ୍ତ୍ୱ' ବାଦ ସମ୍ବନ୍ଧରେ କେହି କେହି ମନେ କରନ୍ତି, ଯେ ବେଦର ସମଗ୍ର ତତ୍ତ୍ୱ ଏହି ଗୋଟିଏ ଦାର୍ଶନିକ ମତବାଦ ମଧ୍ୟରେ ନିହିତ ରହିଅଛି । କିନ୍ତୁ ପ୍ରକୃତପକ୍ଷେ ଭାରତୀୟ ଚିନ୍ତାଧାରାର ବିଭିନ୍ନ ଦିଗ ଅଛି; ଏବଂ ସମ୍ଭବତଃ ଅନ୍ୟାନ୍ୟ ମତବାଦ ତୁଳନାରେ ଅଦ୍ୱୈତ-ମତବାଦୀମାନେ ବରଂ ସଂଖ୍ୟା-ଲଘୁ । ପ୍ରାଚୀନତମ ଯୁଗରୁ ଭାରତବର୍ଷର ଚିନ୍ତାଧାରାରେ ବିଭିନ୍ନ ମତବାଦ ରହିଆସିଛି ଏବଂ ବିଧିବଦ୍ଧ ଅଥବା ସର୍ବଜନସମ୍ମତ କୌଣସି ଧର୍ମକେନ୍ଦ୍ର ଅଥବା ପ୍ରତ୍ୟେକ ସମ୍ପ୍ରଦାୟର ଗ୍ରହଣୀୟ ତତ୍ତ୍ୱ-ନିର୍ଦ୍ଧାରଣ ପାଇଁ କୌଣସି ମଣ୍ଡଳୀ ଏହି ଦେଶରେ କୌଣସି ସମୟରେ ନ ଥିବାରୁ ଜନସାଧାରଣ ନିଜ ନିଜ ପନ୍ଥାବଲମ୍ବନ, ନିଜ ନିଜ ଦର୍ଶନର ବିସ୍ତାର ଏବଂ ନିଜ ନିଜ ସମ୍ପ୍ରଦାୟ-ସ୍ଥାପନରେ ସମ୍ପୂର୍ଣ୍ଣ ସ୍ୱାଧୀନତା ଲାଭ କରିଥିଲେ । ଏହି କାରଣରୁ ଆମେମାନେ ଦେଖୁ, ପ୍ରାଚୀନତମ ଯୁଗରୁ ଭାରତବର୍ଷ ବିଭିନ୍ନ ଧର୍ମ-ସମ୍ପ୍ରଦାୟରେ ପରିପୂର୍ଣ୍ଣ । ମୁଁ ଜାଣେ ନାହିଁ, ବର୍ତ୍ତମାନ ଭାରତବର୍ଷରେ ଏହିପରି କେତେ ଶହ ସମ୍ପ୍ରଦାୟ ଅଛନ୍ତି, ପ୍ରତ୍ୟେକ ବର୍ଷ ମଧ୍ୟ କେତୋଟି ନୂତନ ସମ୍ପ୍ରଦାୟର ଉଦ୍ଭବ ହେଉଅଛି । ମନେହୁଏ, ସତେ ଯେପରି ଏହି ଜାତିର ଆଧ୍ୟାତ୍ମିକ ପ୍ରଚେଷ୍ଟା ଅସରନ୍ତି ।

ଏହିସବୁ ବିଭିନ୍ନ ସମ୍ପ୍ରଦାୟକୁ ପ୍ରଥମତଃ ଦୁଇଟି ପ୍ରଧାନ ଶ୍ରେଣୀରେ ବିଭକ୍ତ କରାଯାଇପାରେ; ଗୋଟିଏ ଆସ୍ତିକ ବା ବୈଦିକ, ଅନ୍ୟଟି ନାସ୍ତିକ ବା ଅବୈଦିକ । ଯେଉଁମାନେ ହିନ୍ଦୁଶାସ୍ତ୍ର ବେଦକୁ ସତ୍ୟର ଚିରନ୍ତନ ପରିପ୍ରକାଶ ରୂପେ ବିଶ୍ୱାସ କରନ୍ତି, ସେମାନଙ୍କୁ କୁହାଯାଏ 'ଆସ୍ତିକ' ଏବଂ ଯେଉଁମାନେ ବେଦକୁ ବର୍ଜ୍ଜନ କରି ଅନ୍ୟାନ୍ୟ ପ୍ରମାଣର ପ୍ରାଧାନ୍ୟ ଉପରେ ନିର୍ଭର କରନ୍ତି, ସେହିମାନେ ହେଉଛନ୍ତି

ଭାରତରେ 'ନାସ୍ତିକ' । ଭାରତର ଦୁଇଟି ପ୍ରଧାନ ଆଧୁନିକ 'ନାସ୍ତିକ' ସମ୍ପ୍ରଦାୟ ହେଲ ଜୈନ ଏବଂ ବୌଦ୍ଧ । ଆସ୍ତିକମାନଙ୍କ ମଧ୍ୟରେ କେହି କେହି କହନ୍ତି, ଯୁକ୍ତି ଅପେକ୍ଷା ଶ୍ରୁତିର ପ୍ରାଧାନ୍ୟ ଅଧିକତର ପ୍ରାମାଣ୍ୟ; ପୁଣି କେହି କେହି କହନ୍ତି, ଶ୍ରୁତିର ଯୁକ୍ତିସଙ୍ଗତ ଅଂଶ ହିଁ କେବଳ ଗ୍ରହଣୀୟ, ଅବଶିଷ୍ଟ ଅଂଶ ବର୍ଜ୍ଜନୀୟ ।

ସାଂଖ୍ୟ, ନ୍ୟାୟ ଏବଂ ମୀମାଂସା—ଏହି ତିନୋଟି ଆସ୍ତିକ ମତବାଦ ମଧ୍ୟରେ ପ୍ରଥମ ଦୁଇଟି ଦାର୍ଶନିକ ମତବାଦରୂପରେ ପ୍ରତିଷ୍ଠିତ ଥିଲେ ମଧ୍ୟ ସମ୍ପ୍ରଦାୟ ଗଠନରେ ସମର୍ଥ ହୋଇ ନାହାନ୍ତି । ପ୍ରକୃତପକ୍ଷରେ ବର୍ତ୍ତମାନ ଭାରତବର୍ଷରେ ଯେଉଁ ଗୋଟିଏ ମାତ୍ର ସମ୍ପ୍ରଦାୟ ଅଛି, ତାହା ହେଲା ଉତ୍ତର-ମୀମାଂସା ଉପରେ ପ୍ରତିଷ୍ଠିତ ବୈଦାନ୍ତିକ ସମ୍ପ୍ରଦାୟ । ସେମାନଙ୍କର ଦାର୍ଶନିକ ମତବାଦର ନାମ 'ବେଦାନ୍ତ' ।

ହିନ୍ଦୁ-ଦର୍ଶନର ସକଳ ମତବାଦ ବେଦାନ୍ତ ଅଥବା ଉପନିଷଦ୍‌ରୁ ଉଦ୍ଭୂତ; କିନ୍ତୁ ଅଦ୍ୱୈତବାଦୀଗଣ ବିଶେଷ ଭାବରେ ଏହି ନାମଟି ନିଜେ ଗ୍ରହଣ କରିଛନ୍ତି, ଯେହେତୁ ସେମାନେ ସେମାନଙ୍କର ସମଗ୍ର ଧର୍ମ ଓ ଦର୍ଶନକୁ କେବଳ ମାତ୍ର ବେଦାନ୍ତର ଭିତ୍ତିରେ ସ୍ଥାପନ କରିବାକୁ ଚାହିଁଛନ୍ତି । କାଳକ୍ରମେ କେବଳ ବେଦାନ୍ତ ହିଁ ସ୍ଥାୟୀ ହୁଏ ଏବଂ ଭାରତବର୍ଷର ବର୍ତ୍ତମାନ ବିଭିନ୍ନ ସମ୍ପ୍ରଦାୟଗୁଡ଼ିକ ଏହି ବେଦାନ୍ତର କୌଣସି ନା କୌଣସି ଶାଖାର ଅନ୍ତର୍ଗତ—ଯଦିଓ ଏହିସବୁ ସମ୍ପ୍ରଦାୟ ଏକମତାବଲମ୍ବୀ ନୁହନ୍ତି ।

ଆମେମାନେ ଦେଖିବାକୁ ପାଉଁ ଯେ, ବୈଦାନ୍ତିକମାନଙ୍କ ମଧ୍ୟରେ ତିନୋଟି ପ୍ରଧାନ ଶ୍ରେଣୀବିଭାଗ ଅଛି । ଅବଶ୍ୟ ଗୋଟିଏ ବିଷୟରେ ସେମାନେ ସମସ୍ତେ ଏକମତ—ସେମାନେ ସମସ୍ତେ ଈଶ୍ୱର-ବିଶ୍ୱାସୀ । ଏହିସବୁ ବୈଦାନ୍ତିକମାନେ ଏ କଥା ମଧ୍ୟ ବିଶ୍ୱାସ କରନ୍ତି ଯେ, ବେଦ ଅତିପ୍ରାକୃତ ଉପାୟରେ ବ୍ୟକ୍ତ ଈଶ୍ୱରଙ୍କର ବାଣୀ । ସେମାନଙ୍କର ଏହି ବିଶ୍ୱାସ ଠିକ୍ ଇସ୍‌ଲାମ୍ ଓ ଖ୍ରୀଷ୍ଟ-ଧର୍ମାବଲମ୍ବୀମାନଙ୍କ ବିଶ୍ୱାସ ଭଳି ନୁହେଁ—ଏହା ଗୋଟିଏ ବିଶେଷ ଧରଣର ବିଶ୍ୱାସ । ସେମାନଙ୍କର ଧାରଣା ଯେ, ବେଦସମୂହ ଈଶ୍ୱରଙ୍କର ଜ୍ଞାନର ପ୍ରକାଶ; ଈଶ୍ୱର ଯେହେତୁ ଚିରନ୍ତନ ତାଙ୍କର ଜ୍ଞାନ ମଧ୍ୟ ତାଙ୍କ ମଧ୍ୟରେ ନିତ୍ୟ ବିରାଜମାନ ଏବଂ ସେଥିପାଇଁ ବେଦ ମଧ୍ୟ ନିତ୍ୟ । ଏ ବିଶ୍ୱାସର ଆଉ ଗୋଟିଏ ସାଧାରଣ କାରଣ ମଧ୍ୟ ଅଛି—ସୃଷ୍ଟି-ପ୍ରବାହରେ ବିଶ୍ୱାସ, ଅର୍ଥାତ୍ ସେମାନଙ୍କର ବିଶ୍ୱାସ ଏହି ଯେ, ସମୁଦାୟ ସୃଷ୍ଟି କ୍ରମାନ୍ୱୟରେ ଆବିର୍ଭୂତ ଓ ତିରୋହିତ ହେଉଅଛି; ଏହା ଆବିର୍ଭୂତ ହୋଇ କ୍ରମଶଃ ସ୍ଥୂଳତର ହୁଏ ଏବଂ କଳ୍ପକାଳର ଶେଷରେ କ୍ରମାଗତ ସୂକ୍ଷ୍ମତର ହୋଇ ବିଲୁପ୍ତ ହୁଏ, ଏହା ପରେ ଆସେ ବିଶ୍ରାମର ସମୟ । ତାହାପରେ ପୁନର୍ବାର ଜଗତର ସୃଷ୍ଟି ବା ଆବିର୍ଭାବ ହୁଏ ଏବଂ ସେହି ଏକା ପ୍ରକ୍ରିୟାର ପୁନରାବର୍ତ୍ତନ ଘଟେ । ସେମାନେ

'ଆକାଶ' ନାମକ ଗୋଟିଏ ବସ୍ତୁର ଅସ୍ତିତ୍ୱ ସ୍ୱୀକାର କରନ୍ତି, ଏହା ବୈଜ୍ଞାନିକ-ମାନଙ୍କର 'ଇଥର୍' ପରି । ଅନ୍ୟ ଏକ ଶକ୍ତିର ଅସ୍ତିତ୍ୱ ମଧ୍ୟ ସେମାନେ ସ୍ୱୀକାର କରନ୍ତି—ଯାହାକୁ ସେମାନେ କହନ୍ତି 'ପ୍ରାଣ' । ସେମାନେ କହନ୍ତି, ଏହି ବିଶ୍ୱଜଗତ ପ୍ରାଣର ସ୍ପନ୍ଦନରୁ ଉଦ୍ଭୂତ । ଗୋଟିଏ ବିବର୍ତ୍ତନ ବା କଳ୍ପର ଶେଷ ହେଲେ ପ୍ରକୃତିର ସମସ୍ତ ପ୍ରକାଶ ହିଁ କ୍ରମାନ୍ୱୟରେ ସୂକ୍ଷ୍ମତର ହୋଇ ଆକାଶରେ ବିଲୀନ ହୋଇଯାଏ । ଏହି ଆକାଶକୁ ପ୍ରତ୍ୟକ୍ଷ ଅଥବା ସ୍ପର୍ଶ କରିଯାଇପାରେ ନାହିଁ, କିନ୍ତୁ ଆକାଶରୁ ପ୍ରତ୍ୟେକ ବସ୍ତୁର ସୃଷ୍ଟି ହୁଏ । ପ୍ରକୃତିରେ ଆମେ ଯେକୌଣସି ଶକ୍ତି ଦେଖୁଁ—ମାଧ୍ୟାକର୍ଷଣ, ଆକର୍ଷଣ-ବିକର୍ଷଣ ଏବଂ ଚିନ୍ତା, ଅନୁଭବ ଓ ସ୍ନାୟବିକ କ୍ରିୟାଗତି—ଏସବୁ ବିଭିନ୍ନ ପ୍ରକାରର ଶକ୍ତି ଏହି ପ୍ରାଣରେ ବିଲୀନ ହୋଇଯାଏ ଏବଂ ପ୍ରାଣର ସ୍ପନ୍ଦନ ସ୍ତବ୍ଧ ହୁଏ । ନୂତନ ବିବର୍ତ୍ତନର ଆରମ୍ଭ ନ ହେବା ପର୍ଯ୍ୟନ୍ତ ଜଗତ ଏହି ଅବସ୍ଥାରେ ଥାଏ । ପୁନରାୟ ପ୍ରାଣର ସ୍ପନ୍ଦନ ଆରମ୍ଭ ହୁଏ ଏବଂ ଏହି ସ୍ପନ୍ଦନ ଆକାଶରେ ସଞ୍ଚାରିତ ହୁଏ, ଯାହା ଫଳରେ ଏହିସବୁ ବସ୍ତୁ କ୍ରମାନ୍ୱୟରେ ଆବିର୍ଭୂତ ହୁଅନ୍ତି ।

ଯେଉଁ ସମ୍ପ୍ରଦାୟ ସମ୍ବନ୍ଧରେ ମୁଁ ଆପଣମାନଙ୍କୁ ପ୍ରଥମେ କହିବି, ତାହାର ନାମ 'ଦ୍ୱୈତ-ସମ୍ପ୍ରଦାୟ' । ଦ୍ୱୈତବାଦୀମାନଙ୍କ ମତରେ—ଜଗତର ସ୍ରଷ୍ଟା ଓ ଶାସକ ଈଶ୍ୱର ସର୍ବଦା ହିଁ ଜୀବ-ଜଗତଠାରୁ ସ୍ୱତନ୍ତ୍ର । ଈଶ୍ୱର ନିତ୍ୟ, ଜଗତ ନିତ୍ୟ, ଜୀବଗଣ ମଧ୍ୟ ନିତ୍ୟ । ଜୀବ-ଜଗତ କେବେ କେବେ ବିକଶିତ ଓ ପରିବର୍ତ୍ତିତ ହେଉଛନ୍ତି, କିନ୍ତୁ ଈଶ୍ୱର ସର୍ବଦା ହିଁ ନିତ୍ୟ ରହିଛନ୍ତି । ପୁନରାୟ ଦ୍ୱୈତବାଦୀମାନଙ୍କ ମତରେ—ଗୁଣ ନିର୍ମିତ ଈଶ୍ୱର ବ୍ୟକ୍ତିଭାବାପନ୍ନ, ଦେହ ନିର୍ମିତ ନୁହେଁ । ତାଙ୍କର ମାନବୀୟ ଗୁଣ ଅଛି—ସେ କରୁଣାମୟ, ନ୍ୟାୟବାନ୍, ଶକ୍ତିମାନ୍ । ସେ ସର୍ବଶକ୍ତିମାନ୍; ତାଙ୍କ ନିକଟକୁ ଯାଇହୁଏ, ତାଙ୍କ ନିକଟରେ ପ୍ରାର୍ଥନା କରିଯାଏ, ତାଙ୍କୁ ଭଲପାଇ ହୁଏ । ସେ ମଧ୍ୟ ପ୍ରତିଦାନରେ ଭଲ ପାଆନ୍ତି । ଏହିଭଳି, ଏକ କଥାରେ ସେ ମାନବୀୟ ଗୁଣ ସମ୍ପନ୍ନ ଦେବତା, ଯଦିଓ ମାନବ ଅପେକ୍ଷା ଅନନ୍ତ ଭାବରେ ମହତ୍ତ୍ୱ । ସେ ମାନବର ଦୋଷଗୁଡ଼ିକରୁ ମୁକ୍ତ, 'ସେ ଅନନ୍ତ କଲ୍ୟାଣର ଗୁଣାଧାର'—ଏହା ହିଁ ହେଲ ଦ୍ୱୈତବାଦୀମାନଙ୍କ ମତରେ ଈଶ୍ୱରଙ୍କର ସଂଜ୍ଞା । କିନ୍ତୁ ସେ ତ ଉପାଦାନ ବ୍ୟତୀତ ସୃଷ୍ଟି କରିପାରନ୍ତି ନାହିଁ, ପ୍ରକୃତି ହେଲ ତାଙ୍କର ଉପାଦାନ—ଯେଉଁଥିରୁ ସେ ବିଶ୍ୱବ୍ରହ୍ମାଣ୍ଡ ସୃଷ୍ଟି କରନ୍ତି ।

ବେଦାନ୍ତ ସମ୍ପ୍ରଦାୟଭୁକ୍ତ ନ ହୋଇଥିବା ଏପରି କେତେଜଣ ଦ୍ୱୈତବାଦୀ ମଧ୍ୟ ଅଛନ୍ତି, ଯେଉଁମାନଙ୍କୁ କୁହାଯାଏ, 'ପରମାଣୁ-କାରଣବାଦୀ' । ସେମାନଙ୍କ ମତରେ ଜଗତ ଅସଂଖ୍ୟ ପରମାଣୁର ସମାହାର ମାତ୍ର ଏବଂ ଈଶ୍ୱରଙ୍କ ଇଚ୍ଛାରେ ଏହିସବୁ ପରମାଣୁରୁ ଜଗତ ସୃଷ୍ଟ ହୋଇଥାଏ । ବୈଦାନ୍ତିକମାନେ ଏହି ମତବାଦ ସ୍ୱୀକାର କରନ୍ତି ନାହିଁ; ସେମାନଙ୍କ ମତରେ ଏହି ମତବାଦ ସମ୍ପୂର୍ଣ୍ଣ ଭାବରେ

ଅଯୌକ୍ତିକ । ଜ୍ୟାମିତିକ ବିନ୍ଦୁପରି, ଅବିଚ୍ଛେଦ୍ୟ ପରମାଣୁଗୁଡ଼ିକ ଅଂଶ ବା ବିସ୍ତୃତିବିହୀନ; କିନ୍ତୁ ଯାହାର ଅଂଶ ଅଥବା ବିସ୍ତୃତି ନାହିଁ, ତାହାକୁ ଅନନ୍ତ ଗୁଣ କଲେ ମଧ ତାହା ପୂର୍ବବତ୍ ରହିଯାଏ । ଯାହାର କୌଣସି ଅଂଶ ନାହିଁ, ତାହା କେବେହେଲେ ଅଂଶଯୁକ୍ତ କୌଣସି ବସ୍ତୁ ସୃଷ୍ଟି କରିପାରେ ନାହିଁ; ଯେପରି ସଂଖ୍ୟକ ଶୂନ୍ୟକୁ ଯୋଗ କଲେ ମଧ ଗୋଟିଏ ପୂର୍ଣ୍ଣ ସଂଖ୍ୟା ହୁଏ ନାହିଁ । ସେଥିପାଇଁ ପରମାଣୁସମୂହର ଯଦି ଅଂଶ ଅଥବା ବିସ୍ତୃତି ନ ଥାଏ, ତାହାହେଲେ ଏପରି ପରମାଣୁରୁ ଜଗତର ସୃଷ୍ଟି ସମ୍ପୂର୍ଣ୍ଣ ଅସମ୍ଭବ ।

ସେଥିପାଇଁ ବୈଦାନ୍ତିକ ଦ୍ୱୈତବାଦୀମାନଙ୍କ ମତରେ ଅବିଭକ୍ତ ପ୍ରକୃତିରୁ ଈଶ୍ୱର ଜଗତ ସୃଷ୍ଟି କରିଅଛନ୍ତି । ଭାରତୀୟ ଜନସାଧାରଣ ଅଧିକାଂଶ ହିଁ ଦ୍ୱୈତ-ବାଦୀ । ସାଧାରଣତଃ ମନୁଷ୍ୟ ପକ୍ଷରେ ଏହା ଅପେକ୍ଷା ଉଚ୍ଚତର କିଛି ଧାରଣା କରିବା ସମ୍ଭବ ନୁହେଁ । ଆମେମାନେ ଦେଖୁଁ, ପୃଥିବୀର ଧର୍ମବିଶ୍ୱାସୀ ବ୍ୟକ୍ତିମାନଙ୍କ ମଧ୍ୟରେ ଶତକଡ଼ା ନବେ ଜଣ ଦ୍ୱୈତବାଦୀ । ୟୁରୋପ ଏବଂ ପଶ୍ଚିମ ଏସିଆର ସବୁ ଧର୍ମ ଦ୍ୱୈତମୂଳକ, ଏହା ବ୍ୟତୀତ ସେମାନଙ୍କର ଅନ୍ୟ କୌଣସି ଉପାୟ ମଧ ନାହିଁ । ସାଧାରଣ ମନୁଷ୍ୟ ପକ୍ଷରେ ସ୍ଥୂଳରୂପ-ବିହୀନ କୌଣସି ସତ୍ତା ଧାରଣା କରିବା ଅସମ୍ଭବ । ଯାହା ତାହାର ବୁଦ୍ଧିଗମ୍ୟ, ତାହାକୁ ହିଁ ସେ ଧରି ରଖିବାକୁ ଚାହେଁ । ଅର୍ଥାତ୍ ଉଚ୍ଚତର ଆଧ୍ୟାତ୍ମିକ ବିଷୟକୁ ନିଜ ସ୍ତରକୁ ଓହ୍ଲାଇ ଆଣି କେବଳ ସେହି ଭାବରେ ତାହା ବୁଝିବା ପାଇଁ ସେ ସମର୍ଥ । ବିମୂର୍ତ୍ତିକୁ କେବଳ ସ୍ଥୂଳ ରୂପରେ ହିଁ ସେ ଚିନ୍ତା କରିପାରେ । ପୃଥିବୀର ସର୍ବତ୍ର ଏହା ହିଁ ହେଲା ଜନସାଧାରଣଙ୍କର ଧର୍ମ । ଦ୍ୱୈତବାଦୀମାନେ ଏହିପରି ଜଣେ ଈଶ୍ୱରଙ୍କୁ ବିଶ୍ୱାସ କରନ୍ତି, ଯିଏ ମନୁଷ୍ୟଠାରୁ ସମ୍ପୂର୍ଣ୍ଣ ଭିନ୍ନ; ସେ ଯେପରି ଜଣେ ମହାନ୍ ସମ୍ରାଟ, ଜଣେ ସର୍ବଶକ୍ତିମାନ୍ ରାଜା । କିନ୍ତୁ ଦ୍ୱୈତବାଦୀମାନଙ୍କ ମତରେ—ସେ ପାର୍ଥିବ ସମ୍ରାଟ ଅପେକ୍ଷା ପବିତ୍ରତର; ସେମାନେ ତାଙ୍କୁ ସର୍ବଗୁଣ-ସମ୍ପନ୍ନ ଏବଂ ଅଖିଳ-ଦୋଷ-ବିବର୍ଜିତ ରୂପରେ ଦର୍ଶନ କରିବାକୁ ଚାହାଁନ୍ତି, କିନ୍ତୁ ମନ୍ଦ ବ୍ୟତୀତ ଭଲର ଅସ୍ତିତ୍ୱ, ଅନ୍ଧକାରର ଧାରଣାବ୍ୟତୀତ ଆଲୋକର ଧାରଣା କିଅଣ ସମ୍ଭବ ?

ଅନନ୍ତ-କଲ୍ୟାଣ-ଗୁଣାଧାର, ନ୍ୟାୟବାନ୍, କରୁଣାମୟ ପରମେଶ୍ୱରଙ୍କ ଶାସନାଧୀନ ଏହି ଜଗତରେ କିପରି ଏତାଦୃଶ ଅସଂଖ୍ୟ ପାପର ଉଦ୍ଭବ ହୋଇପାରେ —ଏହା ହିଁ ହେଲା ଦ୍ୱୈତବାଦୀମାନଙ୍କର ପ୍ରଥମ ସମସ୍ୟା । ସମସ୍ତ ଦ୍ୱୈତବାଦୀ ଧର୍ମରେ ହିଁ ଏହି ପ୍ରଶ୍ନ ଉଠିଥାଏ, କିନ୍ତୁ ଏହାର ଉତ୍ତରରେ ହିନ୍ଦୁମାନେ କେବେ ହେଲେ ଜଣେ 'ସଇତାନ'କୁ ସୃଷ୍ଟି କରି ନାହାନ୍ତି । ସେମାନେ ସମସ୍ୱରରେ ମନୁଷ୍ୟକୁ ଏଥିପାଇଁ ଦାୟୀ କରନ୍ତି ଏବଂ ସେମାନଙ୍କ ପକ୍ଷରେ ଏହା କରିବା ସହଜ । କାରଣ ମୁଁ ଆପଣମାନଙ୍କୁ ଏହିମାତ୍ର କହିଅଛି, 'ଶୂନ୍ୟରୁ କିଛିର ସୃଷ୍ଟି ହୋଇପାରେ'

—ଏକଥା ସେମାନେ ବିଶ୍ବାସ କରନ୍ତି ନାହିଁ । ଆମେ ଏହି ଜୀବନରେ ଦେଖୁ ଯେ, ଆମେମାନେ ଆମମାନଙ୍କର ଭବିଷ୍ୟତ ଗଠନ କରିପାରୁ, ଆମେମାନେ ପ୍ରତ୍ୟେକେ ହିଁ ପ୍ରତ୍ୟହ ଆଗାମୀ କାଲିକୁ ଗଢ଼ିବାକୁ ଚେଷ୍ଟା କରୁ । ଆଜି ଆମେମାନେ ଆଗାମୀ କାଲିର ଭାଗ୍ୟ ନିର୍ଦ୍ଧାରଣ କରୁ, କାଲି ଆମେମାନେ ତା'ପର ଦିନର ଭାଗ୍ୟ ସ୍ଥିର କରିବୁ—ଏହି ଭାବରେ ଆମମାନଙ୍କର ଜୀବନ ଚାଲେ । ଏହି ଯୁକ୍ତିପ୍ରଣାଳୀ ଅତୀତ ପାଇଁ ପ୍ରୟୋଗ କରିବା ମଧ୍ୟ ଖୁବ୍ ଯୁକ୍ତିସଙ୍ଗତ । ଯଦି ଆମେମାନେ ନିଜ ନିଜ କର୍ମ ଦ୍ୱାରା ଆମ ଭବିଷ୍ୟତର ଭାଗ୍ୟକୁ ଗଠିତ କରିପାରୁ, ତାହାହେଲେ ସେହି ଏକନିୟମ କାହିଁକି ଅତୀତ କ୍ଷେତ୍ରରେ ମଧ୍ୟ ପ୍ରଯୋଜ୍ୟ ନ ହେବ ? ଯଦି ଗୋଟିଏ ଅନନ୍ତ ଶୃଙ୍ଖଳର କେତୋଟି କଡ଼ି ପରେ ପରେ ଆବର୍ତ୍ତିତ ହେଉଥାଏ ଏବଂ ଏହାର ଗୋଟିଏ ଅଂଶକୁ ଆମେମାନେ ବ୍ୟାଖ୍ୟା କରିପାରୁ, ତାହାହେଲେ ସମଗ୍ର ପର୍ଯ୍ୟାୟ୍ଟି-ଟିର ମଧ୍ୟ ବ୍ୟାଖ୍ୟା କରିବା ଆମମାନଙ୍କ ପକ୍ଷରେ ସମ୍ଭବପର ହେବ । ଏହି ଭାବରେ ଯଦି ଅନନ୍ତ କାଳପ୍ରବାହର ଗୋଟିଏ ଅଂଶକୁ ଆମେମାନେ ବିଚ୍ଛିନ୍ନ କରି ଏହାର ସମ୍ୟକ୍ ବ୍ୟାଖ୍ୟା କରିପାରୁ ଏବଂ ଏହାର ଅର୍ଥ ହୃଦୟଙ୍ଗମ କରିବାରେ ସମର୍ଥ ହେଉ ଏବଂ ପ୍ରକୃତ ଯଦି ସମାନୁବର୍ତ୍ତୀ, ତାହାହେଲେ ସେହି ସମଗ୍ର କାଳପ୍ରବାହ ପାଇଁ ମଧ୍ୟ ସେହି ଏକ ବ୍ୟାଖ୍ୟା ସମାନ ଭାବରେ ପ୍ରଯୋଜ୍ୟ । ଯଦି ଏହା ସତ ଯେ, ଏହି ପୃଥିବୀରେ ସ୍ୱଳ୍ପ ସମୟ ମଧ୍ୟରେ ଆମେମାନେ ଆମମାନଙ୍କର ନିଜ ନିଜ ଭାଗ୍ୟ ନିୟନ୍ତ୍ରିତ କରିଥାଉ ଏବଂ ଯଦି ଏହା ମଧ୍ୟ ସତ ଯେ, ପ୍ରତ୍ୟେକ ବସ୍ତୁର ଗୋଟିଏ କାରଣ ଥିବା ନିଶ୍ଚିତ, ତାହା ହେଲେ ଆମେମାନେ ବର୍ତ୍ତମାନ ଯାହା ଅଛୁ, ତାହା ଯେ ଆମମାନଙ୍କର ସମଗ୍ର ଅତୀତର ଫଳ, ଏହା ମଧ୍ୟ ସତ୍ୟ ହେବ । ଏହି କାରଣରୁ ମନୁଷ୍ୟର ଭାଗ୍ୟ-ନିୟନ୍ତ୍ରଣ ପାଇଁ ଅନ୍ୟ କାହାରି ପ୍ରୟୋଜନ ନାହିଁ, ମନୁଷ୍ୟ ନିଜେ ହିଁ ନିଜର ଭାଗ୍ୟନିୟନ୍ତା । ପୃଥିବୀରେ ଯେଉଁସବୁ ପାପ ବିରାଜ କରୁଅଛି, ତାହାର କାରଣ ଏକମାତ୍ର ଆମେମାନେ ନିଜେ; ଆମେମାନେ ଏହିସବୁ ପାପ ସୃଷ୍ଟି କରିଅଛୁ ଏବଂ ଆମେମାନେ ଯେପରି ସର୍ବଦା ଦେଖିଥାଉ ଯେ, ପାପକର୍ମରୁ ଦୁଃଖ ସୃଷ୍ଟି ହୁଏ, ସେହିପରି ବର୍ତ୍ତମାନ ଦୁଃଖ-କ୍ଳେଶର ଅଧିକାଂଶ ହିଁ ମନୁଷ୍ୟର ଅତୀତ ପାପର ହିଁ ଫଳସ୍ୱରୂପ । ତେଣୁ ଏହି ମତାନୁସାରେ ଏକମାତ୍ର ମନୁଷ୍ୟ ହିଁ ଏଥିପାଇଁ ଦାୟୀ । ଈଶ୍ବରଙ୍କୁ ସେଥିପାଇଁ ଦୋଷ ଦେବା ଉଚିତ୍ ନୁହେଁ । ସେହି ନିତ୍ୟ କରୁଣାମୟ ପିତାଙ୍କୁ କୌଣସିମତେ ଦୋଷ ଦେବା ଉଚିତ ନୁହେଁ; 'ଆମେମାନେ ଯେପରି ବୀଜ ବପନ କରୁ, ସେହିପରି ଫଳ ପାଉ ।'

ଦ୍ୱୈତବାଦୀଙ୍କର ଅନ୍ୟ ଗୋଟିଏ ଅଭିନବ ମତବାଦ ଏହି ଯେ, ପ୍ରତ୍ୟେକ ଜୀବ ହିଁ ପରିଶେଷରେ ମୁକ୍ତିଲାଭ କରିବ, ଜଣେ ହେଲେ ବଞ୍ଚିତ ହେବ ନାହିଁ । ନାନା ସୁଖ-ଦୁଃଖ ମଧ୍ୟ ଦେଇ ପ୍ରତ୍ୟେକେ ଅବଶେଷରେ ମୁକ୍ତ ହେବେ, କିନ୍ତୁ କେଉଁଥିରୁ ମୁକ୍ତ ହେବେ ? ସମ୍ପ୍ରଦାୟର ସାଧାରଣ ମତ ଯେ ସକଳ ଜୀବ ଏହି

ସଂସାରଚକ୍ରରୁ ମୁକ୍ତ ହେବେ । ଯେଉଁ ବିଶ୍ୱକୁ ଆମେମାନେ ଦେଖୁଛୁ ଏବଂ ଅନୁଭବ କରୁଅଛୁ, ଅଥବା ଯେଉଁ ବିଶ୍ୱ ବିଷୟରେ ଆମେମାନେ କଳ୍ପନା କରୁଅଛୁ— କୌଣସିଟି ପ୍ରକୃତ ସତ୍ୟ ହୋଇପାରେ ନାହିଁ, କାରଣ ଉଭୟ ମଧ୍ୟରେ ଭଲମନ୍ଦ ସମ୍ମିଶ୍ରିତ ହୋଇ ରହିଅଛି । ଦ୍ୱୈତବାଦୀମାନଙ୍କ ମତରେ ଏହି ପୃଥିବୀର ଊର୍ଦ୍ଧ୍ୱରେ ଏହିପରି ଗୋଟିଏ ସ୍ଥାନ ଅଛି, ଯେଉଁଠାରେ କେବଳ ମାତ୍ର ସୁଖ, କେବଳ ମାତ୍ର ପୁଣ୍ୟ ଚିରବିରାଜମାନ । ସେହି ସ୍ଥାନ ଲାଭ କଲେ ଜୀବର ପୁନର୍ଜନ୍ମ ହୁଏ ନାହିଁ । ଏହି ଧାରଣା ସେମାନଙ୍କର ଅତି ପ୍ରିୟ । ସେଠାରେ ରୋଗ ନାହିଁ, ମୃତ୍ୟୁ ନାହିଁ, ନିତ୍ୟ ସୁଖ ବିରାଜମାନ ଏବଂ ସେହି ସ୍ଥାନରେ ସେମାନେ ଈଶ୍ୱରଙ୍କର ନିତ୍ୟସାନ୍ନିଧ ଲାଭ କରିବେ, ନିତ୍ୟ ହିଁ ତାହାଙ୍କୁ ଉପଭୋଗ କରିବେ । ସେମାନେ ଆହୁରିମଧ୍ୟ ବିଶ୍ୱାସ କରନ୍ତି ଯେ, ନିମ୍ନତମ କୀଟପତଙ୍ଗରୁ ଉଚ୍ଚତମ ଦେବଦୂତ ଏବଂ ଦେବତା ପର୍ଯ୍ୟନ୍ତ ସମସ୍ତେ ହିଁ ଶୀଘ୍ର ହେଉ ବା ବିଳମ୍ବରେ ହେଉ, ସେହି ଅବସ୍ଥା ଲାଭ କରିବେ, ଯେଉଁଠାରେ ଆଉ କୌଣସି ଦୁଃଖର ଅସ୍ତିତ୍ୱ ରହିବ ନାହିଁ । କିନ୍ତୁ ଆମମାନଙ୍କର ଏହି ସଂସାରର ଶେଷ ହେବ ନାହିଁ, ଏହା ଅନନ୍ତକାଳ ଚାଲୁଥିବ, ତରଙ୍ଗ-ଭଙ୍ଗରେ ଚାଲିଲେ ଅଥବା ଚକ୍ରାକାରରେ ଚାଲିଲେ ମଧ୍ୟ ଏହାର ଶେଷ ହେବ ନାହିଁ । ଅସଂଖ୍ୟ ଜୀବାତ୍ମାଙ୍କୁ ମୁକ୍ତ ଏବଂ ପୂର୍ଣ୍ଣତା ଲାଭ କରିବାକୁ ହେବ । କିଛି ଜୀବାତ୍ମା ଅଛନ୍ତି ବୃକ୍ଷ ମଧ୍ୟରେ, କିଛି ଅଛନ୍ତି ପଶୁ ମଧ୍ୟରେ, କିଛି ଅଛନ୍ତି ମନୁଷ୍ୟ ମଧ୍ୟରେ, କିଛି ଦେବତା ମଧ୍ୟରେ । କିନ୍ତୁ ପ୍ରତ୍ୟେକେ ହିଁ, ଏପରିକି ଉଚ୍ଚତମ ଦେବତାମାନେ ମଧ୍ୟ ଅପୂର୍ଣ୍ଣ ଓ ଆବଦ୍ଧ । ଏହି ବଦ୍ଧ ଅବସ୍ଥା ଅଥବା 'ବନ୍ଧନ' କିପରି ? ଜନ୍ମମୃତ୍ୟୁର ଚକ୍ରରେ ପଡ଼ିବା ହିଁ ବନ୍ଧନ । ଉଚ୍ଚତମ ଦେବତାମାନେ ମଧ୍ୟ ମୃତ୍ୟୁ-ମୁଖରେ ପତିତ ହୁଅନ୍ତି । ଏହିସବୁ ଦେବତ୍ୱର ଅର୍ଥ ବିଶେଷ ବିଶେଷ ଅବସ୍ଥା ବା ପଦବୀ । ଯେପରି ଇନ୍ଦ୍ରତ୍ୱ ଗୋଟିଏ ବିଶେଷ ଆସନ । ଅତି ଉଚ୍ଚ ସ୍ଥାନରେ ଥିବା ଜୀବାତ୍ମା ବର୍ତ୍ତମାନ କଳ୍ପର ଆରମ୍ଭରେ ଏହି ପଦ ଅଲଙ୍କୃତ କରିବାକୁ ଯାଇଛନ୍ତି ଏବଂ କଳ୍ପ ଶେଷ ହେଲେ ସେ ପୁନରାୟ ଏହି ପୃଥିବୀରେ ମନୁଷ୍ୟ ରୂପରେ ଜନ୍ମଗ୍ରହଣ କରିବେ ଏହି ପୃଥିବୀର ଅନ୍ୟ ଏକ ଅତିଶୟ ପୁଣ୍ୟବାନ୍ ବ୍ୟକ୍ତି ପରବର୍ତ୍ତୀ କଳ୍ପରେ ଏହି ପଦ ଅଧିକାର କରିବେ । ଅନ୍ୟାନ୍ୟ ସବୁ ଦେବତାମାନଙ୍କ କ୍ଷେତ୍ରରେ ମଧ୍ୟ ଏହି ଏକ ନିୟମ ପ୍ରଯୋଜ୍ୟ । ସେମାନେ ମଧ୍ୟ ବିଶେଷ ବିଶେଷ ପଦଧାରୀ, ଯେଉଁ ପଦ-ସବୁ ଲକ୍ଷ ଲକ୍ଷ ଜୀବ ପର୍ଯ୍ୟାୟକ୍ରମରେ ଅଧିକାର କରିଛନ୍ତି ଏବଂ ପରେ ପୁନରାୟ ପୃଥିବୀକୁ ଅବତରଣ କରି ମନୁଷ୍ୟରୂପରେ ଜନ୍ମଗ୍ରହଣ କରିଛନ୍ତି । ଯେଉଁମାନେ ଏହି ପୃଥିବୀରେ ପୁଣ୍ୟ କର୍ମାଦି କରନ୍ତି ଏବଂ ଅନ୍ୟମାନଙ୍କୁ ସାହାଯ୍ୟ କରନ୍ତି, କିନ୍ତୁ କିଛି ପରିମାଣରେ ସକାମ ଭାବରେ, ପୁରସ୍କାର ଆଶାରେ ଅଥବା ଅନ୍ୟମାନଙ୍କଠାରୁ ପ୍ରଶଂସାଲୋଭରେ ତାହା କରିଛନ୍ତି, ସେମାନେ ନିଶ୍ଚୟ ହିଁ ମୃତ୍ୟୁ ପରେ ସେହିସବୁ ପୁଣ୍ୟ କର୍ମର ଫଳ ଭୋଗ କରିବେ—ସେହିମାନେ ହିଁ ଏହିସବୁ ଦେବତା ହେବେ ।

କିନ୍ତୁ ଏହା ତ ମୁକ୍ତି ନୁହେଁ, ପୁରସ୍କାର ଆଶାରେ କୃତ ସକାମ କର୍ମଦ୍ୱାରା କଦାପି ମୁକ୍ତିଲାଭ ହୁଏ ନାହିଁ । ମନୁଷ୍ୟ ଯାହା କିଛି କାମନା କରେ, ଈଶ୍ୱର ସେସମସ୍ତ ତାଙ୍କୁ ଦାନ କରନ୍ତି । ମନୁଷ୍ୟ ଶକ୍ତି କାମନା କରେ, ସମ୍ମାନ କାମନା କରେ, ଦେବତାରୂପରେ ଭୋଗସୁଖ କାମନା କରେ; ସେମାନଙ୍କର ଏହି ସବୁ କାମନା ପୂର୍ଣ୍ଣ ହୁଏ; କିନ୍ତୁ କୌଣସି କର୍ମର ଫଳ ନିତ୍ୟ ନୁହେଁ । କିଛିକାଳ ପରେ ନିଃଶେଷିତ ହୋଇଯାଏ; ବହୁଦିନ ସ୍ଥାୟୀ ହେଲେ ମଧ୍ୟ ଏହା ନିଃଶେଷିତ ହୋଇଯିବ ଏବଂ ସେହିସବୁ ଦେବତା ପୃଥିବୀରେ ଅବତରଣ କରି ମନୁଷ୍ୟରୂପରେ ଜନ୍ମଗ୍ରହଣ କରିବେ; ଏହି ଭାବରେ ସେମାନେ ମୁକ୍ତିଲାଭର ଆଉ ଗୋଟିଏ ସୁଯୋଗ ଲାଭ କରିବେ । ପଶୁମାନେ ଉଚ୍ଚତର ସ୍ତରକୁ ଉଠି ହୁଏତ ମନୁଷ୍ୟରୂପରେ ଦେହଧାରଣ କରିବେ, ଦେବତାରୂପ ମଧ୍ୟ ଧାରଣ କରିପାରନ୍ତି; କିନ୍ତୁ ତାହା ପରେ ସମ୍ଭବତଃ ପୁନର୍ବାର ମନୁଷ୍ୟରୂପ ଧାରଣ କରିବେ ଅଥବା ପୂର୍ବ ଭଳି ପଶୁତ୍ୱ ପ୍ରାପ୍ତ ହେବେ—ଏହିପରି ଯେତେ ଦିନ ପର୍ଯ୍ୟନ୍ତ ସେମାନଙ୍କର ସକଳ ଭୋଗ-ବାସନା, ପାର୍ଥିବ ଜୀବନ ପାଇଁ ସମସ୍ତ ତୃଷ୍ଣା ଏବଂ ଅହଂ-ମମତ୍ୱ-ବୁଦ୍ଧି ଲୋପ ନ ପାଇବ, ସେତେଦିନ ପର୍ଯ୍ୟନ୍ତ ଏହିପରି ଭାବରେ ହିଁ ଚାଲୁଥିବ । ଏହି 'ଅହଂ-ମମ'-ଭାବ ହିଁ ପାର୍ଥିବ ଜଗତରେ ସମସ୍ତ ପାପର କାରଣ । ଆପଣ ଯଦି ଜଣେ ଦ୍ୱୈତବାଦୀଙ୍କୁ ପ୍ରଶ୍ନ କରନ୍ତି, 'ଆପଣଙ୍କର ସନ୍ତାନ କଅଣ ସତରେ ଆପଣଙ୍କର ?'—ସେ ଉତ୍ତର ଦେବେ, 'ସେ ଈଶ୍ୱରଙ୍କର । ମୋ ସମ୍ପତ୍ତି ମୋର ନୁହେଁ, ଈଶ୍ୱରଙ୍କର ।' ସମସ୍ତ ବସ୍ତୁକୁ ଈଶ୍ୱରଙ୍କର ବୋଲି ଗ୍ରହଣ କରିବା କର୍ତ୍ତବ୍ୟ ।

ଭାରତବର୍ଷର ଏହି ସମସ୍ତ ଦ୍ୱୈତବାଦୀ ସମ୍ପ୍ରଦାୟ ନିରାମିଷଭୋଜୀ, ଖୁବ୍ ଅହିଂସା ପ୍ରଚାର କରନ୍ତି । କିନ୍ତୁ ଏହି ବିଷୟରେ ସେମାନଙ୍କର ମତବାଦ ବୌଦ୍ଧ ମତବାଦଠାରୁ ଭିନ୍ନ । ଆପଣ ଯଦି ଜଣେ ବୌଦ୍ଧ-ମତାବଲମ୍ବୀଙ୍କୁ ପ୍ରଶ୍ନ କରନ୍ତି, 'ଆପଣ କାହିଁକି ପଶୁହତ୍ୟା ବିରୋଧରେ ପ୍ରଚାର କରୁଛନ୍ତି ?' ତାହାହେଲେ ସେ ଉତ୍ତର ଦେବେ, 'ପ୍ରାଣୀହତ୍ୟା କରିବାରେ ଆମମାନଙ୍କର କୌଣସି ଅଧିକାର ନାହିଁ ।' କିନ୍ତୁ ଆପଣ ଯଦି ଜଣେ ଦ୍ୱୈତବାଦୀଙ୍କୁ ପ୍ରଶ୍ନ କରନ୍ତି, 'ଆପଣ କାହିଁକି ପଶୁହତ୍ୟା କରନ୍ତି ନାହିଁ ?' ତାହାହେଲେ ସେ ଉତ୍ତର ଦେବେ, 'କାରଣ, ପଶୁ ଈଶ୍ୱରଙ୍କର ।' ସେଥିପାଇଁ ଦ୍ୱୈତବାଦୀମାନଙ୍କର ମତ—ଏହି 'ଅହଂ-ମମତ୍ୱ'-ଭାବ କେବଳ ମାତ୍ର ଈଶ୍ୱର ସମ୍ବନ୍ଧରେ ପ୍ରଯୁକ୍ତ ହେବା କର୍ତ୍ତବ୍ୟ । ଏକମାତ୍ର ସେ 'ଅହଂ' ଏବଂ ସମସ୍ତ ବସ୍ତୁ ହିଁ ତାଙ୍କର । ଯେତେବେଳେ ମନୁଷ୍ୟ ଅହଂ-ମମ-ଭାବ ବିସର୍ଜନ ଦିଏ, ଯେତେବେଳେ ସେ ସମସ୍ତ କିଛି ଈଶ୍ୱରଙ୍କର ଚରଣରେ ଅର୍ପଣ କରେ, ଯେତେବେଳେ ସେ ସମସ୍ତଙ୍କୁ ଭଲ ପାଏ ଏବଂ ପୁରସ୍କାରର କୌଣସି ପ୍ରକାର ଆଶା ନ ରଖି ଗୋଟିଏ ପଶୁର ପ୍ରାଣ ରକ୍ଷା ପାଇଁ ମଧ୍ୟ ପ୍ରାଣ ତ୍ୟାଗ କରିବା ନିମିତ୍ତ ପ୍ରସ୍ତୁତ ହୁଏ, ସେତେବେଳେ ତାହାର ହୃଦୟ ବିଶୁଦ୍ଧ ହୁଏ ଏବଂ ଏହିପରି ବିଶୁଦ୍ଧ

ଚିତ୍ତରେ ହିଁ ଈଶ୍ୱର-ପ୍ରୀତିର ଉଦୟ ହୁଏ । ଈଶ୍ୱର ହିଁ ପ୍ରତ୍ୟେକ ଜୀବର ଆକର୍ଷଣ-କେନ୍ଦ୍ର; ଏବଂ ଦ୍ୱୈତବାଦୀ କହନ୍ତି—ମୃତ୍ତିକାରେ ଆବୃତ ଛୁଞ୍ଚି ଚୁମ୍ବକଦ୍ୱାରା ଆକୃଷ୍ଟ ହୁଏ ନାହିଁ, କିନ୍ତୁ ମୃତ୍ତିକା ଧୌତ ହୋଇଗଲେ ହିଁ ତାହା ଆକୃଷ୍ଟ ହେବ । ଈଶ୍ୱର ଚୁମ୍ବକ, ଜୀବ ଛୁଞ୍ଚି । ତାହାର ପାପ-କର୍ମ ହିଁ ଧୂଳି ଏବଂ ମଇଳା, ଯାହା ତାକୁ ଆବୃତ କରେ । ଜୀବ ବିଶୁଦ୍ଧ ହେଲେ ସ୍ୱଭାବଜାତ ଆକର୍ଷଣ ବଳରେ ଈଶ୍ୱରଙ୍କ ନିକଟକୁ ଆସିବ, ଈଶ୍ୱରଙ୍କ ସହିତ ଅନନ୍ତକାଳ ବିରାଜ କରିବ; କିନ୍ତୁ ତଥାପି ଚିରକାଳ ସେ ଈଶ୍ୱରଙ୍କଠାରୁ ପୃଥକ୍ ହୋଇ ରହିବ । ପୂର୍ଣ୍ଣତାପ୍ରାପ୍ତ ଜୀବ ଇଚ୍ଛାନୁସାରେ ଯେକୌଣସି ରୂପ ଧାରଣ କରିପାରେ; ଇଚ୍ଛା କଲେ ସେ ଏକ ସମୟରେ ଏକଶତ ଦେହ ଧାରଣ କରିପାରେ, ଅଥବା ଗୋଟିଏ ହେଲେ ଦେହ ଧାରଣ ନ କରିପାରେ । ଏପରି ଜୀବ ପ୍ରାୟ ସର୍ବଶକ୍ତିମାନ୍ ହୁଏ, କେବଳ ସୃଷ୍ଟି କରିପାରେ ନାହିଁ—ସୃଷ୍ଟି କରିବାର ଶକ୍ତି କେବଳ ଈଶ୍ୱରଙ୍କର ହିଁ ଅଛି । ଯେତେ ପୂର୍ଣ୍ଣତାପ୍ରାପ୍ତ ହେଉନା କାହିଁକି, କେହି ହେଲେ ଜଗତକୁ ପରିଚାଳନା କରିପାରିବ ନାହିଁ, ଏହି କାର୍ଯ୍ୟ କେବଳ ଈଶ୍ୱରଙ୍କର । କିନ୍ତୁ ପୂର୍ଣ୍ଣତାପ୍ରାପ୍ତ ହେଲେ ସମସ୍ତ ଜୀବନ ଆନନ୍ଦପୂର୍ଣ୍ଣ ହୁଏ ଏବଂ ଜୀବ ଅନନ୍ତକାଳ ଈଶ୍ୱରଙ୍କ ସହିତ ବାସ କରେ । ଏହା ହିଁ ହେଲା ଦ୍ୱୈତବାଦୀମାନଙ୍କର ମତ ।

ଦ୍ୱୈତବାଦୀମାନେ ଆଉ ଗୋଟିଏ ମତ ମଧ୍ୟ ପ୍ରଚାର କରନ୍ତି । ସେମାନେ ଈଶ୍ୱରଙ୍କ ନିକଟରେ ଏ ଧରଣର ପ୍ରାର୍ଥନା କରିବାର ସମ୍ପୂର୍ଣ୍ଣ ବିରୋଧୀ—'ପ୍ରଭୁ, ମୋତେ ଏହା ଦିଅ, ତାହା ଦିଅ ।' ସେମାନଙ୍କ ମତରେ ଏପରି କରିବା କଦାପି ଉଚିତ ନୁହେଁ । ଯଦି କେହି କୌଣସି ପାର୍ଥିବ ଦ୍ରବ୍ୟ ପାଇଁ ପ୍ରାର୍ଥନା କରିବାକୁ ଚାହାଁନ୍ତି, ତାହାହେଲେ ନିମ୍ନତର କାହାରି ନିକଟରେ ସେହି ପ୍ରାର୍ଥନା ନିବେଦନ କରିବା ଉଚିତ—କୌଣସି ଦେବତା, ଦେବଦୂତ ଅଥବା ପୂର୍ଣ୍ଣତାପ୍ରାପ୍ତ ମୁକ୍ତ ଜୀବଙ୍କ ନିକଟରୁ କେବଳ ପାର୍ଥିବ ବସ୍ତୁ ଚାହିଁବାକୁ ହୁଏ । ଈଶ୍ୱରଙ୍କୁ କେବଳ ଭଲପାଇବା କର୍ତ୍ତବ୍ୟ । 'ପ୍ରଭୁ ! ମୋତେ ଏହା ଦିଅ, ତାହା ଦିଅ'—ଏ ଭାବରେ ଈଶ୍ୱରଙ୍କ ନିକଟରେ ପ୍ରାର୍ଥନାକରିବା ଧର୍ମ ଦିଗରୁ ଘୋରତର ଅନ୍ୟାୟ । ଅତଏବ ଦ୍ୱୈତବାଦୀ-ମାନଙ୍କ ମତରେ—ଦେବତାମାନଙ୍କ ମଧ୍ୟରୁ ଜଣଙ୍କୁ ଆରାଧନା କରି ମନୁଷ୍ୟ ଯାହା କାମନା କରେ, ତାହା ଶୀଘ୍ର ବା ବିଳମ୍ବରେ ଲାଭ କରେ; କିନ୍ତୁ ଯଦି ସେ ମୁକ୍ତି ଚାହେଁ, ତାହାହେଲେ ତାକୁ ଈଶ୍ୱରଙ୍କର ଉପାସନା କରିବାକୁ ହେବ । ଏହା ହିଁ ଭାରତବର୍ଷର ଜନସାଧାରଣଙ୍କର ଧର୍ମ ।

ବିଶିଷ୍ଟାଦ୍ୱୈତବାଦୀମାନଙ୍କ ମତବାଦରୁ ପ୍ରକୃତ ବେଦାନ୍ତ-ଦର୍ଶନର ଆରମ୍ଭ । ସେମାନଙ୍କର ମତରେ—କାର୍ଯ୍ୟ କଦାପି ତାହାର କାରଣରୁ ଭିନ୍ନ ନୁହେଁ, କାର୍ଯ୍ୟ କାରଣର ରୂପଭେଦ ମାତ୍ର । ଯଦି ଜଗତ କାର୍ଯ୍ୟ ହୁଏ ଏବଂ ଈଶ୍ୱର କାରଣ ହୁଅନ୍ତି,

ତାହାହେଲେ ଜଗତ ହିଁ ଈଶ୍ୱର; ଜଗତ ଈଶ୍ୱର ବ୍ୟତୀତ ଅନ୍ୟ କିଛି ହୋଇପାରେ ନାହିଁ । ବିଶିଷ୍ଟାଦ୍ୱୈତବାଦୀମାନେ କହନ୍ତି, ଈଶ୍ୱର ଜଗତର ଉପାଦାନ ଓ ନିମିତ୍ତ କାରଣ; ସେ ହିଁ ସ୍ରଷ୍ଟା ଏବଂ ସେ ହିଁ ସେହି ଉପାଦାନ—ଯେଉଁଥିରୁ ସମଗ୍ର ଜଗତ ଅଭିବ୍ୟକ୍ତ ହୋଇଅଛି । ଆପଣମାନଙ୍କ ଭାଷାରେ ଯାହାକୁ 'ସୃଷ୍ଟି' କୁହାଯାଏ, ତାହାର କୌଣସି ପ୍ରତିଶବ୍ଦ ସଂସ୍କୃତରେ ନାହିଁ, ଯେହେତୁ ଭାରତବର୍ଷର କୌଣସି ସମ୍ପ୍ରଦାୟ ପାଶ୍ଚାତ୍ୟ ମତାନୁଯାୟୀ 'ଶୂନ୍ୟରୁ ଜଗତର ସୃଷ୍ଟି'—ଏପରି ସ୍ୱୀକାର କରନ୍ତି ନାହିଁ । ବୋଧହୁଏ, କୌଣସି ସମୟରେ ଏହି ମତବାଦର କେତେକ ସମର୍ଥକ ଥିଲେ; କିନ୍ତୁ ସେମାନଙ୍କର ମତବାଦ ଶୀଘ୍ର ନିରାକୃତ ହେଲା । ବର୍ତ୍ତମାନ ମୁଁ ଏପରି କୌଣସି ସମ୍ପ୍ରଦାୟକୁ ଜାଣେ ନାହିଁ, ଯେଉଁମାନେ ଏହି ମତବାଦରେ ବିଶ୍ୱାସୀ । 'ସୃଷ୍ଟି' କହିଲେ ଆମେମାନେ ବୁଝୁଁ—ଯାହା ପୂର୍ବରୁ ଅଛି, ତାହାର ହିଁ ବହିଃପ୍ରକାଶ । ଏହି ସମ୍ପ୍ରଦାୟର ମତାନୁସାରେ ସମଗ୍ର ଜଗତ ହିଁ ସ୍ୱୟଂ ଈଶ୍ୱର । ସେ ହିଁ ଜଗତର ଉପାଦାନ । ଆମେମାନେ ବେଦରେ ପାଠ କରୁ—ଊର୍ଣ୍ଣନାଭି ଯେପରି ନିଜଦେହରୁ ତନ୍ତୁ ବୟନ କରେ, ସେହିପରି ସମସ୍ତ ଜଗତ ସେହି ପରମ ସତ୍ତାରୁ ବହିର୍ଗତ ହୋଇଅଛି ।*

କାର୍ଯ୍ୟ ଯଦି କାରଣର ରୂପାନ୍ତର ମାତ୍ର ହୁଏ, ତାହାହେଲେ ପ୍ରଶ୍ନ ହୋଇପାରେ : ଅ-ଜଡ଼ ଏବଂ ନିତ୍ୟ-ଜ୍ଞାନସ୍ୱରୂପ ଈଶ୍ୱରଙ୍କଠାରୁ କିପରି ଜଡ ଅଚେତନ ଜଗତ ସୃଷ୍ଟି ହୋଇପାରେ ? ଯଦି କାରଣ ଶୁଦ୍ଧ ଓ ପୂର୍ଣ୍ଣ ହୁଏ, ତାହାହେଲେ କାର୍ଯ୍ୟ ଅଶୁଦ୍ଧ ଓ ଅପୂର୍ଣ୍ଣ ହୁଏ କିପରି ? ଏ ବିଷୟରେ ବିଶିଷ୍ଟାଦ୍ୱୈତବାଦୀ କ'ଣ କହନ୍ତି ? ସେମାନଙ୍କର ମତବାଦ ସାମାନ୍ୟ ଅଦ୍ଭୁତ । ସେମାନେ କହନ୍ତି, ଈଶ୍ୱର, ଜୀବ ଓ ଜଗତ—ଏହି ତିନୋଟି ଭାବ ବା ସତ୍ତା ଅଭିନ୍ନ । ସତେ ଯେପରି ଈଶ୍ୱର ଆତ୍ମା ଏବଂ ଜୀବ-ଜଗତ୍ ତାଙ୍କର ଦେହ । ଯେପରି ମୋର ଦେହ ଅଛି, ଆତ୍ମା ମଧ୍ୟ ଅଛି, ସେହିପରି ସମଗ୍ର ଜଗତ ଏବଂ ସମସ୍ତ ଜୀବ ହିଁ ଈଶ୍ୱରଙ୍କର ଦେହ ଏବଂ ଈଶ୍ୱର ସକଳ ଆତ୍ମାର ଆତ୍ମା । ଏହିପରି ଭାବରେ ଈଶ୍ୱର ହିଁ ଜଗତର ଉପାଦାନ-କାରଣ । ଦେହ ପରିବର୍ତ୍ତିତ ହୋଇପାରେ, ତରୁଣ ବା ବୃଦ୍ଧ ହୋଇପାରେ, ସବଳ ବା ଦୁର୍ବଳ ହୋଇପାରେ; କିନ୍ତୁ ସେଥିରେ ଆତ୍ମାର କୌଣସି ପରିବର୍ତ୍ତନ ହୁଏ ନାହିଁ । ଆତ୍ମା ସର୍ବଦା ହିଁ ସେହି ଚିରନ୍ତନ ସତ୍ତା, ଯାହା ଦେହ ମଧ୍ୟ ଦେଇ ପ୍ରକାଶିତ ହୁଏ । ଦେହ ଆସେ, ଯାଏ; କିନ୍ତୁ ଆତ୍ମାର କୌଣସି ପରିବର୍ତ୍ତନ ହୁଏ ନାହିଁ । ସେହିପରି ସମଗ୍ର ଜଗତ ପରମେଶ୍ୱରଙ୍କର ଦେହ ଏବଂ ସେହି ଅର୍ଥରେ ଜଗତ ସ୍ୱୟଂ ଈଶ୍ୱର । କିନ୍ତୁ ଜାଗତିକ ପରିବର୍ତ୍ତନରେ ଈଶ୍ୱର ପରିବର୍ତ୍ତିତ ହୁଅନ୍ତି ନାହିଁ । ଏହି ଭାବରେ ଉପାଦାନରୁ ସେ ଜଗତ ସୃଷ୍ଟି କରନ୍ତି ଏବଂ ଗୋଟିଏ କଳ୍ପର ଶେଷରେ ତାଙ୍କର ଦେହ

* ମୁଣ୍ଡକ ଉପ., ୧।୧।୭

ସୂକ୍ଷ୍ମତର ହୋଇଯାଏ, ସଙ୍କୁଚିତ ହୁଏ । ପରବର୍ତ୍ତୀ କଳ୍ପର ପ୍ରାରମ୍ଭରେ ତାହା ପୁଣି ପ୍ରସାରିତ ହୁଏ ଏବଂ ସେଥିରୁ ଏହିସବୁ ବିଭିନ୍ନ ବିଶ୍ୱ ପ୍ରକାଶିତ ହୁଏ ।

ଦ୍ୱୈତବାଦୀ ଏବଂ ବିଶିଷ୍ଟାଦ୍ୱୈତବାଦୀ—ଉଭୟ ହିଁ ସ୍ୱୀକାର କରନ୍ତି, ଆତ୍ମା ସ୍ୱଭାବତଃ ଶୁଦ୍ଧ, କିନ୍ତୁ ସ୍ୱକର୍ମଦୋଷରେ ଅଶୁଦ୍ଧ ହୋଇଥାଏ । ବିଶିଷ୍ଟାଦ୍ୱୈତବାଦୀଗଣ ଦ୍ୱୈତବାଦୀଗଣଙ୍କ ଅପେକ୍ଷା ଆହୁରି ସୁନ୍ଦର ଭାବରେ ଏହି ତତ୍ତ୍ୱଟି ପ୍ରକାଶ କରନ୍ତି । ସେମାନେ କହନ୍ତି, ଜୀବର ଶୁଦ୍ଧତା ଏବଂ ପୂର୍ଣ୍ଣତା ସଙ୍କୁଚିତ ହୋଇଥାଏ ଏବଂ ପୁନର୍ବାର ବିକଶିତ ହୁଏ । ଆମେମାନେ ବର୍ତ୍ତମାନ ଆତ୍ମାର ଏହି ସ୍ୱଭାବଗତ ଜ୍ଞାନ, ଶୁଦ୍ଧତା ଓ ଶକ୍ତି ପୁନଃପ୍ରକାଶିତ କରିବା ପାଇଁ କେବଳ ଚେଷ୍ଟା କରୁଅଛୁ । ଆତ୍ମା ବହୁଗୁଣସମ୍ପନ୍ନ, କିନ୍ତୁ ଏହି ଜୀବାତ୍ମା ସର୍ବଶକ୍ତିମାନ୍ ଓ ସର୍ବଜ୍ଞ ନୁହେଁ । ପ୍ରତ୍ୟେକ ଅସତ୍ କର୍ମ ଆତ୍ମାର ସ୍ୱରୂପକୁ ସଙ୍କୁଚିତ କରେ ଏବଂ ପ୍ରତ୍ୟେକ ସତ୍କର୍ମ ତାହାକୁ ପ୍ରସାରିତ କରେ, ସବୁ ଜୀବାତ୍ମା ହିଁ ପରମାତ୍ମାଙ୍କର ଅଂଶ । ଜ୍ୱଳନ୍ତ ଅଗ୍ନିରୁ ଯେପରି ଲକ୍ଷ ଲକ୍ଷ ସ୍ଫୁଲିଙ୍ଗ ନିର୍ଗତ ହୁଏ, ଅନନ୍ତସ୍ୱରୂପ ଈଶ୍ୱରଙ୍କଠାରୁ ସେହିପରି ଏହିସବୁ ଆତ୍ମା ନିର୍ଗତ ହୋଇଅଛନ୍ତି । ପ୍ରତ୍ୟେକର ଲକ୍ଷ୍ୟ ଏକ । ବିଶିଷ୍ଟାଦ୍ୱୈତବାଦୀମାନଙ୍କର ଈଶ୍ୱର ମଧ୍ୟ ବ୍ୟକ୍ତିଭାବାପନ୍ନ, ଅନନ୍ତ-କଲ୍ୟାଣ-ଗୁଣାଧାର; କେବଳ ସେ ଜଗତର ସର୍ବତ୍ର ଅନୁପ୍ରବିଷ୍ଟ ହୋଇ ଅଛନ୍ତି । ସେ ସର୍ବବସ୍ତୁରେ, ସକଳ ସ୍ଥାନରେ ଅନ୍ତର୍ଲୀନ ହୋଇ ଅଛନ୍ତି; ଯେତେବେଳେ ଶାସ୍ତ୍ର କହେ—ଈଶ୍ୱର ହିଁ ସବୁ, ଏହାର ଅର୍ଥ ଏହି ଯେ, ଈଶ୍ୱର ସର୍ବବସ୍ତୁରେ ଅନୁପ୍ରବିଷ୍ଟ ହୋଇ ଅଛନ୍ତି; ସେ ଯେ କାନ୍ଥ ହୋଇଛନ୍ତି ତାହା ନୁହେଁ, ସେ କାନ୍ଥ ମଧ୍ୟରେ ନିହିତ ହୋଇ ଅଛନ୍ତି । ପୃଥିବୀରେ ଏପରି କ୍ଷୁଦ୍ରତମ ଅଂଶ, ଏପରି ଗୋଟିଏ ଅଣୁ-ପରମାଣୁ ନାହିଁ, ଯେଉଁଥିରେ ସେ ନାହାନ୍ତି । ସବୁ ଜୀବାତ୍ମା ହିଁ ସୀମିତ; ସେମାନେ ସର୍ବବ୍ୟାପୀ ନୁହନ୍ତି । ଯେତେବେଳେ ସେମାନଙ୍କର ଶକ୍ତି ବିକଶିତ ହୁଏ ଏବଂ ସେମାନେ ପୂର୍ଣ୍ଣତା ଲାଭ କରନ୍ତି, ସେତେ-ବେଳେ ସେମାନଙ୍କର ଆଉ ଜନ୍ମ-ମୃତ୍ୟୁ ରହେ ନାହିଁ, ସେମାନେ ଈଶ୍ୱରଙ୍କ ସହିତ ଅନନ୍ତକାଳ ବାସ କରନ୍ତି ।

ବର୍ତ୍ତମାନ ଆମେମାନେ ଅଦ୍ୱୈତବାଦର ପ୍ରସଙ୍ଗକୁ ଆସିବୁ । ଆମମାନଙ୍କ ମତରେ ଏହା ହେଉଛି ସବୁ ଦେଶର, ସବୁ ଯୁଗର ପ୍ରକୃତ ଦର୍ଶନ ଏବଂ ଧର୍ମର ଶେଷ ଓ ସୁନ୍ଦରତମ ପୁଷ୍ପ—ଏଥିରେ ମାନବୀୟ ଚିନ୍ତାର ଉଚ୍ଚତମ ବିକାଶ ଦୃଷ୍ଟ ହୁଏ । ଯେଉଁ ରହସ୍ୟ ଅଭେଦ୍ୟ ବୋଲି ବୋଧହୁଏ, ତାହା ମଧ୍ୟ ଅଦ୍ୱୈତବାଦ ଭେଦ କରିଅଛି । ଏହା ହିଁ ହେଲା ଅଦ୍ୱୈତବାଦୀ ବେଦାନ୍ତ । ଅଦ୍ୱୈତବାଦ ଏପରି ନିଗୂଢ଼, ଏପରି ଉଚ୍ଚ ଯେ, ଏହା ଜନସାଧାରଣଙ୍କର ଧର୍ମ ହୋଇପାରି ନାହିଁ । ଯେଉଁ ଭାରତବର୍ଷରେ ଏହାର ଜନ୍ମ ଏବଂ ଯେଉଁଠାରେ ଏହା ବିଗତ ତିନି ହଜାର ବର୍ଷ ଧରି ପୂର୍ଣ୍ଣ ଗୌରବରେ ରାଜତ୍ୱ କରୁଅଛି, ସେଠାରେ ମଧ୍ୟ ଏହା ଜନସାଧାରଣଙ୍କ

ସ୍ତରରେ ପ୍ରବେଶ କରିପାରି ନାହିଁ । ଆମେମାନେ ମଧ୍ୟ କ୍ରମଶଃ ଦେଖିବା ଯେ, ଯେ କୌଣସି ଦେଶରେ ଅଧିକ ଚିନ୍ତାଶୀଳ ନରନାରୀମାନଙ୍କ ପକ୍ଷରେ ମଧ୍ୟ ଅଦ୍ୱୈତବାଦକୁ ହୃଦୟଙ୍ଗମ କରିବା କଠିନ । ଆମେମାନେ ନିଜକୁ ଏପରି ଦୁର୍ବଳ, ଏପରି ହୀନ କରି ପକାଇଛୁ ଯେ ଆମେମାନେ ଯେତେବଡ଼ ଦାବୀ କରୁନା କାହିଁକି, କିନ୍ତୁ ସ୍ୱଭାବତଃ ଆମେମାନେ ଅନ୍ୟ ଉପରେ ନିର୍ଭର କରିବାକୁ ଚାହୁଁ । ଆମେ-ମାନେ ଯେପରି କ୍ଷୁଦ୍ର ଦୁର୍ବଳ ଲତା ଭଳି—ସର୍ବଦା ଗୋଟିଏ ଅବଲମ୍ବନ ଚାହୁଁ । କେତେଥର ଗୋଟିଏ ସହଜ ଆରାମପ୍ରଦ ଧର୍ମ ସମ୍ବନ୍ଧରେ କହିବା ପାଇଁ ମୋତେ ଅନୁରୋଧ କରାଯାଇଛି । ଅତି ଅଳ୍ପ ଲୋକ ହିଁ ସତ୍ୟର ବାଣୀ ଶୁଣିବାକୁ ଚାହାନ୍ତି, ଅଳ୍ପତର ଲୋକ ସତ୍ୟ ଜାଣିବା ପାଇଁ ସାହସୀ ହୁଅନ୍ତି, ଅଳ୍ପତମ ଲୋକ ସେହି ସତ୍ୟକୁ ବ୍ୟାବହାରିକ ଜୀବନରେ ପ୍ରତିଷ୍ଠିତ କରିବା ପାଇଁ ସାହସୀ ହୁଅନ୍ତି । ଏହା ସେମାନଙ୍କର ଦୋଷ ନୁହେଁ, ଏହା ମସ୍ତିଷ୍କର ଦୁର୍ବଳତା । ଯେକୌଣସି ନୂତନ ତତ୍ତ୍ୱ—ବିଶେଷ କରି ଉଚ୍ଚ ସ୍ତରର ତତ୍ତ୍ୱ—ମସ୍ତିଷ୍କରେ ବିଶୃଙ୍ଖଳା ସୃଷ୍ଟି କରେ, ମସ୍ତିଷ୍କର ସ୍ନାୟୁ ଭିତରେ ଯେପରି ଗୋଟିଏ ନୂତନ ଧାରାର ସୃଷ୍ଟି କରିବାକୁ ଚେଷ୍ଟା କରେ ଏବଂ ଏଥିରେ ମନୁଷ୍ୟର ସମଗ୍ର ଜୀବନ ବିପର୍ଯ୍ୟସ୍ତ ହୋଇଯାଏ ଏବଂ ମନୁଷ୍ୟ ସମତା ହରାଏ । ସେମାନେ ପୂର୍ବରୁ ବିଶେଷ ଧରଣର ପରିବେଶରେ ଅଭ୍ୟସ୍ତ ଏବଂ ସେଥିପାଇଁ ପ୍ରାଚୀନ ପାରିବାରିକ, ନାଗରିକ, ଶ୍ରେଣୀଗତ, ଦେଶଗତ ବହୁ ଏବଂ ବିବିଧ କୁସଂସ୍କାର, ସର୍ବୋପରି ସ୍ୱୀୟ ଅନ୍ତର୍ନିହିତ ବହୁ କୁସଂସ୍କାରକୁ ଜୟ କରିବାକୁ ହୁଏ । ତାହା ସତ୍ତ୍ୱେ ପୃଥିବୀରେ ଏପରି କେତେଜଣ ସାହସୀ ବ୍ୟକ୍ତି ମଧ୍ୟ ଅଛନ୍ତି, ଯେଉଁମାନେ ସତ୍ୟ ଉପଲବ୍ଧି କରିବା ପାଇଁ ସାହସୀ ହୁଅନ୍ତି, ସତ୍ୟ ଗ୍ରହଣରେ ସାହସୀ ହୁଅନ୍ତି, ଶେଷ ପର୍ଯ୍ୟନ୍ତ ସତ୍ୟ ଅନୁସରଣ କରିବା ପାଇଁ ସାହସୀ ହୁଅନ୍ତି ।

ଅଦ୍ୱୈତବାଦୀ କଅଣ କହନ୍ତି ? ସେ କହନ୍ତି: ଯଦି ଈଶ୍ୱର ଥାଆନ୍ତି, ତେବେ ସେ ନିଶ୍ଚୟ ହିଁ ଜଗତର ନିମିତ୍ତ ଓ ଉପାଦାନ କାରଣ । ସେ ଯେ କେବଳ ସୃଷ୍ଟିକାରଣ ତାହା ନୁହେଁ, ସେ ସୃଷ୍ଟ କାର୍ଯ୍ୟ ମଧ୍ୟ । ସେ ସ୍ୱୟଂ ଏହି ବିଶ୍ୱବ୍ରହ୍ମାଣ୍ଡ । ଏହା କିପରି ସମ୍ଭବ ? ଶୁଦ୍ଧ ଆତ୍ମା ଈଶ୍ୱର କ'ଣ ଜୀବ-ଜଗତରେ ପରିଣତ ହୋଇ-ଅଛନ୍ତି ? ହଁ, ଆପାତତଃ ଏହା ସତ୍ୟ । ଅଜ୍ଞ ବ୍ୟକ୍ତିମାନେ ଯାହାକୁ ବିଶ୍ୱସଂସାର ରୂପରେ ଗ୍ରହଣ କରନ୍ତି, ତାହାର କୌଣସି ବାସ୍ତବ ସତ୍ତା ନାହିଁ । ତାହାହେଲେ ତୁମେ, ମୁଁ ଏବଂ ଆମେ ଦେଖୁଥିବା ଅନ୍ୟାନ୍ୟ ବସ୍ତୁସମୂହ କଅଣ ? ତାହା କେବଳ ଆତ୍ମସମ୍ମୋହନ—ପ୍ରକୃତ ପକ୍ଷରେ ଅନନ୍ତ ଅସୀମ ନିତ୍ୟ ମଙ୍ଗଳମୟ ସତ୍ତା ହିଁ ଏକ ମାତ୍ର ସତ୍ତା । ଏହି ଏକ ସତ୍ତାରେ ଆମେମାନେ ଏସବୁ ସ୍ୱପ୍ନ ଦେଖୁ । ସେ ହିଁ ଆତ୍ମା —ସକଳ ବସ୍ତୁର ଊର୍ଦ୍ଧ୍ୱରେ, ଅନନ୍ତ ଅସୀମ, ସକଳ ଜ୍ଞାତା-ଜ୍ଞେୟର ଊର୍ଦ୍ଧ୍ୱରେ ।

ତାଙ୍କର ମଧ୍ୟରେ, ତାଙ୍କର ମାଧ୍ୟମରେ ଆମେମାନେ ବିଶ୍ୱକୁ ଦେଖୁ । ସେ ହିଁ ଏକମାତ୍ର ସତ୍ତା । ସେ ହିଁ ଏହି 'ଟେବୁଲ', ସେ ହିଁ ଏହି ସମ୍ମୁଖସ୍ଥ ଶ୍ରୋତୃ-ମଣ୍ଡଳୀ, ସେ ହିଁ ଏହି କକ୍ଷପ୍ରାଚୀର, ସେ ହିଁ ସକଳ ବସ୍ତୁ, କେବଳ ନାମ ଓ ଆକାର ବିହୀନ । ଏହି 'ଟେବୁଲ'ର ନାମ ବର୍ଜ୍ଜନ କର, ବିଶେଷ ରୂପ ଅଥବା ଆକାରହିଁ ବର୍ଜ୍ଜନ କର; ଯାହା ଅବଶିଷ୍ଟ ରହିବ, ତାହା ହିଁ ସେ । ବୈଦାନ୍ତିକ ତାହାକୁ ପୁରୁଷ କହେ ନାହିଁ କି ନାରୀ ମଧ୍ୟ କହେ ନାହିଁ—ଏହିସବୁ ବର୍ଣ୍ଣନା କଳ୍ପନା ମାତ୍ର, ମନୁଷ୍ୟ-ମସ୍ତିଷ୍କଜାତ ମୋହଭ୍ରାନ୍ତି ମାତ୍ର । ପ୍ରକୃତ ପକ୍ଷରେ ଆତ୍ମା ମଧ୍ୟରେ ନରନାରୀ -ଭେଦ ନାହିଁ । ଯେଉଁମାନେ ମୋହଗ୍ରସ୍ତ ଭ୍ରାନ୍ତ, ଯେଉଁମାନେ ପଶୁପରି, ସେହି-ମାନେ ହିଁ କେବଳ ନାରୀଙ୍କୁ ନାରୀ ଓ ପୁରୁଷଙ୍କୁ ପୁରୁଷ ରୂପରେ ଦର୍ଶନ କରନ୍ତି । ଯେଉଁମାନେ ସବୁକିଛିର ଊର୍ଦ୍ଧ୍ୱରେ, ସେମାନେ ନରନାରୀଙ୍କ ଭିତରେ ଭେଦ କରିବେ କିପରି ? ସକଳ ବସ୍ତୁ ସକଳ ଜୀବ ହିଁ ଆତ୍ମା— ଲିଙ୍ଗବିହୀନ, ଶୁଦ୍ଧ, ଚିର ମଙ୍ଗଳମୟ ଆତ୍ମା । ନାମ, ରୂପ—ଦେହ ହିଁ କେବଳ ଜଡ଼ ଏବଂ ଏହିମାନେ ସବୁ ଭେଦର ସ୍ରଷ୍ଟା । ନାମ ଓ ରୂପ, ଏହି ଉଭୟ ପ୍ରକାର ଭେଦ ଯଦି ବର୍ଜ୍ଜନ କରିଯାଏ, ତାହାହେଲେ ସମଗ୍ର ବିଶ୍ୱବ୍ରହ୍ମାଣ୍ଡ ଏକ ହୋଇଯିବ । କୌଣସି ସ୍ଥାନରେ 'ଦୁଇ' ନାହିଁ, ସର୍ବତ୍ର ଅଛି ସେହି 'ଏକ' । ତୁମେ ଓ ମୁଁ ଏକ । ପ୍ରକୃତି ନାହିଁ, ଈଶ୍ୱର ମଧ୍ୟ ନାହାନ୍ତି, ବିଶ୍ୱ ବି ନାହିଁ; ଅଛି କେବଳ ଏହି ଏକ ଅନନ୍ତ ଅସୀମ ସତ୍ତା, ଯେଉଁଥିରୁ ନାମ-ରୂପ ମାଧ୍ୟମରେ ସକଳ ବସ୍ତୁ ସୃଷ୍ଟି ହୋଇଅଛି । ବିଜ୍ଞାତାକୁ କିପରି ଜାଣିବ ? ଏହା ଜଣାଯାଏ ନାହିଁ । ନିଜର ଆତ୍ମାକୁ ତୁମେ କିପରି ଦେଖିବ ? ତୁମେ କେବଳ ନିଜକୁ ପ୍ରତିବିମ୍ବିତ କରିପାର । ଏହି ଭାବରେ ସେହି ଏକ ନିତ୍ୟ ସତ୍ତା ଆତ୍ମାର ପ୍ରତିବିମ୍ବ ହିଁ ସମଗ୍ର ବିଶ୍ୱ; ଏବଂ ଭଲମନ୍ଦ ଦର୍ପଣ ଉପରେ ପଡ଼ିଲେ ଭଲ-ମନ୍ଦ ପ୍ରତିବିମ୍ବର ଉଦ୍ଭବ ହୁଏ । ହତ୍ୟାକାରୀ କ୍ଷେତ୍ରରେ ପ୍ରତିଫଳକ ଦର୍ପଣଟି ମଳିନ ବା ମନ୍ଦ, ଆତ୍ମା ନୁହେଁ । ଜଣେ ସାଧୁଙ୍କ କ୍ଷେତ୍ରରେ ଦର୍ପଣଟି ଶୁଦ୍ଧ । ଆତ୍ମା ସ୍ୱଭାବତଃ ହିଁ ଶୁଦ୍ଧ । ଜଗତରେ ସେହି ଏକକ ସତ୍ତା ନିମ୍ନତମ କୀଟ-ପତଙ୍ଗଠାରୁ ଉଚ୍ଚତମ ପ୍ରାଣୀ ପର୍ଯ୍ୟନ୍ତ ସର୍ବତ୍ର ନିଜକୁ ପ୍ରତିବିମ୍ବିତ କରୁଅଛନ୍ତି । ଦୈହିକ, ମାନସିକ, ନୈତିକ ଏବଂ ଆଧ୍ୟାତ୍ମିକ ସବୁ ଦିଗରୁ ସମଗ୍ର ବିଶ୍ୱ ସେହି ଏକ ଅଖଣ୍ଡ ସତ୍ତା ରୂପରେ ବିରାଜମାନ । ଆମେମାନେ ଏହି ଏକ ସତ୍ତାକୁ ବିଭିନ୍ନ ରୂପରେ ଦର୍ଶନ କରୁ, ସେହି ଏକ ସତ୍ତା ଉପରେ ହିଁ ବିଭିନ୍ନ ଆକୃତି ସୃଷ୍ଟି କରୁ । ଯିଏ ନିଜକୁ ମାନବ ସ୍ତରରେ ଆବଦ୍ଧ ରଖିଛନ୍ତି, ତାଙ୍କ ନିକଟରେ ଏହି ସତ୍ତା ଜଗତରୂପରେ ପ୍ରତିଭାତ ହୁଏ । ଯିଏ ଉଚ୍ଚତର ସ୍ତରକୁ ଆରୋହଣ କରିଅଛନ୍ତି, ତାଙ୍କ ନିକଟରେ ଏହି ସତ୍ତା ସ୍ୱର୍ଗ-ରୂପରେ ପ୍ରତିଭାତ ହୁଏ । ବିଶ୍ୱ ଜଗତରେ କେବଳ ଗୋଟିଏ ସତ୍ତା ହିଁ ରହିଛି, ଦୁଇଟି ନାହିଁ । ତାଙ୍କର ଆସିବା ନାହିଁ, ଯିବା ମଧ୍ୟ ନାହିଁ । ତାଙ୍କର ଜନ୍ମ ନାହିଁ, ମୃତ୍ୟୁ ମଧ୍ୟ ନାହିଁ, ପୁନର୍ବାର ଦେହଧାରଣ ମଧ୍ୟ ନାହିଁ । ତାଙ୍କର ମୃତ୍ୟୁ ହେବ

କପରି ? ତାଙ୍କର ଗମନ କେଉଁ ସ୍ଥାନକୁ ? ଏହିସବୁ ସ୍ୱର୍ଗ, ଏହିସବୁ ଭୁବନ, ଏହି-ସବୁ ସ୍ଥାନ ମନର ମିଥ୍ୟା କଳ୍ପନା ମାତ୍ର । ସେମାନଙ୍କର କୌଣସି ଅସ୍ତିତ୍ୱ ନାହିଁ, ଅତୀତରେ ମଧ୍ୟ ନ ଥିଲା, ଭବିଷ୍ୟତରେ ବି ରହିବ ନାହିଁ ।

ମୁଁ ସର୍ବବ୍ୟାପୀ, ନିତ୍ୟ । ମୁଁ ପୁଣି କେଉଁଠାକୁ ଗମନ କରିବି ? ମୁଁ କେଉଁଠି ନ ଅଛି ? ମୁଁ ପ୍ରକୃତିର ଏହି ପୁସ୍ତକଟି ପାଠ କରୁଅଛି । ପୃଷ୍ଠା ପରେ ପୃଷ୍ଠା ପଢ଼ି ଶେଷ କରୁଅଛି ଏବଂ ପତ୍ର ଓଲଟାଇ ଯାଉଅଛି, ସାଙ୍ଗେ ସାଙ୍ଗେ ଜୀବନର ଗୋଟିଏ ଗୋଟିଏ ସ୍ୱପ୍ନ ମଧ୍ୟ ବିଲୀନ ହୋଇଯାଉଅଛି । ଜୀବନର ଆଉ ଗୋଟିଏ ପୃଷ୍ଠାର ଆରମ୍ଭ, ଆଉ ଗୋଟିଏ ସ୍ୱପ୍ନର ମଧ୍ୟ ଉଦୟ ହୋଇ ବିଲୀନ ମଧ୍ୟ ହୋଇ ଯାଉ-ଅଛି, କ୍ରମାନ୍ୱୟରେ ଦୂରେଇ ଯାଉଅଛି । ମୋର ପାଠ ଶେଷ ହେଲେ ମୁଁ ମୋର ସ୍ୱପ୍ନଗୁଡ଼ିକୁ ଠେଲି ଦିଏ, ଏକପାଖିଆ ହୋଇ ଘୂଞ୍ଚି ଛିଡ଼ା ହୁଏ । ପୁସ୍ତକଟି ଫିଙ୍ଗିଦିଏ ଏବଂ ସମସ୍ତ ବିଷୟର ପରିସମାପ୍ତି ହୋଇଯାଏ ।

ଅଦ୍ୱୈତବାଦୀ କଅଣ ପ୍ରଚ୍ଚାର କରନ୍ତି ? ଅତୀତରେ ଯେଉଁସବୁ ଦେବତା ଥିଲେ ଏବଂ ଭବିଷ୍ୟତରେ ମଧ୍ୟ ଯେଉଁମାନେ ହେବେ, ସେମାନଙ୍କୁ ସେ ସିଂହାସନ-ଚ୍ୟୁତ କରି ସେହି ସିଂହାସନରେ ସ୍ଥାପନ କରିଛନ୍ତି ମାନବାତ୍ମାକୁ, ଯେଉଁ ଆତ୍ମା ସୂର୍ଯ୍ୟ ଚନ୍ଦ୍ର ଅପେକ୍ଷା ମହତ୍ତର, ସ୍ୱର୍ଗ ଅପେକ୍ଷା ମଧ୍ୟ ଉଚ୍ଚତର, ଏହି ବିଶାଳ ଜଗତ ଅପେକ୍ଷା ମଧ୍ୟ ବିଶାଳତର ।

ଯେଉଁ ଆତ୍ମା ଜୀବାତ୍ମାରୂପରେ ଆବିର୍ଭୂତ ହୋଇଅଛନ୍ତି, ତାଙ୍କର ମହିମା କୌଣସି ଗ୍ରନ୍ଥ, କୌଣସି ଶାସ୍ତ୍ର, କୌଣସି ବିଜ୍ଞାନ କଳ୍ପନା ମଧ୍ୟ କରିପାରେ ନାହିଁ । ସେ ହେଲେ ସର୍ବଶ୍ରେଷ୍ଠ ମହିମାନ୍ୱିତ ଦେବତା, ଯିଏ ଚିରଦିନ ବିରାଜମାନ; ସେ ହିଁ ଏକମାତ୍ର ଦେବତା, ଯିଏ ଅତୀତରେ ଥିଲେ, ବର୍ତ୍ତମାନ ବି ଅଛନ୍ତି, ଭବିଷ୍ୟତରେ ମଧ୍ୟ ରହିବେ । ସୁତରାଂ ମୋତେ ଏକମାତ୍ର ମୋର ଆତ୍ମାକୁ ହିଁ ଉପାସନା କରିବାକୁ ହେବ । ଅଦ୍ୱୈତବାଦୀ କହନ୍ତି, ମୁଁ ମୋର ଆତ୍ମାକୁ ହିଁ ଉପାସନା କରେ । କାହା ସମ୍ମୁଖରେ ମୁଁ ପ୍ରଣତ ହେବି ? ମୁଁ ମୋର ଆତ୍ମାକୁ ହିଁ ପ୍ରଣାମ କରେ । କାହା ନିକଟକୁ ମୁଁ ସାହାଯ୍ୟ ପାଇଁ ଯିବି ? ବିଶ୍ୱବ୍ୟାପୀ ଅସୀମ ସତ୍ତା 'ମୋତେ' କିଏ ସାହାଯ୍ୟ କରିପାରେ ? ଏଗୁଡ଼ିକ କେବଳ ମୂର୍ଖଙ୍କର ସ୍ୱପ୍ନ, ଭ୍ରାନ୍ତି ମାତ୍ର । କିଏକେବେ କାହାକୁ ସାହାଯ୍ୟ କରିଅଛି ? କେହି ନୁହେଁ । ଯେତେବେଳେ ଦେଖିବ ଯେ, ଜଣେ ଦୁର୍ବଳ ବ୍ୟକ୍ତି—ଜଣେ ଦ୍ୱୈତବାଦୀ ସ୍ୱର୍ଗରୁ ସାହାଯ୍ୟ ଭିକ୍ଷା କରି ରୋଦନ ଓ ଆର୍ତ୍ତନାଦ କରୁଅଛି, ସେତେବେଳେ ଜାଣିବ, ସେ ଏପରି କରୁଅଛି, କାରଣ ସେ ଜାଣେ ନାହିଁ—ସେହି ସ୍ୱର୍ଗ ତାହା ନିଜ ମଧ୍ୟରେ ବିରାଜମାନ । ସେ ସ୍ୱର୍ଗଠାରୁ ସାହାଯ୍ୟ ଚାହେଁ ଏବଂ ସେହି ସାହାଯ୍ୟ ସେ ପାଏ । ଆମେମାନେ ଦେଖୁଁ ସେହି ସାହାଯ୍ୟ ଆସେ; କିନ୍ତୁ ତାହା ଆସେ ତାହାର ନିଜ ଭିତରୁ, ଯଦିଓ ସେ ଏହାକୁ

ବାହ୍ୟରର ସାହାଯ୍ୟ ବୋଲି ଭ୍ରମ କରେ । କୌଣସି କୌଣସି ସମୟରେ ଏପରି ଘଟେ ଯେ, ଶଯ୍ୟାଶାୟୀ ଅସୁସ୍ଥ ବ୍ୟକ୍ତି ଦରଜାରେ କରାଘାତର ଶବ୍ଦ ଶୁଣିବାକୁ ପାଏ । ସେ ଉଠି ଦ୍ୱାର ଖୋଲେ, କିନ୍ତୁ କାହାରିକୁ ଦେଖିପାରେ ନାହିଁ । ସେତେବେଳେ ଶଯ୍ୟାକୁ ଫେରିଆସେ; କିନ୍ତୁ ପୁନରାୟ ସେ ଦରଜାରେ କରାଘାତର ଶବ୍ଦ ଶୁଣିବାକୁ ପାଏ । ସେ ପୁଣି ଉଠି ଦ୍ୱାର ଖୋଲେ । ସେଠାରେ କେହି ନାହିଁ । ଅବଶେଷରେ ସେ ଆବିଷ୍କାର କରେ, ତାହାର ନିଜର ହୃତ୍ପିଣ୍ଡର ଶବ୍ଦକୁ ହିଁ ସେ ଦରଜାରେ କରାଘାତର ଶବ୍ଦ ବୋଲି ମନେ କରୁଥିଲା । ସେହିପରି ଭାବରେ ଦେବତାଙ୍କୁ ବାହାରେ ବୃଥା ଅନ୍ୱେଷଣ କରିବା ପରେ ମନୁଷ୍ୟର ପରିକ୍ରମା ସମାପ୍ତ ହୁଏ; ଯେଉଁ ସ୍ଥାନରୁ ଆରମ୍ଭ କରିଥିଲା, ସେହି ସ୍ଥାନକୁ ସେ ଫେରି ଆସେ—ସେହି ମାନବାତ୍ମାକୁ; ସେତେବେଳେ ସେ ବୁଝିପାରେ, ଯେଉଁ ଈଶ୍ୱରଙ୍କୁ ସେ ଏତେ କାଳ ଧରି ସର୍ବତ୍ର ଅନ୍ୱେଷଣ କରୁଛି—ବନ ଓ ପର୍ବତରେ, ପ୍ରତ୍ୟେକ ନଦୀ ନାଳରେ, ପ୍ରତ୍ୟେକ ମନ୍ଦିର, ଗୀର୍ଜା ଓ ସ୍ୱର୍ଗରେ, ସେହି ଈଶ୍ୱର—ଯାହାଙ୍କୁ ସେ ଏତେ କାଳ ଧରି ସ୍ୱର୍ଗ-ଅବସ୍ଥିତ ମର୍ତ୍ତ୍ୟର ଶାସନକର୍ତ୍ତା ବୋଲି କଳ୍ପନା କରି ଆସିଅଛି, ସେହି ଈଶ୍ୱର ହିଁ ସେ ନିଜେ । ମୁଁ ସେ ହିଁ ଏବଂ ସେ ହିଁ ମୁଁ । 'ମୁଁ' ବ୍ୟତୀତ ଅନ୍ୟ କୌଣସି ଈଶ୍ୱର କେବେ ନ ଥିଲେ ଏବଂ ଏହି କ୍ଷୁଦ୍ର 'ମୁଁ'ର ଅସ୍ତିତ୍ୱ ମଧ୍ୟ କୌଣସି ଦିନ ନ ଥିଲା ।

ତାହା ସତ୍ତ୍ୱେ ମଧ୍ୟ ସେହି ପୂର୍ଣ୍ଣ ନିର୍ଦ୍ଦୋଷ ଈଶ୍ୱର କିପରି ମୋହଗ୍ରସ୍ତ ହେଲେ ? ସେ କଦାପି ମୋହଗ୍ରସ୍ତ ହୋଇ ନାହାନ୍ତି । ପୂର୍ଣ୍ଣ ନିର୍ଦ୍ଦୋଷ ଈଶ୍ୱର କିପରି ସ୍ୱପ୍ନ ଦେଖିପାରନ୍ତି ? ସେ କଦାପି ସ୍ୱପ୍ନ ଦେଖନ୍ତି ନାହିଁ । ସତ୍ୟ କଦାପି ସ୍ୱପ୍ନ ଦେଖେ ନାହିଁ । 'କେଉଁଠାରୁ ଏହି ମିଥ୍ୟା ମୋହର ଉତ୍ପତ୍ତି ହେଲା ?'—ଏହି ପ୍ରଶ୍ନଟି ଅଯୌକ୍ତିକ । ମୋହରୁ ହିଁ ମୋହର ଉତ୍ପତ୍ତି । ସତ୍ୟ-ଦର୍ଶନ ହେଲେ ହିଁ ମିଥ୍ୟା ମୋହର ବିଲୟ ଘଟେ । ମୋହର ଭିତ୍ତିରେ ହିଁ ମୋହର ସ୍ଥିତି—ଈଶ୍ୱରଙ୍କର, ସତ୍ୟର ଅଥବା ଆତ୍ମାର ଭିତ୍ତିରେ ନୁହେଁ । ତୁମେ କେବେହେଲେ ମୋହରେ ବିରାଜ କରୁନାହିଁ, ମୋହ ହିଁ ତୁମ ମଧ୍ୟରେ ଥାଏ । ଖଣ୍ଡେ ମେଘ ଭାସୁଅଛି । ଅନ୍ୟ ଖଣ୍ଡେ ମେଘ ଆସି ତାକୁ ଘୁଞ୍ଚାଇ ଦେଇ ନିଜେ ତାହାର ସ୍ଥାନ ଅଧିକାର କରେ, ତାହା ପରେ ଅନ୍ୟ ଖଣ୍ଡେ ମେଘ ଆସି ତାକୁ ମଧ୍ୟ ଘୁଞ୍ଚାଇ ଦେଇ ତାହାର ସ୍ଥାନ ଅଧିକାର କରେ । ଯେପରି ଶାଶ୍ୱତ ନୀଳ ଆକାଶରେ ନାନା ବର୍ଣ୍ଣର ମେଘ ଆସେ, ଅଳ୍ପ କ୍ଷଣ ପାଇଁ ରହେ, ତାହା ପରେ ଚାଲିଯାଏ, ଆକାଶ ପୂର୍ବଭଳି ନୀଳ ଥାଏ, ସେହିପରି ତୁମେମାନେ ମଧ୍ୟ ଚିରକାଳ ଶୁଦ୍ଧ, ଚିରକାଳ ପୂର୍ଣ୍ଣ । ତୁମେମାନେ ହିଁ ପୃଥିବୀର ପ୍ରକୃତ ଦେବତା; କୌଣସି କାଳରେ ଦୁଇ ନ ଥିଲା—କେବଳ 'ଏକ' ହିଁ ସର୍ବଦା ଅଛନ୍ତି । 'ତୁମେ ଓ ମୁଁ'—ଏପରି କହିବା ତ ଭୁଲ, କହ 'ମୁଁ' । 'ମୁଁ' ହିଁ ଲକ୍ଷ ଲକ୍ଷ ମୁହଁରେ ଖାଉଅଛି; ମୁଁ କିପରି କ୍ଷୁଧାର୍ତ୍ତ ହୋଇପାରେ ? 'ମୁଁ' ହିଁ ଅସଂଖ୍ୟ

ହାତରେ କାର୍ଯ୍ୟ କରୁଅଛି; ମୁଁ କିପରି ନିଷ୍କ୍ରିୟ ହୋଇପାରେ ? 'ମୁଁ' ହିଁ ସମଗ୍ର ବିଶ୍ୱର ଜୀବନଯାପନ କରୁଅଛି, ମୋର ମୃତ୍ୟୁ କେଉଁଠି ? ମୁଁ ସମସ୍ତ ଜୀବନ-ମୃତ୍ୟୁର ଊର୍ଦ୍ଧ୍ୱରେ । ମୁଁ କେଉଁଠି ମୁକ୍ତି ଅନ୍ୱେଷଣ କରିବି ? କାରଣ ମୁଁ ସ୍ୱଭାବତଃ ଚିରମୁକ୍ତ । ଜଗତର ଈଶ୍ୱର ମୋତେ କିଏ ବନ୍ଧନ କରିପାରେ ? ପୃଥିବୀର ଶାସ୍ତ୍ର-ସମୂହ କେବଳ କ୍ଷୁଦ୍ର ମାନଚିତ୍ର ଭଳି—ଯେଉଁ 'ମୁଁ' ବିଶ୍ୱର ଏକମାତ୍ର ସତ୍ତା, ତାହାର ମହିମା ଏମାନେ ବର୍ଣ୍ଣନା କରିବା ପାଇଁ ପ୍ରୟାସୀ । ସୁତରାଂ ଏହିସବୁ ଗ୍ରନ୍ଥର ମୂଲ୍ୟ ମୋ ନିକଟରେ ଆଉ କଅଣ ?—ଅଦ୍ୱୈତବାଦୀ ଏହିପରି କହନ୍ତି ।

'ସତ୍ୟକୁ ଜାଣ ଏବଂ ନିମିଷକରେ ମୁକ୍ତ ହୋଇଯାଅ', ସେତେବେଳେ ସବୁ ଅନ୍ଧକାର ଦୂରୀଭୂତ ହୋଇଯିବ । ଯେତେବେଳେ ମନୁଷ୍ୟ ନିଜକୁ ବିଶ୍ୱର ଅନନ୍ତ ଅସୀମ ସତ୍ତା ସହିତ ଏକ ବୋଲି ଉପଲବ୍ଧି କରେ, ସେତେବେଳେ ସମସ୍ତ ଭେଦ ଦୂରୀଭୂତ ହୁଏ । ଯେତେବେଳେ ସମସ୍ତ ନରନାରୀ, ସମସ୍ତ ଦେବତା—ଦେବଦୂତ, ସମସ୍ତ ପଶୁପକ୍ଷୀ, ବୃକ୍ଷଲତା ଏବଂ ସମଗ୍ର ବିଶ୍ୱ ବ୍ରହ୍ମାଣ୍ଡ ସେହି ଏକତ୍ୱରେ ଦ୍ରବୀଭୂତ ହୋଇଯାଏ—ସେତେବେଳେ ସମସ୍ତ ଭୟ ମଧ୍ୟ ଦୂର ହୋଇଯାଏ । ମୁଁ କଅଣ ନିଜକୁ ଆଘାତ କରିପାରେ ? ମୁଁ କ'ଣ ନିଜକୁ ହତ୍ୟା କରିପାରେ ? ମୁଁ କ'ଣ ନିଜକୁ ଆହତ କରିପାରେ ? କାହାକୁ ଭୟ କରିବ ? ତୁମେ କଅଣ କେବେ ନିଜକୁ ଭୟ କରିପାର ? ସେତେବେଳେ ସମସ୍ତ ଦୁଃଖ ଦୂର ହୋଇଯିବ । ମୋ ଦୁଃଖର କାରଣ କଅଣ ହୋଇପାରେ ? 'ମୁଁ' ତ ପୃଥିବୀର ଏକମାତ୍ର ସତ୍ତା । ସେତେ-ବେଳେ ସବୁ ଈର୍ଷା ଦୂର ହୋଇଯିବ । କାହାକୁ ମୁଁ ଈର୍ଷା କରିବ ? ନିଜକୁ ? ସେତେବେଳେ ସବୁ ମନ୍ଦ ଭାବ ଦୂର ହୋଇଯିବ । କାହା ବିରୋଧରେ ମୋର ମନ୍ଦ ଭାବ ? ନିଜ ବିରୋଧରେ ? ପୃଥିବୀରେ 'ମୋ' ଛଡ଼ା ଆଉ କେହି ନାହାନ୍ତି । ଅଦ୍ୱୈତ-ବାଦୀ କହନ୍ତି ଯେ, ଏହା ହିଁ ହେଲା ଜ୍ଞାନର ଏକମାତ୍ର ପନ୍ଥା । ଜଗତରେ ଯେ ବହୁ ଅଛି—ସେହି ଭେଦ, ସେହି କୁସଂସ୍କାର ଧ୍ୱଂସ କରିପକାଅ । 'ଏହି ବହୁ ବସ୍ତୁପୂର୍ଣ୍ଣ ଜଗତରେ ସେହି ଏକକୁ ଯିଏ ଦର୍ଶନ କରନ୍ତି—ଏହି ଜଡ଼ ଜଗତ ମଧ୍ୟରେ ସେହି ଚେତନ ସତ୍ତାକୁ ଯିଏ ଦର୍ଶନ କରନ୍ତି, ଏହି ଛାୟାମୟ ପୃଥିବୀରେ ସେହି ସତ୍ୟକୁ ଯିଏ ଧାରଣ କରନ୍ତି, ସେ ହିଁ ଶାଶ୍ୱତ ଶାନ୍ତିଲାଭ କରନ୍ତି, ଅନ୍ୟ କେହି ନୁହେଁ, ଅନ୍ୟ କେହି ନୁହେଁ ।' (କଠ ଉପ., ୨।୨।୧୩)

ଈଶ୍ୱର ସମ୍ବନ୍ଧରେ ଭାରତୀୟର ଆଧ୍ୟାତ୍ମିକ ଚିନ୍ତାଧାରାରେ ଯେଉଁ ତିନୋଟି ସ୍ତର ଅଛି, ଏଗୁଡ଼ିକ ତାହାର ମୂଳସୂତ୍ର । ଆମେମାନେ ଦେଖିଅଛୁ, ଏହାର ଆରମ୍ଭ ହୋଇଅଛି 'ଜଗଦ୍‌ବହିର୍ଭୂତ ବ୍ୟକ୍ତିଭାବାପନ୍ନ ଈଶ୍ୱରଙ୍କର' ମତବାଦ ନେଇ । ତାହା ପରେ ବାହାରୁ ଭିତରକୁ ଯାଇ ଏହା 'ଜଗତର ଅନ୍ତର୍ଯ୍ୟାମୀ ଈଶ୍ୱର' ମତବାଦରେ ସ୍ଥିତି ଲାଭ କରେ । ପରିଶେଷରେ ଜୀବାତ୍ମା ଓ ପରମାତ୍ମାକୁ ଏକ ଓ

ଅଭିନ୍ନ ପ୍ରତିପନ୍ନ କରି ଏବଂ ଉକ୍ତ ଆତ୍ମାକୁ ପୃଥିବୀର ବହୁରୂପ ପ୍ରକାଶର ଭିତ୍ତି ନିର୍ଦ୍ଦେଶ କରି ଏହି ଆଧ୍ୟାତ୍ମିକ ଚିନ୍ତା ଶେଷ ହୋଇଅଛି । ଏହା ହିଁ ବେଦର ଚରମ ଓ ପରମ କଥା । ଏହା ଦ୍ୱୈତବାଦରୁ ଆରମ୍ଭ ହୁଏ, ବିଶିଷ୍ଟାଦ୍ୱୈତବାଦ ମଧ୍ୟ ଦେଇ ଅଗ୍ରସର ହୁଏ ଏବଂ ପୂର୍ଣ୍ଣ ଅଦ୍ୱୈତବାଦରେ ସମାପ୍ତ ହୁଏ । ଆମେମାନେ ଜାଣୁ, ପୃଥିବୀରେ ଅଳ୍ପସଂଖ୍ୟକ ବ୍ୟକ୍ତି ହିଁ ଏହି ଶେଷ ଅବସ୍ଥା ପର୍ଯ୍ୟନ୍ତ ଯାଇପାରନ୍ତି, ଏପରିକି ଏହାକୁ ବିଶ୍ୱାସ କରିପାରନ୍ତି ଏବଂ ତାହା ଅପେକ୍ଷା ଅଳ୍ପ ବ୍ୟକ୍ତି ଏହି ଭାବ ଅନୁସାରେ କାର୍ଯ୍ୟ କରିପାରନ୍ତି । ତାହା ସତ୍ତ୍ୱେ ଆମେମାନେ ଏହା ଜାଣୁ ଯେ, ଏହାରି ମଧ୍ୟରେ ଅଛି ବିଶ୍ୱର ସମସ୍ତ ନୀତି-ତତ୍ତ୍ୱ, ସମସ୍ତ ନୈତିକ ଓ ଆଧ୍ୟାତ୍ମିକ ତତ୍ତ୍ୱର ପୂର୍ଣ୍ଣ ବ୍ୟାଖ୍ୟା । 'ଅନ୍ୟର ମଙ୍ଗଳ ସାଧନ କର'—ଏହା ସମସ୍ତେ କହନ୍ତି; କିନ୍ତୁ କାହିଁକି ? ଏହାର ବ୍ୟାଖ୍ୟା କଅଣ ? କାହିଁକି ସକଳ ମହତ୍ ବ୍ୟକ୍ତି ସମଗ୍ର ମାନବ ଜାତିର ଏବଂ ମହତ୍ତର ବ୍ୟକ୍ତିଗଣ ସକଳ ପ୍ରାଣୀଜଗତର ଭ୍ରାତୃତ୍ୱର ବିଷୟ କହିଅଛନ୍ତି ? କାରଣ, ସେମାନେ ନ ଜାଣିଲେ ମଧ୍ୟ ଏହି ସମସ୍ତର ପଶ୍ଚାତ୍ତରେ, ସେମାନଙ୍କର ସକଳ ଅଯୌକ୍ତିକ ଏବଂ ବ୍ୟକ୍ତିଗତ କୁସଂସ୍କାର ମଧ୍ୟରେ ବି ବହୁତ୍ୱବିରୋଧୀ ସେହି ଆତ୍ମାର ଶାଶ୍ୱତ ଆଲୋକ ହିଁ ଅଳ୍ପ ଅଳ୍ପ ଆସୁଥିଲା ଏବଂ ଦୃଢ଼ଭାବରେ ପ୍ରମାଣ କରୁଥିଲା—ସମଗ୍ର ବିଶ୍ୱ ହିଁ ଏକ ।

ଜ୍ଞାନର ଚରମ କଥା ! ଏକ ଅଖଣ୍ଡ ବିଶ୍ୱ—ଯାହା ଇନ୍ଦ୍ରିୟ ମଧ୍ୟଦେଇ ଜଡ଼ରୂପରେ, ବୁଦ୍ଧି ମଧ୍ୟଦେଇ ଜୀବରୂପରେ, ଆତ୍ମା ମଧ୍ୟଦେଇ ଈଶ୍ୱରରୂପରେ ପ୍ରତିଭାତ ହୁଏ । ପୃଥିବୀରେ ଯାହାକୁ ପାପ ବା ଅନ୍ୟାୟ କୁହାଯାଏ, ତାହାର ଆବରଣରେ ଯିଏ ନିଜକୁ ଆବୃତ କରି ରଖେ, ତାହା ନିକଟରେ ଏହି ଜଗତ ପରିବର୍ତ୍ତିତ ହୋଇଯାଏ ଏବଂ କୁତ୍ସିତ ଆକାର ଧାରଣ କରେ । ଜଣେ ଭୋଗସୁଖକାମୀ ନିକଟରେ ଏହି ପୃଥିବୀ ପରିବର୍ତ୍ତିତ ହୋଇ ସ୍ୱର୍ଗର ଆକାର ଧାରଣ କରେ ଏବଂ ପୂର୍ଣ୍ଣ ମାନବ ନିକଟରେ ସମସ୍ତ ତିରୋହିତ ହୋଇଯାଏ ଏବଂ ସବୁକିଛି ତାହାର ଆତ୍ମା ହୋଇଯାଏ ।

ବସ୍ତୁତଃ ସମାଜର ବର୍ତ୍ତମାନ ଅବସ୍ଥାରେ ପୂର୍ବୋକ୍ତ ସବୁ ସ୍ତରର ହିଁ ପ୍ରୟୋଜନୀୟତା ଅଛି । ଗୋଟିଏ ସ୍ତର ଅନ୍ୟ ସ୍ତରକୁ ମିଥ୍ୟା ବୋଲି ପ୍ରମାଣ କରେ ନାହିଁ; ଗୋଟିଏ ସ୍ତର ଅନ୍ୟ ସ୍ତରର ପୂର୍ଣ୍ଣତର ରୂପ ମାତ୍ର । ଅଦ୍ୱୈତବାଦୀ ଅଥବା ବିଶିଷ୍ଟାଦ୍ୱୈତବାଦୀ ଏ କଥା କହନ୍ତି ନାହିଁ ଯେ, ଦ୍ୱୈତବାଦ ଭ୍ରମାତ୍ମକ । ଏହା ମଧ୍ୟ ସତ୍ୟ, କିନ୍ତୁ ନିମ୍ନ ସ୍ତରର ସତ୍ୟ; ଏହା ମଧ୍ୟ ପୂର୍ଣ୍ଣ ସତ୍ୟ ଦିଗରେ ଅଗ୍ରସର ହେଉଅଛି । ସୁତରାଂ ପ୍ରତ୍ୟେକକୁ ହିଁ ତାହାର ନିଜର ଜ୍ଞାନବୁଦ୍ଧି ଅନୁସାରେ ଜଗତ ସମ୍ବନ୍ଧରେ ଧାରଣା ପୋଷଣ କରିବାକୁ ଦିଅ; କାହାରିକୁ ଆଘାତ କର ନାହିଁ, କାହାରି ମତାମତକୁ ପ୍ରତ୍ୟାଖ୍ୟାନ କର ନାହିଁ । ପ୍ରତ୍ୟେକ ମନୁଷ୍ୟକୁ ତାର ନିଜ

ସ୍ଥାନରେ ଗ୍ରହଣ କର ଏବଂ ଯଦି ପାର, ତାହାକୁ ସାହାଯ୍ୟ କରିବା ପାଇଁ ହସ୍ତ ପ୍ରସାରିତ କରିଦିଅ । ତାହାକୁ ଉଚ୍ଚତର ସ୍ତରକୁ ଉନ୍ନୀତ କର, କିନ୍ତୁ ତାହାକୁ ଆଘାତ କର ନାହିଁ, ଧ୍ୱଂସ କର ନାହିଁ । ପରିଶେଷରେ ସମସ୍ତେ ହିଁ ସତ୍ୟରେ ଉପନୀତ ହେବେ । 'ଯେତେବେଳେ ହୃଦୟର ସମସ୍ତ କାମନା ପରାଭୂତ ହେବ, ସେତେବେଳେ ମର୍ତ୍ତ୍ୟ ଜୀବ ଅମୃତତ୍ୱର ଅଧିକାରୀ ହେବ'*—ସେତେବେଳେ ଜୀବ ସ୍ୱୟଂ ଈଶ୍ୱର ହୋଇଯିବ ।

* କଠ ଉପ., ୨।୩।୧୦

# ଆତ୍ମା : ତାହାର ବନ୍ଧନ ଓ ମୁକ୍ତି

[ ଆମେରିକାରେ ପ୍ରଦତ୍ତ ବକ୍ତୃତା ]

ଅଦ୍ୱୈତବାଦୀଙ୍କ ମତରେ ଜଗତରେ ସତ୍ୟ ବସ୍ତୁ ଗୋଟିଏ ମାତ୍ର ଅଛି, ଯାହାଙ୍କୁ ବ୍ରହ୍ମ କୁହାଯାଏ । ଅନ୍ୟାନ୍ୟ ସକଳ ବସ୍ତୁ ହିଁ ମିଥ୍ୟା—ବ୍ରହ୍ମରୁ ମାୟା-ଶକ୍ତି-ଦ୍ୱାରା ଉଦ୍ଭାବିତ । ଆମମାନଙ୍କର ଉଦ୍ଦେଶ୍ୟ ହେଲା ପୁନରାୟ ସେହି ବ୍ରହ୍ମଭାବକୁ ଫେରିଯିବା । ଆମେମାନେ ପ୍ରତ୍ୟେକେ ସେହି ବ୍ରହ୍ମ, ସେହି ସତ୍ୟ, କିନ୍ତୁ ମାୟାସମନ୍ୱିତ । ଯଦି ଏହି ମାୟା ବା ଅଜ୍ଞାନରୁ ମୁକ୍ତି ଲାଭ କରିପାରୁ, ତାହା-ହେଲେ ଆମେମାନେ ପ୍ରକୃତ ପକ୍ଷରେ ଯାହା, ତାହା ହିଁ ହେବୁ । ଏହି ଦର୍ଶନ ଅନୁସାରେ ପ୍ରତ୍ୟେକ ମନୁଷ୍ୟର ତିନୋଟି ଅଂଶ ଅଛି—ଦେହ, ଅନ୍ତଃକରଣ ବା ମନ ଏବଂ ମନ ପଶ୍ଚାତ୍ତରେ ଆତ୍ମା । ଦେହ ଆତ୍ମାର ବାହାରର ଏବଂ ମନ ଆତ୍ମାର ଭିତରର ଆବରଣ । ଏହି ଆତ୍ମା ହିଁ ପ୍ରକୃତ ଜ୍ଞାତା ପ୍ରକୃତ ଭୋକ୍ତା; ଏହି ଆତ୍ମା ହିଁ ଅନ୍ତଃକରଣ ବା ମନ ସାହାଯ୍ୟରେ ଦେହକୁ ପରିଚାଳିତ କରୁଅଛି ।

ଜଡ଼ ଦେହ ମଧ୍ୟରେ ଏକମାତ୍ର ଆତ୍ମା ହିଁ ଜଡ଼ ନୁହେଁ । ଆତ୍ମା ଜଡ଼ ନୁହେଁ, ଅତଏବ ଆତ୍ମା ଯୌଗିକ ବସ୍ତୁ ହୋଇପାରେ ନାହିଁ ଏବଂ ଯୌଗିକ ପଦାର୍ଥ ନୁହେଁ ବୋଲି ଆତ୍ମା ପ୍ରାକୃତିକ କାର୍ଯ୍ୟ-କାରଣ ନିୟମର ଅଧୀନ ମଧ୍ୟ ନୁହେଁ, ସେଥିପାଇଁ ଆତ୍ମା ଅମର । ଯାହା ଅମର ତାହା ଅନାଦି; କାରଣ ଯାହାର ଆଦି ଅଛି, ତାହାର ଅନ୍ତ ଅଛି । ଏଥିରୁ ପ୍ରମାଣିତ ହୁଏ ଯେ, ଆତ୍ମା ନିରାକାର; ଜଡ଼ ଛଡ଼ା ଆକାର ରହିପାରେ ନାହିଁ, ସକଳ ସାକାର ବସ୍ତୁର ହିଁ ଆଦି-ଅନ୍ତ ଅଛି । ଆମେମାନେ କେହିହେଲେ ଏପରି ସାକାର ବସ୍ତୁ ଦେଖିନାହୁଁ, ଯାହାର ଆଦି ଓ ଅନ୍ତ ନାହିଁ । ଶକ୍ତି ଓ ଜଡ଼ର ସମନ୍ୱୟରେ ଆକାରର ଉଦ୍ଭବ ହୁଏ । ଏହି 'ଚୌକିଟିର' ଗୋଟିଏ ବିଶେଷ ଆକାର ଅଛି; ଏହାର ଅର୍ଥ ଏହି ଯେ, କିଛି ପରିମାଣ ଜଡ଼ ଉପରେ କିଛି ପରିମାଣ ଶକ୍ତି କାର୍ଯ୍ୟ କରି ଏହି ଜଡ଼କୁ ଗୋଟିଏ ବିଶେଷ ଆକାର ଧାରଣ କରାଇ ଅଛି । ଆକାର ଜଡ଼ ଓ ଶକ୍ତିର ସଂଯୋଗରୁ ସମ୍ଭୂତ । ଏହି ସଂଯୋଗ ଶାଶ୍ୱତ ହୋଇପାରେ ନାହିଁ, ଏପରି ସଂଯୋଗ କାଳକ୍ରମେ ଭାଙ୍ଗିଯାଏ । ଏହି କାରଣରୁ ସକଳ ଆକାର ହିଁ ଆଦି ଏବଂ ଅନ୍ତ-ବିଶିଷ୍ଟ । ଆମେମାନେ ଜାଣୁ, ଆମମାନଙ୍କର ଦେହ ବିନଷ୍ଟ ହେବ; ଏହାର ଆରମ୍ଭ ବା ଆଦି ଥିଲା, ଦିନେ ଶେଷ ହେବ । କିନ୍ତୁ ଆକାର ନାହିଁ ବୋଲି ଆତ୍ମା ଏହି ଆଦି-ଅନ୍ତର ନିୟମାଧୀନ ନୁହେଁ । ଆତ୍ମା ଅନାଦି କାଳରୁ ଅଛି; କାଳ ଯେପରି ଶାଶ୍ୱତ, ମାନବ-ଆତ୍ମା ସେହିପରି ଶାଶ୍ୱତ । ଦ୍ୱିତୀୟତଃ ଆତ୍ମା ସର୍ବବ୍ୟାପୀ । କେବଳ ସାକାର ବସ୍ତୁ ହିଁ ସ୍ଥାନକାଳଦ୍ୱାରା

ନିୟନ୍ତ୍ରିତ ଏବଂ ସୀମିତ; ଯାହା ନିରାକାର, ତାହା ସ୍ଥାନକାଳଦ୍ୱାରା ସୀମାବଦ୍ଧ ହୋଇପାରେ ନାହିଁ । ସୁତରାଂ ଅଦ୍ୱୈତ ବେଦାନ୍ତ ମତରେ—ମୋର, ତୁମର, ସମସ୍ତଙ୍କ ମଧ୍ୟରେ ଆତ୍ମା ସର୍ବବ୍ୟାପୀ । ତୁମେ ବର୍ତ୍ତମାନ ଯେପରି ପୃଥିବୀରେ ଅଛ, ସେହିପରି ସୂର୍ଯ୍ୟରେ ମଧ୍ୟ ଅଛ; ଯେପରି ଆମେରିକାରେ ଅଛ, ସେହିପରି ଇଂଲଣ୍ଡରେ ମଧ୍ୟ ଅଛ । କିନ୍ତୁ ଆତ୍ମା ଦେହ ମନ ମାଧ୍ୟମରେ ହିଁ କାର୍ଯ୍ୟ କରେ ଏବଂ ଯେଉଁଠାରେ ଦେହମନ ଅଛି, ସେଠାରେ ତାହାର କାର୍ଯ୍ୟ ମଧ୍ୟ ଦୃଷ୍ଟ ହୁଏ ।

ଆମମାନଙ୍କର ପ୍ରତ୍ୟେକ କାର୍ଯ୍ୟ, ପ୍ରତ୍ୟେକ ଚିନ୍ତା ମନ ଉପରେ ଗୋଟିଏ ଛାପ ରଖିଥାଏ, ଏଗୁଡ଼ିକୁ ସଂସ୍କୃତ ଭାଷାରେ କୁହାଯାଏ 'ସଂସ୍କାର'; ଏବଂ ଏହିସବୁ ସଂସ୍କାର ମିଳିତ ହୋଇ ଗୋଟିଏ ପ୍ରଚଣ୍ଡ ଶକ୍ତି ସୃଷ୍ଟି କରେ, ଯାହାକୁ କୁହାଯାଏ 'ଚରିତ୍ର' । ମନୁଷ୍ୟର ଚରିତ୍ର ମନୁଷ୍ୟ ନିଜେ ହିଁ ସୃଷ୍ଟି କରେ; ଚରିତ୍ର ତାହାର ନିଜର ମାନସିକ ଏବଂ ଦୈହିକ କାର୍ଯ୍ୟାବଳୀର ଫଳମାତ୍ର । ସଂସ୍କାରସମୂହର ସମଷ୍ଟି ହିଁ ହେଲା ସେହି ଶକ୍ତି, ଯାହା ମୃତ୍ୟୁ ପରେ ମନୁଷ୍ୟର ନୂତନ ଦିଗ ନିର୍ଦ୍ଧାରଣ କରେ । ଜଣେ ମନୁଷ୍ୟର ମୃତ୍ୟୁ ହୁଏ, ତାହାର ଦେହପାତ ହୁଏ ଏବଂ ସେହି ଦେହ ପଞ୍ଚଭୂତରେ ବିଲୀନ ହୋଇଯାଏ; କିନ୍ତୁ ସଂସ୍କାରସମୂହ ମନ ଭିତରେ ରହିଯାଏ । ଏହି ମନ ସୂକ୍ଷ୍ମତର ଜଡ଼ବସ୍ତୁ ବୋଲି ବିଲୀନ ହୁଏ ନାହିଁ, କାରଣ ବସ୍ତୁ ଯେତେ ସୂକ୍ଷ୍ମ ହୁଏ, ସେତେ ସ୍ଥାୟୀ ହୁଏ । କିନ୍ତୁ ପରିଶେଷରେ ମନର ମଧ୍ୟ ଲୟ ହୁଏ ଏବଂ ଏହାରି ପାଇଁ ଆମେମାନେ ଚେଷ୍ଟା କରୁଅଛୁ । ଏହି ପ୍ରସଙ୍ଗରେ ଘୂର୍ଣ୍ଣିବାୟୁ ବିଷୟରେ ଗୋଟିଏ ସର୍ବୋତ୍କୃଷ୍ଟ ଉଦାହରଣ କଥା ମୋର ମନେ ପଡ଼ୁଛି । ବିଭିନ୍ନ ଦିଗରୁ ବିଭିନ୍ନ ବାୟୁପ୍ରବାହ ଆସି ଏକ ସ୍ଥାନରେ ସମବେତ ହୁଏ ଏବଂ ଘୂରିବାକୁ ଆରମ୍ଭ କରେ । ଘୂରି ଘୂରି ତାହା ସମୀପସ୍ଥ କାଗଜ, କୁଟା ପ୍ରଭୃତିକୁ ଟାଣିନେଇ ଏକ ସ୍ଥାନରେ ଧୂଳିମୟ ଆକାର ଧାରଣ କରେ; ତାହାକୁ ପୁଣି ଫିଙ୍ଗିଦେଇ, ଅନ୍ୟ ସ୍ଥାନକୁ ଯାଇ ଅନ୍ୟ ଆକାରରେ ଘୂରେ; ଏପରି ଭାବରେ ସମ୍ମୁଖରେ ଯାହା ଅଛି, ତାକୁ ଆକର୍ଷଣ କରି ବାରମ୍ବାର ବିଭିନ୍ନ ଆକାର ଧାରଣ କରେ । ସଂସ୍କୃତରେ ଯାହାକୁ 'ପ୍ରାଣ-ଶକ୍ତି' କୁହାଯାଏ, ତାହା ମଧ୍ୟ ଏହି ଭାବରେ ଏକତ୍ର ହୋଇ ଜଡ଼ ପଦାର୍ଥରୁ ଦେହ ଓ ମନ ସୃଷ୍ଟି କରେ; ଏହି ଦେହର ପତନ ନ ହେବା ଯାଏଁ ସେ ସକ୍ରିୟ ଭାବରେ କାର୍ଯ୍ୟ କରୁଥାଏ । ଏହି ଦେହର ନାଶ ପରେ ପ୍ରାଣଶକ୍ତି ନୂତନ ଉପାଦାନରୁ ଅନ୍ୟ ଗୋଟିଏ ଦେହ ସୃଷ୍ଟି କରେ, ସେହି ଦେହର ବିନାଶ ପରେ ପୁଣି ଅନ୍ୟ ଗୋଟିଏ ଦେହ ସୃଷ୍ଟି କରେ—ଏହି ଭାବରେ ଏହି ପ୍ରକ୍ରିୟା ଚାଲୁଥାଏ । ଜଡ଼ ପଦାର୍ଥ ବିନା ଶକ୍ତି ଅଚଳ । ସେଥିପାଇଁ ଦେହପାତ ପରେ ମଧ୍ୟ ମନର ଉପାଦାନ ଥାଏ । ପ୍ରାଣ ସଂସ୍କାରରୂପରେ ମନ ଉପରେ କାର୍ଯ୍ୟ କରେ; ଏବଂ ମନ ସେତେବେଳେ ଅନ୍ୟ ସ୍ଥାନକୁ ଯାଇ ନୂତନ ଉପାଦାନରୁ ଅନ୍ୟ ଗୋଟିଏ ଘୂର୍ଣ୍ଣିର ସୃଷ୍ଟି କରେ ଏବଂ ନୂତନ ଯାତ୍ରା ଆରମ୍ଭ କରେ; ଏହି ଭାବରେ ମନ ଗତିର ସମାପ୍ତି ପର୍ଯ୍ୟନ୍ତ ଏକ

ସ୍ଥାନରୁ ଅନ୍ୟ ସ୍ଥାନକୁ ପରିଭ୍ରମଣ କରେ, ପରେ ରହିଯାଏ, ଏହାର ଗତିବେଗ ସମାପ୍ତ ହୁଏ । ଏହି ଭାବରେ ଯେତେବେଳେ ମନର ନାଶ ହେବ, କୌଣସି ସଂସ୍କାର ନ ରଖି ମନ ଏକାବେଳକେ ଚୂର୍ଣ୍ଣ ବିଚୂର୍ଣ୍ଣ ହୋଇଯିବ, ସେତେବେଳେ ଆମେମାନେ ସମ୍ପୂର୍ଣ୍ଣରୂପେ ମୁକ୍ତ ହେବୁ; କିନ୍ତୁ ସେପର୍ଯ୍ୟନ୍ତ ଆମେମାନେ ବନ୍ଧନ ଭିତରେ ଥିବୁ । ମନର ଘୂର୍ଣ୍ଣିରେ ସମାଚ୍ଛନ୍ନ ହୋଇ ଆତ୍ମା କଳ୍ପନା କରୁଥିବ, ମୁଁ ସ୍ଥାନରୁ ସ୍ଥାନାନ୍ତରକୁ ନିଆ ଯାଉଅଛି । ଯେତେବେଳେ ଏହି ଘୂର୍ଣ୍ଣି ବା ଆବର୍ତ୍ତ ଚାଲିଯିବ, ସେତେବେଳେ ଆତ୍ମା ଜାଣିପାରିବ, ସେ ସର୍ବବ୍ୟାପୀ, ସେ ଯେଉଁଠାକୁ ଇଚ୍ଛା ଯାଇପାରେ, ସେ ସମ୍ପୂର୍ଣ୍ଣ ମୁକ୍ତ ଏବଂ ସେ ଯେତେ ଇଚ୍ଛା ସେତେ ଦେହ-ମନ ସୃଷ୍ଟି କରିପାରେ, କିନ୍ତୁ ତାହା ପୂର୍ବରୁ ଆତ୍ମା କେବଳ ଘୂର୍ଣ୍ଣି ସଙ୍ଗେ ସଙ୍ଗେ ହିଁ ଯାଇପାରେ । ଏହି ମୁକ୍ତି ହିଁ ହେଲା ଲକ୍ଷ୍ୟ—ଯେଉଁଠାରେ ପହଞ୍ଚିବା ପାଇଁ ଆମେମାନେ ସମସ୍ତେ ଅଗ୍ରସର ହେଉଅଛୁଁ ।

ମନେକର, ଏହି କକ୍ଷରେ ଗୋଟିଏ 'ପେଣ୍ଡୁ' ଅଛି ଏବଂ ଆମମାନଙ୍କର ପ୍ରତ୍ୟେକଙ୍କ ହାତରେ ଗୋଟିଏ ଲେଖାଏଁ ବାଡ଼ି ଅଛି । ଆମେମାନେ ସେହି ବାଡ଼ିଦ୍ୱାରା ପେଣ୍ଡୁଟିକୁ ଶତବାର ଆଘାତ କରୁଅଛୁ, ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ଠେଲି ଦେବାରେ ଲାଗିଛୁ, ଯେପର୍ଯ୍ୟନ୍ତ ପେଣ୍ଡୁଟି ପ୍ରକୋଷ୍ଠରୁ ବାହାରକୁ ଚାଲି ନ ଯାଇଛି । ତେବେ କେଉଁ ବେଗରେ ଏବଂ କେଉଁ ଦିଗକୁ ପେଣ୍ଡୁଟି ବାହାରକୁ ଯିବ ? କକ୍ଷ ଭିତରେ ଯେଉଁ ଶକ୍ତିସବୁ ଏପର୍ଯ୍ୟନ୍ତ ପେଣ୍ଡୁଟି ଉପରେ କାର୍ଯ୍ୟ କରୁଥିଲେ, ସେହିଗୁଡ଼ିକଦ୍ୱାରା ଏହା ନିରୂପିତ ହେବ । ପେଣ୍ଡୁଟି ଉପରେ ଯେଉଁସବୁ ବିଭିନ୍ନ ଶକ୍ତି ପ୍ରୟୋଗ କରାଯାଇଥିଲା, ସେଗୁଡ଼ିକର ନିଜସ୍ୱ ଫଳ ମିଳିବ । ଆମମାନଙ୍କର ପ୍ରତ୍ୟେକ ମାନସିକ ଓ ଦୈହିକ କର୍ମ ହିଁ ଏହିପରି ଗୋଟିଏ ଗୋଟିଏ ଶକ୍ତିର ଆଘାତ । ପେଣ୍ଡୁ ସଦୃଶ ମାନବର ମନକୁ ମଧ୍ୟ ସେହିପରି ଆଘାତ କରାହେଉଅଛି । ପୃଥିବୀର ଏହି ପ୍ରକୋଷ୍ଠ ମଧ୍ୟରେ ଆମେ-ମାନେ ସର୍ବଦା ହିଁ ଏହି ଭାବରେ ଆଘାତପ୍ରାପ୍ତ ହେଉଅଛୁ ଏବଂ ଏଠାରୁ ଆମମାନ-ଙ୍କର ନିଷ୍କ୍ରମଣ ଏହିସବୁ ଆଘାତର ଶକ୍ତି ଉପରେ ନିର୍ଭର କରୁଅଛି । ପ୍ରତ୍ୟେକ କ୍ଷେତ୍ରରେ ପେଣ୍ଡୁଟିର ଗତିର ବେଗ ଓ ଦିଗ ଏହି ଆଘାତଗୁଡ଼ିକଦ୍ୱାରା ହିଁ ନିରୂପିତ ହୁଏ; ସେହିପରି ଆମମାନଙ୍କର ଏହି ଜନ୍ମର କର୍ମସମୂହ ଆମମାନଙ୍କର ଭବିଷ୍ୟତ ଜୀବନ ସ୍ଥିର କରିବ, ଆମମାନଙ୍କର ବର୍ତ୍ତମାନ ଜନ୍ମ ଆମମାନଙ୍କର ଅତୀତ କର୍ମର ଫଳ । ଗୋଟିଏ ଦୃଷ୍ଟାନ୍ତ : ମନେକର, ମୁଁ ତୁମକୁ ଗୋଟିଏ ଅନନ୍ତ ସୀମାହୀନ ଶୃଙ୍ଖଳ ଦେଲି—ତାହାର କଡ଼ାଗୁଡ଼ିକ ପର୍ଯ୍ୟାୟକ୍ରମେ ଗୋଟିଏ କଳା, ଗୋଟିଏ ଧଳା; ଏହାର ଆରମ୍ଭ ନାହିଁ, ଶେଷ ମଧ୍ୟ ନାହିଁ । ମନେକର, ମୁଁ ତୁମକୁ ସେହି ଶୃଙ୍ଖଳଟିର ସ୍ୱରୂପ ସମ୍ବନ୍ଧରେ ପ୍ରଶ୍ନ କଲି । ଶୃଙ୍ଖଳଟି ଉଭୟ ଦିଗରୁ ଅନନ୍ତ ଅସୀମ ବୋଲି ଏହାର ଆରମ୍ଭ ଏବଂ ଶେଷ ସ୍ଥିର କରିବା ତୁମ ପକ୍ଷରେ କଷ୍ଟକର ହେବ; କିନ୍ତୁ କ୍ରମେ ଜାଣିପାରିବ—ଏହା ଗୋଟିଏ ଶୃଙ୍ଖଳ । ଶୀଘ୍ର ହିଁ ତୁମେ ଆବିଷ୍କାର

କରିବ ଯେ ଏହି ଅନନ୍ତ ଶୃଙ୍ଖଳଟି ଧଳା ଓ କଳା ରଙ୍ଗର ଦୁଇ ପ୍ରକାର ଅଂଶର ପୁନରାବୃତ୍ତି ମାତ୍ର ଏବଂ ଏହି ଦୁଇଟି ଅଂଶକୁ ଅନନ୍ତ ଗୁଣ କଲେ ସମଗ୍ର ଶୃଙ୍ଖଳଟି ମିଳେ । ଯଦି ତୁମେ ଏହିସବୁ ଅଂଶର ସ୍ୱରୂପ ଜାଣ, ତାହାହେଲେ ତୁମେ ସମଗ୍ର ଶୃଙ୍ଖଳଟିର ମଧ୍ୟ ସ୍ୱରୂପ ଜାଣିବ, ଯେହେତୁ ଏହା ସେହି ଅଂଶସମୂହର ନିରନ୍ତର ପୁନରାବୃତ୍ତି ମାତ୍ର । ସେହିପରି ଭାବରେ ଆମମାନଙ୍କର ସମଗ୍ର ଜୀବନ—ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ—ଯେପରି ଗୋଟିଏ ଅନନ୍ତ ଶୃଙ୍ଖଳ, ଏହାର ଆଦି ନାହିଁ କି ଅନ୍ତ ନାହିଁ; ଏହାର ପ୍ରତ୍ୟେକ ଅଂଶ ଗୋଟିଏ ଗୋଟିଏ ଜୀବନ, ଏବଂ ଏହି ଜୀବନର ଦୁଇଟି ଦିଗ—ଜନ୍ମ ଓ ମୃତ୍ୟୁ । ଏ ଜୀବନରେ ଆମେମାନେ ଯାହା ଏବଂ ଯାହା କରୁ, ସେସବୁର ବାରମ୍ବାର ଅପରିବର୍ତ୍ତିତ ଆକାରରେ ପୁନରାବୃତ୍ତି ହେଉଅଛି । ସୁତରାଂ ଆମେମାନେ ଯଦି ଏହି ଦୁଇଟି ଅଂଶକୁ ଜାଣୁ, ତାହାହେଲେ ଜଗତରେ ଯେଉଁସବୁ ପଥ ଆମମାନଙ୍କୁ ଅତିକ୍ରମ କରିବାକୁ ହେବ, ସେସବୁକୁ ଆମେମାନେ ଜାଣିପାରିବୁ । ଏଣୁ ଆମେ ଦେଖୁଛୁ ଯେ, ବର୍ତ୍ତମାନ ଜୀବନକୁ ଆମର ଆଗମନ ଅତୀତ ଜୀବନର ପଥଦ୍ୱାରା ହିଁ ନିର୍ଦ୍ଧାରିତ ହେଉଅଛି । ଏହିପରି ଆମମାନଙ୍କର ନିଜ ନିଜର କର୍ମାନୁସାରେ ଆମେମାନେ ଏହି ପୃଥିବୀକୁ ଆସିଅଛୁ । ଆମେମାନେ ଯେପରି ନିଜ ନିଜର କର୍ମ-ଫଳଗୁଡ଼ିକ ନେଇ ପୃଥିବୀରୁ ଚାଲିଯାଉ, ସେହିପରି ନିଜ ନିଜର ପ୍ରାକ୍ତନ କର୍ମଫଳ-ଗୁଡ଼ିକ ନେଇ ଏହି ପୃଥିବୀକୁ ଆସୁ; ଯାହା ଆମମାନଙ୍କୁ ପୃଥିବୀରୁ ନେଇଯାଏ, ତାହା ହିଁ ଆମମାନଙ୍କୁ ପୃଥିବୀକୁ ନେଇଆସେ । କେଉଁ ଶକ୍ତି ଆମକୁ ପୃଥିବୀକୁ ନେଇଆସେ ?—ଆମମାନଙ୍କର ପ୍ରାକ୍ତନ କର୍ମ । କିଏ ନେଇଯାଏ ?—ଆମମାନଙ୍କର ନିଜ ନିଜର ଇହଲୋକର କର୍ମସବୁ । ଯେପରି 'ଏଣ୍ଡିପୋକ' ନିଜ ମୁହଁରୁ ତନ୍ତୁ ବାହାର କରି 'ଖୋସା' ନିର୍ମାଣ କରେ ଏବଂ ପରିଶେଷରେ ସେହି ଖୋସା ମଧ୍ୟରେ ନିଜେ ଆବଦ୍ଧ ହୋଇଯାଏ, ସେହିପରି ଆମେମାନେ ମଧ୍ୟ ନିଜ ନିଜର କର୍ମଦ୍ୱାରା ନିଜକୁ ଆବଦ୍ଧ କରିପକାଇଛୁ, ଆମେମାନେ ମଧ୍ୟ ଆମମାନଙ୍କର ଚାରି ଦିଗରେ ନିଜର କର୍ମଜାଲ ବିସ୍ତାର ପକାଇଛୁ । ଆମେମାନେ ହିଁ କାର୍ଯ୍ୟ-କାରଣ-ନିୟମକୁ ଚାଲୁ କରିଅଛୁ ଏବଂ ବର୍ତ୍ତମାନ ତାହାଠାରୁ ପରିତ୍ରାଣ ପାଇବା କଠିନ ବୋଲି ବୋଧ କରୁଅଛୁ । ଆମେ-ମାନେ ହିଁ ସଂସାର-ଚକ୍ରକୁ ଗତିଶୀଳ କରିଅଛୁ ଏବଂ ବର୍ତ୍ତମାନ ସେହି ଚକ୍ର ତଳେ ପେଷି ହେଉଅଛୁ । ସୁତରାଂ ଏହି ଦାର୍ଶନିକ ମତବାଦ ଆମମାନଙ୍କୁ ଏହାହିଁ ଶିକ୍ଷା ଦିଏ ଯେ, ଆମେମାନେ ସମସ୍ତେ ସମଭାବରେ ଆମମାନଙ୍କର ନିଜ ନିଜ କର୍ମ—ପାପ-ପୁଣ୍ୟଦ୍ୱାରା ଆବଦ୍ଧ ହେଉଅଛୁ ।

ଆତ୍ମା କେବେହେଲେ ଚାଲିଯାଏ ନାହିଁ କିମ୍ବା ଆସେ ନାହିଁ; ଜନ୍ମଗ୍ରହଣ କରେ ନାହିଁ କିମ୍ବା ମୃତ୍ୟୁ-ମୁଖରେ ମଧ୍ୟ ପଡ଼େ ନାହିଁ । ଏଗୁଡ଼ିକ ଆତ୍ମାର ସମ୍ମୁଖସ୍ଥ ପ୍ରକୃତିର ହିଁ ଗତି; ଏହି ଗତିର ପ୍ରତିବିମ୍ବ ଆତ୍ମାରେ ପଡ଼େ ଓ ସେଥିରେ ଆତ୍ମା ଅଜ୍ଞାନବଶତଃ ମନେକରେ, ସେ ନିଜେ ଗମନାଗମନ କରୁଅଛି, ପ୍ରକୃତି ନୁହେଁ ।

ଯେତେବେଳେ ଆତ୍ମା ଏହିପରି ମନେକରେ, ସେତେବେଳେ ସେ ବନ୍ଧନ ଅବସ୍ଥାରେ ଥାଏ । କିନ୍ତୁ ,ଯେତେବେଳେ ସେ ଜାଣିପାରେ—ତାହାର ଗତି ନାହିଁ, ସେ ସର୍ବ-ବ୍ୟାପୀ, ସେତେବେଳେ ସେ ମୁକ୍ତିଲାଭ କରେ । ଆବଦ୍ଧ ଆତ୍ମାକୁ 'ଜୀବ' କୁହାଯାଏ । ଅତଏବ ଯେତେବେଳେ କୁହାଯାଏ—ଆତ୍ମା ଆସୁଅଛି ଓ ଯାଉଅଛି, ସେତେ-ବେଳେ ତାହା କେବଳ ବୁଝିବାର ସୁବିଧା ପାଇଁ କୁହାଯାଏ । ଯେପରିକି ଜ୍ୟୋତିର୍ବିଦ୍ୟା ପାଠର ସୁବିଧା ପାଇଁ କଳ୍ପନା କରିବାକୁ କୁହାହୋଇଥାଏ, ସୂର୍ଯ୍ୟ ପୃଥିବୀର ଚତୁର୍ଦ୍ଦିଗରେ ବୁଲୁଛି—ଯଦିଓ ତାହା ସତ୍ୟ ନୁହେଁ । ଏହି ଭାବରେ ଜୀବ ଉଚ୍ଚତର ଅଥବା ନିମ୍ନତର ଅବସ୍ଥା ପ୍ରାପ୍ତ ହୁଏ । ଏହା ହିଁ ହେଲା ସେହି ସୁପରିଚିତ ଜନ୍ମାନ୍ତର-ବାଦ ଏବଂ ସମଗ୍ର ସୃଷ୍ଟି ଏହି ନିୟମର ଅଧୀନ ।

ମନୁଷ୍ୟ ଯେ ପଶୁରୁ ଉତ୍ପନ୍ନ ହୋଇଅଛି, ତାହା ଏହି ଦେଶର ଜନ-ସାଧାରଣଙ୍କ ନିକଟରେ ଅତି ବୀଭତ୍ସ ବୋଲି ବୋଧହୁଏ କାହିଁକି ? ଏହିସବୁ ଲକ୍ଷ ଲକ୍ଷ ପଶୁଙ୍କର ଶେଷ ଗତି କ'ଣ ? ସେମାନେ କ'ଣ କିଛି ନୁହନ୍ତି ? ଆମମାନଙ୍କର ଯଦି ଆତ୍ମା ଥାଏ, ତାହାହେଲେ ସେମାନଙ୍କର ବି ତ ଆତ୍ମା ଅଛି; ସେମାନଙ୍କର ଯଦି ଆତ୍ମା ନ ଥାଏ ଆମମାନଙ୍କର ମଧ୍ୟ ଆତ୍ମା ନାହିଁ । କେବଳ ମନୁଷ୍ୟର ଆତ୍ମା ଅଛି, ପଶୁର ନାହିଁ—ଏହା କହିବା ଅତି ଅଯୌକ୍ତିକ । ପଶୁଠାରୁ ଅଧମ ମନୁଷ୍ୟ ମଧ୍ୟ ମୁଁ ଦେଖିଅଛି ।

ମନୁଷ୍ୟର ଆତ୍ମା ସଂସ୍କାର ଅନୁସାରେ ନିମ୍ନରୁ ଉଚ୍ଚତର ଶରୀରକୁ ଆସିଥାଏ । କିନ୍ତୁ କେବଳ ଉଚ୍ଚତମ ମନୁଷ୍ୟ ଶରୀରରେ ହିଁ ତାହାର ମୁକ୍ତିଲାଭ ହୁଏ । ଏହି ମନୁଷ୍ୟ ଦେବଦୂତ ଅପେକ୍ଷା ମଧ୍ୟ ଉଚ୍ଚତର, ସକଳ ପ୍ରକାର ଜୀବଠାରୁ ଉଚ୍ଚ; ମନୁଷ୍ୟ ହିଁ ପୃଥିବୀର ମହତ୍ତମ ଜୀବ, କାରଣ ମନୁଷ୍ୟ ମୋକ୍ଷଲାଭ କରିବାକୁ ସମର୍ଥ ।

ଏହି ସମଗ୍ର ଜଗତ ବ୍ରହ୍ମରେ ଅବସ୍ଥିତ ଥିଲା ଏବଂ ଯେପରିକି ସେଥିରୁ ବାହାରିଅଛି । ଏହିପରି ଭାବରେ ଯେଉଁ ଉତ୍ସରୁ ଜଗତ ବହିର୍ଗତ ହୋଇଅଛି, ସେହିଠାକୁ ପ୍ରତ୍ୟାବର୍ତ୍ତନ କରିବା ପାଇଁ ଚେଷ୍ଟା କରୁଅଛି । ଯେପରି ଡାଇନାମୋ (dynamo)ରୁ ଉତ୍ପନ୍ନ ହୋଇ ବିଦ୍ୟୁତ୍ ଗୋଟିଏ ବୃତ୍ତ (circuit) ସଂପୂର୍ଣ୍ଣ କରି ଡାଇନାମୋକୁ ପ୍ରତ୍ୟାବର୍ତ୍ତନ କରେ, ଆତ୍ମା କ୍ଷେତ୍ରରେ ମଧ୍ୟ ତାହା ହିଁ ଘଟିଅଛି । ବ୍ରହ୍ମରୁ ବାହାରି ହୋଇ ଆତ୍ମା ବିବିଧ ଉଦ୍ଭିଦ ଓ ପଶୁ ଆକାର ମଧ୍ୟଦେଇ ଅବଶେଷରେ ମନୁଷ୍ୟ ଶରୀରରେ ଉପସ୍ଥିତ ହୁଏ ଏବଂ ମାନବ ହିଁ ବ୍ରହ୍ମପ୍ରାପ୍ତିର ନିକଟତମ ମାଧ୍ୟମ । ଯେଉଁ ବ୍ରହ୍ମରୁ ଆମେମାନେ ବାହାରି ହୋଇ ଆସିଅଛୁ, ସେଠାକୁ ଫେରିଯିବା ହିଁ ମହାନ୍ ଜୀବନ-ସଂଗ୍ରାମ । ମନୁଷ୍ୟ ଏହା ଜାଣୁ ବା ନ ଜାଣୁ ସେଥିରେ କିଛି ଯାଏ ଆସେ ନାହିଁ । ଜଗତରେ ଆମେମାନେ ଯାହା କିଛି ଗତିଶୀଳ ଦେଖୁ, ଖଣିଜ ପଦାର୍ଥରେ, ବୃକ୍ଷ-ଲତାରେ ଅଥବା ପଶୁପକ୍ଷୀରେ ଯେକୌଣସି ସଂଗ୍ରାମ ଦେଖୁ, ସମସ୍ତ ହିଁ ସେହି ଏକ କେନ୍ଦ୍ରସ୍ଥଳକୁ ପ୍ରତ୍ୟାବର୍ତ୍ତନ କରି ବିଶ୍ରାମ-

ଲଭର ପ୍ରଚେଷ୍ଟା ମାତ୍ର । ପୂର୍ବେ ସାମ୍ୟାବସ୍ଥା ଥିଲା; ପରେ ତାହା ବିନଷ୍ଟ ହୋଇ-ଯାଇଅଛି; ଏବଂ ସକଳ ଅଂଶ—ଅଣୁ ପରମାଣୁ ସେହି ବିନଷ୍ଟ ସାମ୍ୟାବସ୍ଥାର ପୁନଃ ପ୍ରାପ୍ତି ପାଇଁ ଚେଷ୍ଟା କରୁଅଛି । ଏହି ସଂଗ୍ରାମରେ ସେମାନେ ମିଳିତ ହୋଇ ନୂତନ ନୂତନ ଭାବରେ ସୃଷ୍ଟ ହୋଇଅଛନ୍ତି; ଏହି ଭାବରେ ପ୍ରକୃତିର ସମସ୍ତ ଆଶ୍ଚର୍ଯ୍ୟ ବସ୍ତୁ-ମାନଙ୍କର ଉଦ୍ଭବ ହୁଏ । ପ୍ରାଣୀ ଜଗତରେ, ଉଦ୍ଭିଦ ଜଗତରେ ଏବଂ ଅନ୍ୟାନ୍ୟ ସକଳ କ୍ଷେତ୍ରରେ ମଧ୍ୟ ସମସ୍ତ ସଂଗ୍ରାମ ଓ ପ୍ରତିଯୋଗିତା, ସାମାଜିକ ସଂଘର୍ଷ ଓ ଯୁଦ୍ଧ, ସେହି ସାମ୍ୟାବସ୍ଥାର ପୁନଃପ୍ରାପ୍ତି ପାଇଁ ଶାଶ୍ୱତ ସଂଗ୍ରାମ ଭିନ୍ନ ଅନ୍ୟ କିଛି ନୁହେଁ ।

ଜନ୍ମରୁ ମୃତ୍ୟୁ ଯାଏଁ ଏହି ଗତି—ଏହି ବିଚରଣକୁ ହିଁ ସଂସ୍କୃତରେ କୁହାଯାଏ 'ସଂସାର'; ଆକ୍ଷରିକ ଅର୍ଥରେ କୁହାଯାଏ—ଜନ୍ମ ମରଣ-ଚକ୍ର । ସୃଷ୍ଟିର ସମସ୍ତ ବସ୍ତୁ ହିଁ ଏହି ଚକ୍ର ପରିକ୍ରମଣ କରି ଶୀଘ୍ର ବା ବିଳମ୍ବରେ ମୋକ୍ଷଲାଭ କରିବ । ପ୍ରଶ୍ନ ହୋଇପାରେ, ଯଦି ଆମେମାନେ ସମସ୍ତେ ହିଁ ଭବିଷ୍ୟତରେ ମୁକ୍ତିଲାଭର ଅଧିକାରୀ ହେଉଁ, ତାହାହେଲେ ସେଥିପାଇଁ ପୁଣି ସଂଗ୍ରାମର ପ୍ରୟୋଜନ କଅଣ ? ଯଦି ସମସ୍ତେ ମୁକ୍ତ ହେବେ, ତାହାହେଲେ ଆମେମାନେ ବସି ରହିବୁ ଏବଂ ଅପେକ୍ଷା କରିବୁ । ଏହା ସତ୍ୟ ଯେ, ଶୀଘ୍ର ହେଉ ବା ବିଳମ୍ବରେ ହେଉ, ପ୍ରତ୍ୟେକ ଜୀବ ମୁକ୍ତିଲାଭ କରିବ । କେହି ପଛରେ ପଡ଼ିରହିବ ନାହିଁ; କାହାରି ମଧ୍ୟ ଧ୍ୱଂସ ହେବ ନାହିଁ; ପ୍ରତ୍ୟେକ ବସ୍ତୁ ନିଶ୍ଚୟ ଉଚ୍ଚରୁ ଉଚ୍ଚତର ଅବସ୍ଥାକୁ ଉନ୍ନୀତ ହେବ । ଯଦି ତାହା ସତ୍ୟ ହୁଏ, ତାହାହେଲେ ଆମମାନଙ୍କର ସଂଗ୍ରାମର ପ୍ରୟୋଜନ କ'ଣ ? ପ୍ରଥମତଃ ସଂଗ୍ରାମ ହିଁ ହେଲା ଏକମାତ୍ର ଉପାୟ, ଯାହା ଆମମାନଙ୍କୁ କେନ୍ଦ୍ରସ୍ଥଳକୁ ଆଣିପାରେ; ଦ୍ୱିତୀୟତଃ ଆମେମାନେ ଜାଣୁ ନାହିଁ ଆମେ କାହିଁକି ସଂଗ୍ରାମ କରୁଅଛୁ; ସଂଗ୍ରାମ ଆମମାନଙ୍କୁ କରିବାକୁ ହେବ । 'ସହସ୍ର ଲୋକଙ୍କ ମଧ୍ୟରେ, କେତେ ଜଣ ମାତ୍ର ଜାଣନ୍ତି ଯେ, ସେମାନେ ମୁକ୍ତ ଲାଭ କରିବେ ।' ଅଧିକାଂଶ ଜଡ଼ଦ୍ରବ୍ୟ ନେଇ ସନ୍ତୁଷ୍ଟ ଥାଆନ୍ତି; କିନ୍ତୁ କେତେ ଜଣ ଅଛନ୍ତି, ଯେଉଁମାନେ ଜାଗ୍ରତ ହୁଅନ୍ତି—ବ୍ରହ୍ମବସ୍ତୁକୁ ପ୍ରତ୍ୟାବର୍ତ୍ତନ କରିବାକୁ ଚାହାଁନ୍ତି, ଯେଉଁମାନେ ମନେ କରନ୍ତି—ପୃଥିବୀର ଲୀଳାଖେଳା ଯଥେଷ୍ଟ ହୋଇଅଛି । ଏହିମାନେ ହିଁ ସଜ୍ଞାନରେ ସଂଗ୍ରାମ କରନ୍ତି; ଅନ୍ୟାନ୍ୟ ସମସ୍ତେ ସଂଗ୍ରାମ କରନ୍ତି ଅଜ୍ଞାନରେ ।

ବେଦାନ୍ତ ଦର୍ଶନର ଆରମ୍ଭ ଓ ଶେଷ ହେଉଛି—ଅସତ୍ୟକୁ ତ୍ୟାଗ ଓ ସତ୍ୟକୁ ଗ୍ରହଣ କରି 'ସଂସାରକୁ ତ୍ୟାଗ କରିବା' । ଯେଉଁମାନେ ପାର୍ଥିବ ମୋହରେ ମୁଗ୍ଧ ହୋଇ ଅଛନ୍ତି, ସେମାନେ ହୁଏତ କହିପାରନ୍ତି : କାହିଁକି ଆମେମାନେ ପୃଥିବୀ ତ୍ୟାଗ କରି 'ଚାଲିଯିବୁ—କେନ୍ଦ୍ରସ୍ଥଳକୁ ପ୍ରତ୍ୟାବର୍ତ୍ତନ କରିବାକୁ ଚେଷ୍ଟା କରିବୁ ? ମନେକର, ଆମେମାନେ ସମସ୍ତେ ଈଶ୍ୱରଙ୍କଠାରୁ ଆସିଅଛୁ, କିନ୍ତୁ ଦେଖୁ-ଅଛୁ, ଏହି ଜଗତ ସୁନ୍ଦର ଓ ସୁଖଦାୟକ, ଅତଏବ କାହିଁକି ଆମେମାନେ ଜଗତକୁ ଆହୁରି ବେଶୀ ସମ୍ଭୋଗ କରିବାକୁ ଚେଷ୍ଟା କରିବୁ ନାହିଁ ? କାହିଁକି ଆମେମାନେ

ସଂସାରର ବାହାରକୁ ଯିବାକୁ ଚେଷ୍ଟା କରିବ ? ସେମାନେ କହନ୍ତି—ପୃଥିବୀରେ ନିତ୍ୟ ଯେଉଁ ଉନ୍ନତି ସାଧିତ ହେଉଅଛି, ସେହିଆଡ଼କୁ ଦୃଷ୍ଟିପାତ କର; ଜଗତରେ କେତେ ପ୍ରକାର ବିଳାସଦ୍ରବ୍ୟ ସୃଷ୍ଟ ହୋଇଅଛି ! ଜଗତ କେତେ ସୁଖପୂର୍ଣ୍ଣ ! କାହିଁକି ଆମେମାନେ ତାହା ଛାଡ଼ିଯିବୁ ଏବଂ ଯାହା ଉପଭୋଗ୍ୟ ନୁହେଁ, ତାହା ପାଇଁ ଚେଷ୍ଟା କରିବୁ ? ଏହାର ଉତ୍ତର ଏହି ଯେ, ପୃଥିବୀ ନିଶ୍ଚୟ ଦିନେ ବିଖଣ୍ଡିତ ହୋଇ ଶେଷ ହୋଇଯିବ । ପୂର୍ବେ ବହୁବାର ଆମେମାନେ ସେହି ପ୍ରକାର ସୁଖ ଉପଭୋଗ କରିଅଛୁ । ଆମେମାନେ ବର୍ତ୍ତମାନ ଯେଉଁସବୁ ଆକାର ଦେଖୁଅଛୁ, ସେ ସବୁ ପୂର୍ବେ ବହୁବାର ପ୍ରକଟିତ ହୋଇଥିଲା ଏବଂ ବର୍ତ୍ତମାନ ଆମେମାନେ ଯେଉଁ ପୃଥିବୀରେ ବାସ କରୁଅଛୁ, ସେ ପୃଥିବୀ ମଧ୍ୟ ପୂର୍ବେ ବହୁବାର ଏହିଭାବରେ ସୃଷ୍ଟ ହୋଇଅଛି । ମୁଁ ମଧ୍ୟ ପୂର୍ବେ ବହୁବାର ଏଠାକୁ ଆସିଅଛି, ତୁମମାନଙ୍କ ସହିତ ବହୁବାର କଥା କହିଅଛି । ତୁମେମାନେ ମଧ୍ୟ ଜାଣିପାରିବ—ଏହା ସତ୍ୟ; ଏବଂ ଯେଉଁସବୁ କଥା ତୁମେମାନେ ବର୍ତ୍ତମାନ ଶୁଣୁଅଛ, ସେଗୁଡ଼ିକ ତୁମେମାନେ ପୂର୍ବେ ମଧ୍ୟ ବହୁବାର ଶୁଣିଅଛ ଏବଂ ଭବିଷ୍ୟତରେ ମଧ୍ୟ ବହୁଥର ଏହିପରି ଘଟିବ । ଆତ୍ମା ସର୍ବଦା ଏକ ଓ ଅଭିନ୍ନ । ଦେହ କେବଳ ବିନଷ୍ଟ ଓ ପୁନର୍ବିବର୍ତ୍ତିତ ହେଉଅଛି । ଦ୍ୱିତୀୟତଃ, ଏହିସବୁ ଘଟଣା ପର୍ଯ୍ୟାୟକ୍ରମରେ ଘଟେ । ମନେକର, ତିନି ଚାରିଟି ପଶାକାଠି ଅଛି, ତୁମେ ସେଗୁଡ଼ିକୁ ଗଡ଼େଇ ଦେଲ—ଗୋଟିକରେ ପାଞ୍ଚ, ଗୋଟିକରେ ଚାରି, ଗୋଟିକରେ ତିନି, ଗୋଟିକରେ ଦୁଇ ଦେଖାଗଲା । ତୁମେ ଯଦି ଏହି ଭାବରେ କ୍ରମାଗତ ପଶାକାଠି ଗଡ଼େଇଯାଅ, ତାହାହେଲେ ନିଶ୍ଚୟ ହିଁ ପୁଣି ଏହିପରି ହେବ, ଏହି ସଂଖ୍ୟାଗୁଡ଼ିକ ପୁନଃ ପୁନଃ ଦେଖାଦେବ । କ୍ରମାଗତ ପଶା ଗଡ଼େଇଯାଅ ଏବଂ ବିଳମ୍ବ ଯେତେ ହେଉ ନା କାହିଁକି, ଏହି ସଂଖ୍ୟାଗୁଡ଼ିକ ନିଶ୍ଚୟ ହିଁ ପୁଣି ଦେଖାଯିବ । ଅବଶ୍ୟ କେତେଥର ପରେ ସେମାନଙ୍କର ପୁନରାବୃତ୍ତି ହେବ, ତାହା ଠିକ କୁହାଯାଇ ପାରିବ ନାହିଁ—ଏହା ଦୈବାନିୟମାଧୀନ । ଜୀବାତ୍ମାମାନଙ୍କର ଏକତ୍ର ହେବା ବ୍ୟାପାରରେ ମଧ୍ୟ ଏହି ଏକା ନିୟମ ପ୍ରଯୋଜ୍ୟ । ଯେତେ ବିଳମ୍ବ ହେଉନା କାହିଁକି, ସେହି ଏକା ସଂଯୋଗ ଏବଂ ବିୟୋଗ ବାରମ୍ବାର ଘଟିବ । ସେହି ଏକା ଜନ୍ମ, ସେହି ପାନାହାର, ତାହାପରେ ମୃତ୍ୟୁ ବାରମ୍ବାର ଘୂରି ଘୂରି ଆସେ । କେହି କେହି ସାଂସାରିକ ଭୋଗସୁଖ ଅପେକ୍ଷା ଉଚ୍ଚତର କିଛି କେବେହେଲେ ପାଆନ୍ତି ନାହିଁ; କିନ୍ତୁ ଯେଉଁମାନେ ଉଚ୍ଚତର ସ୍ତରକୁ ଆରୋହଣ କରିବାକୁ ଚାହାଁନ୍ତି, ସେମାନେ ଦେଖନ୍ତି—ଏହିସବୁ ଭୋଗସୁଖ ଚରମ ଲକ୍ଷ୍ୟ ନୁହେଁ, ଆନୁଷଙ୍ଗିକ ମାତ୍ର ।

କ୍ଷୁଦ୍ର କୀଟପତଙ୍ଗରୁ ଆରମ୍ଭ କରି ମନୁଷ୍ୟ ପର୍ଯ୍ୟନ୍ତ ପ୍ରତ୍ୟେକ ଜୀବଶରୀର ହିଁ ଚିକାଗୋର 'ଫେରିସ୍ ହୁଇଲ୍'ର ଗୋଟିଏ ଗୋଟିଏ ଗାଡ଼ି ଭଳି—ଚକ୍ରଟି ସର୍ବଦା ଘୂରୁଅଛି; କିନ୍ତୁ ପ୍ରତି ଗାଡ଼ିର ଆରୋହୀ ପରିବର୍ତ୍ତିତ ହୋଇ ଯାଉଅଛି । ସେହିଭଳି

ମନୁଷ୍ୟ ଗୋଟିଏ ଗାଡ଼ିରେ ବସିଛି, ଚକର ଘୂର୍ଣ୍ଣନ ସହିତ ଘୂରୁଅଛି, ତାହାପରେ ଓହ୍ଲାଇ ଯାଉଅଛି । ଚକଟି କ୍ରମାଗତ ଘୂରିଚାଲିଛି । ଜୀବାତ୍ମା ଏହି ଭାବରେ ଗୋଟିଏ ଗୋଟିଏ ଶରୀର ଧାରଣ କରୁଅଛି, ତାହା ମଧ୍ୟରେ କିଛି କାଳ ବାସ କରୁଅଛି, ତାହା ପରେ ଏହାକୁ ତ୍ୟାଗ କରି ଅନ୍ୟ ଗୋଟିଏ ଶରୀର ଧାରଣ କରୁଅଛି । ତାହା ମଧ୍ୟ ତ୍ୟାଗ କରି ତୃତୀୟ ଶରୀରଟିଏ ଧାରଣ କରୁଅଛି । ଜୀବ ଏହି ଚକରୁ ବାହାର ହୋଇ ମୁକ୍ତି ଲାଭ ନ କରିବା ପର୍ଯ୍ୟନ୍ତ, ଜନ୍ମ-ମୃତ୍ୟୁର ଚକ ଏହି ଭାବରେ ଘୂରି ଚାଲିଛି ।

ପ୍ରତ୍ୟେକ ଦେଶରେ, ପ୍ରତ୍ୟେକ ଯୁଗରେ, ମାନବ ଜୀବନର ଅତୀତ ଓ ଭବିଷ୍ୟତ ବିଷୟରେ ଜାଣିବାର ଅତି ଆଶ୍ଚର୍ଯ୍ୟ-ଶକ୍ତିର କଥା ଶୁଣାଯାଏ । ଏହାର ବ୍ୟାଖ୍ୟା ଏହି ଯେ, ଆତ୍ମା କାର୍ଯ୍ୟ-କାରଣ-ନିୟମର ଅଧୀନରେ ଥାଏ । ଅବଶ୍ୟ ତାହାର ସ୍ୱଭାବଗତ ସ୍ୱାଧୀନତା କେବେହେଲେ ସମ୍ପୂର୍ଣ୍ଣ ରୂପରେ ବିନଷ୍ଟ ହୋଇଯାଏ ନାହିଁ ଏବଂ ତାହାର ଅସ୍ତିତ୍ୱ ମଧ୍ୟ ବ୍ୟାହତ ହୁଏ ନାହିଁ; ଏପରିକି ଆତ୍ମା ନିଜର ଶକ୍ତି ପ୍ରୟୋଗ କରି କାର୍ଯ୍ୟ-କାରଣର ଶୃଙ୍ଖଳ ଅତିକ୍ରମ କରିପାରେ, ଯେପରିକି ମୁକ୍ତ ଆତ୍ମାଙ୍କ କ୍ଷେତ୍ରରେ ଘଟିଥାଏ । କିନ୍ତୁ ଯେହେତୁ ମୁକ୍ତି ପୂର୍ବରୁ ସେମାନଙ୍କର କର୍ମ କାର୍ଯ୍ୟ-କାରଣ-ନିୟମଦ୍ୱାରା ବହୁପରିମାଣରେ ପ୍ରଭାବିତ ହେଉଥାଏ ଏବଂ ଏପରି କର୍ମଫଳର ପରମ୍ପରା ସମ୍ବନ୍ଧରେ କେତେକଙ୍କର ଅନ୍ତର୍ଦୃଷ୍ଟି ଅଛି, ତାଙ୍କ ପକ୍ଷରେ ଅତୀତ ଓ ଭବିଷ୍ୟତ ସମ୍ବନ୍ଧରେ ଆଲୋକପାତ କରିବା ସମ୍ଭବ ।

ଯେପର୍ଯ୍ୟନ୍ତ କୌଣସି ବାସନା କାମନା ଅଥବା ଅଭାବର ଅସ୍ତିତ୍ୱ ଥାଏ, ସେତେଦିନ ଅପୂର୍ଣ୍ଣତା ମଧ୍ୟ ଥାଏ । ପୂର୍ଣ୍ଣ ମୁକ୍ତାତ୍ମାର କୌଣସି ବାସନା କାମନା ରହିପାରେ ନାହିଁ । ଈଶ୍ୱରଙ୍କର କୌଣସି ଅଭାବ ରହିପାରେ ନାହିଁ । ତାଙ୍କର ଯଦି କୌଣସି ବାସନା କାମନା ଥାଏ, ତେବେ ତାହାଙ୍କୁ ଈଶ୍ୱର କୁହାଯାଇ ନ ପାରେ, କାରଣ ସେକ୍ଷେତ୍ରରେ ସେ ଅସମ୍ପୂର୍ଣ୍ଣ । ଏହି କାରଣରୁ—'ଈଶ୍ୱର ଏହା କାମନା କରନ୍ତି, ତାହା କାମନା କରନ୍ତି; ସେ କେତେବେଳେ ରୁଷ୍ଟ, କେତେବେଳେ ବା ତୁଷ୍ଟ'—ଏହିପରି କହିବା ଶିଶୁ ମୁହଁର ଅସ୍ପଷ୍ଟ କଥା ପରି ଅର୍ଥହୀନ । ସେଥିପାଇଁ ଆଚାର୍ଯ୍ୟମାନେ ଶିକ୍ଷା ଦେଇଛନ୍ତି: କିଛି କାମନା କର ନାହିଁ, ସକଳ ବାସନା ତ୍ୟାଗ କର, ସମ୍ପୂର୍ଣ୍ଣ ତୃପ୍ତ ହୁଅ ।

ଦନ୍ତହୀନ ଶିଶୁ 'ଗୁରୁଣ୍ଡି ଗୁରୁଣ୍ଡି' ପୃଥିବୀକୁ ଆସେ; ଏବଂ ବୃଦ୍ଧ ମଧ୍ୟ 'ଗୁରୁଣ୍ଡି ଗୁରୁଣ୍ଡି' ଦନ୍ତବିହୀନ ଅବସ୍ଥାରେ ପୃଥିବୀରୁ ଚାଲିଯାଏ । ଏହିପରି ଜୀବନର ଚରମ ଦୁଇଟି ପ୍ରାନ୍ତ—ଆରମ୍ଭ ଓ ଶେଷ—ଏକା ପ୍ରକାର; କେବଳ ଜଣକର ଏହି ଜୀବନ ସମ୍ବନ୍ଧରେ କୌଣସି ଅଭିଜ୍ଞତା ନାହିଁ, ଅନ୍ୟର ଜୀବନ ସମ୍ବନ୍ଧରେ ଅଭିଜ୍ଞତା ଅଛି । ଯେତେବେଳେ ଆଲୋକ-ତରଙ୍ଗର ସ୍ପନ୍ଦନ ଅତି ମୃଦୁ ହୁଏ, ସେତେବେଳେ ଆମେ-ମାନେ ଆଲୋକ ଦେଖିପାରୁନାହିଁ; ଯେତେବେଳେ ତାହା ଅତି ଦ୍ରୁତ ହୁଏ, ସେତେ-ବେଳେ ମଧ୍ୟ ତାହାର ଫଳ ହୁଏ ଅନ୍ଧକାର । ଏହି ଭାବରେ ଚରମ ସୀମା ଦୁଇଟି

ଏକା ପ୍ରକାର ହୁଏ, ଯଦ୍ୱଓ ସେମାନଙ୍କ ମଧ୍ୟରେ ଆକାଶ ପାତାଳ ବ୍ୟବଧାନ । କାଠର ବାସନା କାମନା ନାହିଁ, ପୂର୍ଣ୍ଣ ମୁକ୍ତ ମାନବର ମଧ୍ୟ ନାହିଁ । କିନ୍ତୁ କାଠର କୌଣସି ଚେତନା ନାହିଁ ଯେ ଏହା କାମନା କରିବ; ଅଥଚ ପୂର୍ଣ୍ଣ ମୁକ୍ତ ମାନବର କାମନା କରିବାର କିଛୁ ନ ଥାଏ । ଜଡ଼ବୁଦ୍ଧି ଲୋକଙ୍କର ଏହି ଜଗତରେ କୌଣସି କାମନା ନ ଥାଏ, ଯେହେତୁ ସେମାନଙ୍କର ମସ୍ତିଷ୍କ ଅପୂର୍ଣ୍ଣ, ପୁଣି ଉଚ୍ଚତମ ଅବସ୍ଥାରେ ମଧ୍ୟ ଆମମାନଙ୍କର କୌଣସି କାମନା ନ ଥାଏ; କିନ୍ତୁ ଏହି ଦୁଇ ଅବସ୍ଥା ମଧ୍ୟରେ ଆକାଶ ପାତାଳ ପ୍ରଭେଦ । ଜଣେ ପଶୁର, ଅନ୍ୟ ଜଣକ ଈଶ୍ୱରଙ୍କର ନିକଟବର୍ତ୍ତୀ ।

# ପୁନର୍ଜନ୍ମ

[ନିଉୟର୍କରୁ ପ୍ରକାଶିତ ଦାର୍ଶନିକ ପତ୍ରିକା 'Metaphysical Magazine ପାଇଁ ଲିଖିତ—ମାର୍ଚ୍ଚ, ୧୮୯୫]

'ଅତୀତରେ ତୁମର ଓ ମୋର ବହୁ ଜନ୍ମ ହୋଇଯାଇଛି, ହେ ଶତ୍ରୁନାଶକାରୀ (ଅର୍ଜୁନ), ମୁଁ ସେସବୁ ଅବଗତ ଅଛି, କିନ୍ତୁ ତୁମେ ତାହା ଜାଣି ନାହଁ ।' —ଗୀତା*

ସବୁ ଦେଶରେ ଓ ସବୁ କାଳରେ ଯେଉଁ ସମସ୍ତ ଜଟିଳ ସମସ୍ୟା ମନୁଷ୍ୟର ବୁଦ୍ଧିକୁ ବିମୂଢ଼ କରିଅଛି, ତନ୍ମଧ୍ୟରୁ ସର୍ବାପେକ୍ଷା ଜଟିଳ ହେଉଛି ମନୁଷ୍ୟ ନିଜେ । ଯେଉଁ ଅଗଣିତ ରହସ୍ୟ ଇତିହାସର ଆଦି ଯୁଗରୁ ମନୁଷ୍ୟକୁ ତାହାର ସମାଧାନ ପାଇଁ ଆହ୍ୱାନ କରିଅଛି, ତନ୍ମଧ୍ୟରେ ଗଭୀରତମ ରହସ୍ୟ ହେଲା ମନୁଷ୍ୟର ନିଜର ସ୍ୱରୂପ । ଏହା କେବଳ ଗୋଟିଏ ଅସାଧ୍ୟ ପ୍ରହେଳିକା ମାତ୍ର ନୁହେଁ, ଏହା ସକଳ ସମସ୍ୟାର ଅନ୍ତର୍ନିହିତ ମୂଳ ସମସ୍ୟା ମଧ୍ୟ । ମନୁଷ୍ୟର ଏହି ସ୍ୱରୂପଟି ଆମମାନଙ୍କର ସର୍ବ ପ୍ରକାର ଜ୍ଞାନ, ସର୍ବ ପ୍ରକାର ଅନୁଭୂତି ଓ ସର୍ବ ପ୍ରକାର କାର୍ଯ୍ୟକଳାପର ମୂଳ ଉତ୍ସ ଓ ଶେଷ ଆଧାର । ଏପରି କୌଣସି ସମୟ ନ ଥିଲା, ଏପରି କୌଣସି ସମୟ ଆସିବ ନାହିଁ—ଯେତେବେଳେ ମନୁଷ୍ୟର ନିଜ ସ୍ୱରୂପ ତାହାର ସର୍ବାଧିକ ମନୋଯୋଗ ଆକର୍ଷଣ କରିବ ନାହିଁ ।

ସବୁ ପ୍ରକାର କ୍ଷୁଧା ମଧ୍ୟରେ ସତ୍ୟାନୁସନ୍ଧିତ୍ସା ଭଳି କ୍ଷୁଧା ମନୁଷ୍ୟର ନିଜ ସତ୍ତା ସହିତ ନିବିଡ଼ ଭାବରେ ଜଡ଼ିତ ଅଛି । ବହିର୍ବିଶ୍ୱର ମୂଲ୍ୟ ନିରୂପଣାର୍ଥେ ଅନ୍ତଃରାଜ୍ୟରୁ କୌଣସି ମାନଦଣ୍ଡର ଆବିଷ୍କାର ପାଇଁ ସର୍ବଗ୍ରାସୀ ଆକାଙ୍କ୍ଷା ମଧ୍ୟ ବିଦ୍ୟମାନ ଏବଂ ଏହି ପରିବର୍ତ୍ତନଶୀଳ ବିଶ୍ୱରେ ଗୋଟିଏ ଅପରିବର୍ତ୍ତନୀୟ ସ୍ଥିର ବିନ୍ଦୁ ଆବିଷ୍କାର କରିବା ପାଇଁ ଏକ ଅନିବାର୍ଯ୍ୟ ଓ ସ୍ୱାଭାବିକ ପ୍ରୟୋଜନ ଅନୁଭୂତ ହୁଏ; ତଥାପି ମନୁଷ୍ୟ ମଝିରେ ମଝିରେ ସ୍ୱର୍ଣ୍ଣକଣିକା ଭ୍ରମରେ ଧୂଳିକୁ ମୁଠାରେ ଧରିବାକୁ ସଚେଷ୍ଟ ହୋଇଅଛି । ଏପରିକି ଯୁକ୍ତି ଓ ବୁଦ୍ଧି ଅପେକ୍ଷା ମଧ୍ୟ ଉଚ୍ଚତର ରାଜ୍ୟର କୌଣସି ବାଣୀର ପ୍ରେରଣା ପାଇ ସୁଦ୍ଧା ସେ ଅନେକ ସମୟରେ ଅନ୍ତର୍ନିହିତ ଦେବତ୍ୱର ମର୍ମ ଅନୁଧାବନ କରିବାକୁ ସକ୍ଷମ ହୋଇ ନାହିଁ । ଏହା ସତ୍ତ୍ୱେ ଯେତେ

---

* ବହୂନି ମେ ବ୍ୟତୀତାନି ଜନ୍ମାନି ତବ ଚାର୍ଜୁନ ।
ତାନ୍ୟହଂ ବେଦ ସର୍ବାଣି ନ ତ୍ୱଂ ବେତ୍ଥ ପରନ୍ତପ ॥
—ଶ୍ରୀମଦ୍‌ଭଗବଦ୍‌ଗୀତା, ୪।୫

ଦିନଠାରୁ ଏହି ଅନୁସନ୍ଧାନ ଆରମ୍ଭ ହୋଇଅଛି, ତାହା ମଧ୍ୟରେ ଏପରି କୌଣସି ସମୟ ଦେଖିବାକୁ ମିଳେ ନାହିଁ, ଯେତେବେଳେ କୌଣସି ନା କୌଣସି ଜାତି ବା କତିପୟ ବ୍ୟକ୍ତି ସତ୍ୟର ବର୍ତ୍ତିକା ଊର୍ଦ୍ଧ୍ୱକୁ ତୋଳି ଧରି ନାହାନ୍ତି ।

ଅତୀତରେ ଅଥବା ଆଧୁନିକ କାଳରେ—ବିଶେଷତଃ ପ୍ରଗତିଶୀଳ ବୁଦ୍ଧିଜୀବୀମାନଙ୍କ ମଧ୍ୟରେ ଏପରି କୌଣସି ଲୋକର କେବେହେଲେ ଅଭାବ ଘଟି ନାହିଁ, ଯେଉଁମାନେ ପାରିପାର୍ଶ୍ୱିକ ଓ ଅପ୍ରୟୋଜନୀୟ ଝିକିନିଖି ବିଷୟରେ ଏକଦେଶଦର୍ଶୀ ବିବେଚନାହୀନ ଏବଂ କୁସଂସ୍କାରପୂର୍ଣ୍ଣ ଅଭିମତ ସ୍ୱୀକାର କରିବା ଫଳରେ କେବେ ବା ବିବିଧ ଦର୍ଶନ-ମତ ଓ ସମ୍ପ୍ରଦାୟର ବକ୍ତବ୍ୟର ଅସ୍ପଷ୍ଟତା ହେତୁ ବିରକ୍ତି ଫଳରେ, ଏବଂ ଦୁଃଖର ସହିତ କହିବାକୁ ହୁଏ, ଅନେକ ସମୟରେ ସଂଘବଦ୍ଧ ପୌରୋହିତ୍ୟର ଭୟାବହ କୁସଂସ୍କାରାଦିର ପ୍ରଭାବରେ ଚରମ ବିପରୀତ ମତରେ ଉପସ୍ଥିତ ହୋଇ-ଅଛନ୍ତି ଏବଂ ଏହିସବୁ କାରଣରୁ ହତାଶ ହୋଇ କେବଳ ଯେ ଏ ବିଷୟରେ ଅନୁସନ୍ଧାନ ପରିତ୍ୟାଗ କରିଅଛନ୍ତି ସେତିକି ନୁହେଁ, ବରଂ ସେମାନେ ଘୋଷଣା ମଧ୍ୟ କରିଅଛନ୍ତି ଯେ ଏହି କାର୍ଯ୍ୟ ନିଷ୍ଫଳ ଏବଂ ଅନାବଶ୍ୟକ । ଦାର୍ଶନିକମାନେ କ୍ଷୋଭ ବା ବିଦ୍ରୂପ ପ୍ରକାଶ କରିପାରନ୍ତି ଏବଂ ପୁରୋହିତମାନେ ତରବାରିର ସାହାଯ୍ୟପର୍ଯ୍ୟନ୍ତ ସ୍ୱୀକାର କରି ସ୍ୱୀୟ ବ୍ୟବସାୟ ପରିଚାଳନା କରିପାରନ୍ତି; କିନ୍ତୁ ସତ୍ୟ କେବଳ ସେହିମାନଙ୍କ ନିକଟରେ ଆବିର୍ଭୂତ ହୁଏ, ଯେଉଁମାନେ ସତ୍ୟ ପାଇଁ ଲାଭ-କ୍ଷତିର ଚିନ୍ତା ଛାଡ଼ି ନିର୍ଭୀକ ହୃଦୟରେ ସତ୍ୟର ହିଁ ପୀଠ-ସ୍ଥାନରେ ଉପାସନା କରି ଥାଆନ୍ତି ।

ମନୁଷ୍ୟର ବୁଦ୍ଧି ଯେତେବେଳେ ଜ୍ଞାନପୂର୍ବକ କୌଣସି ବିଷୟରେ ପ୍ରଯୁକ୍ତ ହୁଏ, ସେତେବେଳେ ହିଁ ତାହା ନିକଟରେ ଆଲୋକ ଉଦ୍‌ଭାସିତ ହୁଏ, ଏବଂ ଧୀରେଧୀରେ ହେଲେ ମଧ୍ୟ କ୍ରମଶଃ ତାହା ଅଜ୍ଞାତ ଭାବରେ ଅନୁସୃତ ହୋଇ ସମଗ୍ର ଜାତି ମଧ୍ୟରେ ପ୍ରସାରିତ ହୁଏ । ଦାର୍ଶନିକମାନେ ଦେଖାଇ ଦିଅନ୍ତି, କିପରି ମହା-ପୁରୁଷମାନେ ଜ୍ଞାନ ସହିତ ସାଧନା କରିଥାଆନ୍ତି, ଏବଂ ଇତିହାସ ସାକ୍ଷ୍ୟ ଦିଏ, କିପରି ନୀରବରେ ଧୀରେ ଧୀରେ ଜନ-ସମାଜରେ ସେମାନଙ୍କର ସାଧନାଲବ୍ଧ ସତ୍ୟ ଅନୁପ୍ରବେଶ କରେ ।

ମନୁଷ୍ୟ ତାହାର ସ୍ୱରୂପ ସମ୍ବନ୍ଧରେ ଯେତେଗୁଡ଼ିଏ ମତ ଆଜି ପର୍ଯ୍ୟନ୍ତ ସ୍ୱୀକାର କରିଅଛି, ତନ୍ମଧ୍ୟରେ ଏହି ମତଟି ସର୍ବାଧିକ ପ୍ରସାର ଲାଭ କରିଅଛି ଯେ, ଆତ୍ମା ନାମକ ଗୋଟିଏ ସତ୍ୟ ବସ୍ତୁ ଅଛି ଏବଂ ତାହା ଦେହଠାରୁ ଭିନ୍ନ ଓ ଅମର । ଯେଉଁମାନେ ଏହିପରି ଆତ୍ମାର ଅସ୍ତିତ୍ୱରେ ଆସ୍ଥାବାନ୍, ସେମାନଙ୍କ ମଧ୍ୟରେ ପୁଣି ଚିନ୍ତାଶୀଳ ଅଧିକାଂଶ ବ୍ୟକ୍ତି ବିଶ୍ୱାସ କରନ୍ତି ଯେ ଆତ୍ମାର ଜନ୍ମ ପୂର୍ବରୁ ସ୍ଥିତି ଅଛି ।

ଆଧୁନିକ ମନୁଷ୍ୟ-ସମାଜରେ ଯେଉଁମାନଙ୍କର ଧର୍ମ ସୁସଂବଦ୍ଧ ଓ ସୁପ୍ରତିଷ୍ଠିତ ସେମାନଙ୍କ ମଧ୍ୟରେ ଅଧିକାଂଶ ହିଁ ଏହା ବିଶ୍ୱାସ କରନ୍ତି, ଏବଂ ଯେଉଁସବୁ ଦେଶ ଭଗବାନଙ୍କ ଆଶୀର୍ବାଦରେ ସର୍ବାଧିକ ଉନ୍ନତ, ସେହିସବୁ ଦେଶର ସର୍ବଶ୍ରେଷ୍ଠ ମନୀଷୀମାନେ ଯଦିଓ ଆତ୍ମାର ଅନାଦିତ୍ୱରେ ବିଶ୍ୱାସ କରିବାର ପ୍ରତିକୂଳ ଅବସ୍ଥା ମଧ୍ୟରେ ପ୍ରତିପାଳିତ ହୋଇଅଛନ୍ତି, ତଥାପି ସେମାନେ ଆତ୍ମାର ପୂର୍ବାସ୍ତିତ୍ୱର ସମର୍ଥନ କରିଅଛନ୍ତି । ହିନ୍ଦୁ ଓ ଜୈନ ଧର୍ମର ଏହା ଭିତ୍ତିସ୍ୱରୂପ । ପ୍ରାଚୀନ ମିଶରବାସୀ-ମାନଙ୍କ ମଧ୍ୟରେ ଶିକ୍ଷିତଶ୍ରେଣୀ ଏଥିରେ ବିଶ୍ୱାସ କରୁଥିଲେ, ପ୍ରାଚୀନ ପାରସିକ-ମାନେ ଏହି ତତ୍ତ୍ୱରେ ଉପନୀତ ହୋଇଥିଲେ; ଗ୍ରୀକ୍ ଦାର୍ଶନିକଗଣ ଏହି ଧାରଣାକୁ ସେମାନଙ୍କର ଦର୍ଶନଶାସ୍ତ୍ରର ଭିତ୍ତିପ୍ରସ୍ତର ରୂପେ ଗ୍ରହଣ କରିଥିଲେ; ହିବ୍ରୁମାନଙ୍କ ମଧ୍ୟରେ ଫ୍ୟାରିସିମାନେ (ଅଗ୍ରସରକାଷ୍ଟ ପ୍ରାଚୀନ ଇହୁଦୀଧର୍ମ ସମ୍ପ୍ରଦାୟ) ଏହାକୁ ଗ୍ରହଣ କରିଥିଲେ, ଏବଂ ମୁସଲମାନ ଧର୍ମାବଲମ୍ବୀମାନଙ୍କ ମଧ୍ୟରେ ସୁଫୀମାନେ ପ୍ରାୟ ସମସ୍ତେ ଏହି ସତ୍ୟ ସ୍ୱୀକାର କରନ୍ତି ।

ବିଭିନ୍ନ ଜାତି ମଧ୍ୟରେ, ବିଭିନ୍ନ ବିଶ୍ୱାସର ଉଦ୍ଭବ ଓ ପରିପୁଷ୍ଟି ନିମିତ୍ତ ମନେହୁଏ ବିଶେଷ ଧରଣର କୌଣସି ପରିବେଶର ପ୍ରୟୋଜନ ଅଛି । ମୃତ୍ୟୁ ପରେ ମଧ୍ୟ ଶରୀରର ସାମାନ୍ୟ ଅଂଶ ଜୀବିତ ଥାଏ—ଏହି ଧାରଣାରେ ଉପସ୍ଥିତ ହେବାକୁ ପ୍ରାଚୀନ ଜାତିସମୂହଙ୍କର କେତେ ଯୁଗ ବିତି ଯାଇଅଛି । ପୁଣି ଦେହରୁ ବିମୁକ୍ତ ହୋଇ ମୃତ୍ୟୁ ପରେ ମଧ୍ୟ ଜୀବିତ ଥିବାପରି କୌଣସି ବସ୍ତୁ ସମ୍ବନ୍ଧରେ ଯୁକ୍ତିପୂର୍ଣ୍ଣ ଧାରଣାରେ ଉପନୀତ ହେବାକୁ ଆହୁରି କେତେ ଯୁଗ ଯୁଗାନ୍ତର ଲାଗିଛି । ଏପରି ଗୋଟିଏ ବସ୍ତୁ ଅଛି ଯାହାର ଦେହ ସହିତ ସମ୍ପର୍କ ସାମୟିକ—ଏହିପରି ଧାରଣାରେ ଉପନୀତ ହେବା ଯେବେ ସମ୍ଭବ ହେଲା, କେବଳ ସେତିକିବେଳେ ଏବଂ ଯେଉଁସବୁ ଜାତି ମଧ୍ୟରେ ଏହିପରି ସିଦ୍ଧାନ୍ତର ଉଦୟ ହେଲା, କେବଳ ସେମାନଙ୍କ ମଧ୍ୟରେ ଏହି ଅନିବାର୍ଯ୍ୟ ପ୍ରଶ୍ନଟି ଉତ୍ଥିତ ହୋଇଅଛି—ତାହା କେଉଁଠି ? କେବେ ?

ପ୍ରାଚୀନ ହିବ୍ରୁମାନେ ଆତ୍ମା ସମ୍ପର୍କରେ ନିଜ ମଧ୍ୟରେ ଅନୁସନ୍ଧିତ୍ସା ଜାଗ୍ରତ-କରି ମନର ସ୍ଥିରତା ନଷ୍ଟ କରି ନାହାନ୍ତି । ସେମାନଙ୍କ ମତରେ ମୃତ୍ୟୁରେ ହିଁ ସବୁ କିଛିର ଅବସାନ ହୁଏ । କାର୍ଲ୍ ହେକେଲ୍ ଯଥାର୍ଥରେ କହିଅଛନ୍ତି : 'ଏହା ଯଦିଓ ସତ୍ୟ ଯେ, (ଇହୁଦୀମାନଙ୍କ) ନିର୍ବାସନର ପୂର୍ବବର୍ତ୍ତୀ ବାଇବେଲର ପ୍ରାଚୀନ ଅଂଶରେ ହିବ୍ରୁମାନେ ପ୍ରାଣତତ୍ତ୍ୱଟିର ପୃଥକ୍ ପରିଚୟ ପାଇଥିଲେ ଏବଂ ତାହାକୁ ସେମାନେ କେତେବେଳେ 'ନେଫେସ୍' ଅଥବା 'ରୁୟାଖ' ଅଥବା 'ନେଶାମା' ନାମରେ ଅଭିହିତ କରିଅଛନ୍ତି; ତଥାପି ଏହିସବୁ ଶବ୍ଦ ଚୈତନ୍ୟ ବା ଆତ୍ମାର ଧାରଣାର ଦ୍ୟୋତକ ନ ହୋଇ ବରଂ ପ୍ରାଣବାୟୁର ହିଁ ଦ୍ୟୋତକ । ପୁଣି ପାଲେ-ଷ୍ଟାଇନ୍‌ର ଅଧିବାସୀ ଇହୁଦୀମାନଙ୍କର ନିର୍ବାସନର ପରବର୍ତ୍ତୀ କାଳର ରଚନାରେ

କେଉଁଠି କୌଣସି ପୃଥକ୍ ସତ୍ତାବିଶିଷ୍ଟ ଅମର ଆତ୍ମାର ଉଲ୍ଲେଖ ମିଳେ ନାହିଁ; କିନ୍ତୁ ସର୍ବଜ୍ଞ ଈଶ୍ୱରଙ୍କଠାରୁ ନିଃସୃତ କେବଳ ଏପରି ଗୋଟିଏ ପ୍ରାଣବାୟୁର ଉଲ୍ଲେଖ ମିଳେ, ଯାହା ଶରୀରଧ୍ୱଂସ ହେଲେ ଦିବ୍ୟସତ୍ତା 'ରୁସ୍କାର୍'ରେ ଅନ୍ତର୍ହିତ ହୁଏ ।'

ପ୍ରାଚୀନ ମିଶର ଓ କାଲ୍‌ଡିଆର ଅଧିବାସୀମାନଙ୍କର ଆତ୍ମା ସମ୍ବନ୍ଧରେ ନିଜସ୍ୱ ବହୁ ଅଦ୍ଭୁତ ଧାରଣା ଥିଲା । କିନ୍ତୁ ମୃତ୍ୟୁପରେ ମଧ୍ୟ ମାନବର କୌଣସି ଗୋଟିଏ ଅଂଶ ଜୀବିତ ଥାଏ ବୋଲି ସେମାନେ ଯେଉଁ ଧାରଣା ପୋଷଣ କରୁଥିଲେ, ତାହାକୁ ପ୍ରାଚୀନ ହିନ୍ଦୁ, ପାରସିକ, ଗ୍ରୀକ ବା ଅନ୍ୟ କୌଣସି ଆର୍ଯ୍ୟଜାତିର ଏ ସମ୍ବନ୍ଧରେ ଧାରଣାଗୁଡ଼ିକ ସହିତ ସମାନ ବୋଲି ଭାବିବା ଭୁଲ । ଅତି ପ୍ରାଚୀନ କାଳରୁ ଆତ୍ମାର ଧାରଣା ସମ୍ପର୍କରେ ଆର୍ଯ୍ୟ ଓ ଅସଂସ୍କୃତ-ଭାଷାଭାଷୀ ମ୍ଲେଚ୍ଛମାନଙ୍କ ଭିତରେ ସୁସ୍ପଷ୍ଟ ପାର୍ଥକ୍ୟ ପରିଲକ୍ଷିତ ହୁଏ । ବାହ୍ୟତଃ ମୃତ ଦେହର ଶେଷକୃତ୍ୟ-ଅନୁଷ୍ଠାନର ରୀତି ଏହାର ପ୍ରକୃଷ୍ଟ ନିଦର୍ଶନ; ଅଧିକାଂଶ କ୍ଷେତ୍ରରେ ମ୍ଲେଚ୍ଛମାନେ ଶବକୁ ସଯତ୍ନରେ ପ୍ରୋଥିତ କରି ଅଥବା ତଦପେକ୍ଷା ଜଟିଳତର ବିସ୍ତୃତ ପ୍ରକ୍ରିୟା ଅବଲମ୍ବନ କରି ଶବକୁ ମମି (mummy)ରେ ପରିଣତ କରି ମୃତଦେହର ସଂରକ୍ଷଣ ପାଇଁ ଯଥାସାଧ୍ୟ ପ୍ରୟାସ କରୁଥିଲେ ଏବଂ ଆର୍ଯ୍ୟମାନେ ସାଧାରଣତଃ ମୃତଦେହକୁ ଅଗ୍ନିରେ ଭସ୍ମୀଭୂତ କରୁଥିଲେ ।

ଏହି ଘଟଣାରୁ ହିଁ ଆମେମାନେ ଗୋଟିଏ ଗୋପନ ରହସ୍ୟର ସନ୍ଧାନ ପାଉ । ଆର୍ଯ୍ୟଜାତିର—ବିଶେଷତଃ ହିନ୍ଦୁମାନଙ୍କର ସହାୟତା ବ୍ୟତୀତ ମିଶରୀୟ ହେଉ, ଏସିରୀୟ ହେଉ ବା ବାବିଲୋନବାସୀ ହେଉ, କୌଣସି ମ୍ଲେଚ୍ଛଜାତି ଏହି ଧାରଣାରେ ଉପନୀତ ହୋଇପାରି ନାହିଁ ଯେ, ଆତ୍ମା ଏକ ପୃଥକ୍ ସ୍ଥିତି, ଯାହା ଶରୀର-ନିରପେକ୍ଷ ଭାବରେ ଅବସ୍ଥାନ କରିପାରେ ।

ଯଦିଓ ହେରୋଡୋଟାସ କହନ୍ତି ଯେ ମିଶରୀୟମାନେ ହିଁ ସର୍ବପ୍ରଥମେ ଆତ୍ମାର ଅମରତ୍ୱ ସମ୍ପର୍କରେ ଧାରଣା କରିଥିଲେ, ଏବଂ ସେ ମିଶରୀୟମାନଙ୍କର ଏହି ମତବାଦ ଉଦ୍ଧାର କରି କହନ୍ତି, 'ଆତ୍ମା ଦେହନାଶ ପରେ ମଧ୍ୟ ବାରମ୍ବାର ଗୋଟିଏ ଗୋଟିଏ ଜୀବ-ଦେହରେ ପ୍ରବେଶ କରେ ଏବଂ ତାହା ଫଳରେ ଏହି ଜୀବ ବଞ୍ଚି-ଉଠେ, ଏବଂ ଜଳଚର, ସ୍ଥଳଚର ଓ ଖେଚର—ଯେତେ ପ୍ରାଣୀ ଅଛନ୍ତି ସମସ୍ତଙ୍କ ମଧ୍ୟରେ ଆତ୍ମା ଘୂରିବୁଲେ । ତିନି ସହସ୍ର ବର୍ଷ କାଳ ଏହିଭାବରେ ଅତିବାହିତ ହେଲେ ପୁନର୍ବାର ଆତ୍ମା ମାନବ ଦେହକୁ ଫେରିଆସେ; ତଥାପି ମିଶର-ତତ୍ତ୍ୱ ସମ୍ପର୍କରେ ବର୍ତ୍ତମାନ କାଳରେ ଯେଉଁ ଗବେଷଣା ହୋଇଅଛି, ତାହା ଫଳରେ ଅଦ୍ୟାବଧି ଆତ୍ମାର ଦେହାନ୍ତର ଗ୍ରହଣ ବିଷୟରେ ମିଶରୀୟ ଜନସାଧାରଣଙ୍କର ଧର୍ମ ମଧ୍ୟରେ କୌଣସି ଚିହ୍ନ ଦେଖିବାକୁ ମିଳେ ନାହିଁ; ବରଂ ମାସ୍‌ପେରୋ (Maspero) ଆର୍ମାନ (A. Erman) ଏବଂ ଅନ୍ୟାନ୍ୟ ଖ୍ୟାତନାମା ମିଶରୀ ତତ୍ତ୍ୱବିଦ୍‌ମାନଙ୍କର

ଆଧୁନିକତମ ଗବେଷଣାରୁ ଏହି ଅନୁମାନ ହିଁ ଅନୁମୋଦିତ ହୁଏ ଯେ, ପୁନର୍ଜନ୍ମ-ବାଦ ସହିତ ମିଶରୀୟମାନେ ସୁପରିଚିତ ନ ଥିଲେ ।

ପ୍ରାଚୀନ ମିଶରୀୟମାନଙ୍କ ମତରେ ଆତ୍ମା ଗୋଟିଏ ଅନ୍ୟସାପେକ୍ଷ ବିକଳ୍ପ ସତ୍ତା ମାତ୍ର । ଏହାର ନିଜସ୍ୱ କୌଣସି ପୃଥକ୍ ଅସ୍ତିତ୍ୱ ନାହିଁ ଏବଂ ଏହା କେବେ-ହେଲେ ଦେହ ସହିତ ସମ୍ପର୍କ ବିଚ୍ଛିନ୍ନ କରି ରହିପାରିବ ନାହିଁ । ଯେତେ ଦିନ ଦେହ ଥାଏ, କେବଳ ସେତେ ଦିନ ଏହା ଜୀବିତ ଥାଏ । ଯଦି କୌଣସି ଆକସ୍ମିକ କାରଣ ବଶତଃ ମୃତ ଦେହଟି ବିନଷ୍ଟ ହୁଏ, ତେବେ ବିଦେହି ଆତ୍ମାକୁ ଦ୍ୱିତୀୟଥର ମୃତ୍ୟୁ ଓ ଧ୍ୱଂସ ବରଣ କରିବାକୁ ହୁଏ । ମୃତ୍ୟୁ ପରେ ଆତ୍ମା ସମଗ୍ର ପୃଥିବୀରେ ମୁକ୍ତ ଭାବରେ ଭ୍ରମଣ କରିପାରେ ସତ, କିନ୍ତୁ ପ୍ରତିରାତ୍ରରେ ମୃତ ଦେହଟି ଯେଉଁଠି ଅଛି, ସେଠାକୁ ଫେରିବାକୁ ହୁଏ; ସେ ସର୍ବଦା ଦୁଃଖମଗ୍ନ, ସର୍ବଦା କ୍ଷୁଧାତୃଷ୍ଣାରେ କାତର ଏବଂ ଆଉ ଥରେ ଜୀବନକୁ ଉପଭୋଗ କରିବା ପାଇଁ ତୀବ୍ର ବାସନାଯୁକ୍ତ, ଅଥଚ କୌଣସିମତେ ତାହା ପୂରଣ କରିପାରେ ନାହିଁ । ଏହାର ବ୍ୟକ୍ତ ଶରୀରର କୌଣସି ଅଂଶ କୌଣସି ପ୍ରକାରେ ଆହତ ହେଲେ ଆତ୍ମାର ଅନୁରୂପ ଅଂଶ ମଧ୍ୟ ଅନିବାର୍ଯ୍ୟ ଭାବରେ ଆହତ ହୁଏ । ଏହି ଧାରଣା ଯୋଗୁ ପ୍ରାଚୀନ ମିଶରୀୟମାନେ ମୃତଦେହକୁ ସଂରକ୍ଷଣ କରିବା ପାଇଁ ଅତି ବ୍ୟାକୁଳ ଥିଲେ । ପ୍ରଥମେ ମରୁଭୂମିକୁ ଶବ-କ୍ଷେତ୍ର ହିସାବରେ ନିର୍ବାଚନ କରାହୋଇଥିଲା; କାରଣ ସେଠାରେ ବାୟୁର ଶୁଷ୍କତା ହେତୁ ମୃତ ଦେହ ସହଜରେ ବିନଷ୍ଟ ହେଉ ନ ଥିଲା ଏବଂ ଏହି ଭାବରେ ବିଦେହି ପ୍ରେତାତ୍ମା ଦୀର୍ଘ ଜୀବନଲାଭର ସୁଯୋଗ ପାଉଥିଲା । ଥରେ ଜଣେ ଦେବତା ଶବଦେହ ସଂରକ୍ଷଣ ପାଇଁ ଏପରି ଏକ ଉପାୟ ଆବିଷ୍କାର କଲେ, ଯାହା ସାହାଯ୍ୟରେ ପୂର୍ବପୁରୁଷମାନଙ୍କ ପ୍ରତି ଶ୍ରଦ୍ଧାଶୀଳ ବ୍ୟକ୍ତିମାନେ ସେମାନଙ୍କ ସ୍ୱଜନଙ୍କର ମୃତଦେହ ପ୍ରାୟ ଅନନ୍ତ କାଳ ଧରି ସଂରକ୍ଷଣ ପାଇଁ ଆଶା ପୋଷଣ କରିବାରେ ସମର୍ଥ ହେଲେ । ନିଦାରୁଣ ଦୁଃଖଦାୟକ ହେଲେ ମଧ୍ୟ ଆତ୍ମା ପାଇଁ ଏହିପରି ଅମରତ୍ୱର ବ୍ୟବସ୍ଥା ସେମାନେ କରୁଥିଲେ ।

ପୃଥିବୀ ସହିତ ଆଉ କୌଣସି ନିବିଡ଼ ସମ୍ବନ୍ଧ ନ ରହିଲେ ମଧ୍ୟ ଏକ ଶାଶ୍ୱତ ଦୁଃଖ ସେହି ମୃତ ଆତ୍ମାକୁ ସର୍ବଦା ହିଁ ପୀଡ଼ା ଦେଉଥିଲା; ବିଦେଶୀ ଆତ୍ମା କହୁଥିଲା, 'ହେ ଭ୍ରାତଃ, ତୁମେ କେବେହେଲେ ପାନାହାରରୁ ନିଜକୁ ବଞ୍ଚିତ କର-ନାହିଁ; ମାଦକତା, ଭଲପାଇବା, ସର୍ବପ୍ରକାର ସମ୍ଭୋଗ ଏବଂ ଦିବାରାତ୍ର ବାସନାର ଅନୁସରଣରୁ ବିରତ ହୁଅ ନାହିଁ । ଦୁଃଖକୁ ହୃଦୟରେ ସ୍ଥାନ ଦିଅ ନାହିଁ, କାରଣ ପୃଥିବୀରେ ମନୁଷ୍ୟର ଜୀବନ କେତେ ଅଳ୍ପ ? ପଶ୍ଚିମରେ ଯେଉଁ (ପ୍ରେତ)-ଲୋକ ଅଛି, ତାହା ସୁପ୍ତିମଗ୍ନ ଓ ଘନ ତମସାରେ ଆବୃତ; ଏହା ଏପରି ଗୋଟିଏ ସ୍ଥାନ, ଯେଉଁଠି ଥରେ ଅଧିଷ୍ଠିତ ହେଲେ, ସେଠାକାର ଅଧିବାସୀମାନେ ସେମାନଙ୍କ 'ମମି'

ରୂପରେ ଶରନଦ୍ରାରେ ମଗ୍ନ ହୁଅନ୍ତି, ପୁନର୍ବାର ଆଉ କୌଣସି ଦିନ ସ୍ୱଜନବର୍ଗଙ୍କୁ ଦେଖିବା ପାଇଁ ଜାଗ୍ରତ ହୁଅନ୍ତି ନାହିଁ । ସେମାନେ ସେମାନଙ୍କର ପିତାମାତାଙ୍କୁ ଚହ୍ନି ପାରନ୍ତି ନାହିଁ, ଏବଂ ସେମାନଙ୍କର ହୃଦୟରେ ସ୍ତ୍ରୀ ଓ ସନ୍ତାନବର୍ଗଙ୍କର କୌଣସି ସ୍ମୃତି ନ ଥାଏ । ପୃଥିବୀ ତାହାର ଅଧିବାସୀମାନଙ୍କୁ ଯେଉଁ ପ୍ରାଣବନ୍ତ ଜଳଧାରା ଦାନ କରେ, ତାହା ମୋ ନିକଟରେ ପଙ୍କିଳ ଓ ପ୍ରାଣହୀନ; ପୃଥିବୀରେ ଯେଉଁମାନେ ବାସ କରନ୍ତି ସେମାନେ ସମସ୍ତେ ଜଳଧାରାର ଅଧିକାରୀ; ଅଥଚ ମୋ ନିକଟରେ ଏ ଜଳଧାରା ହିଁ ବର୍ତ୍ତମାନ ଏକ ଦୁର୍ଗନ୍ଧମୟ ଗଳିତ ଧାରାରେ ପରିଣତ ହୋଇଅଛି । ମୃତ୍ୟୁର ଏହି ଉପତ୍ୟକାକୁ ଆସିବା କାଳରୁ ମୁଁ ବୁଝିପାରୁ ନାହିଁ ଯେ ମୁଁ କିଏ ଏବଂ କେଉଁଠି ଅଛି । ମୋତେ ସ୍ରୋତସ୍ୱିନୀର ଜଳ ପାନ କରିବାକୁ ଦିଅ···ଉତ୍ତରାଭିମୁଖକୁ ମୁହଁ କରି ମୋତେ ଜଳାଶୟ ନିକଟରେ ରଖ, ଯେପରିକି ମୃଦୁ ବାୟୁ ମୋତେ ସ୍ନେହସ୍ପର୍ଶ ଦାନ କରିପାରେ ଏବଂ ମୋ ହୃଦୟ ଦୁଃଖ କବଳରୁ ମୁକ୍ତ ପାଇ ସଜୀବ ହୋଇପାରେ ।'*

କ୍ୟାଲ୍‌ଡିୟାବାସୀମାନେ ମୃତ୍ୟୁ ପରେ ଆତ୍ମାର ସ୍ୱରୂପ ସମ୍ବନ୍ଧରେ ମିଶରୀୟମାନଙ୍କ ଭଳି ଏତେ ଚିନ୍ତା ନ କଲେ ମଧ୍ୟ ସେମାନଙ୍କ ମତରେ ଆତ୍ମାକୁ ଦେହ ଉପରେ ନିର୍ଭରଶୀଳ ଦ୍ୱିତୀୟ ବସ୍ତୁ ହିସାବରେ ଗ୍ରହଣ କରାହୁଏ, ଏବଂ ଏହି ଆତ୍ମା କବରସ୍ଥାନ ସହିତ ଜଡ଼ିତ । ସେମାନେ ମଧ୍ୟ ଏହି ଦେହ-ନିରପେକ୍ଷ କୌଣସି ଅବସ୍ଥାର କଥା ଚିନ୍ତା କରିପାରି ନାହାନ୍ତି ଏବଂ ଆଶାପୋଷଣ କରନ୍ତି ଯେ, ମୃତ ଦେହ ପୁନର୍ଜ୍ଜୀବିତ ହେବ । ଯଦିଓ ଦେବୀ ଇଷ୍ଟାର ନାନା ବିପଦ ଆପଦ ଓ ରୋମାଞ୍ଚକର ଅଭିଯାନ ପରେ ଇୟା ଓ ଦମକିନାର ପୁତ୍ର—ତାଙ୍କର ମେଷପାଳକ ସ୍ୱାମୀ ଦମୁଜଙ୍କୁ ପୁନର୍ଜ୍ଜୀବିତ କରିପାରିଥିଲେ, ତଥାପି 'ଅତି ଧର୍ମପ୍ରାଣ ଏବଂ ଭକ୍ତିପରାୟଣ ବ୍ୟକ୍ତିମାନେ ମଧ୍ୟ ସେମାନଙ୍କର ପ୍ରିୟଜନମାନଙ୍କର ପୁନରୁଜ୍ଜୀବନ ପାଇଁ ଏକ ଦେବାଳୟରୁ ଅନ୍ୟ ଦେବାଳୟରେ ବୃଥାରେ କାତର ଆବେଦନ ଜଣାଇଥିଲେ ।'

ଏହିପରି ଆମେମାନେ ଦେଖିବାକୁ ପାଉଁ ପ୍ରାଚୀନ ମିଶରୀୟ ବା କ୍ୟାଲ୍‌ଡିୟାବାସୀମାନେ ମୃତ ବ୍ୟକ୍ତିଙ୍କର ଶବ ଦେହରୁ କିମ୍ବା କବର ସ୍ଥାନରୁ ସମ୍ପୂର୍ଣ୍ଣ ପୃଥକ୍ ଭାବରେ ଆତ୍ମା ସମ୍ପର୍କରେ କେବେହେଲେ ଧାରଣାକରିବାକୁ ସକ୍ଷମ ହୋଇନାହାନ୍ତି । ସବୁଦିଗରୁ ବିବେଚନା କଲେ ଏହି ପାର୍ଥିବ ଜୀବନ ହିଁ ସର୍ବୋତ୍ତମ ଏବଂ ମୃତ ବ୍ୟକ୍ତି ସର୍ବଦା ଆଉଥରେ ଏହାକୁ ପାଇବାର ସୁଯୋଗ ପାଇଁ ଲାଳାୟିତ ଏବଂ ଯେଉଁମାନେ ଜୀବିତ ସେମାନେ ମଧ୍ୟ ଦେହ ଉପରେ ନିର୍ଭରଶୀଳ ଓ ଦୁଃଖପୀଡ଼ିତ ଏହି

* ପ୍ରାଚୀନ ଲେଖାରୁ ମ୍ୟାସ୍‌ପେରୋଙ୍କଦ୍ୱାରା ଫରାସୀରେ, ବ୍ରୁଗ୍‌ଶଙ୍କଦ୍ୱାରା ଜର୍ମାନଭାଷାରେ ଅନୂଦିତ ।

ଦ୍ୱିତୀୟତଃ ଆତ୍ମାମାନଙ୍କର ଅବସ୍ଥିତିକାଳ ବୃଦ୍ଧି କରିବା ପାଇଁ ଗଭୀର ଆଶାପୋଷଣ କରୁଥିଲେ ଏବଂ ସେମାନଙ୍କର ସାହାଯ୍ୟ ପାଇଁ ଯଥାସାଧ୍ୟ ଯତ୍ନ କରୁଥିଲେ ।

ଏହିପରି ପରିବେଶରେ ଆତ୍ମା ସମ୍ପର୍କରେ ଉଚ୍ଚତର ଜ୍ଞାନର ଉଦ୍ଭବ ସମ୍ଭବ ନୁହେଁ । ପ୍ରଥମତଃ, ଏହି ଧାରଣା ଅତ୍ୟନ୍ତ ସ୍ଥୂଳ ଜଡ଼ବାଦୀ, ତଦୁପରି ଭୟ ଓ ଯନ୍ତ୍ରଣାପୂର୍ଣ୍ଣ । ଅସଂଖ୍ୟ ଅଶୁଭ ଶକ୍ତିଦ୍ୱାରା ତ୍ରସ୍ତ ହୋଇ ଓ ଏଗୁଡ଼ିକୁ ଏଡ଼ାଇ ଦିବାର ନୈରାଶ୍ୟଜନକ ଓ ଉଦ୍‌ବିଗ୍ନ ଚେଷ୍ଟାରେ, ଜୀବିତମାନଙ୍କର ଆତ୍ମା ମଧ୍ୟ ସେମାନଙ୍କର ଧାରଣା ଅନୁଯାୟୀ ମୃତମାନଙ୍କର ଆତ୍ମା ଭଳି ସାରା ପୃଥିବୀରେ ଘୂରି ବୁଲି ମଧ୍ୟ କୌଣସିମତେ ଗଳିତ ଶବ ଓ ଶବାଧାରର ବାହାରକୁ ଯାଇପାରୁନାହିଁ ।

ବର୍ତ୍ତମାନ ଆମମାନଙ୍କୁ ଆତ୍ମା ସମ୍ବନ୍ଧରେ ଉଚ୍ଚତର ଧାରଣାର ମୂଳ ଆବିଷ୍କାର ପାଇଁ ଅନ୍ୟ ଗୋଟିଏ ଜାତି ପ୍ରତି ଦୃଷ୍ଟିପାତ କରିବାକୁ ହେବ, ଯେଉଁମାନଙ୍କ ନିକଟରେ ଈଶ୍ୱର ସର୍ବକରୁଣାନିଳୟ ସର୍ବବ୍ୟାପୀ ପୁରୁଷ, ଯେଉଁମାନଙ୍କ ନିକଟରେ ସେ ଜ୍ୟୋତିର୍ମୟ ଦୟାଳୁ ଓ ସହାୟକ ବିଭିନ୍ନ ଦେବତା ମାଧ୍ୟମରେ ନିଜକୁ ପ୍ରକାଶ କରନ୍ତି; ମାନବଜାତି ମଧ୍ୟରେ ଯେଉଁମାନେ ସର୍ବାଗ୍ରେ ଈଶ୍ୱରଙ୍କୁ ପିତୃସମ୍ବୋଧନ କରି କହିଥିଲେ, 'ପିତା ଯେପରି ତାହାର ପ୍ରିୟ ପୁତ୍ରର ହସ୍ତ ଧାରଣ କରନ୍ତି, ଆପଣ ମଧ୍ୟ ସେହିପରି ମୋରୁ ହସ୍ତ ଧାରଣ କରନ୍ତୁ'; ଯେଉଁମାନଙ୍କ ନିକଟରେ ଜୀବନ ଥିଲା ଆଶାର ବସ୍ତୁ, ନୈରାଶ୍ୟର ନୁହେଁ, ଧର୍ମ ଯେଉଁମାନଙ୍କ ନିକଟରେ ଜୀବନର ପ୍ରମତ୍ତ ଉତ୍ତେଜନାର ଅବସରରେ ବେଦନାର୍ତ୍ତ ବ୍ୟକ୍ତିର ମୁଖରୁ ଅକସ୍ମାତ୍ ନିଃସୃତ କେତେକ ସବିରାମ ଆର୍ତ୍ତନାଦ ମାତ୍ର ନୁହେଁ, ବରଂ ଯେଉଁମାନଙ୍କର ଧାରଣାସମୂହ ଆମମାନଙ୍କ ନିକଟରେ ଶସ୍ୟକ୍ଷେତ୍ରର ସୁଗନ୍ଧ ଓ ବନାନୀର ସୌରଭରେ ଆମୋଦିତ ହୋଇଉଠେ; ଯେଉଁମାନଙ୍କର ସ୍ୱତଃସ୍ଫୂର୍ତ୍ତି ବାଧାହୀନ ଆନନ୍ଦପୂର୍ଣ୍ଣ ବନ୍ଦନାଗୀତି ଦିନମଣିର ପ୍ରଥମ କିରଣରେ ଉଦ୍ଭାସିତ ଓ ଏହି ଶୋଭାମୟୀ ଧରଣୀକୁ ଅଭିନନ୍ଦନ କରିବା ସମୟରେ ପକ୍ଷୀକଣ୍ଠରୁ ଯେପରି କାକଳି ନିଃସୃତ ହୁଏ, ତାହାର ସଦୃଶ ଆଜି ମଧ୍ୟ ଅଷ୍ଟସହସ୍ର ବର୍ଷ ଧରି ଆମମାନଙ୍କ ନିକଟରେ ଦିବ୍ୟଧାମର ନବୀନ ଆହ୍ୱାନଭଳି ଆସି ଉପସ୍ଥିତ ହୁଏ । ଆମେମାନେ ବର୍ତ୍ତମାନ ପ୍ରାଚୀନ ଆର୍ଯ୍ୟଜାତିର କଥା କହୁଅଛୁ ।

ଆର୍ଯ୍ୟଜାତିର ପ୍ରାଚୀନତମ ଗ୍ରନ୍ଥ ଋଗ୍‌ବେଦରେ ସେମାନଙ୍କର ପ୍ରାର୍ଥନାମନ୍ତ୍ର ଏହିପରି ଲିପିବଦ୍ଧ ଅଛି, 'ମୋତେ ସେହି ମୃତ୍ୟୁହୀନ ଅକ୍ଷୟ ଧାମରେ ସ୍ଥାନ ଦିଅ, ଯେଉଁଠାରେ ଦିବ୍ୟଲୋକର ଜ୍ୟୋତି ବିଦ୍ୟମାନ ଏବଂ ଯେଉଁଠାରେ ଚିରନ୍ତନ ଦୀପ୍ତି ଜାଜ୍ୱଲ୍ୟମାନ ।' 'ମୋତେ ସେହି ଧାମରେ ଅମର କରି ରଖ, ଯେଉଁଠାରେ ରାଜା ବିବସ୍ୱାନଙ୍କର ପୁତ୍ର ବାସକରନ୍ତି, ଯେଉଁଠାରେ ଦିବ୍ୟଧାମର ରହସ୍ୟାବୃତ ଅର୍ଗଳାଳୟ ବିଦ୍ୟମାନ ।' 'ମୋତେ ସେହି ଲୋକରେ ଅମର କରି ରଖ, ଯେଉଁଠି ସେମାନେ

ଆନନ୍ଦରେ ସଦ୍ଦିଚ୍ଛା ବିହାର କରନ୍ତି ।' 'ପୃଥିବୀ ଓ ଅନ୍ତରୀକ୍ଷର ଊର୍ଦ୍ଧ୍ୱରେ ସର୍ବାପେକ୍ଷା ଅନ୍ତରତମ ଯେଉଁ ତୃତୀୟ ଦ୍ୟୁଲୋକରେ ନିଖିଳବିଶ୍ୱ ଜ୍ୟୋତିର୍ମୟ ରୂପରେ ଅବସ୍ଥିତ ସେହି ଆନନ୍ଦଲୋକରେ ମୋତେ ଅମର କରି ରଖ ।'

ବର୍ତ୍ତମାନ ଆମେମାନେ ଦେଖିପାରୁଛୁ ଯେ ଆର୍ଯ୍ୟଜାତି ଓ ମ୍ଲେଚ୍ଛମାନଙ୍କ ଧାରଣା ମଧ୍ୟରେ କିପରି ଆକାଶପାତାଳ ପ୍ରଭେଦ ବିଦ୍ୟମାନ । ଜଣକର ଦୃଷ୍ଟିରେ ଏହି ଦେହ ଓ ଏହି ପାର୍ଥିବ ଜଗତ ଏକମାତ୍ର ସତ୍ୟ ଓ କାମ୍ୟ ବସ୍ତୁ । ସେମାନେ ଏହି ବୃଥା ଆଶାପୋଷଣ କରନ୍ତି ଯେ, ମୃତ୍ୟୁକାଳରେ ଯେଉଁ ଜୀବନୀଶକ୍ତି ଦେହକୁ ଛାଡ଼ି ଚାଲିଯାଏ ଏବଂ ଇନ୍ଦ୍ରିୟସୁଖରୁ ବଞ୍ଚିତ ହୋଇ ନିର୍ଯ୍ୟାତନା ଓ ଦୁଃଖ ଅନୁଭବ କରେ, ମୃତଦେହକୁ ଯତ୍ନରେ ରକ୍ଷା କଲେ ଏହି ଜୀବନୀଶକ୍ତିକୁ ପୁନର୍ବାର ପୃଥିବୀକୁ ଫେରାଇ ଆଣିହୁଏ । ଏହିପରି ସେମାନଙ୍କ ନିକଟରେ ଜୀବନ୍ତ ବ୍ୟକ୍ତି ଅପେକ୍ଷା ମୃତ ଦେହ ଅଧିକତର ଯତ୍ନର ଅଧିକାରୀ ହୋଇପଡ଼ିଲା । ଅନ୍ୟଜଣଙ୍କ ଦୃଷ୍ଟିରେ ଜଡ଼ ଶରୀର ତ୍ୟାଗ କରି ଯାହା ପ୍ରସ୍ଥାନ କରେ, ତାହା ହିଁ ମାନବର ପ୍ରକୃତ ସତ୍ତା ଏବଂ ଶରୀରରୁ ବିଯୁକ୍ତ ହୋଇ ତାହା ଏପରି ଉଚ୍ଚରେ ସୁଖାନୁଭବର ସ୍ତରରେ ଉପସ୍ଥିତ ହୁଏ, ଯାହାକି ଶରୀରରେ ଅବସ୍ଥାନ କାଳରେ ସେ କେବେହେଲେ ପାଏ ନାହିଁ । ତେଣୁ ସେମାନେ ଧ୍ୱଂସୋନ୍ମୁଖ ଶବ ଦେହକୁ ଶୀଘ୍ର ଦଗ୍ଧ କରି ନଷ୍ଟ କରିଦେବାର ବ୍ୟବସ୍ଥା କଲେ ।

ଏଠାରେ ଆମେମାନେ ଏପରି ଗୋଟିଏ ଭାବର ଅଙ୍କୁର ଦେଖିବାକୁ ପାଉଛୁ, ଯେଉଁଥିରୁ ଆତ୍ମା ସମ୍ପର୍କରେ ସଠିକ ଧାରଣାର ଉଦ୍‌ଭବ ହୋଇପାରେ । ଯେଉଁ-ଠାରେ ପ୍ରକୃତ ମାନବକୁ କେବଳ ଶରୀର ନ ଭାବି ଆତ୍ମାରୂପରେ ଚିନ୍ତା କରାଯାଇଛି, ଯେଉଁଠାରେ ପ୍ରକୃତ ମାନବ ଓ ତାହାର ଶରୀର ମଧ୍ୟରେ ଅବିଚ୍ଛେଦ୍ୟ କୌଣସି ସମ୍ବନ୍ଧ ନାହିଁ—ସେଠାରେ ହିଁ ଆତ୍ମାର ମୁକ୍ତ ସମ୍ବନ୍ଧୀୟ ମହାନ୍ ଭାବର ଉଦ୍‌ଭବ ହୋଇଅଛି । ଏହି ସ୍ତରକୁ ଉଠି ଆର୍ଯ୍ୟଗଣଙ୍କର ଦୃଷ୍ଟି ଯେତେବେଳେ ମୃତ ବ୍ୟକ୍ତିର ଆବରଣଭୂତ ବସ୍ତ୍ରସଦୃଶ ଜ୍ୟୋତିର୍ମୟ ଦେହକୁ ଭେଦକରି ତଦତୀତ ସ୍ତରରେ ଉପନୀତ ହେଲା ଏବଂ ଆତ୍ମାର ନିରାକାର, ପୃଥକ୍, ସ୍ୱତନ୍ତ୍ର ସତ୍ତାର ପ୍ରକୃତ ତତ୍ତ୍ୱ ସେମାନେ ବୁଝିଲେ, ସେତେବେଳେ ପ୍ରଶ୍ନ ଉଠିଲା—'କେଉଁଠାରୁ ?'

ଏହି ଭାରତବର୍ଷର ଆର୍ଯ୍ୟମାନଙ୍କ ମଧ୍ୟରେ ଆତ୍ମାର ପୂର୍ବାସ୍ତିତ୍ୱର, ଅମରତ୍ୱର ଏବଂ ସ୍ୱାତନ୍ତ୍ର୍ୟର ଧାରଣା ପ୍ରଥମ ଉଦ୍‌ଭୂତ ହୁଏ । ପ୍ରାଚୀନ ମିଶର ସମ୍ପର୍କରେ ସମ୍ପ୍ରତି ଯେତେ ଗବେଷଣା ହୋଇଅଛି, ସେଥିରୁ ଏପରି କୌଣସି ପ୍ରମାଣ ମିଳେ ନାହିଁ ଯେ, ସେଠାରେ କୌଣସି କାଳରେ ସ୍ୱତନ୍ତ୍ର ସ୍ୱୟଂସମ୍ପୂର୍ଣ୍ଣ ଓ ପାର୍ଥିବ ଜୀବନ ଲାଭ ପୂର୍ବରୁ ବିଦ୍ୟମାନ ଆତ୍ମାର ଅସ୍ତିତ୍ୱ ସମ୍ବନ୍ଧରେ ସେମାନଙ୍କର କୌଣସି ଧାରଣା ଥିଲା । କୌଣସି କୌଣସି ରହସ୍ୟବିଦ୍ୟାବିଦ୍ ଅବଶ୍ୟ ଏହି ତତ୍ତ୍ୱର ଅଧିକାରୀ

ହୋଇଥିଲେ, କିନ୍ତୁ ଏହିସବୁ କ୍ଷେତ୍ରରେ ପ୍ରମାଣ ମିଳେ ଯେ, ଏହି ଭାବ ଭାରତବର୍ଷରୁ ଆସିଥିଲା ।

କାଲ୍ ହେକେଲ୍ କହନ୍ତି 'ମୁଁ ନିଃସନ୍ଦେହରେ ବିଶ୍ୱାସ କରେ ଯେ, ଯେତେ ଗଭୀର ଭାବରେ ମିଶରୀୟ ଧର୍ମ ଅନୁଧ୍ୟାନ କରାଯିବ, ସେତେ ଏହା ସ୍ପଷ୍ଟ ପ୍ରତୀୟମାନ ହେବ ଯେ, ମିଶରୀୟ ଜନସାଧାରଣ ଯେଉଁ ଧର୍ମର ଅନୁସରଣ କରୁଥିଲେ, ତାହା ସହିତ ପୁନର୍ଜନ୍ମବାଦର ବିନ୍ଦୁମାତ୍ର ସମ୍ବନ୍ଧ ନାହିଁ; ଏପରିକି ରହସ୍ୟବିଦ୍ୟାବିଦ୍ କେହି କେହି ଏହି ବିଦ୍ୟାର ଅଧିକାରୀ ହୋଇଥିଲେ ମଧ୍ୟ ଏହା ଓସିରିସ୍‌ଶିକ୍ଷାର ନିଜସ୍ୱ ବସ୍ତୁ ନୁହେଁ; ପ୍ରକୃତ ପକ୍ଷରେ ଏହା ହିନ୍ଦୁମାନଙ୍କ ନିକଟରୁ ପ୍ରାପ୍ତ ।'

ପରବର୍ତ୍ତୀ କାଳରେ ଦେଖାଯାଏ ଆଲେକ୍‌ଜାଣ୍ଡ୍ରିୟାର ଇହୁଦୀମାନେ ଏହି ମତବାଦରେ ବିଶ୍ୱାସୀ ହୋଇଅଛନ୍ତି ଯେ, ପ୍ରତ୍ୟେକ ଆତ୍ମାର ପୃଥକ୍ ସତ୍ତା ଅଛି, ଏବଂ ପୂର୍ବରୁ କୁହାଯାଇଛି ଯେ, ଯୀଶୁଙ୍କର ସମସାମୟିକ ଫାରିସୀମାନେ (ପ୍ରାଚୀନ ଆଭ୍ୟନ୍ତରୀଣ ଇହୁଦୀ ଧର୍ମସମ୍ପ୍ରଦାୟ) କେବଳ ଯେ ଆତ୍ମାର ସ୍ୱାତନ୍ତ୍ର୍ୟରେ ବିଶ୍ୱାସୀ ଥିଲେ ତାହା ନୁହେଁ, ସେମାନେ ଏହା ମଧ୍ୟ ବିଶ୍ୱାସ କରୁଥିଲେ ଯେ ଆତ୍ମା ବିଭିନ୍ନ ଶରୀରକୁ ଯାତାୟାତ କରେ । ଏହିପରି ସେମାନେ କିପରି ଭାବରେ ଯୀଶୁଙ୍କୁ ପ୍ରାଚୀନ ଏକ ମହାପୁରୁଷଙ୍କର ଅବତାର ବୋଲି ସ୍ୱୀକାର କରିଥିଲେ ଏବଂ ଯୀଶୁ ସ୍ୱୟଂ କିପରି ଘୋଷଣା କରିଥିଲେ ଯେ, ବ୍ୟାପ୍‌ଟିଷ୍ଟ ଜନଙ୍କ ଭିତରେ ମହାତ୍ମା ଇଲିୟାସ୍ ପୁନରାବିର୍ଭୂତ ହୋଇଅଛନ୍ତି, ଏହା ସହଜରେ ଅନୁମେୟ । 'ଯଦି ଆପଣମାନଙ୍କର ବୁଝିବା କ୍ଷମତା ଥାଏ, ତାହାହେଲେ ଜାଣିବେ, ଯେଉଁ ଇଲିୟସଙ୍କର ପୁନରାଗମନର କଥା ଥିଲା, ଇଏ ହେଉଛନ୍ତି ସେହି ।'*

ହିବ୍ରୁମାନଙ୍କ ମଧ୍ୟରେ ଆତ୍ମା ଓ ତାହାର ସ୍ୱାତନ୍ତ୍ର୍ୟ ସମ୍ପର୍କରେ ଯେଉଁ ଧାରଣାଗୁଡ଼ିକ ଦେଖିବାକୁ ମିଳେ, ସେଗୁଡ଼ିକ ନିଶ୍ଚୟ ହିଁ ଉଚ୍ଚତର ରହସ୍ୟବିଦ୍ୟାବିଦ୍ ମିଶରୀୟମାନଙ୍କ ନିକଟରୁ ଆସିଥିଲା ଏବଂ ମିଶରୀୟମାନେ ସେଗୁଡ଼ିକ ହିନ୍ଦୁମାନଙ୍କ ନିକଟରୁ ପାଇଥିଲେ । ଏଗୁଡ଼ିକ ଯେ ଆଲେକଜାଣ୍ଡ୍ରିୟା ମାଧ୍ୟମରେ ଆସିଅଛି, ତାହା ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ । କାରଣ ବୌଦ୍ଧମାନଙ୍କର ଲିପି ଓ ପୁସ୍ତକାଦିରୁ ଆଲେକ୍‌ଜାଣ୍ଡ୍ରିୟା ଏବଂ ଏସିଆମାଇନର୍‌ରେ ସେମାନଙ୍କର ପ୍ରଚାରକାର୍ଯ୍ୟର ସ୍ପଷ୍ଟ ପ୍ରମାଣ ମିଳେ ।

କଥିତ ଅଛି ଯେ, ଗ୍ରୀକ୍‌ମାନଙ୍କ ମଧ୍ୟରେ ପିଥାଗୋରାସ୍ ହିଁ ସର୍ବପ୍ରଥମେ ଗ୍ରୀକ୍‌ମାନଙ୍କ ନିକଟରେ ଆତ୍ମାର ପୁନର୍ଜନ୍ମବାଦ ପ୍ରଚାର କରିଥିଲେ । ଆର୍ଯ୍ୟଜାତି ଭାବରେ ଗ୍ରୀକ୍‌ମାନେ ଇତିପୂର୍ବେ ମୃତ ଦେହର ଅଗ୍ନିସତ୍କାର କରୁଥିଲେ ଏବଂ ପ୍ରତ୍ୟେକ ଆତ୍ମାର ସ୍ୱତନ୍ତ୍ର ଅସ୍ତିତ୍ୱରେ ବିଶ୍ୱାସ କରୁଥିଲେ । ଅତଏବ ପିଥାଗୋରାସ୍‌ଙ୍କର

* ମ୍ୟାଥ୍ୟୁ, ୧୧।୧୪

ଶିକ୍ଷାର ଅନ୍ତର୍ଗତ ପୁନର୍ଜନ୍ମବାଦକୁ ମାନିନେବା ସେମାନଙ୍କ ପକ୍ଷରେ ସହଜ ଥିଲା । ଏମ୍ପୁଲସ୍ଥାସ୍‌ଙ୍କ ମତରେ ପିଥାଗୋରାସ୍ ଭାରତକୁ ଆସି ବ୍ରାହ୍ମଣମାନଙ୍କ ନିକଟରେ ଶିକ୍ଷା ଲାଭ କରିଥିଲେ ।

ଏପର୍ଯ୍ୟନ୍ତ ଆମେମାନେ ଏତିକି ଜାଣିଅଛୁ ଯେ, ଯେଉଁଠାରେ ଆତ୍ମାକୁ କେବଳ ଶରୀରର ଚୈତନ୍ୟପ୍ରଦ ଅଂଶବିଶେଷ ନ କହି ତାହାର ସ୍ୱାତନ୍ତ୍ର୍ୟ ସ୍ୱୀକୃତ ହୋଇଅଛି ଏବଂ ଏହାକୁ ହିଁ ମନୁଷ୍ୟର ପ୍ରକୃତ ସ୍ୱରୂପ କୁହା ହୋଇଅଛି, ସେଠାରେ ଏହାର ପୂର୍ବାସ୍ତିତ୍ୱ ସମ୍ପର୍କରେ ବିଶ୍ୱାସ ଅପରିହାର୍ଯ୍ୟ ହୋଇଉଠିଛି; ଏବଂ ଆମେମାନେ ଏହା ମଧ୍ୟ ଜାଣିଅଛୁ, ଯେଉଁସବୁ ଜାତି ଆତ୍ମାର ସ୍ୱାଧୀନ ପୃଥକ୍ ସତ୍ତାରେ ବିଶ୍ୱାସ କରନ୍ତି ସେମାନେ ପ୍ରାୟ ସମସ୍ତେ ସେମାନଙ୍କର ମୃତ ଦେହ ଅଗ୍ନିରେ ଦଗ୍ଧ କରି ଏହି ବିଶ୍ୱାସର ବାହ୍ୟ ପ୍ରମାଣ ଦେଇଯାଇଅଛନ୍ତି । ଯଦିଓ ଆର୍ଯ୍ୟ ଜାତିମାନଙ୍କ ମଧ୍ୟରେ ପ୍ରାଚୀନ ପାରସୀକଗଣ ଇହୁଦୀମାନଙ୍କ ପ୍ରଭାବରୁ ମୁକ୍ତ ଥାଇ ମଧ୍ୟ ମୃତଦେହର ସତ୍କାର ପାଇଁ ଗୋଟିଏ ଅଦ୍ଭୁତ ପ୍ରଥା ଆବିଷ୍କାର କରିଥିଲେ, ତଥାପି ଯେଉଁ ନାମରେ ସେମାନେ ତାଙ୍କର 'ଟାୱାର୍ ଅଫ୍ ସାଇଲେନ୍‌ସ୍'*କୁ ଅଭିହିତ କରନ୍ତି, ସେଥିରୁ ଜଣାଯାଏ ଯେ ଏହା ଦହନାର୍ଥ 'ଦହ୍' ଧାତୁରୁ ନିଷ୍ପନ୍ନ ହୋଇଅଛି ।

ସଂକ୍ଷେପରେ କହିବାକୁ ଗଲେ ଯେଉଁସବୁ ଜାତି ମନୁଷ୍ୟର ସ୍ୱରୂପ ନିର୍ଦ୍ଧାରଣରେ ଅଧିକ ମନୋଯୋଗ ଦେଇ ନାହାନ୍ତି, ସେମାନେ ହିଁ ଜଡ଼ ଦେହକୁ ସର୍ବସ୍ୱ ବୋଲି ମନେ କରିଛନ୍ତି; ଏବଂ ଯଦିଓ କୌଣସି କୌଣସି ସମୟରେ ଅତୀନ୍ଦ୍ରିୟ ଜ୍ଞାନର ଆଲୋକରେ ସେମାନେ ଇନ୍ଦ୍ରିୟାତୀତ ଜଗତର କିଞ୍ଚିତ୍ ଆଭାସ ପାଇଅଛନ୍ତି, ତଥାପି ସେମାନେ କେବଳ ଏହି ସିଦ୍ଧାନ୍ତରେ ସନ୍ତୁଷ୍ଟ ହୋଇଅଛନ୍ତି ଯେ, ସୁଦୂର ଭବିଷ୍ୟତରେ କୌଣସି ପ୍ରକାରରେ ଏହି ଦେହ ଅବିନଶ୍ୱର ହେବ ।

ଅନ୍ୟ ପକ୍ଷରେ, ଯେଉଁ ଜାତି ମାନବକୁ ମନନଶୀଳ ଜୀବ ବୋଲି ଗଣ୍ୟ କରି ତାହାର ସ୍ୱରୂପର ଅନୁସନ୍ଧାନରେ ସମସ୍ତ ଶକ୍ତି ନିୟୋଜିତ କରିଥିଲା, ସେହି ଆର୍ଯ୍ୟ ହିନ୍ଦୁ-ଜାତି ଶୀଘ୍ର ହିଁ ଦେଖିବାକୁ ପାଇଲା ଯେ, ଏହି ଦେହକୁ ଅତିକ୍ରମ କରି ଏପରିକି ପିତୃପୁରୁଷମାନଙ୍କ ଆକାଙ୍‌କ୍ଷିତ ତେଜୋମୟ ଦେହକୁ ଅତିକ୍ରମ କରି, ପ୍ରକୃତ ମାନବସତ୍ତା ବିରାଜ କରୁଅଛି; ସେହି ମୂଳ ତତ୍ତ୍ୱ, ସେହି ଅବିଭାଜ୍ୟ ସ୍ୱତନ୍ତ୍ର ସତ୍ତା ହିଁ ନିଜକୁ ଏହି ଦେହଦ୍ୱାରା ଆବୃତ କରେ ଏବଂ ଜୀର୍ଣ୍ଣ ହେଲେ ଏହାକୁ ତ୍ୟାଗ କରେ । ଏହି ମୂଳ ତତ୍ତ୍ୱଟି କ'ଣ କୌଣସି ସୃଷ୍ଟ ପଦାର୍ଥ ? ଯଦି ସୃଷ୍ଟ କହିଲେ 'ଅଭାବ'ରୁ 'ଭାବ'ର ସୃଷ୍ଟି ବୁଝାଏ, ତାହା ହେଲେ ସେମାନଙ୍କର ନିଶ୍ଚିତ ଉତ୍ତର,

---

* ପାର୍ଶୀମାନଙ୍କର ମୃତ ଦେହ ଯେଉଁ ବେଦୀରେ ସ୍ଥାପନ କରି ପକ୍ଷୀମାନଙ୍କର ଆହାର ପାଇଁ ଊର୍ଦ୍ଧ୍ୱକୁ ଉତ୍ତୋଳିତ ହୁଏ, ତାହାକୁ Tower of Silence (ଦଖମ୍) କୁହାଯାଏ ।

'ତାହା ନୁହେଁ' । ଏହି ଆତ୍ମା ଜନ୍ମ ଓ ମୃତ୍ୟୁହୀନ, ଏହା ଯୌଗିକ ବା ମିଶ୍ରିତ ପଦାର୍ଥ ନୁହେଁ, କିନ୍ତୁ ସ୍ୱାଧୀନ ପୃଥକ୍ ସତ୍ତ୍ୱବାନ୍; ସେହି ହେତୁରୁ ତାହାକୁ ଉତ୍ପନ୍ନ କରାଯାଏ ନାହିଁ କି ଧ୍ୱଂସ କରାଯାଏ ନାହିଁ, ଏହା କେବଳ ବିଭିନ୍ନ ଅବସ୍ଥା ମଧ୍ୟରେ ପରିଭ୍ରମଣ କରେ ।

ସ୍ୱଭାବତଃ ପ୍ରଶ୍ନ ଉଠେ; ଇତିପୂର୍ବେ (ଦେହଗ୍ରହଣ ପୂର୍ବରୁ) ଆତ୍ମା କେଉଁଠି ଅବସ୍ଥାନ କରୁଥିଲା ? ହିନ୍ଦୁ ଦାର୍ଶନିକମାନେ କହନ୍ତି, ସ୍ଥୂଳଦୃଷ୍ଟିରେ ଦେଖିବାକୁ ଗଲେ ଏହା ନାନା ଦେହ ଅବଲମ୍ବନ କରି ପରିଭ୍ରମଣ କରୁଥିଲା; ଅଥବା ପ୍ରକୃତ ବା ଦାର୍ଶନିକ ଅର୍ଥରେ ଏହା ବିଭିନ୍ନ ମାନସିକ ସ୍ତର ଅତିକ୍ରମ କରୁଥିଲା ।

ବେଦ ଭିନ୍ନ ଏପରି ଅନ୍ୟ କୌଣସି ଯୁକ୍ତିସିଦ୍ଧ ଭିତ୍ତି ଅଛି କି, ଯାହା ଉପରେ ହିନ୍ଦୁ ଦାର୍ଶନିକମାନେ ସେମାନଙ୍କର ପୁନର୍ଜନ୍ମବାଦର ପ୍ରତିଷ୍ଠା କରିଅଛନ୍ତି ? ହଁ, ତାହା ଅଛି । ଆଶା କରେ, ଆମେମାନେ ପରେ ଦର୍ଶାଇପାରିବା ଯେ, ସର୍ବଜନଗ୍ରାହ୍ୟ ଯେ କୌଣସି ମତବାଦ ଭଳି ଏହାର ମଧ୍ୟ ସ୍ୱପକ୍ଷରେ ଯୁକ୍ତିସିଦ୍ଧ ପ୍ରମାଣ ଅଛି । କିନ୍ତୁ ସର୍ବାଗ୍ରେ ଆମେମାନେ ଦେଖିବା, ଆଧୁନିକ କାଳର କେତେକ ଶ୍ରେଷ୍ଠ ୟୁରୋପୀୟ ଚିନ୍ତାଶୀଳ ବ୍ୟକ୍ତି ପୁନର୍ଜନ୍ମ ସମ୍ବନ୍ଧରେ କିପରି ଚିନ୍ତା କରିଅଛନ୍ତି ।

ଫିଚ୍ଟେ ( I.H.Fichte ) ଆତ୍ମାର ଅମରତ୍ୱ ସମ୍ବନ୍ଧରେ ଆଲୋଚନା କରିବାକୁ ଯାଇ କହନ୍ତି :

'ଏହା ସତ୍ୟ ଯେ, ଆତ୍ମାର ସ୍ଥାୟିତ୍ୱର ଧାରଣା ଖଣ୍ଡନ ନିମିତ୍ତ ଗୋଟିଏ ପ୍ରାକୃତିକ ଦୃଷ୍ଟାନ୍ତ ଉଲ୍ଲେଖ କରାଯାଇପାରେ । ଏହା ସେହି ସର୍ବଜନବିଦିତ ଯୁକ୍ତି— ଅରେ ଯାହାର ଆରମ୍ଭ ହୋଇଅଛି, କୌଣସି ନା କୌଣସି କାଳରେ ତାହାର ଅବସାନ ମଧ୍ୟ ଘଟିବ; ଅତଏବ ଅତୀତରେ ଆତ୍ମାର ଅସ୍ତିତ୍ୱ ସ୍ୱୀକାର କଲେ ସଙ୍ଗେ-ସଙ୍ଗେ ଆତ୍ମାର ଭବିଷ୍ୟତ-ଅସ୍ତିତ୍ୱ ମଧ୍ୟ ସ୍ୱୀକାର କରିବାକୁ ହୁଏ । ଏହା ଅତ୍ୟନ୍ତ ନ୍ୟାୟସଙ୍ଗତ ସିଦ୍ଧାନ୍ତ । କିନ୍ତୁ ଏହା ଆତ୍ମାର ସ୍ଥାୟିତ୍ୱ ବିପକ୍ଷରେ ପ୍ରଯୋଜ୍ୟ ଯୁକ୍ତି ନ ହୋଇ ବରଂ ତାହା ସପକ୍ଷରେ ଗୋଟିଏ ଅତିରିକ୍ତ ଯୁକ୍ତି ବୋଲି ପରିଗଣିତ ହୋଇପାରେ । ବସ୍ତୁତଃ କେହି ଯଦି ଏହି ଅଧ୍ୟାତ୍ମ ଓ ଶରୀର ବିଦ୍ୟାର ଅନ୍ତର୍ଗତ ସ୍ୱତଃସିଦ୍ଧ ସତ୍ୟଟି ବୁଝିପାରନ୍ତି ଯେ, ପ୍ରକୃତ ପକ୍ଷରେ କୌଣସି ବସ୍ତୁର ସୃଷ୍ଟି ବା ଧ୍ୱଂସ ହୋଇପାରେ ନାହିଁ, ତାହା ହେଲେ ଏହି ସତ୍ୟ ମଧ୍ୟ ସେ ଧରିପାରିବେ ଯେ, ଏହି ସ୍ଥୂଳ ଶରୀରକୁ ଅବଲମ୍ବନ କରି ଦୃଶ୍ୟମାନ ହେବା ପୂର୍ବରୁ ଆତ୍ମା ବିଦ୍ୟମାନ ଥିଲା ।'

ଶୋପେନହାଓ୍ୱାର୍ (Schopenhaure) ତାଙ୍କର 'Die Welt als Wille Und Vorstellung' ନାମକ ଗ୍ରନ୍ଥରେ ପୁନର୍ଜନ୍ମବାଦ ସମ୍ପର୍କରେ କହି-ଛନ୍ତି : 'ବ୍ୟକ୍ତି ପକ୍ଷରେ ନିଦ୍ରା କହିଲେ ଯାହା ବୁଝାଏ, 'ଇଚ୍ଛାଶକ୍ତି' ପକ୍ଷରେ ମୃତ୍ୟୁ

କହିଲେ ମଧ୍ୟ ତାହା ହିଁ ବୁଝାଏ । କାରଣ ସ୍ବତନ୍ତ୍ରଶକ୍ତି ଓ ନିଜ ସ୍ୱାତନ୍ତ୍ର୍ୟ ଯଦି ସର୍ବଦା ଏହା ସହିତ ଲଗି ରହିଥାଆନ୍ତା, ତେବେ ପ୍ରକୃତ ଲାଭର ସମ୍ଭାବନା ନ ଥିଲେ ଇଚ୍ଛାଶକ୍ତି କଦାପି ଅନନ୍ତକାଳ ଧରି ଏକପ୍ରକାର କର୍ମାନୁଷ୍ଠାନ ଓ ଯନ୍ତ୍ରଣା ଭୋଗ କରିବା ପାଇଁ ରାଜି ରହନ୍ତା ନାହିଁ । କିନ୍ତୁ ଇଚ୍ଛାଶକ୍ତି ଏମାନଙ୍କୁ ଦୂରକୁ ଘୁଞ୍ଚାଇ ଦିଏ, ଏବଂ ଏହା ହିଁ ଲଥି-ନାମକ ବିସ୍ମରଣର ନଦୀ; ଏହି ମୃତ୍ୟୁରୂପକ ନିଦ୍ରା ଭିତର ଦେଇ ଇଚ୍ଛାଶକ୍ତି ପୁନର୍ବାର ଅନ୍ୟ ଗୋଟିଏ ନୂତନ ଧୀ-ଶକ୍ତିମଣ୍ଡିତ ହୋଇ ସମ୍ପୂର୍ଣ୍ଣ ଏକ ନୂତନ ଜୀବରୂପରେ ଆବିର୍ଭୂତ ହୁଏ; ସେତେବେଳେ ଏକ ନୂତନ ଦିନ ତାହାକୁ ଏକ ନବୀନ ତଟଭୂମି ଆଡ଼କୁ ପ୍ରଲୁବ୍ଧ କରେ । 'ଏହିରୂପେ ଦେଖାଯାଉଅଛି ଯେ, ଏହି ନିରନ୍ତର ଜନ୍ମପ୍ରବାହ ହିଁ କ୍ରମାନ୍ୱୟରେ ସେହି ଅବିନାଶୀ ଇଚ୍ଛାଶକ୍ତିର ଜୀବନ-ସ୍ୱପ୍ନଗୁଡ଼ିକ ରଚନା କରୁଥାଏ; ଏବଂ ଯେପର୍ଯ୍ୟନ୍ତ ନିର୍ଦ୍ଦିଷ୍ଟ ପରି-ମାଣ ଓ ନିର୍ଦ୍ଦିଷ୍ଟ ପ୍ରକାରର ବିଚିତ୍ର ଓ ନିତ୍ୟ ନୂତନ ଉପଦେଶ ଓ ଅଭିଜ୍ଞତାଲବ୍ଧ ଫଳରେ ଇଚ୍ଛାଶକ୍ତି ନିଜେ ହିଁ ନିଜର ବିଲୋପ ଓ ବିନାଶ ସାଧନ ନ କରେ, ସେତେ ଦିନ ଏହିପରି ଭାବରେ ଚାଲିଥାଏ ।···ଏହାକୁ ମଧ୍ୟ ଉପେକ୍ଷା କରାଯାଇପାରିବ ନାହିଁ ଯେ, ବ୍ୟାବହାରିକ ଅଭିଜ୍ଞତା-ପ୍ରସୂତ ଯୁକ୍ତି ମଧ୍ୟ ଏହି ପୁନର୍ଜନ୍ମକୁ ସମର୍ଥନ କରେ । ବସ୍ତୁତଃ ଯେଉଁମାନେ ଜୀର୍ଣ୍ଣ ହୋଇ ଦେହ ତ୍ୟାଗ କରିଅଛନ୍ତି, ସେମାନଙ୍କର ମୃତ୍ୟୁ ସହିତ ଯେଉଁମାନେ ନବାବିର୍ଭୂତ, ସେମାନଙ୍କର ଜନ୍ମର ଗୋଟିଏ ସମ୍ପର୍କ ଅଛି । ବ୍ୟାପକ ମହାମାରୀ ପରେ ମାନବଜାତି ମଧ୍ୟରେ ଶିଶୁଜନ୍ମର ଯେ ଆଧିକ୍ୟ ଦେଖାଯାଏ, ସେହିଥିରୁ ଏହା ପ୍ରମାଣିତ ହୁଏ । ଚତୁର୍ଦ୍ଦଶ ଶତାବ୍ଦୀରେ ପ୍ଲେଗ୍, ମହାମାରୀ (Black Death) ଫଳରେ ଯେତେବେଳେ ପୂର୍ବ ଗୋଲାର୍ଦ୍ଧର ଅଧିକାଂଶ ମନୁଷ୍ୟ ମୃତ୍ୟୁମୁଖରେ ପତିତ ହେଲେ, ସେତେବେଳେ ମାନବଜାତି ମଧ୍ୟରେ ଅସ୍ୱାଭାବିକ ଭାବରେ ସନ୍ତାନୋତ୍ପାଦିକା ଶକ୍ତି ବୃଦ୍ଧି ପାଇଥିଲା, ଏବଂ ପ୍ରାୟ ହିଁ ଯମଜଶିଶୁଙ୍କର ଜନ୍ମ ହେଉଥିଲା । ଏହା ମଧ୍ୟ ଲକ୍ଷଣୀୟ ଯେ, ଏହି ସମୟରେ ଯେଉଁସବୁ ଶିଶୁ ଜନ୍ମଗ୍ରହଣ କରିଥିଲେ, ସେମାନେ କେହି ପୂର୍ଣ୍ଣସଂଖ୍ୟକ ଦନ୍ତ ଲାଭ କରି ନ ଥିଲେ; ଏହିପରି ପ୍ରକୃତି ନିଜ ଶକ୍ତି ଯଥାସାଧ୍ୟ ପ୍ରୟୋଗ କରି ମଧ୍ୟ ପୂର୍ଣ୍ଣତା କ୍ଷେତ୍ରରେ କୃପଣତା ପ୍ରକାଶ କରିଥିଲା । ୧୮୨୫ ଖ୍ରୀ:ରେ ଲିଖିତ Chronik der Seuchen ନାମକ ଗ୍ରନ୍ଥରେ ଶ୍ନୁରର୍ (F. Schnurrer) ଏହାର ଉଲ୍ଲେଖ କରି-କରିଥିଲେ । କ୍ୟାସ୍ପାର୍ (Casper) ମଧ୍ୟ ୧୮୩୫ ଖ୍ରୀ:ରେ ଲିଖିତ Ueber die Wahrscheinliche Lebensdauer des Menschen ଗ୍ରନ୍ଥରେ ଏହି ପ୍ରାକୃତିକ ନିୟମ ସମର୍ଥନ କରିଛନ୍ତି ଯେ, ଯେକୌଣସି ଗୋଟିଏ ନିର୍ଦ୍ଦିଷ୍ଟ ଜନସମଷ୍ଟି ମଧ୍ୟରେ ଜନ୍ମସଂଖ୍ୟାର ହାର ତାର ମୃତ୍ୟୁସଂଖ୍ୟା ଓ ଆୟୁଷ୍କାଳର ହାର ଉପରେ ସୁନିଶ୍ଚିତ ପ୍ରଭାବ ବିସ୍ତାର କରିଥାଏ, କାରଣ ଜନ୍ମସଂଖ୍ୟା ସର୍ବଦା ମୃତ୍ୟୁହାର ସହିତ ସମତା ରକ୍ଷା କରେ; ଏହା ଫଳରେ ସର୍ବଦା ସର୍ବତ୍ର ମୃତ୍ୟୁ ଓ ଜନ୍ମ ସମାନ

ହାରରେ ବୃଦ୍ଧି ବା ହ୍ରାସ ପାଏ । ବିଭିନ୍ନ ଦେଶ ଏବଂ ଏମାନଙ୍କର ବିଭିନ୍ନ ଅଞ୍ଚଳରୁ ବହୁ ତଥ୍ୟ ସଂଗ୍ରହ କରି ସେ (କ୍ୟାସ୍‌ପାର୍) ସନ୍ଦେହାତୀତ ଭାବରେ ଏହା ପ୍ରମାଣ କରିଅଛନ୍ତି । ତଥାପି ଏହା ଅସମ୍ଭବ ଯେ, ମୋର ଅକାଲମୃତ୍ୟୁ ସହିତ ଏହିପରି ଗୋଟିଏ ବିବାହ ଯାହା ସହିତ ମୋର କୌଣସି ସମ୍ପର୍କ ନାହିଁ, ତାର ଫଳପ୍ରସୂତାର କୌଣସି ପ୍ରତ୍ୟକ୍ଷ ବା କାର୍ଯ୍ୟକାରଣାତ୍ମକ ସମ୍ପର୍କ ଥିବ; ଏହା ମଧ୍ୟ ଅସମ୍ଭବ ଯେ, ଏହି ବିବାହ ସହିତ ମୋ ମୃତ୍ୟୁର କୌଣସି ସମ୍ବନ୍ଧ ଥାଇପାରେ । ଏହିପରି ଏହି କ୍ଷେତ୍ରରେ ଅଧ୍ୟାତ୍ମ-ତତ୍ତ୍ୱ ଅନସ୍ୱୀକାର୍ଯ୍ୟ ଏବଂ ଅତ୍ୟନ୍ତ ବିସ୍ମୟକର ଭାବରେ ଜାଗତିକ ବିଷୟର ବ୍ୟାଖ୍ୟାର ପ୍ରତ୍ୟକ୍ଷ ଭିତ୍ତିରୂପରେ ପ୍ରତୀୟମାନ ହୁଏ । ପ୍ରତ୍ୟେକ ନବଜାତ ବ୍ୟକ୍ତି ସଜୀବତା ଓ ପ୍ରଫୁଲ୍ଲତା ନେଇ ନବଜୀବନରେ ଆବିର୍ଭୂତ ହୁଏ ଏବଂ ଏଗୁଡ଼ିକୁ ଉପଢୌକନ ଭଳି ଉପଭୋଗ କରେ; କିନ୍ତୁ ଜଗତରେ ବିନା ମୂଲ୍ୟରେ କିଛି ମିଳେ ନାହିଁ । ଏହି ନବୀନ ଜୀବନ ପାଇଁ ନିଃଶେଷିତ ଜୀବନର ବାର୍ଦ୍ଧକ୍ୟ ଓ ଜରାକୁ ଏହି ରୂପରେ ମୂଲ୍ୟ ଦେବାକୁ ହୁଏ । କିନ୍ତୁ ବାର୍ଦ୍ଧକ୍ୟର ଜୀବନ ମଧ୍ୟରେ ଏପରି ଏକ ଅବିନଶ୍ୱର ବୀଜ ନିହିତ ଥାଏ, ଯେଉଁଥିରୁ ନୂତନ ଜୀବନର ଉତ୍ପତ୍ତି ହୁଏ—ଉଭୟେ ଏକ ସତ୍ତା ।

ଶୂନ୍ୟବାଦରେ ବିଶ୍ୱାସୀ ହେଲେ ମଧ୍ୟ ସୁବିଖ୍ୟାତ ଇଂରେଜ ଦାର୍ଶନିକ ହ୍ୟୁମ୍ (Hume) ଅମୃତତ୍ୱ ବିଷୟରେ ସଂଶୟାତ୍ମକ ଏକ ପ୍ରବନ୍ଧରେ କହନ୍ତି: 'ଅତଏବ ଏହି ଜାତୀୟ ମତବାଦସମୂହ ମଧ୍ୟରେ ଏକମାତ୍ର ପୁନର୍ଜନ୍ମବାଦ ହିଁ ଦାର୍ଶନିକମାନଙ୍କର ପ୍ରଣିଧାନର ଯୋଗ୍ୟ ।' ଦାର୍ଶନିକ ଲେସିଙ୍ଗ (Lessing) କବିଜନୋଚିତ ଗଭୀର ଅନ୍ତର୍ଦୃଷ୍ଟି ସହ ପ୍ରଶ୍ନ କରିଅଛନ୍ତି: 'ଏକମାତ୍ର ପ୍ରାଚୀନତମତ୍ୱର ଦାବୀରେ ଏବଂ ସ୍ୱୀକୃତ ବିଭିନ୍ନ ଦାର୍ଶନିକ ମତବାଦର କୁତର୍କ ପ୍ରଭାବରେ ମନୁଷ୍ୟର ବୋଧଶକ୍ତି ଅତୀତ କାଳରେ କ୍ଷୀଣ ଓ ଦୁର୍ବଳ ହୋଇଯିବା ପୂର୍ବରୁ ସେହି ଅତୀତ କାଳରେ ଏହି ମତବାଦଟି ମନୁଷ୍ୟର ଅନୁଭୂତିକ୍ଷେତ୍ରରେ ଆବିର୍ଭୂତ ହୋଇଥିବାରୁ କଅଣ ଏହି ପୁନର୍ଜନ୍ମ ମତବାଦ ଏତେ ବେଶୀ ପରିହାସର ବିଷୟ ?...ମୁଁ ନୂତନ ଜ୍ଞାନ, ନୂତନ ଅଭିଜ୍ଞତା ସଂଗ୍ରହ କରିବାକୁ ସକ୍ଷମ ଥିବା ପର୍ଯ୍ୟନ୍ତ କାହିଁକି ମୁଁ ବାରମ୍ବାର ଫେରି ଆସିବି ନାହିଁ ? ଥରେ ଜନ୍ମଗ୍ରହଣ କରି କ'ଣ ମୁଁ ଏତେ ବେଶୀ ପାଇଯାଇଛି ଯେ, ଦ୍ୱିତୀୟ ଥର ଆଗମନର କ୍ଲେଶ ବଦଳରେ ମୋର ଆଉ କିଛି ହେଲେ ପାଇବାର ନ ଥିବ ?'

ପୂର୍ବରୁ ବିଦ୍ୟମାନ ସେହି ଏକ ଆତ୍ମା ବହୁ ଜୀବନରେ ବହୁବାର ପୁନର୍ଜନ୍ମ ଗ୍ରହଣ କରେ—ଏହିପରି ମତବାଦ ସପକ୍ଷରେ ଓ ବିପକ୍ଷରେ ବହୁ ଯୁକ୍ତି ରହିଅଛି ଏବଂ ସର୍ବକାଳରେ ହିଁ ଚିନ୍ତାନାୟକମାନଙ୍କ ମଧ୍ୟରେ ବହୁ ପ୍ରସିଦ୍ଧ ବ୍ୟକ୍ତି ଏହାର ସମର୍ଥନରେ ଅଗ୍ରସର ହୋଇଅଛନ୍ତି । ଆମେମାନେ ଯେତେଦୂର ବୁଝିପାରୁଛୁ

ସେଥିରୁ ମନେହୁଏ, ଆତ୍ମା ବୋଲି କୌଣସି ସ୍ୱତନ୍ତ୍ର ବସ୍ତୁ ଥିଲେ ଏହା ମଧ୍ୟ ଅନିବାର୍ଯ୍ୟ ଯେ ତାହା ପୂର୍ବରୁ ବିଦ୍ୟମାନ । ଆତ୍ମାର ସ୍ୱତନ୍ତ୍ର ସତ୍ତା ସ୍ୱୀକାର ନ କରି ଏହାକୁ 'ସ୍କନ୍ଧ'-(ଧାରଣା) ସମୂହର ସମଷ୍ଟି ବୋଲି ମାନିଲେ ମଧ୍ୟ ମାଧ୍ୟମିକ ବୌଦ୍ଧମାନଙ୍କୁ ନିଜ ନିଜର ମତବାଦ ବ୍ୟାଖ୍ୟା କରିବା ପାଇଁ ବାଧ୍ୟ ହୋଇ ଆତ୍ମାର ପୂର୍ବାସ୍ତିତ୍ୱ ସ୍ୱୀକାର କରିବାକୁ ହୋଇଥିଲା ।

ଯେଉଁ ଯୁକ୍ତିବଳରେ ପ୍ରମାଣ କରାହୁଏ ଯେ, କୌଣସି ଅସୀମ ବସ୍ତୁର ଆଦି ଥିବା ଅସମ୍ଭବ, ତାହା ଅକାଟ୍ୟ, ଯଦିଓ ଏହାର ଖଣ୍ଡନ ପାଇଁ ଯୁକ୍ତିବିରୁଦ୍ଧ ଏହି ମତର ଆଶ୍ରୟ ଗ୍ରହଣ କରାହୁଏ ଯେ, ଅନନ୍ତଶକ୍ତି ଭଗବାନଙ୍କ ପକ୍ଷରେ ଅସମ୍ଭବ ମଧ୍ୟ ସମ୍ଭବ ହୁଏ । ଦୁଃଖର ବିଷୟ ଏହି ଭ୍ରମାତ୍ମକ ଯୁକ୍ତି ବହୁ ଚିନ୍ତାଶୀଳ ବ୍ୟକ୍ତିଙ୍କ ମୁହଁରୁ ମଧ୍ୟ ଶୁଣିବାକୁ ମିଳେ ।

ପ୍ରଥମତଃ, ଯେହେତୁ ଈଶ୍ୱର ପ୍ରାକୃତିକ ସବୁ ବ୍ୟାପାରରେ ସାର୍ବଜନୀନ ଏବଂ ସାଧାରଣ କାରଣ, ଅତଏବ ମାନବାତ୍ମାର ନିଜ ଅନ୍ତରରେ ଯେଉଁସବୁ ବିଶେଷ ବିଶେଷ ଘଟଣା ଘଟିଥାଏ, ସେଗୁଡ଼ିକର ପ୍ରାକୃତିକ (ଅସାଧାରଣ) କାରଣର ଅନୁସନ୍ଧାନର ପ୍ରଶ୍ନ ଉଠୁଅଛି; ସେଥିପାଇଁ ଏ କ୍ଷେତ୍ରରେ ଭଗବାନ ଏହି ଜଗତରୂପକ ଯନ୍ତ୍ରର ନିର୍ମାତା (Deus ex machina)ଏହିଭଳି ମତବାଦ ସମ୍ପୂର୍ଣ୍ଣ ଅପ୍ରାସଙ୍ଗିକ । ଏହା ଅଜ୍ଞତାର ସ୍ୱୀକୃତି ବ୍ୟତୀତ ଆଉ କିଛି ନୁହେଁ, କାରଣ ମାନବୀୟ ଜ୍ଞାନର ପ୍ରତ୍ୟେକ ଶାଖାର ପ୍ରତ୍ୟେକ ପ୍ରଶ୍ନ ସମ୍ପର୍କରେ ଆମେମାନେ ଏହି ଧୋଟିକ ଉତ୍ତର ଦେଇ ଏହିପରି ସବୁପ୍ରକାରର ଅନୁସନ୍ଧିତ୍ସା ବନ୍ଦ କରିଦେଇପାରୁ ଓ ଫଳତଃ ଜ୍ଞାନର ପଥ ସମ୍ପୂର୍ଣ୍ଣ ରୁଦ୍ଧ କରିପାରୁ ।

ଦ୍ୱିତୀୟତଃ, ଏହିପରି ସର୍ବଦା ଈଶ୍ୱରଙ୍କର ସର୍ବଶକ୍ତିମତ୍ତାର ଦୁହାଇ ଦେବାର ଅର୍ଥ କେତେଗୁଡ଼ିଏ ଶବ୍ଦର ପ୍ରହେଳିକା ସୃଷ୍ଟି କରିବା ବ୍ୟତୀତ ଆଉ କିଛି ନୁହେଁ । କାରଣକୁ କାରଣରୂପରେ ଠିକ୍ ସେତିକିବେଳେ ଜଣାଯାଏ, ଯେତେବେଳେ ଏହି କାରଣଟି ତାହାର କାର୍ଯ୍ୟ-ଉତ୍ପାଦନ ପକ୍ଷରେ ପର୍ଯ୍ୟାପ୍ତ, ଏହା ଅପେକ୍ଷା ଅଧିକ ଆଉ କିଛି ନୁହେଁ । ଏହା ଫଳରେ ଆମେମାନେ ଏହି ସିଦ୍ଧାନ୍ତରେ ଉପସ୍ଥିତ ହେଉ-ଅଛୁ ଯେ, ଆମେମାନେ ଏକଦିଗରେ ଯେପରି ଅନନ୍ତ ଫଳର ଚିନ୍ତା କରିପାରୁ ନାହିଁ, ଅନ୍ୟ ଦିଗରେ ସେହିପରି ସର୍ବଶକ୍ତିମାନ କାରଣର ମଧ୍ୟ ଧାରଣା କରିପାରୁ ନାହିଁ । ଆହୁରି ମଧ୍ୟ ଦ୍ରଷ୍ଟବ୍ୟ ଏହି ଯେ, ଭଗବାନ ସମ୍ବନ୍ଧରେ ଆମମାନଙ୍କର ଧାରଣାସକଳ ସସୀମ; ତାହାଙ୍କୁ କାରଣ ବୋଲି ମାନିଲେ ମଧ୍ୟ ଏହି କାରଣଦ୍ୱାରା ଭଗବାନଙ୍କର ଧାରଣା ସୀମିତ ହୋଇପଡ଼େ । ତୃତୀୟତଃ, ଏହିଭଳି ଦୃଷ୍ଟିଭଙ୍ଗୀ ତର୍କଛଳରେ ମାନିନେଲେ ମଧ୍ୟ, ଆମେମାନେ ଅଧିକତର ଯୁକ୍ତିସଙ୍ଗତ ବ୍ୟାଖ୍ୟା ଦେଇ ନ ପାରୁଥିବା ପର୍ଯ୍ୟନ୍ତ, 'ଅଭାବରୁ ଭାବର ଉତ୍ପତ୍ତି ହୁଏ' ଅଥବା 'ଅସୀମ

ବସ୍ତୁର କୌଣସି ଏକ ସମୟରେ ଉତ୍ପତ୍ତି ହୋଇଥିଲା'—ଏଭଳି କୌଣସି ଅଯୌକ୍ତିକ ମତ ଆମେ ଗ୍ରହଣ କରିବା ପାଇଁ ବାଧ୍ୟ ନୋହୁଁ ।

ପୂର୍ବାସ୍ତିତ୍ୱ ବିରୋଧରେ ଏହି ଗୋଟିଏ ତଥାକଥିତ ଦୃଢ଼ ଯୁକ୍ତି ଉପସ୍ଥାପିତ କରାହୁଏ ଯେ, ଅଧିକାଂଶ ମନୁଷ୍ୟ ଏ ସମ୍ପର୍କରେ ସଚେତନ ନୁହନ୍ତି । ଏହି ଯୁକ୍ତିର ଉପସ୍ଥାପୟିତାଙ୍କୁ ଏହାର ସାରବତ୍ତା ପ୍ରଦର୍ଶନ ପାଇଁ ପ୍ରମାଣ କରିବାକୁ ହେବ ଯେ, ସମଗ୍ର ମାନବାତ୍ମାଟି କେବଳ ସ୍ମରଣ କାର୍ଯ୍ୟରେ ବ୍ୟାପୃତ ଥାଏ । କୌଣସି ଜିନିଷର ସ୍ମୃତି ଯଦି ତାହାର ଅସ୍ତିତ୍ୱର ପ୍ରମାଣ ହୁଏ, ତାହାହେଲେ ଜୀବନର ଯେଉଁ ଯେଉଁ ଅଂଶ ବର୍ତ୍ତମାନ ସ୍ମୃତିର ଅନ୍ତର୍ଭୁକ୍ତ ନୁହେଁ, ତାହାର ଅସ୍ତିତ୍ୱ ନିଶ୍ଚୟ ଲୋପ ପାଇଅଛି, ଏବଂ ଯେକୌଣସି ବ୍ୟକ୍ତି ଗଭୀର ମୂର୍ଚ୍ଛା କାଳରେ ବା ବିକାରର ଅନ୍ୟ କୌଣସି ଅବସ୍ଥାରେ ଯଦି ସ୍ମୃତିଶକ୍ତି ହରାଇ ପକାଏ, ସେ ସେତେବେଳେ ନିଶ୍ଚୟ ନିଜର ଅସ୍ତିତ୍ୱ ମଧ୍ୟ ହରାଇ ପକାଏ ।

ଆତ୍ମାର ପୂର୍ବାସ୍ତିତ୍ୱ ଅନୁମାନ କରିବା ପାଇଁ ବିଶେଷତଃ ସଚେତନ କାର୍ଯ୍ୟ-କଳାପର ସ୍ତରରେ ତାହାର ପ୍ରମାଣାର୍ଥେ ହିନ୍ଦୁ ଦାର୍ଶନିକମାନେ ଯେଉଁସବୁ ମୌଳିକ ସିଦ୍ଧାନ୍ତ ଉପସ୍ଥାପିତ କରନ୍ତି, ତାହା ପ୍ରଧାନତଃ ଏହିପରି :

ପ୍ରଥମତଃ, ଏହା ବ୍ୟତୀତ ଏହି ବୈଷମ୍ୟମୟ ଜଗତର ବ୍ୟାଖ୍ୟା କିପରି ସମ୍ଭବ ହେବ ? ଜଣେ ଦୟାଳୁ ଓ ନ୍ୟାୟବାନ୍ ଈଶ୍ୱରଙ୍କଦ୍ୱାରା ଅଧିଷ୍ଠିତ ରାଜ୍ୟରେ ସ୍ୱଭାବରେ ଗଢ଼ିଉଠିବା ପକ୍ଷରେ ପ୍ରୟୋଜନୀୟ ସମସ୍ତ ସୁଯୋଗ ମଧ୍ୟରେ ଗୋଟିଏ ଶିଶୁ ଜନ୍ମଗ୍ରହଣ କଲା, ଏବଂ ହୁଏତ ସେହି ମୁହୂର୍ତ୍ତରେ ସେହି ମହାନଗରୀରେ ଅନ୍ୟ ଗୋଟିଏ ଶିଶୁ ଏପରି ଅବସ୍ଥା ମଧ୍ୟରେ ଜନ୍ମଗ୍ରହଣ କଲା, ଯାହା ତାହାର ଭଲହୋଇ ଉଠିବା ପକ୍ଷରେ ପ୍ରତିକୂଳ । ଦେଖିବାକୁ ମିଳେ—ଏପରି ଶିଶୁ ମଧ୍ୟ ଜନ୍ମଗ୍ରହଣ କରେ, ଯିଏ କେବଳ କଷ୍ଟ ଭୋଗ କରେ, ହୁଏତ ସାରା ଜୀବନ କଷ୍ଟ ପାଏ, ଅଥଚ ଏଥିପାଇଁ ତାହାର କୌଣସି ଦୋଷ ନାହିଁ । ଏହିପରି କାହିଁକି ହେବ ? ଏହାର କାରଣ କଅଣ ? ଏହା କାହାର ଅଜ୍ଞତାପ୍ରସୂତ ? ଯଦି ଶିଶୁଟିର ଦୋଷ ନ ଥାଏ, ତାହାହେଲେ ସେ କାହିଁକି ତାହାର ପିତାମାତାଙ୍କ କର୍ମଫଳରୁ ଏହି କଷ୍ଟ ଭୋଗ କରିବ ? ବର୍ତ୍ତମାନ ଦୁଃଖର ଅନୁପାତରେ ଭବିଷ୍ୟତରେ ସୁଖ ଲାଭ ହେବ—ଏହି ପ୍ରଲୋଭନ ଦେଖାଇ ବା ରହସ୍ୟର ଅବତାରଣାକରି ପ୍ରଶ୍ନଟିକୁ ଏଡ଼ାଇଯିବା ଅପେକ୍ଷା ଅଜ୍ଞତା ସ୍ୱୀକାର କରିବା ଅନେକ ଭଲ । କାହାରି ପକ୍ଷରେ ଆମମାନଙ୍କ ଉପରେ ଅସଙ୍ଗତ କ୍ଲେଶଭାର ବଳପୂର୍ବକ ଲଦିଦେବା କେବଳ ଯେ ନୀତିବିଗର୍ହିତ ତାହା ନୁହେଁ, ବରଂ ତାହାକୁ ଅବିଚାର ମଧ୍ୟ କହିବା ଚଳେ; କେବଳ ସେତିକି ନୁହେଁ, ଭବିଷ୍ୟତରେ ଏହାର କ୍ଷତିପୂରଣ ହେବ—ଏହିଭଳି ମତବାଦଟି ମଧ୍ୟ ସମ୍ପୂର୍ଣ୍ଣ ଯୁକ୍ତି-ହୀନ ଓ ଦୁର୍ବଳ ।

ଯେଉଁମାନେ ଦୁଃଖ ମଧ୍ୟରେ ଜନ୍ମଗ୍ରହଣ କରନ୍ତି, ସେମାନଙ୍କ ମଧ୍ୟରେ କେତେଜଣ ଉଚ୍ଚତର ଜୀବନ ପାଇଁ ସଂଗ୍ରାମ କରନ୍ତି ? କେତେଜଣ ବା ଯେଉଁ ଅବସ୍ଥା ମଧ୍ୟରେ ଜନ୍ମଲାଭ କରିଅଛନ୍ତି, ସେଥିରେ ଆତ୍ମସମର୍ପଣ କରନ୍ତି ? ଯେଉଁମାନେ ବାଧ୍ୟ ହୋଇ ମନ୍ଦ ଅବସ୍ଥା ମଧ୍ୟରେ ଜନ୍ମଗ୍ରହଣ କରିବା ହେତୁ ଅଧିକତର ମନ୍ଦସ୍ୱଭାବ ଏବଂ ନୀତିହୀନ ହୋଇ ଉଠନ୍ତି, ସେମାନେ କ'ଣ ସେମାନଙ୍କର ଆଜୀବନ ନୀତିହୀନତା କାରଣରୁ ଭବିଷ୍ୟତରେ ପୁରସ୍କୃତ ହେବେ ? ସେ କ୍ଷେତ୍ରରେ ଯେ ଏଠାରେ ଯେତେ ଦୁର୍ବୃତ୍ତ ହେବ ଭବିଷ୍ୟତରେ ତାହାର ପୁରସ୍କାର ମଧ୍ୟ ସେତେ ଅଧିକ ହେବ ।

ସୁଖ-ଦୁଃଖ-ଭୋଗର ସମସ୍ତ ଦାୟିତ୍ୱ ଏହାର ନ୍ୟାୟସଙ୍ଗତ କାରଣ ଉପରେ ଅର୍ଥାତ୍ ଆମମାନଙ୍କର ସ୍ୱାଧୀନ କର୍ମ ବା କର୍ମଫଳ ଉପରେ ଆରୋପ ନ କଲେ ମାନବାତ୍ମାର ମହିମା ଓ ମୁକ୍ତଭାବ ପ୍ରମାଣ କରିବାର ଏବଂ ସଂସାରରେ ଏହି ବୈଷମ୍ୟ ଓ ଭୟାବହତାକୁ ଗ୍ରହଣ କରିବାର ଅନ୍ୟ କୌଣସି ଉପାୟ ନାହିଁ । କେବଳ ସେତିକି ନୁହେଁ, ଶୂନ୍ୟରୁ ଆତ୍ମା ସୃଷ୍ଟି ହେବା ବିଷୟରେ ସମସ୍ତ ମତବାଦ ଆମମାନଙ୍କୁ ଅନିବାର୍ଯ୍ୟ ରୂପରେ ଅଦୃଷ୍ଟବାଦରେ ବା ସବୁ ହିଁ ପୂର୍ବରୁ ସୁନିର୍ଦ୍ଦିଷ୍ଟ—ଏହି ଭଳି ମତବାଦକୁ ନେଇଯିବ, ଏବଂ ଏକ କରୁଣାମୟ ପିତାଙ୍କର ପରିବର୍ତ୍ତିରେ ଏକ ବିକଟ-ଦର୍ଶନ, ନିଷ୍ଠୁର ଏବଂ ସଦାକ୍ରୁଦ୍ଧ ଈଶ୍ୱରଙ୍କୁ ଆମମାନଙ୍କର ଉପାସ୍ୟ ରୂପରେ ଉପସ୍ଥିତ କରାଇବ । ଅଧିକନ୍ତୁ ଶୁଭାଶୁଭ ସାଧନରେ ଧର୍ମର ଯେଉଁ ଶକ୍ତି ଅଛି, ତାହା ଅନୁଧାବନ କଲେ ଦେଖିବାକୁ ମିଳେ ଯେ, 'ଆତ୍ମା ସୃଷ୍ଟ ବସ୍ତୁ'—ଏହି ମତବାଦ ଓ ତାହାର ଅନୁସିଦ୍ଧାନ୍ତ—ଅଦୃଷ୍ଟବାଦ ଓ ଈଶ୍ୱରକର୍ତ୍ତୃକ ଭାଗ୍ୟ ନିର୍ଦ୍ଧାରଣ —ଏସବୁ ଖ୍ରୀଷ୍ଟୀୟ ଓ ମୁସଲମାନ ଧର୍ମାବଲମ୍ବୀମାନଙ୍କ ମଧ୍ୟରେ ଅଧାର୍ମିକ ଓ ପୌତ୍ତଳିକମାନଙ୍କୁ ବିଧିସଙ୍ଗତ ଭାବରେ ସେମାନଙ୍କୁ ତରବାରିଦ୍ୱାରା ହତ୍ୟା କରିବାର ମନୋଭାବ ପାଇଁ ଦାୟୀ । ଆହୁରି ମଧ୍ୟ ଅତୀତରେ ଯେତେ ପ୍ରକାର ନିଷ୍ଠୁର ଅତ୍ୟାଚାର ହୋଇଅଛି ଏବଂ ବର୍ତ୍ତମାନ ମଧ୍ୟ ଚାଲିଅଛି, ସେଗୁଡ଼ିକ ପାଇଁ ଏହି ମତବାଦ ହିଁ ଦାୟୀ ।

କିନ୍ତୁ ନ୍ୟାୟଦର୍ଶନ ପ୍ରଣେତାମାନେ ପୁନର୍ଜନ୍ମ-ତତ୍ତ୍ୱର ସମର୍ଥନରେ ଯେଉଁ ଯୁକ୍ତିଟି ବହୁବାର ଉପସ୍ଥାପିତ କରିଅଛନ୍ତି ଏବଂ ଯାହା ଆମମାନଙ୍କ ଦୃଷ୍ଟିରେ ଏହି ପ୍ରସଙ୍ଗର ସିଦ୍ଧାନ୍ତ ବୋଲି ମନେହୁଏ, ତାହା ହେଉଛି, ଆମମାନଙ୍କର ଅଭିଜ୍ଞତା କଦାପି ହେଲେ ସମ୍ପୂର୍ଣ୍ଣ ବିଲୀନ ହୁଏ ନାହିଁ । ଆମମାନଙ୍କର କାର୍ଯ୍ୟକଲାପ (କର୍ମ) ଯଦିଓ ବାହ୍ୟତଃ ବିଲୁପ୍ତ ହୁଏ, ତଥାପି ଅଦୃଷ୍ଟରୂପରେ ବିଦ୍ୟମାନ ଥାଏ, ଏବଂ ପୁନର୍ବାର କାର୍ଯ୍ୟ ପାଇଁ ପ୍ରବୃତ୍ତି ଆକାରରେ ଆବିର୍ଭୂତ ହୁଏ । ଉଦାହରଣସ୍ୱରୂପ, ଶିଶୁ ମଧ୍ୟ କେତେଗୁଡ଼ିଏ ପ୍ରବୃତ୍ତି ନେଇ ଜନ୍ମ ଗ୍ରହଣ କରିଥାଏ, ଯଥା ମୃତ୍ୟୁଭୟ ।

ଯଦି ପ୍ରବୃତ୍ତିକୁ ବାରମ୍ବାର ଅନୁଷ୍ଠିତ କ୍ରିୟାକଳାପର ଫଳ ବୁଝାଯାଏ, ତାହା ହେଲେ ଯେଉଁସବୁ ପ୍ରବୃତ୍ତି ନେଇ ଆମେମାନେ ଜନ୍ମଗ୍ରହଣ କରୁ, ତାହାର ଅର୍ଥ ସେହି ଦୃଷ୍ଟିରୁ ବ୍ୟାଖ୍ୟା କରିବାକୁ ହେବ । ସ୍ପଷ୍ଟତଃ ଆମେମାନେ ଏଗୁଡ଼ିକ ଏହି ଜନ୍ମରେ ପାଇନାହୁଁ, ସୁତରାଂ ଅତୀତରେ ହିଁ ସେଗୁଡ଼ିକର ମୂଳ ଅନୁସନ୍ଧାନ କରିବାକୁ ହେବ । ବର୍ତ୍ତମାନ ଏହା ମଧ୍ୟ ସ୍ପଷ୍ଟ ଯେ, ଆମମାନଙ୍କର କେତେଗୁଡ଼ିଏ ପ୍ରବୃତ୍ତି ମନୁଷ୍ୟୋଚିତ ସଚେତନ ପ୍ରୟାସର ଫଳ । ଏହା ଯଦି ସତ୍ୟ ହୁଏ ଯେ, ଆମେମାନେ ଏହିସବୁ ପ୍ରବୃତ୍ତି ନେଇ ଜନ୍ମଗ୍ରହଣ କରିଅଛୁ, ତେବେ ଏହା ସ୍ପଷ୍ଟ ପ୍ରମାଣିତ ହୁଏ ଯେ, ଅତୀତର ସକଳ ସଚେତନ ପ୍ରୟାସ ହିଁ ଏହାର କାରଣ, ଅର୍ଥାତ୍ ଆମେମାନେ ଯାହାକୁ ମାନବୀୟ ସ୍ତର କହୁ, ବର୍ତ୍ତମାନ ଜନ୍ମର ପୂର୍ବେ ମଧ୍ୟ ଆମେମାନେ ସେହି ମାନବୋଚିତ ମାନସସ୍ତରରେ ଥିଲୁ ।

ଅନ୍ତତଃ ବର୍ତ୍ତମାନ ଜୀବନର ପ୍ରବୃତ୍ତିସମୂହକୁ ଅତୀତର ସଚେତନ ପ୍ରୟାସ ଦ୍ୱାରା ବ୍ୟାଖ୍ୟା କରିବାରେ ଭାରତର ପୁନର୍ଜନ୍ମବାଦୀମାନେ ଏବଂ ଆଧୁନିକ କ୍ରମବିକାଶ-ବାଦୀମାନେ ଏକମତ; ଏକମାତ୍ର ପାର୍ଥକ୍ୟ ଏହି ଯେ,ଯେଉଁଠାରେ ଅଧ୍ୟାତ୍ମବାଦୀ ହିନ୍ଦୁ-ମାନେ ଏଗୁଡ଼ିକୁ ସ୍ୱତନ୍ତ୍ର ଆତ୍ମାର ସଚେତନ ପ୍ରୟାସର ଫଳ ବୋଲି ବ୍ୟାଖ୍ୟା କରୁଥିବା ବେଳେ ଜଡ଼ବାଦୀ କ୍ରମବିକାଶବାଦୀମାନେ ଏଗୁଡ଼ିକ ବଂଶପରମ୍ପରାରେ ଦେହରୁ ଦେହାନ୍ତରକୁ ସଞ୍ଚାରଣ ବୋଲି ଅଭିହିତ କରନ୍ତି । ଯେଉଁ ମତବାଦୀମାନେ 'ଅଭାବ' ବା ଶୂନ୍ୟରୁ ସୃଷ୍ଟି ଉଦ୍ଭବ ବୋଲି ମନେକରନ୍ତି, ସେମାନଙ୍କର ସ୍ଥାନ କେଉଁଠାରେ ହେଲେ ନାହିଁ ।

ତାହାହେଲେ ଏହି ବିଷୟରେ ଦୁଇଟି ମାତ୍ର ଚିନ୍ତାଧାରା ଅଛି—ପୁନର୍ଜନ୍ମ-ବାଦ ଏବଂ ଜଡ଼ବାଦ; ଏଥିରୁ କୌଣସି ଗୋଟିଏ ଅବଲମ୍ବନ କରି ସିଦ୍ଧାନ୍ତ ସ୍ଥିର କରିବାକୁ ହେବ । ପୁନର୍ଜନ୍ମବାଦୀ କହନ୍ତି: ଅତୀତର ସମସ୍ତ ଅଭିଜ୍ଞତା ଅନୁଭବକର୍ତ୍ତା ମଧ୍ୟରେ, ଅର୍ଥାତ୍ ପ୍ରତ୍ୟେକ ପୃଥକ୍ ଆତ୍ମା ମଧ୍ୟରେ ପ୍ରବୃତ୍ତିରୂପରେ ସଞ୍ଚିତ ହୋଇ ଅଛି; ଏବଂ ପ୍ରତ୍ୟେକ ଆତ୍ମା ଯେତେବେଳେ ତାହାର ଅବିଚ୍ଛେଦ୍ୟ ପୃଥକ୍ ସତ୍ତା ନେଇ ନୂତନ ଜନ୍ମ ପରିଗ୍ରହଣ କରେ, ସେତେବେଳେ ଏହି ପ୍ରବୃତ୍ତିଗୁଡ଼ିକ ମଧ୍ୟ ସେଥିରେ ସଞ୍ଚାରିତ ହୁଏ । କିନ୍ତୁ ଜଡ଼ବାଦୀ କହନ୍ତି : ମନୁଷ୍ୟର ମସ୍ତିଷ୍କ ହିଁ ସମସ୍ତ କର୍ମର କର୍ତ୍ତା ଏବଂ ଜୀବକୋଷ ଅବଲମ୍ବନରେ ଏକ ବ୍ୟକ୍ତିରୁ ଅନ୍ୟ ବ୍ୟକ୍ତିକୁ (ପୁରୁଷାନୁକ୍ରମରେ) ସେହି ପ୍ରବୃତ୍ତିଗୁଡ଼ିକ ସଞ୍ଚାରିତ ହୁଏ ।

ଏହି ଭାବରେ ପୁନର୍ଜନ୍ମବାଦ ଆମମାନଙ୍କ ମନରେ ବିଶେଷ ଗୁରୁତ୍ୱ ନେଇ ଉପସ୍ଥିତ ହୁଏ, କାରଣ ଆତ୍ମାର ପୁନର୍ଜନ୍ମ ଓ ଦେହକୋଷ ଅବଲମ୍ବନଦ୍ୱାରା ପ୍ରବୃତ୍ତିର ସଞ୍ଚାରଣ ବିଷୟରେ ଯେଉଁ ବିବାଦ ଚାଲିଅଛି, ତାହା ପ୍ରକୃତ ପକ୍ଷରେ ଅଧ୍ୟାତ୍ମବାଦ ଓ ଜଡ଼ବାଦର ସଂଗ୍ରାମ । ଯଦି କୋଷ ମାଧ୍ୟମରେ ସଞ୍ଚାରଣ ହିଁ ସନ୍ତୋଷଜନକ

ବ୍ୟାଖ୍ୟା ହୁଏ, ତାହାହେଲେ ଜଡ଼ବାଦ ଅନିବାର୍ଯ୍ୟ ଏବଂ ଆତ୍ମତତ୍ତ୍ୱର କୌଣସି ପ୍ରୟୋଜନ ନାହିଁ । ଏହା ଯଦି ସନ୍ତୋଷଜନକ ବ୍ୟାଖ୍ୟା ନ ହୁଏ, ତାହାହେଲେ ପ୍ରତ୍ୟେକ ଆତ୍ମାର ଗୋଟିଏ ନିଜସ୍ୱ ସତ୍ତା ଅଛି ଏବଂ ଆତ୍ମା ତାହାର ବର୍ତ୍ତମାନ ଜୀବନକୁ ଅତୀତର ଅଭିଜ୍ଞତା ବହନ କରି ଆଣେ—ଏହି ମତଟି ସମ୍ପୂର୍ଣ୍ଣ ସତ୍ୟ । ଦୁଇଟି ବିକଳ୍ପ ଅଛି—ପୁନର୍ଜନ୍ମବାଦ ଓ ଜଡ଼ବାଦ; ଏହି ଉଭୟର ପରିବର୍ତ୍ତିରେ ଅନ୍ୟ କୌଣସି ମତବାଦ ଯୁକ୍ତିସମ୍ମତ ନୁହେଁ । ବର୍ତ୍ତମାନ କେଉଁଟି ଆମେମାନେ ଗ୍ରହଣ କରିବା ?

# ଆତ୍ମା କଅଣ ଅମର ?

[ The New York Morning Advertiser ପତ୍ରିକାରେ ଏ ବିଷୟରେ ଯେଉଁ ଆଲୋଚନା ହୁଏ, ସେଥିରେ ଯୋଗ ଦେଇ ସ୍ୱାମୀଜୀ ଏହି ପ୍ରବନ୍ଧ ଲେଖିଥିଲେ । ]

'ବିନାଶମବ୍ୟୟସ୍ୟାସ୍ୟ ନ କଶ୍ଚିତ୍ କର୍ତୁମର୍ହତି ।'—ଶ୍ରୀମଦ୍‌ଭଗବଦ୍‌ଗୀତା, ୨।୧୭

ସଂସ୍କୃତ ଭାଷାର ସୁପ୍ରସିଦ୍ଧ ମହାକାବ୍ୟ ମହାଭାରତରେ ବର୍ଣ୍ଣିତ ଅଛି—କିପରି (ବକରୂପୀ ଧର୍ମକର୍ତ୍ତୃକ ଜଗତର ଆଶ୍ଚର୍ଯ୍ୟତମ ବିଷୟ ସଂବନ୍ଧରେ ଜିଜ୍ଞାସିତ ହୋଇ ଏହି ମହାକାବ୍ୟର ନାୟକ ଯୁଧିଷ୍ଠିର କହିଥିଲେ : ଜଗତରେ ସର୍ବାପେକ୍ଷା ଆଶ୍ଚର୍ଯ୍ୟର ବିଷୟ ଏହି ଯେ—ଜୀବନର ପ୍ରାୟ ପ୍ରତି ମୁହୂର୍ତ୍ତରେ ଚାରିଆଡ଼େ ମୃତ୍ୟୁ ଘଟୁଥିବାର ଦେଖି ମଧ୍ୟ ମନୁଷ୍ୟର ଅଟଳ ବିଶ୍ୱାସ ଯେ ସେ ନିଜେ ମୃତ୍ୟୁହୀନ । ପ୍ରକୃତ ପକ୍ଷରେ ଏହା ହିଁ ମାନବ-ଜୀବନର ପ୍ରଚଣ୍ଡ ବିସ୍ମୟ । ବିଭିନ୍ନ ସମୟରେ ବିଭିନ୍ନ ଦର୍ଶନରେ ଏହାର ବିପକ୍ଷରେ ଅଶେଷ ପ୍ରକାର ଯୁକ୍ତି ପ୍ରଦର୍ଶିତ ହେଲେ ମଧ୍ୟ ଏବଂ ଇନ୍ଦ୍ରିୟଗତ ଓ ଇନ୍ଦ୍ରିୟାତୀତ ଜଗତ ମଧ୍ୟରେ ଚିରବିଦ୍ୟମାନ ରହସ୍ୟର ଯବନିକା ଯୁକ୍ତି ସହାୟରେ ଭେଦ କରିବା ପାଇଁ ଅକ୍ଷମ ହେଲେ ମଧ୍ୟ ମନୁଷ୍ୟ ଦୃଢ଼ ଧାରଣା କରି ବସିଅଛି ଯେ ସେ କଦାପି ହେଲେ ମରିବ ନାହିଁ ।

ଆମେମାନେ ସମଗ୍ର ଜୀବନବ୍ୟାପୀ ଅନୁଶୀଳନ କରିପାରୁ, ତଥାପି ଶେଷ ପର୍ଯ୍ୟନ୍ତ ଜନ୍ମମୃତ୍ୟୁର ସମସ୍ୟାଟିକୁ ଇତିବାଚକ ବା ନେତିବାଚକ କୌଣସି ଯୁକ୍ତିମୂଳକ ପ୍ରମାଣର ସ୍ତରରେ ଉପସ୍ଥାପିତ କରିବାକୁ କ୍ଷମ ନୋହୁଁ । ମାନବସତ୍ତାର ସ୍ଥାୟିତ୍ୱ ବା ଅନିତ୍ୟତା ସପକ୍ଷରେ ବା ବିପକ୍ଷରେ ଆମେମାନେ ଯେତେ ଖୁସୀ ଲେଖି, କହି, ପ୍ରଚାର କରି ଶିକ୍ଷା ଦେଇପାରୁ, ଏହାର ଯେ କୌଣସି ପକ୍ଷ ଅବଲମ୍ବନ କରି ଆମେମାନେ ପ୍ରଚଣ୍ଡ ବିରୋଧରେ ମତ୍ତ ହୋଇପାରୁ, ଏହାର ପୂର୍ବ ପୂର୍ବ ନାମ ଅପେକ୍ଷା ଅଜସ୍ର ଜଟିଳତର ନୂତନ ନୂତନ ନାମ ଆବିଷ୍କାର କରି ଆମେମାନେ କ୍ଷଣକାଳ ପାଇଁ ଆତ୍ମପ୍ରବଞ୍ଚନା ମଧ୍ୟରେ ଏହି ଶାନ୍ତି ଲଭ କରିପାରୁ ଯେ, ଆମେମାନେ ଚିରକାଳ ପାଇଁ ସମସ୍ୟାଟିର ସମାଧାନ କରି ପକାଇଛୁ; ଆମେମାନେ ପୂର୍ଣ୍ଣ ଉଦ୍ୟମରେ ଧର୍ମ-ରାଜ୍ୟର କୌଣସି ଗୋଟିଏ ଅଦ୍ଭୁତ କୁସଂସ୍କାରକୁ ଧରି ରଖିପାରୁ, ଅଥବା ଏହା ଅପେକ୍ଷା ମଧ୍ୟ ଅଧିକତର ଆପତ୍ତିଜନକ କୌଣସି ବୈଜ୍ଞାନିକ କୁସଂସ୍କାରକୁ ମାନି ନେଇପାରୁ । କିନ୍ତୁ ଅବଶେଷରେ ଦେଖିବାକୁ ପାଉ—ଆମେମାନେ ଯୁକ୍ତିରୂପକ ଏକ ସଂକୀର୍ଣ୍ଣ କ୍ରୀଡ଼ାକ୍ଷେତ୍ରରେ ଏପରି ଗୋଟିଏ ଅନନ୍ତ କନ୍ଦୁକ-କ୍ରୀଡ଼ାରେ ଲିପ୍ତ ରହିଅଛୁ, ଯେଉଁଥିରେ ବୁଦ୍ଧିରୂପକ ଖୁଣ୍ଟିଗୁଡ଼ିକୁ ବାରମ୍ବାର ପୋତିବା ସତ୍ତ୍ୱେ ପରକ୍ଷଣରେ ସେମାନେ କନ୍ଦୁକାଘାତରେ ଧରାଶାୟୀ ହେଉଛନ୍ତି ।

କିନ୍ତୁ ଏହି ଯେ ମାନସିକ ସ୍ତାପ ଓ ଯନ୍ତ୍ରଣା, ଯାହା ବହୁକ୍ଷେତ୍ରରେ କ୍ରୀଡ଼ା ଅପେକ୍ଷା ମଧ୍ୟ ଅଧିକତର ସଙ୍କଟ ଉତ୍ପନ୍ନ କରେ, ତାହାର ପଶ୍ଚାତ୍‌ରେ ଏପରି ଗୋଟିଏ ସତ୍ୟ ଅଛି, ଯାହା ସମ୍ବନ୍ଧରେ ବାଦବିସମ୍ବାଦ କରିବା ଚଳେ ନାହିଁ, ଯାହା ସମସ୍ତ ବିସମ୍ବାଦର ଅତୀତ । ଆଉ ଏହା ହିଁ ହେଲା ମହାସ୍ୱରତର ଉଲ୍ଲିଖିତ ସେହି ସତ୍ୟ—ସେହି ଅତ୍ୟାଶ୍ଚର୍ଯ୍ୟ ବ୍ୟାପାର ମନୁଷ୍ୟ ପକ୍ଷରେ ଧାରଣା କରିବା ଅସମ୍ଭବ ଯେ, ସେ ଶୂନ୍ୟରେ ବିଲୀନ ହୋଇଯିବ । ଏପରି କି ମୋର ନିଜର ବିନାଶ କଥା ଭାବିବାକୁ ଗଲେ ମଧ୍ୟ ମୋତେ ସାକ୍ଷୀରୂପରେ ଏକପାର୍ଶ୍ୱରେ ଛିଡ଼ା ହୋଇ ସେହି ବିନାଶ-କ୍ରିୟାଟିକୁ ଦେଖିବାକୁ ହେବ ।

ବର୍ତ୍ତମାନ ଏହି ଅଦ୍ଭୁତ ଘଟନାର ଅର୍ଥ ବୁଝିବା ପୂର୍ବରୁ ଏହି ବିଷୟରେ ଅବହିତ ହେବା ଆବଶ୍ୟକ ଯେ, ସମଗ୍ର ଜଗତ ଏହି ତଥ୍ୟ ଉପରେ ପ୍ରତିଷ୍ଠିତ । ବହିର୍ଜଗତର ସତ୍ତା ଅପରିହାର୍ଯ୍ୟ ରୂପେ ଅନ୍ତର୍ଜଗତର ସତ୍ତା ସହିତ ବିଜଡ଼ିତ । ଏହି ଉଭୟ ସତ୍ତାର କୌଣସି ଗୋଟିକୁ ବାଦ ଦେଇ ଏବଂ ଅନ୍ୟଟିକୁ ସ୍ୱୀକାରକରି ଜଗତ ସମ୍ବନ୍ଧରେ ଯେକୌଣସି ମତବାଦ ଗଢ଼ି ତୋଳିଲେ ତାହା ଆପାତତଃ ଯେତେ ବିଶ୍ୱାସଯୋଗ୍ୟ ମନେ ହେଉ ନା କାହିଁକି ଏହି ମତବାଦର ସ୍ରଷ୍ଟା ନିଜେ ଦେଖିବାକୁ ପାଇବେ, ଅନ୍ତର୍ଜଗତ ଓ ବହିର୍ଜଗତ—ଏହି ଉଭୟ ଜଗତର ସ୍ଥାୟିତ୍ୱକୁ ଯଦି ପ୍ରେରଣା-ଶକ୍ତିର ଅନ୍ୟତମ କାରଣ ରୂପରେ ସ୍ୱୀକାର କରା ନ ହୁଏ, ତେବେ ତାହାର ସ୍ୱକଳ୍ପିତ ପ୍ରକ୍ରିୟା ଅବଲମ୍ବନରେ ଗୋଟିଏ ହେଲେ ସଚେତନ କ୍ରିୟା ସମ୍ଭବ ନୁହେଁ । ଯଦିଓ ଏହା ସମ୍ପୂର୍ଣ୍ଣ ସତ୍ୟ ଯେ, ଯେତେବେଳେ ମାନବ-ମନ ନିଜର ସୀମାବଦ୍ଧ ଭାବ ଅତିକ୍ରମ କରେ, ସେତେବେଳେ ସେ ଦେଖେ—ଦ୍ୱୈତ ଜଗତ ଏକ ଅଖଣ୍ଡ ଏକତ୍ୱରେ ପରିଣତ ହୋଇଯାଇଅଛି, ତଥାପି ଏହି ନିରପେକ୍ଷ ସତ୍ତାକୁ ସେତେବେଳେ ମଧ୍ୟ ଇହଜଗତର ଦୃଷ୍ଟିରେ ଦେଖାହୁଏ ଏବଂ ସମଗ୍ର ଦୃଶ୍ୟ ଜଗତ—ଅର୍ଥାତ୍ ଆମମାନଙ୍କର ପରିଚିତ ଏହି ଜଗତ—ଜ୍ଞାତାର ଜ୍ଞେୟ ବିଷୟ ମାତ୍ର ହୋଇ ଜ୍ଞାତ ହୁଏ ଅଥବା ଜ୍ଞାତ ହୋଇପାରେ । ସୁତରାଂ ଏହି ଜ୍ଞାତାର ଧ୍ୱଂସ କଳ୍ପନା କରିବା ପୂର୍ବରୁ ଆମମାନଙ୍କୁ ବାଧ୍ୟ ହୋଇ ଜ୍ଞେୟ ବିଷୟର ଧ୍ୱଂସ କଳ୍ପନା କରିବାକୁ ହେବ ।

ଏପର୍ଯ୍ୟନ୍ତ ବୁଝିବା ଅତି ସହଜ । ଏହାପରେ ବିଷୟଟି କଠିନ ହୋଇ-ପଡ଼ୁଅଛି । ସାଧାରଣତଃ ଆମେମାନେ ନିଜ ନିଜକୁ ଶରୀର ବ୍ୟତୀତ ଅନ୍ୟ କିଛି ଭାବି ପାରୁନାହିଁ । ମୁଁ ଯେତେବେଳେ ନିଜକୁ ଅମର ବୋଲି ଭାବେ, ସେତେବେଳେ ମୁଁ କହିଲେ ଦେହରୂପୀ ମୋତେ ମୁଁ ଗ୍ରହଣ କରିଥାଏ; କିନ୍ତୁ ଶରୀର ଯେ ସମଗ୍ର ପ୍ରକୃତି ଭଳି ଅସ୍ଥାୟୀ ଏବଂ ସର୍ବଦା ବିନାଶ ଦିଗରେ ଅଗ୍ରସର ହେଉଅଛି, ଏହା ପ୍ରତ୍ୟକ୍ଷ ସତ୍ୟ ।

ତାହାହେଲେ ଏହି ସ୍ଥାୟିତ୍ୱର ସନ୍ଧାନ ଆମେ କେଉଁଠି ପାଇବୁ ? ଆମ-ମାନଙ୍କର ଜୀବନ ସହିତ ଏପରି ଗୋଟିଏ ଆଶ୍ଚର୍ଯ୍ୟ ବିଷୟର ସଂଯୋଗ ରହିଅଛି,

ଯେଉଁଟିକୁ ବାଦ୍ ଦେଲେ, 'କିଏ ବଞ୍ଚି ରହିପାରେ, କିଏ ଏକ ମୁହୂର୍ତ୍ତି ପାଇଁ ମଧ୍ୟ ଜୀବନରେ ଆନନ୍ଦ ଉପଭୋଗ କରିପାରେ ?'*—ଏହା ହିଁ ହେଲ ମୁକ୍ତିର ଆକାଙ୍କ୍ଷା ।

ଏହି ଆକାଙ୍କ୍ଷା ହିଁ ଆମମାନଙ୍କ ପ୍ରତି ପଦକ୍ଷେପକୁ ନିୟନ୍ତ୍ରିତ କରେ, ଆମମାନଙ୍କର ଗତିବିଧିକୁ ସମ୍ଭବ କରେ, ପରସ୍ପର ସହିତ ଆମମାନଙ୍କର ସମ୍ପର୍କ ନିର୍ଦ୍ଧାରଣ କରେ । କେବଳ ସେତିକି ନୁହେଁ, ଏହା ଯେପରି ମାନବଜୀବନରୂପକ ବସ୍ତ୍ରର ଟାଣି ଏବଂ ଭରଣି । ବୁଦ୍ଧିଲବ୍ଧ ଜ୍ଞାନ ଏହାକୁ ସମ୍ପୂର୍ଣ୍ଣ ଭାବରେ ନିଜ କ୍ଷେତ୍ରରୁ ଘୁଞ୍ଚାଇ ଦେବାକୁ ଚାହେଁ, ଏହାର ରାଜ୍ୟରୁ ଗୋଟିକ ପରେ ଗୋଟିଏ ଦୁର୍ଗ ଅଧିକାର କରିବାକୁ ଚାହେଁ ଏବଂ (ମନୁଷ୍ୟର) ପ୍ରତ୍ୟେକ ପଦକ୍ଷେପକୁ କାର୍ଯ୍ୟକାରଣରୂପକ ରେଲପଥର ଲୌହବନ୍ଧନରେ ଆବଦ୍ଧ କରେ । କିନ୍ତୁ ଆମମାନଙ୍କର ଏହିସବୁ ପ୍ରଚେଷ୍ଟା ଦେଖି ମୁକ୍ତି ହସିଉଠେ ଏବଂ ଆଶ୍ଚର୍ଯ୍ୟ, ମୁକ୍ତିକୁ ଯଦିଓ ଆମେମାନେ ଅସଂଖ୍ୟ ବିଧି ଓ କାର୍ଯ୍ୟକାରଣରୂପକ ନିୟମର ଚାପରେ ଶ୍ୱାସରୁଦ୍ଧ କରି ହତ୍ୟା କରିବାକୁ ଚାହିଁଥିଲୁ, ତଥାପି ସେ ବର୍ତ୍ତମାନ ମଧ୍ୟ ନିଜକୁ ଏଗୁଡ଼ିକର ଊର୍ଦ୍ଧ୍ୱରେ ରଖିପାରିଛି । ଏହାର ଅନ୍ୟଥା କି ସମ୍ଭବ ? ସସୀମ ଯଦି ନିଜର ଅର୍ଥ ପରିସ୍ଫୁଟ କରିବାକୁ ଚାହେଁ, ତାହାହେଲେ ସର୍ବଦା ତାହାକୁ ଅସୀମର ଉଚ୍ଚତର ବ୍ୟାପକ ଅର୍ଥରେ ଏହା କରିବାକୁ ହେବ । ବନ୍ଧକୁ କେବଳ ମୁକ୍ତ ଅବସ୍ଥାଦ୍ୱାରା ବ୍ୟାଖ୍ୟା କରାଯାଇପାରେ । ଯାହା କାର୍ଯ୍ୟରୂପରେ ପରିଣତ ହୋଇଅଛି, ତାହା ବ୍ୟାଖ୍ୟାତ ହୋଇପାରେ କାର୍ଯ୍ୟାତୀତ ବସ୍ତୁଦ୍ୱାରା । ଏଠାରେ ପୁଣି ସେହି ଅସୁବିଧା । ମୁକ୍ତ କିଏ —ଶରୀର ? ଅଥବା ମନ ? ଏହା ସମସ୍ତଙ୍କ ନିକଟରେ ସ୍ପଷ୍ଟ ଯେ ବିଶ୍ୱର ଅନ୍ୟାନ୍ୟ ଯେକୌଣସି ବସ୍ତୁ ଭଳି ଏହି ଦୁଇଟି ମଧ୍ୟ ନିୟମର ଅଧୀନ ।

ବର୍ତ୍ତମାନ ସମସ୍ୟାଟି ଗୋଟିଏ ଉଭୟ-ସଙ୍କଟର ଆକାର ଧାରଣ କରୁଅଛି । ହୁଏତ କୁହ, ସମଗ୍ର ବିଶ୍ୱ ଗୋଟିଏ ସଦା-ପରିବର୍ତ୍ତନଶୀଳ ଜଡ଼ସମଷ୍ଟି ବ୍ୟତୀତ ଆଉ କିଛି ନୁହେଁ; ଏହା କାର୍ଯ୍ୟ-କାରଣର ଅନିବାର୍ଯ୍ୟ ନିୟମରେ ଚିର ଆବଦ୍ଧ । ଏହାର ଗୋଟିଏ ହେଲେ କଣିକାର ମଧ୍ୟ କୌଣସି ସ୍ୱତନ୍ତ୍ର ସତ୍ତା ନାହିଁ; ଅଥଚ ଅଚିନ୍ତନୀୟ ରୂପରେ ଏହା ନିତ୍ୟତ୍ୱ ଓ ମୁକ୍ତିର ଏକ ଅବିଚ୍ଛେଦ୍ୟ ପ୍ରହେଳିକା ସୃଜନ କରି ଚାଲିଅଛି । ଅଥବା କୁହ, ଏହି ବିଶ୍ୱ ଓ ଆମମାନଙ୍କ ମଧ୍ୟରେ ଏପରି କିଛି ରହିଛି, ଯାହା ନିତ୍ୟ ଏବଂ ମୁକ୍ତ । ଫଳରେ ଏହା ହିଁ ପ୍ରତିପନ୍ନ ହୁଏ ଯେ, ମନୁଷ୍ୟ ମନରେ ନିତ୍ୟତ୍ୱ ଓ ମୁକ୍ତି ସମ୍ବନ୍ଧରେ ଯେଉଁ ସ୍ୱଭାବସିଦ୍ଧ ମୌଳିକ ବିଶ୍ୱାସ ରହିଅଛି, ତାହା ପ୍ରହେଳିକା ମାତ୍ର ନୁହେଁ । ବିଜ୍ଞାନର କର୍ତ୍ତବ୍ୟ ହେଲ ଉଚ୍ଚତର ସାମାନ୍ୟୀକରଣ ସାହାଯ୍ୟରେ ଜାଗତିକ ଘଟଣାଗୁଡ଼ିକୁ ବ୍ୟାଖ୍ୟା କରିବା । ସୁତରାଂ କୌଣସି ବ୍ୟାଖ୍ୟା କରିବା

---

* କୋ ହ୍ୟେବାନ୍ୟାତ୍ କଃ ପ୍ରାଣ୍ୟାତ୍ ।
ଯଦେଷ ଆକାଶ ଆନନ୍ଦୋ ନ ସ୍ୟାତ୍ ।—ତୈତ୍ତିରୀୟ ଉପ., ୨।୭

ସମସ୍ତରେ ଯଦି ଅନ୍ୟାନ୍ୟ ତଥ୍ୟ ସହିତ ସାମଞ୍ଜସ୍ୟରକ୍ଷା ଉଦ୍ଦେଶ୍ୟରେ ବ୍ୟାଖ୍ୟା ପାଇଁ ଉପସ୍ଥାପିତ ନୂତନ ତଥ୍ୟର ଅଂଶବିଶେଷକୁ ନଷ୍ଟ କରି ଦିଆହୁଏ, ତେବେ ସେହି ବ୍ୟାଖ୍ୟା ଆଉ ବିଜ୍ଞାନ-ସମ୍ମତ ହୋଇପାରେ ନାହିଁ ।

ଅତଏବ ଯେକୌଣସି ବ୍ୟାଖ୍ୟାରେ ଏହି ସଦା-ବିଦ୍ୟମାନ ଏବଂ ସର୍ବଦା-ଆବଶ୍ୟକ ମୁକ୍ତିର ଧାରଣାକୁ ଉପେକ୍ଷା କରାହୋଇଥାଏ, ତାହା ଉପରୋକ୍ତ ପ୍ରକାରେ ଭ୍ରାନ୍ତ । ଅର୍ଥାତ୍ ଅନ୍ୟ ତଥ୍ୟଗୁଡ଼ିକର ବ୍ୟାଖ୍ୟା ପାଇଁ ତାହା ନୂତନ ତଥ୍ୟର ଏକାଂଶକୁ ଅସ୍ୱୀକାର କରେ; ସୁତରାଂ ଏହା ଭ୍ରାନ୍ତ । ଅତଏବ ଆମମାନଙ୍କର ପ୍ରକୃତି ସହିତ ସାମଞ୍ଜସ୍ୟ ରଖି ଏକମାତ୍ର ବିକଳ୍ପକୁ ସ୍ୱୀକାର କରିବା ଚଳେ, ତାହା ଏହି ଯେ—ଆମମାନଙ୍କ ମଧ୍ୟରେ ଏପରି କିଛି ଅଛି, ଯାହା ମୁକ୍ତ ଏବଂ ନିତ୍ୟ ।

କିନ୍ତୁ ତାହା ଶରୀର ନୁହେଁ, ମନ ମଧ୍ୟ ନୁହେଁ, ଶରୀର ପ୍ରତି ମୁହୂର୍ତ୍ତରେ ମରୁଅଛି, ମନ ନିୟତ ପରିବର୍ତ୍ତନଶୀଳ । ଶରୀର ଗୋଟିଏ ଯୌଗିକ ପଦାର୍ଥ; ମନ ମଧ୍ୟ ତାହା; ଅତଏବ ସେମାନେ କେବେହେଲେ ପରିବର୍ତ୍ତନଶୀଳତାର ଊର୍ଦ୍ଧ୍ୱକୁ ଉଠିପାରନ୍ତି ନାହିଁ । କିନ୍ତୁ ଏହି ସ୍ଥୂଳ ଜଡ଼ବସ୍ତୁର କ୍ଷଣିକ ଆବରଣର ଊର୍ଦ୍ଧ୍ୱରେ, ଏପରିକି ମନର ସୂକ୍ଷ୍ମତର ଆବରଣର ଊର୍ଦ୍ଧ୍ୱରେ ମଧ୍ୟ ସେହି ଆତ୍ମା ବିରାଜମାନ, ଯାହା ମନୁଷ୍ୟର ପ୍ରକୃତ ସତ୍ତା, ଯାହା ଚିରସ୍ଥାୟୀ ଓ ଚିରମୁକ୍ତ । ତାହାର ହିଁ ମୁକ୍ତ ସ୍ୱଭାବ ମନୁଷ୍ୟର ଚିନ୍ତା ଏବଂ ବସ୍ତୁ ମଧ୍ୟଦେଇ ଅନୁସ୍ୟୂତ ହେଉଅଛି ଏବଂ ନାମରୂପର ପ୍ରଲେପ ସତ୍ତ୍ୱେ ସ୍ୱୀୟ ଶୃଙ୍ଖଳହୀନ ଅସ୍ତିତ୍ୱ ଘୋଷଣା କରୁଅଛି । ଅଜ୍ଞାନର ଘନୀଭୂତ ଆବରଣ ସତ୍ତ୍ୱେ ତାହାର ଅମରତ୍ୱ, ତାହାର ପରମାନନ୍ଦ, ତାହାର ଶାନ୍ତି ତାହାର ଐଶ୍ୱର୍ଯ୍ୟ ଉଦ୍ଭାସିତ ହୋଇ ସ୍ୱୀୟ ଅସ୍ତିତ୍ୱର ସାକ୍ଷ୍ୟ ଦେଉଅଛି । ଏହି ଭୟଶୂନ୍ୟ, ମୃତ୍ୟୁହୀନ, ମୁକ୍ତ ଆତ୍ମା ହିଁ ପ୍ରକୃତ ମନୁଷ୍ୟ ।

ଯେତେବେଳେ କୌଣସି ବହିଃଶକ୍ତି କୌଣସି ପ୍ରଭାବ ବିସ୍ତାର କରିପାରେ ନାହିଁ, କୌଣସି ପରିବର୍ତ୍ତନ ଘଟାଇପାରେ ନାହିଁ, ସେତିକିବେଳେ ସ୍ୱାଧୀନତା ବା ମୁକ୍ତି ସମ୍ଭବ । ମୁକ୍ତି କେବଳ ତାହାର ପକ୍ଷରେ ସମ୍ଭବ, ଯିଏ ସର୍ବପ୍ରକାର ବନ୍ଧନର —ସମସ୍ତ ନିୟମର ଏବଂ କାର୍ଯ୍ୟ-କାରଣରେ ନିୟନ୍ତ୍ରଣର ଅତୀତ । ଅର୍ଥାତ୍ ଅନ୍ୟ ପ୍ରକାରେ କହିବାକୁ ଗଲେ ବୁଝାଯାଏ, ଯିଏ ଅବିକାରୀ କେବଳ ସେ ମୁକ୍ତ ଏବଂ ଅମର । ମୁକ୍ତ, ଅବିକାରୀ ଓ ବନ୍ଧନହୀନ ଏହି ଜୀବାତ୍ମା, ଏହି ମାନବାତ୍ମା ହିଁ ମନୁଷ୍ୟର ପ୍ରକୃତ ସ୍ୱରୂପ । ଏହାର ଜନ୍ମ ନାହିଁ କିମ୍ବା ମୃତ୍ୟୁ ମଧ୍ୟ ନାହିଁ । 'ଏହି ମାନବାତ୍ମା ଅଜ, ଅମର, ଶାଶ୍ୱତ ଓ ସନାତନ ।'

# ଆତ୍ମା, ପ୍ରକୃତି ଓ ଈଶ୍ୱର

ବେଦାନ୍ତ ମତରେ ମନୁଷ୍ୟ ତିନୋଟି ପଦାର୍ଥରେ ନିର୍ମିତ । ବାହାରେ ଅଛି ଦେହ, ମନୁଷ୍ୟର ସ୍ଥୂଳ ରୂପ—ଚକ୍ଷୁ, କର୍ଣ୍ଣ, ନାସିକା ପ୍ରଭୃତି ସଂବେଦନର ଯନ୍ତ୍ର-ସମୂହ ଏହିଥିରେ ରହିଅଛି । ଏହି ଚକ୍ଷୁ ଦୃଷ୍ଟିର ଉତ୍ସ ନୁହେଁ, ଏହା ଯନ୍ତ୍ରମାତ୍ର, ଏହାର ଅନ୍ତରାଳରେ ଅଛି ପ୍ରକୃତ ଇନ୍ଦ୍ରିୟ । ସେହିପରି କର୍ଣ୍ଣ ମଧ୍ୟ ଶ୍ରବଣର ଇନ୍ଦ୍ରିୟ ନୁହେଁ, ଯନ୍ତ୍ରମାତ୍ର, ତାହାର ଅନ୍ତରାଳରେ ଅଛି ପ୍ରକୃତ ଇନ୍ଦ୍ରିୟ; ଆଧୁନିକ ଶରୀରବିଜ୍ଞାନର ଭାଷାରେ ତାହାକୁ ସ୍ନାୟୁ-କେନ୍ଦ୍ର କହନ୍ତି । ସଂସ୍କୃତରେ ଏଗୁଡ଼ିକୁ ଇନ୍ଦ୍ରିୟ କହନ୍ତି । ଯେଉଁ କେନ୍ଦ୍ର ଚକ୍ଷୁକୁ ପରିଚାଳିତ କରେ, ତାହା ଯଦି ନଷ୍ଟ ହୋଇଯାଏ, ତାହା ହେଲେ ଚକ୍ଷୁ ଆଉ ଦେଖିବାକୁ ପାଏ ନାହିଁ; ଅନ୍ୟାନ୍ୟ ଇନ୍ଦ୍ରିୟ ସମ୍ପର୍କରେ ମଧ୍ୟ ଏହା ସତ୍ୟ । ଇନ୍ଦ୍ରିୟଗୁଡ଼ିକ ପୁଣି ଯେତେବେଳଯାଏ ଅନ୍ୟ ଗୋଟିଏ ଜିନିଷ ସହିତ ଯୁକ୍ତ ନ ହୁଅନ୍ତି, ସେମାନେ କୌଣସି ବିଷୟ ସମ୍ପର୍କରେ ଅବହିତ ହୋଇପାରନ୍ତି ନାହିଁ । ସେହି ଆଉ ଗୋଟିଏ ଜିନିଷ ହେଲା ମନ । ଅନେକ ସମୟରେ ତୁମେମାନେ ଲକ୍ଷ୍ୟ କରିଥିବ, ଗୋଟିଏ ଚିନ୍ତାରେ ଗଭୀରଭାବରେ ମଗ୍ନ ଥିବା କାଳରେ ଘଣ୍ଟା ବାଜିଲେ ମଧ୍ୟ ତାହା ଶୁଣାଯାଏ ନାହିଁ । କାହିଁକି ? କାନ ତ ଥିଲା, ବାୟୁର କମ୍ପନ ମଧ୍ୟ ତାହା ଭିତରେ ପ୍ରବେଶ କରିଥିଲା ଏବଂ ମସ୍ତିଷ୍କ ଭିତରକୁ ତାହା ଯାଇଥିଲା, ତଥାପି ଶୁଣିବାକୁ ପାଇ ନାହୁଁ, କାରଣ ମନ ସେହି ଇନ୍ଦ୍ରିୟ ସହିତ ଯୁକ୍ତ ନଥିଲା —ସମସ୍ତ ବାହ୍ୟବସ୍ତୁର ଧାରଣା ସବୁ ଇନ୍ଦ୍ରିୟ ମାଧ୍ୟମରେ ହିଁ ଗୃହୀତ ହୋଇଥାଏ, ସେଗୁଡ଼ିକ ସହିତ ମନ ଯୁକ୍ତ ହୋଇ ଯେଉଁ ଭାବରେ ରୂପାୟିତ କରେ, ତାକୁ କହନ୍ତି ଅହଂକାର—'ମୁଁ' । ମନେକର, ମୁଁ ଯେତେବେଳେ ଗୋଟିଏ କାର୍ଯ୍ୟରେ ବ୍ୟସ୍ତ ଅଛି, ସେତେବେଳେ ଗୋଟିଏ ମଶା ମୋ ହାତରେ ବସିଲା । ମୁଁ ତାହା ବୁଝି ପାରିଲି ନାହିଁ, କାରଣ ମୋ' ମନ ସେତେବେଳେ ଅନ୍ୟ କୌଣସି ବିଷୟ ସହିତ ଯୁକ୍ତ ଥିଲା । ପରେ ଇନ୍ଦ୍ରିୟପ୍ରାପ୍ତ ଧାରଣା ସହିତ ଯେତେବେଳେ ମୋ ମନ ଯୁକ୍ତ ହେଲା, ସେତେବେଳେ ଗୋଟିଏ ପ୍ରତିକ୍ରିୟା ହେଲା । ସେହି ପ୍ରତିକ୍ରିୟା ଫଳରେ ମଶା ସମ୍ପର୍କରେ ମୁଁ ସଚେତନ ହେଲି । ସୁତରାଂ ଅଙ୍ଗସମୂହ ସହିତ ମନର ଯୋଗ ହେବା ଯଥେଷ୍ଟ ନୁହେଁ, ଇଚ୍ଛା ଆକାରରେ ତାହାର ପ୍ରତିକ୍ରିୟା ମଧ୍ୟ ପ୍ରୟୋଜନ । ମନର ଯେଉଁ ବୃତ୍ତିରୁ ଏହି ପ୍ରତିକ୍ରିୟା ଆସେ—ସେହି ଯେଉଁ ଜ୍ଞାନବୃତ୍ତି, ତାହାକୁ କହନ୍ତି 'ବୁଦ୍ଧି' । ପ୍ରଥମତଃ ବାହାରେ ଯନ୍ତ୍ର ଥିବା ଆବଶ୍ୟକ, ତାହାପରେ ଇନ୍ଦ୍ରିୟ, ତାହାପରେ ଇନ୍ଦ୍ରିୟ ସହିତ ମନ ଯୁକ୍ତ ହେବା ଆବଶ୍ୟକ । ତତ୍ପରେ ଆବଶ୍ୟକ ବୁଦ୍ଧିର ପ୍ରତିକ୍ରିୟା ଏବଂ ଯେବେ ଏହିଗୁଡ଼ିକ ସମ୍ପୂର୍ଣ୍ଣ ହେବ, ତତ୍କ୍ଷଣାତ୍ ଦେଖା

ଦେବ 'ମୁଁ ଏବଂ ବହିର୍ଜଗତର ବସ୍ତୁ'ର ଧାରଣା, ଅର୍ଥାତ୍ ଅନୁଭବ ବା ପ୍ରତ୍ୟକ୍ଷ-ଜ୍ଞାନ । ବହିରିନ୍ଦ୍ରିୟଙ୍କର ଅବସ୍ଥାନ ଦେହରେ; ତାହାପରେ ଅଛି ସୂକ୍ଷ୍ମତର ଅନ୍ତରେନ୍ଦ୍ରିୟ, ତାହାପରେ ମନ, ତାହାପରେ ବୁଦ୍ଧିବୃତ୍ତି, ତାହାପରେ ଅହଙ୍କାର ।* ଅହଙ୍କାର କହେ: 'ମୁଁ'—ମୁଁ ଦେଖେ, ମୁଁ ଶୁଣେ, ଇତ୍ୟାଦି । ସମସ୍ତ କର୍ମଧାରା କେତେକ ଶକ୍ତିଦ୍ୱାରା ପରିଚାଳିତ ହୁଏ; ସେମାନଙ୍କୁ ପ୍ରାଣଶକ୍ତି କହିପାର, ସଂସ୍କୃତରେ ସେମାନଙ୍କୁ କେବଳ 'ପ୍ରାଣ' କୁହାଯାଏ । ମନୁଷ୍ୟର ଏହି ସ୍ଥୂଳ ଅଂଶ, ଯେଉଁଥିରେ ବହିରିନ୍ଦ୍ରିୟସମୂହ ଅବସ୍ଥିତ, ତାହାକୁ କୁହାଯାଏ ସ୍ଥୂଳ ଦେହ ବା 'ସ୍ଥୂଳ ଶରୀର' । ତାହାପରେ ଆସେ ପ୍ରଥମେ ଇନ୍ଦ୍ରିୟ, ତାହାପରେ ମନ, ବୁଦ୍ଧି, ଅହଂକାର । ଏହି ସବୁ ଏବଂ ପ୍ରାଣଶକ୍ତିସମୂହ ମିଳି ଯେଉଁ ଯୌଗିକ ଦ୍ରବ୍ୟର ଗଠନ ହୁଏ, ତାହାକୁ କହନ୍ତି ସୂକ୍ଷ୍ମଦେହ ବା ସୂକ୍ଷ୍ମଶରୀର । ଏହି ଶକ୍ତିସମୂହ କେତେଗୁଡ଼ିଏ ସୂକ୍ଷ୍ମପଦାର୍ଥ ନେଇ ଗଠିତ, ସେଗୁଡ଼ିକ ଏତେ ସୂକ୍ଷ୍ମ ଯେ, ସ୍ଥୂଳ ଦେହର କୌଣସି କ୍ଷତି ସେଗୁଡ଼ିକୁ ଧ୍ୱଂସ କରିପାରେ ନାହିଁ; ଦେହର ସର୍ବପ୍ରକାର ଆଘାତକୁ ଅତିକ୍ରମ କରି ସେଗୁଡ଼ିକ ବଞ୍ଚିରହିଥାଏ । ଯେଉଁ ସ୍ଥୂଳ ଶରୀର ଆମେମାନେ ଦେଖିବାକୁ ପାଉ, ତାହା ସ୍ଥୂଳ ପଦାର୍ଥଦ୍ୱାରା ଗଠିତ, ତେଣୁ ତାହା ନିତ୍ୟ ପରିବର୍ତ୍ତିତ ହେଉଅଛି, କିନ୍ତୁ ଅନ୍ତରେନ୍ଦ୍ରିୟସମୂହ—ମନ, ବୁଦ୍ଧି ଓ ଅହଙ୍କାର—ସୂକ୍ଷ୍ମତମ ପଦାର୍ଥଦ୍ୱାରା ଗଠିତ, ସୁତରାଂ ଯୁଗ ଯୁଗ ଧରି ସେମାନେ ଅକ୍ଷୁଣ୍ଣ ରହିବେ । ସେଗୁଡ଼ିକ ଏତେ ସୂକ୍ଷ୍ମ ଯେ, କୌଣସି ବସ୍ତୁ ସେମାନଙ୍କୁ ବାଧା ଦେଇପାରେ ନାହିଁ; ଯେକୌଣସି ବାଧାକୁ ସେମାନେ ଅତିକ୍ରମ କରିପାରନ୍ତି । ସ୍ଥୂଳ ଦେହ ଯେପରି ଅଚେତନ, ସୂକ୍ଷ୍ମ ଦେହ ମଧ୍ୟ ତାହା, କାରଣ ତାହା ମଧ୍ୟ ସୂକ୍ଷ୍ମ ପଦାର୍ଥଦ୍ୱାରା ଗଠିତ । ଯଦିଓ ତାହାର ଏକ ଅଂଶକୁ କହନ୍ତି ମନ, ଅନ୍ୟ ଅଂଶକୁ ବୁଦ୍ଧି ଏବଂ ତୃତୀୟ ଅଂଶକୁ ଅହଙ୍କାର, ତଥାପି ଆମେମାନେ ବୁଝିପାରୁ ଯେ, ଏମାନଙ୍କ ମଧ୍ୟରୁ କେହି ହେଲେ 'ଜ୍ଞାତା' ହୋଇପାରନ୍ତି ନାହିଁ । ଏମାନେ କେହି ଅନୁଭବର କର୍ତ୍ତା ହୋଇପାରନ୍ତି ନାହିଁ; ସର୍ବକର୍ମର ସାକ୍ଷୀ ବା ସର୍ବକର୍ମର ଲକ୍ଷ୍ୟ ମଧ୍ୟ ହୋଇପାରନ୍ତି ନାହିଁ । ମନ, ବୁଦ୍ଧି ଏବଂ ଅହଙ୍କାର ଜନିତ ସମସ୍ତ ପ୍ରକ୍ରିୟା ନିଶ୍ଚୟ ଅନ୍ୟ କାହାଦ୍ୱାରା ନିୟନ୍ତ୍ରିତ । ଏହି ସକଳ ସୂକ୍ଷ୍ମ ପଦାର୍ଥଦ୍ୱାରା ଗଠିତ ବୋଲି କଦାପି ହେଲେ ସ୍ୱପ୍ରକାଶ ହୋଇ ନ ପାରେ । ଏଗୁଡ଼ିକର ଦୀପ୍ତି ନିଜସ୍ୱ ନୁହେଁ । ଦୃଷ୍ଟାନ୍ତ ସ୍ୱରୂପ କୁହାଯାଏ, ଏହି ଟେବୁଲଟିର ପ୍ରକାଶ କୌଣସି ବାହ୍ୟ ବସ୍ତୁ ପାଇଁ ହୋଇ ନ ପାରେ । ସୁତରାଂ ଏସବୁର ପଶ୍ଚାତରେ ନିଶ୍ଚୟ ଏପରି ଜଣେ ଅଛନ୍ତି, ଯିଏ ପ୍ରକୃତ ପ୍ରକାଶକ, ପ୍ରକୃତ ଦ୍ରଷ୍ଟା, ପ୍ରକୃତ ଭୋକ୍ତା; ସଂସ୍କୃତରେ ତାହାଙ୍କୁ କୁହାହୁଏ 'ଆତ୍ମା'—ମନୁଷ୍ୟର ଆତ୍ମା, ମନୁଷ୍ୟର ପ୍ରକୃତ ସ୍ୱରୂପ । ସେ ସବୁକିଛି ଦେଖନ୍ତି । ବାହାରର ଯନ୍ତ୍ର ଓ ଇନ୍ଦ୍ରିୟ-

* ଗୀତା, ୩।୪୨

ସମୂହ ଅନୁଭୂତିଗୁଡ଼ିକୁ ସଂଗ୍ରହ କରି ମନ ନିକଟକୁ ପ୍ରେରଣ କରନ୍ତି, ମନ ପ୍ରେରଣ କରେ ବୁଦ୍ଧି ନିକଟକୁ, ବୁଦ୍ଧିରେ ସେଗୁଡ଼ିକ ଦର୍ପଣ ଭଳି ପ୍ରତିଫଳିତ ହୁଏ। ତାହାର ପଶ୍ଚାତ୍‌ରେ ଅଛନ୍ତି ଆତ୍ମା, ଯିଏ ସେଗୁଡ଼ିକ ଉପରେ ଦୃଷ୍ଟିପାତ କରନ୍ତି ଏବଂ ତାଙ୍କର ଆଦେଶ ଦାନ କରନ୍ତି। ଏହିସବୁ ଯନ୍ତ୍ରର ଚାଳକ ସେ, ଗୃହର କର୍ତ୍ତା ମଧ୍ୟ ସେ, ସେ ଦେହ-ସିଂହାସନରେ ଉପବିଷ୍ଟ ରାଜା। ଅହଙ୍କାରବୃତ୍ତି, ବୁଦ୍ଧିବୃତ୍ତି, ଚିନ୍ତା-ବୃତ୍ତି, ଇନ୍ଦ୍ରିୟ ଓ ଯନ୍ତ୍ରସମୂହ, ସ୍ଥୂଳଦେହ—ସମସ୍ତେ ତାଙ୍କର ଆଦେଶ ପାଳନ କରନ୍ତି। ସେ ସମସ୍ତଙ୍କୁ ପ୍ରକାଶ କରୁଅଛନ୍ତି। ସେ ହିଁ ମନୁଷ୍ୟର ଆତ୍ମା। ବିଶ୍ୱର ଗୋଟିଏ କ୍ଷୁଦ୍ର ଅଂଶରେ ଯାହା ଅଛି, ସମଗ୍ର ବିଶ୍ୱରେ ମଧ୍ୟ ତାହା ଅଛି। ସାମଞ୍ଜସ୍ୟ ଯଦି ଏହି ବିଶ୍ୱର ବିଧାନ ହୁଏ, ତାହାହେଲେ ବିଶ୍ୱର ପ୍ରତିଟି ଅଂଶ ସାମଗ୍ରିକ ଭାବରେ ସେହି ଏକ ପରିକଳ୍ପନା ଅନୁସାରେ ନିର୍ମିତ। ସୁତରାଂ ଆମେମାନେ ସ୍ୱଭାବତଃ ମନେକରିପାରୁ ଯେ, ଯାହାକୁ ଆମେମାନେ ଏହି ବିଶ୍ୱ କହୁ, ତାହାର ସ୍ଥୂଳ ରୂପର ଅନ୍ତରାଳରେ ସୂକ୍ଷ୍ମତର ଉପାଦାନରେ ନିର୍ମିତ ଗୋଟିଏ ବିଶ୍ୱ ନିଶ୍ଚୟ ଅଛି। ତାହାକୁ ଆମେମାନେ କହୁ ମନନ ବା ଚିନ୍ତା। ତାହାର ଅନ୍ତରାଳରେ ଅଛନ୍ତି ଆତ୍ମା—ଯିଏ ଏହିସବୁ ଚିନ୍ତାକୁ ସମ୍ଭବ କରନ୍ତି, ଯିଏ ଆଦେଶ ଦିଅନ୍ତି, ଯିଏ ଏହି ବିଶ୍ୱ-ସିଂହାସନରେ ଅଧିଷ୍ଠିତ ରାଜା। ପ୍ରତ୍ୟେକ ମନ ଏବଂ ପ୍ରତ୍ୟେକ ଦେହର ଅନ୍ତରାଳରେ ଯେଉଁ ଆତ୍ମା ଅଛନ୍ତି, ତାହାଙ୍କୁ କହନ୍ତି ପ୍ରତ୍ୟଗାତ୍ମା—ଜୀବାତ୍ମା; ଏବଂ ବିଶ୍ୱର ଅନ୍ତରାଳରେ ଅବସ୍ଥିତ ଏହାର ଚାଳକ, ଶାସକ ଓ ନିୟାମକ ଯେଉଁ ଆତ୍ମା, ସେ ଈଶ୍ୱର।

ପରବର୍ତ୍ତୀ ବିବେଚ୍ୟ ବିଷୟ ହେଉଛି, ଏହିସବୁ ଜିନିଷ କେଉଁଠାରୁ ଆସିଲା? ଉତ୍ତର—'ଆସିଲା' କହିଲେ କଅଣ ବୁଝାଏ? ଯଦି ଏହାର ଏହି ଅର୍ଥ ହୁଏ ଯେ, ଶୂନ୍ୟରୁ କୌଣସି ସୃଷ୍ଟି କରାଯାଏ, ତେବେ ତାହା ଅସମ୍ଭବ। ଏହି ସୃଷ୍ଟି—ଏହି ପ୍ରକାଶ କଦାପି ହେଲେ ଶୂନ୍ୟରୁ ହୁଏ ନାହିଁ। କାରଣ ନ ଥିଲେ କୌଣସି କାର୍ଯ୍ୟ ହୁଏ ନାହିଁ। କାର୍ଯ୍ୟ କାରଣର ପୁନଃପ୍ରକାଶ। ଏହି ଗ୍ଲାସକୁ ନିଅ। ମନେକର—ଏହାକୁ ଆମେମାନେ ଖଣ୍ଡ ଖଣ୍ଡ କରି ଭାଙ୍ଗି ପକାଇଲୁ, ଚୂର୍ଣ୍ଣ କରିଲୁ ଏବଂ ରାସାୟନିକ ଦ୍ରବ୍ୟ ସାହାଯ୍ୟରେ ପ୍ରାୟ ଧ୍ୱଂସ କରିପକାଇଲୁ। ତାହାହେଲେ କଅଣ ଏହା ଶୂନ୍ୟକୁ ଫେରିଯିବ? ନିଶ୍ଚୟ ଏପରି ହୋଇପାରିବ ନାହିଁ। ଏହାର ଆକୃତିଟି ଭାଙ୍ଗିଯିବ, କିନ୍ତୁ ଯେଉଁ ଅଣୁଗୁଡ଼ିକଦ୍ୱାରା ଏହା ଗଠିତ, ସେଗୁଡ଼ିକ ଠିକ୍ ରହିବ; ସେଗୁଡ଼ିକ ଆମମାନଙ୍କ ଇନ୍ଦ୍ରିୟାନୁଭୂତିର ବାହାରକୁ ଚାଲିଯିବ ଠିକ୍, କିନ୍ତୁ ରହିବ, ଏବଂ ଏହା ମଧ୍ୟ ସମ୍ଭବ ଯେ ସେଗୁଡ଼ିକଦ୍ୱାରା ଆଉ ଗୋଟିଏ ଗ୍ଲାସ ନିର୍ମିତ ହୋଇ-ପାରିବ। ଗୋଟିଏ କ୍ଷେତ୍ରରେ ଯଦି ଏ କଥା ସତ୍ୟ ହୁଏ, ତାହାହେଲେ ସବୁ କ୍ଷେତ୍ରରେ ଏହା ସତ୍ୟ ହେବ। ଶୂନ୍ୟରୁ କିଛି ନିର୍ମାଣ କରାଯାଏ ନାହିଁ। ପୁଣି କୌଣସି

ପଦାର୍ଥକୁ ଶୂନ୍ୟରେ ପରିଣତ ମଧ୍ୟ କରିହୁଏ ନାହିଁ । ଏହା ସୂକ୍ଷ୍ମରୁ ସୂକ୍ଷ୍ମତର ହୋଇଥାଏ, ପୁଣି ସ୍ଥୂଳରୁ ସ୍ଥୂଳତର ମଧ୍ୟ ହୋଇଥାଏ । ବୃଷ୍ଟିବିନ୍ଦୁ ସମୁଦ୍ରରୁ ବାଷ୍ପାକାରରେ ଆସି ବାୟୁଦ୍ୱାରା ତାଡ଼ିତ ହୋଇ ପର୍ବତକୁ ଯାଏ; ସେଠାରୁ ପୁଣି ଜଳ ହୋଇ ଶତ ଶତ ମାଇଲ ପ୍ରବାହିତ ହୋଇ ସମୁଦ୍ର ନିକଟକୁ ଫେରିଆସେ । ବୀଜରୁ ବୃକ୍ଷ ଜନ୍ମଲାଭ କରେ । ବୃକ୍ଷଟି ମରିଯାଏ, ରହିଯାଏ କେବଳ ବୀଜ । ସେହି ବୀଜ ଆଉ ଗୋଟିଏ ବୃକ୍ଷରୂପରେ ଦେଖା ଦିଏ, ତାହା ପୁଣି ବୀଜରେ ପରିଣତ ହୋଇଥାଏ । ଏହିପରି ଭାବରେ ଚାଲେ । ଗୋଟିଏ ପକ୍ଷୀକୁ ଦେଖ । ଡିମ୍ବରୁ ଜନ୍ମ ହୋଇ କେଡ଼େ ସୁନ୍ଦର ଗୋଟିଏ ପକ୍ଷୀ ହୁଏ; ତାହାପରେ କେବଳ କେତେଗୁଡ଼ିଏ ଡିମ୍ବ ରଖି ମରିଯାଏ; ସେହି ଡିମ୍ବରେ ଥାଏ ଭବିଷ୍ୟତ ପକ୍ଷୀର ବୀଜକୋଷ; ଜନ୍ତୁ ଓ ମନୁଷ୍ୟ କ୍ଷେତ୍ରରେ ମଧ୍ୟ ଏହା ସତ୍ୟ । ସବୁକିଛି ଯେପରି ଆରମ୍ଭ ହୋଇଥାଏ କେତୋଟି ବୀଜ କେତୋଟି ମୂଳରୁ, କେତୋଟି ସୂକ୍ଷ୍ମ ଆକାରରୁ; ତାହା ଯେତେ ବଢ଼ୁଥାଏ ସେତେ ସ୍ଥୂଳରୁ ସ୍ଥୂଳତର ହେଉଥାଏ, କିନ୍ତୁ ପରେ ପୁଣି ସେହି ସୂକ୍ଷ୍ମ ଆକାରକୁ ଫେରିଯାଏ । ସାରା ବିଶ୍ୱ ଏହି ଭାବରେ ଚାଲୁଅଛି । ଏପରି ଏକ ସମୟ ଆସେ, ଯେତେବେଳେ ସମଗ୍ର ବିଶ୍ୱ ସୂକ୍ଷ୍ମରୁ ସୂକ୍ଷ୍ମତର ହୁଏ । ଅବଶେଷରେ ଯେପରି ସଂପୂର୍ଣ୍ଣ ଭାବରେ ଅଦୃଶ୍ୟ ହୋଇଯାଏ; କିନ୍ତୁ ତେବେ ସୁଦ୍ଧା ଅତି ସୂକ୍ଷ୍ମ ଭାବରେ ରହିଥାଏ । ଆଧୁନିକ ବିଜ୍ଞାନ ଓ ଜ୍ୟୋତିର୍ବିଦ୍ୟା ସାହାଯ୍ୟରେ ଆମେମାନେ ଜାଣିଅଛୁ ଯେ, ଏହି ପୃଥିବୀ କ୍ରମଶଃ ଶୀତଳ ହେଉଅଛି । ଏକ ସମୟରେ ପୃଥିବୀ ଅତ୍ୟନ୍ତ ଶୀତଳ ହୋଇଯିବ । ତାହାପରେ ଖଣ୍ଡ ଖଣ୍ଡ ହୋଇ ବିଭକ୍ତ ହୋଇ, ସୂକ୍ଷ୍ମରୁ ସୂକ୍ଷ୍ମତର ହୋଇ ହୋଇ ଶେଷ ପର୍ଯ୍ୟନ୍ତ ପୁନର୍ବାର ଈଥରରେ ପରିଣତ ହେବ । ତଥାପି ମୂଳ ଉପାଦାନ ସବୁ ରହିଥିବ ଏବଂ ସେଥିରୁ ଆଉ ଗୋଟିଏ ପୃଥିବୀ ବାହାର ହୋଇ ଆସିବ । ତାହା ମଧ୍ୟ ପୁଣି ଅଦୃଶ୍ୟ ହୋଇଯିବ ଏବଂ ନୂତନ ଗୋଟିଏ ପୃଥିବୀ ଦେଖା ଦେବ । ଏହି ବିଶ୍ୱ ମଧ୍ୟ ଏହାର ମୂଳ କାରଣକୁ ଫେରିଯିବ, ପୁଣି ତାହାର ଉପାଦାନଗୁଡ଼ିକ ଏକତ୍ର ହୋଇ ଗୋଟିଏ ଆକାର ଧାରଣ କରିବ; ଠିକ୍ ତରଙ୍ଗ ଯେପରି ନିମ୍ନକୁ ଅବତରଣ କରେ, ପୁଣି ଉପରକୁ ଉଠେ, ଏବଂ ଗୋଟିଏ ଆକାର ଧାରଣ କରେ । କାରଣକୁ ଫେରିଯିବା ଓ ପୁଣି ରୂପ ପରିଗ୍ରହ କରିବାକୁ ସଂସ୍କୃତରେ କହନ୍ତି 'ସଂକୋଚ' ଓ 'ବିକାଶ', ଅର୍ଥାତ୍ ସଂକୁଚିତ ହେବା ଏବଂ ପ୍ରସାରିତ ହେବା । ସମଗ୍ର ବିଶ୍ୱ ଯେପରି ସଂକୁଚିତ ହୁଏ ଓ ପରେ ପୁଣି ପ୍ରସାରିତ ହୁଏ । ଆଧୁନିକ ବିଜ୍ଞାନର ପ୍ରଚଳିତ ଭାଷାରେ କହିବାକୁ ଗଲେ ସବୁକିଛି କ୍ରମସଂକୁଚିତ ଓ କ୍ରମବିକଶିତ ହୁଏ । ତୁମେମାନେ ବିବର୍ତ୍ତନବାଦ ବା କ୍ରମବିକାଶବାଦର କଥା ଶୁଣିଅଛ । ଶୁଣିଥିବ କିପରି ଭାବରେ ସବୁକିଛି ନିମ୍ନତର ରୂପରୁ ଗଢ଼ିଉଠେ । ତାହା ଠିକ୍, କିନ୍ତୁ ପ୍ରତ୍ୟେକ ବିବର୍ତ୍ତନର ଗୋଟିଏ କ୍ରମସଂକୁଚିତ ପୂର୍ବାବସ୍ଥା ବା ଅନଭିବ୍ୟକ୍ତ ଅବସ୍ଥା ଅଛି । ଆମେମାନେ ଜାଣୁ, ଏହି ବିଶ୍ୱରେ ଯେଉଁ ଶକ୍ତିର କାର୍ଯ୍ୟ ଚାଲିଅଛି, ତାହାର

ମୋଟ ପରିମାଣ ସର୍ବଦା ସମାନ, ଗୋଟିଏ ପରମାଣୁର ମଧ୍ୟ ଧ୍ୱଂସ ହୁଏ ନାହିଁ । କୌଣସିମତେ ତୁମେ ଏକ ବିନ୍ଦୁ ପଦାର୍ଥ ହ୍ରାସ କରିପାରିବ ନାହିଁ । ବିନ୍ଦୁଏ ଶକ୍ତି ମଧ୍ୟ ତୁମେ ହ୍ରାସ କରିପାରିବ ନାହିଁ ବା ବୃଦ୍ଧି କରିପାରିବ ନାହିଁ । ମୋଟ ପରିମାଣ ସର୍ବଦା ସମାନ ରହିବ । ପ୍ରକାରରେ କେବଳ ଥାଏ—କେବେ କ୍ରମସଙ୍କୋଚନ, କେବେ ବା ବିବର୍ତ୍ତନ । ପୂର୍ବ କଳ୍ପରେ ଯାହା ଅବ୍ୟକ୍ତ ହୋଇ ଥିଲା, ସେଥିରୁ ଏହି କଳ୍ପର ବିବର୍ତ୍ତନ ହୋଇଛି; ଏହି ବର୍ତ୍ତମାନ କଳ୍ପ ପୁଣି ଅନଭିବ୍ୟକ୍ତ ହେବ, ସୂକ୍ଷ୍ମରୁ ସୂକ୍ଷ୍ମତର ହେବ ଏବଂ ସେହିଥିରୁ ପରବର୍ତ୍ତୀ କଳ୍ପର ଆବିର୍ଭାବ ହେବ । ସମଗ୍ର ବିଶ୍ୱ ଏହି ଭାବରେ ଚାଲିଅଛି, ତେଣୁ ଦେଖାଯାଉଅଛି, ଏକାବେଳକେ ଶୂନ୍ୟରୁ କୌଣସି କିଛି ଗଢ଼ି ଉଠିଅଛି—ଏହି ଅର୍ଥରେ କୌଣସି 'ସୃଷ୍ଟି' ହୁଏ ନାହିଁ । ବରଂ କହିବା ଚଳେ, ସବୁକିଛିର ହିଁ ବିକାଶ ବା ଅଭିବ୍ୟକ୍ତି ହେଉଅଛି ଏବଂ ଈଶ୍ୱର ହେଉଛନ୍ତି ବିଶ୍ୱର ବିକାଶକର୍ତ୍ତା । ଏହି ବିଶ୍ୱ ଯେପରି ତାଙ୍କ ଭିତରୁ ନିଃଶ୍ୱାସ ଭଳି ଆସୁଅଛି, ପୁଣି ତାଙ୍କ ଭିତରେ ସଙ୍କୁଚିତ ହୋଇ ମିଶିଯାଉଅଛି, ପୁଣି ସେ ଏହାକୁ ବାହାରକୁ ନିକ୍ଷେପ କରୁଅଛନ୍ତି । ବେଦରେ ଗୋଟିଏ ଚମତ୍କାର ଉପମା ଅଛି—'ସେହି ଶାଶ୍ୱତ ପୁରୁଷ ନିଃଶ୍ୱାସରେ ଏହି ବିଶ୍ୱକୁ ପ୍ରକଟ କରୁଅଛନ୍ତି ଏବଂ ପ୍ରଶ୍ୱାସରେ ଏହାକୁ ଗ୍ରହଣ କରୁଅଛନ୍ତି'—ଠିକ୍ ଯେପରି ଗୋଟିଏ ଧୂଳିକଣା ଆମେମାନେ ନିଃଶ୍ୱାସ ସହିତ ବାହାର କରୁ ଓ ପ୍ରଶ୍ୱାସ ସହିତ ଗ୍ରହଣ କରୁ । ଖୁବ୍ ଭଲ କଥା, କିନ୍ତୁ ପ୍ରଶ୍ନ ଉଠିପାରେ, ପ୍ରଥମ କଳ୍ପରେ କଅଣ ହୋଇଥିଲା ? ଏହାର ଉତ୍ତର: 'ପ୍ରଥମ' କହିଲେ ଆମେ କଅଣ ବୁଝୁଁ ? ପ୍ରଥମ କଳ୍ପ ବୋଲି କିଛି ନ ଥିଲା । ସମୟର ଯଦି ଆଦି ବୋଲି କିଛି ଥାଏ, ତାହାହେଲେ ସମୟର ଧାରଣା ବାଧାପ୍ରାପ୍ତ ହୁଏ । ସମୟ ଯେଉଁଠି ଆରମ୍ଭ ହୋଇଥିଲା, ସେହିଭଳି ଗୋଟିଏ ସୀମାର କଥା ଭାବିବାକୁ ଚେଷ୍ଟା କର; ଦେଖିବ, ସେହି ସୀମାର ପୂର୍ବବର୍ତ୍ତୀ ସମୟର କଥା ମଧ୍ୟ ତୁମକୁ ଭାବିବାକୁ ହେବ । ସ୍ଥାନର ଆରମ୍ଭର କଥା ଭାବିବାକୁ ଚେଷ୍ଟା କର, ଦେଖିବ ତାହାର ପୂର୍ବବର୍ତ୍ତୀ ସ୍ଥାନର କଥା ତୁମକୁ ଭାବିବାକୁ ହେବ । ସ୍ଥାନ ଏବଂ କାଳ—ଉଭୟ ଅସୀମ, ସେମାନଙ୍କର ଆଦି ନାହିଁ କି ଅନ୍ତ ବି ନାହିଁ । ଈଶ୍ୱର ପାଞ୍ଚ ମିନିଟରେ ବିଶ୍ୱ ସୃଷ୍ଟି କରି ଶୋଇବାକୁ ଗଲେ ଏବଂ ସେତେବେଳୁ ଶୋଇରହିଅଛନ୍ତି—ଏହାଠାରୁ ପୂର୍ବୋକ୍ତ ଧାରଣା ଅନେକ ଭଲ । ଅନ୍ୟ ପକ୍ଷରେ ଏହି ଧାରଣା ଦ୍ୱାରା ଆମେମାନେ ଈଶ୍ୱରଙ୍କୁ ପାଉ ଶାଶ୍ୱତ ସୃଷ୍ଟିକର୍ତ୍ତାରୂପରେ । ଏଠାରେ ଢେଉ ପରେ ଢେଉ ଉଠୁଛି ଓ ପଡ଼ୁଛି; ଏବଂ ଈଶ୍ୱର ସେହି ଶାଶ୍ୱତ ପ୍ରବାହକୁ ପରିଚାଳିତ କରୁଅଛନ୍ତି । ଏହି ବିଶ୍ୱ ଯେପରି ଅନାଦି ଏବଂ ଅନନ୍ତ, ଈଶ୍ୱର ମଧ୍ୟ ତାହା । ଏହା ଯୁକ୍ତିସଙ୍ଗତ କଥା, କାରଣ ଆମେମାନେ ଯଦି କହୁ ଯେ, ଏପରି ଏକ ସମୟ ଥିଲା ଯେତେବେଳେ ସ୍ଥୂଳ କି ସୂକ୍ଷ୍ମ କୌଣସି ସୃଷ୍ଟି ନ ଥିଲା, ତାହାହେଲେ କହିବାକୁ ହେବ ଯେ, ସେତେବେଳେ କୌଣସି ଈଶ୍ୱର ମଧ୍ୟ ନ ଥିଲେ, କାରଣ ଈଶ୍ୱର ଆମ-

ମାନଙ୍କ ନିକଟରେ ଏହି ବିଶ୍ୱର ସାକ୍ଷୀରୂପରେ ବିଦିତ । ସୁତରାଂ ବିଶ୍ୱ ଯେତେ-ବେଳେ ନ ଥିଲା, ସେତେବେଳେ ସେ ମଧ୍ୟ ନ ଥିଲେ । ଗୋଟିଏ ଧାରଣାରୁ ଅନ୍ୟଟି ଆସେ । କାର୍ଯ୍ୟର ଧାରଣାରୁ ଆମେମାନେ କାରଣର ଧାରଣା ଲାଭ କରୁ । କାର୍ଯ୍ୟ ଯଦି ନ ଥାଏ ତାହାହେଲେ କାରଣ ମଧ୍ୟ ରହିବ ନାହିଁ । ତେଣୁ ଏହା ସ୍ୱୀକାର୍ଯ୍ୟ ଯେ, ବିଶ୍ୱ ଯେହେତୁ ଶାଶ୍ୱତ, ଈଶ୍ୱର ମଧ୍ୟ ଶାଶ୍ୱତ ।

ଆତ୍ମା ମଧ୍ୟ ଶାଶ୍ୱତ କାହିଁକି ? ପ୍ରଥମତଃ ଆମେମାନେ ଜାଣୁ—ଆତ୍ମା ଜଡ଼ ନୁହେଁ । ଏହା ସ୍ଥୂଳଶରୀର ନୁହେଁ, ଅଥବା ଆମେମାନେ ଯାହାକୁ ମନ ବା ଚିନ୍ତା କହୁ—ସେପରି କୌଣସି ସୂକ୍ଷ୍ମ ଶରୀର ମଧ୍ୟ ନୁହେଁ । ଏହା ଭୌତିକ ଶରୀର ନୁହେଁ, କିମ୍ବା ଖ୍ରୀଷ୍ଟଧର୍ମ ଯାହାକୁ 'ଆତ୍ମିକ' ଦେହ କହେ, ତାହା ମଧ୍ୟ ନୁହେଁ । ସ୍ଥୂଳ ଓ 'ଆତ୍ମିକ' ଶରୀର ଉଭୟେ ପରିବର୍ତ୍ତନଶୀଳ । ସ୍ଥୂଳ ଶରୀର ପ୍ରତିମୁହୂର୍ତ୍ତରେ ପରିବର୍ତ୍ତନ-ଶୀଳ ଏବଂ ମରଣଶୀଳ, କିନ୍ତୁ ସୂକ୍ଷ୍ମ ଶରୀର ମନୁଷ୍ୟର ମୁକ୍ତିଲାଭ ପର୍ଯ୍ୟନ୍ତ ଦୀର୍ଘ କାଳ ବିଦ୍ୟମାନ ରହେ, ତା'ପରେ ଏହାର ଶେଷ ହୋଇଯାଏ । ମନୁଷ୍ୟ ଯେତେବେଳେ ମୁକ୍ତ ହୁଏ, ସେତେବେଳେ ତାହାର ଆତ୍ମିକ ଶରୀର ମଧ୍ୟ ବିଲୀନ ହୋଇଯାଏ । ଯେତେବେଳେ ଗୋଟିଏ ମନୁଷ୍ୟର ମୃତ୍ୟୁ ହୁଏ, ସେତେବେଳେ ତାହାର ସ୍ଥୂଳଶରୀର ପଞ୍ଚଭୂତରେ ମିଶିଯାଏ । ଆତ୍ମା କୌଣସି ଅଣୁପରମାଣୁଦ୍ୱାରା ଗଠିତ ନୁହେଁ ବୋଲି ଅବିନଶ୍ୱର । ଧ୍ୱଂସ କହିଲେ ଆମେମାନେ କ'ଣ ବୁଝୁ ? ଯେଉଁସବୁ ମୂଳ ଉପାଦାନ ନେଇ ଗୋଟିଏ ବସ୍ତୁ ଗଠିତ, ସେମାନଙ୍କର ବିଭାଜନ ହିଁ ଧ୍ୱଂସ । ଏହି ଗ୍ଲାସଟି ଯଦି ଭାଙ୍ଗିଯାଏ, ତା'ହେଲେ ଏହାର ଅଂଶଗୁଡ଼ିକ ବିଚ୍ଛିନ୍ନ ହୋଇଯିବ ଏବଂ ଗ୍ଲାସଟି ଧ୍ୱଂସ ପାଇବ । ଧ୍ୱଂସର ଅର୍ଥ ଅଂଶସମୂହର ବିଭାଜନ । ଅତଏବ ସହଜରେ ବୁଝାଯାଉଅଛି, ଯାହା ବିଭିନ୍ନ ଅଂଶଦ୍ୱାରା ଗଠିତ ନୁହେଁ, ଏପରି କୌଣସି ବସ୍ତୁର ଧ୍ୱଂସ ହୋଇ-ପାରେ ନାହିଁ, ବିଭାଜନ ମଧ୍ୟ ହୁଏ ନାହିଁ । ଆତ୍ମା କେତେଗୁଡ଼ିଏ ଉପାଦାନର ସମବାୟରେ ଗଠିତ ନୁହେଁ, ଏହା ଅଖଣ୍ଡ ଏକ; ତେଣୁ ଏହା ଅବିନଶ୍ୱର । ସେହି ଏକ କାରଣରୁ ଏହା ଅନାଦି ମଧ୍ୟ । ଅତଏବ ଆତ୍ମା ଅନାଦି ଓ ଅନନ୍ତ ।

ମୋଟ ତିନିଟି ସତ୍ତା ଅଛି, ପ୍ରଥମତଃ ଅସୀମ ଅଥଚ ପରିବର୍ତ୍ତନଶୀଳ ପ୍ରକୃତି । ପ୍ରକୃତି ଅନାଦି ଏବଂ ଅନନ୍ତ, କିନ୍ତୁ ଏହା ମଧ୍ୟରେ ଅଛି ବିବିଧ ପରିବର୍ତ୍ତନ । ଏହା ଯେପରି ସହସ୍ର ବର୍ଷ ଯାବତ୍ ସମୁଦ୍ର ଅଭିମୁଖରେ ପ୍ରବାହିତ ଗୋଟିଏ ନଦୀ ଭଳି । ନଦୀ ଏକ, କିନ୍ତୁ ପ୍ରତି ମୁହୂର୍ତ୍ତରେ ତାହାର ପରିବର୍ତ୍ତନ ଘଟୁଅଛି; ଜଳକଣାଗୁଡ଼ିକ ପ୍ରତିନିୟତ ସେମାନଙ୍କର ସ୍ଥାନ ପରିବର୍ତ୍ତନ କରୁଛନ୍ତି । ତାହାପରେ ଅଛନ୍ତି ଈଶ୍ୱର, ଅପରିବର୍ତ୍ତନୀୟ ଶାସକ ଏବଂ ଅଛି ଆମମାନଙ୍କର ଆତ୍ମା, ଈଶ୍ୱରଙ୍କ ଭଳି ଅପରିବର୍ତ୍ତନୀୟ ଶାଶ୍ୱତ; କିନ୍ତୁ ସେହି ଶାସକଙ୍କର ଅଧୀନ । ଜଣେ ପ୍ରଭୁ, ଅପର ଜଣକ ଭୃତ୍ୟ; ତୃତୀୟ ପକ୍ଷ ହେଲା ପ୍ରକୃତି ।

ଈଶ୍ୱର ଏହି ବିଶ୍ୱର ସୃଷ୍ଟି, ସ୍ଥିତି ଓ ପ୍ରଳୟର କାରଣ; କାର୍ଯ୍ୟ-ସଂଘଟନ ପାଇଁ କାରଣର ଆବଶ୍ୟକତା ରହିଛି । କେବଳ ତାହା ନୁହେଁ, କାରଣ ହିଁ କାର୍ଯ୍ୟ-ରୂପରେ ଦେଖାଦିଏ । ନିର୍ମାଣକାରୀକର୍ତ୍ତୃକ ବ୍ୟବହୃତ କେତେକ ଉପାଦାନ ଓ କିଛି ଶକ୍ତିର ସାହାଯ୍ୟରେ ଗ୍ଲାସ ନିର୍ମିତ ହୁଏ । ଗ୍ଲାସରେ ଅଛି ଏହି ଉପାଦାନ ଏବଂ ଶକ୍ତି । ବ୍ୟବହୃତ ଶକ୍ତି ସଂହତି-ଶକ୍ତିରେ ପରିଣତ ହୋଇଅଛି । ସେହି ଶକ୍ତିର ଅଭାବ ଘଟିଲେ ଗ୍ଲାସଟି ଖଣ୍ଡ ଖଣ୍ଡ ହୋଇ ଭାଙ୍ଗିଯିବ । ଉପାଦାନସମୂହ ମଧ୍ୟ ନିଃସନ୍ଦେହରେ ଗ୍ଲାସ ମଧ୍ୟରେ ଅଛି । କେବଳ ମାତ୍ର ସେମାନଙ୍କର ଆକାରର ପରିବର୍ତ୍ତନ ହୋଇଅଛି । କାରଣ କାର୍ଯ୍ୟରେ ପରିଣତ ହୋଇଅଛି । ଯେଉଁଠାରେ କାର୍ଯ୍ୟ ଦେଖିବାକୁ ମିଳେ, ସେହିଠାରେ ବିଶ୍ଲେଷଣ କଲେ କାରଣର ସନ୍ଧାନ ମିଳିବ । କାରଣ ହିଁ ନିଜକୁ କାର୍ଯ୍ୟ-ରୂପରେ ପ୍ରକାଶ କରେ । ସୁତରାଂ ଦେଖାଯାଉଅଛି, ଈଶ୍ୱର ଯଦି ଏହି ବିଶ୍ୱର କାରଣ ହୁଅନ୍ତି ଏବଂ ଏହି ବିଶ୍ୱ ଯଦି କାର୍ଯ୍ୟ ହୁଏ, ତାହାହେଲେ ଈଶ୍ୱର ସ୍ୱୟଂ ଏହି ବିଶ୍ୱରୂପରେ ପରିଣତ ହୋଇଅଛନ୍ତି । ଆତ୍ମାସମୂହ ଯଦି କାର୍ଯ୍ୟ ହୁଅନ୍ତି ଏବଂ ଈଶ୍ୱର ଯଦି କାରଣ ହୁଅନ୍ତି, ତାହାହେଲେ ଈଶ୍ୱର ସ୍ୱୟଂ ଆତ୍ମାରୂପରେ ପ୍ରକାଶିତ ହୋଇଅଛନ୍ତି । ସୁତରାଂ ପ୍ରତ୍ୟେକ ଆତ୍ମା ଈଶ୍ୱରଙ୍କର ଅଂଶ । 'ସେହି ଏକ ଅଗ୍ନିରୁ ଯେପରି ଅସଂଖ୍ୟ ସ୍ଫୁଲିଙ୍ଗ ବାହାରିଥାଏ, ଠିକ୍ ସେହିପରି ସେହି ଶାଶ୍ୱତ 'ଏକ'ରୁ ବିଶ୍ୱରୁ ସମସ୍ତ ଆତ୍ମା ବାହାରି ହୋଇଅଛନ୍ତି ।'*

ଆମେମାନେ ଦେଖିଲୁ, ଶାଶ୍ୱତ ଈଶ୍ୱର ଅଛନ୍ତି ଏବଂ ଶାଶ୍ୱତ ପ୍ରକୃତି ମଧ୍ୟ ଅଛି ଏବଂ ଅଛନ୍ତି ଅସଂଖ୍ୟ ଶାଶ୍ୱତ ଆତ୍ମା । ଏହା ହେଲା ଧର୍ମର ପ୍ରଥମ ସୋପାନ । ଏହାକୁ କହନ୍ତି ଦ୍ୱୈତବାଦ । ଏହି ସ୍ତରରେ ମନୁଷ୍ୟ ନିଜକୁ ଏବଂ ଈଶ୍ୱରଙ୍କୁ ଅନନ୍ତ କାଳ ପାଇଁ ସ୍ୱତନ୍ତ୍ର ମନେକରେ । ଏହି ସ୍ତରରେ ଈଶ୍ୱର ଗୋଟିଏ ସ୍ୱତନ୍ତ୍ର ସତ୍ତା, ମନୁଷ୍ୟ ଗୋଟିଏ ସ୍ୱତନ୍ତ୍ର ସତ୍ତା ଏବଂ ପ୍ରକୃତି ଗୋଟିଏ ସ୍ୱତନ୍ତ୍ର ସତ୍ତା । ଏହା ହିଁ ହେଲା ଦ୍ୱୈତବାଦ । ଏହି ମତରେ ଜ୍ଞାତା ଏବଂ ଜ୍ଞେୟ ସମ୍ପୂର୍ଣ୍ଣ ରୂପେ ପୃଥକ୍ । ମନୁଷ୍ୟ ପ୍ରକୃତି ଆଡ଼କୁ ଚାହିଁ ମନେକରେ, ସେ ଜ୍ଞାତା ଏବଂ ପ୍ରକୃତି ଜ୍ଞେୟ ବିଷୟ । ଜ୍ଞାତା ଓ ଜ୍ଞେୟର ଦ୍ୱୈତଭାବ ସେ ନିରୀକ୍ଷଣ କରେ । ମନୁଷ୍ୟ ଯେତେବେଳେ ଈଶ୍ୱରଙ୍କ ଆଡ଼କୁ ଚାହେଁ, ସେତେବେଳେ ଈଶ୍ୱରଙ୍କୁ ଦେଖେ ଜ୍ଞେୟରୂପରେ ଏବଂ ନିଜକୁ ଦେଖେ ଜ୍ଞାତାରୂପରେ । ଏହା ହେଉଛି ମନୁଷ୍ୟ ଓ ଈଶ୍ୱରଙ୍କ ମଧ୍ୟରେ ଦ୍ୱୈତଭାବ । ସାଧାରଣ ଭାବରେ ଏହା ହିଁ ହେଲା ଧର୍ମର ପ୍ରାଥମିକ ରୂପ ।

ତାହାପରେ ଆସେ ଆଉ ଗୋଟିଏ ରୂପ, ଯାହା ବର୍ତ୍ତମାନ ମୁଁ ତୁମମାନଙ୍କୁ କହିଲି । ମନୁଷ୍ୟ ବୁଝିବାକୁ ଆରମ୍ଭ କରେ ଯେ, ଈଶ୍ୱର ଯଦି ଏହି ବିଶ୍ୱର କାରଣ

---

* ମୁଣ୍ଡକ ଉପ., ୨।୧।୧

ହୁଅନ୍ତି ଏବଂ ଏହି ବିଶ୍ୱ ଯଦି କାର୍ଯ୍ୟ ହୁଏ, ତାହାହେଲେ ସ୍ୱୟଂ ଈଶ୍ୱର ଏହି ବିଶ୍ୱ ଏବଂ ଆତ୍ମାସମୂହ ହୋଇ ପ୍ରକାଶିତ ହୋଇଛନ୍ତି ଏବଂ ମନୁଷ୍ୟ ନିଜେ ମଧ୍ୟ ପୂର୍ଣ୍ଣସତ୍ତା ଈଶ୍ୱରଙ୍କର ଗୋଟିଏ ଅଂଶମାତ୍ର । ଆମ ଭଳି କ୍ଷୁଦ୍ର କ୍ଷୁଦ୍ର ଜୀବ ସେହି ଅଗ୍ନିକୁଣ୍ଡର ସ୍ଫୁଲିଙ୍ଗ ପରି; ସମଗ୍ର ବିଶ୍ୱ ସ୍ୱୟଂ ଈଶ୍ୱରଙ୍କର ପ୍ରକାଶ । ଏହା ପରବର୍ତ୍ତୀ ସୋପାନ । ସଂସ୍କୃତରେ ଏହାକୁ କୁହାଯାଏ 'ବିଶିଷ୍ଟାଦ୍ୱୈତ' । ଯେପରି ମୋର ଏହି ଶରୀର ଅଛି, ଏହି ଶରୀର ଆତ୍ମାକୁ ଆଚ୍ଛାଦନ କରିଅଛି, ଏହି ଶରୀର ଭିତରେ ଆତ୍ମା ଓତଃପ୍ରୋତ ଭାବରେ ରହିଅଛି, ସେହିପରି ଅସଂଖ୍ୟ ଆତ୍ମା ଓ ପ୍ରକୃତିସମନ୍ୱିତ ଏହି ସମଗ୍ର ବିଶ୍ୱ ଯେପରି ଈଶ୍ୱରଙ୍କର ଦେହସ୍ୱରୂପ । କ୍ରମସଙ୍କୋଚନ ବା ଅନଭିବ୍ୟକ୍ତିର ସମୟ ଯେତେବେଳେ ଆସେ, ସେତେବେଳେ ଏହି ବିଶ୍ୱ ସୂକ୍ଷ୍ମରୁ ସୂକ୍ଷ୍ମତର ହୋଇଥାଏ, ତଥାପି ଈଶ୍ୱରଙ୍କର ଦେହରୂପରେ ଥାଏ । ସ୍ଥୂଳପ୍ରକାଶ ଯେତେବେଳେ ଆରମ୍ଭ ହୁଏ, ସେତେବେଳେ ମଧ୍ୟ ବିଶ୍ୱ ଈଶ୍ୱରଙ୍କର ଦେହରୂପରେ ଥାଏ । ମନୁଷ୍ୟର ଆତ୍ମା ଯେପରି ମନୁଷ୍ୟର ଦେହ ଓ ମନର ଆତ୍ମା, ସେହିପରି ଈଶ୍ୱର ଆମମାନଙ୍କ 'ଆତ୍ମାର ଆତ୍ମା' । ଆମମାନଙ୍କର 'ଆତ୍ମାର ଆତ୍ମା'—ଏହି କଥାଟି ତୁମେମାନେ ପ୍ରତ୍ୟେକ ଧର୍ମରେ ଶୁଣିଅଛ । ଏହାର ଅର୍ଥ ଏହି—ସେ ସମସ୍ତଙ୍କ ମଧ୍ୟରେ ବାସ କରନ୍ତି, ସେମାନଙ୍କୁ ପରିଚାଳିତ କରନ୍ତି, ସମସ୍ତଙ୍କୁ ଶାସନ କରନ୍ତି । ଦ୍ୱୈତବାଦୀର ମତରେ—ଆମେମାନେ ପ୍ରତ୍ୟେକେ ଗୋଟିଏ ଗୋଟିଏ ବ୍ୟକ୍ତି, ଅନାଦିକାଳ ଧରି ଈଶ୍ୱର ଓ ପ୍ରକୃତିଠାରୁ ସ୍ୱତନ୍ତ୍ର । ଦ୍ୱିତୀୟ ମତରେ—ଆମେମାନେ ବ୍ୟକ୍ତି, କିନ୍ତୁ ଈଶ୍ୱରଙ୍କଠାରୁ ପୃଥକ୍ ନୋହୁଁ । ଆମେମାନେ ଯେପରି ସେହି ଏକ ବସ୍ତୁର କ୍ଷୁଦ୍ର କ୍ଷୁଦ୍ର ସଞ୍ଚରଣଶୀଳ ଅଂଶ ଏବଂ ଈଶ୍ୱର ହେଲେ ଏହିସବୁର ସମଷ୍ଟି । ବ୍ୟକ୍ତି ହିସାବରେ ଆମେମାନେ ସ୍ୱତନ୍ତ୍ର, କିନ୍ତୁ ଈଶ୍ୱରଙ୍କ ମଧ୍ୟରେ ଆମେମାନେ ଏକ । ଆମେମାନେ ସମସ୍ତେ ତାଙ୍କ ମଧ୍ୟରେ ଅଛୁ । ଆମେମାନେ ସମସ୍ତେ ତାଙ୍କର ଅଂଶ, ସୁତରାଂ ଆମେମାନେ ଏକ । ତଥାପି ମନୁଷ୍ୟ ମନୁଷ୍ୟ ମଧ୍ୟରେ, ମନୁଷ୍ୟ ଓ ଈଶ୍ୱରଙ୍କ ମଧ୍ୟରେ ଗୋଟିଏ କଠୋର ବ୍ୟକ୍ତି-ସ୍ୱାତନ୍ତ୍ର୍ୟ ଅଛି—ସ୍ୱତନ୍ତ୍ର, ତଥାପି ସ୍ୱତନ୍ତ୍ର ନୁହେଁ ।

ତାହାପରେ ଆସେ ଆଉ ଗୋଟିଏ ସୂକ୍ଷ୍ମତର ପ୍ରଶ୍ନ । ପ୍ରଶ୍ନଟି ହେଲା: ଅସୀମର କ'ଣ ଅଂଶ ଥାଇପାରେ ? ଅସୀମର ଅଂଶ କହିଲେ କ'ଣ ବୁଝାଏ ? ଯଦି ବିଚାର କରି ଦେଖ, ବୁଝିପାରିବ—ଏହା ଅସମ୍ଭବ । ଅସୀମକୁ କଦାପି ହେଲେ ଭାଗ କରାଯାଏ ନାହିଁ, ଏହା ସର୍ବଦା ଅସୀମ । ଅସୀମକୁ ଯଦି ଭାଗ କରାଯାଆନ୍ତା, ତାହାହେଲେ ପ୍ରତ୍ୟେକ ଅଂଶ ଅସୀମ ହୁଅନ୍ତା; ଅଥଚ ଅସୀମ କେବେହେଲେ ଏକାଧିକ ହୋଇପାରେ ନାହିଁ । ଧର ଯଦି ଦୁଇଟି ଅସୀମ ଥାଆନ୍ତା, ତାହାହେଲେ ଗୋଟିଏ ଅନ୍ୟଟିକୁ ସୀମାବଦ୍ଧ କରନ୍ତା ଏବଂ ଉଭୟେ ସସୀମ ହୋଇଯାଆନ୍ତେ । ସୁତରାଂ ଆମମାନଙ୍କର ସିଦ୍ଧାନ୍ତ ହେଲା—ଅସୀମ ଏକ, ବହୁ ନୁହେଁ; ସେହି ଏକ ଅସୀମ ଆତ୍ମା

ହଜାର ହଜାର ଦର୍ପଣରେ ନିଜକୁ ପ୍ରତିବିମ୍ବିତ କରି ଭିନ୍ନ ଭିନ୍ନ ଆତ୍ମାରୂପରେ ପ୍ରତିଭାତ ହେଉଛନ୍ତି । ଏହି ବିଶ୍ୱର ଅଧିଷ୍ଠାନସ୍ୱରୂପ ସେହି ଅସୀମ ଆତ୍ମାଙ୍କୁ ଆମେମାନେ କହୁ 'ଈଶ୍ୱର' । ମାନବ ମନର ଅଧିଷ୍ଠାନ ସେହି ଏକ ଅସୀମ ଆତ୍ମାଙ୍କୁ ଆମେମାନେ କହୁ 'ମାନବାତ୍ମା' ।

# ପ୍ରକୃତି ଓ ମନୁଷ୍ୟ

ବିଶ୍ବଜଗତର ଯେଉଁ ଟିକିକ ଅଂଶ ଭୌତିକ ସ୍ତରରେ ଅଭିବ୍ୟକ୍ତ, କେବଳ ସେହି ଟିକିକ ହିଁ ପ୍ରକୃତି ସମ୍ବନ୍ଧରେ ଆଧୁନିକ ଧାରଣାର ଅନ୍ତର୍ଗତ । ମନ କହିଲେ ସାଧାରଣତଃ ଯାହା ବୁଝାଏ, ତାହା ପ୍ରକୃତି ବୋଲି ବିବେଚିତ ହୁଏ ନାହିଁ ।

ଇଚ୍ଛାଶକ୍ତିର ସ୍ୱାଧୀନତା ପ୍ରତିପନ୍ନ କରିବାକୁ ଯାଇ ଦାର୍ଶନିକମାନେ ମନକୁ ପ୍ରକୃତିଠାରୁ ପୃଥକ୍ କରିଥାଆନ୍ତି । କାରଣ ପ୍ରକୃତି ନିୟମର—କଠୋର ଅନମନୀୟ ନିୟମର ଶାସନରେ ଆବଦ୍ଧ, ପ୍ରକୃତି-ଅନ୍ତର୍ଗତ ବିବେଚିତ ହେଲେ ମନ ମଧ୍ୟ ନିୟମର ଅଧୀନ ହୋଇଯିବ । ଫଳରେ ସ୍ୱାଧୀନ ଇଚ୍ଛାଶକ୍ତିର ମତବାଦ ବାଧାପ୍ରାପ୍ତ ହେବ; କାରଣ, ଯାହା କୌଣସି ନିୟମର ଅଧୀନ, ତାହା କିପରି ସ୍ୱାଧୀନ ବା ସ୍ୱତନ୍ତ୍ର ହୋଇପାରେ ?

ଯୁକ୍ତି ଓ ତଥ୍ୟ ଉପରେ ଛିଡ଼ା ହୋଇ ଭାରତୀୟ ଦାର୍ଶନିକଗଣଙ୍କର ଦୃଷ୍ଟି-ଭଙ୍ଗୀ ଏ ବିଷୟରେ ବିପରୀତ । ସେମାନଙ୍କ ମତରେ ବ୍ୟକ୍ତ ଅଥବା ଅବ୍ୟକ୍ତ ସମଗ୍ର ବାସ୍ତବ ଜୀବନ ନିୟମର ଅଧୀନ । ସେମାନଙ୍କ ମତରେ : ମନ ଓ ବାହ୍ୟ ପ୍ରକୃତି, ଉଭୟ ନିୟମର—ଏକ ନିୟମର ଅଧୀନ । ମନ ଯଦି ନିୟମର ଅଧୀନ ନ ହୁଏ, ଆମେମାନେ ବର୍ତ୍ତମାନ ଯାହା ଚିନ୍ତା କରୁଅଛୁ, ତାହା ଯଦି ପୂର୍ବ ଚିନ୍ତାର ଅନିବାର୍ଯ୍ୟ ଫଳସ୍ୱରୂପ ନ ହୁଏ, ଯଦି ଗୋଟିଏ ମାନସିକ ଅବସ୍ଥା ଆଉ ଗୋଟିଏ ମାନସିକ ଅବସ୍ଥାର ଅନୁସରଣ ନ କରେ, ତେବେ ମନକୁ ଅଯୌକ୍ତିକ ବୋଲି କହିବାକୁ ହେବ । ଏପରି କିଏ ଅଛି, ଯିଏ ସ୍ୱାଧୀନ ଇଚ୍ଛାଶକ୍ତି ସ୍ୱୀକାରକରି ଯୁକ୍ତିର କ୍ରିୟା ଅସ୍ୱୀକାର କରି ପାରେ ? ଅନ୍ୟ ପକ୍ଷରେ ମନ କାର୍ଯ୍ୟ-କାରଣ ନିୟମଦ୍ୱାରା ନିୟନ୍ତ୍ରିତ । ଏହା ସ୍ୱୀକାର କରି କିଏ କହିପାରେ ଯେ, ଇଚ୍ଛାଶକ୍ତି ସ୍ୱାଧୀନ ?

ନିୟମ ହିଁ କାର୍ଯ୍ୟ-କାରଣର କ୍ରିୟା । ପୂର୍ବବର୍ତ୍ତୀ କେତେଗୁଡ଼ିଏ ଘଟଣାକୁ ଅନୁସରଣ କରି ପରବର୍ତ୍ତୀ କେତେଗୁଡ଼ିଏ ଘଟଣା ଘଟିଥାଏ । ପ୍ରତିଟି ପୂର୍ବଗାମୀ ଘଟଣାର ବା କାରଣର ଅନୁବର୍ତ୍ତୀ କାର୍ଯ୍ୟ ଅଛି । ପ୍ରକୃତି ଏହିଭାବରେ ଚାଲିଅଛି । ଏହି ନିୟମର ଶାସନ ଯଦି ମନସ୍ତରରେ ମଧ୍ୟ ଲାଗୁ ହୁଏ, ତାହାହେଲେ ମନ ବଦ୍ଧ— ସ୍ୱାଧୀନ ନୁହେଁ । ବାସ୍ତବିକ ଇଚ୍ଛାଶକ୍ତି ମଧ୍ୟ ସ୍ୱାଧୀନ ନୁହେଁ । ଏହା କିପରି ସମ୍ଭବ ? କିନ୍ତୁ ଆମେମାନେ ସମସ୍ତେ ଜାଣୁ, ଅନୁଭବ କରୁ ଯେ, ଆମେମାନେ ସ୍ୱାଧୀନ । ସ୍ୱାଧୀନ ନ ହେଲେ ଆମମାନଙ୍କର ଜୀବନର କୌଣସି ଅର୍ଥ ରହିବ ନାହିଁ, ଜୀବନ-ଯାପନ ବୃଥା ହୋଇଯାଏ ।

ପ୍ରାଚ୍ୟଦେଶୀୟ ଦାର୍ଶନିକଗଣ ଏହି ମତବାଦ ଗ୍ରହଣ କରିଅଛନ୍ତି ବା କୁହାଯାଇପାରେ, ଉଦ୍ଭାବନ କରିଅଛନ୍ତି ଯେ, ମନ ଏବଂ ଇଚ୍ଛାଶକ୍ତି ଦେଶକାଳନିମିତ୍ତଦ୍ୱାରା ତଥାକଥିତ ଜଡ଼ ବସ୍ତୁ ଭଳି ବଦ୍ଧ; ସୁତରାଂ ଏମାନେ କାର୍ଯ୍ୟକାରଣନିୟମରେ ଶାସିତ । ଆମ୍ଭେମାନେ କାଳ ମଧ୍ୟରେ ଚିନ୍ତାକରୁ, ଆମ୍ଭମାନଙ୍କର ଚିନ୍ତାଗୁଡ଼ିକ କାଳଦ୍ୱାରା ସୀମିତ; ଯାହାର ଅସ୍ତିତ୍ୱ ଅଛି, ତାହା ଦେଶ ଓ କାଳ ମଧ୍ୟରେ ବର୍ତ୍ତମାନ । ସବୁକିଛି କାର୍ଯ୍ୟକାରଣ-ଶୃଙ୍ଖଳରେ ଆବଦ୍ଧ ।

ଜଡ଼ପଦାର୍ଥ ଏବଂ ମନ—ଉଭୟ ଗୋଟିଏ ଉପାଦାନରେ ଗଠିତ, ପ୍ରଭେଦ କେବଳ କମ୍ପନର ତାରତମ୍ୟରେ । ମନର ଅତି ନିମ୍ନସ୍ତରର ସ୍ପନ୍ଦନକୁ ଆମ୍ଭେମାନେ ଜଡ଼ବସ୍ତୁ ବୋଲି ଜାଣୁ । ପୁଣି ଜଡ଼ ପଦାର୍ଥର ଦ୍ରୁତ ସ୍ପନ୍ଦନକୁ ଆମ୍ଭେମାନେ ମନ ବୋଲି ଜାଣୁ । ଉଭୟର ଉପାଦାନ ଏକ । ଅତଏବ ଜଡ଼ ପଦାର୍ଥ ଏବଂ ଦେଶକାଳ-ନିମିତ୍ତଦ୍ୱାରା ସୀମିତ ଦ୍ରୁତ ସ୍ପନ୍ଦନ ମନ ମଧ୍ୟ ଏହି ନିୟମଦ୍ୱାରା ଆବଦ୍ଧ ।

ପ୍ରକୃତିର ଉପାଦାନ ସବୁଦିନ ସମଜାତୀୟ । ପ୍ରଭେଦ କେବଳ ବିକାଶର ତାରତମ୍ୟରେ । ଏହି ବିଶ୍ୱପ୍ରପଞ୍ଚର ସଂସ୍କୃତ ପ୍ରତିଶବ୍ଦ ହେଉଛି 'ପ୍ରକୃତି' ଏବଂ ଏହାର ଆକ୍ଷରିକ ଅର୍ଥ 'ପୃଥକୀକରଣ' । ଉପାଦାନ ଏକ, କିନ୍ତୁ ଏହା ଭିନ୍ନ ଭିନ୍ନ ରୂପରେ ଅଭିବ୍ୟକ୍ତ ।

ମନ ଜଡ଼ରେ ରୂପାନ୍ତରିତ ହୁଏ, ପୁଣି ଜଡ଼ ମଧ୍ୟ ମନରେ ରୂପାନ୍ତରିତ ହୁଏ, ଏହା କେବଳ କମ୍ପନର ତାରତମ୍ୟ ।

ଗୋଟିଏ ଇସ୍ପାତର ଦଣ୍ଡ ନିଅ, ଏହାକୁ କମ୍ପିତ କରିପାରେ—ଏହିପରି ଗୋଟିଏ ଶକ୍ତି ଏଥିରେ ପ୍ରୟୋଗ କର; ତାହାପରେ କ'ଣ ଘଟିବ ? ଯଦି ଗୋଟିଏ ଅନ୍ଧକାର ଘରେ ଏହି ପରୀକ୍ଷାଟି କରାହୁଏ, ତେବେ ପ୍ରଥମେ ତୁମେ ଶୁଣିବାକୁ ପାଇବ ଗୋଟିଏ ଶବ୍ଦ—ଗୋଟିଏ ଗୁଣୁଗୁଣୁ ଶବ୍ଦ । ଶକ୍ତିପ୍ରବାହ ବର୍ଦ୍ଧିତ କର—ଦେଖିବ, ଇସ୍ପାତ ଦଣ୍ଡଟି ଆଲୋକିତ ହୋଇ ଉଠିଅଛି । ଶକ୍ତି ଆହୁରି ବଢ଼ାଅ । ଇସ୍ପାତ-ଦଣ୍ଡଟି ଏକାବେଳକେ ଅଦୃଶ୍ୟ ହୋଇଯିବ । ଏହା ମନରେ ରୂପାନ୍ତରିତ ହୋଇଯାଇଅଛି ।

ଆଉ ଗୋଟିଏ ଉଦାହରଣ ନିଅ; ଦଶଦିନ ଆହାର ନ କଲେ ମୁଁ କୌଣସି ପ୍ରକାର ଚିନ୍ତା କରିପାରିବି ନାହିଁ । କେବଳ କେତୋଟି ଶୃଙ୍ଖଳାହୀନ ଚିନ୍ତା ମୋ ମନରେ ବୁଲୁଥିବ । ମୁଁ ଅତ୍ୟନ୍ତ ଦୁର୍ବଳ ହୋଇପଡ଼ିବି ଏବଂ ସମ୍ଭବତଃ ମୋ ନାମ ମଧ୍ୟ ଭୁଲିଯିବି । ତାହାପରେ କିଛି ଖାଦ୍ୟ ଗ୍ରହଣ କଲି ଏବଂ କିଛି କ୍ଷଣ ମଧ୍ୟରେ ଚିନ୍ତା କରିବାକୁ ଆରମ୍ଭ କଲି । ଦେଖିଲି ମୋ ମନରେ ଶକ୍ତି ଫେରି ଆସିଛି, ଅର୍ଥାତ୍ ଖାଦ୍ୟ ହିଁ ମନରେ ରୂପାନ୍ତରିତ ହୋଇଅଛି । ପୁନଶ୍ଚ ସ୍ପନ୍ଦନର ଗତିବେଗ କମାଇ ମନ ଦେହରେ ଅଭିବ୍ୟକ୍ତ ହୁଏ, ଜଡ଼ରେ ପରିଣତ ହୁଏ ।

ଜଡ଼ ଓ ମନ—ଏ ଦୁଇଟିରୁ କେଉଁଟି ପ୍ରଥମ ? ଗୋଟିଏ ଉଦାହରଣ ଯଦି

ବୁଝାଉଅଛୁ—ଗୋଟିଏ ମୁର୍‌ଗୀ ଡିମ୍ବ ଦେଲା, ଡିମ୍ବରୁ ଆଉ ଗୋଟିଏ ମୁର୍‌ଗୀର ଜନ୍ମ ହେଲା; ମୁର୍‌ଗୀଟି ଆଉ ଗୋଟିଏ ଡିମ୍ବ ଦେଲା; ଡିମ୍ବରୁ ପୁଣି ଆଉ ଗୋଟିଏ ମୁର୍‌ଗୀ ଜନ୍ମିଲା; ଅନନ୍ତ କାର୍ଯ୍ୟକାରଣ-ପରମ୍ପରା ଏହିପରି ଚାଲୁଥିବ । ବର୍ତ୍ତମାନ କେଉଁଟି ପ୍ରଥମ—ଡିମ୍ବ ନା ମୁର୍‌ଗୀ ? ତୁମେ ଏପରି କୌଣସି ଡିମ୍ବର କଥା କଳ୍ପନା କରିପାରିବ ନାହିଁ, ଯାହା କୌଣସି ମୁର୍‌ଗୀରୁ ଜନ୍ମ ହୋଇ ନାହିଁ; ଅଥବା ଏପରି କୌଣସି ମୁର୍‌ଗୀ ବିଷୟ ମଧ୍ୟ ଚିନ୍ତା କରିପାରିବ ନାହିଁ, ଯାହା ଡିମ୍ବରୁ ଫୁଟି ନାହିଁ । ଯେଉଁଟି ପ୍ରଥମ ହେଉ ନା କାହିଁକି, ସେଥିରେ କିଛି ଯାଏ ଆସେ ନାହିଁ । ଆମମାନଙ୍କର ପ୍ରାୟ ସବୁ ଚିନ୍ତାଧାରା ଏହି ଡିମ୍ବ ଓ ମୁର୍‌ଗୀ ଭଳି ।*

ମହତ୍ତମ ସତ୍ୟଗୁଡ଼ିକ ଅତ୍ୟନ୍ତ ସରଳ ବୋଲି ବିସ୍ମୃତିଗର୍ଭରେ ଲୁଚିଯାଏ । ଏହି ସତ୍ୟଗୁଡ଼ିକ ସହଜ, କାହିଁକି ନା ଏଗୁଡ଼ିକର ପ୍ରୟୋଗ ସାର୍ବକାଳିକ । ସତ୍ୟ ସର୍ବଦା ସହଜ ଓ ସରଳ । ଯାହା ଜଟିଳ, ତାହା କେବଳ ମନୁଷ୍ୟର ଅଜ୍ଞତା ପାଇଁ । ମନୁଷ୍ୟର ସ୍ୱତନ୍ତ୍ର କର୍ତ୍ତୃତ୍ୱ ମନରେ ନାହିଁ, କାହିଁକି ନା ମନ ବଦ୍ଧ, ସେଠାରେ କୌଣସି ସ୍ୱାଧୀନତା ନାହିଁ । ମନୁଷ୍ୟ ମନ ନୁହେଁ, ଆତ୍ମା । ଏହି ଆତ୍ମା ସର୍ବଦା ମୁକ୍ତ, ସୀମାହୀନ ଓ ଚିରନ୍ତନ । ଏହି ଆତ୍ମାରେ ନିହିତ ଅଛି ମନୁଷ୍ୟର ମୁକ୍ତ ଭାବ । ଆତ୍ମା ସର୍ବଦା ହିଁ ମୁକ୍ତ; କିନ୍ତୁ ମନ ଏହାର କ୍ଷଣସ୍ଥାୟୀ ତରଙ୍ଗଗୁଡ଼ିକ ସହିତ ନିଜକୁ ସଂଶ୍ଳିଷ୍ଟ କରି ଆତ୍ମାକୁ ଦେଖିବାକୁ ପାଏ ନାହିଁ ଏବଂ ଦେଶକାଳନିମିତ୍ତରୂପକ ଗୋଲକଧନ୍ଦାରେ, ଅର୍ଥାତ୍ ମାୟାରେ ନିଜକୁ ହରାଇଦିଏ ।

ଏହା ହିଁ ଆମମାନଙ୍କର ବନ୍ଧନର କାରଣ । ଆମେମାନେ ସର୍ବଦା ମନ ଏବଂ ମନର ଅଭୂତ ପରିବର୍ତ୍ତନଗୁଡ଼ିକ ସହିତ ନିଜକୁ ଏକ ଭାବୁଅଛୁ ।

ମନୁଷ୍ୟର ସ୍ୱତନ୍ତ୍ର ଭାବ ଆତ୍ମାରେ ଅବସ୍ଥିତ ଏବଂ ଆତ୍ମା ନିଜକୁ ମୁକ୍ତ ଉପଲବ୍ଧି କରି—ମନର ବନ୍ଧନ ସତ୍ତ୍ୱେ ମଧ୍ୟ ସର୍ବଦା ଘୋଷଣା କରୁଅଛି : ମୁଁ ମୁକ୍ତ ! ମୁଁ ଯାହା, ମୁଁ ତାହା; ମୁଁ ସେହି ଆତ୍ମା । ଏହା ହିଁ ଆମମାନଙ୍କର ମୁକ୍ତି । ସଦାମୁକ୍ତ ସୀମାହୀନ ଚିରନ୍ତନ ଆତ୍ମା ତାଙ୍କର ମନରୂପ ଯନ୍ତ୍ର ମଧ୍ୟ ଦେଇ କ୍ରମେ କ୍ରମେ ଅଧିକତର ବ୍ୟକ୍ତ ହେଉଅଛନ୍ତି ।

ତାହାହେଲେ ମନୁଷ୍ୟ ସହିତ ପ୍ରକୃତିର ସମ୍ପର୍କ କଅଣ ? ଜୀବର ନିମ୍ନତମ ବିକାଶରୁ ମାନବ ପର୍ଯ୍ୟନ୍ତ—ସର୍ବତ୍ର ପ୍ରକୃତି ମଧ୍ୟ ଦେଇ ଆତ୍ମା ବିକଶିତ ହେଉଅଛନ୍ତି । ନିମ୍ନତମ ଅଭିବ୍ୟକ୍ତ ଜୀବନ ମଧ୍ୟରେ ମଧ୍ୟ ଆତ୍ମାର ଶ୍ରେଷ୍ଠ ବିକାଶ ନିହିତ ଅଛି, କ୍ରମ-ବିକାଶ ପ୍ରକ୍ରିୟା ମାଧ୍ୟମରେ ଆତ୍ମା ନିଜର ବିକାଶ ସାଧନ କରୁଅଛନ୍ତି ।

ବିବର୍ତ୍ତନର ସମସ୍ତ ପ୍ରକ୍ରିୟା ହିଁ ଆତ୍ମାର ନିଜକୁ ବ୍ୟକ୍ତ କରିବାର ସଂଗ୍ରାମ । ଏହା ପ୍ରକୃତି ବିରୋଧରେ ନିରନ୍ତର ସଂଗ୍ରାମ । ପ୍ରକୃତି ଅନୁଯାୟୀ କାର୍ଯ୍ୟ କରି ନୁହେଁ,

---

* ତୁଳନୀୟ—ବୀଜାଙ୍କୁର-ନ୍ୟାୟ

ତାହା ବିରୋଧରେ ସଂଗ୍ରାମ କରି ମନୁଷ୍ୟ ଆଜି ବର୍ତ୍ତମାନ ଅବସ୍ଥା ଲଭ କରିଅଛି । ପ୍ରକୃତ ସହିତ ସାମଞ୍ଜସ୍ୟ ରଖି ଜୀବନଧାରଣ କରିବା, ପ୍ରକୃତ ସହିତ ଏକତାନତା ରକ୍ଷାକରିବା ପ୍ରଭୃତ ସମ୍ବନ୍ଧରେ ବହୁ କଥା ଆମେମାନେ ଶୁଣିଥାଉ । ଏପରି ଧାରଣା ଭ୍ରମ ମାତ୍ର । ଏହି ଟେବୁଲଟି, ଏହି ପାଣି-ସୁରେଇଟି, ଏହି ଖଣିଜ ପଦାର୍ଥଗୁଡ଼ିକ, ଏହି ବୃକ୍ଷ—ଏମାନେ ସମସ୍ତେ ପ୍ରକୃତ ସହିତ ସାମଞ୍ଜସ୍ୟ ରଖି ଚାଲୁଛନ୍ତି । ଏଠାରେ ସଂପୂର୍ଣ୍ଣ ସାମଞ୍ଜସ୍ୟ ବିଦ୍ୟମାନ, କୌଣସି ବିରୋଧ ନାହିଁ । ପ୍ରକୃତ ସହିତ ସାମଞ୍ଜସ୍ୟ-ବିଧାନର ଅର୍ଥ ନିଶ୍ଚେଷ୍ଟତା, ମୃତ୍ୟୁ । ମନୁଷ୍ୟ ଏହି ଗୃହ କପରି ନିର୍ମାଣ କରିଅଛି—ପ୍ରକୃତ ସହିତ ସାମଞ୍ଜସ୍ୟ ରଖି ? ନା, ପ୍ରକୃତ ବିରୋଧରେ ସଂଗ୍ରାମ ମଧ୍ୟ ଦେଇ ଏହା ନିର୍ମିତ ହୋଇ-ଅଛି । ପ୍ରକୃତ ବିରୋଧରେ ନିରନ୍ତର ସଂଗ୍ରାମଦ୍ୱାରା ମନୁଷ୍ୟର ଉନ୍ନତ ହୋଇଥାଏ, ପ୍ରକୃତର ଅନୁଗତ ହୋଇ ନୁହେଁ ।

# ଆତ୍ମା—ଏହାର ସ୍ୱରୂପ ଓ ଲକ୍ଷ୍ୟ

ପ୍ରାଚୀନତମ ଧାରଣା ହେଉଛି, ମନୁଷ୍ୟର ମୃତ୍ୟୁ ହେଲେ ମଧ୍ୟ ସେ ସମ୍ପୂର୍ଣ୍ଣ ଭାବରେ ଧ୍ୱଂସ ହୁଏ ନାହିଁ । ମୃତ୍ୟୁ ପରେ ଗୋଟିଏ ସତ୍ତା ଅବଶିଷ୍ଟ ଥାଏ ଏବଂ ତାହା ବଞ୍ଚିରହେ । ମିଶରୀୟ, ବାବିଲୋନୀୟ ଏବଂ ପ୍ରାଚୀନ ହିନ୍ଦୁ—ପୃଥିବୀର ପ୍ରାଚୀନତମ ତିନୋଟି ଜାତି ମଧ୍ୟରେ ତୁଳନା କରି ସେମାନଙ୍କର ପ୍ରତ୍ୟେକଙ୍କ ନିକଟରୁ ଏହି ଧାରଣାଟି ଗ୍ରହଣ କରିବା ସମୀଚୀନ ହେବ । ମିଶରୀୟ ଏବଂ ବାବିଲୋନୀୟମାନଙ୍କ ମଧ୍ୟରେ ଗୋଟିଏ ଆତ୍ମାବିଷୟକ ଧାରଣା—ଗୋଟିଏ ଯୁଗ୍ମ ସତ୍ତାର ଧାରଣା ଦେଖିବାକୁ ପାଉ । ସେମାନଙ୍କ ମତରେ ଏହି ଦେହର ଅଭ୍ୟନ୍ତରରେ ଅନ୍ୟ ଗୋଟିଏ ଦେହ ବିଦ୍ୟମାନ, ଯାହା ଏଠାରେ ବିଚରଣ କରି କର୍ମାଦି ସମ୍ପାଦନ କରୁଅଛି । ଯେତେବେଳେ ବାହ୍ୟ ଦେହଟିର ମୃତ୍ୟୁ ହୁଏ, ସେତେବେଳେ ଏହି ଦ୍ୱିତୀୟ ଦେହଟି ବାହାରକୁ ଆସେ ଏବଂ କିଛି କାଳ ବଞ୍ଚିରହେ । କିନ୍ତୁ ଏହି ଦ୍ୱିତୀୟ ଦେହଟିର ଜୀବନକାଳ ବାହ୍ୟ ଦେହଟିର ସଂରକ୍ଷଣ ଉପରେ ନିର୍ଭର କରେ । ପ୍ରଥମ ଦେହଟିର କୌଣସି ଅଙ୍ଗ ଆହତ ହେଲେ ଦ୍ୱିତୀୟଟିର ମଧ୍ୟ ସେହି ଅଙ୍ଗଟି ଆହତ ହେବ । ଏହି କାରଣରୁ ପ୍ରାଚୀନ ମିଶରୀୟମାନଙ୍କ ମଧ୍ୟରେ ମୃତ ବ୍ୟକ୍ତିର ଦେହକୁ ସୁଗନ୍ଧ ଅର୍କଦ୍ୱାରା ସୁବାସିତ କରି, ପିରାମିଡ୍ ପ୍ରଭୃତି ନିର୍ମାଣ କରି ସଂରକ୍ଷଣ କରିବାର ଆଗ୍ରହ ଦେଖିବାକୁ ପାଉ । ବାବିଲୋନୀୟ ଏବଂ ପ୍ରାଚୀନ ମିଶରୀୟମାନଙ୍କ ମତରେ ଏହି ଦ୍ୱିତୀୟ ଦେହଟି ଅନନ୍ତକାଳ ବଞ୍ଚି ରହିପାରେ ନାହିଁ; ଅର୍ଥାତ୍ ପରିତ୍ୟକ୍ତ ବାହ୍ୟ ଦେହଟି ଯେତେ ଦିନ ସଂରକ୍ଷିତ ହୁଏ, ସେତେ ଦିନ ଯାଏ ଏହା ବଞ୍ଚିଥାଏ ।

ପରବର୍ତ୍ତୀ ବୈଶିଷ୍ଟ୍ୟ ଏହି ଯେ, ଏହି ଦ୍ୱିତୀୟ ଦେହର ଧାରଣା ସହିତ ଗୋଟିଏ ଭୟଙ୍କର ଭାବ ମିଶ୍ରିତ ରହିଅଛି । ଏହା ସର୍ବଦା ଅସୁଖୀ ଏବଂ ଦୁର୍ଦ୍ଦଶାଗ୍ରସ୍ତ । ତୀବ୍ର ଯନ୍ତ୍ରଣା ସହ୍ୟ କରି ଏହାକୁ ବଞ୍ଚି ରହିବାକୁ ହୁଏ । ଯେଉଁମାନେ ଜୀବିତ, ସେମାନଙ୍କ ନିକଟକୁ ସେ ପୁନଃ ପୁନଃ ଫେରିଆସେ ଏବଂ ଖାଦ୍ୟ, ପାନୀୟ ଓ ଭୋଗ୍ୟ ବସ୍ତୁସମୂହ, ଯେଉଁଗୁଡ଼ିକ ସେ ବର୍ତ୍ତମାନ ପାଉ ନାହିଁ, ସେଗୁଡ଼ିକ ପାଇଁ ପୁନଃ ପୁନଃ ପ୍ରାର୍ଥନା କରେ । ନୀଳନଦୀର ସ୍ୱଚ୍ଛ ଜଳ, ଯାହା ସେ ବର୍ତ୍ତମାନ ପାନ କରିପାରୁ ନାହିଁ, ତାହା ପାନ କରିବାକୁ ଚାହେଁ । ଜୀବିତ ଥିବା ବେଳେ ଯେଉଁସବୁ ଦ୍ରବ୍ୟ ସେ ଭୋଗ କରୁଥିଲା, ସେଗୁଡ଼ିକୁ ପାଇବାର ଆକାଙ୍‌କ୍ଷା କରେ । ଯେତେବେଳେ ଦେଖେ, ସେ ଏଗୁଡ଼ିକ ପାଇବ ନାହିଁ, ସେତେବେଳେ ଅତ୍ୟନ୍ତ ହିଂସ୍ର ହୋଇ ଉଠେ ଏବଂ ସମସ୍ତ ସମୟରେ ଏହିସବୁ ଖାଦ୍ୟ ନ ପାଇଲେ ଜୀବିତ ବ୍ୟକ୍ତିମାନଙ୍କର ଜୀବନ ମଧ୍ୟ ବିପନ୍ନ କରେ ।

ଆର୍ଯ୍ୟମାନଙ୍କର ଚିନ୍ତାଧାରା ଆଲୋଚନା କଲେ ଆମେମାନେ ଏହାର ଗୋଟିଏ ବିଶେଷ ବ୍ୟତିକ୍ରମ ଲକ୍ଷ୍ୟ କରୁ । ଏଠାରେ ଏଥି ଗୋଟିଏ ଦ୍ୱିତୀୟ ଦେହର ଧାରଣା ରହିଅଛି; କିନ୍ତୁ ଏହା ହେଉଛି ଏକ ପ୍ରକାରର ଅଧ୍ୟାତ୍ମ-ଦେହ । ଅନ୍ୟ ଗୋଟିଏ ବଡ଼ ପ୍ରଭେଦ ଏହି ଯେ, ଏହି ଅଧ୍ୟାତ୍ମ-ଦେହ ବା ଆତ୍ମା ବା ଅନ୍ୟ ଯାହା ଆମେମାନେ କହୁ ନା କାହିଁକି, ଏହାର ଜୀବନକାଳ ପରିତ୍ୟକ୍ତ ଦେହଦ୍ୱାରା ବଦ୍ଧ ନୁହେଁ । ବରଂ ଆତ୍ମା ପୂର୍ବ ଦେହର ବନ୍ଧନରୁ ମୁକ୍ତିଲାଭ କରିଅଛି ବୋଲି ମୃତ ଦେହ ଦାହ କରିବାର ଅପୂର୍ବ ପଦ୍ଧତି ଆର୍ଯ୍ୟମାନଙ୍କ ମଧ୍ୟରେ ପ୍ରଚଳିତ । ମୃତର ପରିତ୍ୟକ୍ତ ଦେହରୁ ସେମାନେ ଅବ୍ୟାହତି ପାଇବାକୁ ଚାହାଁନ୍ତି, ଆଉ ମିଶରୀୟମାନେ ଏହି ଦେହକୁ ସୁଗନ୍ଧ ଅର୍କଦ୍ୱାରା ସୁବାସିତ କରି, କବରରେ ପ୍ରୋଥିତ କରି ପିରାମିଡ଼ ପ୍ରଭୃତି ନିର୍ମାଣ କରି ଏହାକୁ ସଂରକ୍ଷିତ କରିବାକୁ ଚାହାଁନ୍ତି । ମୃତ ଦେହକୁ ବିନଷ୍ଟ କରିଦେବାର ଏହି ସର୍ବାପେକ୍ଷା ପ୍ରାଚୀନ ପ୍ରଥା ଛଡ଼ା ମଧ୍ୟ ଉନ୍ନତ ଜାତିଗୁଡ଼ିକ ମଧ୍ୟରେ ମୃତ ଦେହ ବିନଷ୍ଟ କରିବାର ଯେଉଁ ରୀତି ଦେଖାଯାଏ, ତାହାଦ୍ୱାରା ପ୍ରମାଣିତ ହୁଏ ଯେ, ସେମାନଙ୍କ ଭିତରେ ମଧ୍ୟ ଆତ୍ମାର ଧାରଣା ବର୍ତ୍ତମାନ । ଯେଉଁଠାରେ ଦେହବିଯୁକ୍ତ ଆତ୍ମାର ଧାରଣାଟି ଦେହର ଧାରଣା ସହିତ ଯୁକ୍ତ, ସେହିଠାରେ ଆମେମାନେ ମୃତ ଦେହ ସଂରକ୍ଷିତ କରିବାର ଏବଂ ଯେ କୌଣସି ଭାବରେ ଏହାକୁ ପ୍ରୋଥିତ କରିବାର ଆଗ୍ରହ ଲକ୍ଷ୍ୟ କରୁ । ଅନ୍ୟ ପକ୍ଷରେ ଯେଉଁମାନଙ୍କ ମଧ୍ୟରେ ଏହି ଧାରଣା ପରିସ୍ଫୁଟ ହୋଇଅଛି ଯେ, ଆତ୍ମା ଦେହଠାରୁ ସମ୍ପୂର୍ଣ୍ଣ ପୃଥକ୍ ଏବଂ ମୃତ ଦେହ ଧ୍ୱଂସପ୍ରାପ୍ତ ହେଲେ ମଧ୍ୟ ଆତ୍ମା ଆହତ ବା ଧ୍ୱଂସପ୍ରାପ୍ତ ହୁଏ ନାହିଁ, ସେମାନଙ୍କ ମଧ୍ୟରେ ମୃତ ଦେହକୁ ଦାହ କରିବାର ରୀତି ପ୍ରଚଳିତ । ତେଣୁ ଆମେମାନେ ପ୍ରାଚୀନ ଆର୍ଯ୍ୟଜାତି ମଧ୍ୟରେ ଏହି ମୃତ ଦେହକୁ ଦାହ କରିବାର ପ୍ରଥା ଦେଖିବାକୁ ପାଉ । ଯଦିଓ ପାରସିକମାନେ ଏହି ପ୍ରଥାକୁ ପରିବର୍ତ୍ତନ କରି ଗୋଟିଏ ଉଚ୍ଚ ସ୍ଥାନରେ ଅନାବୃତ ଭାବରେ ମୃତ ଦେହକୁ ରଖିବାର ପ୍ରଥା ଅନୁସରଣ କରନ୍ତି, ତଥାପି ଏହି ଉଚ୍ଚ ସ୍ଥାନ ବା 'ଦଖ୍‌ମ' (dakhma) ନାମକ ଅର୍ଥ ଦାହ କରିବାର ସ୍ଥାନ; ଏହାଦ୍ୱାରା ପ୍ରମାଣିତ ହୁଏ ଯେ ପ୍ରାଚୀନ କାଳରେ ସେମାନେ ମଧ୍ୟ ମୃତ ଦେହକୁ ପୋଡ଼ୁଥିଲେ । ଆର୍ଯ୍ୟ ଜାତିର ଅନ୍ୟ ଗୋଟିଏ ବିଶେଷତ୍ୱ ଏହି ଯେ ସେମାନଙ୍କର ଏହି ଦ୍ୱିତୀୟ ଦେହର ଧାରଣା ସହିତ କୌଣସି ଭୀତିର ଭାବ ଜଡ଼ିତ ନ ଥିଲା । ଦ୍ୱିତୀୟ ଦେହଗୁଡ଼ିକ ଖାଦ୍ୟ ବା ସାହାଯ୍ୟ ପାଇଁ ଏହି ପୃଥିବୀକୁ ଓହ୍ଲାଇ ଆସନ୍ତି ନାହିଁ ବା ଏହି ସାହାଯ୍ୟରୁ ବଞ୍ଚିତ ହେଲେ ହିଂସ୍ର ମଧ୍ୟ ହୁଅନ୍ତି ନାହିଁ, ଅଥବା ଜୀବିତ ବ୍ୟକ୍ତିମାନଙ୍କର ଜୀବନ ବିପନ୍ନ କରିବାକୁ ମଧ୍ୟ ପ୍ରୟାସୀ ହୁଅନ୍ତି ନାହିଁ; ସେମାନେ ବରଂ ଆନନ୍ଦିତ—ଦେହବନ୍ଧନରୁ ମୁକ୍ତିଲାଭ କରି ଆହ୍ଲାଦିତ । ଚିତାଗ୍ନି ସ୍ଥୂଳ ଦେହରୁ ବିଶ୍ଳିଷ୍ଟ ହୋଇଯିବାର ପ୍ରତୀକ । ଦେହବନ୍ଧନରୁ ମୁକ୍ତ ଆତ୍ମାକୁ ପିତୃପୁରୁଷଗଣଙ୍କ ନିକଟକୁ—ଯେଉଁଠାରେ ଦୁଃଖ ନାହିଁ, ଯେଉଁଠାରେ ଚିର ଆନନ୍ଦ

ବିବର୍ଜିତ—ସେହିଠାକୁ ବହନ କରିନେବା ପାଇଁ ଏହି ଚିତାଗ୍ନିକୁ ପ୍ରାର୍ଥନା କରାଯାଇଥାଏ ।

ଏହି ଦୁଇଟି ଭାବଧାରା ଲକ୍ଷ୍ୟ କଲେ ଆମେମାନେ ବୁଝିପାରୁ ଉଭୟ ଭାବ ସ୍ୱରୂପତଃ ଏକ—ପ୍ରାଥମିକ ଭାବରେ ଗୋଟିଏ ଆଶାବାଦୀ, ଅନ୍ୟଟି ନୈରାଶ୍ୟବାଦୀ; ଗୋଟିଏ ଅନ୍ୟଟିର ବିବର୍ତ୍ତନ ମାତ୍ର । ଏହା ଖୁବ୍ ସମ୍ଭବ ଯେ, ଅତି ପ୍ରାଚୀନ କାଳରେ ମିଶରୀୟମାନଙ୍କ ଭଳି ଆର୍ଯ୍ୟମାନେ ମଧ୍ୟ ଏହି ଭାବଧାରା ପୋଷଣ କରୁଥିଲେ । ସେମାନଙ୍କର ପ୍ରାଚୀନ ଶାସ୍ତ୍ରସମୂହ ଅଧ୍ୟୟନ କଲେ ଆମେମାନେ ଏହି କଥାର ସାମ୍ଭାବ୍ୟ ବୁଝିପାରୁ । କିନ୍ତୁ ଭାବଟି ବାସ୍ତବିକ ସୁନ୍ଦର ଓ ଅପୂର୍ବ । ଯେତେବେଳେ କୌଣସି ବ୍ୟକ୍ତିର ମୃତ୍ୟୁ ହୁଏ, ସେତେବେଳେ ଏହି ଆତ୍ମା ପିତୃପୁରୁଷଗଣଙ୍କ ନିକଟକୁ ଗମନ କରି ସେମାନଙ୍କ ସହିତ ସୁଖୈଶ୍ୱର୍ଯ୍ୟ ସମ୍ଭୋଗ କରେ । ପିତୃପୁରୁଷଗଣ ଆତ୍ମାକୁ ଅତ୍ୟନ୍ତ କରୁଣାପୂର୍ଣ୍ଣ ଭାବରେ ଗ୍ରହଣ କରନ୍ତି । ଆତ୍ମା ସମ୍ବନ୍ଧରେ ଭାରତର ପ୍ରାଚୀନ ଧାରଣା ଏହିପ୍ରକାର । ପରବର୍ତ୍ତୀ କାଳରେ ଏହି ଭାବଟି ଆହୁରି ଉନ୍ନତ ହୋଇଅଛି । ସେତେବେଳେ ଆମେ ଦେଖିବାକୁ ପାଉ ଯାହାକୁ ସେମାନେ 'ଆତ୍ମା' ବୋଲି ଅଭିହିତ କରନ୍ତି, ତାହା ବସ୍ତୁତଃ ଆତ୍ମା ନୁହେଁ । ଏହି ଜ୍ୟୋତିର୍ମୟ ଦେହ, ସୂକ୍ଷ୍ମ ଦେହ—ଯେତେ ସୂକ୍ଷ୍ମ ହେଉନା କାହିଁକି, ବସ୍ତୁତଃ ଦେହ ମାତ୍ର, ଏବଂ ସୂକ୍ଷ୍ମ ବା ସ୍ଥୂଳ ସବୁ ପ୍ରକାର ଦେହ କୌଣସି ନା କୌଣସି ଉପାଦାନଦ୍ୱାରା ଗଠିତ । ଯାହା କୌଣସି ଅବୟବବିଶିଷ୍ଟ, ତାହା ସୀମିତ; ତାହା କଦାପି ଚିରସ୍ଥାୟୀ ହୋଇପାରେ ନାହିଁ । ଯାହା ଅବୟବବିଶିଷ୍ଟ, ତାହା ପରିବର୍ତ୍ତନଶୀଳ, ଆଉ ଯାହା ପରିବର୍ତ୍ତନଶୀଳ, ତାହା କିପରି ନିତ୍ୟ ହୋଇପାରେ ? ସୁତରାଂ ଏହି ଜ୍ୟୋତିର୍ମୟ ଦେହର ପଶ୍ଚାତରେ ସେମାନେ ଯେପରି ଗୋଟିଏ ସତ୍ତାକୁ ଅନୁଭବ କରିଅଛନ୍ତି, ଯାହାକୁ ମନୁଷ୍ୟର ଆତ୍ମା ବୋଲି ଅଭିହିତ କରାଯାଏ । ଏହାକୁ ହିଁ 'ଆତ୍ମା' ବା 'ଜୀବାତ୍ମା' କୁହାଯାଏ । ଆତ୍ମା ସମ୍ବନ୍ଧୀୟ ଧାରଣା ଏହିଠାରେ ଆରମ୍ଭ ହେଲା । ଏହାକୁ ଅବଶ୍ୟ ବହୁ ପରିବର୍ତ୍ତନ ମଧ୍ୟ ଦେଇ ଯିବାକୁ ହୋଇଅଛି—କେହି ଚିନ୍ତା କରେ, ଏହି ଜୀବାତ୍ମା ନିତ୍ୟ, କେହି ଭାବନ୍ତି—ଏହା ଅତି ସୂକ୍ଷ୍ମ, ପ୍ରାୟ ଗୋଟିଏ ଗୋଟିଏ ଅଣୁଭଳି ସୂକ୍ଷ୍ମ; ଏହା ଶରୀରର ଗୋଟିଏ ବିଶେଷ ଅଂଶରେ ବାସ କରେ ଏବଂ ଯେତେବେଳେ ଜଣେ ମୃତ୍ୟୁ-ମୁଖରେ ପତିତ ହୁଏ, ତାହାର ଜୀବାତ୍ମା ଜ୍ୟୋତିର୍ମୟ ଦେହକୁ ସାଙ୍ଗରେ ନେଇ ଅନ୍ତର୍ହିତ ହୁଏ । ପୁଣି ଅନ୍ୟ ଦଳେ ଲୋକ ଅଛନ୍ତି—ଯେଉଁମାନେ ସ୍ୱୀକାର କରନ୍ତି ନାହିଁ ଯେ ଜୀବାତ୍ମା ଆଣବିକ ପ୍ରକୃତିବିଶିଷ୍ଟ; ଜ୍ୟୋତିର୍ମୟ ଦେହ ଜୀବାତ୍ମା ନୁହେଁ, ଏକଥା କହିବାକୁ ଯାଇ ସେମାନେ ଯେଉଁ ଯୁକ୍ତି ଦିଅନ୍ତି, ଜୀବାତ୍ମାର ଆଣବିକ ପ୍ରକୃତି ଅସ୍ୱୀକାର କରିବାକୁ ଯାଇ ମଧ୍ୟ ସେମାନେ ସେହି ଯୁକ୍ତିର ସାହାଯ୍ୟ ନିଅନ୍ତି ।

ଏହିସବୁ ବିଭିନ୍ନ ମତବାଦରୁ ସାଂଖ୍ୟଦର୍ଶନର ଉଦ୍‌ଭବ ହୋଇଅଛି ଏବଂ ସେଠାରେ ଆମେମାନେ ପ୍ରଭୂତ ପ୍ରଭେଦ ଦେଖିବାକୁ ପାଉ । ସାଂଖ୍ୟଦର୍ଶନର ପ୍ରତି-

ପାଦ୍ୟ ଭାବ ହେଉଛି : ମନୁଷ୍ୟର ଗୋଟିଏ ସ୍ଥୂଳ ଦେହ ଅଛି, ସ୍ଥୂଳ ଦେହର ପଶ୍ଚାତରେ ସୂକ୍ଷ୍ମ ଦେହ ରହିଅଛି, ତାହା ଯେପରି ମନର ବାହକ ଏବଂ ଏହାର ପଶ୍ଚାତରେ ରହିଅଛି ଆତ୍ମା ବା ସାଂଖ୍ୟମତରେ 'ମନର ଦ୍ରଷ୍ଟା' ଏବଂ ତାହା ସର୍ବଦା ବିଚରଣଶୀଳ । ଅର୍ଥାତ୍ ତୁମର ଆତ୍ମା, ମୋର ଆତ୍ମା ଏବଂ ପ୍ରତ୍ୟେକଙ୍କର ଆତ୍ମା ସର୍ବଦା ବିରାଜିତ । ଆତ୍ମା ଯଦି ନିରବୟବ ହୁଏ, ତେବେ କିପରି କୁହାଯାଏ ଯେ ତାହା 'ଦେଶ'ରେ ବଦ୍ଧ ? କାରଣ, ଯାହା ସ୍ଥାନ ଅଧିକାର କରେ, ତାହାର ଅବୟବ ଅଛି; ଯାହା ନିରବୟବ, କେବଳ ତାହା ଅନନ୍ତ ହୋଇପାରେ; ସୁତରାଂ ପ୍ରତ୍ୟେକ ଆତ୍ମା ସର୍ବବ୍ୟାପୀ । ଏହି ବିଷୟରେ ଦ୍ୱିତୀୟ ମତବାଦଟି ଆହୁରି ଚମକପ୍ରଦ । ପ୍ରାଚୀନ କାଳରେ ସେମାନେ ଲକ୍ଷ୍ୟ କରିଅଛନ୍ତି ଯେ, ମନୁଷ୍ୟ ପ୍ରଗତିଶୀଳ । ସେମାନେ ପବିତ୍ରତା, ଶକ୍ତି ଏବଂ ଜ୍ଞାନପଥରେ ଉନ୍ନତି କରିଛନ୍ତି । ପ୍ରଶ୍ନ ହେଲା—ଏହି ଜ୍ଞାନ, ଏହି ପବିତ୍ରତା ଏବଂ ଏହି ଶକ୍ତି ମନୁଷ୍ୟ ମଧ୍ୟରେ କେଉଁଠାରୁ ବିକଶିତ ହୋଇଅଛି ? ଗୋଟିଏ ଶିଶୁର କୌଣସି ଜ୍ଞାନ ନାହିଁ । ଏହି ଶିଶୁଟି ବଡ଼ ହୋଇ ଶକ୍ତିମାନ୍, କ୍ଷମତାପନ୍ନ, ବିଜ୍ଞ ବ୍ୟକ୍ତିରେ ପରିଣତ ହୁଏ । କେଉଁଠାରୁ ଏହି ଶିଶୁଟି ତାହାର ଜ୍ଞାନ ଓ ଶକ୍ତିର ଉତ୍ସର ସନ୍ଧାନ ପାଇଲା ? ଉତ୍ତର—ଏହି ଜ୍ଞାନ ଓ ଶକ୍ତି ତାହା ମଧ୍ୟରେ ଥିଲା; ଶିଶୁର ଆତ୍ମା ମଧ୍ୟରେ ହିଁ ତାହାର ଜ୍ଞାନ, ତାହାର ଶକ୍ତି ପ୍ରଥମରୁ ବର୍ତ୍ତମାନ ଥିଲା । ଏହି ଶକ୍ତି ଏହି ପବିତ୍ରତା ଏବଂ ଏହି କ୍ଷମତା ତାହାର ଆତ୍ମାରେ ଥିଲା, ଅବିକଶିତ ଅବସ୍ଥାରେ ଥିଲା; ତାହା ହିଁ ବର୍ତ୍ତମାନ ବିକଶିତ ହେଲା । ଏହି ବିକଶିତ ଏବଂ ଅବିକଶିତ ଅବସ୍ଥା କହିଲେ ଆମେମାନେ କ'ଣ ବୁଝୁ ? ସାଂଖ୍ୟବାଦୀମାନେ କହନ୍ତି : ପ୍ରତ୍ୟେକ ଆତ୍ମା ପବିତ୍ର, ପୂର୍ଣ୍ଣ, ସର୍ବଶକ୍ତିମାନ୍ ଏବଂ ସର୍ବଜ୍ଞ; କିନ୍ତୁ ଏହା ମନ ମଧ୍ୟ ଦେଇ ଯେପରି ପ୍ରତିଫଳିତ ହୁଏ, ସେହିପରି ବିକଶିତ ହୋଇଥାଏ । ମନ ଯେପରି ଆତ୍ମାର ପ୍ରତିଫଳନର ଗୋଟିଏ ଦର୍ପଣ ମାତ୍ର । ମୋର ମନ ମୋର ଆତ୍ମ-ଶକ୍ତିକୁ ଯେପରି ପ୍ରତିଫଳିତ କରିପାରେ, ସେହିପରି ତୁମର ଏବଂ ଅନ୍ୟର ଆତ୍ମା ମଧ୍ୟ କରୁଅଛି । ଯେଉଁ ଦର୍ପଣ ଯେତେ ବେଶୀ ସ୍ୱଚ୍ଛ, ସେଥିରେ ଆତ୍ମା ସେତେ ସୁନ୍ଦର ଭାବରେ ପ୍ରତିବିମ୍ବିତ ହୁଏ । ସୁତରାଂ ଯେଉଁ ବ୍ୟକ୍ତି ଯେପରି ମନର ଅଧିକାରୀ, ତାହାର ଆତ୍ମିକ ବିକାଶ ମଧ୍ୟ ସେହିପରି ହୋଇଯାଏ । କିନ୍ତୁ ପ୍ରତ୍ୟେକ ଆତ୍ମା ସ୍ୱଭାବତଃ ପବିତ୍ର ଏବଂ ପୂର୍ଣ୍ଣ ।

ପୁଣି ଗୋଟିଏ ସମ୍ପ୍ରଦାୟର ମତ, ଏପରି ହେବା ସମ୍ଭବ ନୁହେଁ । ଯଦିଓ ଆତ୍ମା ସ୍ୱଭାବତଃ ପବିତ୍ର ଓ ପୂର୍ଣ୍ଣ, ଏହି ପବିତ୍ରତା ଓ ପୂର୍ଣ୍ଣତ୍ୱ ବେଳେବେଳେ ଯେପରିକି ସଙ୍କୁଚିତ ହୁଏ, ପୁଣି ବେଳେ ବେଳେ ପ୍ରସାରିତ ମଧ୍ୟ ହେଉଥାଏ । କେତେଗୁଡ଼ିଏ କାର୍ଯ୍ୟ ଏବଂ ଚିନ୍ତା ଯେପରିକି ଆତ୍ମାର ପ୍ରକୃତିକୁ ସଙ୍କୁଚିତ କରେ, ପୁଣି କେତେଗୁଡ଼ିଏ କାର୍ଯ୍ୟ ଏବଂ ଚିନ୍ତା ତାହାର ସ୍ୱଭାବକୁ ପରିସ୍ଫୁଟ ଓ ବିକଶିତ କରେ । ଏହି ବିଷୟଟି ଆହୁରି ପରିଷ୍କାର ଭାବରେ ବିଶ୍ଳେଷଣ କରାହୋଇଅଛି । ଯେଉଁସବୁ ଚିନ୍ତା ଓ କାର୍ଯ୍ୟ ଆତ୍ମାର ପବିତ୍ରତା ଓ ଶକ୍ତିକୁ ସଙ୍କୁଚିତ କରେ, ସେଗୁଡ଼ିକ ଅଶୁଭ; ଯେଉଁସବୁ ଚିନ୍ତା

ଓ କାର୍ଯ୍ୟ ଆତ୍ମାର ଶକ୍ତିକୁ ପରିସ୍ଫୁଟ କରେ, ସେଗୁଡ଼ିକ ଶୁଭ । ଦୁଇଟି ମତବାଦ ମଧ୍ୟରେ ପ୍ରଭେଦ ଅତି ସାମାନ୍ୟ । 'ସଂକୋଚନ' ଏବଂ 'ପ୍ରସାରଣ'—ଏହି ଦୁଇଟି ଶବ୍ଦର ବ୍ୟାଖ୍ୟା ଉପରେ ଏହା ନିର୍ଭର କରୁଅଛି । ଯେଉଁ ମତରେ ମନର ଗଠନ ଉପରେ ଆତ୍ମାର ବିକାଶର ତାରତମ୍ୟ ନିର୍ଭର କରେ, ସେହି ମତକୁ ନିଃସନ୍ଦେହ ଭାବରେ ଶ୍ରେଷ୍ଠତର ବୋଲି କୁହାଯାଇପାରେ । କିନ୍ତୁ ସଂକୋଚନ ଏବଂ ପ୍ରସାରଣ-ମତବାଦୀ ଏହି ଦୁଇଟି ଶବ୍ଦର ଆଶ୍ରୟ ନେବାକୁ ଚାହାଁନ୍ତି । ସେମାନଙ୍କୁ ଆମର ପଚାରିବା ଉଚିତ, ଆତ୍ମାର ସଂକୋଚନ ଏବଂ ପ୍ରସାରଣ କହିଲେ ସେମାନେ କଅଣ ବୁଝନ୍ତି ? ଆତ୍ମା ଚେତନ ବସ୍ତୁ । ପ୍ରଶ୍ନ କରିପାରେ, ସ୍ଥୂଳ ଜଡ଼ ପଦାର୍ଥ ବା ସୂକ୍ଷ୍ମ ଚେତନବସ୍ତୁ ମନର ସଂକୋଚନ ଓ ପ୍ରସାରଣ କହିଲେ କ'ଣ ବୁଝାଏ ? କିନ୍ତୁ ଏହା ଛଡ଼ା ଯାହା ଜଡ଼ ନୁହେଁ, ଯାହା ଦେଶକାଳର ଅତୀତ, ତାହା ସମ୍ବନ୍ଧରେ ଏହି ସଂକୋଚନ ଓ ପ୍ରସାରଣ ଶବ୍ଦ ଦୁଇଟି କିପରି ପ୍ରଯୁକ୍ତ ହେବ ? ସୁତରାଂ ମନେହୁଏ, ଯେଉଁ ମତ-ବାଦରେ ଆତ୍ମା ସର୍ବଦା ପବିତ୍ର ଓ ପୂର୍ଣ୍ଣ, କେବଳ ମାନସିକ ଗଠନର ତାରତମ୍ୟ ଅନୁସାରେ ଆତ୍ମାର ପ୍ରତିଫଳନର ତାରତମ୍ୟ ଘଟେ, ସେହି ମତ ଅପେକ୍ଷାକୃତ ଭଲ । ମନର ପରିବର୍ତ୍ତନ ସଙ୍ଗେ ଏହାର ସ୍ୱଭାବ ମଧ୍ୟ ଯେପରିକି କ୍ରମଶଃ ଅଧିକରୁ ଶୁଦ୍ଧ ହେଉଥାଏ ଏବଂ ଆତ୍ମାର ବିକାଶ ମଧ୍ୟ ଉନ୍ନତତର ହେଉଥାଏ । ଯେତେ ଦିନ ମନ ଶୁଦ୍ଧ ନ ହୁଏ—ଯେଉଁଥିରେ ଆତ୍ମାର ଅନ୍ତର୍ନିହିତ ଗୁଣସମୂହ ପୂର୍ଣ୍ଣ ବିକଶିତ ନ ହୁଏ, ସେତେଦିନ ଏହି କ୍ରମବିକାଶ ଚାଲୁଥାଏ; ତାହାପରେ ଆତ୍ମା ମୁକ୍ତ ହୁଏ ।

ତା'ହେଲେ ଚରମ ଲକ୍ଷ୍ୟ କ'ଣ ? ଭାରତର ବିଭିନ୍ନ ଧର୍ମସମ୍ପ୍ରଦାୟ ଆତ୍ମାର ଲକ୍ଷ୍ୟ ସମ୍ବନ୍ଧରେ ଏକମତ ବୋଲି ମନେହୁଏ, ମୂଳ ଭାବଟି ଏକ—ମୁକ୍ତି । ମନୁଷ୍ୟ ଅନନ୍ତ ଏବଂ ବର୍ତ୍ତମାନ ଯେଉଁ ବଦ୍ଧ ଅବସ୍ଥାରେ ସେ ଅଛି, ଏହା ତାହାର ସ୍ୱଭାବ ନୁହେଁ । କିନ୍ତୁ ଏହି ବିଭିନ୍ନ ବଦ୍ଧ ଅବସ୍ଥା ମଧ୍ୟଦେଇ ଆତ୍ମା କ୍ରମଶଃ ମୁକ୍ତିପଥରେ ଅଗ୍ରସର ହେବାକୁ ପ୍ରାଣପଣେ ଚେଷ୍ଟା କରୁଅଛି ଏବଂ ଯେତେଦିନ ଆତ୍ମା ସ୍ୱାଧିକାର —ସେହି ଅସୀମ, ଅନନ୍ତ, ମୁକ୍ତସ୍ୱଭାବ—ଲାଭ ନ କରିଛି, ସେତେଦିନ ସେ ଚେଷ୍ଟା କରିଚାଲିବ । ଆମେମାନେ ଆମମାନଙ୍କର ଚତୁର୍ଦ୍ଦିଗରେ ଯେଉଁସବୁ ସଂଯୋଗ, ପୁନଃ-ସଂଯୋଗ ଏବଂ ବିକାଶ ଦେଖିବାକୁ ପାଉଅଛୁ, ସେଗୁଡ଼ିକ ଉଦ୍ଦେଶ୍ୟ ବା ଲକ୍ଷ୍ୟ ନୁହେଁ —ପଥର କ୍ଷଣିକ ଘଟଣା ମାତ୍ର । ପୃଥିବୀ, ସୂର୍ଯ୍ୟ, ଚନ୍ଦ୍ର, ନକ୍ଷତ୍ର, ଶୁଭ, ଅଶୁଭ, ଆନନ୍ଦ, ଓ ଦୁଃଖ ପ୍ରଭୃତି ସଂଯୋଗ ଆମମାନଙ୍କୁ ଅଭିଜ୍ଞତା-ଅର୍ଜନରେ ସାହାଯ୍ୟ କରେ ଏବଂ ଅଭିଜ୍ଞତା ମଧ୍ୟଦେଇ ଆତ୍ମା ସବୁ ବନ୍ଧନ ଛିନ୍ନ କରି ନିଜର ପୂର୍ଣ୍ଣ ସ୍ୱରୂପ ପ୍ରକାଶ କରେ । ଆତ୍ମା ସେତେବେଳେ ଅନ୍ତଃ ଓ ବହିଃ ପ୍ରକୃତିର କୌଣସି ନିୟମଦ୍ୱାରା ବଦ୍ଧ ହୁଏ ନାହିଁ । ଆତ୍ମା ସେତେବେଳେ ସବୁ ବନ୍ଧନ, ସବୁ ନିୟମ ଓ ସମଗ୍ର ପ୍ରକୃତିର ଊର୍ଦ୍ଧ୍ୱକୁ ଚାଲିଯାଇଛି । ପ୍ରକୃତି ସେତେବେଳେ ଆତ୍ମାର ଅଧୀନ ହୋଇଯାଏ । ଆତ୍ମା କଦାପି ପ୍ରକୃତିର ଅଧୀନ ହୁଏ ନାହିଁ, ବର୍ତ୍ତମାନ ଯଦିଓ ଅଧୀନ ବୋଲି ମନେ ହେଉଅଛି ।

ଏହା ହିଁ ଆତ୍ମାର ଏକମାତ୍ର ଲକ୍ଷ୍ୟ । ଯେଉଁ ଅଭିଜ୍ଞତା-ପରମ୍ପରା ମଧ୍ୟଦେଇ ଆତ୍ମା ବିକଶିତ ହେଉଅଛି, ତାହାର ଲକ୍ଷ୍ୟ—ମୁକ୍ତିଲାଭ । ଅଭିଜ୍ଞତାଗୁଡ଼ିକ ଆତ୍ମାର ଜନ୍ମ ଓ ଜୀବନ ବୋଲି ପ୍ରତିଭାତ ହୁଏ । ଆତ୍ମା ଯେପରି ଗୋଟିଏ ନିମ୍ନତର ଦେହ ଧାରଣ କରେ ଏବଂ ଏହା ମଧ୍ୟଦେଇ ଆତ୍ମ-ପ୍ରକାଶର ଚେଷ୍ଟା କରୁଅଛି । ଆତ୍ମା ନିମ୍ନତର ଦେହଟିକୁ ଅପର୍ଯ୍ୟାପ୍ତ ମନେକରି ଦୂରକୁ ନିକ୍ଷେପ କରୁଅଛି ଏବଂ ଗୋଟିଏ ଉନ୍ନତ ଧରଣର ଦେହ ଗ୍ରହଣ କରୁଅଛି । ତାକୁ ବି ଅକାର୍ଯ୍ୟକର ବିବେଚନା କରି ପରିତ୍ୟାଗ କରିବ ଏବଂ ଉନ୍ନତତର ଦେହ ଧାରଣ କରିବ, ଅବଶେଷରେ ଆତ୍ମା ଏପରି ଗୋଟିଏ ଶରୀରର ସନ୍ଧାନ ପାଇବ, ଯାହା ସାହାଯ୍ୟରେ ତାହାର ଉଚ୍ଚତମ ଆକାଙ୍‌କ୍ଷା ବିକଶିତ ହେବ । ସେତେବେଳେ ଯାଇଁ ଆତ୍ମା ମୁକ୍ତିଲାଭ କରିବ ।

ବର୍ତ୍ତମାନ ପ୍ରଶ୍ନ ଏହି, ଆତ୍ମା ଯଦି ଅନନ୍ତ ଓ ସର୍ବବ୍ୟାପୀ ହୁଏ, ଆତ୍ମା ଯଦି ସୂକ୍ଷ୍ମ ଚେତନବସ୍ତୁ ହୁଏ, ତେବେ ଏହାର ବାରମ୍ବାର ଶରୀରଗ୍ରହଣ କରିବାର ଅର୍ଥ କ'ଣ ? ତତ୍ତ୍ୱଟି ଏହି—ଆତ୍ମା ଆସେ ନାହିଁ କି ଯାଏ ନାହିଁ, ଜନ୍ମଗ୍ରହଣ କରେ ନାହିଁ କି ମରେ ନାହିଁ । ଯାହା ସର୍ବବ୍ୟାପୀ ତାହାର ଜନ୍ମଗ୍ରହଣ କିପରି ସମ୍ଭବ ? ଆତ୍ମା ଦେହରେ ବାସ କରେ, ଏପରି କହିବା ଅର୍ଥହୀନ ନିର୍ବୋଧତା । ଯାହା ଅସୀମ, ତାହା ସୀମାବଦ୍ଧ ସ୍ଥାନରେ ରହିବ କିପରି ? କିନ୍ତୁ ଏକ ବ୍ୟକ୍ତି ଯେତେବେଳେ ହାତରେ ଖଣ୍ଡେ ବହି ନେଇ ପଢ଼ି ପଢ଼ି ପୃଷ୍ଠା ପରେ ପୃଷ୍ଠା ଓଲଟାଇ ଅଗ୍ରସର ହେଉଥାଏ, ସେତେବେଳେ ବହିର ପୃଷ୍ଠାଗୁଡ଼ିକ ପୁନଃ ପୁନଃ ସ୍ଥାନ ପରିବର୍ତ୍ତନ କରୁଥାଏ, କିନ୍ତୁ ପାଠକ ଯଥା ସ୍ଥାନରେ ହିଁ ଅବସ୍ଥାନ କରେ, ଆତ୍ମା ସମ୍ବନ୍ଧରେ ମଧ୍ୟ ଏହି କଥା ପ୍ରଯୋଜ୍ୟ । ସମଗ୍ର ପ୍ରକୃତି ଆତ୍ମା ନିକଟରେ ଖଣ୍ଡେ ପୁସ୍ତକ ଭଳି—ଆତ୍ମା ଯେପରି ଏହା ପାଠ କରୁଅଛି । ଗୋଟିଏ ଗୋଟିଏ ଜୀବନ ଯେପରି ସେହି ପୁସ୍ତକର ଗୋଟିଏ ପୃଷ୍ଠା, ଏହି ପୃଷ୍ଠାଟି ପଢ଼ା ହୋଇଗଲେ ସେ କ୍ରମଶଃ ପୃଷ୍ଠା ଓଲଟାଇ ଅଗ୍ରସର ହେଉ-ଥାଏ, ଯେତେ ଦିନ ଯାଏ ପୁସ୍ତକ ପଢ଼ା ଶେଷ ନ ହୋଇଛି । ବିଶ୍ୱର ସମସ୍ତ ଅଭିଜ୍ଞତା ଲାଭ କରି ଆତ୍ମା ପୂର୍ଣ୍ଣ ହୁଏ । କୌଣସି କାଳରେ ଏହି ଆତ୍ମା ସ୍ଥାନ ପରିବର୍ତ୍ତନ କରି-ନାହିଁ, ଆସିନାହିଁ କି ଯାଇନାହିଁ, ଏହା କେବଳ ଅଭିଜ୍ଞତା ସଞ୍ଚୟ କରୁଥିଲା । କିନ୍ତୁ ଆମମାନଙ୍କ ନିକଟରେ ପ୍ରତୀୟମାନ ହୁଏ ଯେ, ଆମେମାନେ ଯେପରି ଘୂରୁଅଛୁଁ । ପୃଥିବୀ ଆବର୍ତ୍ତିତ ହେଉଅଛି, ତଥାପି ଆମେମାନେ ମନେକରୁ ଯେ, ପୃଥିବୀ ପରିବର୍ତ୍ତିରେ ସୂର୍ଯ୍ୟ ଘୂରୁଅଛି; ଆମେମାନେ ଜାଣୁ ଏହା ଗୋଟିଏ ଭ୍ରମ—ଇନ୍ଦ୍ରିୟର ଛଳନାମାତ୍ର । ଆମେମାନେ ଜନ୍ମଗ୍ରହଣ କରୁ ଏବଂ ମରୁ, ଆମେମାନେ ଆସୁ ଏବଂ ଯାଉ—ଏହା ମଧ୍ୟ ଗୋଟିଏ ଭ୍ରାନ୍ତିମାତ୍ର । ଆମେମାନେ ଆସୁ ନାହିଁ କି ଯାଉ ନାହିଁ, ଆମେମାନେ ଜନ୍ମଗ୍ରହଣ ମଧ୍ୟ କରୁ ନାହିଁ । କାରଣ, ଆତ୍ମା କେଉଁଠାକୁ ଯିବ ? ତାହାର ଗମନର କୌଣସି ସ୍ଥାନ ନାହିଁ । ଏପରି କଅଣ କୌଣସି ସ୍ଥାନ ଅଛି, ଯେଉଁଠାରେ ଆତ୍ମା ପୂର୍ବରୁ ବିଦ୍ୟମାନ ନାହିଁ ?

ଅତଏବ ପ୍ରକୃତିର ବିବର୍ତ୍ତନ ଏବଂ ଆତ୍ମାର ବିକାଶର ତତ୍ତ୍ୱଟି ଉଠିଲା । ବିବର୍ତ୍ତନର ବିଭିନ୍ନ ପର୍ଯ୍ୟାୟଗୁଡ଼ିକ—ଉଚ୍ଚରୁ ଉଚ୍ଚତର ସଂଯୋଗସମୂହ ଆତ୍ମାରେ ନାହିଁ, ଆତ୍ମା ଯେପରି ସେହିପରି ଅଛି । ଏଗୁଡ଼ିକ ପ୍ରକୃତିରେ ଅବସ୍ଥିତ; କିନ୍ତୁ ଯେହେତୁ ପ୍ରକୃତି ଉଚ୍ଚରୁ ଉଚ୍ଚତର ପର୍ଯ୍ୟାୟରେ ବିବର୍ତ୍ତିତ ହେଉଅଛି, ଆତ୍ମାର ମହିମା ମଧ୍ୟ କ୍ରମଶଃ ବିକଶିତ ହେଉଅଛି । ମନେକର, ଏଠାରେ ଗୋଟିଏ ପର୍ଦା ରହିଅଛି ଏବଂ ପର୍ଦା ପଶ୍ଚାତରେ ଗୋଟିଏ ଅଶ୍ଚର୍ଯ୍ୟ ଦୃଶ୍ୟ ବିଦ୍ୟମାନ । ଏହି ପର୍ଦାରେ ଗୋଟିଏ କ୍ଷୁଦ୍ର ଛିଦ୍ର ଅଛି, ଯାହା ଭିତର ଦେଇ ସେହି ଦୃଶ୍ୟର କିୟଦଂଶ ଆମମାନଙ୍କର ଦୃଷ୍ଟି-ଗୋଚର ହେଉଅଛି । ମନେକର, ଛିଦ୍ରଟି କ୍ରମଶଃ ବଢ଼ିବାକୁ ଲାଗିଲା । ସଙ୍ଗେ ସଙ୍ଗେ ଦୃଶ୍ୟଟି ଆମମାନଙ୍କର ଦୃଷ୍ଟିପଥରେ ଅଧିକତର ପରିସ୍ଫୁଟ ହେବାକୁ ଲାଗିଲା; ଯେତେବେଳେ ସମସ୍ତ ପର୍ଦା ଅପସାରିତ ହୁଏ, ସେତେବେଳେ ଦୃଶ୍ୟ ଓ ତୁମ ମଧ୍ୟରେ କୌଣସି ବ୍ୟବଧାନ ରହେନାହିଁ, ତୁମେ ଏହାର ସବୁଟା ଦେଖିବାକୁ ପାଅ । ଏହି ପର୍ଦାଟି ହେଲା ମନୁଷ୍ୟର ମନ । ଏହାର ପଶ୍ଚାତରେ ଆତ୍ମାର ସେହି ମହିମା, ସେହି ପବିତ୍ରତା, ସେହି ଅନନ୍ତ ଶକ୍ତି ବିଦ୍ୟମାନ; ଏବଂ ମନ ଯେତେ ହିଁ ସ୍ୱଚ୍ଛରୁ ସ୍ୱଚ୍ଛତର, ପବିତ୍ରରୁ ପବିତ୍ରତର ହେଉଥାଏ, ଆତ୍ମା ମଧ୍ୟ ସ୍ୱମହିମାରେ କ୍ରମଶଃ ବିକଶିତ ହୋଇଉଠେ । ଏହାର କାରଣ ଏହା ନୁହେଁ ଯେ, ଆତ୍ମା ପରିବର୍ତ୍ତିତ ହେଉଅଛି—ପରିବର୍ତ୍ତନ ଯାହା କିଛି, ତାହା ଏହି ପର୍ଦାରେ, ଆତ୍ମା ସେହି ଅପରିବର୍ତ୍ତନୀୟ, ଅମୃତରୂପ, ପବିତ୍ର ଆନନ୍ଦମୟ ଅଦ୍ୱୈତ ସତ୍ତା ।

ସୁତରାଂ ଶେଷ ପର୍ଯ୍ୟନ୍ତ ତତ୍ତ୍ୱଟି ଏହିପରି ହେଲା: ଉଚ୍ଚତମରୁ ନିମ୍ନତମ—ନିକୃଷ୍ଟ ବ୍ୟକ୍ତି ପର୍ଯ୍ୟନ୍ତ, ଶ୍ରେଷ୍ଠ ବ୍ୟକ୍ତିରୁ କ୍ଷୁଦ୍ରତମ ବିଚରଣଶୀଳ କୀଟାଣୁ ପର୍ଯ୍ୟନ୍ତ—ସମସ୍ତେ ହିଁ ସେହି ପବିତ୍ର ପୂର୍ଣ୍ଣସ୍ୱରୂପ, ଅସୀମ ଆନନ୍ଦମୟ ସତ୍ତା । କୀଟ ମଧ୍ୟରେ ଆତ୍ମାର ଅନନ୍ତ ଶକ୍ତିର ସ୍ୱଳ୍ପ ବିକାଶ; ଶ୍ରେଷ୍ଠ ବ୍ୟକ୍ତି ମଧ୍ୟରେ ଆତ୍ମାର ଶକ୍ତି ସର୍ବାଧିକ ବିକଶିତ ହେଉଅଛି । ପ୍ରଭେଦ କେବଳ ବିକାଶର ତାରତମ୍ୟରେ, ମୂଳତଃ ଆତ୍ମା ଏକ । ସବୁ ଜୀବ ମଧ୍ୟରେ ସେହି ପବିତ୍ର ପୂର୍ଣ୍ଣ ଆତ୍ମା ଅବସ୍ଥାନ କରୁଅଛି ।

ସ୍ୱର୍ଗ ବା ଅନୁରୂପ ସ୍ଥାନସମୂହର ଯେଉଁ ଉଲ୍ଲେଖ ରହିଅଛି, ସେଗୁଡ଼ିକ ଗୁରୁତ୍ୱ ହିସାବରେ ଦ୍ୱିତୀୟ ପର୍ଯ୍ୟାୟଭୁକ୍ତ କୁହାଯାଇପାରେ । ସ୍ୱର୍ଗର ଧାରଣାକୁ ଗୋଟିଏ ନିମ୍ନସ୍ତରର ଧାରଣା କୁହାଯାଇପାରେ । ଭୋଗପୂର୍ଣ୍ଣ ଗୋଟିଏ ସ୍ଥାନର ଧାରଣାରୁ ଏହାର ଉତ୍ପତ୍ତି ହୋଇଅଛି; ଆମେମାନେ ନିର୍ବୋଧଭଳି ବିଶ୍ୱଚରାଚରକୁ ଆମମାନଙ୍କର ବର୍ତ୍ତମାନ ଅଭିଜ୍ଞତା ମଧ୍ୟରେ ହିଁ ସୀମିତ କରି ରଖିବାକୁ ଚାହୁଁ । ଶିଶୁମାନେ ଚିନ୍ତା କରନ୍ତି, ସମଗ୍ର ବିଶ୍ୱ ଶିଶୁମାନଙ୍କଦ୍ୱାରା ପରିପୂର୍ଣ୍ଣ; ଉନ୍ମାଦମାନଙ୍କ ନିକଟରେ ସମଗ୍ର ପୃଥିବୀ ଗୋଟିଏ ଉନ୍ମାଦାଗାର । ସୁତରାଂ ଯେଉଁମାନଙ୍କ ନିକଟରେ ପୃଥିବୀ କେବଳ ଇନ୍ଦ୍ରିୟଭୋଗ ପାଇଁ, ଯେଉଁମାନଙ୍କର ସମଗ୍ର ଜୀବନ ଆହାର ଏବଂ ପ୍ରମୋଦରେ ବ୍ୟୟିତ ହୁଏ, ଯେଉଁମାନଙ୍କ ସହିତ ପଶୁର ବ୍ୟବଧାନ ଅତ୍ୟନ୍ତ ସାମାନ୍ୟ,

ସେମାନେ ସ୍ୱଭାବତଃ ହିଁ ଏହି ଜୀବନର କ୍ଷଣସ୍ଥାୟିତ୍ୱ ଲକ୍ଷ୍ୟ କରି ଏପରି ଗୋଟିଏ ସ୍ଥାନର କଳ୍ପନା କରନ୍ତି, ଯେଉଁଠାରେ ସେମାନେ ଆହୁରି ଭୋଗସୁଖ ଲାଭ କରିବେ। ସେମାନଙ୍କର ଭୋଗାକାଙ୍କ୍ଷା ଅସୀମ, ସୁତରାଂ ସେମାନେ ଏପରି ଗୋଟିଏ ଗୋଟିଏ ସ୍ଥାନର କଳ୍ପନା କରିବାକୁ ବାଧ୍ୟ, ଯେଉଁଠାରେ ଅବିରତ ଇନ୍ଦ୍ରିୟସୁଖ ରହିଅଛି, ଏବଂ ଯେତେ ବେଶୀ ଆମେମାନେ ଅଗ୍ରସର ହେଉ, ସେତେ ବେଶୀ ଦେଖୁଁ; ଯେଉଁମାନେ ଏସବୁ ସ୍ଥାନକୁ ଯିବାକୁ ଆକାଙ୍କ୍ଷା କରନ୍ତି, ସେମାନଙ୍କର ଅବଶ୍ୟ ହିଁ ସେଠାକୁ ଯିବାକୁ ହୁଏ। ସେମାନେ ସ୍ୱପ୍ନ ମଧ୍ୟଦେଇ ଚାଲନ୍ତି—ଗୋଟିଏ ସ୍ୱପ୍ନ ଶେଷ ହେଲେ ଅନ୍ୟ ଗୋଟିଏ ସ୍ୱପ୍ନ ମଧ୍ୟରେ ଯାଇ ପଡ଼ନ୍ତି, ଯେଉଁଠାରେ ଇନ୍ଦ୍ରିୟଭୋଗର ପ୍ରାଚୁର୍ଯ୍ୟ ବିଦ୍ୟମାନ। ତାହାପରେ ଯେତେବେଳେ ସେମାନଙ୍କର ସ୍ୱପ୍ନ ଭାଙ୍ଗିଯାଏ, ସେମାନେ ଅନ୍ୟ ଗୋଟିଏ ଜଗତ ପାଇଁ ଚିନ୍ତା କରିବାକୁ ବାଧ୍ୟ ହୁଅନ୍ତି। ଏହିପରି ଭାବରେ ସେମାନେ ଏକ ସ୍ୱପ୍ନରୁ ଅନ୍ୟ ସ୍ୱପ୍ନକୁ ତାଡ଼ିତ ହେଉଥାଆନ୍ତି।

ତାହାପରେ ଶେଷ ତତ୍ତ୍ୱ—ଆତ୍ମା ସମ୍ବନ୍ଧରେ ଆହୁରି ଗୋଟିଏ ଧାରଣା। ଯଦି ଆତ୍ମା ପବିତ୍ର ଏବଂ ସ୍ୱରୂପତଃ ପୂର୍ଣ୍ଣ, ଯଦି ପ୍ରତି ଆତ୍ମା ଅନନ୍ତଶକ୍ତିସମ୍ପନ୍ନ ଏବଂ ସର୍ବବ୍ୟାପୀ ହୁଏ, ତେବେ ବହୁ ଆତ୍ମାର କଳ୍ପନା କିପରି ସମ୍ଭବ ହୋଇପାରେ ? ଏକାଥରକେ ବହୁ ଅନନ୍ତର କଳ୍ପନା ସମ୍ଭବ ନୁହେଁ; ବହୁର କଥା ଛାଡ଼ିଦିଅ, ଏକାଥରକେ ଦୁଇଟି ଅନନ୍ତର କଳ୍ପନା କରାଯାଏନାହିଁ। ଯଦି ଦୁଇଟି ଅନନ୍ତ ଥାଆନ୍ତା, ତେବେ ଗୋଟିଏ ଅନ୍ୟଟିଦ୍ୱାରା ସୀମାବଦ୍ଧ ଥାଆନ୍ତା, ଫଳରେ ଦୁଇଟି ହିଁ ସୀମିତ ହୁଅନ୍ତା। ଅନନ୍ତ କେବଳ ଗୋଟିଏ ହିଁ ହୋଇପାରେ ଏବଂ ସାହସ ସହିତ ଏହି ସିଦ୍ଧାନ୍ତରେ ଉପନୀତ ହେବା ଚଳେ, ଅନନ୍ତ ଏକ—ଦୁଇ ନୁହେଁ।

ଦୁଇଟି ପକ୍ଷୀ ଗୋଟିଏ ବୃକ୍ଷରେ ଅବସ୍ଥାନ କରୁଛନ୍ତି—ଗୋଟିଏ ଶୀର୍ଷ-ଦେଶରେ, ଅନ୍ୟଟି ନିମ୍ନରେ। ଉଭୟ ହିଁ ବିଚିତ୍ର ବର୍ଣ୍ଣର; ଗୋଟିଏ ଫଳ ଭକ୍ଷଣ କରେ, କିନ୍ତୁ ଅନ୍ୟଟି ଶାନ୍ତ, ମହିମାମୟ ହୋଇ ନିଜ ଗୌରବରେ ଅବସ୍ଥାନ କରୁ-ଅଛି। ନିମ୍ନର ପକ୍ଷୀଟି ଭଲ ଓ ମନ୍ଦ ଫଳ ଭକ୍ଷଣ କରୁଅଛି ଏବଂ ଇନ୍ଦ୍ରିୟଭୋଗ୍ୟ ବସ୍ତୁର ପଶ୍ଚାତରେ ଧାବିତ ହେଉଅଛି। ଯେତେବେଳେ ପକ୍ଷୀଟି ଗୋଟିଏ ତିକ୍ତ ଫଳ ଭକ୍ଷଣ କରେ, ସେତେବେଳେ ଊର୍ଦ୍ଧ୍ୱଗାମୀ ହୁଏ; ଊର୍ଦ୍ଧ୍ୱକୁ ଦୃଷ୍ଟିପାତ କରି ସେ ଦେଖେ, ଅନ୍ୟ ପକ୍ଷୀଟି ସେଠାରେ ଶାନ୍ତ ସଂଯତ ହୋଇ ଅବସ୍ଥାନ କରୁଅଛି; ସେ ଭଲ ବା ମନ୍ଦ କୌଣସି ଫଳର ଆକାଙ୍କ୍ଷା ନ କରି, କୌଣସି ପ୍ରକାର ଇନ୍ଦ୍ରିୟ-ତୃପ୍ତିର ଅନୁସନ୍ଧାନ ନ କରି, ଆତ୍ମସ୍ଥ ହୋଇ ଅବସ୍ଥାନ କରୁଅଛି। ନିମ୍ନସ୍ଥ ପକ୍ଷୀଟି ଊର୍ଦ୍ଧ୍ୱରେ ଅବସ୍ଥାନକାରୀ ପକ୍ଷୀଟିକୁ ଦେଖି କ୍ରମଶଃ ତାହାର ସମୀପବର୍ତ୍ତୀ ହେବାର ଚେଷ୍ଟା କରୁଅଛି। ଟିକେ ଉପରକୁ ଉଠୁଅଛି, କିନ୍ତୁ ପୂର୍ବ ପୂର୍ବ ସଂସ୍କାରସମୂହ ବଳବତ୍ ଥିବାରୁ ସେ ସେହି ଏକା ଫଳ ପୁଣି ଭକ୍ଷଣ କରୁଅଛି। ପୁଣି ଏକ ସମୟରେ ଗୋଟିଏ ଅତି ତିକ୍ତ ଫଳ ଖାଇ ମର୍ମାହତ ହୁଏ ଏବଂ ଊର୍ଦ୍ଧ୍ୱକୁ ନିରୀକ୍ଷଣ କରେ।

ସେଠାରେ ସେହି ଶାନ୍ତ ସଂଯତ ପକ୍ଷୀଟିକୁ ପୁଣି ଦେଖେ । ସେ ତାହାର ନିକଟବର୍ତ୍ତୀ ହେବାକୁ ଚେଷ୍ଟା କରୁଛି; କିନ୍ତୁ ପୂର୍ବ ସଂସ୍କାର-ପ୍ରଭାବରେ ପୁନଃ ପୁନଃ ନିମ୍ନଗାମୀ ହୋଇ ସ୍ୱାଦୁ ଏବଂ ତିକ୍ତ ଫଳ ଭକ୍ଷଣ କରୁଅଛି । ସେ ପୁଣି ଗୋଟିଏ ତିକ୍ତ ଫଳ ଭକ୍ଷଣ କରି ଊର୍ଦ୍ଧ୍ୱକୁ ଗୃହିଁ ଦେଖିଲା ଏବଂ ସେହି ପକ୍ଷୀଟିର ଆହୁରି ସମୀପବର୍ତ୍ତୀ ହେଲା । ଏହିପରି ଭାବରେ ସେତେ ବେଶୀ ସେ ନିକଟକୁ ଯିବାକୁ ଲାଗିଲା, ସେତେ ବେଶୀ ଅନ୍ୟ ପକ୍ଷୀଟିର ଦେହ-ବିଚ୍ଛୁରିତ ଆଲୋକ ତାହା ଉପରେ ପଡ଼ିବାକୁ ଲାଗିଲା । ତାହାର ନିଜର ପରଗୁଡ଼ିକ ଯେପରି ଖସି ପଡ଼ୁଛି । ଯେତେବେଳେ ସେ ନିକଟ-ବର୍ତ୍ତୀ ହୋଇଅଛି, ସେତେବେଳେ ସମସ୍ତ ଦୃଶ୍ୟ ପରିବର୍ତ୍ତିତ ହୋଇଗଲା । ପ୍ରକୃତ ପକ୍ଷରେ ନିମ୍ନର ପକ୍ଷୀଟି କେବେହେଲେ ନ ଥିଲା, କେବଳ ସେହି ଊର୍ଦ୍ଧ୍ୱର ପକ୍ଷୀଟି ଥିଲା; ନିମ୍ନର ପକ୍ଷୀ ବୋଲି ଯାହା ଏତେ କ୍ଷଣ ମନେ ହେଉଥିଲା, ତାହା ଏହାର ଏକ ସାମାନ୍ୟ ପ୍ରତିବିମ୍ବ ମାତ୍ର ।*

ଆତ୍ମାର ପ୍ରକୃତ କହିଲେ ଆମେ ଏହି କଥା ବୁଝୁ । ଏହି ମନୁଷ୍ୟର ଆତ୍ମା ପାର୍ଥିବ ଇନ୍ଦ୍ରିୟଭୋଗ୍ୟ ଓ ଅନିତ୍ୟ ବସ୍ତୁର ପଶ୍ଚାତ୍ତରେ ଦୌଡ଼ାଦୌଡ଼ି କରୁଅଛି । ପଶୁଭଳି ଏହା କେବଳ ଇନ୍ଦ୍ରିୟସୁଖ, କେବଳ କ୍ଷଣିକ ସ୍ନାୟୁ-ଉତ୍ତେଜନାର ପଶ୍ଚାତ୍ତରେ ଧାବମାନ । ଯେତେବେଳେ ଆଘାତ ଆସେ, ମୁହୂର୍ତ୍ତି ମଧ୍ୟରେ ମସ୍ତିଷ୍କ ଘୂର୍ଣ୍ଣିତ ହୁଏ ଏବଂ ସବୁକିଛି ସେତେବେଳେ ଅଦୃଶ୍ୟ ହୋଇଯାଏ । ସେତେବେଳେ ପୃଥିବୀକୁ ସେ ଯେପରି ଭାବିଥିଲା, ଜୀବନଟାକୁ ଯେତେ ସହଜ ଭାବିଥିଲା, ସେପରି ଦେଖିବାକୁ ପାଏ ନାହିଁ । ଊର୍ଦ୍ଧ୍ୱକୁ ନିରୀକ୍ଷଣ କରି ଅନନ୍ତ ଈଶ୍ୱରଙ୍କୁ ଦେଖେ, ସେହି ପରମ ପୁରୁଷଙ୍କର କ୍ଷଣିକ ଅନୁଭୂତି ଲାଭ କରେ । ଆହୁରି ଟିକେ ସମୀପବର୍ତ୍ତୀ ହୁଏ । କିନ୍ତୁ ଅତୀତ କର୍ମଦ୍ୱାରା ପୁଣି ନିମ୍ନମୁଖୀ ହୋଇପଡ଼େ । ଅନ୍ୟ ଗୋଟିଏ ଆଘାତ ଆସି ତାହାକୁ ପୁଣି ସେହି ସ୍ଥାନକୁ ପ୍ରେରଣ କରେ । ସେ ଆଉଥରେ ସେହି ପୂର୍ଣ୍ଣ ସତ୍ତାର କ୍ଷୀଣ ଆଲୋକ ଲାଭ କରେ ଏବଂ ସମୀପବର୍ତ୍ତୀ ହୁଏ । ଏହିପରି ଭାବରେ ସେ ଯେତେ ବେଶୀ ନିକଟକୁ ଯାଉଥାଏ, ଦେଖିବାକୁ ପାଏ, ତାହାର ବ୍ୟକ୍ତିତ୍ୱ—ହୀନ ନିକୃଷ୍ଟ ଅତ୍ୟନ୍ତ ସ୍ୱାର୍ଥପୂର୍ଣ୍ଣ ବ୍ୟକ୍ତିତ୍ୱ—ଧୀରେ ଧୀରେ ନଷ୍ଟ ହୋଇଯାଉଅଛି । ଯେଉଁ କ୍ଷୁଦ୍ର ସତ୍ତାକୁ ପୁର୍ଣ୍ଣ କରିବାକୁ ଯାଇ ସେ ପୃଥିବୀକୁ ତ୍ୟାଗ କରିବାକୁ ତତ୍ପର ହୋଇଥିଲା, ତାହାର ସେହି ଆକାଂକ୍ଷା କ୍ରମଶଃ ଲୟ ପାଉଅଛି; ଏବଂ ଆହୁରି ଯେତେ ବେଶୀ ଅଗ୍ରସର ହୁଏ, ସେତେ ବେଶୀ ଧୀରେ ଧୀରେ ପ୍ରକୃତ ଅପସୃତ ହେଉଥାଏ । ଯେତେବେଳେ ଯଥେଷ୍ଟ ନିକଟବର୍ତ୍ତୀ ହୁଏ, ସେତେବେଳେ ଦୃଶ୍ୟପଟରେ ପରିବର୍ତ୍ତନ ଘଟେ ଏବଂ ସେ ଦେଖିବାକୁ ପାଏ, ଅନ୍ୟ ପକ୍ଷୀଟି ଯାହାକୁ ସେ ଏତେ ଦିନ ଦୂରରୁ ଦେଖିଥିଲା, ଯାହାର ଅପୂର୍ବ ମହିମା ଏବଂ ଗୌରବର ଆଭାସ ସେ ପାଇଥିଲା, ତାହା

* ମୁଣ୍ଡକ ଉପ., ୩।୧।୧; ଶ୍ୱେତାଶ୍ୱ ଉପ., ୪।୬

ବସ୍ତୁତଃ ତାହାର ନିଜ ଆତ୍ମାର ଏବଂ ସେ ନିଜେ ସେହି ନିତ୍ୟବସ୍ତୁ । ଯାହା ସର୍ବବସ୍ତୁରେ ସତ୍ୟରୂପେ ଅଧିଷ୍ଠିତ, ଯାହା ପ୍ରତି ଅଣୁରେ ବିରାଜିତ ଓ ସର୍ବତ୍ର ପ୍ରକାଶିତ, ଯାହା ସମସ୍ତ ବସ୍ତୁର ମୂଳ ସତ୍ତା, ଯାହା ଏହି ଚରାଚର ବିଶ୍ୱର ଈଶ୍ୱର, ଆତ୍ମା ସେତେବେଳେ ତାହାକୁ ଖୋଜି ପାଏ । 'ତତ୍ତ୍ୱମସି'—ତୁମେ ସେହି, ତୁମେ ମୁକ୍ତ ।

# ପରମ ଲକ୍ଷ୍ୟ

[ ୧୯୦୦ ଖ୍ରୀ: ମାର୍ଚ୍ଚ ୨୭ ତାରିଖ ସ୍ୟାନ୍ ଫ୍ରାନ୍‌ସିସ୍କୋରେ ପ୍ରଦତ୍ତ ବକ୍ତୃତା ]
[ମଝିରେ ମଝିରେ ବିରାମ ବିନ୍ଦୁ (···) ଗୁଡ଼ିକର ଅର୍ଥ ଲିପିକାର ସଠିକ ଭାବେ ଧରିପାରି ନାହାନ୍ତି]

ଆମେମାନେ ଦେଖୁ ମନୁଷ୍ୟ ଯେପରି ସର୍ବଦା ହିଁ ନିଜ ଅପେକ୍ଷା ବୃହତ୍ତର କୌଣସି ପଦାର୍ଥଦ୍ୱାରା ପରିବେଷ୍ଟିତ, ଏବଂ ସେ ଏହାର ଅର୍ଥ ଅନୁଧାବନ କରିବାକୁ ସଦା ସଚେଷ୍ଟ । ମନୁଷ୍ୟ ଚିରଦିନ ଶ୍ରେଷ୍ଠ ଆଦର୍ଶର ସନ୍ଧାନ କରିବ । ସେ ଜାଣେ, ସେହି ଆଦର୍ଶ ଅଛି ଏବଂ ସେହି ଶ୍ରେଷ୍ଠ ଆଦର୍ଶର ଅନୁସନ୍ଧାନ କରିବା ହିଁ ଧର୍ମ । ଅସ୍ମାର ପୂର୍ଣ୍ଣସ୍ୱରୂପ ସମ୍ପର୍କରେ ତାହାର ସୀମିତ ଜ୍ଞାନାନୁସାରେ ପ୍ରଥମେ ପ୍ରଥମେ ତାହାର ସମସ୍ତ ଅନୁସନ୍ଧାନ ବାହାର ସ୍ତରରେ ସୀମାବଦ୍ଧ ଥିଲା—ସ୍ୱର୍ଗ ବା ଅନ୍ୟ କୌଣସି ସ୍ଥାନରେ ।

ପରେ ମନୁଷ୍ୟ ନିଜକୁ ଆହୁରି ଘନିଷ୍ଠ ଭାବରେ ଦେଖିବାକୁ ଆରମ୍ଭ କଲା; ସେ ବୁଝିଲା ଯେ, 'ମୁଁ' କହିଲେ ସାଧାରଣତଃ ସେ ଯାହା ବୁଝେ, ତାହା ପ୍ରକୃତ 'ମୁଁ' ନୁହେଁ । ତାହାର ଇନ୍ଦ୍ରିୟ-ଗୋଚର ସତ୍ତା ଏବଂ ପ୍ରକୃତ ସତ୍ତା ଏକ ନୁହେଁ । ସେ ସେତେବେଳେ ନିଜ ମଧ୍ୟରେ ନିଜକୁ ଖୋଜିବାକୁ ଲାଗିଲା; ସେ ଆବିଷ୍କାର କଲା,··· ଯେଉଁ ଆଦର୍ଶକୁ ସେ ଏତେ କାଳ ବାହାରେ ଖୋଜୁଥିଲା ତାହା ତାହାର ଅନ୍ତରରେ ହିଁ ଅଛି; ବାହାରେ ଯାହାକୁ ସେ ପୂଜା କରୁଥିଲା, ସେ ତାହାର ଅନ୍ତରର ସତ୍ୟସ୍ୱରୂପ । ଦ୍ୱୈତବାଦ ଏବଂ ଅଦ୍ୱୈତବାଦ ମଧ୍ୟରେ ପାର୍ଥକ୍ୟ ଏହି : ଆଦର୍ଶକୁ ଯେତେବେଳେ ନିଜର ବାହାରେ ସ୍ଥାପନ କରାଯାଏ, ସେତେବେଳେ ତାହା ଦ୍ୱୈତବାଦ, ଏବଂ ଈଶ୍ୱରଙ୍କୁ ଯେତେବେଳେ ନିଜ ଅନ୍ତରରେ ଆମେ ଖୋଜୁ, ସେତେବେଳେ ତାହା ଅଦ୍ୱୈତବାଦ ।

ପ୍ରଥମତଃ ସେହି ପୁରାତନ ପ୍ରଶ୍ନ—କାହିଁକି ଏବଂ କେଉଁଠାରୁ···? ମନୁଷ୍ୟ କିପରି ଭାବରେ ସୀମିତ ହେଲା ? ଅସୀମ କିପରି ଭାବରେ ସସୀମ ହେଲା ? ପବିତ୍ର କିପରି ଭାବରେ ଅପବିତ୍ର ହେଲା ? ଏହା ଭୁଲିଲେ ଚଳିବ ନାହିଁ ଯେ, କୌଣସି ଦ୍ୱୈତବାଦୀ କଳ୍ପନା ଏହି ପ୍ରଶ୍ନର ଉତ୍ତର ଦେଇପାରିବ ନାହିଁ ।

ଈଶ୍ୱର କାହିଁକି ଏହି ଅପବିତ୍ର ଜଗତ ସୃଷ୍ଟି କଲେ ? ପୂର୍ଣ୍ଣ, ଅସୀମ, ଦୟାଳୁ ପରମପିତାଙ୍କର ଏ ସୃଷ୍ଟି ହୋଇ ମଧ୍ୟ ମନୁଷ୍ୟ କାହିଁକି ଏତେ ଦୁଃଖୀ ? କାହିଁକି ଏହି ସ୍ୱର୍ଗ ଓ ମର୍ତ୍ତ୍ୟର ସୃଷ୍ଟି ହୋଇଛି, ଯାହା ଆଡ଼କୁ ଚାହିଁ ଆମେମାନେ ନିୟମର ଧାରଣା

ଲାଭ କରୁ ? ନ ଦେଖି କୌଣସି ପଦାର୍ଥ ସମ୍ବନ୍ଧରେ କଳ୍ପନା ହୁଏ ନାହିଁ । ଏହି ଜୀବନରେ ଯେତେ ନର୍ଯ୍ୟାତନା ଭୋଗ କରୁ, ସବୁ ଆମେମାନେ ଅନ୍ୟ ଗୋଟିଏ ସ୍ଥାନରେ ଜମା କରି ମନେକରୁ—ଏହା ଆମମାନଙ୍କର ନରକ ।···

ଅସୀମ ଈଶ୍ୱର କାହିଁକି ଏହି ପୃଥିବୀ ସୃଷ୍ଟି କଲେ ? ଦ୍ୱୈତବାଦୀ କହନ୍ତି, ଯେଉଁ ଭାବରେ କୁମ୍ଭକାର ଘଟ ନର୍ମାଣ କରେ, ଠିକ୍ ସେହିଭାବରେ ଈଶ୍ୱର ଆମକୁ ସୃଷ୍ଟି କରିଛନ୍ତି । ଈଶ୍ୱର କୁମ୍ଭକାର, ଆମେମାନେ ଘଟ ମାତ୍ର । ଦାର୍ଶନିକ ଭାଷାରେ ପ୍ରଶ୍ନଟି ଏହି : ମନୁଷ୍ୟ ସ୍ୱରୂପତଃ ଯେ ପବିତ୍ର, ପୂର୍ଣ୍ଣ ଏବଂ ଅସୀମ—ଏ କଥା କିପରି ସତ୍ୟ ବୋଲି ଧରି ନଆହେଲା ? ଅଦ୍ୱୈତବାଦମୂଳକ ଯେକୌଣସି ଚନ୍ତା-ପ୍ରଣାଳୀରେ ଏହା ଗୋଟିଏ ପ୍ରଧାନ ସମସ୍ୟା । ଅନ୍ୟାନ୍ୟ ପ୍ରଶ୍ନଗୁଡ଼ିକ ପରିଷ୍କାର ଓ ସ୍ପଷ୍ଟ । ଏ ପ୍ରଶ୍ନର କୌଣସି ଉତ୍ତର ନାହିଁ । ଅଦ୍ୱୈତବାଦୀମାନେ କହନ୍ତି, ପ୍ରଶ୍ନଟି ସ୍ୱବିରୋଧୀ ।

ଦ୍ୱୈତବାଦର କଥା ଧରାଯାଉ—ପ୍ରଶ୍ନ ହେବ : ଈଶ୍ୱର କାହିଁକି ଜଗତ ସୃଷ୍ଟି କଲେ ? ଏହା ସ୍ୱବିରୋଧୀ ? କାହିଁକି ? କାରଣ—ଈଶ୍ୱର କହିଲେ ଆମେମାନେ କ'ଣ ବୁଝୁ ? ଈଶ୍ୱର ଏପରି ଏକ ସତ୍ତା, ଯାହା ଉପରେ ବାହାରୁ କୌଣସି ପ୍ରତକ୍ରିୟା ବା ପ୍ରଭାବ ହୋଇପାରେ ନାହିଁ ।

ତୁମେ ବା ମୁଁ ମୁକ୍ତ ନୋହୁଁ । ମୁଁ ତୃଷ୍ଣାର୍ତ୍ତ । ତୃଷ୍ଣା ବୋଲି ଗୋଟିଏ କିଛି ଅଛି, ଯାହା ଉପରେ ମୋର କୌଣସି କର୍ତ୍ତୃତ୍ୱ ନାହିଁ, ଯାହା ମୋତେ ଜଳପାନ କରିବାକୁ ବାଧ୍ୟ କରେ । ମୋ ଦେହର ପ୍ରତି କର୍ମ, ଏପରି କି ମୋ ମନର ପ୍ରତିଚନ୍ତା ମଧ୍ୟ ବାହାରର ପ୍ରଭାବରେ ପ୍ରଭାବିତ । ମୋତେ ଏହା କରିବାକୁ ହେବ । ସେଥିପାଇଁ ତ···ଏହିପରି କରିବାକୁ ମୁଁ ବାଧ୍ୟ, ଏହା ପାଇବାକୁ ମୁଁ ବାଧ୍ୟ ।···ପୁଣି କାହିଁକି ଏବଂ କେଉଁଠାରୁ—ଏହି ପ୍ରଶ୍ନଦୁଇଟିର ଅର୍ଥ କଅଣ ? ବାହାରର ଶକ୍ତିର ଅଧୀନ ହେବା । ତୁମେ କାହିଁକି ଜଳପାନ କର ? କାରଣ ତୃଷ୍ଣା ତୁମକୁ ବାଧ୍ୟ କରେ, ତୁମେ ଦାସ । ତୁମେ ନିଜ ଇଚ୍ଛାରେ କିଛି କର ନାହିଁ, କାରଣ ସବୁ କିଛି କରିବାକୁ ତୁମେ ବାଧ୍ୟ । ତୁମ କାର୍ଯ୍ୟର ଏକମାତ୍ର ପ୍ରେରଣା କୌଣସି ଶକ୍ତି···।

କୌଣସି ଶକ୍ତିଦ୍ୱାରା ଚାଳିତ ନ ହେଲେ ଏହି ପୃଥିବୀ ମଧ୍ୟ କଦାପି ଚାଲନ୍ତା ନାହିଁ । ଆଲୁଅ ଜଳେ କାହିଁକି ? କେହି ଆସି ଗୋଟିଏ ଦିଆସିଲିଇ ନ ଜାଳିଲେ ଆଲୁଅ ଜଳେ ନାହିଁ । ପ୍ରକୃତିର ସମ୍ବନ୍ଧ ସବୁ କିଛି ବାଧ୍ୟତାମୂଳକ । ଦାସତ୍ୱ, ଦାସତ୍ୱ ! ପ୍ରକୃତି ସହିତ ମିଶି ଚଳିବାର ଅର୍ଥ ହିଁ ଦାସତ୍ୱ, ପ୍ରକୃତିର ଦାସ ହୋଇ ସୁନାପିଞ୍ଜରାରେ ବାସ କଲେ ସୁଦ୍ଧା ଲାଭ କ'ଣ ? ମନୁଷ୍ୟ ଯେ ପ୍ରକୃତ ପକ୍ଷରେ ମୁକ୍ତ ଏବଂ ସ୍ୱର୍ଗୀୟ—ଏହି ଜ୍ଞାନ ହିଁ ଶ୍ରେଷ୍ଠ ନିୟମ ଓ ଶୃଙ୍ଖଳା । ଫଳରେ 'କାହିଁକି ଏବଂ କେଉଁଠାରୁ'—ଏହି ପ୍ରଶ୍ନ କରାଯାଇପାରେ କେବଳ ଅଜ୍ଞାନରୁ । କେବଳ ଅନ୍ୟ କାହାରି ସହାୟତାରେ କିଛି କରିବାକୁ ମୁଁ ବାଧ୍ୟ ହୋଇପାରେ ।

ତୁମେ କେତେବେଳେ କହୁଛ, 'ଈଶ୍ୱର ମୁକ୍ତ'; ପୁଣି ପ୍ରଶ୍ନ କରୁଛ, 'ଈଶ୍ୱର କାହିଁକି ଜଗତ ସୃଷ୍ଟି କରନ୍ତି ?' ସ୍ୱବିରୋଧୀ କଥା କହୁଅଛ । 'ଈଶ୍ୱର'ର ଅର୍ଥ ହେଲା ସମ୍ପୂର୍ଣ୍ଣ ସ୍ୱାଧୀନ ଇଚ୍ଛା । ଯୁକ୍ତିଶାସ୍ତ୍ର ଭାଷାରେ କହିଲେ, ପ୍ରଶ୍ନଟି ଏହିପରି ହୁଏ— ଯାହାକୁ କେହି କଦାପି ହେଲେ ବାଧ୍ୟ କରିପାରେ ନାହିଁ, ସେ କାହିଁକି ଜଗତସୃଷ୍ଟି କରିବାକୁ ବାଧ୍ୟ ହେଲେ ? ଅର୍ଥାତ୍ ଈଶ୍ୱରଙ୍କୁ କିଏ ବାଧ୍ୟ କଲା ? ପ୍ରଶ୍ନଟି ଅର୍ଥହୀନ । ସ୍ୱରୂପରେ ସେ ଅସୀମ, ସେ ସ୍ୱାଧୀନ । ତୁମେମାନେ ଯେତେବେଳେ ଯୁକ୍ତିଶାସ୍ତ୍ରର ଭାଷାରେ ପ୍ରଶ୍ନ କରିବ, ସେତେବେଳେ ଆମେମାନେ ସେ ପ୍ରଶ୍ନର ଜବାବ ଦେବା । ଯୁକ୍ତି ହିଁ ତୁମମାନଙ୍କୁ କହିଦେବ—ସତ୍ତା ଏକ, ଦ୍ୱିତୀୟ ନାହିଁ । ଯେଉଁଠାରେ ଦ୍ୱୈତ ବାଦ ଦେଖା ଦେଇଛି, ସେଠାରେ ହିଁ ଅଦ୍ୱୈତବାଦ ଆସି ତାହାକୁ ଖଣ୍ଡନ କରିଅଛି ।

ଏହାକୁ ବୁଝିବାରେ ଗୋଟିଏ ଅସୁବିଧା ଅଛି । ଧର୍ମ ଦୈନନ୍ଦିନ ଜୀବନର ସାଧାରଣ ବୁଦ୍ଧିର ବିଷୟ; ଦାର୍ଶନିକର ଭାଷାରେ ନ କହି ତୁମେ ଯଦି ସାଧାରଣ ମନୁଷ୍ୟର ଭାଷାରେ କୁହ, ତାହା ହେଲେ ପ୍ରତ୍ୟେକ ବ୍ୟକ୍ତି ଏହା ବୁଝିପାରିବେ । ମନୁଷ୍ୟର ସ୍ୱଭାବ ନିଜକୁ ବାହାର ଆଡ଼କୁ ପ୍ରକ୍ଷେପ କରିବା । ସନ୍ତାନ ସହିତ ଏକ ମନେ କରିବା କଥା ଭାବ । ତାହା ସହିତ ନିଜେ ଏକ ହୋଇଯାଅ, ଦେଖିବ ତୁମର ଯେପରି ଦୁଇଟି ଦେହ । ଠିକ୍ ସେହିପରି ତୁମର ସ୍ୱାମୀଙ୍କର ମନ ଭିତର ଦେଇ ମଧ୍ୟ ତୁମେ ଦେଖିପାରିବ । କେଉଁଠି ଅଟକିବ ତୁମେ ? ଅସଂଖ୍ୟ ଶରୀର ମଧ୍ୟରେ ତୁମେ ନିଜକୁ ଦେଖିପାରିବ ।

ମନୁଷ୍ୟ ପ୍ରତିଦିନ ପ୍ରକୃତିକୁ ଜୟ କରିଚାଲିଛି । ଜାତି ହିସାବରେ ମନୁଷ୍ୟ ତାହାର ଶକ୍ତିକୁ ପ୍ରକାଶ କରୁଅଛି । କଳ୍ପନାରେ ମନୁଷ୍ୟର ଏହି ଶକ୍ତିର ଗୋଟିଏ ସୀମା ନିର୍ଦ୍ଦେଶ କରିବାକୁ ଚେଷ୍ଟା କର । ତୁମେ ତ ସ୍ୱୀକାର କରିବ ଯେ, ଜାତି ହିସାବରେ ମନୁଷ୍ୟ ଅସୀମ ଶକ୍ତିର—ଗୋଟିଏ ଅସୀମ ଦେହର ମଧ୍ୟ ଅଧିକାରୀ; କିନ୍ତୁ ଏକମାତ୍ର ପ୍ରଶ୍ନ ହେଉଅଛି, ତୁମେ କ'ଣ ? ତୁମେ କ'ଣ ଜାତି, ନା ଗୋଟିଏ ବ୍ୟକ୍ତି ? ଯେଉଁ ମୁହୂର୍ତ୍ତରେ ତୁମେ ନିଜକୁ ପୃଥକ୍ କରି ଦେଖିବ, ତୁମେ ଆଘାତ ପାଇବ । ଯେଉଁ ମୁହୂର୍ତ୍ତରେ ତୁମେ ନିଜକୁ ପ୍ରସାରିତ କରି ଅନ୍ୟର କଥା ଭାବିବ, ସେହି ମୁହୂର୍ତ୍ତରେ ସହାୟତା ପାଇବ । ସ୍ୱାର୍ଥପର ମନୁଷ୍ୟ ହିଁ ପୃଥିବୀର ସର୍ବାପେକ୍ଷା ଶୋଚନୀୟ ଜୀବ । ଯିଏ ଆଦୌ ସ୍ୱାର୍ଥପର ନୁହେଁ ସେହି ସର୍ବାପେକ୍ଷା ସୁଖୀ । ସମଗ୍ର ସୃଷ୍ଟି ସହିତ, ସମଗ୍ର ଜାତି ସହିତ ସେ ସେତେବେଳେ ଏକ । ଈଶ୍ୱର ସେତେ-ବେଳେ ତାହା ମଧ୍ୟରେ ଆବିର୍ଭୂତ ହୁଅନ୍ତି ।...ସେହିପରି ଦ୍ୱୈତବାଦରେ— ଖ୍ରୀଷ୍ଟିୟାନ, ହିନ୍ଦୁ ଏବଂ ଅନ୍ୟସବୁ ଧର୍ମରେ ନୀତିର ବିଧାନ...ଏହି : ସ୍ୱାର୍ଥପର ହୁଅ ନାହିଁ । ନିଃସ୍ୱାର୍ଥ ହୁଅ । ଅନ୍ୟ ପାଇଁ କାର୍ଯ୍ୟ କର : ନିଜକୁ ପ୍ରସାରିତ କର !

ଅଜ୍ଞ ବ୍ୟକ୍ତିକୁ ଏ କଥା ବୁଝାଇହୁଏ ଖୁବ୍ ସହଜରେ ଏବଂ ବିଦ୍ୱାନ୍‌କୁ ବୁଝାଇହୁଏ ଆହୁରି ସହଜରେ । କିନ୍ତୁ ଯିଏ ଅଧାପାଠୁଆ—ସ୍ୱୟଂ ଈଶ୍ୱର ମଧ୍ୟ, ତାହାକୁ ବୁଝାଇପାରିବେ ନାହିଁ । ଅସଲ କଥା, ତୁମେ ଏହି ପୃଥିବୀରୁ ଅଲଗା ନୁହଁ, ଯେପରି ତୁମର ଆତ୍ମା ତୁମର ଶରୀରାଦିରୁ ଅଲଗା ନୁହେଁ । ତାହା ଯଦି ନ ହୋଇଥାନ୍ତା, ତୁମେ କିଛି ହେଲେ ଦେଖିପାରନ୍ତ ନାହିଁ, କିଛି ହେଲେ ବୁଝିପାରନ୍ତ ନାହିଁ । ବସ୍ତୁ-ସମୁଦ୍ରରେ ଆମମାନଙ୍କର ଦେହ କେତେଗୁଡ଼ିଏ କ୍ଷୁଦ୍ର କ୍ଷୁଦ୍ର ଆବର୍ତ୍ତ ମାତ୍ର । ଜୀବନ ଗୋଟିଏ ମୋଡ଼ ନେଇ ଅନ୍ୟ ଭାବରେ ବହି ଚାଲିଅଛି···ସୂର୍ଯ୍ୟ, ଚନ୍ଦ୍ର, ନକ୍ଷତ୍ର-ମଣ୍ଡଳ, ତୁମେ, ମୁଁ —ସବୁ ହିଁ ଆବର୍ତ୍ତ ମାତ୍ର । କାହିଁକି ମୁଁ ଗୋଟିଏ ବିଶେଷ ମନକୁ ମୋର ବୋଲି ବାଛିନେଲି ? ମନ-ସମୁଦ୍ରରେ ଏହା ଗୋଟିଏ ମାନସ-ଆବର୍ତ୍ତ ମାତ୍ର ।

ତାହା ନ ହେଲେ ଏହି ମୁହୂର୍ତ୍ତରେ ମୋର ସ୍ପନ୍ଦନ ଯେ ତୁମ ନିକଟରେ ପହଞ୍ଚିଅଛି, ତାହା କିପରି ସମ୍ଭବ ହେଲା ? ହ୍ରଦ ମଧ୍ୟରେ ଗୋଟିଏ ପଥର ନିକ୍ଷେପ କର, ଦେଖିବ ଗୋଟିଏ ସ୍ପନ୍ଦନ ଆରମ୍ଭ ହେବ ଏବଂ ସମସ୍ତ ଜଳକୁ ସ୍ପନ୍ଦିତ କରିଦେବ । ମୋର ମନକୁ ଆନନ୍ଦର ଅବସ୍ଥାକୁ ନେଇଗଲି, ଫଳରେ ତୁମ ମନରେ ମଧ୍ୟ ସେହି ଆନନ୍ଦ ସଞ୍ଚାରିତ ହେଲା । ଏପରି କେତେ ସମୟରେ ତୁମେ ତୁମର ମନରେ ବା ହୃଦୟରେ କିଛି ଭାବିଛ ଏବଂ ମୁହଁରେ ନ କହିଲେ ମଧ୍ୟ ଅନ୍ୟମାନେ ତୁମର ସେ ଭାବନାର ସ୍ପର୍ଶ ପାଇଅଛନ୍ତି । ସର୍ବତ୍ର ଆମେମାନେ ସମାନ···ଅଥଚ ଏହି କଥାଟି ଆମେମାନେ କେବେହେଲେ ବୁଝିପାରୁ ନାହିଁ । ସମଗ୍ର ଜଗତ ଦେଶକାଳ ଓ ନିମିତ୍ତ-ଦ୍ୱାରା ଗଢ଼ା । ଈଶ୍ୱର ମଧ୍ୟ ସେହି ବିଶ୍ୱରୂପରେ ହିଁ ପ୍ରକଟ ହୁଅନ୍ତି ।···ପ୍ରକୃତି ଆରମ୍ଭ ହେଲା କେବେ ? ତୁମେ ଯେବେ ତୁମର ପ୍ରକୃତ ସ୍ୱରୂପ ଭୁଲି ଦେଶକାଳ ଏବଂ ନିମିତ୍ତରେ ବାନ୍ଧି ହେଲ ।

ଏହା ହିଁ ତୁମମାନଙ୍କର ଦେହର ଚକ୍ରାବର୍ତ୍ତ । ପୁଣି ଏହା ହିଁ ତୁମମାନଙ୍କର ଅସୀମ ପ୍ରକୃତି···ଏହା ହିଁ ତ ପ୍ରକୃତି—ଦେଶ, କାଳ ଓ ନିମିତ୍ତ । ପ୍ରକୃତି କହିଲେ ଏହା ହିଁ ବୁଝାଏ । ତୁମେ ଯେତେବେଳେ ଚିନ୍ତା କରିବାକୁ ଆରମ୍ଭ କଲ, ସେତିକି-ବେଳେ ସମୟର ସୂତ୍ରପାତ ହେଲା । ତୁମେ ଯେତେବେଳେ ଦେହଲାଭ କଲ, ସେତିକିବେଳେ ଦେଶ ବା ସ୍ଥାନ ଦେଖା ଦେଲା; ଅନ୍ୟଥା ଦେଶକାଳ ବୋଲି କିଛି ଥାଇ ନ ପାରେ । ତୁମେ ଯେତେବେଳେ ସୀମାବଦ୍ଧ ହେଲ, ସେତିକିବେଳେ ଦେଖା-ଦେଲା କାର୍ଯ୍ୟକାରଣ-ସମ୍ପର୍କ । ଗୋଟିଏ ଉତ୍ତର ଆମମାନଙ୍କର ଆବଶ୍ୟକ । ଏହି ସେହି ଉତ୍ତର । ଆମମାନଙ୍କର ସୀମାବଦ୍ଧ ହେବା ତ ଖେଳ ମାତ୍ର—ଖେଳର ଆନନ୍ଦ ମାତ୍ର । କିଛି ହେଲେ ତୁମକୁ ବାନ୍ଧିପାରେ ନାହିଁ; କିଛି ବି ତୁମକୁ ବାଧ୍ୟ କରିପାରେ ନାହିଁ, ତୁମେ କଦାପି ବଦ୍ଧ ନୁହଁ । ଆମେ ସମସ୍ତେ ଆମର କଳ୍ପିତ ରଙ୍ଗଭୂମିରେ ନିଜନିଜର ଅଭିନୟ କରୁଛେ ମାତ୍ର ।

ବ୍ୟକ୍ତି-ସତ୍ତାର ଆଉ ଗୋଟିଏ ସମସ୍ୟାର କଥା ତାହା ହେଲେ ଉତ୍ଥାପନ

କରିଯାଉ । କେହି କେହି ପୁଣି ବ୍ୟକ୍ତି-ସତ୍ତାକୁ ହରାଇବା ଭୟରେ ଭୀତ ! ଘୁଷୁରି-ଛୁଆ ଯଦି ଦେବତ୍ୱ ଲାଭ କରିପାରେ, ତାହାହେଲେ ତାହାର ଘୁଷୁରି-ସତ୍ତାକୁ ହରାଇବା କଅଣ ତାହା ପକ୍ଷରେ ଭଲ ନୁହେଁ ? ନିଶ୍ଚୟ । କିନ୍ତୁ ବିଚରା ଘୁଷୁରି ସେତେବେଳେ ତାହା ମନେକରେ ନାହିଁ । କେଉଁ ଅବସ୍ଥାଟି ମୋର ବ୍ୟକ୍ତି-ସତ୍ତା ? ଯେତେବେଳେ ମୁଁ ଗୋଟିଏ ଶ୍ରେଠ ଶିଶୁ ଥିଲି ଏବଂ ଘରଚଟାଣରେ ଗୁରୁଣ୍ଡି ଗୁରୁଣ୍ଡି ମୋର ବୃଦ୍ଧାଙ୍ଗୁଷ୍ଠିଟି ଗିଳିବାକୁ ଚେଷ୍ଟା କରୁଥିଲି ? ସେହି ସତ୍ତାକୁ ହରାଇବା ପାଇଁ କ'ଣ ମୋର ଦୁଃଖିତ ହେବା ଉଚିତ ? ଆଜି ଯେପରି ମୋର ଶୈଶବକାଳ ଆଡ଼କୁ ଚାହିଁ ମୁଁ ହସେ, ଆଜିଠାରୁ ପଚାଶ ବର୍ଷ ପରେ ମୋର ବର୍ତ୍ତମାନ ଅବସ୍ଥା ଆଡ଼କୁ ଚାହିଁ ମଧ୍ୟ ସେହିପରି ହସିବି । ଏହା ମଧ୍ୟରେ କେଉଁ ବ୍ୟକ୍ତି-ସତ୍ତାଟିକୁ ମୁଁ ରକ୍ଷା କରିବି ?···

ବ୍ୟକ୍ତି-ସତ୍ତାର ଅର୍ଥ କଅଣ, ତାହା ଆମମାନଙ୍କୁ ବୁଝିବାକୁ ହେବ ।···ଦୁଇଟି ବିପରୀତ ଭାବଧାରା ଅଛି : ଗୋଟିଏ ବ୍ୟକ୍ତି-ସତ୍ତା ସଂରକ୍ଷଣ, ଅନ୍ୟଟି ବ୍ୟକ୍ତି-ସତ୍ତା ବିସର୍ଜନ ଦେବାର ତୀବ୍ର ଆକାଙ୍‌କ୍ଷା ।··ଶିଶୁର ପ୍ରୟୋଜନରେ ମା ତାର ସବୁ ବାସନା ତ୍ୟାଗ କରେ···ଶିଶୁକୁ ଯେତେବେଳେ କୋଳକୁ ନିଏ, ବ୍ୟକ୍ତି-ସତ୍ତାର ଡାକ, ଆତ୍ମରକ୍ଷାର ଡାକ ସେତେବେଳେ ଆଉ ତାର କାନକୁ ଆସେ ନାହିଁ । ନିକୃଷ୍ଟ ଖାଦ୍ୟ ନିଜେ ଗ୍ରହଣ କରି ସନ୍ତାନକୁ ଉତ୍ତମ ଖାଦ୍ୟ ଦିଏ । ଯାହାକୁ ଭଲ ପାଉ, ତାହା ପାଇଁ ଆମେମାନେ ମରିବାକୁ ମଧ୍ୟ ପ୍ରସ୍ତୁତ ।

ଗୋଟିଏ ଦିଗରୁ ଏହି ବ୍ୟକ୍ତି-ସତ୍ତାକୁ ରକ୍ଷା କରିବା ପାଇଁ ଆମେମାନେ କଠୋର ସଂଗ୍ରାମ କରୁଅଛୁ । ପୁଣି ଅନ୍ୟ ଦିଗରୁ ଏହାକୁ ଧ୍ୱଂସ କରିବାକୁ ମଧ୍ୟ ଚେଷ୍ଟା କରୁଅଛୁ । କିନ୍ତୁ ତାହାର ଫଳ କଅଣ ହେଉଛି ? ଟମ୍ ବ୍ରାଉନ୍ କଠୋର ସଂଗ୍ରାମ କରିଅଛି, ସ୍ୱୀୟ ବ୍ୟକ୍ତି-ସତ୍ତା ପାଇଁ ସେ ଯୁଦ୍ଧ କରିଅଛି । ତାହାପରେ ଟମ୍‌ଙ୍କର ମୃତ୍ୟୁ ହେଲା; କିନ୍ତୁ ପୃଥିବୀପୃଷ୍ଠରେ କେଉଁଠି ହେଲେ ଏତେ ଟିକେ ବିଶୃଙ୍ଖଳା ଦେଖା ଦେଲା ନାହିଁ । ଊଣେଇଶ ଶହ ବର୍ଷ ଆଗେ ଜଣେ ଇହୁଦୀ ଜନ୍ମଗ୍ରହଣ କଲେ; ସ୍ୱୀୟ ବ୍ୟକ୍ତି-ସତ୍ତାକୁ ରକ୍ଷା କରିବା ପାଇଁ ଗୋଟିଏ ଅଙ୍ଗୁଳି ମଧ୍ୟ ସେ ହଲାଇଲେ ନାହିଁ ।··ତାଙ୍କ କଥା ଭାବ ! ସେହି ଇହୁଦୀ ବ୍ୟକ୍ତି ସତ୍ତାକୁ ରକ୍ଷା କରିବା ପାଇଁ କଦାପି ସଂଗ୍ରାମ କରି ନାହାନ୍ତି, ଏବଂ ସେଥିପାଇଁ ପୃଥିବୀରେ ସେ ମହତ୍ତମ ବ୍ୟକ୍ତି । ମନୁଷ୍ୟ ଏହି ରହସ୍ୟକୁ ଜାଣେ ନାହିଁ ।

ଯଥା ସମୟରେ ଆମମାନଙ୍କୁ 'ବ୍ୟକ୍ତି' ହେବାକୁ ହେବ, କିନ୍ତୁ କେଉଁ ଅର୍ଥରେ ? ମନୁଷ୍ୟର ବ୍ୟକ୍ତିତ୍ୱ କ'ଣ ? ଟମ୍ ବ୍ରାଉନ୍ ନୁହେଁ, ମନୁଷ୍ୟ ମଧ୍ୟରେ ଯିଏ ଈଶ୍ୱର, ସେହିଁ ପ୍ରକୃତ ବ୍ୟକ୍ତି-ସତ୍ତା । ମନୁଷ୍ୟ ଯେତେ ବେଶୀ ତାଙ୍କ ଆଡ଼କୁ ଅଗ୍ରସର ହେବ, ସେତେ ବେଶୀ ନିଜର ମିଥ୍ୟା ବ୍ୟକ୍ତି-ସତ୍ତା ସେ ତ୍ୟାଗ କରିବ । ନିଜ ପାଇଁ ସବୁ କିଛି ସଂଗ୍ରହ କରିବାକୁ, ସବୁ କିଛି ପାଇବାକୁ ଯେତେ ବେଶୀ ଚେଷ୍ଟା ସେ କରିବ,

ସେତେ ବେଶୀ ବ୍ୟକ୍ତି ହିସାବରେ ସେ ଶ୍ରେଷ୍ଠ ହୋଇଯିବ । ନିଜ କଥା ସେ ଯେତେ କମ୍ ଭାବିବ, ଜୀବନ କାଳରେ ନିଜର ବ୍ୟକ୍ତିତ୍ୱ ସେ ଯେତେ ବେଶୀ ତ୍ୟାଗ କରିବ ...ସେତେ ବେଶୀ ସେ ବ୍ୟକ୍ତି ହିସାବରେ ବଡ଼ ହେବ । ମନୁଷ୍ୟ ଏହି ଗୂଢ଼ କଥାଟି ବୁଝିପାରେ ନାହିଁ ।

ଆମମାନଙ୍କୁ ପ୍ରଥମେ ବୁଝିବାକୁ ହେବ, ବ୍ୟକ୍ତି-ସତ୍ତାର ଅର୍ଥ କ'ଣ । ବ୍ୟକ୍ତି-ସତ୍ତା ହେଲା ଆଦର୍ଶରେ ପହଞ୍ଚିବା । ତୁମେ ବର୍ତ୍ତମାନ ପୁରୁଷ ବା ତୁମେ ନାରୀ, ତୁମର ପରିବର୍ତ୍ତନ ନିଶ୍ଚୟ ଘଟିବ । ତୁମେମାନେ କ'ଣ ଅଟକି ରହିପାର ? ତୁମମାନଙ୍କର ମନ ଆଜି ଯେପରି ଅଛି, ସେହିପରି କ'ଣ ରଖିବାକୁ ଚାହଁ ? ରଖିବାକୁ ଚାହଁ କ୍ରୋଧ ଘୃଣା, ଈର୍ଷା, ଦ୍ୱନ୍ଦ୍ୱ ପ୍ରଭୃତି ମନର ସହସ୍ର ପ୍ରକାର ପ୍ରବୃତ୍ତି ? ତୁମେମାନେ କ'ଣ କହିବାକୁ ଚାହଁ, ସେସମସ୍ତ କିଛି ତୁମେମାନେ ଅକ୍ଷୁଣ୍ଣ ରଖିବ ? ଯେତେ ଦିନ ଜୟଲାଭ ସମ୍ପୂର୍ଣ୍ଣ ନ ହୋଇଛି ଓ ଯେତେ ଦିନ ତୁମେମାନେ ପବିତ୍ର ଏବଂ ପୂର୍ଣ୍ଣ ନ ହୋଇଛ, ସେପର୍ଯ୍ୟନ୍ତ ତୁମେମାନେ କେଉଁଠି ଅଟକିପାରିବ ନାହିଁ ।

ତୁମେମାନେ ଯେତେବେଳେ ସଚ୍ଚିଦାନନ୍ଦମୟ ହେବ, ସେତେବେଳେ ଆଉ କୌଣସି କ୍ରୋଧ ରହିବ ନାହିଁ । ତୁମର କେଉଁ ଦେହକୁ ତୁମେ ରକ୍ଷା କରିବ ? ଯେଉଁ ଜୀବନର ଶେଷ ନାହିଁ । ତାହା ଲାଭ ନ କରିବାଯାଏ ତୁମେ ଅଟକିପାରିବ ନାହିଁ; ଅସୀମ ଜୀବନ ପାଇଲେ ତୁମେ ସେହିଠାରେ ଅଟକିଯିବ । ଆଜି ତୁମେମାନେ କିଛି ଜ୍ଞାନଲାଭ କରିଅଛ; ଆହୁରି ଜ୍ଞାନଲାଭ କରିବାକୁ ସର୍ବଦା ଚେଷ୍ଟା କରୁଅଛ । କେଉଁ-ଠାରେ ଅଟକିବ ? ଜୀବନ ସହିତ ଏକାତ୍ମ ଯେତେ ଦିନ ନ ହେବ, ସେତେ ଦିନ କେଉଁଠାରେ ହେଲେ ଅଟକିବ ନାହିଁ ।...

ଅନେକେ ସୁଖଲାଭକୁ ହିଁ ଲକ୍ଷ୍ୟ ମନେ କରନ୍ତି । ସେହି ସୁଖ ପାଇଁ ସେମାନେ କେବଳ ଇନ୍ଦ୍ରିୟକୁ ଅନୁସରଣ କରନ୍ତି । ଉଚ୍ଚତର ସ୍ତରରେ ଆହୁରି ଅନେକ ବେଶୀ ଆନନ୍ଦ ମିଳେ । ତାହାପରେ ଆତ୍ମିକ ସ୍ତରରେ, ତାହାପରେ ନିଜ ମଧ୍ୟରେ—ଜୀବ ମଧ୍ୟରେ ଯେଉଁ ଶିବ, ତାଙ୍କ ମଧ୍ୟରେ । ଯେଉଁ ମନୁଷ୍ୟର ସୁଖ ତାହାର ବାହାରେ; ବାହାରର ଜିନିଷ ଚାଲିଗଲେ ସେ ଅସୁଖୀ ହୋଇପଡ଼େ । ସୁଖ ପାଇଁ ତୁମେ ଏହି ପୃଥିବୀର କୌଣସି ବସ୍ତୁ ଉପରେ ନିର୍ଭର କରିପାରନାହିଁ, ମୋର ସବୁ ସୁଖ ଯଦି ମୋ ନିଜ ମଧ୍ୟରେ ଥାଏ, ତାହା ହେଲେ ସେ ସୁଖ ମୁଁ ସର୍ବଦା ଭୋଗ କରିପାରିବି, କାରଣ ମୋ ଆତ୍ମାକୁ ତ ମୁଁ କଦାପି ହରାଇବି ନାହିଁ ।...ମାତା, ପିତା, ସନ୍ତାନ, ସ୍ତ୍ରୀ, ଦେହ, ସମ୍ପଦ—ସବୁ ମୁଁ ହରାଇପାରେ, କେବଳ ହରାଇପାରେ ନାହିଁ ମୋ ଆତ୍ମା...ଆତ୍ମା ହିଁ ଆନନ୍ଦ । ସବୁ ବାସନା ହିଁ ଆତ୍ମାରେ ନିହିତ ।...ଏହା ହିଁ ବ୍ୟକ୍ତିତ୍ୱ; ଏହାର ପରିବର୍ତ୍ତନ ନାହିଁ; ଏହା ହିଁ ପୂର୍ଣ୍ଣ ।

...କିପରି ଭାବରେ ଏହାକୁ ପାଇ ହୁଏ ? ଏହି ପୃଥିବୀର ମନୀଷୀମାନେ—ଶ୍ରେଷ୍ଠ ନରନାରୀଗଣ—ସୁଦୀର୍ଘ ସାଧନାଦ୍ୱାରା ଯାହା ପାଇଛନ୍ତି, ସମସ୍ତେ ତାହା ପାଇ-

ପାରନ୍ତି ।...କୋଡ଼ିଏ ବା ତିରିଶଟି ଦେବତାରେ ବିଶ୍ୱାସୀ ଦ୍ୱୈତବାଦୀ ମତଗୁଡ଼ିକର କଥା କହୁଛ । ସେଥିରେ କିଛି ଯାଏ ଆସେ ନାହିଁ । ଗୋଟିଏ ସତ୍ୟ ସମସ୍ତେ ମାନନ୍ତି—ତାହା ହେଉଛି ଏହି ମିଥ୍ୟା ବ୍ୟକ୍ତି-ସତ୍ତାକୁ ଛାଡ଼ିବାକୁ ହେବ ।...ଏହି ଅହଂ—ଏହା ଯେତେ ହ୍ରାସ ପାଇବ, ସେତେ ମୁଁ ମୋ ପ୍ରକୃତ ସ୍ୱରୂପର ସାନ୍ନିଧରେ ପହଞ୍ଚିବି; ଏହା ମୋର ବିଶ୍ୱମୟ ଦେହ । ନିଜ ମନର କଥା ମୁଁ ଯେତେ ଅଳ୍ପ ଭାବିବି, ସେତେ ମୁଁ ସେହି ବିଶ୍ୱବ୍ୟାପୀ ମନର ନିକଟତର ହେବି । ନିଜ ଆତ୍ମାର କଥା ମୁଁ ଯେତେ ଅଳ୍ପ ଭାବିବି, ସେତେ ମୁଁ ବିଶ୍ୱବ୍ୟାପୀ ଆତ୍ମାର ନିକଟତର ହେବି ।

ଆମେମାନେ ଗୋଟିଏ ଦେହରେ ବାସ କରୁ । ଆମେମାନେ କିଛି ଦୁଃଖ ଭୋଗ କରୁ; କିଛି ସୁଖ ଭୋଗ କରୁ । ଏହି ଦେହରେ ବାସ କରି ଯେଉଁ ସାମାନ୍ୟ ସୁଖ ଆମେମାନେ ପାଉ, ସେଥିପାଇଁ ଆତ୍ମରକ୍ଷା ନିମିତ୍ତ ଜଗତର ସବୁ କିଛି ଧ୍ୱଂସ କରିବାକୁ ମଧ୍ୟ ଆମେମାନେ ପ୍ରସ୍ତୁତ । ଯଦି ମୋର ଦୁଇଟି ଶରୀର ଥାଆନ୍ତା, ତାହା ହେଲେ ଆହୁରି ଭଲ ହୋଇ ନ ଥାନ୍ତା କି ? ଏହିପରି ଭାବରେ ଆମେମାନେ ଆନନ୍ଦ-ପଥରେ ଅଗ୍ରସର ହେଉ । ସମସ୍ତଙ୍କ ମଧ୍ୟରେ ମୁଁ ବିଦ୍ୟମାନ । ସବୁ ହାତଦ୍ୱାରା ମୁଁ କାର୍ଯ୍ୟ କରେ; ସବୁ ପାଦ ଉପରେ ଭର ଦେଇ ଚାଲେ । ସମସ୍ତଙ୍କ ମୁହଁରେ ମୁଁ କଥା କହେ; ସବୁ ଦେହରେ ମୁଁ ବାସ କରେ । ମୋର ଦେହ ଅସୀମ । ମୋର ମନ ବି ଅସୀମ । ନାଜାରେଥର ଯୀଶୁଙ୍କ ମଧ୍ୟରେ, ବୁଦ୍ଧଙ୍କ ମଧ୍ୟରେ, ମହମ୍ମଦଙ୍କ ମଧ୍ୟରେ—ଅତୀତ ଓ ବର୍ତ୍ତମାନ କାଳରେ ଯାହା କିଛି ମହତ୍ ଏବଂ ଶୁଭ—ସେସମସ୍ତ ମଧ୍ୟରେ ମୁଁ ବାସ କରୁଅଛି । ମୋ ପରେ ଯାହାଆସିବ, ତାହା ମଧ୍ୟରେ ବି ମୁଁ ବାସ କରିବି । ଏହା କଅଣ ମତବାଦ ମାତ୍ର ? ନା, ଏହା ହିଁ ସତ୍ୟ ।

ଏହି ସତ୍ୟ ଯଦି ଉପଲବ୍ଧି କରିପାର, ତେବେ ତାହା ଅସୀମ ଆନନ୍ଦର ବିଷୟ ହେବ । ତାହା ଆନନ୍ଦର କେତେ ଯେ ଉଚ୍ଛ୍ୱାସ । କାହାର ଦେହ ଏତେ ବଡ଼ ଯେ, ଆମ ଶରୀରର ସମସ୍ତ ପ୍ରୟୋଜନ ସେଥିରେମେଣ୍ଟିଯାଏ ? ଅନ୍ୟ ସବୁ ଶରୀରରେ ବାସ କରି, ପୃଥିବୀର ସବୁ ଶରୀରକୁ ଭୋଗ କରିବା ପରେ ଆମମାନଙ୍କର କି ଅବସ୍ଥା ହୁଏ ? ଆମେମାନେ ଅସୀମ ସହିତ ଏକ ହୋଇଯାଉ ଏବଂ ତାହା ହିଁ ଆମମାନଙ୍କର ଲକ୍ଷ୍ୟ । ସେହି ଏକମାତ୍ର ପଥ । ଜଣେ କହନ୍ତି, 'ମୁଁ ଯଦି ସତ୍ୟକୁ ଜାଣେ, ଲହୁଣୀ ଭଳି ମୁଁ ତରଳିଯିବି ।' ମନୁଷ୍ୟ ଯଦି ସେହିପରି ତରଳିଯାଆନ୍ତା ! କିନ୍ତୁ ମନୁଷ୍ୟ ଅତ୍ୟନ୍ତ କଠିନ, ଏତେ ଶୀଘ୍ର ତରଳିଯିବ ନାହିଁ ।

ମୁକ୍ତି ପାଇଁ ଆମମାନଙ୍କୁ କଅଣ କରିବାକୁ ହେବ ? ତୁମେମାନେ ତ ମୁକ୍ତ । ...ଯିଏ ମୁକ୍ତ, ସେ କଅଣ କେବେ ହେଲେ ବଦ୍ଧ ହୁଏ ? ମିଛ କଥା । ତୁମେମାନେ କଦାପି ବଦ୍ଧ ନ ଥିଲ । ଯିଏ ସୀମାହୀନ, ସେ କ'ଣ କେବେହେଲେ ସୀମାବଦ୍ଧ ହୋଇପାରେ ? ଅସୀମକୁ ଅସୀମ ଦେଇ ଭାଗ କର, ଅସୀମ ସହିତ ଅସୀମକୁ ଯୋଗ କର, ଅସୀମକୁ ଅସୀମ ସହିତ ଗୁଣ, ଅସୀମ ଅସୀମ ହିଁ ରହିବ । ତୁମେ ଅସୀମ;

ଈଶ୍ବର ଅସୀମ । ତୁମେମାନେ ସମସ୍ତେ ଅସୀମ । ସତ୍ତା ଦୁଇଟି ହୋଇପାରେ ନାହିଁ, ଗୋଟିଏ ମାତ୍ର ସତ୍ତା ଅଛି । ଅସୀମକୁ କେବେହେଲେ ସସୀମ କରାଯାଏ ନାହିଁ, ତୁମେମାନେ କଦାପି ବଦ୍ଧ ନୁହଁ । ଏହା ଶେଷ କଥା । ··ତୁମେମାନେ ମୁକ୍ତ ହିଁ ଅଛ । ଲକ୍ଷ୍ୟରେ ତୁମେମାନେ ପହଞ୍ଚିଅଛ । ସମସ୍ତଙ୍କୁ ହିଁ ଲକ୍ଷ୍ୟରେ ପହଞ୍ଚିବାକୁ ହେବ । ତୁମେମାନେ ଲକ୍ଷ୍ୟରେ ପହଞ୍ଚି ନାହଁ—ଏପରି କଦାପି ଭାବ ନାହିଁ ।···

ଆମେମାନେ ଯାହା(ଭାବୁ), ତାହା ହିଁ ହେଉ । ଯଦି ଭାବ ଯେ, ତୁମେମାନେ ପାପୀ, ତାହା ହେଲେ ମୋହଗ୍ରସ୍ତ ଭଳି ଭାବିବ—ମୁଁ ଗୋଟିଏ ଦୁଶ୍ଚରିତ୍ରଶୀଳ ହତଭାଗ୍ୟ କୀଟ । ଯେଉଁମାନେ ନରକରେ ବିଶ୍ୱାସ କରନ୍ତି, ମୃତ୍ୟୁ ପରେ ସେମାନେ ନରକକୁ ଯାଆନ୍ତି; ଏବଂ ଯେଉଁମାନେ କହନ୍ତି—ସ୍ୱର୍ଗକୁ ଯିବା, ସେମାନେ ସ୍ୱର୍ଗକୁ ହିଁ ଯାଆନ୍ତି ।

ସବୁ ହିଁ ଲୀଳା ।···ତୁମେମାନେ କହିପାର, 'ଯେତେବେଳେ କିଛି କରିବାକୁ ହେବ, ତେବେ ଯାହା ଭଲ ତାହା କରିବ ନାହିଁ କାହିଁକି ?' କିନ୍ତୁ ଭଲମନ୍ଦର କଥା କିଏ ଶୁଣୁଛି ? ଲୀଳା ! ସର୍ବଶକ୍ତିମାନ ଈଶ୍ୱର ଲୀଳା କରୁଅଛନ୍ତି । ବାସ୍ ।···ତୁମେ ହିଁ ତ ସେହି ଲୀଳାରତ ସର୍ବଶକ୍ତିମାନ ଈଶ୍ୱର । ଯଦି ରଙ୍ଗମଞ୍ଚରେ ଭିକ୍ଷୁକର ଭୂମିକା ଗ୍ରହଣ କର, ତେବେ ଭୂମିକା-ନିର୍ବାଚନ ପାଇଁ ଅନ୍ୟକୁ ଦୋଷୀ କରିପାରିବ ନାହିଁ । ଭିକ୍ଷୁକ ହେବାରେ ହିଁ ତୁମର ଆନନ୍ଦ । ତୁମର ପ୍ରକୃତ ଐଶ୍ୱରିକ ସ୍ୱରୂପ ତ ତୁମେ ଅବଗତ ଅଛ । ତୁମେ ରାଜା, ରଙ୍ଗମଞ୍ଚରେ ଭିକ୍ଷୁକ ସାଜିଛ ମାତ୍ର ।···ସବୁ ତ କୌତୁକ । ସବୁ ଜାଣିଶୁଣି ଏହି ଖେଳ ଆରମ୍ଭ କର । ତାହା ଅଭ୍ୟାସ କର । ସାରା ଜଗତଟା ତ ଗୋଟାଏ ବିରାଟ ଖେଳ । ସବୁ ଭଲ, କାରଣ ସବୁ ହିଁ ମଜା । ଏହି ନକ୍ଷତ୍ରଟି ନିକଟକୁ ଆସିଲା ଏବଂ ଆମମାନଙ୍କର ପୃଥିବୀ ସହିତ ଧକ୍କା ଲାଗି ଚୂରମାର୍ ହୋଇଗଲା—ଆମେମାନେ ସମସ୍ତେ ମରିଗଲୁ । ଏହା ମଧ୍ୟ କୌତୁକ । ଯେଉଁସବୁ ଶ୍ରେଷ୍ଠ ଶ୍ରେଷ୍ଠ ଜିନିଷ ତୁମମାନଙ୍କର ଇନ୍ଦ୍ରିୟକୁ ଆନନ୍ଦ ଦିଏ, ସେଗୁଡ଼ିକୁ ମଧ୍ୟ ତୁମେମାନେ କୌତୁକ ମନେକର !···

ଆମମାନଙ୍କୁ କୁହାହୁଏ—ଏଠାରେ ଜଣେ ଭଲ ଈଶ୍ୱର ଅଛନ୍ତି ଏବଂ ଜଣେ ମନ୍ଦ ଈଶ୍ୱର ସେଠାରେ ଅଛନ୍ତି, ଯିଏ ଭୁଲ କରିବା ମାତ୍ରକେ ମୋତେ ଧରିବା ପାଇଁ ପ୍ରସ୍ତୁତ ହୋଇ ବସିଛନ୍ତି ।···ମୁଁ ଯେତେବେଳେ ଶ୍ରେଷ୍ଠ ଥିଲି, ସେତେବେଳେ ଜଣେ ମୋତେ କହିଥିଲେ—ଈଶ୍ୱର ସବୁ ଦେଖିପାରନ୍ତି । ଶୋଇବାକୁ ଯାଇ ମୁଁ ଉପରକୁ ଚାହିଁରହିଲି । ଭାବିଲି, ଘରର ଛାତ ମେଲା ହୋଇଯିବ; କିନ୍ତୁ କିଛି ହେଲା ନାହିଁ । ଆମ ନିଜ ଛଡ଼ା ଆଉ କେହି ଆମମାନଙ୍କ ଉପରେ ଲକ୍ଷ୍ୟ ରଖନ୍ତି ନାହିଁ । ନିଜ ଆତ୍ମା ଛଡ଼ା ଅନ୍ୟ କୌଣସି ପ୍ରଭୁ ନାହାନ୍ତି; ଆମମାନଙ୍କ ଅନୁଭୂତି ଛଡ଼ା ଅନ୍ୟ କୌଣସି ପ୍ରକୃତି ନାହିଁ । ଅଭ୍ୟାସ ହିଁ ଦ୍ୱିତୀୟ ସ୍ୱଭାବ ବା ପ୍ରକୃତି; ଏହା ପ୍ରଥମ ପ୍ରକୃତି ମଧ୍ୟ । ପ୍ରକୃତିର ଏହା ଶେଷ କଥା । ଯଦି କୌଣସି କାର୍ଯ୍ୟକୁ ମୁଁ ଦୁଇ ବା ତିନି ଥର

ପୁନରାବୃତ୍ତି କରେ, ସାଙ୍ଗେ ସାଙ୍ଗେ ଏହା ମୋର ପ୍ରକୃତ ବା ସ୍ୱଭାବ ହୋଇଯାଏ । ଅସୁଖୀ ହୁଅ ନାହିଁ ! ଅନୁଶୋଚନା କର ନାହିଁ ! ଯାହା ହେବାର ହୋଇଛି, ଯଦି ଅନୁତାପ କର, ଫଳଭୋଗ କରିବାକୁ ହେବ !

...ବୁଦ୍ଧିମାନ ହୁଅ । ଆମେମାନେ ଭୁଲ କରୁ; ସେଥିରେ କ'ଣ ହେଲା ? ସବୁ ହିଁ ତ କୌତୁକ । ଅତୀତର ପାପ ପାଇଁ ଲୋକେ ଏପରି ପାଗଳ ହୋଇଉଠନ୍ତି, ଏପରି ଭାବରେ ଆର୍ତ୍ତନାଦ କରନ୍ତି, କାନ୍ଦନ୍ତି ଯେ କହିବାର କଥା ନୁହେଁ । ଅନୁଶୋଚନା କର ନାହିଁ । କାର୍ଯ୍ୟଟି କରିବା ପରେ ଆଉ ସେ କଥା ଭାବ ନାହିଁ । ଅଗ୍ରସର ହୁଅ ! ଅଟକିରହ ନାହିଁ ! ପଛକୁ ଚାହଁ ନାହିଁ ! ପଛକୁ ଚାହିଁ କଅଣ ଲାଭ ହେବ ? କ୍ଷତି ନାହିଁ କି ଲାଭ ବି ନାହିଁ । ତୁମେ ତ ଆଉ ଲହୁଣୀ ଭଳି ତରଳି ଯାଉନାହଁ ! ସ୍ୱର୍ଗ, ନରକ ଏବଂ ଅବତାର—ସବୁ ଅର୍ଥହୀନ କଥା ।

କିଏ ଜାତ ହୁଏ ଓ କିଏ ମରେ ? ମଜା କରୁଅଛ, ପୃଥିବୀକୁ ନେଇ ଖେଳୁଛ ମାତ୍ର । ଯେତେ ଦିନ ଇଚ୍ଛା ଏହି ଶରୀରକୁ ଧାରଣ କରୁଅଛ । ଯଦି ପସନ୍ଦ ନ ହୁଏ, କର ନାହିଁ । ଅସୀମ ହିଁ ସତ୍ୟ, ସସୀମ ତ ଖେଳ ମାତ୍ର । ତୁମେ ଏକକାଳୀନ ଅସୀମ ଓ ସସୀମ-ଦେହବାନ୍ । ଜ୍ଞାନର ଉଦୟ ହେଲେ କୌଣସି ତଫାତ୍ ହେବ ନାହିଁ; ଖେଳ ଚାଲିଥିବ ।...ଦୁଇଟି ଶବ୍ଦ—ଆତ୍ମା ଓ ଦେହ—ଯୁକ୍ତ କରାହୋଇଛି । ଆଂଶିକ ଜ୍ଞାନ ଏହାର କାରଣ । ନିଶ୍ଚୟ ଜାଣିବ ତୁମେ ସର୍ବଦା ମୁକ୍ତ । ଜ୍ଞାନରୂପକ ଅଗ୍ନିରେ ଯେତେ କଳୁଷ ଅସମ୍ପୂର୍ଣ୍ଣତା ଅଛି ସବୁ ପୋଡ଼ିଯିବ । ମୁଁ ସେହି ଅସୀମ ।...

ଆଦିକାଳରେ ତୁମେମାନେ ଯେପରି ମୁକ୍ତ ଥିଲ, ବର୍ତ୍ତମାନ ମଧ୍ୟ ଅଛ । ଚିରଦିନ ରହିବ । ଯିଏ ଜାଣେ ଯେ ସେ ମୁକ୍ତ, ସେ ମୁକ୍ତ; ଯିଏ ଜାଣେ ଯେ ସେ ବଦ୍ଧ, ସେ ବଦ୍ଧ ।

ତାହାହେଲେ ଈଶ୍ୱର, ପୂଜା-ଅର୍ଚ୍ଚନା ପ୍ରଭୃତିର କଅଣ ପ୍ରୟୋଜନ ? ସେଗୁଡ଼ିକର ମଧ୍ୟ ପ୍ରୟୋଜନ ଅଛି । ମୁଁ ନିଜକୁ ଈଶ୍ୱର ଓ ମୁଁ—ଏହି ଦୁଇ ଅଂଶରେ ଭାଗ କରିଅଛି; ମୁଁ ପୂଜିତ ହୁଏ ଏବଂ ନିଜକୁ ପୂଜା କରେ । କାହିଁକି କରିବ ନାହିଁ ? ମୁଁ ତ ନିଜେ ଈଶ୍ୱର । ମୋର ଆତ୍ମାକୁ କାହିଁକି ପୂଜା କରିବ ନାହିଁ ? ସର୍ବେଶ୍ୱର ଭଗବାନ ଯିଏ, ସେ ତ ମୋର ଆତ୍ମା । ସବୁ ହିଁ ଖେଳ, ସବୁ ହିଁ କୌତୁକ, ଅନ୍ୟ କୌଣସି ଉଦ୍ଦେଶ୍ୟ ନାହିଁ ।

ଜୀବନର ପରିଣାମ ଓ ଲକ୍ଷ୍ୟ କ'ଣ ? କିଛି ନୁହେଁ, କାରଣ ମୁଁ ଜାଣେ—ମୁଁ ହିଁ ସେହି ଅସୀମ । ତୁମେମାନେ ଯଦି ଭିକ୍ଷୁକ ହୁଅ, ତୁମମାନଙ୍କର କୌଣସି ଲକ୍ଷ୍ୟ ଥାଇପାରେ । ମୋର କୌଣସି ଲକ୍ଷ୍ୟ ନାହିଁ, କୌଣସି ଅଭାବ ନାହିଁ, କୌଣସି ଉଦ୍ଦେଶ୍ୟ ନାହିଁ । ମୁଁ ତୁମମାନଙ୍କ ଦେଶକୁ ଆସିଅଛି, ବକ୍ତୃତା କରୁଅଛି—କେବଳ ମଜାର ଖେଳ, ଅନ୍ୟ କୌଣସି ଅର୍ଥ ନାହିଁ । ଏହାର ଅନ୍ୟ କି ଅର୍ଥ ଥାଇପାରେ ?

ଏକମାତ୍ର ଜୀବିତଭାବସମାନେ ଅନ୍ୟ ପାଇଁ କାର୍ଯ୍ୟ କରିଥାଆନ୍ତି । ତୁମେମାନେ ତ ଅନ୍ୟ ପାଇଁ କାର୍ଯ୍ୟ କର ନାହିଁ । ଯଦି ପ୍ରୟୋଜନ ହୁଏ, ତୁମେମାନେ ପୂଜା କର । ଖ୍ରୀଷ୍ଟିୟାନ, ମୁସଲମାନ, ଚୀନା, ଜାପାନୀ—ସମସ୍ତଙ୍କ ସହିତ ତୁମେମାନେ ଯୋଗ ଦେଇପାର । ଯେତେ ଈଶ୍ବର ଅଛନ୍ତି ଏବଂ ଯେତେ ଈଶ୍ବର ଆସିବେ, ସମସ୍ତଙ୍କୁ ତୁମେମାନେ ପୂଜା କରିପାର ।···

ମୁଁ ସୂର୍ଯ୍ୟରେ ଅଛି, ଚନ୍ଦ୍ରରେ ଅଛି, ନକ୍ଷତ୍ରମଣ୍ଡଳରେ ଅଛି । ମୁଁ ପରମେଶ୍ବରଙ୍କ ସହିତ ଅଛି, ମୁଁ ସବୁ ଦେବତାଙ୍କ ମଧ୍ୟରେ ଅଛି । ମୋର ଆତ୍ମାକୁ ହିଁ ମୁଁ ପୂଜା କରେ ।

ଏହାର ଆଉ ଗୋଟିଏ ଦିଗ ଅଛି, ଯାହା ମୁଁ ଏପର୍ଯ୍ୟନ୍ତ ମଧ୍ୟ କହି ନାହିଁ । ଧରନ୍ତୁ ମୋର ଫାସୀ ହେବ । ମୁଁ ଦୁଷ୍ଟ ଲୋକ । ନରକରେ ମୁଁ ଶାସ୍ତି ପାଉଅଛି । ଏହା ମଧ୍ୟ ମଜାର ଖେଳ । ମୁଁ ଅସୀମ—ଏହି ଜ୍ଞାନଲାଭ କରିବା ହିଁ ଦର୍ଶନର ଲକ୍ଷ୍ୟ । ଲକ୍ଷ୍ୟ, ପ୍ରେରଣା, ଉଦ୍ଦେଶ୍ୟ, କର୍ତ୍ତବ୍ୟ—ସବୁ ପଛରେ ପଡ଼ି ରହିଯାଏ ।···

ଏହି ସତ୍ୟକୁ ପ୍ରଥମେ ଶ୍ରବଣ କରିବାକୁ ହେବ, ତାହାପରେ ମନନ । ଯୁକ୍ତି କର, ଯେତେ ପାର ତର୍କ କର । ବିଦ୍ୱାନ୍ ଲୋକେ ଏହା ଅପେକ୍ଷା ଅଧିକ ଜାଣନ୍ତି ନାହିଁ । ନିଶ୍ଚିତ ଜାଣ, ସବୁ କିଛି ମଧ୍ୟରେ ତୁମେ ଅଛ । ସେଥିପାଇଁ କାହାକୁ ହେଲେ ଆଘାତ କର ନାହିଁ, କାରଣ ଅନ୍ୟକୁ ଆଘାତ କଲେ ତୁମେ ନିଜକୁ ହିଁ ଆଘାତ କରିବ ।···ସର୍ବଶେଷରେ ଏହି ସତ୍ୟକୁ ଧ୍ୟାନ କରିବାକୁ ହେବ । ଏହି ସତ୍ୟକୁ ଚିନ୍ତା କର । ତୁମେ କଅଣ ଭାବିପାର—ଏପରି ଏକ ସମୟ ଆସିବ, ଯେତେବେଳେ ସବୁ କିଛି ଚୂର୍ଣ୍ଣବିଚୂର୍ଣ୍ଣ ହୋଇଯିବ, ଅଥଚ ତୁମେ ଏକାକୀ ଛିଡ଼ା ହୋଇ ରହିବ ? ଉଚ୍ଛ୍ୱସିତ ଆନନ୍ଦରେ ସେହି ମୁହୂର୍ତ୍ତିଟି କେବେହେଲେ ତୁମକୁ ତ୍ୟାଗ କରିବ ନାହିଁ । ତୁମେ ପ୍ରକୃତରେ ଦେଖିବାକୁ ପାଇବ ତୁମର ଦେହ ନାହିଁ । ତୁମର ଦେହ କୌଣସି କାଳରେ ନ ଥିଲା ।

ଅନନ୍ତକାଳ ଧରି କେବଳ ମୁଁ ଏକ—ରହିଅଛି । କାହାକୁ ମୁଁ ଭୟ କରିବି ? ସବୁ ତ ମୋର ଆତ୍ମା । ଏହି ସତ୍ୟକୁ ଅବିରାମ ଧ୍ୟାନ କରିବାକୁ ହେବ । ଏହା ଭିତର ଦେଇ ଉପଲବ୍‌ଧି ଆସିଥାଏ; ସେହି ଉପଲବ୍‌ଧି ଭିତର ଦେଇ ତୁମେ ହେବ ଅନ୍ୟମାନଙ୍କ ନିକଟରେ ଆଶୀର୍ବାଦସ୍ୱରୂପ ।···

'ବ୍ରହ୍ମବିଦ୍ ଭଳି ତୁମର ମୁଖମଣ୍ଡଳ ପ୍ରତିଭାତ ହେଉଅଛି' *—ଏହା ହିଁ ଆମର ଲକ୍ଷ୍ୟ । ମୁଁ ଯେଉଁ ଭାବରେ ପ୍ରଚାର କରୁଅଛି, ଏହା ସେ ଭାବରେ ପ୍ରଚାର କରିବାର ବସ୍ତୁ ନୁହେଁ । 'ଗୋଟିଏ ଗଛ ତଳେ ମୁଁ ଜଣେ ଗୁରୁଙ୍କୁ ଦେଖିଥିଲି, ଷୋଡ଼ଶ ବର୍ଷୀୟ ଏକ ଯୁବକ; ଶିଷ୍ୟ ଏକ ଅଶୀବର୍ଷର ବୃଦ୍ଧ । ଗୁରୁ ନୀରବରେ ଶିକ୍ଷା

* ଛାନ୍ଦୋଗ୍ୟ ଉପ., ୪।୧୪।୨

ଦେଉଛନ୍ତି ଏବଂ ଶିଷ୍ୟଙ୍କର ସବୁ ସନ୍ଦେହ ଦୂରୀଭୂତ ହେଉଅଛି ।'** କିଏ କଥା କୁହେ ? ସୂର୍ଯ୍ୟଙ୍କୁ ଦେଖିବା ପାଇଁ କିଏ ମହମବତୀ ଜଳାଏ ? ସତ୍ୟ ଯେତେବେଳେ ପ୍ରକାଶ ପାଏ, କୌଣସି ସାକ୍ଷ୍ୟର ପ୍ରୟୋଜନ ହୁଏ ନାହିଁ । ତୁମେମାନେ ମଧ୍ୟ ତାହା ଜାଣ ।···ତୁମେମାନେ ମଧ୍ୟ ତାହା ହିଁ କରିବ···ଉପଲବ୍ଧି କରିବ । ପ୍ରଥମେ ଏହା ଚିନ୍ତା କର । ଯୁକ୍ତିଦ୍ୱାରା ବୁଝ । କୌତୂହଳ ଚରିତାର୍ଥ କର । ତାହାପରେ ଆଉ କିଛି ଭାବ ନାହିଁ । କିଛି ଯଦି ଆମେମାନେ ନ ପଢ଼ିଆନ୍ତୁ ! ଈଶ୍ୱର ଆମମାନଙ୍କର ସହାୟ ହୁଅନ୍ତୁ ! ଜଣେ ଶିକ୍ଷିତ ଲୋକଙ୍କର ଅବସ୍ଥା ଦେଖ ।

'ଲୋକେ ଏପରି କହନ୍ତି, ସେପରି ମଧ୍ୟ କହନ୍ତି !···'

'ବନ୍ଧୁ, ଆପଣ କଅଣ କହୁଛନ୍ତି ?'

'ମୁଁ କିଛି ବି କହୁ ନାହିଁ ।'

ସେ କେବଳ ଅନ୍ୟର ଚିନ୍ତା ଉଦ୍ଧୃତ କରନ୍ତି; କିନ୍ତୁ ନିଜେ କିଛି ଚିନ୍ତା କରନ୍ତି ନାହିଁ । ଏହା ଯଦି ଶିକ୍ଷା ହୁଏ, ତାହା ହେଲେ ପାଗଳାମି ଆଉ କାହାକୁ କହନ୍ତି ? ଯେଉଁମାନେ ଗ୍ରନ୍ଥ ଲେଖିଥିଲେ, ସେମାନଙ୍କ ଆଡ଼କୁ ଚାହିଁ !···ଏହିସବୁ ଆଧୁନିକ ଲେଖକଗଣ—ଦୁଇଟି ବାକ୍ୟ ମଧ୍ୟ ସେମାନଙ୍କର ନିଜର ନୁହେଁ ! ସବୁ ହିଁ ଉଦ୍ଧୃତ !···

ପୋଥିର ମୂଲ୍ୟ ଖୁବ୍ ବେଶୀ ନୁହେଁ, ଆଉ ପର ମୁହଁରୁ ଶୁଣିଥିବା ଧର୍ମର କୌଣସି ମୂଲ୍ୟ ନାହିଁ । ଏହା ଠିକ୍ ଆହାର ଭଳି । ତୁମ ଧର୍ମ ମୋତେ ସନ୍ତୁଷ୍ଟ କରିବ ନାହିଁ । ଯୀଶୁ ଈଶ୍ୱରଙ୍କୁ ପ୍ରତ୍ୟକ୍ଷ କରିଥିଲେ, ବୁଦ୍ଧ ମଧ୍ୟ କରିଥିଲେ । ତୁମେ ଯଦି ଈଶ୍ୱରଙ୍କୁ ପ୍ରତ୍ୟକ୍ଷ କରି ନ ଥାଅ, ତୁମେ ନାସ୍ତିକ ଅପେକ୍ଷା କୌଣସି ପ୍ରକାରେ ଉନ୍ନତ ନୁହଁ । କେବଳ ସେ ନିର୍ବାକ୍; ଅଥଚ ତୁମେ ବକ୍‌ବକ୍ କର ଓ ପୃଥିବୀକୁ ବିରକ୍ତ କର । ପୋଥି, ବାଇବେଲ ଓ ଧର୍ମଗ୍ରନ୍ଥର କୌଣସି ପ୍ରୟୋଜନ ନାହିଁ । ବାଲ୍ୟ-କାଳରେ ମୁଁ ଗୋଟିଏ ପ୍ରୌଢ଼ଙ୍କୁ ଦେଖିଥିଲି, ସେ କୌଣସି ଧର୍ମଗ୍ରନ୍ଥ ପଢ଼ି ନ ଥିଲେ, କିନ୍ତୁ ସ୍ପର୍ଶଦ୍ୱାରା ସେ ଅନ୍ୟ ମଧ୍ୟରେ ଈଶ୍ୱରୀୟ ଅନୁଭୂତି ସଞ୍ଚାରିତ କରିପାରୁଥିଲେ ।

'ହେ ପୃଥିବୀର ଗୁରୁବୃନ୍ଦ, ତୁମେମାନେ ଚୁପ୍ ରହ । ସ୍ତବଧ ହୁଅ ଗ୍ରନ୍ଥରାଜି ! ହେ ପ୍ରଭୁ, ତୁମେ କେବଳ କଥା କୁହ ଏବଂ ତୁମର ଭୃତ୍ୟ ଶୁଣୁ ।'*···ଯଦି ସତ୍ୟ ନ ଥାଏ, ତାହା ହେଲେ ଏ ଜୀବନରେ ପ୍ରୟୋଜନ କଅଣ ? ଆମେମାନେ ସମସ୍ତେ ଭାବୁ, ସତ୍ୟକୁ ଧରିପାରିବା, କିନ୍ତୁ ପାରୁ ନାହିଁ । ଆମେମାନେ ଅନେକେ କେବଳ ଧୂଳି ଧରିଥାଉଁ । ଈଶ୍ୱର ସେଠାରେ ନାହାନ୍ତି । ଈଶ୍ୱର ଯଦି ନାହାନ୍ତି, ତେବେ ଜୀବନର ଦରକାର କଅଣ ? ଏହି ପୃଥିବୀରେ ବିଶ୍ରାମ-ସ୍ଥାନ କେଉଁଠାରେ ଅଛି ? ଆମମାନଙ୍କୁ ସନ୍ଧାନ କରିବାକୁ ହେବ; କିନ୍ତୁ ତୀବ୍ର ଭାବରେ ସେ ସନ୍ଧାନ ଆମେମାନେ

---

** ଦକ୍ଷିଣାମୂର୍ତ୍ତିସ୍ତୋତ୍ରମ୍ ୧୨

* Imitation of Christ.

କରୁନାହୁଁ । ଆମେମାନେ ସ୍ରୋତ-ତାଡ଼ିତ କ୍ଷୁଦ୍ର ତୃଣଖଣ୍ଡ ଭଳି ।

ସତ୍ୟ ଯଦି ଥାଏ, ଈଶ୍ୱର ଯଦି ଥାଆନ୍ତି, ତେବେ ଆମମାନଙ୍କ ଅନ୍ତରରେ ସେ ଅଛନ୍ତି ।···ମୋତେ କହିବାକୁ ହେବ, 'ତାହାଙ୍କୁ ମୁଁ ସ୍ୱଚକ୍ଷୁରେ ଦେଖିଅଛି ।' ନତୁବା ମୋର କୌଣସି ଧର୍ମ ନାହିଁ । କେତେଗୁଡ଼ିଏ ବିଶ୍ୱାସ, ମତବାଦ ଓ ଉପଦେଶରେ ଧର୍ମ ହୁଏ ନାହିଁ । ଉପଲବ୍ଧି—ଈଶ୍ୱରଙ୍କୁ ପ୍ରତ୍ୟକ୍ଷ କରିବା ହିଁ ଏକମାତ୍ର ଧର୍ମ । ସମଗ୍ର ବିଶ୍ୱ ଯେଉଁମାନଙ୍କୁ ପୂଜା କରନ୍ତି, ସେହି ମହାପୁରୁଷମାନଙ୍କର ଗୌରବ କେଉଁଥିରେ ? ସେମାନଙ୍କ ନିକଟରେ ଈଶ୍ୱର କେବଳ ଗୋଟିଏ ମତବାଦ ନୁହନ୍ତି । ପିତାମହ ବିଶ୍ୱାସ କରୁଥିଲେ ବୋଲି କଅଣ ସେମାନେ ବିଶ୍ୱାସ କରୁଥିଲେ ? ନା । ଦେହ, ମନ ଇତ୍ୟାଦିର ଊର୍ଦ୍ଧ୍ୱରେ ଯେଉଁ ଅସୀମ, ତାଙ୍କର ଉପଲବ୍ଧିରେ ହିଁ ସେମାନଙ୍କର ଗୌରବ । ସେହି ଈଶ୍ୱରଙ୍କର ସାମାନ୍ୟ ମାତ୍ର ପ୍ରତିଫଳନ ଅଛି ବୋଲି ଏହି ପୃଥିବୀ ସତ୍ୟ । ଆମେମାନେ ଭଲ ଲୋକଙ୍କୁ ଭଲ ପାଉ । କାରଣ ତାଙ୍କ ମୁହଁରେ ସେହି ପ୍ରତିଫଳନ ଆହୁରି ଟିକେ ଉଜ୍ଜ୍ୱଳ ହୋଇ ଉଠେ । ନିଜେ ଏହା ବୁଝିବାକୁ ହେବ, ଅନ୍ୟ କୌଣସି ପଥ ନାହିଁ ।

ତାହା ହିଁ ଲକ୍ଷ୍ୟ । ସେଥିପାଇଁ ସଂଗ୍ରାମ କର । ନିଜର ବାଇବେଲ୍ ରଚନା କର; ନିଜର ଖ୍ରୀଷ୍ଟଙ୍କୁ ଆବିଷ୍କାର କର । ନତୁବା ତୁମେମାନେ ଧାର୍ମିକ ନୁହେଁ । ଧର୍ମର କଥା କୁହ ନାହିଁ । ମନୁଷ୍ୟ ଗୋଟିଏ ପରେ ଗୋଟିଏ କଥା କହିଯାଏ । 'ସେମାନଙ୍କ ମଧ୍ୟରେ ଅନେକେ ଅନ୍ଧକାରରେ ନିମଜ୍ଜିତ ରହି ମଧ୍ୟ ଗର୍ବରେ ଭାବନ୍ତି, ସେହି ଆଲୋକ ସେମାନେ ପାଇଛନ୍ତି । କେବଳ ସେତିକି ନୁହେଁ, ଅନ୍ୟମାନଙ୍କୁ ମଧ୍ୟ ସେମାନେ କାନ୍ଧରେ ନେବାକୁ ଚାହାଁନ୍ତି ଏବଂ ଫଳସ୍ୱରୂପ ଉଭୟେ ଗର୍ତ୍ତରେ ପଡ଼ିଯାଆନ୍ତି ।'**

କେବଳ ଗୀର୍ଜା କାହାକୁ ହେଲେ ରକ୍ଷା କରିପାରେ ନାହିଁ । ମନ୍ଦିର ବା ଗୀର୍ଜାର ଆଶ୍ରୟରେ ଜନ୍ମଗ୍ରହଣ କରିବା ଭଲ, କିନ୍ତୁ ସେହିଠାରେ ଯାହାର ମୃତ୍ୟୁ ହୁଏ, ସେ ଅତି ହତଭାଗ୍ୟ ! ସେ କଥା ଥାଉ !···ସମ୍ପ୍ରଦାୟବିଶେଷରେ ଜନ୍ମଗ୍ରହଣ କରିବା ଭଲ; କିନ୍ତୁ ବର୍ତ୍ତମାନ ତାହା ଛାଡ଼ିଦିଅ । ସେ ତ ଶୈଶବର ସ୍ଥାନ ··କିନ୍ତୁ ତାହା ହିଁ ହେଉ !···ଈଶ୍ୱରଙ୍କ ନିକଟକୁ ସିଧା ଚାଲିଯାଅ । କୌଣସି ଧାରଣା ନୁହେଁ ବା କୌଣସି ମତବାଦ ନୁହେଁ । କେବଳ ତାହା ହେଲେ ସମସ୍ତ ସନ୍ଦେହ ଦୂର ହେବ ।···ଯାହା ବଙ୍କା, ତାହା ଏକମାତ୍ର ସେତିକିବେଳେ ସିଧା ହେବ । ··

'ବହୁ ମଧ୍ୟରେ ଯେ ଏକକୁ ଦେଖନ୍ତି, ବହୁ ମୃତ୍ୟୁ ମଧ୍ୟରେ ଯିଏ ସେହି ଏକ ଜୀବନକୁ ଦେଖନ୍ତି, ବହୁ ମଧ୍ୟରେ ଯିଏ ତାହାଙ୍କୁ ଦେଖନ୍ତି ଏବଂ ଯିଏ ନିଜର ଅପରିବର୍ତ୍ତନୀୟ ଆତ୍ମାକୁ ଦେଖନ୍ତି, କେବଳ ସେ ଶାଶ୍ୱତ ଶାନ୍ତିର ଅଧିକାରୀ ।'*

---

* କଠ ଉପ., ୧।୨।୫

** କଠ ଉପ., ୨।୨।୧୨

# ସୁବଦ୍ଧତ ରହସ୍ୟ

[କାଲିଫର୍ଣ୍ଣିଆ ଅନ୍ତର୍ଗତ ଲସ୍-ଏଞ୍ଜେଲ୍ସରେ ପ୍ରଦତ୍ତ ବକ୍ତୃତା ]

ବସ୍ତୁର ସ୍ୱରୂପ ଅବଧାରଣା କରିବାକୁ ଯାଇ ଆମେମାନେ ଯେକୌଣସି ଉପାୟ ଅବଲମ୍ବନ କରୁ ନା କାହିଁକି, ଗଭୀର ବିଶ୍ଳେଷଣ କଲେ ଆମେମାନେ ଦେଖିବାକୁ ପାଇବା ଯେ, ବସ୍ତୁର ଯେଉଁ ସ୍ୱରୂପ ଆମମାନଙ୍କ ନିକଟରେ ପ୍ରକାଶିତ ହୁଏ, ତାହା ଆପାତତଃ ସ୍ୱବିରୋଧୀ ଛଡ଼ା ଅନ୍ୟ କିଛି ନୁହେଁ; ତାହା ବୁଦ୍ଧିର ଅଗମ୍ୟ ହେଲେ ମଧ୍ୟ ସତ୍ୟ । ପ୍ରାଥମିକ ଦୃଷ୍ଟିରେ ଯେକୌଣସି ବସ୍ତୁ ସସୀମ ବୋଲି ମନେ ହୁଏ; କିନ୍ତୁ ତାହାକୁ ବିଶ୍ଳେଷଣ କରିବାକୁ ଆରମ୍ଭ କଲେ—ଗୁଣ ଦିଗରୁ ହେଉ ବା ସମ୍ଭାବନା ଦିଗରୁ ହେଉ, ଅଥବା ଶକ୍ତି ଦିଗରୁ ହେଉ ବା ସମ୍ବନ୍ଧ ଦିଗରୁ ହେଉ, ତାହାର କୌଣସି ଅନ୍ତ ଖୋଜି ମିଳେନାହିଁ; ବସ୍ତୁତଦୃଷ୍ଟିରେ ତାହା ଅସୀମ ହୋଇଉଠେ । ଗୋଟିଏ ଫୁଲର କଥା ଧରାଯାଉ । ଫୁଲ ତ କ୍ଷୁଦ୍ର, ସସୀମ ପଦାର୍ଥ, କିନ୍ତୁ କିଏ କହିପାରେ ଯେ, ସେ ଫୁଲ ସମ୍ବନ୍ଧରେ ସବୁ କଥା ଜାଣେ ? ସାମାନ୍ୟ ଗୋଟିଏ ଫୁଲ ସମ୍ବନ୍ଧରେ ମଧ୍ୟ ଜ୍ଞାନର ଶେଷ ସୀମାରେ ପହଞ୍ଚିବା କାହାରି ପକ୍ଷରେ ସମ୍ଭବ ନୁହେଁ, କାରଣ ଫୁଲଟି ପ୍ରଥମେ ସସୀମ ବୋଲି ପ୍ରତୀତ ହେଲେ ମଧ୍ୟ ବସ୍ତୁତ ଦୃଷ୍ଟିରେ ଅସୀମ ବୋଧ ହୁଏ । ଗୋଟିଏ କ୍ଷୁଦ୍ର ବାଲିକଣାକୁ ବିଶ୍ଳେଷଣ କଲେ ମଧ୍ୟ ବୁଝାଯାଏ, ତାହା ଆପାତଦୃଷ୍ଟିରେ ସସୀମ ହେଲେ ମଧ୍ୟ ବସ୍ତୁତଃ ଅସୀମ; ତଥାପି ବାଲିକଣାକୁ ଆମେମାନେ ସସୀମ ପଦାର୍ଥ ବୋଲି ମନେ କରିଆସୁଅଛୁ, ଫୁଲ ମଧ୍ୟ ସେହିପରି ଆମମାନଙ୍କ ନିକଟରେ ସସୀମ ପଦାର୍ଥ ବୋଲି ବିବେଚିତ ହୁଏ ।

ଆମମାନଙ୍କ ବାହ୍ୟ ଓ ଆଭ୍ୟନ୍ତରୀଣ ସମସ୍ତ ଚିନ୍ତା ଓ ଅଭିଜ୍ଞତା ସମ୍ବନ୍ଧରେ ମଧ୍ୟ ଏହା ସତ୍ୟ । ଆମେମାନେ ପ୍ରଥମେ ସାମାନ୍ୟ ଜିନିଷ ମନେ କରି ଯାହା ଚିନ୍ତା କରିବାକୁ ଆରମ୍ଭ କରୁ, ଅତି ଅଳ୍ପ ସମୟ ମଧ୍ୟରେ ତାହା ଆମମାନଙ୍କର ଜ୍ଞାନର ପରିଧି ଅତିକ୍ରମ କରି ଅନନ୍ତର ଗଭୀର ପ୍ରଦେଶରେ ବୁଡ଼ିଯାଏ । ଅନୁଭୂତ ବସ୍ତୁ ମଧ୍ୟରେ ଆମେମାନେ ନିଜେ ପ୍ରଥମ ଓ ଶ୍ରେଷ୍ଠ । ଅସ୍ତିତ୍ୱର କଥା ଭାବିବାକୁ ଗଲେ ମଧ୍ୟ ଗୋଲକଧନ୍ଦାରେ ପଡ଼ିବାକୁ ହୁଏ । ଆମମାନଙ୍କର ଅସ୍ତିତ୍ୱ ଅଛି । ଆମେମାନେ ସସୀମ ଜୀବ । ଆମେମାନେ ଜୀବନଧାରଣ କରୁ ଏବଂ ମରିଯାଉ । ଆମମାନଙ୍କର ଦିଗନ୍ତ ସୀମାବଦ୍ଧ । ଆମେମାନେ ଜାଣୁ—ଆମମାନଙ୍କର ସତ୍ତା ସସୀମ, ଆମମାନଙ୍କର ଜୀବନର ପରିଣତି ମୃତ୍ୟୁ, ଆମମାନଙ୍କର ଦିଗ୍‌ମଣ୍ଡଳ ସ୍ୱଳ୍ପପ୍ରସାରୀ; ଆମେମାନେ ଚାରିଆଡ଼େ ଜଗତ-ପରିବେଷ୍ଟିତ ହୋଇ ସଙ୍କୀର୍ଣ୍ଣ ଜୀବନଯାପନ କରୁଅଛୁ । ବିଶ୍ୱ-ପ୍ରକୃତି ଯେକୌଣସି ମୁହୂର୍ତ୍ତରେ ଆମମାନଙ୍କୁ ଚୂର୍ଣ୍ଣ-ବିଚୂର୍ଣ୍ଣ କରି ଆମମାନଙ୍କ

ସତ୍ତାର ବିଲୋପ ଘଟାଇପାରେ । ବିଶାଳ ବିଶ୍ୱ ସମ୍ମୁଖରେ ଆମମାନଙ୍କର କ୍ଷୁଦ୍ର ଦେହଗୁଡ଼ିକ କୌଣସିମତେ ତିଷ୍ଠି ଅଛନ୍ତି, ମୁହୂର୍ତ୍ତି ମଧ୍ୟରେ ଏମାନେ ଭାଙ୍ଗିପଡ଼ି-ପାରନ୍ତି । ଆମେମାନେ ଜାଣୁ, କର୍ମକ୍ଷେତ୍ରରେ ଆମେମାନେ କେତେ ଶକ୍ତିହୀନ । ପ୍ରତିନିୟତ ହିଁ ଆମମାନଙ୍କର ଇଚ୍ଛା ପ୍ରତିହତ ହେଉଅଛି । କେତେ ଇଚ୍ଛା ଆମେମାନେ ପୂର୍ଣ୍ଣ କରିବାକୁ ଚାହୁଁ, କିନ୍ତୁ କେତୋଟି ଇଚ୍ଛା ଆମେମାନେ ପୂର୍ଣ୍ଣ କରିପାରୁ ? ଆମମାନଙ୍କର ବାସନା ଅନନ୍ତ । ଆମେମାନେ ସବୁକିଛି କାମନା କରିପାରୁ; ଅନ୍ୟ ବାସନା ତ ତୁଚ୍ଛ, ସୁଦୂର ନୀଳାକାଶର ଲୁବ୍ଧକ ନକ୍ଷତ୍ରକୁ ଯିବା, ଏହିପରି ବାସନା ମଧ୍ୟ ଆମେମାନେ ପୋଷଣ କରିପାରୁ । କିନ୍ତୁ କେତୋଟି ବାସନା ଆମେମାନେ ପୂରଣ କରିପାରୁ ? ଆମମାନଙ୍କର ଦେହ ଅପଟୁ, ବହିଃପ୍ରକୃତି ଇଚ୍ଛାର ପ୍ରତିକୂଳ, ଆମେମାନେ ଦୁର୍ବଳ । କିନ୍ତୁ ଏହା ଶେଷ ନୁହେଁ, ଆମମାନଙ୍କର ଆଉ ଗୋଟିଏ ଦିଗ ଅଛି । କ୍ଷୁଦ୍ର ଫୁଲଟି କିମ୍ବା ସୂକ୍ଷ୍ମ ବାଲିକଣାଟି ଯେପରି ଏକା ଧାରରେ ସସୀମ ଓ ଅସୀମର ଦ୍ୟୋତକ, ଆମମାନଙ୍କର ସ୍ୱରୂପ ମଧ୍ୟ ସେହିପରି । ଆମେମାନେ ସମୁଦ୍ରର ତରଙ୍ଗ ଭଳି । ଏକ ଦିଗରୁ ଦେଖିଲେ ତରଙ୍ଗଟି ସମୁଦ୍ର ଭିନ୍ନ ଆଉ କିଛି ନୁହେଁ, ପୁଣି ଅନ୍ୟ ଦିଗରୁ ବିଚାର କଲେ ତରଙ୍ଗ ଏବଂ ସମୁଦ୍ରର ପାର୍ଥକ୍ୟ ସ୍ପଷ୍ଟ । ତରଙ୍ଗର ଏପରି କୌଣସି ଅଂଶ ନାହିଁ, ଯାହାକୁ ଏହା ହିଁ ସମୁଦ୍ର—ଏପରି କୁହାଯାଏ । 'ସମୁଦ୍ର' ନାମଟି କେବଳ ତରଙ୍ଗ ସମ୍ବନ୍ଧରେ ନୁହେଁ, ସମୁଦ୍ରର ସମସ୍ତ ଅଂଶ ସମ୍ବନ୍ଧରେ ପ୍ରଯୋଜ୍ୟ; ତଥାପି ସମୁଦ୍ର ତରଙ୍ଗରୁ ପୃଥକ୍ । ସତ୍ତାରୂପକ ବିରାଟ ସମୁଦ୍ର ମଧ୍ୟରେ ଆମେମାନେ ଗୋଟିଏ ଗୋଟିଏ କ୍ଷୁଦ୍ର ତରଙ୍ଗ ଭଳି; କିନ୍ତୁ ଆମେମାନେ ଯେତେବେଳେ ଆମମାନଙ୍କର ଯଥାର୍ଥ ସ୍ୱରୂପ ଉପଲବ୍ଧି କରିବାକୁ ଯାଉ, ସେତେବେଳେ ଆମେମାନେ ବୁଝିପାରୁ, ଆମମାନଙ୍କର ସତ୍ତାକୁ ଧରିବା ସମ୍ଭବ ନୁହେଁ । କାରଣ ଆମମାନଙ୍କର ଯଥାର୍ଥ ସ୍ୱରୂପ ଅସୀମ ।

ଆମେମାନେ ଯେପରି ସ୍ୱପ୍ନରେ ବିଚରଣ କରୁଅଛୁ । ଯେତେ ସମୟ ମନ ସ୍ୱପ୍ନାବସ୍ଥାରେ ଥାଏ, ସେତେ ସମୟ କିଛି ଅସ୍ୱାଭାବିକ ମନେ ହୁଏ ନାହିଁ; କିନ୍ତୁ ଯେତେବେଳେ ସ୍ୱପ୍ନର ବିଷୟକୁ ବାସ୍ତବ ବୋଲି ଜାବୁଡ଼ି ଧରିବାକୁ ଚେଷ୍ଟା କରୁ, ସେତେବେଳେ ଏହା ଅଦୃଶ୍ୟ ହୁଏ । କାହିଁକି ?—ସ୍ୱପ୍ନ ମିଥ୍ୟା ବୋଲି ନୁହେଁ, ସ୍ୱପ୍ନର ସ୍ୱରୂପ ଆମମାନଙ୍କର ଯୁକ୍ତି, ବିଚାର ଓ ବୁଦ୍ଧିର ଅଗୋଚର ବୋଲି । ଜୀବନରେ ଅନୁଭୂତ ପ୍ରତ୍ୟେକଟି ବସ୍ତୁ ଏତେ ବିରାଟ ଯେ, ତାହାର ତୁଳନାରେ ଆମମାନଙ୍କର ବୁଦ୍ଧି ଅତି ତୁଚ୍ଛ । ବୁଦ୍ଧି ଚାହେଁ ନିଜର ଉଦ୍ଭାବିତ କେତେଗୁଡ଼ିଏ ନିୟମ ମଧ୍ୟରେ ବସ୍ତୁକୁ ରୁଦ୍ଧ କରି ରଖିବାକୁ, କିନ୍ତୁ ବସ୍ତୁ କଦାପି ହେଲେ ବୁଦ୍ଧିର ନିଗଡ଼ରେ ଆବଦ୍ଧ ହେବାକୁ ଚାହେଁ ନାହିଁ । ବସ୍ତୁକୁ ନିୟମ-ଜାଲରେ ଆବଦ୍ଧ କରିବା ଉଦ୍ଦେଶ୍ୟରେ ବୁଦ୍ଧିର ଏହି ପ୍ରଚେଷ୍ଟା ମାନବାତ୍ମା କ୍ଷେତ୍ରରେ ଆହୁରି ସହସ୍ର ଗୁଣରେ ବ୍ୟର୍ଥ ବୋଲି

ପ୍ରତୀତ ହୁଏ । ବସ୍ତୁତଃ ବିଶ୍ୱର ସମସ୍ତ ପଦାର୍ଥ ମଧ୍ୟରେ 'ଆମେ ନିଜେ' ସର୍ବାଧିକ ରହସ୍ୟମୟ । .

ସବୁକିଛୁ ବିସ୍ମୟକର ! ମନୁଷ୍ୟର ଆଖି ଆଡ଼କୁ ଚାହିଁ ! କେତେ ସହଜରେ ଏହା ନଷ୍ଟ ହୋଇଯାଇପାରେ । ଅଥଚ ତୁମର ଆଖି ଅଛି ବୋଲି ପ୍ରକାଣ୍ଡ ସୂର୍ଯ୍ୟଙ୍କର ଅସ୍ତିତ୍ୱ ଅଛି । ସେହି ରହସ୍ୟର କଥା ଭାବ ! କ୍ଷୁଦ୍ର ଅସହାୟ ଆଖି ଦୁଇଟି । ଗୋଟିଏ ତୀବ୍ର ଆଲୋକ କିମ୍ବା ଗୋଟିଏ କଣ୍ଟା ଆଖି ଦୁଇଟିକୁ ନଷ୍ଟ କରିଦେଇପାରେ । ତଥାପି ସର୍ବାପେକ୍ଷା ଶକ୍ତିଶାଳୀ ଧ୍ୱଂସକାରୀ ଯନ୍ତ୍ର, ପ୍ରଳୟଙ୍କର ପ୍ରାକୃତିକ ବିପର୍ଯ୍ୟୟ, ମହା-ବିସ୍ମୟକର ଚନ୍ଦ୍ର, ସୂର୍ଯ୍ୟ, ତାରକା, ପୃଥିବୀ ପ୍ରଭୃତିର ଅସ୍ତିତ୍ୱ ଏହି ଦୁଇଟି କ୍ଷୁଦ୍ର ଆଖି ଉପରେ ନିର୍ଭର କରେ ! ତୁମର ଆଖି ହିଁ ବିଶ୍ୱର ଅସ୍ତିତ୍ୱର ସାକ୍ଷୀ । ଆଖି କହେ, 'ଦେଖ, ବିରାଟ ବୈଚିତ୍ର୍ୟପୂର୍ଣ୍ଣ ପ୍ରକୃତି ତୁମ ସମ୍ମୁଖରେ ରହିଅଛି'; ଆମେମାନେ ଆଖିର ସାକ୍ଷ୍ୟକୁ ବିଶ୍ୱାସ କରି ପ୍ରକୃତିର ବିଚିତ୍ର ରୂପର ଅସ୍ତିତ୍ୱ ସ୍ୱୀକାର କରୁ । ଏହି ଭାବରେ କ୍ଷୁଦ୍ର କର୍ଣ୍ଣ, ନାସା, ଜିହ୍ୱା, ପ୍ରଭୃତି ଇନ୍ଦ୍ରିୟମାନଙ୍କ ସାହାଯ୍ୟରେ ଆମେ-ମାନେ ବିରାଟ ବିଶ୍ୱର ପରିଚୟ ଲାଭ କରୁ ।

କିନ୍ତୁ ବିଶ୍ୱସୃଷ୍ଟି ମଧ୍ୟରେ କିଏ କ୍ଷୁଦ୍ର, କିଏ ମହତ୍, କିଏ ଦୁର୍ବଳ, କିଏ ସବଳ, କିଏ ଉଚ୍ଚ, କିଏ ନୀଚ —ତାହା ନିଶ୍ଚୟ କରି କହିବାର ଉପାୟ ନାହିଁ; କାରଣ ଏହି ବିଶ୍ୱର ଯାବତୀୟ ପଦାର୍ଥର ପରସ୍ପର-ନିର୍ଭରଶୀଳତା ଏପରି ଅଦ୍ଭୁତ ଯେ, କ୍ଷୁଦ୍ରତମ ପରମାଣୁଟିର ସତ୍ତା ମଧ୍ୟ ସମଗ୍ର ଜଗତର ଅସ୍ତିତ୍ୱ ପକ୍ଷରେ ଅତ୍ୟାବଶ୍ୟକ । କେହି ଛୋଟ ନୁହନ୍ତି, କେହି ବଡ଼ ନୁହନ୍ତି । ସବୁକିଛୁ ଏକ ଅସୀମ ପରମ ସତ୍ୟ ସହିତ ବିଜଡ଼ିତ, ସବୁକିଛୁ ଅନନ୍ତ ସମୁଦ୍ରରେ ଭାସମାନ, ସବୁକିଛୁ ତତ୍ତ୍ୱତଃ ଅସୀମ । ସ୍ଥୂଳ ବୃକ୍ଷାଦି ଓ ସୂକ୍ଷ୍ମ ବାଲୁକାଦି ଯାହା ଦେଖାଯାଏ, ସୁଖ-ଦୁଃଖାଦି ଯାହା ଅନୁଭବ କରାଯାଏ—ସବୁକିଛୁ ବସ୍ତୁତଃ ଅସୀମ । ପ୍ରତ୍ୟେକ ଜୀବ, ପ୍ରତ୍ୟେକ ଚିନ୍ତା, ପ୍ରତ୍ୟେକ ପରିଛିନ୍ନ ସତ୍ତା ସ୍ୱରୂପତଃ ଅସୀମ । ଆମମାନଙ୍କର ସତ୍ତାର ରହସ୍ୟ ଏହି ଯେ, ଆମେ-ମାନେ ଅସୀମ ହୋଇ ମଧ୍ୟ ସସୀମ ଏବଂ ସସୀମ ହୋଇ ମଧ୍ୟ ଅସୀମ ।

ଏହା ସତ୍ୟ ହୋଇପାରେ, କିନ୍ତୁ ବର୍ତ୍ତମାନ ଅବସ୍ଥାରେ ଅସୀମର ଏହି ଉପଲବ୍ଧି ଆମମାନଙ୍କର ପ୍ରାୟ ଅଜ୍ଞାତ । ଆମେମାନେ ଯେ ଆମମାନଙ୍କର ଅସୀମତ୍ୱ ଭୁଲିଯାଇଛୁ, ତାହା ନୁହେଁ; କାରଣ ନିଜର ପ୍ରକୃତ ସ୍ୱରୂପ କେହି ହେଲେ ଭୁଲି-ପାରେ ନାହିଁ । କେହି କି କେବେ ନିଜର ଧ୍ୱଂସ କଳ୍ପନା କରିପାରେ ? କିଏ ଭାବି-ପାରେ, ସେ ମରିଯିବ ?— କେହି ହେଲେ ଏପରି ଚିନ୍ତା କରିପାରେ ନାହିଁ । ଅସୀମ ସହିତ ଆମମାନଙ୍କର ସମ୍ବନ୍ଧ-ବୋଧ ଅଜ୍ଞାତସାରରେ ଆମମାନଙ୍କ ମଧ୍ୟରେ କାର୍ଯ୍ୟ କରୁଥାଏ । ଏକଦିଗରୁ ଦେଖିବାକୁ ଗଲେ ଏହା କେବଳ ଆମମାନଙ୍କର ସ୍ୱରୂପ-ବିସ୍ମୃତି ଏବଂ ଆମମାନଙ୍କର ସମସ୍ତ ଦୁଃଖର ମୂଳ ।

ଦୈନନ୍ଦିନ ବ୍ୟାବହାରିକ ଜୀବନରେ ଦେଖାଯାଏ ଯେ, ଆମେମାନେ ସାମାନ୍ୟ

କାରଣରେ ବ୍ୟଥିତ ହେଉ, କ୍ଷୁଦ୍ର ସତ୍ତାର ଦାସତ୍ୱ ସ୍ୱୀକାର କରୁ । ଆମେମାନେ ମନେ କରୁ, ଆମେମାନେ ସସୀମ—କ୍ଷୁଦ୍ର ଜୀବ । ଏହି ଧାରଣାରୁ ଆମମାନଙ୍କର ଦୁଃଖର ଉତ୍ପତ୍ତି । ତଥାପି ଆମେମାନେ ଯେ ଅସୀମ, ଏହି ଧାରଣା ପୋଷଣ କରିବା ଆମ-ମାନଙ୍କ ପକ୍ଷରେ ଅତ୍ୟନ୍ତ କଠିନ । ଆମେମାନେ ଯେତେବେଳେ ଦୁଃଖ-ଦୁର୍ଦ୍ଦଶାରେ ପଡ଼ୁ, ଆମେମାନେ ଯେତେବେଳେ ତୁଚ୍ଛ ବିଷୟରେ ବିଚଳିତ ହେଉ, ସେତେବେଳେ ଆମମାନଙ୍କର ଏହି ବିଶ୍ୱାସ ଜାଗ୍ରତ କରିବା ଉଚିତ ଯେ, ଆମେମାନେ ଅସୀମ । ବସ୍ତୁତଃ ଆମେମାନେ ଅସୀମ । ଜ୍ଞାତସାରରେ ହେଉ କିମ୍ବା ଅଜ୍ଞାତସାରରେ ହେଉ, ଆମେମାନେ ତ ଅସୀମ ଅନନ୍ତର ସନ୍ଧାନରେ ଛୁଟିଅଛୁ; ଆମେମାନେ ସର୍ବଦା ଏପରି କିଛି ଖୋଜୁଅଛୁ, ଯାହା ମୁକ୍ତ ।

ଜଗତରେ କୌଣସି ସମୟରେ ଏପରି କୌଣସି ଜାତି ନ ଥିଲେ, ଯେଉଁ-ମାନଙ୍କର ଧର୍ମ ନ ଥିଲା ବା ଯେଉଁମାନେ କୌଣସି ନା କୌଣସି ପ୍ରକାର ଈଶ୍ୱର ଅଥବା ଦେବତାଙ୍କର ପୂଜା କରୁ ନ ଥିଲେ । ଈଶ୍ୱର ଅଛନ୍ତି କି ନାହିଁ, ଦେବତା-ମାନେ ଅଛନ୍ତି କି ନାହିଁ, ଏହିସବୁ ପ୍ରଶ୍ନର ପ୍ରୟୋଜନ ନାହିଁ । ଅସଲ ପ୍ରଶ୍ନ, ମନୁଷ୍ୟର ମନୋବୃତ୍ତି ବିଶ୍ଳେଷଣ କଲେ କେଉଁ ତଥ୍ୟ ଆବିଷ୍କୃତ ହୁଏ ? ସାରା ଜଗତର ଲୋକେ ଈଶ୍ୱରଙ୍କର ଅନୁସନ୍ଧାନ କରନ୍ତି କାହିଁକି ? ମନୁଷ୍ୟର କେତେ ବାଧା, କେତେ ବନ୍ଧନ ! ନିୟମର ଲୌହବନ୍ଧ ନିଷ୍ପେଷଣ ତାହାକୁ କୌଣସି ଆଡ଼କୁ ହଲ୍‌ଚଲ୍ ହେବାକୁ ଦିଏ ନାହିଁ । ସେ ଯାହା କିଛି କରିବାକୁ ଚାହେଁ, ସେଥିରେ ହିଁ ନିୟମର ବାଧା । ସର୍ବତ୍ର ହିଁ ନିୟମ । କିନ୍ତୁ ଏତେ ବାଧା ଏବଂ ନିଷ୍ପେଷଣ ସତ୍ତ୍ୱେ ମନୁଷ୍ୟର ଆତ୍ମା ତାହାର ସ୍ୱାଧୀନତା ବିସ୍ମୃତ ହୁଏ ନାହିଁ, ସେ ଖୋଜେ ମୁକ୍ତି । ଜଗତରେ ଯେତେ ଧର୍ମମତ ଅଛି, ସମସ୍ତଙ୍କର ଲକ୍ଷ୍ୟ—ମୁକ୍ତି । ମନୁଷ୍ୟ ଜାଣୁ ବା ନ ଜାଣୁ, ସ୍ପଷ୍ଟ ଭାଷାରେ ବୁଝାଇପାରୁ ବା ନ ପାରୁ, ମୁକ୍ତିର ଧାରଣା, ସ୍ୱାଧୀନତାର ଭାବ ତାହାର ସ୍ୱଭାବଗତ । ମନୁଷ୍ୟ ମଧ୍ୟରେ ଯେଉଁମାନେ ଅତି ସାଧାରଣ, ଯେଉଁମାନେ ଅଜ୍ଞ, ସେମାନେ ମଧ୍ୟ ଏପରି କିଛି ଖୋଜନ୍ତି, ଯାହା ପ୍ରକୃତିର ନିୟମ ଉପରେ କର୍ତ୍ତୃତ୍ୱ କରିପାରେ । କେହି ଦାନବକୁ ଖୋଜେ, କେହି ଭୂତ ଖୋଜେ, କେହି ବା ଦେବଦେବୀ ଖୋଜନ୍ତି । ଏହି ଦାନବ, ଭୂତ ବା ଦେବତା ନିକଟରେ ପ୍ରକୃତି ସର୍ବଶକ୍ତିମୟୀ ନୁହେଁ । ତାଙ୍କ ଦୃଷ୍ଟିରେ ପ୍ରକୃତିର ନିୟମ ତୁଚ୍ଛ, କାରଣ ସେ ପ୍ରକୃତିକୁ ଦମନ କରିପାରନ୍ତି । ମନୁଷ୍ୟ-ହୃଦୟର ଚିରନ୍ତନ ଆକାଙ୍କ୍ଷା : ଆହା, ଯଦି ଏପରି କାହାରିକୁ ପାଆନ୍ତି, ଯିଏ ନିୟମର ବନ୍ଧନ ଭାଙ୍ଗି ଦେଇପାରନ୍ତେ ! ଯିଏ ନିୟମ ଲଙ୍ଘନ କରିପାରନ୍ତେ ! ଆମେମାନେ ତ ସର୍ବଦା ତାଙ୍କରି ଅନୁସନ୍ଧାନ କରୁଅଛୁ । ଗୋଟିଏ ଧାବମାନ ଇଞ୍ଜିନ ରେଲପଥରେ ଅଗ୍ରସର ହେଉଅଛି ଏବଂ ତାହାର ଆକ୍ରମଣରୁ ଆତ୍ମରକ୍ଷା କରିବା ଉଦ୍ଦେଶ୍ୟରେ ଗୋଟିଏ କ୍ଷୁଦ୍ର କୀଟ ଘୁଞ୍ଚିଯାଉଛି । କିନ୍ତୁ ଆମେମାନେ କହୁ : ଇଞ୍ଜିନଟି ଯେତେ ପ୍ରକାଣ୍ଡ ହେଉ ନା କାହିଁକି, ତାହା ଜଡ଼ ପଦାର୍ଥ, ତାହା ଗୋଟିଏ ଯନ୍ତ୍ର ଛଡ଼ା ଆଉ କିଛି ନୁହେଁ; ତାହା

ଯେତେ ଶକ୍ତିଶାଳୀ ହେଉ ନା କାହିଁକି, ତାହାକୁ ନିୟମ ମାନି ଚାଲିବାକୁ ହୁଏ; ମନୁଷ୍ୟ ଯେଉଁ ଦିଗକୁ ଚଳାଇବାକୁ ଚାହେଁ, ସେହି ଦିଗରେ ତାହାକୁ ଯିବାକୁ ହୁଏ; ତାହା କଦାପି ହେଲେ ନିୟମକୁ ଅତିକ୍ରମ କରିପାରେ ନାହିଁ। କିନ୍ତୁ କୀଟଟି କ୍ଷୁଦ୍ର ହେଲେ ମଧ୍ୟ ନିୟମ ଲଙ୍ଘନ କରିବାକୁ ଚେଷ୍ଟା କରେ, ନିଜକୁ ରକ୍ଷା କରିବାକୁ ଚେଷ୍ଟା କରେ। ନିୟମକୁ ସମ୍ପୂର୍ଣ୍ଣରୂପରେ ପରାଭୂତ କରିପାରୁ ବା ନ ପାରୁ, ନିୟମ ବିରୋଧରେ ଛିଡ଼ା ହୋଇ ସେ ତାହାର ସ୍ୱାଧୀନତା ଘୋଷଣା କରେ। ଏହା ହିଁ ତାହା ମଧ୍ୟରେ ଭବିଷ୍ୟତର ଅସୀମତ୍ୱ ବା ଐଶୀ ସତ୍ତାର ଲକ୍ଷଣ।

ନିୟମ ବିରୋଧରେ ସ୍ୱାଧୀନ ଇଚ୍ଛାର ଏହି ଆତ୍ମପ୍ରତିଷ୍ଠା, ଆତ୍ମାର ଏହି ମୁକ୍ତି-ପ୍ରବଳତା ସର୍ବତ୍ର ହିଁ ପରିଲକ୍ଷିତ ହୁଏ। ପ୍ରତ୍ୟେକ ଧର୍ମରେ ଈଶ୍ୱର ବା କୌଣସି ଦେବତା ଆକାରରେ ଏହା ପ୍ରତିଫଳିତ ହୁଏ। କିନ୍ତୁ ଏହା ସେମାନଙ୍କ ପାଇଁ, ଯେଉଁ-ମାନେ ଦେବତାଙ୍କୁ କେବଳ ବାହାରେ ଦେଖନ୍ତି। ମନୁଷ୍ୟ ପ୍ରଥମେ ନିଜକୁ ନିତାନ୍ତ ତୁଚ୍ଛ ମନେ କରିଥିଲା; ତାହାର ଭୟ ହୋଇଥିଲା, ସେ ହୁଏତ କୌଣସି ଦିନ ମୁକ୍ତ ହୋଇପାରିବ ନାହିଁ। ଏଥିପାଇଁ ସେ ପ୍ରକୃତିର ବାହାରେ ଏପରି ଜଣଙ୍କର ଅନୁସନ୍ଧାନ କରୁଥିଲା, ଯିଏ ସ୍ୱଭାବତଃ ମୁକ୍ତ। ତାହାପରେ ତାହାର ମନେ ହେଲା, ବାହାରେ ଏହିପରି ଅସଂଖ୍ୟ ମୁକ୍ତ ସତ୍ତା ବା ଦେବତା ଅଛନ୍ତି। କ୍ରମେ ମନୁଷ୍ୟ ସମସ୍ତ ଦେବତାଙ୍କୁ ଏକ ଦେବାଦିଦେବ ପରମେଶ୍ୱରରେ ମିଳିତ କଲା। କିନ୍ତୁ ସେଥିରେ ମଧ୍ୟ ମନୁଷ୍ୟ ତୃପ୍ତ ହୋଇପାରିଲା ନାହିଁ। ସେ ଯେତେବେଳେ ଚରମ ସତ୍ୟ ଦିଗରେ ଆହୁରି ଅଗ୍ରସର ହେଲା, ସେତେବେଳେ ସେ ବୁଝିପାରିଲା ଯେ, ସେ ନିଜେ ଯାହା ହେଉ ନା କାହିଁକି, ଯେ ସକଳ ଦେବତାଙ୍କର ଦେବତା, ଯେ ସକଳ ପ୍ରଭୁଙ୍କର ପ୍ରଭୁ, ତାଙ୍କ ସହିତ ତାହାର ନିଜର କୌଣସି ସମ୍ବନ୍ଧ ଅଛି। ସେ ବଦ୍ଧ, ହୀନମତି ଏବଂ ଦୁର୍ବଳ ହେଲେ ମଧ୍ୟ ପରମେଶ୍ୱରଙ୍କ ସହିତ ସମ୍ପର୍କଯୁକ୍ତ। ଏହି ଭାବରେ ମନୁଷ୍ୟର ଦୃଷ୍ଟି ଖୋଲିଲା, ଚିନ୍ତାର ଉନ୍ମେଷ ହେଲା ଏବଂ ଜ୍ଞାନର ପ୍ରସାର ହେଲା। ମନୁଷ୍ୟ କ୍ରମଶଃ ସେହି ପରମେଶ୍ୱରଙ୍କର ନିକଟବର୍ତ୍ତୀ ହେବାକୁ ଲାଗିଲା। ଅବଶେଷରେ ସେ ବୁଝିଲା, ଏକ ସର୍ବଶକ୍ତିମାନ ମୁକ୍ତ ଆତ୍ମାଙ୍କୁ ଖୋଜିବାକୁ ଯାଇ ତାହାର ମାନସ-ପଟରେ ପରମେଶ୍ୱର ଓ ନାନା ଦେବତାଙ୍କର ଯେଉଁ ଦୃଶ୍ୟ ପ୍ରତିଭାତ ହୋଇଅଛି, ସେହି ଦୃଶ୍ୟ ତାହାର ନିଜ ସମ୍ବନ୍ଧରେ ନିଜ ଭାବର ପ୍ରତିଛବି ମାତ୍ର। ସତ୍ୟ ଆବିଷ୍କୃତ ହେଲା—ସେ ବୁଝିଲା, ପରମେଶ୍ୱର ନିଜର ଅନୁରୂପ କରି ମନୁଷ୍ୟକୁ ଗଢ଼ିଛନ୍ତି—ଏହା ହିଁ କେବଳ ସତ୍ୟ ନୁହେଁ; ମନୁଷ୍ୟ ନିଜର ଅନୁରୂପ କରି ପରମେଶ୍ୱରଙ୍କୁ ଗଢ଼ି-ଅଛି, ଏହା ମଧ୍ୟ ସତ୍ୟ। ଏହିପରି ମନୁଷ୍ୟ ସ୍ୱଭାବତଃ ମୁକ୍ତ—ଏହି ବୋଧ ଜାଗ୍ରତ ହେଲା। ସେହି ପରମେଶ୍ୱର ସଦା ଅନ୍ତରରେ ବିରାଜମାନ, ସେ ଆମମାନଙ୍କର ନିକଟତମ। ଏତେ କାଳ ଆମେମାନେ ତାଙ୍କୁ ବାହାରେ ଖୋଜୁଥିଲେ। ଅବଶେଷରେ ବୁଝିଲୁ—ସେ ଆମମାନଙ୍କର ଅନ୍ତରର ଅନ୍ତରରେ।

ଗଳ୍ପରେ ଅଛି, ଏକ ବ୍ୟକ୍ତି ତାହାର ନିଜର ହୃତ୍‌ସ୍ପନ୍ଦନର ଶବ୍ଦକୁ ଘରର ଦରଜାରେ ଆଘାତ ବୋଲି ଭାବିଥିଲି । ପ୍ରଥମେ ଥରେ ସେ ଦରଜା ଖୋଲି ଦେଖିଲା, ବାହାରେ କେହି ନାହାନ୍ତି । ଘରକୁ ଫେରିଆସି ସେ ପୁଣି ସେହି ଦରଜାରେ ଧକ୍କାର ଶବ୍ଦ ଶୁଣି ବିସ୍ମିତ ହେଲା । ଏଥର ମଧ୍ୟ ଦରଜା ଖୋଲି ବାହାରେ କାହାକୁ ହେଲେ ଦେଖିବାକୁ ପାଇଲା ନାହିଁ । ଅବଶେଷରେ ସେ ବୁଝିପାରିଲା ଯେ, ତାହା ତାହାର ନିଜର ହୃତ୍‌ସ୍ପନ୍ଦନର ଶବ୍ଦ । ମନୁଷ୍ୟର ଅବସ୍ଥା ଏହି ଲୋକଟି ଭଳି । ଏକ ଅନନ୍ତ ମୁକ୍ତ ସତ୍ତାର ସନ୍ଧାନ ପାଇଁ ବାହାରି ମନୁଷ୍ୟ ଯେତେବେଳେ ଗନ୍ତବ୍ୟ ସ୍ଥଳରେ ପହଞ୍ଚିଲା, ସେତେବେଳେ ତାହାର ବୁଝିବାକୁ ବାକି ରହିଲା ନାହିଁ ଯେ, ଏତେ ଦିନ ସେ ବହିର୍ଜଗତରେ ଯାହାଙ୍କୁ ଅନନ୍ତ ମୁକ୍ତ ସତ୍ତା ବୋଲି କଳ୍ପନା କରୁଥିଲା, ସେ ତା' ନିଜ ସ୍ୱରୂପର ହିଁ ବହିଃପ୍ରକାଶ—ସକଳ ଆତ୍ମାର ଆତ୍ମା । ସେ ନିଜେ ହିଁ ଏହି ସତ୍ୟସ୍ୱରୂପ ।

ଏହିପରି ଭାବରେ ମନୁଷ୍ୟ ଦିନେ ବୁଝିପାରେ, ତାହାର ସତ୍ତା ମଧ୍ୟରେ ଏକ ଅଦ୍ଭୁତ ଦ୍ୱୈତଭାବ ବିଦ୍ୟମାନ । ସେ ଏକାଧାରରେ ଅସୀମ ଓ ସସୀମ । ଯିଏ ଅସୀମ ସେ ମଧ୍ୟ ତାହାର ଆତ୍ମା । ଅସୀମ ଅନନ୍ତ ପରବ୍ରହ୍ମ ଯେପରି ବୁଦ୍ଧି-ଜାଲରେ ପଡ଼ି ସସୀମ ଜୀବକୁଳ ଭଳି ପ୍ରତିଭାତ ହେଉଅଛନ୍ତି । କିନ୍ତୁ ଏଥିରେ ବ୍ରହ୍ମଙ୍କର ସ୍ୱରୂପରେ କୌଣସି ବିକାର ଉପସ୍ଥିତ ହୋଇନାହିଁ, ସେ ଅବିକୃତ ହିଁ ରହିଅଛନ୍ତି ।

ଯିଏ ଆମମାନଙ୍କର ଆତ୍ମାର ଆତ୍ମା, ତାହାଙ୍କୁ ନିତ୍ୟ ମୁକ୍ତ ଆନନ୍ଦମୟ ଓ ନିର୍ବିକାର ପରବ୍ରହ୍ମ ବୋଲି ଜାଣିବା ହିଁ ପ୍ରକୃତ ଜ୍ଞାନ । ଏହି ଜ୍ଞାନ ଆମମାନଙ୍କର ସୁଦୃଢ଼ ଭିତ୍ତି, ଆମମାନଙ୍କର ଆଶ୍ରୟସ୍ଥଳ । ଏହା ମଧ୍ୟରେ ମୃତ୍ୟୁର ଚିର ଅବସାନ, ଦୁଃଖର ଚିରନିବୃତ୍ତି ଏବଂ ଅମୃତତ୍ୱର ଆବିର୍ଭାବ । ଯେ ବହୁ ମଧ୍ୟରେ ଏକ, ଯେ ପରିଣାମଶୀଳ ଜଗତ ମଧ୍ୟରେ ଏକ ଅପରିଣାମୀ ସତ୍ତା —ତାହାଙ୍କୁ ଯେ ନିଜର ଆତ୍ମା-ରୂପରେ ଉପଲବ୍ଧି କରନ୍ତି, କେବଳ ସେ ହିଁ ଶାଶ୍ୱତ ଶାନ୍ତିର ଅଧିକାରୀ, ଅନ୍ୟ କେହି ନୁହେଁ ।

ମନୁଷ୍ୟ ଯେତେବେଳେ ଦୁଃଖଦୁର୍ଦ୍ଦଶାର ଅନ୍ଧକାରରେ ପଡ଼େ, ସେତେବେଳେ ଏହି ଆତ୍ମା ସ୍ୱୀୟ ଜ୍ୟୋତିର ପ୍ରଭାବରେ ତାହାକୁ ଜାଗ୍ରତ କରେ; ମନୁଷ୍ୟ ଜାଗ୍ରତ ହୋଇ ବୁଝିପାରେ, ଯାହା ପ୍ରକୃତରେ ତାହାର ନିଜସ୍ୱ, ତାହା ସେ କଦାପି ହେଲେ ହରାଇପାରେ ନାହିଁ । ନା, ଯାହା ଆମମାନଙ୍କର ନିଜସ୍ୱ, ତାହା ଆମେମାନେ ହରାଇ ପାରୁନାହିଁ । କିଏ ତାହାର ସ୍ୱରୂପ ହରାଇପାରେ ? ଯଦି ମୁଁ ଭଲ ହୁଏ, ତାହା-ହେଲେ ମୋର ସତ୍ତା ହିଁ ପ୍ରଥମେ ସ୍ୱୀକୃତ ହୁଏ । ତାହାପରେ ସେହି ସତ୍ତାକୁ ହିଁ ଭଲ ଗୁଣରେ ରଞ୍ଜିତ କରାହୁଏ । ଯଦି ମୁଁ ମନ୍ଦ ହୁଏ, ତାହାହେଲେ ମଧ୍ୟ ମୋର ସତ୍ତା ପ୍ରଥମେ ସ୍ୱୀକୃତ ହୁଏ, ତାହାପରେ ସେହି ସତ୍ତା ହିଁ ଦୋଷଦ୍ୱାରା ରଞ୍ଜିତ ହୁଏ । ଆଦିରେ, ମଧ୍ୟରେ ଏବଂ ଅନ୍ତରେ—ସର୍ବଦା ଏକ ଅଦ୍ୱିତୀୟ ସତ୍ତା ବା 'ସତ୍' ବିଦ୍ୟମାନ ।

ସତ୍ତ୍ୱର ଧ୍ୱଂସ ନାହିଁ ।

ଅତଏବ ସମସ୍ତଙ୍କର ଆଶା ଅଛି । କେହି ହେଲେ ବିନଷ୍ଟ ହେବେ ନାହିଁ; କେହି ଚିରକାଳ ହୀନ ହୋଇ ରହିବେ ନାହିଁ । ଜୀବନ ଗୋଟିଏ କ୍ରୀଡ଼ାକ୍ଷେତ୍ର ଛଡ଼ା ଅନ୍ୟ କିଛି ନୁହେଁ, କ୍ରୀଡ଼ା ଯେତେ ସ୍ଥୂଳ ହେଉ ନା କାହିଁକି, ଆମେମାନେ ଯେତେ ବେଶୀ ଦୁଃଖ-କ୍ଳେଶ ଓ ଆଘାତ ପାଉଁ ନା କାହିଁକି—ସେଥିରେ ଆତ୍ମାର କୌଣସି ଅନିଷ୍ଟ ହୁଏ ନାହିଁ । ଆତ୍ମା ଅଚଳ ଓ ସନାତନ । ଆମେମାନେ ସେହି ନିତ୍ୟ ଆତ୍ମା ।

ବୈଦାନ୍ତିକ କହନ୍ତି, 'ମୋର ଭୟ ନାହିଁ, ସଂଶୟ ନାହିଁ, ମୃତ୍ୟୁ ନାହିଁ; ମୋର ପିତା ନାହିଁ, ମାତା ନାହିଁ; ମୋର କଦାପି ଜନ୍ମ ହୋଇ ନାହିଁ । କିଏ ମୋର ଶତ୍ରୁ ? ସବୁକିଛିରେ ମୁଁ ଅଛି । ମୁଁ ସଚ୍ଚିଦାନନ୍ଦ, ମୁଁ ବ୍ରହ୍ମ । କାମ, କ୍ରୋଧ, ଲୋଭ, ମାତ୍ସର୍ଯ୍ୟ, କୁଚିନ୍ତା ପ୍ରଭୃତି ମୋତେ ସ୍ପର୍ଶ କରିପାରେ ନାହିଁ; କାରଣ, ମୁଁ ସଚ୍ଚିଦାନନ୍ଦ, ମୁଁ ବ୍ରହ୍ମ, ମୁଁ ବ୍ରହ୍ମ ।'

ଏହି ଭାବନା ହିଁ ସକଳ ବ୍ୟାଧିର ମହୌଷଧି, ଏହା ହିଁ ମୃତ୍ୟୁହର । ଆମେମାନେ ଏହି ଜଗତରେ ଅଛୁ; ଆମମାନଙ୍କର ସ୍ୱରୂପ ସେହି ଜଗତକୁ ମାନି ନେବାକୁ ଚାହେଁ ନାହିଁ, ତାହାର ବିରୋଧରେ ବିଦ୍ରୋହ ଘୋଷଣା କରେ । ଆମ-ମାନଙ୍କୁ ବାରମ୍ବାର କହିବାକୁ ହୁଅ : ମୁଁ ସେହି, ମୁଁ ସେହି । ମୋର ଭୟ ନାହିଁ, ସଂଶୟ ନାହିଁ, ମୃତ୍ୟୁ ନାହିଁ । ମୁଁ ସ୍ତ୍ରୀ ନୁହେଁ, ପୁରୁଷ ନୁହେଁ, ମୋର ସମ୍ପ୍ରଦାୟ ନାହିଁ, ବର୍ଣ୍ଣ ମଧ୍ୟ ନାହିଁ । ମୋର କେଉଁ ମତ ଥାଇପାରେ ? ଏପରି କେଉଁ ସମ୍ପ୍ରଦାୟ ଅଛି, ମୁଁ ଯା'ର ଅନ୍ତର୍ଭୁକ୍ତ ହୋଇପାରେ ? କେଉଁ ସମ୍ପ୍ରଦାୟ ମୋତେ ଧରି ରଖିପାରିବ ? ମୁଁ ତ ସବୁ ସମ୍ପ୍ରଦାୟ ମଧ୍ୟରେ ବିଦ୍ୟମାନ । ଦେହ ଯେତେ ପ୍ରତିକୂଳ ଆଚରଣ କରୁ, ମନ ଯେତେ ବିଦ୍ରୋହୀ ହେଉ, ଯେତେବେଳେ ଘୋରତର ଗଭୀରତମ ଅନ୍ଧକାର, ତୀବ୍ର ବେଦନାମୟ ଉତ୍ପୀଡ଼ନ ଏବଂ ଅକୂଳ ନୈରାଶ୍ୟ ଆସି ତୁମକୁ ଆଚ୍ଛନ୍ନ କରିବ, ସେତିକିବେଳେ ଏହି ମନ୍ତ୍ର ଉଚ୍ଚାରଣ କରିବ, 'ମୁଁ ବ୍ରହ୍ମ, ମୁଁ ବ୍ରହ୍ମ'—ଥରେ ନୁହେଁ, ଦୁଇଥର ନୁହେଁ, ତିନି-ଥର ନୁହେଁ, ବାରମ୍ବାର ।

ବାରମ୍ବାର ମୁଁ ମୃତ୍ୟୁ କବଳରେ ପଡ଼ିଅଛି । କେତେଥର ଦିନ ପରେ ଦିନ ଅନାହାରରେ କଟିଛି, କେତେଥର ପାଦରେ ନିଦାରୁଣ କ୍ଷତ ଦେଖା ଦେଇଛି, ଚାଲିବାକୁ ଅକ୍ଷମ ହୋଇ କ୍ଳାନ୍ତ ଦେହରେ ବୃକ୍ଷତଳେ ପଡ଼ିରହିଛି, ମନେ ହୋଇଛି ଏହିଠାରେ ଜୀବନଲୀଳା ଶେଷ ହେବ । କଥା କହିପାରି ନାହିଁ, ଚିନ୍ତାଶକ୍ତି ସେତେ-ବେଳେ ଲୁପ୍ତପ୍ରାୟ । କିନ୍ତୁ ଅବଶେଷରେ ଏହି ମନ୍ତ୍ର ମନରେ ଜାଗିଉଠିଛି; ମୋର ଭୟ ନାହିଁ, ମୃତ୍ୟୁ ନାହିଁ; ମୋର କ୍ଷୁଧା ନାହିଁ, ତୃଷ୍ଣା ନାହିଁ । ମୁଁ ବ୍ରହ୍ମ, ମୁଁ ବ୍ରହ୍ମ । ବିଶ୍ୱ-ପ୍ରକୃତିର ସାଧ୍ୟ ନାହିଁ ଯେ, ମୋତେ ଧ୍ୱଂସ କରିବ । ପ୍ରକୃତି ମୋର ଦାସ । ହେ ପରମାତ୍ମନ୍, ହେ ପରମେଶ୍ୱର, ତୁମର ଶକ୍ତି ବିସ୍ତାର କର, ତୁମର ହୃତରାଜ୍ୟ ପୁନରଧିକାର କର । ଉଠ, ଚାଲ, ବସିରୁହ ନାହିଁ । ଏହି ମନ୍ତ୍ର ଭାବି ଭାବି ମୁଁ ନବ-

ଜୀବନ ଲଭ କରି ଜାଗି ଉଠିଅଛୁ ଏବଂ ଆଜି ଏଠାରେ ସଶରୀର ବର୍ତ୍ତମାନ ଅଛୁ । ସୁତରାଂ ଯେତେବେଳେ ଅନ୍ଧକାର ଆସିବ, ସେତେବେଳେ ନିଜର ସ୍ୱରୂପ ପ୍ରକାଶ କର, ଦେଖିବ—ସକଳ ବିରୁଦ୍ଧ ଶକ୍ତି ବିଲୀନ ହୋଇଯିବ । ବିରୁଦ୍ଧ ଶକ୍ତିଗୁଡ଼ିକ ତ ସ୍ୱପ୍ନ ମାତ୍ର । ଜୀବନ-ପଥର ବାଧାବିଘ୍ନଗୁଡ଼ିକ ପର୍ବତପ୍ରମାଣ, ଦୁର୍ଲଙ୍ଘ୍ୟ ଓ ବିଷାଦମୟ ବୋଲି ମନେ ହେଲେ ମଧ୍ୟ ଏଗୁଡ଼ିକ ମାୟା ଛଡ଼ା ଆଉ କିଛି ନୁହେଁ । ଭୟ କର ନାହିଁ, ଦେଖିବ ସେମାନେ ଦୂରକୁ ଚାଲି ଯାଇଛନ୍ତି । ନିଷ୍ପେଷଣ କର, ଦେଖିବ ସେଗୁଡ଼ିକ ଅଦୃଶ୍ୟ ହୋଇ ଯାଇଛନ୍ତି; ପଦଦଳିତ କର, ଦେଖିବ ସେମାନେ ମରି-ଯାଇଛନ୍ତି । ଭୀତ ହୁଅ ନାହିଁ । ବାରମ୍ବାର ବିଫଳ ହୋଇଅଛ ବୋଲି ନିରାଶ ହୁଅ ନାହିଁ । ସର୍ବଦା ଅଗ୍ରସର ହେଉଥାଅ, ବାରମ୍ବାର ତୁମର ଶକ୍ତି ପ୍ରକାଶ କରୁଥାଅ, ଆଲୋକ ନିଶ୍ଚୟ ଆସିବ । ଜଗତରେ ପ୍ରତ୍ୟେକଙ୍କ ନିକଟରେ ତୁମେ ସାହାଯ୍ୟପ୍ରାର୍ଥୀ ହୋଇପାର; କିନ୍ତୁ ସେଥିରେ କ'ଣ ଫଳ ହେବ ? କିଏ ତୁମକୁ ସାହାଯ୍ୟ କରିବ ? ମୃତ୍ୟୁର ହାତ କିଏ ଏଡ଼ାଇପାରିଛି ? କିଏ ତୁମକୁ ମୃତ୍ୟୁରୁ ଉଦ୍ଧାର କରିବ ? ତୁମର ଉଦ୍ଧାରସାଧନ ତୁମକୁ ହିଁ କରିବାକୁ ହେବ । ତୁମକୁ ସାହାଯ୍ୟ କରିବା ସାଧ୍ୟ ଅନ୍ୟ କାହାରି ନାହିଁ । ତୁମେ ନିଜେ ହିଁ ତୁମର ପରମ ଶତ୍ରୁ, ପୁଣି ତୁମେ ହିଁ ତୁମର ଶ୍ରେଷ୍ଠ ବନ୍ଧୁ । ଆତ୍ମାକୁ ଜାଣ; ଉଠ, ଜାଗ; ଭୀତ ହୁଅ ନାହିଁ । ଦୁଃଖ ଓ ଦୁର୍ବଳତା ମଧ୍ୟରେ ଆତ୍ମାକୁ ପ୍ରକାଶ କର—ପ୍ରଥମେ ଏହା ଯେତେ କ୍ଷୀଣ ଓ ଅନୁଭବର ଅତୀତ ବୋଲି ମନେ ହେଉ ନା କାହିଁକି ତୁମ ନିଜର ଏପରି ସାହସ ହେବ ଯେ, ତୁମେ ସିଂହ-ଗର୍ଜନରେ କହିଉଠିବ : ମୁଁ ଆତ୍ମା, ମୁଁ ବ୍ରହ୍ମ । ମୁଁ ପୁରୁଷ ନୁହେଁ, ସ୍ତ୍ରୀ ମଧ୍ୟ ନୁହେଁ; ଦେବତା ନୁହେଁ, ଦୈତ୍ୟ ମଧ୍ୟ ନୁହେଁ, କୌଣସି ପ୍ରାଣୀ ବା ବୃକ୍ଷାଦି ନୁହେଁ । ମୁଁ ଧନୀ ନୁହେଁ, ଦରିଦ୍ର ନୁହେଁ, ପଣ୍ଡିତ ନୁହେଁ, ମୂର୍ଖ ନୁହେଁ । ମୋର ସ୍ୱରୂପର ତୁଳନାରେ ଏହିସବୁ ଉପାଧି ଅତି ତୁଚ୍ଛ । ମୁଁ ପରମାତ୍ମା, ମୁଁ ବ୍ରହ୍ମ । ଏହି ଯେ ଦେଦୀପ୍ୟମାନ ଚନ୍ଦ୍ର-ସୂର୍ଯ୍ୟ ଗ୍ରହନକ୍ଷତ୍ର ଦେଖୁଅଛ, ସେମାନେ ମୋର ପ୍ରଭାରେ ଉଦ୍ଭାସିତ ହୋଇ ଆଲୋକ ବିସ୍ତାର କରୁଅଛନ୍ତି । ଅଗ୍ନିରୁ ଯେଉଁ ରୂପ, ତାହା ମୁଁ; ବିଶ୍ୱର ଯେଉଁ ଶକ୍ତି, ତାହା ମଧ୍ୟ ମୁଁ, କାରଣ ମୁଁ ହିଁ ପରମାତ୍ମା, ମୁଁ ହିଁ ବ୍ରହ୍ମ ।

ଯିଏ ମନେ କରେ, 'ମୁଁ କ୍ଷୁଦ୍ର', ସେ ଭ୍ରାନ୍ତ; କାରଣ ମୁଁ ହିଁ ତ ଏକମାତ୍ର ସତ୍ତା, ମୁଁ ସବୁକିଛି । ମୁଁ କହେ, 'ସୂର୍ଯ୍ୟ ଅଛି', ତେଣୁ ସୂର୍ଯ୍ୟ ଅଛି; ମୁଁ କହେ, 'ପୃଥିବୀ ଅଛି', ତେଣୁ ପୃଥିବୀ ଅଛି । ମୋ ଉପରେ ନିର୍ଭର ନ କରି ସେମାନେ କେହି ରହି-ପାରନ୍ତି ନାହିଁ, କାରଣ ମୁଁ ସଚ୍ଚିଦାନନ୍ଦ, ମୁଁ ବ୍ରହ୍ମ, ମୁଁ ଚିରସୁଖୀ, ଚିର-ପବିତ୍ର, ଚିରସୁନ୍ଦର । ବାହାରର ଏହି ସୂର୍ଯ୍ୟ ଯେପରି ମନୁଷ୍ୟର ଦୃଷ୍ଟିଶକ୍ତିର କାରଣ ହୋଇ ମଧ୍ୟ କାହାରି ଆଖିର ଦୋଷରେ ଦୂଷିତ ହୁଏ ନାହିଁ, ସେହିପରି ଜଗତର ଭଲମନ୍ଦ ମୋର ସ୍ୱରୂପକୁ ସ୍ପର୍ଶ କରେ ନାହିଁ । ସକଳ ଇନ୍ଦ୍ରିୟ ଏବଂ ସକଳ ବିଷୟ ମଧ୍ୟ ଦେଇ ମୁଁ କାର୍ଯ୍ୟ କରୁଛି, କିନ୍ତୁ କୌଣସି ଇନ୍ଦ୍ରିୟ ବା କୌଣସି ବସ୍ତୁର ଦୋଷ ମୋତେ

ସ୍ପର୍ଶ କରିପାରୁ ନାହିଁ । ମୁଁ କୌଣସି ନିୟମ ବା କର୍ମର ଅଧୀନ ନୁହେଁ । ମୁଁ କାର୍ଯ୍ୟାଧ୍ୟକ୍ଷ । ମୁଁ ଚିରଦିନ ଥିଲି, ଚିରଦିନ ରହିଛି ।

ଜଣେକ କବି କହିଅଛନ୍ତି ମୋର ପ୍ରକୃତ ସୁଖ ଜାଗତିକ ପଦାର୍ଥରେ ନାହିଁ; ପତି-ପତ୍ନୀ, ପୁତ୍ର-କନ୍ୟା ପ୍ରଭୃତି କିଛି ହେଲେ ମୋତେ ଆନନ୍ଦ ଦେଇପାରେ ନାହିଁ । ମୁଁ ଅନନ୍ତ ନୀଳାକାଶ ଭଳି । କେତେ ବିଚିତ୍ର ମେଘ ଆକାଶବକ୍ଷରେ କ୍ରୀଡ଼ା କରି ମୁହୂର୍ତ୍ତି ମଧ୍ୟରେ ଦୂରକୁ ଗ୍ଭଲିଯାଏ । ପୁଣି ସେହି ଏକା ନୀଳାକାଶ । ସୁଖଦୁଃଖ ଶୁଭାଶୁଭ ଆମ୍ଭାକୁ ଆବୃତ କରି ମୋତେ ମୁହୂର୍ତ୍ତିକ ପାଇଁ ଅଭିଭୂତ କରିପାରେ; କିନ୍ତୁ ସେମାନେ ସ୍ଥାୟୀ ନୁହନ୍ତି । ଅଳ୍ପକ୍ଷଣ ମଧ୍ୟରେ ଅଦୃଶ୍ୟ ହୋଇଯାଆନ୍ତି । ମୁଁ ସକଳ ଅବସ୍ଥାରେ ଅଛି । ମୁଁ ନିତ୍ୟ, ମୁଁ ଅପରିଣାମୀ, ମୁଁ ଚିରଭାସ୍ୱର । ଦୁଃଖ ଆସେ ଆସୁ, ମୁଁ ଜାଣେ ତାହା ସସୀମ; ଅତଏବ ତାହାର ବିନାଶ ଅବଶ୍ୟମ୍ଭାବୀ । ଅଶୁଭ ଆସେ ଆସୁ, ମୁଁ ଜାଣେ ତାହା ମଧ୍ୟ ବିନଷ୍ଟ ହେବ; କାରଣ ତାହା ମଧ୍ୟ ସସୀମ, କ୍ଷଣସ୍ଥାୟୀ । ଏକମାତ୍ର ମୁଁ ହିଁ ଅସୀମ, ମୋତେ କିଛି ହେଲେ ସ୍ପର୍ଶ କରିପାରେ ନାହିଁ । ମୁଁ ଚିରନ୍ତନ, ଅସୀମ, ଅବ୍ୟୟ ପରମାତ୍ମା ।

ଆସ, ଆମେମାନେ ଏହି ଜ୍ଞାନାମୃତ ପାନ କରିବା; ଏହା ହିଁ ଆମମାନଙ୍କୁ ଅମୃତତ୍ୱରେ ପହଞ୍ଚାଇ ଦେବ । ଏହା ହିଁ ଅକ୍ଷୟ ବ୍ରହ୍ମଲାଭର ପଥ । ମା ଭୈଃ । ଆମେମାନେ ପାପୀ, ଆମେମାନେ ସସୀମ, ଆମେମାନେ ମୃତ୍ୟୁର ଅଧୀନ—ଏକଥା ବିଶ୍ୱାସ କର ନାହିଁ । ଏହା ସତ୍ୟ ନୁହେଁ ।

'ଆତ୍ମତତ୍ତ୍ୱ ଶ୍ରବଣ କରିବ, ମନନ କରିବ, ନିଦିଧ୍ୟାସନ କରିବ ।' ହାତ ଯେତେବେଳେ କାର୍ଯ୍ୟ କରିବ, ମନ ଯେପରି ସେତେବେଳେ ଜପ କରୁଥାଏ,'ମୁଁ ବ୍ରହ୍ମ, ମୁଁ ବ୍ରହ୍ମ ।' ଯେତେ ଦିନ ନା ଏହି ସତ୍ୟ ତୁମର ଅସ୍ଥି-ମାଂସ ସହିତ ମିଶି ନ ଯାଇଛି, ଯେତେ ଦିନ ତୁମର ଅନ୍ତରରୁ ନିଜର କ୍ଷୁଦ୍ରତା, ଦୁର୍ବଳତା, ଦୁଃଖ ଏବଂ ଅମଙ୍ଗଳର ଭୟାବହ ସ୍ୱପ୍ନ ଚିରତରେ ତିରୋହିତ ନ ହୋଇଛି, ସେତେ ଦିନ ଜାଗରଣରେ ଓ ସ୍ୱପ୍ନରେ ଏହା ଚିନ୍ତା କର ଏବଂ ସେତିକିବେଳେ ପରମ ସତ୍ୟ ତୁମ ନିକଟରେ କ୍ଷଣକାଳ ପାଇଁ ମଧ୍ୟ ଆତ୍ମଗୋପନ କରି ରହିବ ନାହିଁ ।

## ଜ୍ଞାନଲାଭର ସୋପାନଶ୍ରେଣୀ

[ଆମେରିକାରେ ବେଦାନ୍ତ-ଶିକ୍ଷାର୍ଥୀମାନଙ୍କ ଉଦ୍ଦେଶ୍ୟରେ ବକ୍ତୃତା]

ଜ୍ଞାନମାର୍ଗର ସାଧକର ସର୍ବପ୍ରଥମ ଆବଶ୍ୟକ—ଶମ ଓ ଦମ । ଏହି ଦୁଇଟିର ବ୍ୟାଖ୍ୟା ଏକତ୍ର କରାଯାଇପାରେ । ଏମାନଙ୍କର ଅର୍ଥ ଇନ୍ଦ୍ରିୟଗୁଡ଼ିକୁ ବହିର୍ମୁଖୀ

ହେବାକୁ ନ ଦେଇ ସ୍ୱସ୍ୱ କେନ୍ଦ୍ରରେ ସଂସ୍ଥାପିତ କରିବା । ମୁଁ ପ୍ରଥମେ ତୁମମାନଙ୍କୁ କହିବି 'ଇନ୍ଦ୍ରିୟ' ଶବ୍ଦର ଅର୍ଥ କ'ଣ । ଧର, ଆଖିଗୁଡ଼ିକ ରହିଛି; ଏହି ଆଖିଗୁଡ଼ିକ କିନ୍ତୁ ଦର୍ଶନେନ୍ଦ୍ରିୟ ନୁହନ୍ତି, ଏମାନେ ଦର୍ଶନକ୍ରିୟାର ଯନ୍ତ୍ର ମାତ୍ର । ଯେତେବେଳେ ଦର୍ଶନେନ୍ଦ୍ରିୟ ନ ଥାଏ, ସେତେବେଳେ ଆଖି ଥିଲେ ମଧ୍ୟ ଆମେ ଦେଖିପାରୁ ନାହିଁ । ଦର୍ଶନେନ୍ଦ୍ରିୟ ରହିଛି, ଦର୍ଶନର ଯନ୍ତ୍ର ଆଖି ମଧ୍ୟ ରହିଅଛି, କିନ୍ତୁ ଯେତେକ୍ଷଣ ମନ ଏହି ଦୁଇଟି ସହିତ ସଂଯୁକ୍ତ ନ ହେବ, ସେତେକ୍ଷଣ ଦର୍ଶନକ୍ରିୟା ହେବ ନାହିଁ । ସୁତରାଂ ପ୍ରତ୍ୟେକ ପ୍ରତ୍ୟକ୍ଷ ବ୍ୟାପାରରେ ତିନୋଟି ବସ୍ତୁ ଆବଶ୍ୟକ—ପ୍ରଥମତଃ ବାହ୍ୟ କାରଣସମୂହ; ତାହାପରେ ଅନ୍ତରିନ୍ଦ୍ରିୟସମୂହ ଏବଂ ସର୍ବଶେଷରେ ମନ । ଏମାନଙ୍କ ମଧ୍ୟରୁ ଯେକୌଣସି ଗୋଟିଏ ନ ଥିଲେ କୌଣସି ପ୍ରକାର ପ୍ରତ୍ୟକ୍ଷ ଅନୁଭୂତ ହେବ ନାହିଁ । ସୁତରାଂ ଦେଖାଯାଉଅଛି, ମନ, ବାହ୍ୟ ଓ ଆଭ୍ୟନ୍ତର ଦୁଇଟି କାରଣର ସାହାଯ୍ୟରେ କାର୍ଯ୍ୟ କରେ । ଯେତେବେଳେ ମୁଁ କିଛି ଦେଖେ ମୋର ମନ ବାହାରକୁ ଚାଲିଯାଏ ଏବଂ ବାହ୍ୟ ବସ୍ତୁର ଆକାର ଧାରଣ କରେ । କିନ୍ତୁ ମନେକର, ମୁଁ ଆଖିବୁଜି ଭାବିବାକୁ ଆରମ୍ଭ କଲି; ମନ ସେତେବେଳେ ବାହାରକୁ ଯାଏ ନାହିଁ ସତ, କିନ୍ତୁ ଏହା ଭିତରେ ସକ୍ରିୟ ଥାଏ । ଉଭୟ କ୍ଷେତ୍ରରେ ଇନ୍ଦ୍ରିୟଗୁଡ଼ିକ ସକ୍ରିୟ ଥାଏ । ଯେତେବେଳେ ମୁଁ ତୁମମାନଙ୍କ ଆଡ଼କୁ ଚାହେଁ ଏବଂ ତୁମମାନଙ୍କ ସହିତ କଥା କହେ, ସେତେବେଳେ ଇନ୍ଦ୍ରିୟ ଓ ସେମାନଙ୍କର ଯନ୍ତ୍ରସମୂହ ଉଭୟେ କାର୍ଯ୍ୟରତ ଥାଆନ୍ତି । ଯେତେବେଳେ ମୁଁ ଆଖି ବୁଜି ଭାବିବାକୁ ଆରମ୍ଭ କରେ, ସେତେବେଳେ ଇନ୍ଦ୍ରିୟଗୁଡ଼ିକ ସକ୍ରିୟ ଥାଆନ୍ତି, କିନ୍ତୁ ସେମାନଙ୍କର ଯନ୍ତ୍ରଗୁଡ଼ିକ ସକ୍ରିୟ ନ ଥାନ୍ତି । ଏହି ଇନ୍ଦ୍ରିୟଗୁଡ଼ିକର କ୍ରିୟା ବ୍ୟତୀତ କୌଣସି ଚିନ୍ତା ବା ମନନ କ୍ରିୟା ହୁଏ ନାହିଁ; ତୁମେମାନେ ଲକ୍ଷ୍ୟ କରିବ, ତୁମେମାନେ କୌଣସି ପ୍ରତୀକର ସାହାଯ୍ୟ ଛଡ଼ା ଚିନ୍ତା କରିପାରିବ ନାହିଁ । ଅନ୍ଧ ଲୋକଙ୍କୁ ମଧ୍ୟ କୌଣସି ଗୋଟିଏ ଆକାର ମାଧ୍ୟମରେ ଚିନ୍ତା କରିବାକୁ ହୁଏ । ଦର୍ଶନେନ୍ଦ୍ରିୟ ଓ ଶ୍ରବଣେନ୍ଦ୍ରିୟ ସାଧାରଣତଃ ଅତ୍ୟନ୍ତ ସକ୍ରିୟ । ତୁମମାନଙ୍କୁ ଅବଶ୍ୟ ମନେ ରଖିବାକୁ ହେବ ଯେ, 'ଇନ୍ଦ୍ରିୟ' ଶବ୍ଦର ଅର୍ଥ ମସ୍ତିଷ୍କ-ସ୍ଥିତ ସ୍ନାୟୁକେନ୍ଦ୍ର । ଚକ୍ଷୁ ଓ କର୍ଣ୍ଣ ଦର୍ଶନ ଓ ଶ୍ରବଣର ଯନ୍ତ୍ର ମାତ୍ର; ଇନ୍ଦ୍ରିୟଗୁଡ଼ିକ ରହିଛନ୍ତି ଭିତରେ । ଇନ୍ଦ୍ରିୟଗୁଡ଼ିକ ଯଦି କୌଣସି କାରଣରୁ ନଷ୍ଟ ହୋଇଯାଆନ୍ତି, ତାହାହେଲେ ଚକ୍ଷୁକର୍ଣ୍ଣ ଥିବା ସତ୍ତ୍ୱେ ଆମେମାନେ ଦେଖିବାକୁ ବା ଶୁଣିବାକୁ ପାଇବା ନାହିଁ । ସୁତରାଂ ମନକୁ ସଂଯତ କରିବା ପାଇଁ ଆମମାନଙ୍କୁ ପ୍ରଥମେ ଏହି ଇନ୍ଦ୍ରିୟଗୁଡ଼ିକୁ ସଂଯତ କରିବାକୁ ହେବ । ବାହ୍ୟ ଓ ଅନ୍ତର ବିଷୟରେ ମନର ଗତି ରୋଧ କରିବା ଏବଂ ଇନ୍ଦ୍ରିୟଗୁଡ଼ିକ ସ୍ୱସ୍ୱ ସ୍ଥାନରେ ସ୍ଥାପନ କରିବା—ଏହା ହିଁ ହେଲା ଶମ ଓ ଦମ ଶବ୍ଦର ଅର୍ଥ । ମନ ବା ଅନ୍ତରେନ୍ଦ୍ରିୟର ସଂଯମ ହେଲା ଶମ ଏବଂ ଚକ୍ଷୁରାଦି ବହିରିନ୍ଦ୍ରିୟର ସଂଯମ ଦମ ।

ତାହାପରେ ଆବଶ୍ୟକ—ଉପରତି । ଇନ୍ଦ୍ରିୟର ବିଷୟଗୁଡ଼ିକ ସମ୍ବନ୍ଧରେ

ଚିନ୍ତା ନ କରିବାକୁ 'ଉପରତି' କୁହାଯାଏ । ଇନ୍ଦ୍ରିୟ-ବିଷୟର ଚିନ୍ତା କରିବାରେ ଆମମାନଙ୍କର ଅଧିକାଂଶ ସମୟ ବ୍ୟୟିତ ହୁଏ—ଯାହା ଦେଖିଅଛୁ, ଶୁଣିଅଛୁ, ଯାହା ଦେଖିବ ବା ଶୁଣିବ, ଯାହା ଖାଇଅଛୁ, ଖାଉଅଛୁ ବା ଖାଇବ, ଯେଉଁ ଯେଉଁ ସ୍ଥାନରେ ବାସ କରିଅଛୁ ବା କରିବ, ଇତ୍ୟାଦି ବିଷୟରେ ଆମମାନଙ୍କର ଚିନ୍ତା ଆବଦ୍ଧ । ଆମେମାନେ ପ୍ରାୟ ସବୁ ସମୟରେ ଏମାନଙ୍କ ସମ୍ବନ୍ଧରେ ଚିନ୍ତା କରୁ ଅଥବା କଥା କହୁ । କିନ୍ତୁ ଯେଉଁମାନେ ବେଦାନ୍ତୀ ହେବାକୁ ଇଚ୍ଛା କରନ୍ତି, ସେମାନଙ୍କୁ ଏହି ଅଭ୍ୟାସ ଅବଶ୍ୟ ପରିତ୍ୟାଗ କରିବାକୁ ହେବ ।

ପରବର୍ତ୍ତୀ ସାଧନ ହେଲା ତିତିକ୍ଷା । ଦାର୍ଶନିକ ଜୀବନର ଅତି ଦୁଃସାଧ୍ୟ ସାଧନ !—ଏହି ସାଧନଟି ସର୍ବାଧିକ ଦୁଷ୍କର । ଅନ୍ୟାୟର ପ୍ରତିରୋଧ ନ କରିବା ସହିଷ୍ଣୁତାର ଚରମ ଆଦର୍ଶ; ତିତିକ୍ଷା ଏହା ଅପେକ୍ଷା କୌଣସି ଅଂଶରେ ନ୍ୟୂନ ନୁହେଁ । ବିଷୟଟି ଟିକେ ପରିଷ୍କାର ଭାବରେ ବୁଝାଇବା ଦରକାର । ବାହ୍ୟତଃ ଅନ୍ୟାୟର ପ୍ରତିରୋଧ ନ କଲେ ମଧ୍ୟ ସେଥିପାଇଁ ଅନ୍ତରରେ ଦୁଃଖବୋଧ ହୋଇଥାଏ । ଆମେମାନେ ଅତ୍ୟନ୍ତ ବିଷଣ୍ଣ ବୋଧ କରିଥାଉ । କୌଣସି ବ୍ୟକ୍ତି ମୋ ପ୍ରତି ଅତ୍ୟନ୍ତ ରୂଢ଼ବାକ୍ୟ ପ୍ରୟୋଗ କଲା, ସେଥିପାଇଁ ବାହ୍ୟତଃ ମୁଁ ତାହାକୁ ଘୃଣା ନ କରିପାରେ, ତାହାର କଥାର ପ୍ରତ୍ୟୁତ୍ତର ନ ଦେଇପାରେ ଏବଂ ନିଜକୁ ସଂଯତ କରି ଆପାତତଃ କ୍ରୋଧ ପ୍ରକାଶ କରି ନ ପାରେ, ତଥାପି ମୋ ଅନ୍ତରରେ କ୍ରୋଧ ଓ ଘୃଣା ହୁଏତ ରହିବ ଏବଂ ମୁଁ ଉକ୍ତ ଲୋକଟି ପ୍ରତି ବିରୂପ ମନୋଭାବ ହୁଏତ ପୋଷଣ କରିବି । ଏହା କିନ୍ତୁ ଆଦର୍ଶ ଅପ୍ରତିରୋଧ ନୁହେଁ । ଏହି ଆଦର୍ଶାନୁସାରେ ମୋ ମନରେ କୌଣସି ଘୃଣା ଅଥବା କ୍ରୋଧର ଭାବ ରହିଥିବା ଉଚିତ ନୁହେଁ, ଏପରିକି ପ୍ରତିରୋଧର ଚିନ୍ତା ମଧ୍ୟ ନୁହେଁ; ମୋ ମନ ଏତେ ସ୍ଥିର ଓ ଶାନ୍ତ ଥିବ, ଯେପରିକି କିଛି ହେଲେ ଘଟି ନାହିଁ । ଯେତେବେଳେ ମୁଁ ସେହି ଅବସ୍ଥାରେ ଉପନୀତ ହୁଏ, ସେତେବେଳେ ଅପ୍ରତିରୋଧ-ଅବସ୍ଥା ପ୍ରାପ୍ତ ହୁଏ; ଏହା ପୂର୍ବରୁ ନୁହେଁ । ଦୁଃଖକୁ ପ୍ରତିରୋଧ କରିବାର ଅଥବା ଦୂର କରିବାର ଚିନ୍ତାମାତ୍ର ନ କରି, ମନ ମଧ୍ୟରେ କୌଣସିପ୍ରକାର ଦୁଃଖମୟ ଅନୁଭୂତି ଅଥବା ଅନୁଶୋଚନା ନ ରଖି ସର୍ବବିଧ ଦୁଃଖର ଯେ ସହନ—ତାହା ହିଁ ତିତିକ୍ଷା । ମନେକର, ଅଶୁଭର ପ୍ରତିରୋଧ କଲି ନାହିଁ, ଫଳରେ ଗୁରୁତର ଅନିଷ୍ଟ ହେଲା । ମୋର ଯଦି ତିତିକ୍ଷା ଥାଏ, ତାହାହେଲେ ଅଶୁଭ ପ୍ରତିରୋଧ ନ କଲି ବୋଲି ମୋର ଅନୁଶୋଚନା ବୋଧ କରିବା ମଧ୍ୟ ଉଚିତ ନୁହେଁ । ସେହି ଅବସ୍ଥାକୁ ଉନ୍ନୀତ ହେଲେ କୁହାଯାଏ, ମନ ତିତିକ୍ଷାରେ ପ୍ରତିଷ୍ଠିତ ହେଲା । ଭାରତବାସୀମାନେ ଏହି ତିତିକ୍ଷା ଅଭ୍ୟାସ କରିବା ପାଇଁ ଅସାଧାରଣ ସାଧନା କରିଥାଆନ୍ତି । ସେମାନେ କିଛି ଗ୍ରାହ୍ୟ ନ କରି ଅତ୍ୟୁଗ୍ର ଶୀତ-ଗ୍ରୀଷ୍ମ ସହ୍ୟ କରନ୍ତି, ସେମାନେ ତୁଷାର ମଧ୍ୟ ଗ୍ରାହ୍ୟ କରନ୍ତି ନାହିଁ, କାରଣ ଦେହ ସମ୍ବନ୍ଧରେ ସେମାନଙ୍କର କୌଣସି ଚିନ୍ତା ନ ଥାଏ । ଦେହର ଭାବନା କେବଳ ଦେହ କରିବ, ଏହା ଯେପରି ବାହାରର ଜିନିଷ ।

ଅତଃପର ଯେଉଁ ସାଧନର ପ୍ରୟୋଜନ, ତାହା 'ଶ୍ରଦ୍ଧା' । ଧର୍ମ ଓ ଈଶ୍ୱରଙ୍କ ପ୍ରତି ପ୍ରଗାଢ଼ ବିଶ୍ୱାସ ଥିବା ଦରକାର । ଯେପର୍ଯ୍ୟନ୍ତ ଏହି ବିଶ୍ୱାସ ନ ହୁଏ, ସେତେବେଳଯାଏ କେହି ଜ୍ଞାନୀ ହେବାର ଆଶା ପୋଷଣ କରିବା ଉଚିତ ନୁହେଁ । ଏକଦା ଜଣେ ମହାପୁରୁଷ ମୋତେ କହିଥିଲେ ଯେ, ଏହି ଜଗତରେ ଦୁଇକୋଟି ଲୋକଙ୍କ ମଧ୍ୟରେ ଜଣେ ହେଲେ କେହି ଈଶ୍ୱରଙ୍କୁ ବିଶ୍ୱାସ କରନ୍ତି ନାହିଁ । ଏହାର କାରଣ ପଚ୍ଚାରିଲେ ସେ କହିଥିଲେ, 'ମନେକର, ଏହି ଘରେ ଗୋଟିଏ ଚୋର ରହିଅଛି ଏବଂ ସେ ଜାଣିପାରିଲା ଯେ ପାଖ ଘରେ ରାଶୀକୃତ ସୁନା ଅଛି; ଘର ଦୁଇଟିର ମଝିରେ ଗୋଟିଏ ପତଳା କାନ୍ଥର ବ୍ୟବଧାନ ରହିଅଛି । ଆଚ୍ଛା, ସେହି ଚୋରଟିର କି ଅବସ୍ଥା ହେବ ?' ମୁଁ ଉତ୍ତର ଦେଲି, 'ଚୋରଟି ଆଦୌ ଶୋଇପାରିବ ନାହିଁ; ତାହାର ମସ୍ତିଷ୍କ ସକ୍ରିୟ ଭାବରେ କେବଳ ସେହି ସୁନା ହସ୍ତଗତ କରିବାର ଉପାୟ ଉଦ୍‌ଭାବନ କରୁଥିବ ।' ଉତ୍ତରରେ ସେ କହିଲେ, 'ତୁମେ କ'ଣ ବିଶ୍ୱାସ କର, କୌଣସି ମନୁଷ୍ୟ ଈଶ୍ୱର-ବିଶ୍ୱାସୀ ହୋଇ ସୁଦ୍ଧା ଈଶ୍ୱରଙ୍କୁ ଲାଭ କରିବା ପାଇଁ ପାଗଳ ହୋଇଯିବ ନାହିଁ ? ଯଦି କୌଣସି ଲୋକ ଆନ୍ତରିକ ଭାବରେ ବିଶ୍ୱାସ କରନ୍ତି ଯେ, ଏକ ଅସୀମ ଅନନ୍ତ ଆନନ୍ଦର ଖଣି ରହିଛି ଏବଂ ତାହା ଲାଭ କରାଯାଏ, ତାହାହେଲେ ତାହା ଲାଭ କରିବା ପାଇଁ ସେ କ'ଣ ପାଗଳ ହେବେ ନାହିଁ ?' ଈଶ୍ୱରଙ୍କଠାରେ ଦୃଢ଼ବିଶ୍ୱାସ ଏବଂ ତାଙ୍କୁ ଲାଭ କରିବା ପାଇଁ ଅନୁରୂପ ଆଗ୍ରହକୁ ହିଁ କହନ୍ତି 'ଶ୍ରଦ୍ଧା' ।

ତାହାପରେ ସମାଧାନ, ଅର୍ଥାତ୍ ମନକୁ ଈଶ୍ୱରଙ୍କ ଉପରେ ଏକାଗ୍ର କରିବା ପାଇଁ ନିୟତ ଅଭ୍ୟାସ । କିନ୍ତୁ ହେଲେ ଦିନକରେ ସମ୍ପନ୍ନ ହୁଏ ନାହିଁ । ଧର୍ମକୁ ଗୋଟିଏ ବଟିକା ଆକାରରେ ଗିଳିଦେଇ ହୁଏ ନାହିଁ । ଏଥିପାଇଁ ପ୍ରତିନିୟତ କଠୋର ଅନୁଶୀଳନ ଦରକାର । କେବଳ ଧୀର ଓ ନିୟମିତ ଅଭ୍ୟାସଦ୍ୱାରା ମନକୁ ଜୟ କରାଯାଏ ।

ତାହାପରେ 'ମୁମୁକ୍ଷୁତ୍ୱ'—ମୁକ୍ତିଲାଭର ତୀବ୍ର ଇଚ୍ଛା । ତୁମମାନଙ୍କ ମଧ୍ୟରେ ଯେଉଁମାନେ ଏଡ୍‌ଇନ୍ ଆର୍ନଲ୍‌ଡ଼ଙ୍କର 'Light of Asia' (ଏସିଆର ଆଲୋକ) ନାମକ ଗ୍ରନ୍ଥ ପଢ଼ିଅଛ, ବୁଦ୍ଧଙ୍କର ପ୍ରଥମ ଉପଦେଶର ଅନୁବାଦ ନିଶ୍ଚୟ ସେମାନଙ୍କର ମନେଥିବ । ବୁଦ୍ଧ କହିଛନ୍ତି :

'ତୁମେମାନେ କେବଳ ନିଜ ଦୋଷରୁ ଦୁଃଖଭୋଗ କରିଥାଅ; ଅନ୍ୟ କେହି ହେଲେ ତୁମମାନଙ୍କୁ ଦୁଃଖଭୋଗ କରିବାକୁ ବାଧ୍ୟ କରେ ନାହିଁ । ତୁମେ ଜୀବନ ଧାରଣ କର, ମୃତ୍ୟୁମୁଖରେ ପତିତ ହୁଅ; ଜୀବନ-ମୃତ୍ୟୁ-ଚକ୍ରରେ ବିଘୂର୍ଣ୍ଣିତ ହୋଇ ଦୁଃଖର ଚକ୍ରଶଲାକା, ଅଶ୍ରୁର ଚକ୍ର-ବେଷ୍ଟନୀ ଏବଂ ଅସାରତାର ଚକ୍ର-ନାଭିକୁ ଆଲିଙ୍ଗନ କର—ଏଥିପାଇଁ ଅନ୍ୟ କେହି ତୁମକୁ ବାଧ୍ୟ କରେ ନାହିଁ ।'

ଆମମାନଙ୍କର ଯାବତୀୟ ଦୁଃଖ ଆମେମାନେ ନିଜେ ନିଜେ ବାଛି ନେଇଛୁ । ଏହା ହିଁ ଆମମାନଙ୍କର ପ୍ରକୃତି । ଚୀନଦେଶରେ ଜଣେ ବୃଦ୍ଧ ଷାଠିଏ ବର୍ଷ କାରାରୁଦ୍ଧ

ଥିଲା; କୌଣସି ନୂତନ ସମ୍ରାଟଙ୍କର ରାଜ୍ୟାଭିଷେକ ଉପଲକ୍ଷରେ ତାହାକୁ ମୁକ୍ତ ଦିଆଯାଏ । କାରାଗାରରୁ ବାହାର ହୋଇ ସେ ଚିତ୍କାର କରି କହିଲା, 'ମୁଁ ଆଉ ବଞ୍ଚି-ପାରିବି ନାହିଁ ।' ତାହାକୁ ପୁଣି ସେହି ବର୍ତ୍ତିକାପୂର୍ଣ୍ଣ ରୁଦ୍ଧ କାରାଗୃହକୁ ଯିବାକୁ ହେବ । ସେ ସୂର୍ଯ୍ୟର ଆଲୋକ ସହ୍ୟ କରିପାରିଲା ନାହିଁ । ସେ ରାଜକର୍ମଚାରୀମାନଙ୍କୁ କହିଲା, 'ତୁମେମାନେ ମୋତେ ମାରିପକାଅ ଅଥବା କାରାଗାରକୁ ପଠାଇଦିଅ ।' ତାହାକୁ କାରାଗାରକୁ ପଠା ହେଲା । ସମସ୍ତଙ୍କର ଏହି ଅବସ୍ଥା । ଆମେମାନେ ଉଦ୍ଦାମ ଗତିରେ ସବୁପ୍ରକାର ଦୁଃଖ ପଛରେ ଧାଉଁ, ଦୁଃଖରୁ ମୁକ୍ତିଲାଭ କରିବାକୁ ଆମେମାନେ ଅନିଚ୍ଛୁକ । ପ୍ରତିଦିନ ଆମେମାନେ ସୁଖ ପଶ୍ଚାତ୍‌ରେ ଧାବିତ ହେଉ, ତାହାକୁ ପାଇବା ପୂର୍ବରୁ ହିଁ ଦେଖୁ, ତାହା ବିଲୀନ ହୋଇଯାଇଅଛି, ଅଙ୍ଗୁଳିର ଫାଙ୍କ ଦେଇ ଯେପରି ବୋହି ଯାଇଅଛି । ତଥାପି ଆମେମାନେ ଉନ୍ମତ୍ତଭାବରେ ସୁଖାନ୍ୱେଷଣରୁ ବିରତ ହେଉ ନାହିଁ, ବରଂ ଆଗେଇଚାଲୁ, ଏପରି ମୋହାନ୍ଧ ନିର୍ବୋଧ ଆମେମାନେ !

ଭାରତରେ ତେଲକଳରେ ବା ଘଣାରେ ବଳଦକୁ ବ୍ୟବହାର କରାହୁଏ । ବଳଦଗୁଡ଼ିକ ଘୂରି ଘୂରି ତୈଳବୀଜ ପେଷଣ କରନ୍ତି । ବଳଦଙ୍କ କାନ୍ଧରେ ଜୁଆଳି ଥାଏ । ଖଣ୍ଡେ କାଠ ଜୁଆଳିରୁ ଲମ୍ବିମାନ ଥାଏ ଏବଂ ଏଥି ସହିତ ଗୋଛାଏ ନଡ଼ା ବନ୍ଧା ଥାଏ । ବଳଦଙ୍କର ଆଖି ଦୁଇଟି ଏପରି ଭାବରେ ବାନ୍ଧି ଦିଆଯାଏ ଯେ ସେ କେବଳ ସମ୍ମୁଖକୁ ଚାହିଁପାରେ; ସୁତରାଂ ନଡ଼ା ଆଡ଼କୁ ସେ ମୁହଁ ବଢ଼ାଇବା ପାଇଁ ତାର ଗଳଦେଶକୁ ସମ୍ମୁଖକୁ ପ୍ରସାରିତ କରେ । ଏହିପରି କରିବାକୁ ଯାଇ ସେ କାଠ ଖଣ୍ଡିକୁ କିଛିଟା ଘୁଞ୍ଚାଇ ଦିଏ । ସେ ପୁଣି ଚେଷ୍ଟା କରେ, କିନ୍ତୁ ଫଳ ଏକା ହୁଏ । ଏହି ଭାବରେ ବାରମ୍ବାର ଚେଷ୍ଟା ଚାଲୁଥାଏ । ବଳଦ କଦାପି ନଡ଼ାକୁ ଧରିପାରେ ନାହିଁ; କିନ୍ତୁ ଏହାକୁ ପାଇବାର ଆଶାରେ ବାରମ୍ବାର ଘୂରୁଥାଏ ଏବଂ ଏହି ଭାବରେ ସେ ତୈଳବୀଜ ପେଷଣ କରୁଥାଏ । ତୁମେ ଓ ମୁଁ ପ୍ରକୃତିର ଦାସ ହୋଇ, ସମ୍ପଦର ଦାସରୂପରେ, ସ୍ତ୍ରୀ-ପୁତ୍ର ପରିଜନଙ୍କର ଦାସରୂପରେ ଜନ୍ମିଅଛୁ; ଏବଂ ଆମେମାନେ ଏହି ଭାବରେ ଗୋଟିଏ କଳ୍ପିତ ଅବାସ୍ତବ ତୃଣଗୁଚ୍ଛର ପଶ୍ଚାତ୍‌ରେ ଧାବିତ ହୋଇ ଅସଂଖ୍ୟ ଜୀବନ ଅତିକ୍ରମ କରିଅଛୁ, ଅଥଚ ଯାହା ଆମେମାନେ ଆକାଙ୍‌କ୍ଷା କରୁ, ତାହା ପାଉ ନାହିଁ । ଆମେମାନେ ସମସ୍ତେ ପ୍ରେମ କରିବା ପାଇଁ ଏବଂ ପ୍ରେମ ପାଇବା ପାଇଁ ଛୁଟି ଚାଲିଛୁ; ଆମେମାନେ ସମସ୍ତେ ସୁଖୀ ହେବା ପାଇଁ ଚାଲିଅଛୁ, କଦାପି ହେଲେ ଦୁଃଖର ସମ୍ମୁଖୀନ ହେବାକୁ ଚାହୁଁ ନାହିଁ; କିନ୍ତୁ ଯେତେ ବେଶୀ ଆମେମାନେ ସୁଖ ଦିଗରେ ଅଗ୍ରସର ହେଉ, ସୁଖ ସେତେ ବେଶୀ ଆମମାନଙ୍କ ନିକଟରୁ ଦୂରକୁ ଘୁଞ୍ଚିଯାଏ । ଏହି ଭାବରେ ଜଗତ ଚାଲିଛି, ସମାଜ ଚାଲିଛି । ଆମେମାନେ ଅଜ୍ଞାନାନ୍ଧ, ବିଷୟର ଦାସ; ଅଜ୍ଞାତସାରରେ ଆମମାନଙ୍କୁ ବିଷୟାସକ୍ତିର ମୂଲ୍ୟ ଦେବାକୁ ହେଉ-ଅଛି । ତୁମେମାନେ ନିଜ ନିଜର ଜୀବନ ପୁଙ୍ଖାନୁପୁଙ୍ଖରୂପରେ ବିଶ୍ଳେଷଣ କର, ଦେଖିବ ସେଥିରେ ସୁଖର ମାତ୍ରା କେତେ ଅଳ୍ପ । ଜଗତ-ପ୍ରପଞ୍ଚର ପଶ୍ଚାତ୍‌ରେ

ଧାବିତ ହୋଇ ବାସ୍ତବିକ ପକ୍ଷରେ କେତେ ଅଳ୍ପ ସୁଖ ତୁମେ ଲାଭ କରିଛ !

ସୋଲନ୍ ଓ କ୍ରୀସାସ୍ (Solon and Croesus) କଥା ତୁମର ମନେ ଅଛି ତ ? ରାଜା ସେହି ମହାନ୍ ଜ୍ଞାନୀ-ପୁରୁଷଙ୍କୁ କହିଲେ, 'ଏସିଆ-ମାଇନର୍ର ଖୁବ୍ ସୁଖର ସ୍ଥାନ ।' ସୋଲନ୍ ତାଙ୍କୁ ପ୍ରଶ୍ନ କଲେ, 'ସର୍ବାପେକ୍ଷା ସୁଖୀ କିଏ ? ଗୋଟିଏ ହେଲେ ତ ସୁଖୀ ଲୋକ ମୁଁ ଦେଖୁ ନାହିଁ ।' କ୍ରୀସାସ୍ କହିଲେ, 'ଏହା ଏକାବେଳକେ ବାଜେ କଥା ! ଜଗତରେ ମୁଁ ସର୍ବାପେକ୍ଷା ସୁଖୀ ।' ସୋଲନ୍ ସେତେବେଳେ କହିଲେ, 'ମହାଶୟ, ଆପଣ ଜୀବନର ଶେଷ ପର୍ଯ୍ୟନ୍ତ ଅପେକ୍ଷା କରନ୍ତୁ, ହଠାତ୍ କୌଣସି ସିଦ୍ଧାନ୍ତ କରିବେ ନାହିଁ ।' ଏହି କଥା କହି ସେ ଚାଲିଗଲେ । କାଳକ୍ରମେ ସେହି ନୃପତି ପାରସିକମାନଙ୍କଦ୍ୱାରା ପରାଜିତ ହେଲେ ଏବଂ ସେମାନେ ଜୀବନ୍ତ ଅବସ୍ଥାରେ ତାଙ୍କୁ ପୋଡ଼ି ଦେବାର ନିର୍ଦ୍ଦେଶ ଦେଲେ । ଚିତା ପ୍ରସ୍ତୁତ; କ୍ରୀସାସ୍ ଏହା ଦେଖିବା ମାତ୍ରକେ ଚିତ୍କାର କରି ଡାକିଲେ, 'ସୋଲନ୍ !' ସେମାନେ ପ୍ରଶ୍ନ କଲେ, 'ଆପଣ କାହା କଥା କହୁଅଛନ୍ତି ?' ଉତ୍ତରରେ ସେ ସୋଲନ୍ଙ୍କର କଥାଟି କହିଲେ । ପାରସ୍ୟ ସମ୍ରାଟ ସଦୟ ହେଲେ ଏବଂ ସେ କ୍ରୀସାସ୍ଙ୍କର ଜୀବନ ରକ୍ଷା କଲେ ।

ପ୍ରତ୍ୟେକଙ୍କର ଜୀବନ-କାହାଣୀ ଏହିପରି । ଆମମାନଙ୍କ ଉପରେ ପ୍ରକୃତିର ଏହିପରି ପ୍ରବଳ ପ୍ରଭାବ । ଏହା ବାରମ୍ବାର ପଦାଘାତ କରି ଆମମାନଙ୍କୁ ଦୂରକୁ ନିକ୍ଷେପ କରୁଅଛି, ତଥାପି ଆମେମାନେ ଅଦମ୍ୟ ଉତ୍ତେଜନାବଶରେ ଏହାକୁ ହିଁ ଅନୁସରଣ କରୁଅଛୁ । ନୈରାଶ୍ୟ ସତ୍ତ୍ୱେ ଆମେମାନେ ସର୍ବଦା ଅନ୍ତରରେ ଆଶା ପୋଷଣ କରୁଅଛୁ । ଏହି କୁହୁକିନୀ ଆଶା ଆମମାନଙ୍କୁ ପାଗଳ କରିପକାଏ; ଆମେମାନେ ସର୍ବଦା ସୁଖର ଆଶା କରୁଅଛୁ ।

ପ୍ରାଚୀନ ଭାରତରେ ଜଣେ ମହାନ୍ ନୃପତି ଥିଲେ । ତାଙ୍କୁ ଥରେ ଚାରିଗୋଟି ପ୍ରଶ୍ନ ପଚରାଗଲା; ଏମାନଙ୍କ ମଧ୍ୟରୁ ଗୋଟିଏ ପ୍ରଶ୍ନ ଥିଲା : 'ଜଗତ ମଧ୍ୟରେ ସର୍ବାପେକ୍ଷା ବିସ୍ମୟକର ବସ୍ତୁ କ'ଣ ?' ସେ ଉତ୍ତରରେ କହିଲେ, 'ଆଶା' । ସତ କଥା, ଏହା ହିଁ ସର୍ବାପେକ୍ଷା ବିସ୍ମୟଜନକ ବସ୍ତୁ । ଦିବାରାତ୍ର ଆମେମାନେ ଦେଖିବାକୁ ପାଉଁ, ଆମମାନଙ୍କର ଚାରିଦିଗରେ ମନୁଷ୍ୟମାନେ ମରୁଛନ୍ତି; ତଥାପି ଆମେମାନେ ମନେ କରୁ, ଆମେମାନେ ମରିବୁ ନାହିଁ । ଆମେମାନେ କଦାପି ମନେ କରୁ ନାହିଁ ଯେ, ଆମେମାନେ ମରିବୁ ଅଥବା ଦୁଃଖକଷ୍ଟ ପାଇବୁ । ପ୍ରତ୍ୟେକ ବ୍ୟକ୍ତି ମନେ କରନ୍ତି, ସେ ଜୀବନରେ ନିଶ୍ଚୟ ସାଫଲ୍ୟ-ଲାଭ କରିବେ—ସର୍ବପ୍ରକାର ନୈରାଶ୍ୟ, ବିପର୍ଯ୍ୟୟ ଓ ତର୍କଯୁକ୍ତି ଉପେକ୍ଷା କରି ମଧ୍ୟ ସେ ଅନ୍ତରରେ ଆଶା ପୋଷଣ କରନ୍ତି । ଏ ଜଗତରେ କେହି ହେଲେ ଯଥାର୍ଥ ସୁଖୀ ନୁହେଁ । ଧର, କୌଣସି ବ୍ୟକ୍ତି ଧନବାନ୍, ତାଙ୍କର ପ୍ରଚୁର ଖାଦ୍ୟଦ୍ରବ୍ୟ ରହିଛି । କିନ୍ତୁ ତାଙ୍କର ପରିପାକ-ଶକ୍ତିର ଗୋଳମାଳ ଥିଲେ ସେ ଖାଇପାରିବେ ନାହିଁ । ଆଉ ଜଣକର ଭଲ ପରିପାକ-ଶକ୍ତି ଅଛି ଏବଂ ସେ ସାମୁଦ୍ରିକ

ପକ୍ଷୀ 'କର୍‌ମୋରାଣ୍ଟ' ଭଳି ହଜମ କରିପାରେ, କିନ୍ତୁ ମୁହଁରେ ଦେବା ଭଳି କୌଣସି ଖାଦ୍ୟ ତାହାର ନାହିଁ । କେହି ପୁଣି ଧନୀ, କିନ୍ତୁ ନିଃସନ୍ତାନ । କେହି ଦରିଦ୍ର—କ୍ଷୁଧାରେ କାତର, କିନ୍ତୁ ତାହାର ପଲେ ଛୁଆ, ସେମାନଙ୍କୁ ନେଇ କ'ଣ ଯେ କରିବ, ସେ ବୁଝିପାରେ ନାହିଁ । ଏହିପରି ହୁଏ କାହିଁକି ? ସୁଖ ଓ ଦୁଃଖ ଏକ ମୁଦ୍ରାର ଏପାଖ ସେପାଖ । ଯିଏ ସୁଖକୁ ଗ୍ରହଣ କରେ, ତାହାକୁ ଦୁଃଖ ମଧ୍ୟ ଗ୍ରହଣ କରିବାକୁ ହୁଏ । ସମସ୍ତଙ୍କର ଏହିପରି ଭ୍ରାନ୍ତ ଧାରଣା ଅଛି ଯେ, ଆମେମାନେ ଦୁଃଖକୁ ବାଦ ଦେଇ ସୁଖ ଲାଭ କରିପାରୁ । ଏହି ଧାରଣା ଆମମାନଙ୍କୁ ଏପରି ଭାବରେ ଜାବୁଡ଼ି ଧରିଛି ଯେ, ଆମେମାନେ ନିଜ ନିଜର ଇନ୍ଦ୍ରିୟଗୁଡ଼ିକୁ ସଂଯତ କରିପାରୁ ନାହିଁ ।

ମୁଁ ଯେତେବେଳେ ବୋଷ୍ଟନ୍‌ରେ ଥିଲି, ଜଣେ ଯୁବକ ମୋ ନିକଟକୁ ଆସିଥିଲେ । ସେ ମୋତେ ଖଣ୍ଡେ କାଗଜ ଦେଲେ; ଏହା ଉପରେ ସେ ଗୋଟିଏ ନାମ ଓ ଠିକଣା ଲେଖି ରଖିଥିଲେ । ନିମ୍ନରେ ଲେଖାଥିଲା : 'ଯଦି ପାଇବାର ଉପାୟ ତୁମକୁ ଜଣାଥାଏ, ତେବେ ଜଗତର ଯାବତୀୟ ଐଶ୍ୱର୍ଯ୍ୟ ଓ ସୁଖ ତୁମର । ମୋ ନିକଟକୁ ଆସିଲେ କହିଦେବି, କିପରି ତାହା ଲାଭ କରାଯାଏ । ଏଥିପାଇଁ ପାଞ୍ଚ ଡଲାର ଦେବାକୁ ହେବ ।' ସେ ମୋତେ କାଗଜ ଖଣ୍ଡିକ ଦେଇ କହିଲେ, 'ଏ ସମ୍ବନ୍ଧରେ ଆପଣଙ୍କର ଧାରଣା କ'ଣ ?' ମୁଁ କହିଲି, 'ଏହାକୁ ଛାପିବା ପାଇଁ ତୁମେ ଅର୍ଥର ବ୍ୟବସ୍ଥା କରୁନାହଁ କାହିଁକି ? ଏହାକୁ ଛାପିବା ପାଇଁ ମଧ୍ୟ କ'ଣ ତୁମର ଯଥେଷ୍ଟ ଅର୍ଥ ନାହିଁ ?' ସେ ମୋ କଥା ବୁଝିପାରିଲେ ନାହିଁ । କୌଣସି ପ୍ରକାର କଷ୍ଟ ସ୍ୱୀକାର ନ କରି ଯେ ପ୍ରଚୁର ସୁଖ ଓ ଅର୍ଥ ଲାଭ କରିପାରିବେ, ଏପରି ଧାରଣା ସେ ପୋଷଣ କରୁଥିଲେ । ମନୁଷ୍ୟ ଦୁଇଟି ଚରମ ସୀମା ଆଡ଼କୁ ଛୁଟି ଚାଲିଛି; ଗୋଟିଏ ଚୂଡ଼ାନ୍ତ ଶୁଭବାଦ—ଯେଉଁଥିରେ ସବୁକିଛି ଶୁଭ ଓ ସୁନ୍ଦର ବୋଲି ମନେ ହୁଏ । ଅପରଟି ଚୂଡ଼ାନ୍ତ ଦୁଃଖବାଦ—ଯେଉଁଥିରେ ସବୁକିଛି ତାହା ନିକଟରେ ବିରୋଧୀ ବୋଲି ପ୍ରତୀତ ହୁଏ । ଅଧିକାଂଶ ଲୋକଙ୍କର ମସ୍ତିଷ୍କ ଅଳ୍ପ ବହୁତ ଅପରିଣତ । ଦଶଲକ୍ଷ ମଧ୍ୟରେ ଜଣଙ୍କର ମସ୍ତିଷ୍କ ସୁପରିଣତ ଦେଖାଯାଏ । ବାକି ଯେଉଁମାନେ, ସେମାନେ—ହୁଏତ ଖିଆଲି ଅଥବା ଉନ୍ମାଦ ।

ସ୍ୱଭାବତଃ ଆମେମାନେ ସବୁବିଷୟର ଚୂଡ଼ାନ୍ତ ସୀମା ଆଡ଼କୁ ଧାବିତ ହେଉଁ । ଯେତେବେଳେ ଆମେମାନେ ସୁସ୍ଥ ଥାଉଁ ଓ ଆମମାନଙ୍କର ବୟସ ଅଳ୍ପ, ସେତେବେଳେ ଆମେମାନେ ମନେକରୁ—ଜଗତର ସମସ୍ତ ଧନ ଆମମାନଙ୍କର କରାୟତ୍ତ ହେବ; କିନ୍ତୁ ପରେ ବୟସ ବଢ଼ିଲେ ସମାଜ ଯେତେବେଳେ ଆମମାନଙ୍କୁ ଫୁଟବଲ୍ ଭଳି ଚାରିଆଡ଼ରୁ ଆଘାତ କରି ଜର୍ଜରିତ କରେ, ସେତେବେଳେ ଗୋଟିଏ କୋଣରେ ବସି ନିରନ୍ତର ଅସ୍ଫୁଟ ଶବ୍ଦ ଉଚ୍ଚାରଣପୂର୍ବକ ଆମେମାନେ ଅନ୍ୟକୁ ନିରୁତ୍ସାହ କରିଦେଉ । ଅତି ଅଳ୍ପ ଲୋକ ଜାଣନ୍ତି ଯେ, ସୁଖ ସହିତ ଦୁଃଖ ଆସେ

ଏବଂ ଦୁଃଖ ସହିତ ସୁଖ ଆସେ । ଦୁଃଖ ଯେପରି ବିରକ୍ତିକର, ସୁଖ ମଧ୍ୟ ତାହା, ସୁଖ ଦୁଃଖର ଯମଜ ଭ୍ରାତା । ମନୁଷ୍ୟ ଦୁଃଖ ପଶ୍ଚାତ୍‌ରେ ଛୁଟିବ—ଏହା ତାହାର ମର୍ଯ୍ୟାଦାକୁ କ୍ଷୁଣ୍ଣ କରେ । ପୁଣି ସେ ସୁଖ ପଶ୍ଚାତ୍‌ରେ ଧାବିତ ହେବ—ଏହା ମଧ୍ୟ ସମଭାବରେ ଅସମ୍ମାନଜନକ । ଯେଉଁମାନଙ୍କର ବିଚାରବୁଦ୍ଧି ସାମ୍ୟ ଭାବରେ ସ୍ଥିତ, ସେମାନେ ଉଭୟକୁ ପରିତ୍ୟାଗ କରିବେ । ମନୁଷ୍ୟ ଯେପରିକି ଅନ୍ୟଦ୍ୱାରା ଯନ୍ତ୍ରବତ୍ ଚାଳିତ ନ ହୁଏ, ସେହି ଚେଷ୍ଟା କରିବ ନାହିଁ କାହିଁକି ? ମନେକର ଆମମାନଙ୍କୁ ଚାବୁକମାରି ହେଲା; ଯେତେବେଳେ କାନ୍ଦିବାକୁ ଆରମ୍ଭ କଲୁ, ପ୍ରକୃତି ଆମମାନଙ୍କୁ ଗୋଟିଏ ଡଲାର ଉପହାର ଦେଲା । ପୁଣି ଚାବୁକ ଖାଇଲୁ, ପୁଣି କାନ୍ଦିବାକୁ ଲାଗିଲୁ—ପ୍ରକୃତି ସେତେବେଳେ ଆମମାନଙ୍କୁ ଖଣ୍ଡେ ପିଠା ଦେଲା; ସଙ୍ଗେ ସଙ୍ଗେ ପୁଣି ଆମେମାନେ ହସିବାକୁ ଲାଗିଲୁ ।

ଜ୍ଞାନର ସାଧକ ଚାହାଁନ୍ତି ମୁକ୍ତି । ସେ ଦେଖନ୍ତି, ଇନ୍ଦ୍ରିୟଗ୍ରାହ୍ୟ ବିଷୟଗୁଡ଼ିକ ସବୁ ଅସାର ଏବଂ ସୁଖଦୁଃଖର ଅନ୍ତ ନାହିଁ । ଜଗତରେ କେତେ ଧନୀ ବ୍ୟକ୍ତି କେତେ ନୂତନ ନୂତନ ସୁଖଲାଭ କରିବାକୁ ଚାହାଁନ୍ତି ! ସବୁ ସୁଖ ପୁରାତନ ହୋଇଯାଇଅଛି; ବର୍ତ୍ତମାନ ସେମାନେ ମୁହୂର୍ତ୍ତିକର ସ୍ନାୟବିକ ଉତ୍ତେଜନା ପାଇଁ ନୂତନ ସୁଖ ଚାହାଁନ୍ତି । ଦେଖିପାରୁନାହଁ—ପ୍ରତିଦିନ ସେମାନେ କେତେ ପ୍ରକାର ହାସ୍ୟାସ୍ପଦ ବସ୍ତୁ ଆବିଷ୍କାର କରୁଅଛନ୍ତି ? ତାହାପରେ ଲକ୍ଷ୍ୟ କରିଛ, ଏହାର କିପରି ପ୍ରତିକ୍ରିୟା ଆସେ ? ଅଧିକାଂଶ ଲୋକ ମେଣ୍ଢାପଲ ଭଳି । ଦଳର ପ୍ରଥମଟି ଗର୍ତ୍ତମାରେ ପଡ଼ିଲେ ବାକି ସବୁଗୁଡ଼ିକ ତାହାକୁ ଅନୁସରଣ କରି ବିପନ୍ନ ହୁଅନ୍ତି । ଠିକ୍ ଏହି ଭାବରେ ସମାଜର ଜଣେ ନେତୃସ୍ଥାନୀୟ ବ୍ୟକ୍ତି ଯାହା କରେ, ଅନ୍ୟ ସମସ୍ତେ ନିଜ ନିଜର କାର୍ଯ୍ୟର ପରିଣାମ ନ ଭାବି ତାହା କରନ୍ତି । ଯେତେବେଳେ କୌଣସି ବ୍ୟକ୍ତି ପାର୍ଥିବ ବସ୍ତୁର ଅସାରତା ଉପଲବ୍ଧି କରିବାକୁ ଆରମ୍ଭ କରନ୍ତି, ସେ ଅନୁଭବ କରନ୍ତି, ଏହି ଭାବରେ ତାଙ୍କ ପକ୍ଷରେ ପ୍ରକୃତିର କ୍ରୀଡ଼ନକ ହେବା ଅଥବା ପ୍ରକୃତିଦ୍ୱାରା ପରିଚାଳିତ ହେବା ଉଚିତ ନୁହେଁ; ଏହା ଦାସତ୍ୱ । କୌଣସି ବ୍ୟକ୍ତିକୁ କେତୋଟି ମଧୁର କଥା କହିଲେ ସେ ତୃପ୍ତ ହୁଏ; କିନ୍ତୁ କେତୋଟି କର୍କଶ କଥା ଶୁଣିଲେ ସେ କାନ୍ଦୁଥାଏ । ସେ ମୁଠାଏ ଅନ୍ନ, ଟିକିଏ ଶ୍ୱାସପ୍ରଶ୍ୱାସ, ପୋଷାକ-ପରିଚ୍ଛଦ, ଦେଶପ୍ରେମ, ଦେଶ, ନାମ ଓ ଯଶର ଦାସ । ଏହି ଭାବରେ ସେ ଦାସତ୍ୱ ମଧ୍ୟରେ ବାସ କରେ ଏବଂ ଦାସତ୍ୱ ହେତୁ ତାହାର ପ୍ରକୃତ ସ୍ୱରୂପ ଆବୃତ ହୋଇଯାଏ । ତୁମେ ଯାହାକୁ ମନୁଷ୍ୟ କହ, ସେ ଗୋଟିଏ କ୍ରୀତଦାସ । ଏହିସବୁ ଦାସତ୍ୱ ମର୍ମେ ମର୍ମେ ଅନୁଭବ କଲେ ଯାଇ ମୁକ୍ତ ହେବା ପାଇଁ ଇଚ୍ଛା ଜାଗେ, ମୁକ୍ତିର ଗୋଟିଏ ପ୍ରବଳ ବାସନା ଆସେ । ଖଣ୍ଡେ ଜ୍ୱଳନ୍ତ କୋଇଲା ଜଣଙ୍କର ମୁଣ୍ଡରେ ରଖିଦେଲେ ଏହାକୁ ଦୂରକୁ ଫିଙ୍ଗିଦେବା ପାଇଁ ସେ କିପରି ଚେଷ୍ଟା କରେ ! ଯେଉଁ ବ୍ୟକ୍ତି ପ୍ରକୃତରେ ବୁଝିପାରେ ଯେ, ସେ ପ୍ରକୃତିର କ୍ରୀତଦାସ—ତାହାର ମୁକ୍ତିର ସଂଗ୍ରାମ ମଧ୍ୟ ଏହିପରି ପ୍ରବଳ ହେବ ।

ଆମେମାନେ ବର୍ତ୍ତମାନ ଦେଖିଲୁ—ମୁମୁକ୍ଷୁତ୍ୱ ଅର୍ଥାତ୍ ମୁକ୍ତିର ଇଚ୍ଛା କଅଣ । ସାଧନାର ପରବର୍ତ୍ତୀ ସୋପାନଟି ମଧ୍ୟ ଅତି କଠିନ । ଏହା ହେଉଛି—ନିତ୍ୟାନିତ୍ୟ-ବିବେକ ଅର୍ଥାତ୍ ସତ୍ୟ ଓ ଅସତ୍ୟ, ନିତ୍ୟ ଓ ଅନିତ୍ୟର ବିଚାର । କେବଳ ଈଶ୍ୱର ହିଁ ନିତ୍ୟ ଏବଂ ଅନ୍ୟ ସବୁକିଛି ଅନିତ୍ୟ । ସବୁକିଛିର ମୃତ୍ୟୁ ଅଛି—ଦେବଦୂତ, ମନୁଷ୍ୟ, ଜୀବଜନ୍ତୁ ସବୁ ମରନ୍ତି । ପୃଥିବୀ ସୂର୍ଯ୍ୟ ଚନ୍ଦ୍ର ତାରକା ସବୁ ଧ୍ୱଂସ ପାଇଯାଏ । ପ୍ରତ୍ୟେକ ବସ୍ତୁ ପ୍ରତି ମୁହୂର୍ତ୍ତରେ ପରିବର୍ତ୍ତିତ ହେଉଅଛି । ବର୍ତ୍ତମାନର ପର୍ବତଗୁଡ଼ିକ ଅତୀତରେ ମହାସାଗର ଥିଲ; ଆଗାମୀ କାଲି ସେମାନେ ମହାସାଗରରେ ପରିଣତ ହେବେ । ପ୍ରତ୍ୟେକ ବସ୍ତୁ ପ୍ରବାହାକାରରେ ଚାଲୁଅଛି । ସମଗ୍ର ବିଶ୍ୱ ପରିବର୍ତ୍ତନଶୀଳ ଗୋଟିଏ ଜଡ଼-ସମଷ୍ଟି । କିନ୍ତୁ ଏକ ଅପରିଣାମୀ ବସ୍ତୁ ଅଛନ୍ତି, ସେ ହେଲେ ଈଶ୍ୱର । ଆମେମାନେ ଯେତେ ଈଶ୍ୱରଙ୍କର ନିକଟବର୍ତ୍ତୀ ହେବୁ ପରିବର୍ତ୍ତନ ଆମମାନଙ୍କର ସେତେ କମ୍ ହେବ, ପ୍ରକୃତି ସେତେ କମ୍ ଆମମାନଙ୍କ ଉପରେ କ୍ରିୟା କରିବ । ଆମେମାନେ ଯେତେବେଳେ ତାଙ୍କର ସାନ୍ନିଧ୍ୟ ଲାଭ କରିବୁ, ତାଙ୍କ ସହିତ ଏକତ୍ୱ ଅନୁଭବ କରିବୁ, ସେତିକିବେଳେ ହିଁ ଆମେମାନେ ପ୍ରକୃତିକୁ ଜୟ କରିବୁ, ଜଗତ୍-ପ୍ରପଞ୍ଚ ଉପରେ ପ୍ରଭୁତ୍ୱ ଲାଭ କରିବୁ । ଆମ ଉପରେ ସେମାନଙ୍କର କୌଣସି ପ୍ରଭାବ ରହିବ ନାହିଁ ।

ଦେଖିବାକୁ ପାଉଛ, ଯଦି ପ୍ରକୃତରେ ଆମେମାନେ ଉପରୋକ୍ତ ଶମଦମାଦି ସାଧନରେ ପ୍ରତିଷ୍ଠିତ ହେଉ, ତାହାହେଲେ ଆମମାନଙ୍କର ଅନ୍ୟ କିଛିର ପ୍ରୟୋଜନ ହେବ ନାହିଁ । ସମସ୍ତ ଜ୍ଞାନ ଆମମାନଙ୍କ ମଧ୍ୟରେ ରହିଅଛି । ଆତ୍ମା ମଧ୍ୟରେ ପୂର୍ଣ୍ଣତା ପୂର୍ବରୁ ରହିଅଛି; କିନ୍ତୁ ଏହି ପୂର୍ଣ୍ଣତା ପ୍ରକୃତିଦ୍ୱାରା ଆବୃତ । ପ୍ରକୃତି ନିଜେ ଗୋଟିଏ ଗୋଟିଏ ସ୍ତରରେ ବିଭକ୍ତ ହୋଇ ଆତ୍ମାର ଏହି ଶୁଦ୍ଧରୂପକୁ ଆବୃତ କରୁଅଛି । ବର୍ତ୍ତମାନ କ'ଣ କରିବାକୁ ହେବ ? ପ୍ରକୃତପକ୍ଷରେ ଆମେମାନେ ଆଦୌ ଆତ୍ମାର ଉତ୍କର୍ଷ ସାଧନ କରୁନାହିଁ । କୌଣସି ବସ୍ତୁ କଅଣ ପୂର୍ଣ୍ଣ ବସ୍ତୁର ଉତ୍କର୍ଷ ସାଧନ କରି-ପାରେ ? ଆମେମାନେ କେବଳ ଆବରଣଟିକୁ ଘୁଞ୍ଚାଇ ନେଉ । ସେତେବେଳେ ଆତ୍ମା ନିତ୍ୟ-ଶୁଦ୍ଧ-ବୁଦ୍ଧ-ମୁକ୍ତ-ସ୍ୱରୂପରେ ପ୍ରକାଶିତ ହୁଅନ୍ତି ।

ଏବେ ପ୍ରଶ୍ନ ହେଉଛି : ଏହିସବୁ ସାଧନାର ପ୍ରୟୋଜନ କଅଣ ? କାରଣ, ଆଧ୍ୟାତ୍ମିକତା କର୍ଣ୍ଣ ବା ଚକ୍ଷୁ ବା ମସ୍ତିଷ୍କଦ୍ୱାରା ଲାଭ କରାଯାଏ ନାହିଁ; ଶାସ୍ତ୍ରପାଠଦ୍ୱାରା ମଧ୍ୟ ଆଧ୍ୟାତ୍ମିକତା ଲାଭ କରାଯାଏ ନାହିଁ । ଜଗତରେ ଯେତେ ଗ୍ରନ୍ଥ ଅଛି, ସବୁ ଆମେ-ମାନେ ପଢ଼ି ଶେଷ କରିଦେଇପାରୁ ତଥାପି ଧର୍ମ ବା ଈଶ୍ୱରଙ୍କ ବିଷୟରେ ଆମେ କିଛି ଜାଣିପାରିବା ନାହିଁ । ସମଗ୍ର ଜୀବନ ଧରି ଆମେମାନେ ଧର୍ମକଥା କହିପାରୁ, ସେଥିରେ ମଧ୍ୟ ଆମମାନଙ୍କର ଆଧ୍ୟାତ୍ମିକ ଉନ୍ନତି ହୋଇ ନ ପାରେ । ଆମେମାନେ ଶ୍ରେଷ୍ଠ ମନୀଷୀ ହୋଇପାରୁ, ତଥାପି ଈଶ୍ୱରଙ୍କ ନିକଟରେ ପହଞ୍ଚିପାରିବୁ ନାହିଁ । ପକ୍ଷାନ୍ତରେ କେବଳ ବୁଦ୍ଧିବୃତ୍ତିର ଅନୁଶୀଳନ ଫଳରେ କିପରି ଅଧ୍ୟାତ୍ମ-ବିମୁଖ ଅଧାର୍ମିକ ସମାଜ

ଗଢ଼ି ଉଠିଛୁ, ତାହା କଅଣ ତୁମେମାନେ ଦେଖିପାରୁନାହଁ ? ଏହା ତୁମମାନଙ୍କର ପାଶ୍ଚାତ୍ୟ ସଭ୍ୟତାର ଗୋଟିଏ ଦୋଷ ଯେ, ତୁମେମାନେ କେବଳ ବୁଦ୍ଧିର ଉନ୍ମେଷ-କାରୀ ଶିକ୍ଷାର ପଶ୍ଚାତ୍ତରେ ଧାବିତ ହୁଅ; ହୃଦୟ-ବୃତ୍ତିକୁ ତୁମେମାନେ ଦୃଷ୍ଟି ଦିଅ ନାହିଁ । ବୁଦ୍ଧିବୃତ୍ତି ମନୁଷ୍ୟକୁ ଦଶଗୁଣ ଅଧିକ ସ୍ୱାର୍ଥପର କରିପକାଏ; ଏହା ହିଁ ତୁମ-ମାନଙ୍କର ଧ୍ୱଂସର କାରଣ ହେବ । ହୃଦୟ ଓ ମସ୍ତିଷ୍କ ମଧ୍ୟରେ ଦ୍ୱନ୍ଦ୍ୱ ଉପସ୍ଥିତ ହେଲେ ହୃଦୟକୁ ମାନିବ, କାରଣ ମସ୍ତିଷ୍କର ଗୋଟିଏ ମାତ୍ର ବୃତ୍ତି—ବିତର୍କ; ଏହାର ଭିତରେ ମସ୍ତିଷ୍କ କାର୍ଯ୍ୟ କରେ, ଏହାର ବାହାରକୁ ଯାଇପାରେ ନାହିଁ । ହୃଦୟ ମନୁଷ୍ୟକୁ ଉଚ୍ଚତମ ସ୍ତରକୁ ନେଇଯାଏ; ମସ୍ତିଷ୍କ କେବେହେଲେ ସେହି ସ୍ତରରେ ପହଞ୍ଚିପାରେ ନାହିଁ । ଏହା ବୁଦ୍ଧିବୃତ୍ତିକୁ ଅତିକ୍ରମ କରି ବୋଧିସ୍ତରରେ ଉପନୀତ ହୁଏ । ବୁଦ୍ଧି କେବେହେଲେ ପ୍ରେରଣାବୋଧ ସୃଷ୍ଟି କରିପାରେ ନାହିଁ । କେବଳ ହୃଦୟ ଯେବେ ପ୍ରଜ୍ଞାଲୋକରେ ଆଲୋକିତ ହୁଏ, ସେତେବେଳେ— ତାହା ପ୍ରେରଣାରେ ଉଦ୍‌ବୁଦ୍ଧ ହୁଏ । ହୃଦୟହୀନ ବୁଦ୍ଧିସର୍ବସ୍ୱ ମନୁଷ୍ୟ କଦାପି ହେଲେ ପ୍ରେରଣା ଲାଭ କରିପାରେ ନାହିଁ । ପ୍ରେମିକ ପୁରୁଷ ମଧ୍ୟରେ ସର୍ବଦା ହୃଦୟର ବାଣୀ ଶୁଣାଯାଏ । ବୁଦ୍ଧି ଅପେକ୍ଷା ହୃଦୟ ଉନ୍ନତତର ଯନ୍ତ୍ର ଆବିଷ୍କାର କରେ—ସେହି ଯନ୍ତ୍ର ହେଲା ଅନୁପ୍ରେରଣାର ଯନ୍ତ୍ର । ବୁଦ୍ଧି ଯେପରି ଜ୍ଞାନର ଯନ୍ତ୍ର, ହୃଦୟ ସେହିପରି ପ୍ରେରଣାର ଯନ୍ତ୍ର । ଅପେକ୍ଷାକୃତ ଅନୁନ୍ନତ ସ୍ତରରେ ଏହା ବୁଦ୍ଧି ଅପେକ୍ଷା ଦୁର୍ବଳ । ଜ୍ଞାନହୀନ ବ୍ୟକ୍ତି କିଛି ଜାଣେ ନାହିଁ, କିନ୍ତୁ ତାହାର ପ୍ରକୃତି କେତେକାଂଶରେ ଭାବ-ପ୍ରବଣ । ତାହାକୁ ଜଣେ ବିଶିଷ୍ଟ ଅଧ୍ୟାପକଙ୍କ ସହିତ ତୁଳନା କର—ଅଧ୍ୟାପକଙ୍କ କି ଅଦ୍ଭୁତ କ୍ଷମତା ! କିନ୍ତୁ ସେ ତାଙ୍କର ବୁଦ୍ଧିଦ୍ୱାରା ସୀମାବଦ୍ଧ ଏବଂ ସେ ଏକାଧାରରେ ଗୋଟିଏ ସଇତାନ ଓ ପ୍ରଖରବୁଦ୍ଧିବୃତ୍ତିସମ୍ପନ୍ନ ଲୋକ ହୋଇପାରନ୍ତି, କିନ୍ତୁ ହୃଦୟ-ବାନ୍ ବ୍ୟକ୍ତି କଦାପି ହେଲେ ସଇତାନ ହୋଇପାରିବ ନାହିଁ । ଆବେଗପୂର୍ଣ୍ଣ କୌଣସି ବ୍ୟକ୍ତି କେବେହେଲେ ସଇତାନ ହୁଏ ନାହିଁ । ସଠିକ୍ ଅନୁଶୀଳନ କଲେ ହୃଦୟ-ବୃତ୍ତିର ପରିବର୍ତ୍ତନ ହୁଏ ଏବଂ ଏହା ବୁଦ୍ଧିବୃତ୍ତିକୁ ଅତିକ୍ରମ କରି ଅନୁପ୍ରେରଣାରେ ରୂପାନ୍ତରିତ ହୁଏ । ସର୍ବଶେଷରେ ମନୁଷ୍ୟକୁ ବୁଦ୍ଧିବୃତ୍ତି ଅତିକ୍ରମ କରିବାକୁ ହେବ । ମନୁଷ୍ୟର ଜ୍ଞାନ, ଯୁକ୍ତି, ଅନୁଭବ, ବୁଦ୍ଧି ଓ ହୃଦୟବୃତ୍ତିର ଶକ୍ତି—ସବୁ ଜଗତ୍‌ରୂପ ଦୁଗ୍ଧମନ୍ଥନରେ ବ୍ୟସ୍ତ । ଦୀର୍ଘକାଳ ମନ୍ଥନ ପରେ ଆସେ ଲହୁଣୀ ଏବଂ ଈଶ୍ୱର ହିଁ ସେହି ଲହୁଣୀ । ଯେଉଁମାନେ ହୃଦୟବାନ ସେମାନେ ଏହି ଲହୁଣୀକୁ ଲାଭ କରନ୍ତି ଏବଂ ବୁଦ୍ଧିଜୀବୀମାନଙ୍କ ପାଇଁ ପଡ଼ିଥାଏ କେବଳ ଘୋଳ ବା ଲହୁଣୀଶୂନ୍ୟ ଦୁଗ୍ଧ ।*

ଏଗୁଡ଼ିକ ହୃଦୟର ପ୍ରସ୍ତୁତି—ସେହି ପ୍ରେମ, ହୃଦୟର ସେହି ଗଭୀର ସହାନୁଭୂତିର ପ୍ରସ୍ତୁତି । ଭଗବାନଙ୍କ ନିକଟରେ ପହଞ୍ଚିବା ପାଇଁ ଶିକ୍ଷିତ ଅଥବା ପଣ୍ଡିତ ହେବାର ଆଦୌ ପ୍ରୟୋଜନ ନାହିଁ । ଜଣେ ମହାପୁରୁଷ ଥରେ ମୋତେ କହିଥିଲେ,

---

* ତୁଳନୀୟ ମାରିଭଜନ : ମାଖନ ଘୃତ କାଢ଼ିଲେଉ ଛାଁଚ ପିଯେ କୋଇ ।

'ଅନ୍ୟକୁ ବଧ କରିବା ପାଇଁ ଢାଲ ତରବାରିର ପ୍ରୟୋଜନ, କିନ୍ତୁ ନିଜକୁ ବଧ କରିବା ପାଇଁ ଗୋଟିଏ ଛୁଞ୍ଚି ଯଥେଷ୍ଟ । ସୁତରାଂ ଅନ୍ୟକୁ ଶିକ୍ଷା ଦେବା ପାଇଁ ପ୍ରଚୁର ବୁଦ୍ଧି ଓ ଜ୍ଞାନର ଯେତେ ପ୍ରୟୋଜନ, ତୁମର ଆତ୍ମାର ବିକାଶ ପାଇଁ ସେତେ ନୁହେଁ ।' ତୁମେ କ'ଣ ପବିତ୍ର ? ତୁମେ ଯଦି ପବିତ୍ର ହୁଅ, ତାହାହେଲେ ତୁମେ ଈଶ୍ୱରଙ୍କ ନିକଟରେ ପହଞ୍ଚିବ । 'ଯେଉଁମାନଙ୍କର ହୃଦୟ ପବିତ୍ର, ସେମାନେ ଧନ୍ୟ; କାରଣ ସେମାନେ ଈଶ୍ୱରଙ୍କ ଦର୍ଶନ କରିବେ ।'* ତୁମେ ଯଦି ପବିତ୍ର ନ ହୁଅ ଅଥଚ ସମସ୍ତ ବିଜ୍ଞାନ ତୁମର ଅଧିଗତ ହୁଏ, ତାହାହେଲେ ତାହା ଆଦୌ ତୁମର ସହାୟକ ହେବ ନାହିଁ । ଯେଉଁସବୁ ଗ୍ରନ୍ଥ ତୁମେ ପଢ଼, ସେଥିରେ ବୁଡ଼ି ରହିପାର; କିନ୍ତୁ ତାହା ତୁମର ବିଶେଷ କାର୍ଯ୍ୟରେ ଲାଗିବ ନାହିଁ । ହୃଦୟ ହିଁ ଲକ୍ଷ୍ୟରେ ପହଞ୍ଚିପାରେ । ହୃଦୟର ପଥ ଅନୁସରଣ କର । ପବିତ୍ର ହୃଦୟର ଦୃଷ୍ଟି ବୁଦ୍ଧିର ଊର୍ଦ୍ଧ୍ୱକୁ ପ୍ରସାରିତ । ଏହା ଗୋଟିଏ ବିଶେଷ ପ୍ରେରଣାରେ ଉଦ୍‌ବୁଦ୍ଧ ହୁଏ; ଯେଉଁସବୁ ବିଷୟ ବୁଦ୍ଧିବୃତ୍ତିର ଗମ୍ୟ ନୁହେଁ, ତାହା ଏହି ହୃଦୟ ଉପଲବ୍‌ଧି କରେ । ଯେତେବେଳେ ନିର୍ମଳ ହୃଦୟ ଓ ବୁଦ୍ଧିବୃତ୍ତି ମଧ୍ୟରେ ବିରୋଧ ଉପସ୍ଥିତ ହୁଏ, ସେତେବେଳେ ନିର୍ମଳ ହୃଦୟର ପକ୍ଷ ଅବଲମ୍ବନ କରିବ, ଯଦିଓ ତାହାକୁ ତୁମେ ଅଯୌକ୍ତିକ ମନେକର । ଯେତେବେଳେ ତୁମର ହୃଦୟ ଅନ୍ୟର ଉପକାର କରିବାକୁ ଇଚ୍ଛୁକ, ସେତେବେଳେ ତୁମର ବୁଦ୍ଧିବୃତ୍ତି ହୁଏତ ତୁମକୁ କହିବ, ଏହିପରି କରିବା ସୁବିବେଚନାର ପରିଚାୟକ ନୁହେଁ; କିନ୍ତୁ ଏହି ଅବସ୍ଥାରେ ତୁମେ ହୃଦୟକୁ ମାନି ଚାଲିବ । ତାହାହେଲେ ଦେଖିପାରିବ, ବୁଦ୍ଧିକୁ ଅନୁସରଣ କରି ତୁମର ଯେତେ ଭ୍ରାନ୍ତ ହୋଇଥାଏ, ତାହା ଅପେକ୍ଷା ଅଳ୍ପ ହୋଇଅଛି । ଶ୍ରେଷ୍ଠ ଦର୍ପଣବତ୍ ପବିତ୍ର ହୃଦୟରେ ସତ୍ୟ ପ୍ରତିଫଳିତ ହୁଏ, ସୁତରାଂ ଏହିସବୁ ଯମନିୟମାଦିର ଅଭ୍ୟାସ ହୃଦୟର ପବିତ୍ରତାସମ୍ପାଦନ ପାଇଁ । ଯେତେବେଳେ ଚିତ୍ତ ଶୁଦ୍ଧ ହୁଏ, ମୁହୂର୍ତ୍ତିକ ମଧ୍ୟରେ ସବୁ ତତ୍ତ୍ୱ, ସବୁ ସତ୍ୟ ନିଜ ସ୍ୱରୂପ ମହିମାରେ ପ୍ରକାଶିତ ହୁଏ । ତୁମେ ଯଦି ପବିତ୍ରହୃଦୟ ହୁଅ, ତାହାହେଲେ ବିଶ୍ୱର ସର୍ବବିଧ ସତ୍ୟ ତୁମ ଅନ୍ତରରେ ପ୍ରକାଶିତ ହେବ । ଯେଉଁମାନେ କେବେହେଲେ ଦୂରବୀକ୍ଷଣ ଯନ୍ତ୍ର, ଅଣୁବୀକ୍ଷଣ ଯନ୍ତ୍ର, ଅଥବା ବୈଜ୍ଞାନିକ ପରୀକ୍ଷାଗାର ଦେଖିନାହାନ୍ତି, ସେମାନେ ଯୁଗଯୁଗାନ୍ତ ପୂର୍ବେ ପରମାଣୁ ସମ୍ବନ୍ଧରେ, ଅତୀନ୍ଦ୍ରିୟ ତତ୍ତ୍ୱ ସମ୍ବନ୍ଧରେ ଏବଂ ମନୁଷ୍ୟର ଅତି ସୂକ୍ଷ୍ମ ଅନୁଭୂତି ସମ୍ବନ୍ଧରେ ମହାସତ୍ୟସମୂହ ଆବିଷ୍କାର କରିଥିଲେ । ସେମାନେ ଏହିସବୁ ବିଷୟ କିପରି ଜାଣିଥିଲେ ? ହୃଦୟବୃତ୍ତିର ସାହାଯ୍ୟରେ ହିଁ ଜାଣିଥିଲେ । ସେମାନେ ହୃଦୟକୁ ନିର୍ମଳ କରିଥିଲେ । ବର୍ତ୍ତମାନ ମଧ୍ୟ ଏହା ଆମେମାନେ କରିପାରୁ—ପଥ ଆମମାନଙ୍କ ପାଇଁ ପ୍ରଶସ୍ତ ରହିଅଛି । ପ୍ରକୃତ ପକ୍ଷରେ ବୁଦ୍ଧିବୃତ୍ତିର ଅନୁଶୀଳନ ନୁହେଁ, ହୃଦୟବୃତ୍ତିର ଅନୁଶୀଳନ ହିଁ ବିଶ୍ୱର ଦୁଃଖ-ଦୈନ୍ୟ ହ୍ରାସ କରିପାରେ ।

* Sermon on the Mount, St. Matt. V. 8

ବୁଦ୍ଧିବୃତ୍ତିର ଅନୁଶୀଳନଦ୍ୱାରା ଶତଶତ ବୈଜ୍ଞାନିକ ତତ୍ତ୍ୱ ଆବିଷ୍କୃତ ହୋଇ-ଅଛି; କିନ୍ତୁ ଏହାଦ୍ୱାରା ଆମେ କ'ଣ ପାଇଛୁ ?—ମୁଷ୍ଟିମେୟ ଲୋକ ବହୁ ଲୋକଙ୍କୁ କ୍ରୀତଦାସରେ ପରିଣତ କରିଛନ୍ତି । ଏତିକି ଉପକାର ହୋଇଅଛି ! ଅଗଣିତ କୃତ୍ରିମ ଅଭାବର ସୃଷ୍ଟି ହୋଇଅଛି ଏବଂ ଅର୍ଥ ଥାଉ ବା ନ ଥାଉ, ପ୍ରତ୍ୟେକ ଦରିଦ୍ର ବ୍ୟକ୍ତି ସେହିସବୁ ଅଭାବ ପରିତୃପ୍ତ କରିବାକୁ ଚାହେଁ । ନ ପାରିଲେ ମଧ୍ୟ ସେ ସଂଗ୍ରାମ କରୁ-ଥାଏ, ପରିଶେଷରେ ସଂଗ୍ରାମ ମଧ୍ୟରେ ତାହାର ମୃତ୍ୟୁ ହୁଏ । ଏହି ତ ପରିଣତି ! ସୁତରାଂ ଜୀବନର ଦୁଃଖଦୈନ୍ୟର ସମସ୍ୟା-ସମାଧାନ ବୁଦ୍ଧିପଥରେ ସମ୍ଭବ ନୁହେଁ; ହୃଦୟ ମଧ୍ୟଦେଇ ତାହା ସମ୍ଭବ । ଯଦି ଏହିସବୁ ଚେଷ୍ଟା ମନୁଷ୍ୟକୁ ଆହୁରି ପବିତ୍ର, ଶାନ୍ତ ଓ ସହନଶୀଳ କରିବାରେ ପ୍ରଯୁକ୍ତ ହୁଅନ୍ତା, ତାହାହେଲେ ଏହି ବିଶ୍ୱର ସୁଖ ବର୍ତ୍ତମାନ ଅପେକ୍ଷା ସହସ୍ରଗୁଣ ବେଶୀ ହୋଇଯାଆନ୍ତା; ତେଣୁ ସର୍ବଦା ହୃଦୟବୃତ୍ତିର ଅନୁଶୀଳନ କର । ହୃଦୟ ମଧ୍ୟଦେଇ ଈଶ୍ୱର କଥା କହନ୍ତି; ବୁଦ୍ଧିବୃତ୍ତିର ମଧ୍ୟଦେଇ ତୁମେ କଥା କହୁଥାଅ ।

ତୁମମାନଙ୍କର ମନେ ଅଛି, ଓଲ୍ଡ଼ ଟେଷ୍ଟାମେଣ୍ଟ (Old Testament) ରେ ମୋଜେସ୍‌ଙ୍କୁ କୁହା ହୋଇଥିଲା, 'ତୁମ ପାଦରୁ ଜୋତା ଖୋଲିଦିଅ, କାରଣ ଯେଉଁଠି ତୁମେ ଛିଡ଼ା ହୋଇଅଛ, ତାହା ପବିତ୍ର ଭୂମି ।' ଏହିପରି ସଶ୍ରଦ୍ଧ ମନୋ-ଭାବ ନେଇ ଆମମାନଙ୍କୁ ସର୍ବଦା ଧର୍ମାନୁଶୀଳନରେ ଅଗ୍ରସର ହେବାକୁ ହେବ । ଯେଉଁ ବ୍ୟକ୍ତି ପବିତ୍ର ହୃଦୟ ଓ ଶ୍ରଦ୍ଧାଳୁ ମନୋଭାବ ନେଇ ଆସନ୍ତି, ତାଙ୍କର ହୃଦୟ ଖୋଲିଯିବ; ଅନୁଭୂତିର ଦ୍ୱାର ତାଙ୍କ ପାଇଁ ଉଦ୍‌ଘାଟିତ ହେବ ଏବଂ ସେ ସତ୍ୟ-ଦର୍ଶନ କରିବେ ।

ଯଦି କେବଳ ବୁଦ୍ଧିବୃତ୍ତିର ସାହାଯ୍ୟ ନେଇ ଅଗ୍ରସର ହୁଅ, ତେବେ ତୁମ ବୁଦ୍ଧିବୃତ୍ତିର ବ୍ୟାୟାମ ହେବ, ବୁଦ୍ଧି-ପ୍ରସୂତ କେତୋଟି ମତବାଦ ଲାଭ କରିବ; କିନ୍ତୁ ତୁମେ ସତ୍ୟରେ ଉପନୀତ ହେବ ନାହିଁ । ସତ୍ୟର ସ୍ୱରୂପ ଏପରି ଯେ, ତାହା ଦେଖିଲେ ହିଁ ଦୃଢ଼ପ୍ରତ୍ୟୟ ହୋଇଯାଏ । ସୂର୍ଯ୍ୟଙ୍କୁ ଦେଖାଇବା ପାଇଁ କୌଣସି ମଶାଲର ପ୍ରୟୋଜନ ହୁଏ ନାହିଁ; ସୂର୍ଯ୍ୟ ସ୍ୱୟଂପ୍ରକାଶ । ସତ୍ୟପାଇଁ ଯଦି ପ୍ରମାଣର ପ୍ରୟୋଜନ ହୁଏ, ତାହାହେଲେ ସେହି ପ୍ରମାଣକୁ କିଏ ପ୍ରମାଣିତ କରିବ ? ସତ୍ୟର ସାକ୍ଷୀ ପାଇଁ ଯଦି କିଛି ପ୍ରୟୋଜନ ହୁଏ, ତେବେ ସେହି ସାକ୍ଷୀର ପୁଣି ସାକ୍ଷୀ କିଏ ହେବ ? ଆମମାନଙ୍କୁ ଶ୍ରଦ୍ଧା ଓ ପ୍ରେମ ସହିତ ଧର୍ମପଥରେ ଅଗ୍ରସର ହେବାକୁ ହେବ; ତାହାହେଲେ ଆମମାନଙ୍କର ହୃଦୟ ଜାଗରିତ ହୋଇ କହିବ, 'ଏହା ସତ୍ୟ ଏବଂ ତାହା ଅସତ୍ୟ ।'

ଧର୍ମର କ୍ଷେତ୍ର ଇନ୍ଦ୍ରିୟର ଅତୀତ, ଏପରିକି ଆମମାନଙ୍କର ଚେତନାର ମଧ୍ୟ ଊର୍ଦ୍ଧ୍ୱରେ । ଆମେମାନେ ଈଶ୍ୱରଙ୍କୁ ଇନ୍ଦ୍ରିୟଦ୍ୱାରା ଅନୁଭବ କରିପାରୁ ନାହିଁ । କେହି ହେଲେ ଚକ୍ଷୁଦ୍ୱାରା ଈଶ୍ୱରଦର୍ଶନ କରିନାହାନ୍ତି, କେବେହେଲେ ଦର୍ଶନ କରିବେ

ନାହିଁ । ଇନ୍ଦ୍ରିୟାନୁଭୂତ ମଧ୍ୟରେ ଈଶ୍ୱର ନାହାନ୍ତି । ମୁଁ ଈଶ୍ୱର ସମ୍ବନ୍ଧରେ ସଚେତନ ନୁହେଁ, ତୁମେ ମଧ୍ୟ ନୁହଁ, କେହି ବି ନୁହନ୍ତି । ଈଶ୍ୱର କେଉଁଠାରେ ଅଛନ୍ତି ? ଧର୍ମର କ୍ଷେତ୍ର କେଉଁଠାରେ ? ଏହା ଇନ୍ଦ୍ରିୟର ଅତୀତ, ଏହା ଚେତନାର ଊର୍ଦ୍ଧ୍ୱରେ । ଆମେମାନେ ଯେଉଁସବୁ ଅଗଣିତ କାର୍ଯ୍ୟ କରିଥାଉ, ଚେତନା ସେମାନଙ୍କ ମଧ୍ୟରେ ଅନ୍ୟତମ । ତୁମକୁ ଚେତନାକ୍ଷେତ୍ର ଅତିକ୍ରମ କରି ଯିବାକୁ ହେବ, ଇନ୍ଦ୍ରିୟର ଊର୍ଦ୍ଧ୍ୱକୁ ଯିବାକୁ ହେବ; ତୁମକୁ ନିଜ କେନ୍ଦ୍ର—ସ୍ୱରୂପର ନିକଟରୁ ନିକଟତର ଭୂମିରେ ଉପନୀତ ହେବାକୁ ହେବ । ଆଉ ଯେତେ ତୁମେ ଏହିପରି କରୁଥିବ, ସେତେ ଈଶ୍ୱରଙ୍କର ନିକଟବର୍ତ୍ତୀ ହେବ । ଈଶ୍ୱରଙ୍କ ଅସ୍ତିତ୍ୱର ପ୍ରମାଣ କ'ଣ ?—ଅପରୋକ୍ଷାନୁଭୂତି । ଏହି ପ୍ରାଚୀରର ଅସ୍ତିତ୍ୱ ବିଷୟରେ ପ୍ରମାଣ—ଏହା ମୁଁ ପ୍ରତ୍ୟକ୍ଷ କରେ । ସହସ୍ର ସହସ୍ର ବ୍ୟକ୍ତି ଏହି ଭାବରେ ଈଶ୍ୱରଙ୍କୁ ପ୍ରତ୍ୟକ୍ଷ ଅନୁଭବ କରିଅଛନ୍ତି ଏବଂ ଯେଉଁମାନେ ତାହାଙ୍କୁ ପ୍ରତ୍ୟକ୍ଷ କରିବାକୁ ଇଚ୍ଛୁକ, ସେମାନଙ୍କ ନିକଟରେ ସେ ପ୍ରତ୍ୟକ୍ଷ ହେବେ । କିନ୍ତୁ ଏହି ଅନୁଭୂତି ଆଦୌ ଇନ୍ଦ୍ରିୟର ଅନୁଭୂତି ନୁହେଁ । ଏହା ଅତୀନ୍ଦ୍ରିୟ—ଅତିଚେତନ । ସୁତରାଂ ନିଜ ନିଜକୁ ଅତୀନ୍ଦ୍ରିୟ ଲୋକକୁ ଉନ୍ନୀତ କରିବା ପାଇଁ ଏହିସବୁ ଯମନିୟମାଦିର ଅନୁଶୀଳନ ଆବଶ୍ୟକ । ସର୍ବପ୍ରକାର ଅତୀତ କର୍ମ ଏବଂ ବନ୍ଧନ ଆମମାନଙ୍କୁ ତଳକୁ ଟାଣି ନେଉଛି । ଏହିସବୁ ପ୍ରସ୍ତୁତି ଆମମାନଙ୍କୁ ପବିତ୍ର ଓ ବନ୍ଧନମୁକ୍ତ କରିବ, ବନ୍ଧନଗୁଡ଼ିକ ଆପଣାଛାଏଁ ଛିନ୍ନ ହୋଇଯିବ ଏବଂ ଯେଉଁ ଇନ୍ଦ୍ରିୟଜ ପ୍ରତ୍ୟକ୍ଷର ସ୍ତରରେ ଆମେମାନେ ବଦ୍ଧ ହୋଇଅଛୁ, ତାହାର ଊର୍ଦ୍ଧ୍ୱକୁ ଉନ୍ନୀତ ହେବୁ । ସେତିକିବେଳେ ଆମେମାନେ ଏପରି ସବୁ ବସ୍ତୁକୁ ଦେଖିବୁ ଶୁଣିବୁ ଏବଂ ଅନୁଭବ କରିବୁ, ଯାହା ମନୁଷ୍ୟ ଜାଗ୍ରତ ସ୍ୱପ୍ନ ଓ ସୁଷୁପ୍ତିର ତିନୋଟି ସାଧାରଣ ସ୍ତରରେ ଦେଖେ ନାହିଁ, ଶୁଣେ ନାହିଁ ବା ଅନୁଭବ କରେ ନାହିଁ । ସେତେବେଳେ ଆମେମାନେ ଯେପରି ଗୋଟାଏ ଅଦ୍ଭୁତ ଭାଷାରେ କଥା କହିବୁ । ଲୋକେ ଆମମାନଙ୍କର ଭାଷା ବୁଝିପାରିବେ ନାହିଁ; କାରଣ ସେମାନେ ତ ଇନ୍ଦ୍ରିୟାଦିବିଷୟ ଛଡ଼ା ଅନ୍ୟ କିଛି ଜାଣନ୍ତି ନାହିଁ । ଯଥାର୍ଥ ଧର୍ମ ସମ୍ପୂର୍ଣ୍ଣ ଭାବରେ ଅତୀନ୍ଦ୍ରିୟ ରାଜ୍ୟର । ଜଗତର ପ୍ରତ୍ୟେକ ପ୍ରାଣୀର ଇନ୍ଦ୍ରିୟଗୁଡ଼ିକୁ ଅତିକ୍ରମ କରିବାର ସହଜାତ ଶକ୍ତି ରହିଅଛି । କ୍ଷୁଦ୍ର କୀଟ ପର୍ଯ୍ୟନ୍ତ ଦିନେ ଇନ୍ଦ୍ରିୟଗୁଡ଼ିକୁ ଅତିକ୍ରମ କରି ଈଶ୍ୱରଙ୍କ ନିକଟରେ ଉପନୀତ ହେବେ । କୌଣସି ଜୀବନ ବ୍ୟର୍ଥ ହେବ ନାହିଁ; ଜଗତରେ ବ୍ୟର୍ଥତା ବୋଲି କିଛି ନାହିଁ । ସହସ୍ରଥର ମନୁଷ୍ୟ ନିଜକୁ ଆଘାତ କରିବ; ସହସ୍ରଥର ଝୁଣ୍ଟିବ, କିନ୍ତୁ ପରିଣାମରେ ନିଜେ ଅନୁଭବ କରିବ ଯେ ସେ ଈଶ୍ୱର । ଆମେମାନେ ଜାଣୁ, ସହଜରେ କୌଣସି ଅଗ୍ରଗତି ହୁଏ ନାହିଁ । ପ୍ରତ୍ୟେକ ଜୀବାତ୍ମା ଯେପରି ବୃତ୍ତାକାରରେ ଚାଲୁଛନ୍ତି, ସେମାନଙ୍କୁ ଏହି ବୃତ୍ତ ପୂର୍ଣ୍ଣ କରିବାକୁ ହେବ । କୌଣସି ଜୀବାତ୍ମା ଚିରକାଳ ପାଇଁ ନିମ୍ନଗାମୀ ହେବ ନାହିଁ, ଏପରି ଏକ ସମୟ ଆସିବ, ଯେତେବେଳେ ତାହାକୁ ଊର୍ଦ୍ଧ୍ୱଗାମୀ ହେବାକୁ

ହେବ । କାହାର ହେଲେ ବିନାଶ ନାହିଁ । ଆମେମାନେ ସମସ୍ତେ ଗୋଟିଏ ସାଧାରଣ କେନ୍ଦ୍ରରୁ ଅଭିକ୍ଷିପ୍ତ । ଏହି କେନ୍ଦ୍ର ହିଁ ଈଶ୍ୱର । ଈଶ୍ୱର ଯେଉଁସବୁ ଜୀବ ସୃଷ୍ଟି କରିଅଛନ୍ତି—ସେମାନେ ଉଚ୍ଚ ହୁଅନ୍ତୁ ବା ନୀଚ ହୁଅନ୍ତୁ—ସମସ୍ତେ ସର୍ବଜୀବନର ଜନକ ଈଶ୍ୱରଙ୍କ ନିକଟରୁ ଫେରି ଆସିବେ । 'ଯାହାଙ୍କଠାରୁ ସମସ୍ତ ପ୍ରାଣୀ ଜାତ, ଯାହାଙ୍କଠାରେ ସମସ୍ତେ ଅବସ୍ଥିତ ଏବଂ ଯାହାଙ୍କ ନିକଟକୁ ସମସ୍ତେ ପ୍ରତ୍ୟାବୃତ୍ତ ହୁଅନ୍ତି, ସେ ଈଶ୍ୱର (ବ୍ରହ୍ମ) ।'*

## ଜ୍ଞାନଯୋଗ-ପ୍ରବେଶିକା

ଜ୍ଞାନଯୋଗ ଯୋଗଶାସ୍ତ୍ରର ଦାର୍ଶନିକ ଓ ଯୁକ୍ତିସମ୍ମତ ପଥ । ଯୋଗଶାସ୍ତ୍ରର ଏହି ଅଂଶ ଖୁବ୍ କଠିନ; ମୁଁ କ୍ରମଶଃ ତୁମମାନଙ୍କୁ ଏହା ସହିତ ପରିଚୟ କରାଇଦେବି ।

ଯୋଗର ଅର୍ଥ ମନୁଷ୍ୟ ଓ ଈଶ୍ୱରଙ୍କୁ ଯୁକ୍ତ କରିବାର ପଦ୍ଧତି । ଏହି ବିଷୟଟି ବୁଝିଲେ ମନୁଷ୍ୟ ଓ ଈଶ୍ୱର ସମ୍ବନ୍ଧରେ ତୁମେ ନିଜ ନିଜ ସଂଜ୍ଞା ଅନୁଯାୟୀ ଚିନ୍ତା କରିପାରିବ ଏବଂ ତୁମେମାନେ ଦେଖିବାକୁ ପାଇବ ଯେ, ତୁମର ପ୍ରତ୍ୟେକ ସଂଜ୍ଞା ସହିତ ଯୋଗକଥାର ସାମଞ୍ଜସ୍ୟ ଅଛି । ସର୍ବଦା ମନେରଖ, ବିଭିନ୍ନ ମାନସିକ ଗଠନ ଅନୁଯାୟୀ ଯୋଗ ମଧ୍ୟ ବିଭିନ୍ନ ପ୍ରକାରର । ଏମାନଙ୍କ ମଧ୍ୟରୁ ଗୋଟିଏ ନା ଗୋଟିଏ ତୁମର ଉପଯୋଗୀ ହେବ । ସବୁ ଧର୍ମର ଦୁଇଟି ଭାଗ ଅଛି—ତତ୍ତ୍ୱ ଓ ସାଧନ । ପାଶ୍ଚାତ୍ୟରେ ତତ୍ତ୍ୱର ଦିଗକୁ ଅନୁସରଣ କରନ୍ତି ଏବଂ ସାଧନ ଅର୍ଥରେ କେବଳ ସତ୍-କାର୍ଯ୍ୟ କରିବାକୁ ବୁଝିଥାନ୍ତି । ଧର୍ମର ବ୍ୟାବହାରିକ ଦିଗ ବା ସାଧନ-ଅଙ୍ଗ ହିଁ ଯୋଗ ଅର୍ଥାତ୍ କେବଳ ସତ୍କାର୍ଯ୍ୟ କରିବା ଛାଡ଼ିଦେଲେ ମଧ୍ୟ ଧର୍ମ ଗୋଟିଏ କାର୍ଯ୍ୟକାରୀ ଶକ୍ତି ।

ଊନବିଂଶ ଶତାବ୍ଦୀର ପ୍ରାରମ୍ଭରେ ମନୁଷ୍ୟ ଯୁକ୍ତି ମାଧ୍ୟମରେ ଈଶ୍ୱରଙ୍କୁ ଲାଭ କରିବାକୁ ଚେଷ୍ଟା କରିଥିଲା । ତାହା ଫଳରେ 'ଈଶ୍ୱରବାଦ' (Deism)-ର ଉତ୍ପତ୍ତି । ଏହି ମତବାଦ ଅନୁସାରେ ଈଶ୍ୱର ଯୁକ୍ତିସିଦ୍ଧ, କିନ୍ତୁ ଅନୁଭବସିଦ୍ଧ ନୁହନ୍ତି ବୋଲି ମନେ କରାହୁଏ । ଏହି ମତବାଦର ପରିବର୍ତ୍ତନ ଫଳରେ ଧର୍ମର ଯାହା ଅବଶିଷ୍ଟ ଥିଲା, ତାହା ମଧ୍ୟ ଡାରୁଇନ୍ ଓ ମିଲ୍‌ଙ୍କର ମତବାଦଦ୍ୱାରା ଧ୍ୱଂସ ହେଲା । ଐତିହାସିକ ଏବଂ ତୁଳନାମୂଳକ ଧର୍ମ ସେତେବେଳେ ମନୁଷ୍ୟର ପ୍ରଧାନ ଉପଜୀବ୍ୟ ହୋଇଉଠିଲା । ସେମାନେ ମନେ କଲେ, ପ୍ରାକୃତିକ ଶକ୍ତିର ପୂଜାରୁ ଧର୍ମର ଉଦ୍‌ଭବ । ସୂର୍ଯ୍ୟ-

---
* ତୁଳନୀୟ: ତୈତ୍ତି. ଉପ., ୩।୧

ଉପାଖ୍ୟାନ ପ୍ରଭୃତି ସମ୍ପର୍କରେ ମ୍ୟାକ୍ସମୂଲରଙ୍କର ମନ୍ତବ୍ୟ ଦ୍ରଷ୍ଟବ୍ୟ । ଅନ୍ୟ ଦଳର ସିଦ୍ଧାନ୍ତ ହେଲା, ପିତୃପୁରୁଷଙ୍କର ପୂଜାରୁ ଧର୍ମର ଉତ୍ପତ୍ତି ହୋଇଅଛି; ଏ ବିଷୟରେ ହାର୍ବାର୍ଟ ସ୍ପେନ୍‌ସର୍‌ଙ୍କର ମତ ଦ୍ରଷ୍ଟବ୍ୟ । କିନ୍ତୁ ସାମଗ୍ରିକ ବିଚାରରେ ଏହିସବୁ ମତବାଦ ଭ୍ରାନ୍ତ ବୋଲି ପ୍ରତିପନ୍ନ ହୋଇଅଛି, କୌଣସି ବାହାରଙ୍ଗ ପନ୍ଥା ଅବଲମ୍ବନ କରି ମନୁଷ୍ୟ ସତ୍ୟଲାଭ କରିପାରେ ନାହିଁ ।

'ଗୋଟିଏ ମାଟି ସମ୍ବନ୍ଧରେ ଜ୍ଞାନ ହେଲେ ସମସ୍ତ ମାଟି ସମ୍ବନ୍ଧରେ ଜ୍ଞାନ ହୁଏ ।'* ସମଗ୍ର ବିଶ୍ୱ-ଜଗତ ଗୋଟିଏ ପରିକଳ୍ପନା ଅନୁସାରେ ରଚିତ । ମନୁଷ୍ୟ ମୃତ୍ତିକାଖଣ୍ଡ ଭଳି । ଆମେମାନେ ଯଦି ଗୋଟିଏ ମାନବାତ୍ମାକୁ ଜାଣିପାରୁ, ଯଦି ତାହାର ପ୍ରକୃତି ଓ ସାଧାରଣ ଇତିହାସ ଜାଣିପାରୁ, ତାହାହେଲେ ସମଗ୍ର ପ୍ରକୃତିକୁ ଜାଣିପାରିବୁ । ଜନ୍ମ, ବୃଦ୍ଧି, ବିକାଶ, କ୍ଷୟ ଓ ମୃତ୍ୟୁ—ପ୍ରକୃତିର ଏହି ନିୟମ; ଉଦ୍ଭିଦ-ଜଗତ ଏବଂ ମନୁଷ୍ୟ କ୍ଷେତ୍ରରେ ମଧ୍ୟ ସେହି ଏକା କଥା । ପ୍ରଭେଦ କେବଳ କାଳର । ଗୋଟିଏ କ୍ଷେତ୍ରରେ ସମଗ୍ର କଳ୍ପ ଦିନକରେ ସମ୍ପୂର୍ଣ୍ଣ ହୋଇପାରେ, ପୁଣି ଅନ୍ୟ ଏକ କ୍ଷେତ୍ରରେ ସତୁରି ବର୍ଷ ଲାଗିପାରେ; ପଦ୍ଧତିଗୁଡ଼ିକ ଏକ । ବିଶ୍ୱ-ପ୍ରକୃତି ସମ୍ପର୍କରେ ଗୋଟିଏ ସଠିକ ବିଶ୍ଳେଷଣରେ ଉପନୀତ ହେବାର ଏକମାତ୍ର ଉପାୟ—ଆମମାନଙ୍କର ନିଜ ମନର ବିଶ୍ଳେଷଣ । ଧର୍ମକୁ ବୁଝିବା ପାଇଁ ମାନବମନର ଯଥାର୍ଥ ବିଶ୍ଳେଷଣ ପ୍ରୟୋଜନ, କେବଳ ଯୁକ୍ତି ସାହାଯ୍ୟରେ ସତ୍ୟରେ ଉପନୀତ ହେବା ଅସମ୍ଭବ, କାରଣ ଅସମ୍ପୂର୍ଣ୍ଣ ଯୁକ୍ତି ନିଜ ମୂଳଭିତ୍ତିକୁ ମଧ୍ୟ ଅନୁଧାବନ କରିପାରେ ନାହିଁ । ଅତଏବ ମନକୁ ଜାଣିବାର ଏକମାତ୍ର ଉପାୟ ହେଲା ପ୍ରକୃତ ତଥ୍ୟରେ ପହଞ୍ଚିବା । ତେବେ ଯାଇ ବୁଦ୍ଧି ସେଗୁଡ଼ିକୁ ସୁସମ୍ବଦ୍ଧ କରି ମୂଳ ସିଦ୍ଧାନ୍ତରେ ପହଞ୍ଚିପାରିବ । ବୁଦ୍ଧିର କାର୍ଯ୍ୟ ନିର୍ମାଣ କରିବା, କିନ୍ତୁ ଇଟା ଛଡ଼ା ତ ଗୃହନିର୍ମାଣ ସମ୍ଭବ ନୁହେଁ । ବୁଦ୍ଧି ନିଜେ 'ଇଟା' ତିଆରି କରିପାରେ ନାହିଁ, ପ୍ରକୃତ ସତ୍ୟରେ ଉପନୀତ ହେବାର ନିଶ୍ଚିତ ଉପାୟ ଜ୍ଞାନଯୋଗ ।

ପ୍ରଥମତଃ ଆମ ମନର ଗୋଟିଏ ଗଠନ-ଶ୍ରିତ ଅଛି । ଆମମାନଙ୍କର ଇନ୍ଦ୍ରିୟସମୂହ ଅଛି; ଏମାନେ କର୍ମେନ୍ଦ୍ରିୟ ଓ ଜ୍ଞାନେନ୍ଦ୍ରିୟ—ଏହି ଦୁଇଭାଗରେ ବିଭକ୍ତ । ଇନ୍ଦ୍ରିୟ ଅର୍ଥରେ ବାହ୍ୟ ଇନ୍ଦ୍ରିୟ-ଯନ୍ତ୍ରକୁ ବୁଝାଏ ନାହିଁ । ମସ୍ତିଷ୍କର ଦୃଷ୍ଟି-ଶକ୍ତିର କେନ୍ଦ୍ରଟି ଦର୍ଶନେନ୍ଦ୍ରିୟ, ଚକ୍ଷୁ ନୁହେଁ । ଏହିପରି ପ୍ରତ୍ୟେକ ଇନ୍ଦ୍ରିୟର କାର୍ଯ୍ୟ ଆଭ୍ୟନ୍ତରୀଣ । ଏକମାତ୍ର ମନର ପ୍ରତିକ୍ରିୟା ଘଟିଲେ ବସ୍ତୁ ସମ୍ବନ୍ଧରେ ଆମମାନଙ୍କର ପ୍ରତ୍ୟକ୍ଷ ଜ୍ଞାନ ହୁଏ । ଏହି ପ୍ରତ୍ୟକ୍ଷ ଜ୍ଞାନ ପାଇଁ ସଂଜ୍ଞାବହ ଏବଂ କ୍ରିୟାବାହୀ ଉଭୟ ପ୍ରକାର ସ୍ନାୟୁ (sensory and motor nerves) ପ୍ରୟୋଜନ ।

ତାହାପରେ ମନ । ଏହା ଗୋଟିଏ ନିସ୍ତରଙ୍ଗ ହ୍ରଦ ଭଳି; ଗୋଟିଏ ପ୍ରସ୍ତର ଖଣ୍ଡ ପଡ଼ିଲେ ସେଥିରେ କମ୍ପନ ଆରମ୍ଭ ହୁଏ । ସେହି କମ୍ପନଗୁଡ଼ିକ ଏକତ୍ର ହୋଇ

* ଛାନ୍ଦୋଗ୍ୟ ଉପ., ୬।୧।୪

ଏହି ପ୍ରସ୍ତରଖଣ୍ଡରେ ପ୍ରତିହତ ହୁଏ ଏବଂ ସମସ୍ତ ହ୍ରଦରେ ବିସ୍ତୃତ ଓ ଅନୁଭୂତ ହୋଇଥାଏ । ମନ (ଚିତ୍ତ) ଏହି ହ୍ରଦ ସଦୃଶ, ଏଥିରେ ସର୍ବଦା କମ୍ପନ ଚାଲୁଥାଏ, ଏବଂ ସେହି କମ୍ପନ ମନ ଉପରେ ନାନା ପ୍ରକାର ରେଖାପାତ କରେ; ଆମମାନଙ୍କର ଅହଂବୋଧ ବା ବ୍ୟକ୍ତିସତ୍ତ୍ୱ ବା 'ମୁଁ' ଏହିସବୁ ରେଖାପାତର ଫଳ । ଅତଏବ ଏହି 'ମୁଁ'—ଶକ୍ତିର ଗୋଟିଏ ଦ୍ରୁତ ସଞ୍ଚରଣ ମାତ୍ର, ଏହାର ନିଜସ୍ୱ କୌଣସି ବାସ୍ତବ ସତ୍ତା ନାହିଁ ।

ମନର ମୂଳ ଉପାଦାନ ଅତ୍ୟନ୍ତ ସୂକ୍ଷ୍ମ, ଗୋଟିଏ ଜଡ଼ ଯନ୍ତ୍ର ମାତ୍ର, ପ୍ରାଣକୁ ଧାରଣ କରିବା ପାଇଁ ଏହା ବ୍ୟବହୃତ ହୁଏ । ଯେତେବେଳେ କୌଣସି ବ୍ୟକ୍ତିର ମୃତ୍ୟୁ ହୁଏ, ସେତେବେଳେ ତାହାର ଦେହର ମୃତ୍ୟୁ ଘଟେ, କିନ୍ତୁ ସବୁ କିଛି ଯେତେବେଳେ ଚୂର୍ଣ୍ଣବିଚୂର୍ଣ୍ଣ ହୋଇଯାଏ, ସେତେବେଳେ ମନର ଗୋଟିଏ କ୍ଷୁଦ୍ର ଅଂଶ ବୀଜାକାରରେ ଅବଶିଷ୍ଟ ଥାଏ । ଏହା ହିଁ ନୂତନ ଦେହର ବୀଜ-ସ୍ୱରୂପ, ସେଣ୍ଟ ପଲ ଏହାକୁ 'ଆତ୍ମିକ ଶରୀର' (spiritual body) ବୋଲି ଅଭିହିତ କରିଅଛନ୍ତି । ମନର ଜଡ଼ତ୍ୱସମ୍ବନ୍ଧୀୟ ମତବାଦଟି ଆଧୁନିକ ସର୍ବପ୍ରକାର ମତବାଦ ସହିତ ସାମଞ୍ଜସ୍ୟପୂର୍ଣ୍ଣ । ନିର୍ବୋଧର କୌଣସି ବୁଦ୍ଧି ନାହିଁ, କାରଣ ତାହାର ମାନସିକ ଉପାଦାନ ନଷ୍ଟ ହୋଇ ଯାଇଅଛି । ଜଡ଼ବସ୍ତୁ ମଧ୍ୟରେ ଚେତନା ରହିପାରେ ନାହିଁ ଅଥବା ଜଡ଼ବସ୍ତୁର କୌଣସି ସମବାୟଦ୍ୱାରା ଚେତନାର ସୃଷ୍ଟି କରାଯାଇପାରେ ନାହିଁ । ତାହା ହେଲେ ଚେତନା ଥାଏ କେଉଁଠି ? ଏହା ଥାଏ ଜଡ଼ର ଅନ୍ତରାଳରେ— ଏହା ହିଁ ଜୀବ, ପ୍ରକୃତ ସତ୍ତା; ଜଡ଼ ମାଧ୍ୟମରେ ସେ କାର୍ଯ୍ୟ କରେ । ଜଡ଼ ବ୍ୟତୀତ ଶକ୍ତିର ସଞ୍ଚରଣ ସମ୍ଭବ ନୁହେଁ । ଯେତେବେଳେ ମୃତ୍ୟୁ ପରେ ସମଗ୍ର ମନର କିୟଦଂଶ ଛଡ଼ା ସବୁ କିଛି ଧ୍ୱଂସ ପାଇଯାଏ, ଜୀବ ଏକାକୀ ଭ୍ରମଣ କରିପାରେ ନାହିଁ ବୋଲି ମନର ଏହି କିୟଦଂଶ ତାହାର ସଞ୍ଚରଣର ମାଧ୍ୟମ ହୋଇ ଅବଶିଷ୍ଟ ରହେ ।

ପ୍ରତ୍ୟକ୍ଷ ଜ୍ଞାନ କିପରି ସମ୍ଭବ ହୁଏ ? ମୋର ସମ୍ମୁଖରେ ଥିବା କାନ୍ଥଟି ମୋ ଉପରେ ଗୋଟିଏ ଛାପ ପକାଉଅଛି; କିନ୍ତୁ ମୋ ମନ ଆକୃଷ୍ଟ ନ ହେବା ପର୍ଯ୍ୟନ୍ତ ମୁଁ କାନ୍ଥଟିକୁ ଦେଖିପାରୁ ନାହିଁ । ଅର୍ଥାତ୍ କେବଳ ଦୃଷ୍ଟିଶକ୍ତିଦ୍ୱାରା ମନ କାନ୍ଥଟିକୁ ଜାଣିପାରେ ନାହିଁ । ଯେଉଁ ପ୍ରକ୍ରିୟା ଫଳରେ ମନ ଏହି କାନ୍ଥର ପ୍ରତ୍ୟକ୍ଷ ଜ୍ଞାନ ଲାଭ କରେ, ତାହା ଗୋଟିଏ ବୁଦ୍ଧିଗତ ପ୍ରକ୍ରିୟା । ଏହି ଭାବରେ ସମଗ୍ର ବିଶ୍ୱଜଗତକୁ ଏବଂ ଆମମାନଙ୍କର ମନକୁ ମଧ୍ୟ ଆମେମାନେ ଚକ୍ଷୁ ଓ ମନ (ବା ମନନ-ଶକ୍ତି) ଦ୍ୱାରା ଦେଖୁ; ଅବଶ୍ୟ ଏଥିରେ ଆମମାନଙ୍କର ନିଜ ନିଜ ପ୍ରବଣତାର ରଙ୍ଗ ନିଶ୍ଚୟ ଲାଗିବ । ପ୍ରକୃତ କାନ୍ଥଟି ବିଶ୍ୱମନର ବାହାରେ ଅବସ୍ଥିତ, ଏହା ଅଜ୍ଞାତ ଏବଂ ଅଜ୍ଞେୟ । ଆମେମାନେ ଯଦି ବିଶ୍ୱଜଗତକୁ 'କ' କହୁଁ, ତେବେ ଆମମାନଙ୍କରେ ବକ୍ତବ୍ୟ ଏହିପରି ହେବ; ଦୃଶ୍ୟମାନ ଜଗତ = କ + ମନ ।

ବହିର୍ଜଗତ ସମ୍ବନ୍ଧରେ ଯାହା ସତ୍ୟ, ଅନ୍ତର୍ଜଗତ ସମ୍ବନ୍ଧରେ ମଧ୍ୟ ତାହା ପ୍ରଯୋଜ୍ୟ । ମନ ମଧ୍ୟ ନିଜକୁ ଜାଣିବାକୁ ଚାହେଁ, କିନ୍ତୁ ଏହି ସତ୍ତାକୁ ଜାଣିବାକୁ ହେଲେ ମନ ମାଧ୍ୟମରେ ଜାଣିବାକୁ ହେବ ଏବଂ ଏହା ମଧ୍ୟ ସେହି କାଣ୍ଟ ଭଳି ଅଜ୍ଞାତ । ଏହି ସତ୍ତାକୁ ଯଦି ଆମେମାନେ 'ଖ' ବୋଲି ଧରୁ, ତେବେ ଆମମାନଙ୍କର ବକ୍ତବ୍ୟ ହେବ : ଖ + ମନ = ଅନ୍ତର୍ଜଗତ । କାଣ୍ଟ ପ୍ରଥମେ ମନର ଏହିପ୍ରକାର ବିଶ୍ଳେଷଣ କରିଥିଲେ । କିନ୍ତୁ ବେଦରେ ବହୁପୂର୍ବେ ଏହା କୁହାଯାଇଅଛି । ଅତଏବ ବର୍ତ୍ତମାନ ସିଦ୍ଧାନ୍ତ ହେଲା, ମନ 'କ' ଏବଂ 'ଖ'ର ଅନ୍ତର୍ବର୍ତ୍ତୀ ହୋଇ ଉଭୟଙ୍କ ଉପରେ ପ୍ରତିକ୍ରିୟା କରୁଅଛି ।

'କ' ଯଦି ଅଜ୍ଞାତ ହୁଏ, ତେବେ ଆମେମାନେ ଏହାପ୍ରତି ଯେକୌଣସି ଗୁଣ ଆରୋପ କରୁନା କାହିଁକି, ତାହା ଆମ ମନରୁ ଉଦ୍ଭୂତ । ଦେଶ, କାଳ ଏବଂ କାର୍ଯ୍ୟ-କାରଣ-ଶୃଙ୍ଖଳା ମାଧ୍ୟମରେ ମନର ପ୍ରତ୍ୟକ୍ଷ ଅନୁଭୂତ ହୋଇଥାଏ । କାଳ ବ୍ୟତୀତ ଚିନ୍ତାର ସଞ୍ଚରଣ ଏବଂ ସ୍ଥାନ ବ୍ୟତୀତ ସ୍ଥୂଳତର ବିଷୟର କମ୍ପନ ସମ୍ଭବ ନୁହେଁ । କାର୍ଯ୍ୟ-କାରଣ-ଶୃଙ୍ଖଳା ହେଉଛି ଗୋଟିଏ କ୍ରମ, ଯାହା ମଧ୍ୟରେ କମ୍ପନଗୁଡ଼ିକ ଆସି ଏକତ୍ର ହୁଏ । ଏହିଗୁଡ଼ିକର ମାଧ୍ୟମରେ ମନ ବିଷୟାନୁଭୂତି ଲାଭ କରେ, ଅତଏବ ଯାହା କିଛି ମନର ଅତୀତ, ତାହା ଦେଶକାଳ ଓ କାର୍ଯ୍ୟ-କାରଣ-ଶୃଙ୍ଖଳାର ଅତୀତ ।

ଅନ୍ଧ ବ୍ୟକ୍ତି ସ୍ପର୍ଶ ଏବଂ ଶବ୍ଦଦ୍ୱାରା ଏହି ଜଗତକୁ ଅନୁଭବ କରିଥାଏ । ପାଞ୍ଚଟି ଇନ୍ଦ୍ରିୟର ଅଧିକାରୀ ଆମମାନଙ୍କ ନିକଟରେ ଏହି ଜଗତ ଅନ୍ଧର ଜଗତଠାରୁ ଭିନ୍ନ । ଆମ ମଧ୍ୟରେ ଯଦି କେହି ବୈଦ୍ୟୁତିକ ତରଙ୍ଗ ଲକ୍ଷ୍ୟ କରିବା ଭଳି ଶକ୍ତି ଅର୍ଜନ କରେ, ତଡ଼ିତ୍-ଇନ୍ଦ୍ରିୟର ଅଧିକାରୀ ହୁଏ, ତେବେ ତାହା ନିକଟରେ ଜଗତ ଭିନ୍ନ ରୂପେ ପ୍ରତୀତ ହେବ । ତଥାପି ଏହି ପୃଥିବୀ, ଯାହାକୁ 'କ' ବୋଲି ବର୍ଣ୍ଣନା କରାଯାଇଅଛି, ତାହା ସମସ୍ତଙ୍କ ନିକଟରେ ସମଭାବରେ ପ୍ରତିଭାତ ହୋଇଥାଏ । କିନ୍ତୁ ପ୍ରତ୍ୟେକେ ନିଜ ନିଜ ମନଦ୍ୱାରା ଜଗତକୁ ଦେଖୁଛନ୍ତି । ଜଗତ ମଧ୍ୟ ପ୍ରତ୍ୟେକଙ୍କ ନିକଟରେ ଭିନ୍ନ ଭିନ୍ନ ରୂପରେ ପ୍ରତୀତ ହେଉଅଛି । ତେଣୁ ମନୁଷ୍ୟର କେଉଁଠି କ + ୧ଟି ଇନ୍ଦ୍ରିୟ, କେଉଁଠି କ + ୨ଟି ଇନ୍ଦ୍ରିୟ ଏବଂ ଏହି ଭାବରେ କ + ୫ଟି ଇନ୍ଦ୍ରିୟ ପର୍ଯ୍ୟନ୍ତ ରହିଅଛି । ଇନ୍ଦ୍ରିୟସଂଖ୍ୟାର ତାରତମ୍ୟ ପାଇଁ ଅନୁଭୂତି ମଧ୍ୟ ଭିନ୍ନ ହେଉଅଛି; କିନ୍ତୁ 'କ' ସବୁ ସମୟରେ ଅପରିବର୍ତ୍ତିତ । 'ଖ' ମଧ୍ୟ ଆମମାନଙ୍କର ମନ ଏବଂ ଦେଶ, କାଳ ଓ କାର୍ଯ୍ୟ-କାରଣ-ଶୃଙ୍ଖଳାର ବାହାରେ ଅବସ୍ଥିତ ।

କିନ୍ତୁ ତୁମେମାନେ ପ୍ରଶ୍ନ କରିପାର : କିପରି ଆମେମାନେ ବୁଝିବୁ ଯେ 'କ ଓ ଖ'—ଏହି ଦୁଇଟି ଦେଶ-କାଳ ଓ କାର୍ଯ୍ୟ-କାରଣ-ଶୃଙ୍ଖଳାର ବାହାରେ ବିଦ୍ୟମାନ ? ସତ କଥା, କାଳ ହିଁ ପ୍ରଭେଦ ସୃଷ୍ଟି କରିଥାଏ, କାଳର ଅତୀତ

ହେଲେ କୌଣସି ପ୍ରଭେଦ ରହେ ନାହିଁ—ଉଭୟ ହିଁ କାଳାତୀତ ବୋଲି ସେମାନେ ପ୍ରକୃତରେ ଏକ । ମନ ଯେତେବେଳେ ଏହି ଏକକୁ ବହିର୍ଜଗତ ବୋଲି ପ୍ରତ୍ୟକ୍ଷ କରେ, ସେତେବେଳେ ମନ ଏହାକୁ ନାନା ଭାବରେ କହେ 'କ' ଏବଂ ଅନ୍ତର୍ଜଗତ ରୂପରେ ଯେବେ ଦେଖେ, ସେତେବେଳେ କହେ 'ଖ' । ଏହି ଏକତ୍ୱ ବିଦ୍ୟମାନ ରହିଅଛି ଏବଂ ମନରୂପକ କାଚ ମାଧ୍ୟମରେ ଏହା ବିଭିନ୍ନ ରୂପରେ ପ୍ରତ୍ୟକ୍ଷ ହେଉଅଛି ।

ପୂର୍ଣ୍ଣ ପ୍ରକୃତର ଯେଉଁ ରୂପ ଆମମାନଙ୍କ ନିକଟରେ ସର୍ବଦା ପ୍ରତିଭାତ ହେଉଅଛି, ତାହା ହିଁ ଈଶ୍ୱର (ବ୍ରହ୍ମ) ଏବଂ ତାହା ହିଁ ଚରମ ସତ୍ୟ ।

ଭେଦରହିତ ସତ୍ତା ହିଁ ଯଥାର୍ଥ ପୂର୍ଣ୍ଣ ସତ୍ତା—ଅନ୍ୟ ସବୁକିଛି ନିମ୍ନତର ପର୍ଯ୍ୟାୟର ଏବଂ ଅନିତ୍ୟ ।

ଯାହା ଭେଦରହିତ, ତାହା ଭେଦଯୁକ୍ତ ହୋଇ କିପରି ମନର ଗୋଚର ହୁଏ ? ଏହା ଏପରି ଗୋଟିଏ ପ୍ରଶ୍ନ, ଯାହା 'ପାପ ଏବଂ ସ୍ୱାଧୀନ ଇଚ୍ଛାର ଆରମ୍ଭ କେଉଁଠାରେ ?'—ଏହି ପ୍ରଶ୍ନର ଅନୁରୂପ । ପ୍ରଶ୍ନଟି ସ୍ୱବିରୋଧୀ ଏବଂ ଅସମ୍ଭବ, କାରଣ ଏଥିରେ କାର୍ଯ୍ୟ-କାରଣ-ସମ୍ବନ୍ଧକୁ ସ୍ୱୀକାର କରାଯାଇଛି । ଭେଦ-ରହିତ ଅବସ୍ଥାରେ କୌଣସି କାର୍ଯ୍ୟ-କାରଣ-ସମ୍ବନ୍ଧ ନାହିଁ । ଏହି ପ୍ରଶ୍ନରେ କଳ୍ପନା କରାହୋଇଛି ଯେ, ଭେଦ-ରହିତ ଓ ଭେଦଯୁକ୍ତ ସତ୍ତା ଗୋଟିଏ ଅବସ୍ଥାର ଅଧୀନ । 'କାହିଁକି' ଏବଂ 'କେଉଁହେତୁ'ରୁ—ଏହିସବୁ ପ୍ରଶ୍ନ କେବଳ ମନରେ ଅବସ୍ଥିତ । ସେହି ଆତ୍ମା ସମସ୍ତ କାର୍ଯ୍ୟ-କାରଣର ଊର୍ଦ୍ଧ୍ୱରେ ଏବଂ ସେ ସମ୍ପୂର୍ଣ୍ଣ ସ୍ୱତନ୍ତ୍ର, ସ୍ୱାଧୀନ । ଆତ୍ମା ଆତ୍ମାର ହିଁ ଆଲୋକ, ସବୁପ୍ରକାର ମନ ଭିତର ଦେଇ ଏହି ଆଲୋକ ବିଚ୍ଛୁରିତ ହେଉଅଛି । ପ୍ରତ୍ୟେକ କାର୍ଯ୍ୟ ଘୋଷଣା କରୁଅଛି—ମୁଁ ମୁକ୍ତ, ତଥାପି ପ୍ରତ୍ୟେକ କାର୍ଯ୍ୟରେ ପ୍ରମାଣିତ ହେଉଅଛି—ମୁଁ ବଦ୍ଧ । ଆତ୍ମାଙ୍କର ଯଥାର୍ଥ ସ୍ୱରୂପ ସ୍ୱାଧୀନ, କିନ୍ତୁ ଦେହ-ମନର ସଂସ୍ପର୍ଶରେ ଆସି ସେ ବଦ୍ଧ ହୋଇଯାଆନ୍ତି । ଇଚ୍ଛାଶକ୍ତି ଯଥାର୍ଥ ସ୍ୱରୂପର ପ୍ରଥମ ପ୍ରକାଶ, ସୁତରାଂ ଏହି ଯଥାର୍ଥ ସ୍ୱରୂପର ପ୍ରଥମ ବନ୍ଧନ ହେଲା ଇଚ୍ଛାଶକ୍ତି । ଯଥାର୍ଥ ସ୍ୱରୂପ ଓ ମନର ଯୌଗିକ ସମବାୟ ହିଁ ଇଚ୍ଛାଶକ୍ତି—କୌଣସି ଯୌଗିକ ସମବାୟ ସ୍ଥାୟୀ ହୋଇପାରେ ନାହିଁ । ସୁତରାଂ ବଞ୍ଚିବାର ଇଚ୍ଛା ଥିଲେ ମଧ୍ୟ ଆମମାନଙ୍କୁ ମରିବାକୁ ହେବ । 'ଅମର ଜୀବନ' ଗୋଟିଏ ସ୍ୱବିରୋଧୀ ଉକ୍ତି, କାହିଁକି ନା ଜୀବନ, ଯାହା ଗୋଟିଏ ଯୌଗିକ ସମବାୟ ଫଳରେ ଉଦ୍ଭୂତ, ତାହା କଦାପି ହେଲେ ଚିରସ୍ଥାୟୀ ହୋଇପାରେ ନାହିଁ । ସେହି ସତ୍ୟ-ସ୍ୱରୂପ ଭେଦ-ବିରହିତ ଏବଂ ଚିରନ୍ତନ ବସ୍ତୁ ସର୍ବଦା ବର୍ତ୍ତମାନ । ଏହି ପୂର୍ଣ୍ଣସ୍ୱରୂପ—ମନ, ଚିନ୍ତା, ଇଚ୍ଛା ପ୍ରଭୃତି ବିଷୟ ସହିତ କିପରି ମିଶ୍ରିତ ହେଲା ? ଏହା କେବେହେଲେ ମିଶ୍ରିତ ହୋଇ ନାହିଁ । ତୁମେ ହିଁ ତୁମର ପ୍ରକୃତ ସତ୍ତା—ଆମମାନଙ୍କର ପୂର୍ବବର୍ତ୍ତୀ ବକ୍ତବ୍ୟର 'ଖ' । ତୁମର କେବେ-ହେଲେ ଇଚ୍ଛାଶକ୍ତି ନ ଥିଲା, କେବେହେଲେ ତୁମ ମଧ୍ୟରେ ପରିବର୍ତ୍ତନ ହୋଇ ନାହିଁ,

ଜୀବ ବୋଲି ତୁମର କେବେହେଲେ ଅସ୍ତିତ୍ୱ ନ ଥିଲା—ଏଗୁଡ଼ିକ ଭ୍ରମ ମାତ୍ର । ତେବେ ତୁମେମାନେ କହିବ, ଏହି ଭ୍ରମାତ୍ମକ ଜଗତ କାହା ଉପରେ ପ୍ରତିଷ୍ଠିତ ? ଏହା ମଧ୍ୟ ଗୋଟିଏ ଭ୍ରମାତ୍ମକ ପ୍ରଶ୍ନ । ଭ୍ରମ କେବଳ ଭ୍ରମ ଉପରେ ପ୍ରତିଷ୍ଠିତ । ଏହା ସତ୍ୟ ଉପରେ ପ୍ରତିଷ୍ଠିତ ହୋଇପାରେ ନାହିଁ । ଏହିସବୁ ଭ୍ରମକୁ ଅତିକ୍ରମ କରିବା ପାଇଁ, ମୁକ୍ତ ହେବା ପାଇଁ ସମସ୍ତେ ସଂଗ୍ରାମ କରୁଅଛନ୍ତି । ତାହାହେଲେ ଜୀବନର ମୂଳ୍ୟ କ'ଣ ?—ଅଭିଜ୍ଞତାର ସଞ୍ଚୟ । ଏହି ମତବାଦ କଅଣ ବିବର୍ତ୍ତନବାଦର ବିରୋଧୀ ? ନା—ବରଂ ବିବର୍ତ୍ତନବାଦକୁ ଏହା ସ୍ପଷ୍ଟ ଭାବରେ ବ୍ୟାଖ୍ୟା କରୁଅଛି । ଜଡ଼ର ସଂସ୍କାର-ସାଧନ ପାଇଁ ଏହା ଗୋଟିଏ ପ୍ରକ୍ରିୟା । ଏହା ଯଥାର୍ଥ ସ୍ୱରୂପର ବିକାଶରେ ସାହାଯ୍ୟ କରୁଅଛି । ଏହା ଆମ ଓ ଅନ୍ୟ ଗୋଟିଏ ବସ୍ତୁ ମଧ୍ୟରେ ପର୍ଦ୍ଦା ବା ଆବରଣ ଭଳି । ପର୍ଦ୍ଦାଟି ଯେପରି ଧୀରେ ଧୀରେ ଅପସାରିତ ହେଉଅଛି, ବସ୍ତୁଟି ମଧ୍ୟ ସେହିପରି ଧୀରେ ଧୀରେ ଦୃଷ୍ଟିଗୋଚର ହେଉଅଛି । ଏହା ହିଁ ହେଉଛି ଆତ୍ମାର ବିକାଶ ।

## ଜ୍ଞାନଯୋଗ-କଥା

[ ସ୍ୱାମୀଜୀଙ୍କର ଏହି ଆଲୋଚନାଗୁଡ଼ିକ ତାଙ୍କର ଶିଷ୍ୟ ଆମେରିକାର ମିସ୍ ଏସ୍. ଇ. ଓସ୍ୱାଲ୍‌ଡୋଙ୍କ କର୍ତ୍ତୃକ ଲିପିବଦ୍ଧ ହୋଇଥିଲା । ସ୍ୱାମୀ ସାରଦାନନ୍ଦ ଯେତେବେଳେ ଆମେରିକାରେ ଥିଲେ (୧୮୯୮), ସେତେବେଳେ ଉକ୍ତ ଶିଷ୍ୟାଙ୍କ ନୋଟ୍‌ବହିରୁ ସେ ଏଗୁଡ଼ିକ ସଂଗ୍ରହ କରିଥିଲେ । ତାଙ୍କର କାଗଜପତ୍ର ମଧ୍ୟରୁ ଏଗୁଡ଼ିକ ମିଳିଛି । ]

### ( ୧ )

ଓଁ ତତ୍ ସତ୍ । ଓଁକାର-ତତ୍ତ୍ୱ ଜାଣିବା ହିଁ ଜଗତ-ରହସ୍ୟ ଜାଣିବା । ଭକ୍ତିଯୋଗ ଓ ରାଜଯୋଗର ଲକ୍ଷ୍ୟ ଏବଂ ଜ୍ଞାନଯୋଗର ଲକ୍ଷ୍ୟ ସମାନ, ତେବେ ସାଧନ-ପ୍ରଣାଳୀ ଭିନ୍ନ । ଏହି ଜ୍ଞାନଯୋଗ ଶକ୍ତିମାନ ଓ ଯୁକ୍ତିନିଷ୍ଠ ସାଧକଙ୍କ ପକ୍ଷରେ ଉପଯୋଗୀ, ଅଷ୍ଟାଙ୍ଗିକ ଯୋଗୀ ବା ଭକ୍ତ ପକ୍ଷରେ ନୁହେଁ । ଶୁଦ୍ଧପ୍ରେମ ଓ ପରାଭକ୍ତି ଆଶ୍ରୟ କରି ଭକ୍ତିଯୋଗୀ ଯେପରି ଭଗବାନଙ୍କ ସହିତ ଏକତ୍ୱଲାଭର ପଥରେ ଅଗ୍ରସର ହୁଅନ୍ତି, ଜ୍ଞାନଯୋଗୀ ମଧ୍ୟ ସେହିପରି ଶୁଦ୍ଧ ବିଚାର-ସହାୟତାରେ ପରମାତ୍ମା-ଲାଭର ବାଟ ଖୋଜି ନିଅନ୍ତି । ଅତୀତ ଯୁଗର ଯାବତୀୟ ମୂର୍ତ୍ତିର କଳ୍ପନା, ସମସ୍ତ ପୁରାତନ ଧର୍ମବିଶ୍ୱାସ ଏବଂ କୁସଂସ୍କାର ମନରୁ ଦୂର କରିବାକୁ ହେବ । କେବଳ ଇହାମୁତ୍ରଫଳଭୋଗ-କାମନା ତ୍ୟାଗ କରି ମୁକ୍ତି ପାଇଁ ଦୃଢ଼ ସଂକଳ୍ପ

କରିବାକୁ ପଡ଼ିବ । ଜ୍ଞାନ ବ୍ୟତୀତ ମୁକ୍ତି ଆମମାନଙ୍କୁ ମିଳିବ ନାହିଁ । ସ୍ୱରୂପ-ଉପଲବ୍ଧି—ଆମେମାନେ ଯେ ଜନ୍ମ, ମୃତ୍ୟୁ ଓ ସୀମାର ଅତୀତ, ଏହି ଉପଲବ୍ଧି ହିଁ ଜ୍ଞାନ । ଆତ୍ମାନୁଭୂତି ହିଁ ପରମ କଲ୍ୟାଣ—ଏହା ଇନ୍ଦ୍ରିୟ ଓ ଚିନ୍ତାର ଅତୀତ ଅବସ୍ଥା । ପ୍ରକୃତ 'ମୁଁ' ଧାରଣାତୀତ । ଏହି ନିତ୍ୟ ଜ୍ଞାତା (eternal subject) କେବେହେଁ ଜ୍ଞାନର ବିଷୟ (object) ହୋଇପାରନ୍ତି ନାହିଁ, କାରଣ ଜ୍ଞାନ ଆପେକ୍ଷିକ-ବିଷୟକ, ନିରପେକ୍ଷ-ବ୍ରହ୍ମ-ବିଷୟକ ନୁହେଁ । ସମସ୍ତ ଇନ୍ଦ୍ରିୟଜ ଜ୍ଞାନ ସୀମାବଦ୍ଧ, କାର୍ଯ୍ୟ-କାରଣ-ସମ୍ବନ୍ଧର ଅନ୍ତହୀନ ଶୃଙ୍ଖଳା ମାତ୍ର । ଆମମାନଙ୍କର ଏହି ଜଗତ ବ୍ୟାବହାରିକ ସତ୍ତା—ବାସ୍ତବର ଛାୟା; ତେବେ ମଧ୍ୟ ସୁଖ ଓ ଦୁଃଖ ଏହି ସ୍ତରରେ ଭାରସାମ୍ୟ ରକ୍ଷା କରି ଚାଲିଛି ବୋଲି ଏହି ପୃଥିବୀ ହିଁ ଏକମାତ୍ର ସ୍ଥାନ, ଯେଉଁଠାରେ ମନୁଷ୍ୟ ଆତ୍ମସ୍ୱରୂପ ଉପଲବ୍ଧି କରି 'ଅହଂ ବ୍ରହ୍ମାସ୍ମି' ଜ୍ଞାନ ଲାଭ କରିପାରେ ।

ଏହି ଜଗତ ପ୍ରକୃତିର ବିବର୍ତ୍ତନ ତଥା ଈଶ୍ୱରଙ୍କର ପରିପ୍ରକାଶ । ତାହା ମାୟା ବା ଆପାତପ୍ରତୀୟମାନ ଜଗତ୍ପ୍ରପଞ୍ଚର ବା ନାମରୂପର ଆବରଣରେ ଦୃଷ୍ଟ ବ୍ରହ୍ମ ବା ନିରୁପାଧିକ ସତ୍ତାର ବ୍ୟାଖ୍ୟା ମାତ୍ର । ଏହି ଜଗତ ଶୂନ୍ୟ ନୁହେଁ, ଏହାର କିଛି ସତ୍ତା ଅଛି; ବ୍ରହ୍ମ ଅଛନ୍ତି ବୋଲି ଜଗତ ପ୍ରତୀୟମାନ ହୁଏ ।

ଜ୍ଞାତା-ବିଷୟକ ଜ୍ଞାନ କେଉଁ ଉପାୟରେ ହେବ ? ବେଦାନ୍ତ କହେ—ଆମେମାନେ ସେହି ଜ୍ଞାତା, ଯେ କି ଜ୍ଞାନର ବିଷୟୀଭୂତ ନୁହନ୍ତି; ସେଥିଯୋଗୁଁ ଆମେମାନେ କେବେ ତାଙ୍କୁ ଜାଣିପାରୁ ନାହିଁ । ଆଧୁନିକ ବିଜ୍ଞାନ ମଧ୍ୟ ଏହି କଥା କହୁଛି । ତାଙ୍କୁ ଜାଣିହୁଏ ନାହିଁ । ତେବେ ଆମେମାନେ ବେଳେ ବେଳେ ଏହାଙ୍କର ଅସ୍ତିତ୍ୱର ଆଭାସ ପାଇଥାଉଁ । ଯେତେବେଳେ ଥରେ ଏହି ଜଗତ-ଭ୍ରାନ୍ତି ଭାଙ୍ଗିଯାଏ, ସେତେବେଳେ ଆମେମାନେ ସେହି ଅନୁଭୂତି ଫେରିପାଉ । ସେତେବେଳେ ଜଗତ ଆମମାନଙ୍କ ଦୃଷ୍ଟିରେ ସତ୍ୟ ପ୍ରତିଭାତ ହେବ ନାହିଁ । ଆମେମାନେ ଜାଣି ପାରିବୁ—ଏହା ମରୀଚିକା ମାତ୍ର । ଏହି ମାୟା-ମରୀଚିକାକୁ ଅତିକ୍ରମ କରିଯିବା ହିଁ ସବୁ ଧର୍ମର ଲକ୍ଷ୍ୟ । ଏହି ଜୀବ ଓ ବ୍ରହ୍ମ ଯେ ଏକ, ସମସ୍ତ ବେଦ ଅହରହ ଏହି କଥା ଘୋଷଣା କରୁଛନ୍ତି; କିନ୍ତୁ ଅତି ଅଳ୍ପସଂଖ୍ୟକ ଲୋକ ମାୟାର ଆବରଣ ଛିନ୍ନ କରି ଏହି ଚରମ ସତ୍ୟକୁ ଉପଲବ୍ଧି କରିଥାଆନ୍ତି ।

ଜ୍ଞାନଲାଭେଚ୍ଛୁ ବ୍ୟକ୍ତିଙ୍କୁ ପ୍ରଥମେ ଭୟରୁ ମୁକ୍ତ ହେବାକୁ ପଡ଼ିବ । ଭୟ ହିଁ ଆମମାନଙ୍କର ଅନ୍ୟତମ ପ୍ରବଳ ଶତ୍ରୁ । ତତ୍ପରେ କୌଣସି ବିଷୟ ସମ୍ୟକ୍ ଅବଗତ ନ ହୋଇ ସେଥିରେ ବିଶ୍ୱାସ କରିବ ନାହିଁ । ସର୍ବଦା କହ—'ମୁଁ ଶରୀର ନୁହେଁ, ମନ ନୁହେଁ, ଚିନ୍ତା ନୁହେଁ, ଚେତନା ମଧ୍ୟ ନୁହେଁ, ମୁଁ ଆତ୍ମା ।' ସମସ୍ତ ତ୍ୟାଗ କରିବା ପରେ ଶେଷରେ କେବଳ ଆତ୍ମା ହିଁ ଅବଶିଷ୍ଟ ରହିବେ । ଜ୍ଞାନୀର ଧ୍ୟାନ ଦୁଇପ୍ରକାର : (୧) ଆମେମାନେ ଯାହା ନୋହୁଁ, ସେସମସ୍ତକୁ ଅସ୍ୱୀକାର କରିବା ଓ ତାହାକୁ ମନରୁ ଦୂର କରିଦେବା । (୨) ଆମମାନଙ୍କର ପ୍ରକୃତ ସ୍ୱରୂପ

ଅର୍ଥାତ୍ ଆତ୍ମା ଅଦ୍ୱିତୀୟ ଅହମ୍ ତଥା ସଚ୍ଚିଦାନନ୍ଦ, ତାହାଙ୍କୁ ଦୃଢ଼ତାର ସହ ଉପସ୍ଥାପନା କରିବା । ଯଥାର୍ଥ ବିଚାରମାର୍ଗୀ ନିର୍ଭୟରେ ବିଚାରର ଚରମ ସୀମା ପର୍ଯ୍ୟନ୍ତ ଅନୁଗମନ କରିବା ଉଚିତ । ବାଟରେ କୌଣସିଠାରେ ଅଟକି ଗଲେ ଚଳିବ ନାହିଁ । 'ନେତି' ବିଚାରପ୍ରଣାଳୀ ଅବଲମ୍ବନ କଲେ ସମସ୍ତ ଦୂର ହୋଇଯିବ; ଅବଶେଷରେ ଯାହା ଅପରିହାର୍ଯ୍ୟ, ଯାହା ଆଉ ଅସ୍ୱୀକାର କରାଯାଇପାରିବ ନାହିଁ, ସେହି ପ୍ରକୃତ 'ମୁଁ' ବା ଆତ୍ମାରେ ଆମେମାନେ ଉପନୀତ ହେବୁ । ସେହି 'ମୁଁ' ଜଗତର ସାକ୍ଷୀ—ଅବ୍ୟୟ, ସନାତନ, ଅସୀମ । ଅଜ୍ଞାନର ଆବରଣ ପରେ ଆବରଣ ଏହି ଆତ୍ମାକୁ ଘୋଡ଼ାଇ ରଖେ; ଆତ୍ମା କିନ୍ତୁ ସର୍ବଦା ସମଭାବରେ ବିରାଜମାନ ।

ଦୁଇଟି ପକ୍ଷୀ ଗୋଟିଏ ବୃକ୍ଷର ବିଭିନ୍ନ ଶାଖାରେ ଉପବିଷ୍ଟ । ଉପର ଶାଖାରେ ବସିଥିବା ପକ୍ଷୀଟି ଧୀର, ସ୍ଥିର, ମହିମାମୟ, ସୁଶୋଭନ ଓ ପୂର୍ଣ୍ଣସ୍ୱଭାବ । ତଳ ଶାଖାରେ ବସିଥିବା ପକ୍ଷୀଟି ଡାଳରୁ ଡାଳକୁ ଡେଇଁ ସୁମିଷ୍ଟ ଫଳ ଖାଇ କେତେବେଳେ ହୃଷ୍ଟ, ଆଉ କେତେବେଳେ ତିକ୍ତ ଫଳ ଆସ୍ୱାଦନ କରି ବିଷଣ୍ଣ; ଦିନେ ନିୟମିତ ଆସ୍ୱାଦିତ ଫଳ ବଦଳରେ ଅତିତିକ୍ତ ଗୋଟିଏ ଫଳ ଭକ୍ଷଣ କରି ସେ ଉପରର ଶାନ୍ତ ଶୋଭାମୟ ପକ୍ଷୀଟି ପ୍ରତି ଦୃଷ୍ଟିପାତ କରି ଚିନ୍ତା କଲା, 'ହାୟ ! ମୋ ପ୍ରାଣର ଆକାଙ୍କ୍ଷା, ଏହି ପକ୍ଷୀ ପରି ହୁଅନ୍ତି !' ତା'ପରେ ଉପର ପକ୍ଷୀ ଆଡ଼କୁ ଅଗ୍ରସର ହେଲା । ପୁଣି ସେହି ପକ୍ଷୀଟି ପରି ହେବାର ବାସନା ସମ୍ପୂର୍ଣ୍ଣ ଭାବରେ ଭୁଲି ଯାଇ ପୁନର୍ବାର ମିଷ୍ଟ ଓ ତିକ୍ତ ଫଳର ଆସ୍ୱାଦନରେ ତୁଷ୍ଟ ଓ ରୁଷ୍ଟ ହୋଇ ପୂର୍ବପରି ବିଚରଣ କରିବାକୁ ଲାଗିଲା । ପୁଣି ଊର୍ଦ୍ଧ୍ୱ ଆଡ଼କୁ ଦୃଷ୍ଟିପାତ କଲା ଓ ଶାନ୍ତ ସ୍ନିଗ୍ଧ ମହିମାମଣ୍ଡିତ ଉପର ଶାଖାରେ ବସିଥିବା ପକ୍ଷୀଟି ଆଡ଼କୁ ଅଗ୍ରସର ହେଲା । ଏହିପରି ବହୁଥର ସଂଘଟିତ ହେବା ପରେ ଅବଶେଷରେ ଉପର ପକ୍ଷୀଟିର ସାନ୍ନିଧ୍ୟ ଲାଭ କରି ଦେଖିଲା ତାହାର ଜ୍ୟୋତି ତା'ର ଚକ୍ଷୁ ଝଲସାଇ ଦେଇ ତାକୁ ଆତ୍ମଭୂତ କରି ଦେଉଛି । ପରିଶେଷରେ ସେ ଦେଖିଲା ଓ ଆଶ୍ଚର୍ଯ୍ୟ ହେଲା ଯେ କେବଳ ଗୋଟିଏ ମାତ୍ର ପକ୍ଷୀ ସେଠାରେ ଅଛି ଏବଂ ସେ ନିଜେ ହିଁ ଚିରକାଳ ସେହି ଉପରର ପକ୍ଷୀ; ତେବେ ଏହି ସତ୍ୟ ସେ ଏବେମାତ୍ର ବୁଝିପାରିଲା ।*

ମନୁଷ୍ୟ ମଧ୍ୟ ସେହି ନିମ୍ନଶାଖାବିହାରୀ ପକ୍ଷୀ ତୁଲ୍ୟ, କିନ୍ତୁ ସର୍ବୋଚ୍ଚ ଆଦର୍ଶରେ ଉପନୀତ ହେବା ନିମନ୍ତେ ସଚେଷ୍ଟ ହେଲେ ସେ ମଧ୍ୟ ବୁଝିପାରିବ, ସେ ସର୍ବଦା ସେହି ଆତ୍ମାରୂପରେ ଥିଲା; ଆତ୍ମା ବ୍ୟତୀତ ଯାହା କିଛି ସବୁ ସ୍ୱପ୍ନ ମାତ୍ର । ଏହି ଜଡ଼ ଓ ଜଡ଼ର ସତ୍ୟତାରେ ବିଶ୍ୱାସରୁ ନିଜକୁ ସମ୍ପୂର୍ଣ୍ଣ ଭାବରେ ପୃଥକ୍ ରଖିବା ହିଁ ପ୍ରକୃତ ଜ୍ଞାନ । ଓଁ ତତ୍ ସତ୍—ଓଁ ଏକମାତ୍ର ପ୍ରକୃତ ସତ୍ତା, ଜ୍ଞାନୀ ସର୍ବଦା ଏହା ମନେ ରଖିବେ । ନିରପେକ୍ଷ ଏକତ୍ୱ ହିଁ ଜ୍ଞାନଯୋଗର ଭିତ୍ତି । ଏହା ଦ୍ୱୈତଭାବଶୂନ୍ୟ ଅଦ୍ୱୈତବାଦ । ଏହା ହିଁ ବେଦାନ୍ତ-ଦର୍ଶନ-ସୌଧର ଭିତ୍ତିପ୍ରସ୍ତର, ବେଦାନ୍ତର ଆଦି

* ମୁଣ୍ଡକ ଉପ., ୩।୧।୧

ଓ ଅନ୍ତ । ବ୍ରହ୍ମ ହିଁ ଏକମାତ୍ର ସତ୍ୟ ବସ୍ତୁ, ଆଉ ସବୁ ମିଥ୍ୟା । 'ଅହଂ ବ୍ରହ୍ମାସ୍ମି'— ଅହରହ ଏହି ବାକ୍ୟ ଉଚ୍ଚାରଣ କରୁ କରୁ ତାହାକୁ ଆମମାନଙ୍କ ସ୍ୱଭାବର ଅଙ୍ଗୀଭୂତ କରିଲେ ହିଁ ସମସ୍ତ ଦ୍ୱୈତଭାବ, ଭଲ-ମନ୍ଦ, ସୁଖ-ଦୁଃଖ, ଆନନ୍ଦ-ନିରାନନ୍ଦ ଅତିକ୍ରମ କରି ଅଦ୍ୱିତୀୟ ସନାତନ ଅବ୍ୟୟ ଅସୀମ ଓ 'ଏକମେବା-ଦ୍ୱିତୀୟମ୍'-ରୂପରେ ନିଜକୁ ଉପଲବ୍ଧି କରିବା ପାଇଁ ଆମେ ସମର୍ଥ ହେବୁ ।

ଜ୍ଞାନଯୋଗୀକୁ ସଂକୀର୍ଣ୍ଣତମ ସାମ୍ପ୍ରଦାୟିକ ଲୋକ ପରି ଏକାଗ୍ର, ପୁଣି ଆକାଶ ପରି ଉଦାର ହେବାକୁ ହେବ; ସମ୍ପୂର୍ଣ୍ଣ ଭାବରେ ଚିତ୍ତ ସଂଯତ କରି ବୌଦ୍ଧ ବା ଖ୍ରୀଷ୍ଟିୟାନ ହେବାର ସାମର୍ଥ୍ୟ ଅର୍ଜନ କରିବାକୁ ପଡ଼ିବ; ଆଉ ସ୍ୱେଚ୍ଛାରେ ଏହିସବୁ ବିଭିନ୍ନ ଧର୍ମଭାବ ମଧ୍ୟରେ ନିଜକୁ ଛାଡ଼ି ଦେଇ ମଧ୍ୟ ଚିରନ୍ତନ ସମନ୍ୱୟ ପ୍ରତି ଅବିଚଳିତ ନିଷ୍ଠା ରଖିବାକୁ ହେବ । ନିୟତ ଅଭ୍ୟାସଦ୍ୱାରା ହିଁ ଏହି ସଂଯମ ଅର୍ଜିତ ହୋଇପାରେ । ସେହି ଏକରେ ସକଳ ବୈଚିତ୍ର୍ୟ ନିହିତ, କିନ୍ତୁ ନିଜ କର୍ମ ସହିତ ଆମେମାନେ ଯେପରି ନିଜକୁ ଏକୀଭୂତ ନ କରୁ—ଆମମାନଙ୍କୁ ସେହି ଶିକ୍ଷା ଲାଭ କରିବାକୁ ହେବ ଏବଂ ସମ୍ମୁଖରେ ଉପସ୍ଥିତ ବସ୍ତୁ ବ୍ୟତୀତ ଅନ୍ୟ ବସ୍ତୁ ଦେଖିବାର, ଶୁଣିବାର ବା ଆଲୋଚନା କରିବାର ପ୍ରଶ୍ନ ଯେପରି ନ ଉଠେ । ସମସ୍ତ ମନପ୍ରାଣ ଅର୍ପଣ କରି ଆମମାନଙ୍କୁ ଏକାଗ୍ର ହେବାକୁ ପଡ଼ିବ । ଦିବାରାତ୍ର ନିଜକୁ କହ—'ସୋଽହଂ, ସୋଽହଂ' ।

( ୨ )

ବେଦାନ୍ତଦର୍ଶନର ସର୍ବଶ୍ରେଷ୍ଠ ଶିକ୍ଷାଦାତା ହେଉଛନ୍ତି ଶଙ୍କରାଚାର୍ଯ୍ୟ । ସେ ବେଦାନ୍ତର ସାରସତ୍ୟଗୁଡ଼ିକୁ ସଂଗ୍ରହ କରି ଅକାଟ୍ୟ ଯୁକ୍ତିସମ୍ବଳିତ ଅପୂର୍ବ ଜ୍ଞାନଶାସ୍ତ୍ର ରଚନା କରିଛନ୍ତି, ଯାହାକି ତାଙ୍କ ଭାଷ୍ୟର ଶିକ୍ଷାବସ୍ତୁ । ବ୍ରହ୍ମନିରୂପକ ପରସ୍ପର-ବିରୋଧୀ ବାକ୍ୟାବଳୀ ସମନ୍ୱୟ କରି କେବଳ ମାତ୍ର ଏକ ଅସୀମ ସତ୍ତା ଅଛି ବୋଲି ସେ ଦେଖାଇ ଦେଇଛନ୍ତି । ଆହୁରି ମଧ୍ୟ ଦେଖାଇ ଦେଇଛନ୍ତି ଯେ, ଉଠାଣି ପଥରେ ଅଗ୍ରଗତି ଯେପରି ଧୀର ଭାବରେ ସମ୍ଭବ, ସେହିପରି ମାନସିକ ଶକ୍ତିର ତାର-ତମ୍ୟ-ଉପଯୋଗୀ ଏହି ବୈଚିତ୍ର୍ୟ ମଧ୍ୟ ଅତ୍ୟାବଶ୍ୟକ । ଖ୍ରୀଷ୍ଟ ତାଙ୍କର ଶ୍ରୋତା-ମାନଙ୍କର ଯୋଗ୍ୟତା ଅନୁସାରେ ଯେଉଁ ଉପଦେଶ ଦେଇଛନ୍ତି, ତାହା କେତେକ ପରିମାଣରେ ଏହାର ଅନୁରୂପ । ପ୍ରଥମତଃ ସେ ସ୍ୱର୍ଗରେ ଆସୀନ ଈଶ୍ୱରଙ୍କୁ ପ୍ରାର୍ଥନା ଜଣାଇବାର ଉପଦେଶ ଦେଲେ । ତା'ପରେ ଏକ ସୋପାନ ଊର୍ଦ୍ଧ୍ୱକୁ ଉଠି କହିଲେ, 'ମୁଁ ଦ୍ରାକ୍ଷାଲତା, ତୁମେ ସବୁ ଶାଖା ପ୍ରଶାଖା ।' ପରିଶେଷରେ ଚରମ ସତ୍ୟ, ପ୍ରଚାର କରି କହିଲେ, 'ମୁଁ ଓ ମୋ ପିତା ଏକ', 'ସ୍ୱର୍ଗରାଜ୍ୟ ତୁମମାନଙ୍କ ଅନ୍ତରରେ ଅବସ୍ଥିତ ।' ଶଙ୍କରାଚାର୍ଯ୍ୟ ଶିକ୍ଷା ଦେଲେ ଦେବତାଙ୍କର ଶ୍ରେଷ୍ଠ ଅନୁଗ୍ରହ ତିନୋଟି—(୧) ମନୁଷ୍ୟ-ଦେହ, (୨) ଈଶ୍ୱରଲାଭର ଇଚ୍ଛା ଏବଂ (୩) ଜ୍ଞାନର

ଆଲୋକ ଦେବା ପାଇଁ ସମର୍ଥ ଆତ୍ମଜ୍ଞ । ଏହି ତିନ ବସ୍ତୁ ଲାଭ କରିପାରିଲେ ମୁକ୍ତି ଆମମାନଙ୍କର କରତଳଗତ ହେବ । ଏକମାତ୍ର ଜ୍ଞାନ ହିଁ ଆମମାନଙ୍କୁ ମୁକ୍ତି ଦେଇ-ପାରେ, କିନ୍ତୁ ଜ୍ଞାନୋଦୟ ସଙ୍ଗେ ସଙ୍ଗେ ଆନୁଷ୍ଠାନିକ ଧର୍ମଗୁଡ଼ିକ ତିରୋହିତ ହେବ ।

ଏକ ଅଦ୍ୱିତୀୟ ସତ୍ତା ବିଦ୍ୟମାନ ଏବଂ ପ୍ରତ୍ୟେକ ଜୀବ ସେହି ପୂର୍ଣ୍ଣ ସତ୍ତା, ଅଂଶ ନୁହେଁ—ଏହା ହିଁ ବେଦାନ୍ତର ସାରମର୍ମ । ପ୍ରତି ଶିଶିର-ବିନ୍ଦୁରେ ସୂର୍ଯ୍ୟ ପୂର୍ଣ୍ଣ ରୂପେ ପ୍ରତିବିମ୍ବିତ ହୁଏ । 'ଦେଶ-କାଳ-ନିମିତ୍ତ'କୁ ଆଶ୍ରୟ କରି ସେହି ସତ୍ତା ମନୁଷ୍ୟ ରୂପରେ ପ୍ରକାଶିତ, କିନ୍ତୁ ଦୃଶ୍ୟ ଜଗତର ଅନ୍ତରାଳରେ ଗୋଟିଏ ଚରମ ତତ୍ତ୍ୱ ବିରାଜମାନ ଅଛି । ନିଃସ୍ୱାର୍ଥପରତା ହେଉଛି ନିମ୍ନତର ବା ଅଳୀକ ଅହଂକୁ ଅସ୍ୱୀକାର କରିବା । ଆମେ କେବଳ ଶରୀର—ଏହି ଦୁଃଖଦ ସ୍ୱପ୍ନରୁ ଆମମାନଙ୍କୁ ମୁକ୍ତ ହେବାକୁ ପଡ଼ିବ । 'ମୁଁ ବ୍ରହ୍ମ'—ଏହି ସତ୍ୟ ଜାଣିବାକୁ ହେବ । ଆମେମାନେ ପ୍ରତ୍ୟେକେ ପୂର୍ଣ୍ଣ ଅନନ୍ତ ମହାସମୁଦ୍ର; ଜଳବିନ୍ଦୁ ନୋହୁଁ ଯେ ସାଗରରେ ମିଶି ଅସ୍ତିତ୍ୱ ହରାଇବୁ । ମାୟାର ବନ୍ଧନରୁ ମୁକ୍ତ ହେଲେ ଏହି ପୂର୍ଣ୍ଣତ୍ୱ ଓ ଅସୀମତ୍ୱର ଜ୍ଞାନ ଲାଭ କରିବୁ । ଅସୀମକୁ ବିଭକ୍ତ କରାଯାଇପାରିବ ନାହିଁ; 'ଏକମେବାଦ୍ୱିତୀୟମ୍'—ଏକ ଅଦ୍ୱିତୀୟ ବ୍ରହ୍ମ । ଏହି ଜ୍ଞାନ ସମସ୍ତେ ଲାଭ କରିବେ, କିନ୍ତୁ ଏହି ଜ୍ଞାନଲାଭ ପାଇଁ ଆମମାନଙ୍କୁ ପ୍ରାଣପଣେ ଚେଷ୍ଟା କରିବାକୁ ହେବ; କାରଣ ଏହି ଜ୍ଞାନ ଲାଭ ନ କଲେ ଆମେମାନେ ମନୁଷ୍ୟ-ଜାତିର ଶ୍ରେଷ୍ଠ ହିତସାଧନ କରିପାରିବୁ ନାହିଁ । ଜୀବନ୍ମୁକ୍ତ ହିଁ ଯଥାର୍ଥ ପ୍ରେମ ଓ ପ୍ରକୃତ ସତ୍ୟ ବିତରଣ କରିବା ପାଇଁ—ଯଥାର୍ଥ ଦାନ କରିବା ପାଇଁ ସମର୍ଥ; ଏବଂ ସତ୍ୟ ହିଁ ମୁକ୍ତି ଦେଇପାରେ । ବାସନା ଆମମାନଙ୍କୁ କ୍ରୀତଦାସରେ ପରିଣତ କରେ । ଏହି ବାସନା ଗୋଟିଏ ଅତୃପ୍ତ ଦାନବ; ଏହାର କବଳରେ ଯେଉଁମାନେ ପଡ଼ନ୍ତି, ସେମାନଙ୍କର ଶାନ୍ତି ନାହିଁ; କିନ୍ତୁ ଜୀବନ୍ମୁକ୍ତ ଅଦ୍ୱୈତ-ଜ୍ଞାନ ଲାଭ କରି ସମସ୍ତ ବାସନା ଜୟ କରିଛନ୍ତି, ତାଙ୍କର କାମ୍ୟ ଆଉ କିଛି ନାହିଁ ।

ମନ ଆମମାନଙ୍କ ସମ୍ମୁଖରେ ଦେହ, ଯୌନବାସନା, ଜାତି, ବର୍ଣ୍ଣ, ବନ୍ଧନ ଇତ୍ୟାଦିର ମୋହ ଉପସ୍ଥାପିତ କରେ । ସୁତରାଂ ସତ୍ୟର ଅନୁଭୂତ ନ ହେବା ପର୍ଯ୍ୟନ୍ତ ମନକୁ ଅହରହ ଏହି ସତ୍ୟ କହିବାକୁ ହେବ; ଆମେମାନେ ଆନନ୍ଦସ୍ୱରୂପ; ଯାହା କିଛି ସୁଖ ଅନୁଭବ କରିଥାଉ, ତାହା ଏହି ଆନନ୍ଦର ଆଭାସ ମାତ୍ର; ପ୍ରକୃତ-ସ୍ୱରୂପର ସଂସ୍ପର୍ଶରେ ବିନ୍ଦୁମାତ୍ର ଏହି ସୁଖ ଆମେମାନେ ଲାଭ କରିଥାଉଁ । ସେହି ବ୍ରହ୍ମ ସୁଖ-ଦୁଃଖର ଅତୀତ, ସେ ଜଗତର ସାକ୍ଷୀସ୍ୱରୂପ, ଜୀବନଗ୍ରନ୍ଥର ଅପରିବର୍ତ୍ତନୀୟ ପାଠକ; ତାଙ୍କ ସମ୍ମୁଖରେ ଜୀବନଗ୍ରନ୍ଥର ପୃଷ୍ଠାଗୁଡ଼ିକ ଗୋଟିଏ ପରେ ଗୋଟିଏ ଖୋଲିଯାଏ । ଅଭ୍ୟାସରୁ ଯୋଗ, ଯୋଗରୁ ଜ୍ଞାନ, ଜ୍ଞାନରୁ ପ୍ରେମ, ପ୍ରେମରୁ ଆନନ୍ଦର ଉତ୍ପତ୍ତି ।

'ମୁଁ ଓ ମୋର' ଗୋଟିଏ କୁସଂସ୍କାର; ଏହାର ବେଷ୍ଟନୀରେ ଆମେମାନେ ଏତେ କାଳ ରହିଛୁ ଯେ, ଏହାକୁ ତ୍ୟାଗ କରିବା ପ୍ରାୟ ଅସମ୍ଭବ । ତେବେ ସୁଦ୍ଧା

ଉଚ୍ଚତମ ସ୍ତରକୁ ଉଠିବାକୁ ହେଲେ ଏହି କୁସଂସ୍କାର ତ୍ୟାଗ କରିବାକୁ ହେବ । ଆମମାନଙ୍କୁ ଆନନ୍ଦମୟ ଓ ପ୍ରଫୁଲ୍ଲ ହେବାକୁ ପଡ଼ିବ । ଅପ୍ରସନ୍ନ ମୁଖଭାବ ଘେନି ଧର୍ମ-ଲାଭ ହୁଏ ନାହିଁ । ସର୍ବୋତ୍କୃଷ୍ଟ ବୋଲି ଯାବତୀୟ ପାର୍ଥିବ ବସ୍ତୁ ଅପେକ୍ଷା ଧର୍ମ ଅଧିକ ଆନନ୍ଦପ୍ରଦ । କଠୋର ତପଶ୍ଚର୍ଯ୍ୟା ଆମମାନଙ୍କୁ ପବିତ୍ର କରିପାରେ ନାହିଁ । ଈଶ୍ୱର ପ୍ରେମିକ ଓ ପବିତ୍ରାତ୍ମା, କାହିଁକି ବିଷଣ୍ଣ ହେବେ । ସେ ହେବେ ଆନନ୍ଦମୟ ଶିଶୁପରି ପ୍ରକୃତ ଈଶ୍ୱର-ସନ୍ତାନ । ହୃଦୟକୁ ଶୁଦ୍ଧ କରିବା ଧର୍ମର ସାର; ସ୍ୱର୍ଗରାଜ୍ୟ ଆମ-ମାନଙ୍କର ଅନ୍ତରରେ ଅବସ୍ଥିତ । କିନ୍ତୁ ବିଶୁଦ୍ଧାତ୍ମା କେବଳ ରାଜାଧିରାଜଙ୍କ ଦର୍ଶନର ଅଧିକାରୀ । ଜଗତକୁ ଚିନ୍ତା କଲେ ହିଁ ଜଗତ ରହିଯାଏ; ସେ ଜଗତରୂପରେ ପ୍ରକାଶିତ—ଏହି ଭାବରେ ଚିନ୍ତା କଲେ ଆମେମାନେ ଈଶ୍ୱରଲାଭ କରିବୁଁ । ପିତା-ମାତା, ପୁତ୍ର-କନ୍ୟା, ସ୍ୱାମୀ-ସ୍ତ୍ରୀ, ଶତ୍ରୁ-ମିତ୍ର, ବ୍ୟକ୍ତି ବା ବସ୍ତୁ—ସମସ୍ତଙ୍କଠାରେ ଏହି ଈଶ୍ୱରଭାବ ଆରୋପ କରିବାକୁ ହେବ । ଯଦି ଆମେମାନେ ଜ୍ଞାନତଃ ଏହି ଜଗତକୁ ଈଶ୍ୱରମୟ ଦେଖୁଁ—ତାଙ୍କ ବ୍ୟତୀତ ଆଉ କିଛି ଅନୁଭବ ନ କରୁ, ତାହାହେଲେ ଏହି ଜଗତ ଆମମାନଙ୍କ ପକ୍ଷରେ କିପରି ପୃଥକ୍ ଭାବରେ ପ୍ରକାଶିତ ହେବ, ଭାବନ୍ତୁ ତ !—ସେତେବେଳେ ଆମମାନଙ୍କର ସମସ୍ତ ଦୁଃଖ, ସମସ୍ତ ସଂଗ୍ରାମ, ସମସ୍ତ ଯନ୍ତ୍ରଣାର ଚିର ଅବସାନ ହେବ ।

ଜ୍ଞାନ ସାମ୍ପ୍ରଦାୟିକ ଧର୍ମବିଶ୍ୱାସର ଊର୍ଦ୍ଧ୍ୱରେ; କିନ୍ତୁ ତାହା ଧର୍ମବିଶ୍ୱାସକୁ ଘୃଣା କରେ ନାହିଁ । ଜ୍ଞାନଲାଭ କହିଲେ ଧର୍ମମତର ଊର୍ଦ୍ଧ୍ୱରେ ଏକ ଉନ୍ନତ ଅବସ୍ଥା । ଜ୍ଞାନୀ ଧ୍ୱଂସ ଚାହାଁନ୍ତି ନାହିଁ, ବରଂ ସମସ୍ତଙ୍କୁ ସାହାଯ୍ୟ କରିବାକୁ ଇଚ୍ଛା କରନ୍ତି । ନଦୀଜଳ ଯେପରି ସାଗରରେ ମିଶି ଏକ ହୋଇଯାଏ, ଯାବତୀୟ ଧର୍ମ ମଧ୍ୟ ସେହିପରି ଜ୍ଞାନ ସହିତ ମିଳିତ ହୋଇ ଏକାକାର ହୋଇଯାଏ ।

ସକଳ ବସ୍ତୁର ସତ୍ତା ବ୍ରହ୍ମସାପେକ୍ଷ । ବସ୍ତୁତଃ ଏହି ସତ୍ୟ ହୃଦୟଙ୍ଗମ କରିବାକୁ ସମର୍ଥ ହେଲେ, ଯଥାର୍ଥ ସତ୍ୟ କିସ୍ୱତ୍ପରିମାଣରେ ଉପଲବ୍ଧି କରିଛୁ ବୋଲି ବୁଝିପାରିବା । ବୈଷମ୍ୟ-ଦୃଷ୍ଟି ଯେତେବେଳେ ସଂପୂର୍ଣ୍ଣଭାବରେ ଅନ୍ତର୍ହିତ ହେବ, ସେତେବେଳେ ବୋଧ ହେବ—'ମୁଁ ଓ ଜଗତପିତା ଅଭିନ୍ନ' ।

ଭଗବଦ୍‌ଗୀତାରେ ଶ୍ରୀକୃଷ୍ଣ ଜ୍ଞାନର ଅତି ସୁନ୍ଦର ଉପଦେଶ ଦେଇଛନ୍ତି । ଏହି ମହତ୍ କାବ୍ୟଗ୍ରନ୍ଥ ଭାରତୀୟ ସାହିତ୍ୟରତ୍ନରାଜିର ଚୂଡ଼ାମଣିରୂପେ ପରିଗଣିତ । ଏହା ବେଦର ଭାଷ୍ୟସ୍ୱରୂପ । ଏଥିରେ ସ୍ପଷ୍ଟ ବୁଝାଇ ଦିଆଯାଇଛି ଯେ—ଆମମାନଙ୍କୁ ଏହି ଜୀବନରେ ହିଁ ଆଧ୍ୟାତ୍ମିକ ସଂଗ୍ରାମରେ ଜୟୀ ହେବାକୁ ହେବ । ସଂଗ୍ରାମରେ ପୃଷ୍ଠ-ପ୍ରଦର୍ଶନ ନ କରି ସମସ୍ତ ପ୍ରାପ୍ୟ ଆଦାୟ କରିବାକୁ ହେବ । ଗୀତା ଉଚ୍ଚତର ଜୀବନ-ସଂଗ୍ରାମର ରୂପକ ବୋଲି ଯୁଦ୍ଧକ୍ଷେତ୍ର ହିଁ ଗୀତା-ବର୍ଣ୍ଣନାର ସ୍ଥାନରୂପେ ନିର୍ଦ୍ଦିଷ୍ଟ । ଏଥିରେ ଅତି ଉଚ୍ଚାଙ୍ଗର କୃତିତ୍ୱ ପ୍ରକାଶିତ ହୋଇଛି । ବିରୁଦ୍ଧ ଯୁଯୁତ୍ସୁ ଦଳର ଅନ୍ୟତମ ନାୟକ ଅର୍ଜୁନଙ୍କର ସାରଥି-ବେଶରେ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ବିଷଣ୍ଣ ନ ହେବା

ପାଇଁ ଓ ମୃତ୍ୟୁଭୟ ତ୍ୟାଗ କରିବା ପାଇଁ ଉଦ୍‌ବୁଦ୍ଧ କରୁଅଛନ୍ତି । କାରଣ ସେ ଜାଣନ୍ତି ଯେ, ସେ ଅବିନାଶୀ, ଆଉ ଯାହା କିଛି ପରିବର୍ତ୍ତନଶୀଳ, ସମସ୍ତ ମନୁଷ୍ୟର ପ୍ରକୃତ ସ୍ୱରୂପର ବିରୋଧୀ । ବିଭିନ୍ନ ଅଧ୍ୟାୟରେ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ଅତି ଉଚ୍ଚ ଦାର୍ଶନିକ ତତ୍ତ୍ୱ ଶିକ୍ଷା ଦେଉଛନ୍ତି । ଏହି ସମସ୍ତ ଉପଦେଶ ଗୀତାକୁ ପରମାଶ୍ଚର୍ଯ୍ୟ କାବ୍ୟଗ୍ରନ୍ଥରେ ପରିଣତ କରିଛି । ପ୍ରକୃତପକ୍ଷରେ ସମଗ୍ର ବେଦାନ୍ତ-ଦର୍ଶନ ଗୀତାରେ ନିବଦ୍ଧ । ବେଦର ଶିକ୍ଷା ଏହି ଯେ ଆତ୍ମା ଅବିନାଶୀ, ଦେହର ମୃତ୍ୟୁରେ ଆତ୍ମା ବିକୃତ ହୁଏ ନାହିଁ । ବୃତ୍ତସଦୃଶ ଆତ୍ମାର ପରିଧି କୌଣସିଠାରେ ନାହିଁ, କେନ୍ଦ୍ର ଜୀବ ଦେହରେ । ତଥାକଥିତ ମୃତ୍ୟୁ ଏହି କେନ୍ଦ୍ରର ପରିବର୍ତ୍ତନ ମାତ୍ର । ଈଶ୍ୱର ଗୋଟିଏ ବୃତ୍ତ, ଏହି ବୃତ୍ତର ପରିଧି କୌଣସିଠାରେ ନାହିଁ, କିନ୍ତୁ କେନ୍ଦ୍ର ସର୍ବତ୍ର । ଯେତେବେଳେ ଆମେମାନେ ଏହି ସଂକୀର୍ଣ୍ଣ ଦେହରୂପକ କେନ୍ଦ୍ରରୁ ବାହାରକୁ ଯାଇପାରୁ, ସେତେବେଳେ ଆମମାନଙ୍କର ପ୍ରକୃତ ସ୍ୱରୂପ -- ଏହି ଈଶ୍ୱର ଉପଲବ୍ଧ ହୁଅନ୍ତି ।

ବର୍ତ୍ତମାନ କାଳ ଅତୀତ ଓ ଭବିଷ୍ୟତର ସୀମାରେଖା, ଭେଦ-ପରିସୂଚକ ରେଖାମାତ୍ର, ସୁତରାଂ ଅତୀତ ଓ ଭବିଷ୍ୟତଠାରୁ ବର୍ତ୍ତମାନର କୌଣସି ସ୍ୱତନ୍ତ୍ର ଅସ୍ତିତ୍ୱ ନାହିଁ ବୋଲି କେବଳ ବର୍ତ୍ତମାନ ହିଁ ଗ୍ରାହ୍ୟ—ଏ ବିଷୟ ନିର୍ବିଘ୍ନରେ କହିପାରିବା ନାହିଁ । ଏହି ତିନି କାଳ ଏକତ୍ର ମିଶି ଏକ ଅଖଣ୍ଡ ସମଷ୍ଟି । ସମୟ ସମ୍ବନ୍ଧରେ ଆମମାନଙ୍କର ଧାରଣା ଏହି ଯେ, ଏହା ଆମମାନଙ୍କର ବୁଦ୍ଧିବୃତ୍ତି ଅନୁଯାୟୀ ଆରୋପିତ ଗୋଟିଏ ଅବସ୍ଥା ମାତ୍ର ।

( ୩ )

ଜ୍ଞାନର ଶିକ୍ଷା ଏହି ଯେ ସଂସାର ଛାଡ଼ିବାକୁ ହେବ, କିନ୍ତୁ ତାହା ବୋଲି ସଂସାର ତ୍ୟାଗ କରି ଅନ୍ୟତ୍ର ପ୍ରସ୍ଥାନ କରିବ ନାହିଁ । ସନ୍ନ୍ୟାସୀ ସଂସାରରେ ରହିବେ, କିନ୍ତୁ ସଂସାରର ହେବେ ନାହିଁ—ଏହା ହିଁ ଚରମ ପରୀକ୍ଷା । ଏହିପରି ତ୍ୟାଗର ଧାରଣା ଯେକୌଣସି ଆକାରରେ ହେଉନା କାହିଁକି ସବୁ ଧର୍ମରେ ସ୍ଥାନ ପାଇଛି । ଆମମାନଙ୍କ ନିକଟରେ ଜ୍ଞାନର ଦାବୀ ଏହି ଯେ, ଆମେମାନେ କେବଳ 'ସମତ୍ୱ' ଦେଖିବୁ, ସମଦର୍ଶୀ ହେବୁ । ନିନ୍ଦା-ସ୍ତୁତି, ଭଲ-ମନ୍ଦ, ଏପରି କି ଶୀତ-ଉଷ୍ଣ ମଧ୍ୟ ସମଭାବରେ ଆମମାନଙ୍କୁ ଗ୍ରହଣ କରିବାକୁ ହେବ । ଭାରତରେ ଏପରି ଅନେକ ସାଧୁ ଅଛନ୍ତି, ଯେଉଁମାନଙ୍କଠାରେ ଏହା ଅକ୍ଷରେ ଅକ୍ଷରେ ସତ୍ୟ । ସଂପୂର୍ଣ୍ଣ ଅନାବୃତ ଦେହ ଓ ଆପାତତଃ ଶୀତଉଷ୍ଣ-ବୈଷମ୍ୟବୋଧହୀନ ଅବସ୍ଥାରେ ତୁଷାର-ମଣ୍ଡିତ ହିମାଳୟଶୃଙ୍ଗରେ ଅଥବା ଉତ୍ତପ୍ତ ମରୁଭୂମିରେ ସେମାନେ ଭ୍ରମଣ କରିଥାଆନ୍ତି ।

ଆମେମାନେ ଶରୀର ନୋହୁଁ—ଶରୀର ସମ୍ବନ୍ଧରେ ଭ୍ରାନ୍ତ ଧାରଣା ସର୍ବାଗ୍ରେ ତ୍ୟାଗ କରିବାକୁ ହେବ । ତାପରେ ମନ ସମ୍ବନ୍ଧରେ ଭ୍ରାନ୍ତ ଧାରଣା ମଧ୍ୟ ଛାଡ଼ିବାକୁ ହେବ । ଆମେମାନେ ମନ ନୋହୁଁ; ଏହି ମନ 'ରେଶମ ପରି ସୂକ୍ଷ୍ମ'

ଶରୀର ମାତ୍ର, ଆତ୍ମାର କୌଣସି ଅଂଶ ନୁହେଁ । ପ୍ରାୟ ସମସ୍ତ ପଦାର୍ଥ ସମ୍ବନ୍ଧରେ ପ୍ରଯୋଜ୍ୟ ଏହି 'ଶରୀର' ଶବ୍ଦଟିଦ୍ୱାରା ସବୁ ଜିନିଷର ଗୋଟିଏ ସାଧାରଣ ନାମ ବୁଝାଯାଏ । ଏହା ହିଁ ଅସ୍ତିତ୍ୱ । ଏହି ଶରୀର ତାହାର ଅନ୍ତରାଳରେ ଅବସ୍ଥିତ ଚନ୍ତାର ପ୍ରତୀକ, ପୁଣି ଚନ୍ତାସମୂହ ସ୍ୱୟଂ ସେମାନଙ୍କ ପଶ୍ଚାତ୍ତରେ ଅବସ୍ଥିତ କାହାର ପ୍ରତୀକ— ଯାହାକି ପାରମାର୍ଥିକ ସତ୍ତା, ଆମମାନଙ୍କର ଆତ୍ମାର ଆତ୍ମା, ବିଶ୍ୱାତ୍ମା, ପ୍ରାଣର ପ୍ରାଣ, ଆମମାନଙ୍କର ଯଥାର୍ଥ ସ୍ୱରୂପ । ଯେତେଦିନ ପର୍ଯ୍ୟନ୍ତ ଈଶ୍ୱରଙ୍କଠାରୁ ଆମମାନଙ୍କର ଅଣୁମାତ୍ର ପୃଥକ୍-ଅସ୍ତିତ୍ୱ-ଜ୍ଞାନ ରହିଥିବ, ସେତେଦିନ ପର୍ଯ୍ୟନ୍ତ ଭୟ ଥିବ । ଯେତେ-ବେଳେ ଆମେ ଜାଣିବା ଯେ, ଆମେ ନିଜେ ସେହି ଅଦ୍ୱିତୀୟ ବ୍ରହ୍ମ, ସେତେବେଳେ ସମସ୍ତ ଭୟ ଦୂର ହେବ । ଆମେ ଆଉ କାହାକୁ ଭୟ କରିବା ? କେବଳ ଇଚ୍ଛାଶକ୍ତି ସହାୟରେ ଜ୍ଞାନୀ ଦେହମନର ଅତୀତ ଅବସ୍ଥା ଲାଭ କରି ଏହି ବିଶ୍ୱକୁ ଶୂନ୍ୟରେ ପରିଣତ କରନ୍ତି । ଏହିଭାବରେ ଅବିଦ୍ୟା ନାଶ କରି ସେ ତାଙ୍କର ଯଥାର୍ଥ ସ୍ୱରୂପ ଆତ୍ମାକୁ ଜାଣନ୍ତି । ସୁଖ ଦୁଃଖ କେବଳ ଇନ୍ଦ୍ରିୟଜନିତ, ଏଗୁଡ଼ିକ ଆମମାନଙ୍କର ପ୍ରକୃତ ସ୍ୱରୂପକୁ ସ୍ପର୍ଶ କରିପାରେ ନାହିଁ । ଆତ୍ମା ଦେଶ-କାଳ-ନିମିତ୍ତର ଅତୀତ, ସେଥିଯୋଗୁଁ ଅପରିଚ୍ଛିନ୍ନ ଓ ସର୍ବତ୍ର ବିରାଜମାନ ।

ଜ୍ଞାନୀ ସମସ୍ତ ନାମରୂପର ଊର୍ଦ୍ଧ୍ୱକୁ ଉଠି ସ୍ମୃତିର ଅନୁଶାସନ ଓ ଧର୍ମଶାସ୍ତ୍ରର ଅତୀତ ହୋଇ ନିଜେ ନିଜର ଶାସ୍ତ୍ର ହେବେ । ନାମରୂପ ମଧ୍ୟରେ ଆମେମାନେ ଜଡ଼ୀଭୂତ ହୋଇ ମୃତ୍ୟୁବରଣ କରିଥାଉ । ତେବେ ଯୁଦ୍ଧା ଯେଉଁମାନେ ନାମରୂପ ଅତିକ୍ରମ କରିବାକୁ ଅସମର୍ଥ, ଜ୍ଞାନୀ ସେମାନଙ୍କର ଦୋଷ ଦେଖିବେ ନାହିଁ, ଏପରି କି 'ମୁଁ ତୁମ ଅପେକ୍ଷା ପବିତ୍ର'—ଅନ୍ୟ ସମ୍ବନ୍ଧରେ ଜ୍ଞାନୀ କେବେହେଁ ଏପରି ମନେ କରିବେ ନାହିଁ ।

ଏହିଗୁଡ଼ିକ ପ୍ରକୃତ ଜ୍ଞାନଯୋଗୀର ଲକ୍ଷଣ : (୧) ଜ୍ଞାନୀ ଜ୍ଞାନ ଛଡ଼ା ଆଉ କିଛି ଆକାଙ୍କ୍ଷା କରନ୍ତି ନାହିଁ । (୨) ତାଙ୍କର ସମସ୍ତ ଇନ୍ଦ୍ରିୟ ସମ୍ପୂର୍ଣ୍ଣ ବଶୀଭୂତ । ଉନ୍ମୁକ୍ତ ଆକାଶ ତଳେ ଅନାବୃତ ଧରା ତାଙ୍କର ଶଯ୍ୟା ହୋଇଥାଉ ବା ରାଜ-ପ୍ରାସାଦରେ ସେ ଅବସ୍ଥାନ କରୁଥାଆନ୍ତୁ, ଉଭୟ ଅବସ୍ଥାରେ ତୁଲ୍ୟ ସୁଖୀ ହୋଇ, ଅସନ୍ତୋଷ ପ୍ରକାଶ ନ କରି ସବୁ ଅବସ୍ଥା ସେ ସମଭାବରେ ଭୋଗ କରିଥାଆନ୍ତି । କାରଣ ଆତ୍ମା-ବ୍ୟତିରିକ୍ତ ସମସ୍ତ ବିଷୟରୁ ସେ ତାଙ୍କର ମନକୁ ଦୂରରେ ରଖିଛନ୍ତି; ସେଥିଯୋଗୁ ଦୁଃଖକଷ୍ଟର କବଳରୁ ଓହରି ଯିବାର ଚେଷ୍ଟା ନ କରି ସେଗୁଡ଼ିକର ସମ୍ମୁଖୀନ ହୋଇ ଦୁଃଖକଷ୍ଟ ସହ୍ୟ କରନ୍ତି । (୩) ଜ୍ଞାନୀ ବୁଝିଛନ୍ତି—ବ୍ରହ୍ମ ବ୍ୟତୀତ ଆଉ ସବୁ ଅସତ୍ (୪) ମୁକ୍ତିଲାଭ ପାଇଁ ତାଙ୍କର ତୀବ୍ର ଆକାଙ୍କ୍ଷା ଥାଏ । ପ୍ରବଳ ଇଚ୍ଛାଶକ୍ତି-ସାହାଯ୍ୟରେ ମନକୁ ଉଚ୍ଚ ବିଷୟରେ ନିବିଷ୍ଟ କରି ସେ ଶାନ୍ତିର ଅଧିକାରୀ ହୁଅନ୍ତି । ଶାନ୍ତିଲାଭ ନ କରିପାରିଲେ ଆମେମାନେ ପଶୁ ଅପେକ୍ଷା ଅଧିକ ଉନ୍ନତ କିପରି ? ସର୍ବକର୍ମଫଳ ବିସର୍ଜନ କରି ଇହକାଳ ଅଥବା ପରକାଳର ଫଳାକାଙ୍କ୍ଷା-

ରହିତ ହୋଇ ଜ୍ଞାନୀ ପରାର୍ଥେ ଓ ଈଶ୍ୱରାର୍ଥେ କର୍ମ ସମ୍ପାଦନ କରନ୍ତି । ଆତ୍ମଜ୍ଞାନ ବ୍ୟତୀତ ଜଗତ ଆମମାନଙ୍କୁ ଆଉ କଅଣ ଦେଇପାରେ ? ଆତ୍ମଜ୍ଞାନଲାଭ ହେଲେ ଆମର ସବୁ ମିଳିଗଲା । ବେଦର ଶିକ୍ଷା ଏହି ଯେ, ଆତ୍ମା ଏକ ଅଖଣ୍ଡ ସତ୍ତା । ଏହି ଆତ୍ମା, ଆମେ ଜାଣିଛେ—ମନ, ସ୍ମୃତି, ଚିନ୍ତା ଓ ଚେତନାର ମଧ୍ୟ ଅତୀତ । ସମସ୍ତ ଆତ୍ମ-ପ୍ରସୂତ । ଆତ୍ମାର ମାଧ୍ୟମରେ ଅଥବା ଆତ୍ମା ଅଛନ୍ତି ବୋଲି ଆମେମାନେ ଦେଖୁ, ଶୁଣୁ, ଅନୁଭବ କରୁ ଏବଂ ଚିନ୍ତା କରୁ । ଓଁ—ଏହି ଅଦ୍ୱିତୀୟ ସତ୍ତା ସହିତ ଏକତ୍ୱ ଉପଲବ୍ଧି ହିଁ ଜଗତର ଲକ୍ଷ୍ୟ । ଜ୍ଞାନୀଙ୍କୁ ସମସ୍ତ ଧର୍ମୀୟ ମତବାଦରୁ ମୁକ୍ତ ରହିବାକୁ ହେବ; ସେ ହିନ୍ଦୁ, ବୌଦ୍ଧ ବା ଖ୍ରୀଷ୍ଟିୟାନ ନୁହନ୍ତି, କିନ୍ତୁ ସେ ଏକାଧାରରେ ଏହିସମସ୍ତ । ତାଙ୍କର ସମସ୍ତ କର୍ମ ପରିତ୍ୟକ୍ତ ହୋଇ ଈଶ୍ୱରଙ୍କଠାରେ ନିବେଦିତ ହୁଏ; ତେଣୁ କର୍ମର ଆବଦ୍ଧ କରିବା ଶକ୍ତି ଆଉ ନ ଥାଏ । ଜ୍ଞାନୀ କଠୋର ବିଶୁଦ୍ଧିବାଦୀ, ସେ ସବୁକୁ ଅସ୍ୱୀକାର କରନ୍ତି । ସେ ଦୃଢ଼ତାର ସହିତ ମନେ ମନେ କହନ୍ତି, 'ଧର୍ମ-ବିଶ୍ୱାସ ନାହିଁ, ମନ୍ତ୍ରତନ୍ତ୍ର ନାହିଁ, ସ୍ୱର୍ଗନରକ ନାହିଁ, ଧର୍ମମତ ନାହିଁ, ମନ୍ଦିର ନାହିଁ—କେବଳ ଆତ୍ମା ହିଁ ରହିଛି ।' ସବୁବସ୍ତୁ ପରିହାର କରି ଯେଉଁ ଅପରିହାର୍ଯ୍ୟ ପରମତତ୍ତ୍ୱ ଲାଭ ହୁଏ, ତାହା ହିଁ ଆତ୍ମା । ଜ୍ଞାନୀ କୌଣସି ବିଷୟ ଦେଇ ବୋଲି ଗ୍ରହଣ କରନ୍ତି ନାହିଁ । ସମସ୍ତ ଆପେକ୍ଷିକତାର ବିଲୋପ ବା ନିର୍ବାଣ ଲାଭ ନ ହେବା ପର୍ଯ୍ୟନ୍ତ ସେ ଶୁଦ୍ଧ ବିଚାର ଓ ଇଚ୍ଛାଶକ୍ତିଦ୍ୱାରା ବିଶ୍ଳେଷଣ କରିଥା'ନ୍ତି । ଏହି ଅବସ୍ଥାର ବର୍ଣ୍ଣନା ବା ଧାରଣା ଅସମ୍ଭବ । କୌଣସି ପାର୍ଥିବ ଫଳ ଦ୍ୱାରା ଜ୍ଞାନର ବିଚାର ହୁଏ ନାହିଁ । ଶାଗୁଣା ଯେପରି ବହୁ ଊର୍ଦ୍ଧ୍ୱକୁ ଉଠି ଅଦୃଶ୍ୟ ହେଲେ ମଧ୍ୟ ସାମାନ୍ୟ ମଡ଼ାମାଂସ ଦେଖି ସବେଗରେ ଓହ୍ଲାଇ ଆସିବାକୁ ସର୍ବଦା ଉଦ୍ୟତ ହୁଏ—ସେପରି ହୁଅ ନାହିଁ । ସ୍ୱାସ୍ଥ୍ୟ ବା ପରମାୟୁ ବା ସମ୍ପଦ—କିଛି ଭିକ୍ଷା କର ନାହିଁ, କେବଳ ମୁକ୍ତିକାମୀ ହୁଅ । ଆମେମାନେ ସଚ୍ଚିଦାନନ୍ଦ । ଆମେ ଜାଣୁ, ସତ୍ ବା ଅସ୍ତିତ୍ୱ ଜଗତର ସର୍ବଶେଷ ସାମାନ୍ୟୀକରଣ ହୋଇଥିବାରୁ ଆମର ଅସ୍ତିତ୍ୱ ଅଛି । ଆନନ୍ଦ ହେଲା ଅସ୍ତିତ୍ୱର ଅବିମିଶ୍ର ସ୍ୱାଭାବିକ ଫଳ । ବେଳେ ବେଳେ ମୁହୂର୍ତ୍ତିକ ପାଇଁ ଆମେମାନେ ସେହି ପରମାନନ୍ଦ ଅନୁଭବ କରୁ; ସେତେବେଳେ ଆନନ୍ଦ ବ୍ୟତୀତ ଆମେମାନେ ଅନ୍ୟ କିଛି ମାଗୁନାହିଁ, କିଛି ଦେଉନାହିଁ ଏବଂ କିଛି ଜାଣୁନାହିଁ । ତାପରେ ଏ ଆନନ୍ଦ ଅନ୍ତର୍ହିତ ହୁଏ, ପୁଣି ଜଗତର ସମଗ୍ର ଦୃଶ୍ୟ ଚକ୍ଷୁ ସମ୍ମୁଖକୁ ଆସେ ଏବଂ ଆମେମାନେ ଅନୁଭବ କରୁ, 'ଏ ବିଶ୍ୱ-ଛବି ସର୍ବାଶ୍ରୟ ଈଶ୍ୱରଙ୍କ ଉପରେ ବିନ୍ୟସ୍ତ ଶିଳ୍ପରଚନା ମାତ୍ର; ସଂସାରକୁ ଫେରି ଆସି ପାରମାର୍ଥିକ ସତ୍ତାକୁ ଆପେକ୍ଷିକ ସତ୍ତାରୂପେ ହିଁ ଦେଖୁ—ସେତେବେଳେ ସଚ୍ଚିଦାନନ୍ଦଙ୍କୁ 'ପିତା, ପୁତ୍ର ଓ ପବିତ୍ରାତ୍ମା' ଏହି ତ୍ରିମୂର୍ତ୍ତିରୂପେ ଦେଖୁ । ସତ୍ ଅର୍ଥାତ୍ ସୃଜନୀଶକ୍ତି, ଚିତ୍ ପରି-ଚାଳିକା ଶକ୍ତି, ଆନନ୍ଦ ଆତ୍ମାନୁଭବ ଶକ୍ତି, ଯାହାକି ଆମମାନଙ୍କୁ ପୁଣି ସେହି ଏକ ବ୍ରହ୍ମ ସହିତ ଯୁକ୍ତ କରେ । ଜ୍ଞାନ ବା ଚିତ୍ ବ୍ୟତୀତ 'ସତ୍'କୁ କେହି ଉପଲବ୍ଧି କରି

ପାରନ୍ତି ନାହିଁ । ଏଥିପାଇଁ ଖ୍ରୀଷ୍ଟଙ୍କ ଦମ୍ଭୋକ୍ତି : 'କେହି ପରମପିତାଙ୍କୁ ପୁତ୍ରର ମାଧ୍ୟମ ବ୍ୟତୀତ ଦର୍ଶନ କରିପାରେ ନାହିଁ ।' ବେଦାନ୍ତର ଶିକ୍ଷା ଏହି ଯେ, ଇହଲୋକରେ ଏବଂ ଏହି ଦେହରେ ନିର୍ବାଣଲାଭ କରାଯାଏ; ନିର୍ବାଣଲାଭ କରିବା ପାଇଁ ମୃତ୍ୟୁ ପର୍ଯ୍ୟନ୍ତ ପ୍ରତୀକ୍ଷାର ପ୍ରୟୋଜନ ନାହିଁ । ନିର୍ବାଣ ଅର୍ଥ ଆତ୍ମାନୁଭୂତି । ମୁହୂର୍ତ୍ତିକ ପାଇଁ ମଧ୍ୟ ଆତ୍ମାନୁଭୂତି ଲାଭ ହେଲେ ବ୍ୟକ୍ତିତ୍ୱବର ମରୀଚିକାଦ୍ୱାରା ଆଉ ସମ୍ମୋହିତ ହେବାକୁ ପଡ଼ିବ ନାହିଁ । ଚକ୍ଷୁ ଥିବାଯାଏ ଜଗତ-ପ୍ରପଞ୍ଚ ଆମମାନଙ୍କର ଦୃଷ୍ଟିରେ ପଡ଼ିବ; କିନ୍ତୁ ଏହାର ସ୍ୱରୂପ ଆମେ ଜାଣୁ ଓ ଏହାର ଯଥାର୍ଥ ପ୍ରକୃତି ସର୍ବଦା ବୁଝୁ । ଏହି ଜଗତ-ରୂପକ ଆବରଣ ହିଁ ଅବିକାରୀ ଆତ୍ମାକୁ ଆବୃତ କରି ରଖିଛି । ଏହି ଆବରଣ ଅପସାରିତ ହେଲେ ଆତ୍ମଦର୍ଶନ ହୁଏ । ସମସ୍ତ ପରିବର୍ତ୍ତନ ଏହି ଆବରଣରେ ସଂଘଟିତ ହୁଏ, ଆତ୍ମାରେ ନୁହେଁ । ସାଧୁ ନିକଟରେ ଏହି ଆବରଣ ଅତି ସୂକ୍ଷ୍ମ, ଏହା ଭିତର ଦେଇ ବାସ୍ତବ ସତ୍ତା ପ୍ରାୟ ସଂପୂର୍ଣ୍ଣ ପ୍ରକାଶିତ ହୋଇପାରେ, କିନ୍ତୁ ପାପୀ ନିକଟରେ ଏହି ଆବରଣ ଅତି ସ୍ଥୂଳ; ସୁତରାଂ ଆମେ ଭୁଲିଯାଉ ଯେ, ପାପୀ ମଧ୍ୟରେ ଯେଉଁ ଆତ୍ମା ଅଛନ୍ତି ସାଧୁ ମଧ୍ୟରେ ବି ସେହି ଆତ୍ମା ରହିଛନ୍ତି ।

ଏକତ୍ୱରେ ଉପନୀତ ହେଲେ ସବୁ ବିଚାରର ସମାପ୍ତି ହୁଏ, ସୁତରାଂ ଆମେମାନେ ପ୍ରଥମତଃ ବିଶ୍ଳେଷଣ (analysis) ଏବଂ ତା'ପରେ ସଂଶ୍ଳେଷଣ (synthesis) ଅବଲମ୍ବନ କରିଥାଉ । ବିଜ୍ଞାନରାଜ୍ୟରେ ଗୋଟିଏ ଅନ୍ତର୍ନିହିତ ପ୍ରାକୃତିକ ଶକ୍ତିର ଅନୁସନ୍ଧାନରେ ଶକ୍ତିସମୂହର ସନ୍ନିବେଶ ହୁଏ । ଚରମ ଏକତ୍ୱକୁ ପୂର୍ଣ୍ଣ ଭାବରେ ଉପଲବ୍ଧି କରିପାରିଲେ ହିଁ ଜଡ଼ବିଜ୍ଞାନ ଲକ୍ଷ୍ୟରେ ଉପନୀତ ହୁଏ । ଏକତ୍ୱରେ ପହଞ୍ଚିଲେ ଆମମାନଙ୍କର ବିଶ୍ରାମ, ଜ୍ଞାନ ହିଁ ଚରମ ଅବସ୍ଥା ।

ସକଳ ବିଜ୍ଞାନର ଶ୍ରେଷ୍ଠ ଧର୍ମବିଜ୍ଞାନ ବହୁପୂର୍ବରୁ ସେହି ଏକତ୍ୱ ଆବିଷ୍କାର କରିଛି, ସେହି ଅଦ୍ୱୈତ-ତତ୍ତ୍ୱରେ ଉପନୀତ ହେବା ହିଁ ଜ୍ଞାନଯୋଗର ଲକ୍ଷ୍ୟ । ବିଶ୍ୱମୟ ଏକ ପରମାତ୍ମା ବିରାଜ କରୁଛନ୍ତି, କ୍ଷୁଦ୍ର ଜୀବାତ୍ମାଗୁଡ଼ିକ ତାଙ୍କର ଅଭିବ୍ୟକ୍ତି ମାତ୍ର; ଅତଏବ ପରମାତ୍ମା ତାଙ୍କର ଅଭିବ୍ୟକ୍ତିଗୁଡ଼ିକ ଅପେକ୍ଷା ଅନନ୍ତ ଗୁଣରେ ବୃହତ୍ । ସବୁ ହିଁ ପରମାତ୍ମା ବା ବ୍ରହ୍ମ । ସାଧୁ, ପାପୀ, ମେଷ, ବ୍ୟାଘ୍ର—ଏପରିକି ହତ୍ୟାକାରୀ ପର୍ଯ୍ୟନ୍ତ ପରମାର୍ଥ ଦୃଷ୍ଟିରେ ବ୍ରହ୍ମ ଭିନ୍ନ ଆଉ କିଛି ନୁହେଁ, ଯେହେତୁ ବ୍ରହ୍ମ ବ୍ୟତୀତ ଅନ୍ୟ କିଛିର ଅସ୍ତିତ୍ୱ ନାହିଁ । 'ଏକଂ ସଦ୍‌ବିପ୍ରା ବହୁଧା ବଦନ୍ତି'—ଏକ ସତ୍‌ବସ୍ତୁ ବିଦ୍ୟମାନ, ଋଷିମାନେ ତାଙ୍କୁ ବିଭିନ୍ନ ଭାବରେ ଅଭିହିତ କରିଛନ୍ତି । ଏହି ଜ୍ଞାନ ବ୍ୟତୀତ ଉତ୍କୃଷ୍ଟ ଅନ୍ୟ କିଛି ନାହିଁ ଏବଂ ଯୋଗଦ୍ୱାରା ବିଶୁଦ୍ଧଚିତ୍ତ ବ୍ୟକ୍ତିଠାରେ ଏହି ଜ୍ଞାନର ଆଲୋକ ଉଦ୍ଭାସିତ ହୁଏ । ଯେ ଯେତେ ବେଶୀ ଏହି ଯୋଗ ଓ ଧ୍ୟାନଦ୍ୱାରା ବିଶୁଦ୍ଧ ଓ ଯୋଗ୍ୟ ହୋଇଛନ୍ତି, ଆତ୍ମାନୁଭୂତିର ଆଲୋକ ତାଙ୍କ ନିକଟରେ ସେତେ ଅଧିକ ପରିସ୍ଫୁଟ । ଏହି ଉତ୍କୃଷ୍ଟ ଜ୍ଞାନ ଚାରିସହସ୍ର ବର୍ଷ ପୂର୍ବେ ଆବିଷ୍କୃତ ହୋଇଛି, କିନ୍ତୁ ଅତି ଅଳ୍ପ କେତେଜଣ ମାତ୍ର ଏହାର ଅଧିକାରୀ ହୋଇପାରିଛନ୍ତି; ଅଦ୍ୟାବଧି

ଏହା ଜାଗତିକ ସମ୍ପତ୍ତିରୂପେ ପରିଣତ ହୋଇପାରି ନାହିଁ ।

( ୪ )

ତଥାକଥିତ ମନୁଷ୍ୟନାମଧାରୀ ସମସ୍ତ ବ୍ୟକ୍ତି ପ୍ରକୃତ 'ମନୁଷ୍ୟ' ଆଖ୍ୟାର ଯୋଗ୍ୟ ନୁହନ୍ତି । ପ୍ରତ୍ୟେକେ ନିଜର ମନଦ୍ୱାରା ଏହି ଜଗତକୁ ବିଗ୍ରହ କରିଥାଆନ୍ତି । ଜଗତ ସମ୍ବନ୍ଧରେ ଉଚ୍ଚତର ଧାରଣା ଅତ୍ୟନ୍ତ କଠିନ । ଅଧିକାଂଶ ବ୍ୟକ୍ତିଙ୍କ ନିକଟରେ ସୂକ୍ଷ୍ମ ତତ୍ତ୍ୱ ଅପେକ୍ଷା ଜାଗତିକ ବସ୍ତୁ ଅଧିକ ଗ୍ରାହ୍ୟ । ଦୃଷ୍ଟାନ୍ତସ୍ୱରୂପ ବୋମ୍ବାଇର ଦୁଇଜଣ ବ୍ୟକ୍ତିଙ୍କ ସମ୍ବନ୍ଧରେ ଗୋଟିଏ ଗଳ୍ପ ପ୍ରଚଳିତ ଅଛି । ତାଙ୍କ ମଧ୍ୟରେ ଜଣେ ହିନ୍ଦୁ, ଅନ୍ୟ ଜଣକ ଜୈନ । ଏହି ନଗରର ଜଣେ ଧନୀଙ୍କ ଗୃହରେ ବସି ଉଭୟେ ଶତରଞ୍ଜ ଖେଳୁଥିଲେ । ଘରଟି ସମୁଦ୍ରକୂଳରେ । ଖେଳ ଅନେକବେଳ ପର୍ଯ୍ୟନ୍ତ ଚାଲିଛି । ଯେଉଁଠାରେ ବସି ସେମାନେ ଖେଳୁଥିଲେ, ତା'ର ତଳଭାଗରେ ସମୁଦ୍ରର ଜୁଆରଭଟ୍ଟା ସେମାନଙ୍କର ଦୃଷ୍ଟି ଆକର୍ଷଣ କରିବାରୁ ସେମାନଙ୍କ ମଧ୍ୟରୁ ଜଣେ ଜୁଆର--ଭଟ୍ଟାକୁ ପୌରାଣିକ ଭାବରେ ବ୍ୟାଖ୍ୟା କରି କହିଲେ, 'ଦେବତାମାନେ ଗୋଟାଏ ଗର୍ତ୍ତ ମଧ୍ୟରେ ଏହି ଜଳକୁ ଭର୍ତ୍ତି କରି ସେଠାରୁ ପୁନରାୟ ଉତ୍ତୋଳନ କରୁଛନ୍ତି । ବାରମ୍ବାର ଏହିପରି କରି ସେମାନେ ଖେଳୁଛନ୍ତି ।' ଅନ୍ୟ ବ୍ୟକ୍ତି କହିଲେ, 'ନା, ତାହା ନୁହେଁ, ଏହି ଜଳକୁ ଦେବତାମାନେ ନିଜର ବ୍ୟବହାରର ଉପଯୋଗୀ କରିବା ଉଦ୍ଦେଶ୍ୟରେ ଗୋଟିଏ ପର୍ବତ ଉପରକୁ ଉଠାଇ ନେଇ ତାର ବ୍ୟବହାର ପରେ ପୁନରାୟ ତାଳି ଦେଉଛନ୍ତି ।' ସେଠାରେ ଜଣେ ଯୁବକ-ଛାତ୍ର ଥିଲେ । ସେ ବିଦ୍ରୂପ କରି କହିଲେ, 'ଆପଣମାନେ କଅଣ ଜାଣନ୍ତି ନାହିଁ, ଚନ୍ଦ୍ରର ଆକର୍ଷଣରେ ଏହି ଜୁଆର-ଭଟ୍ଟା ହୁଏ ?' ଏହା ଶୁଣି ଭଦ୍ରଲୋକ ଦୁଇଜଣ କ୍ରୁଦ୍ଧ ହୋଇ ତାହା ଆଡ଼କୁ ଅନାଇଁଲେ—ସେ କଅଣ ମନେ କରେ ଯେ, ସେ ଦୁଇଜଣ ନିର୍ବୋଧ, ସେମାନେ କଅଣ ବିଶ୍ୱାସ କରିବେ ଯେ ଚନ୍ଦ୍ର ରଜ୍ଜୁଦ୍ୱାରା ଜୁଆରକୁ ଟାଣିନେଇ ପାରିବ—ଆଉ ତାହା ପୁଣି ଏତେ ଦୂରକୁ ! ଏପରି ଅଯଥା ବ୍ୟାଖ୍ୟା ମାନିବା ପାଇଁ ସେମାନେ ଆଦୌ ରାଜି ହେଲେ ନାହିଁ । ଏପରି ସମୟରେ ଗୃହସ୍ୱାମୀ ଉପସ୍ଥିତ ହେବାରୁ ଉଭୟ ପକ୍ଷ ମୀମାଂସା ସକାଶେ ତାଙ୍କୁ ମଧ୍ୟସ୍ଥ ମାନିଲେ । ସେ ଶିକ୍ଷିତ ବୋଲି ଏ ରହସ୍ୟ ଅବଗତ ଥିଲେ; କିନ୍ତୁ ଶତରଞ୍ଜଖେଳାଳୀ ଦୁଇଜଣଙ୍କୁ ଏବିଷୟରେ ବୋଧ ଜନ୍ମାଇବା କଠିନ ବୁଝିପାରି ଯୁବକଟିକୁ ନିରସ୍ତ ହେବା ପାଇଁ ଇଙ୍ଗିତ କଲେ ଏବଂ ଜୁଆର-ଭଟ୍ଟାର କାରଣ ସମ୍ବନ୍ଧରେ ଏପରି ବ୍ୟାଖ୍ୟା ଦେଲେ ଯାହା ମୂର୍ଖ ଶ୍ରୋତା ଦୁଇଜଣଙ୍କର ଗ୍ରହଣଯୋଗ୍ୟ ହେବ— ଆପଣମାନେ ନିଶ୍ଚୟ ଜାଣିଥିବେ ଯେ, ବହୁ-ଦୂରରେ ମହାସାଗରର ଠିକ୍ ମଧ୍ୟସ୍ଥଳରେ ଗୋଟିଏ ସ୍ପଞ୍ଜର (sponge) ପାହାଡ଼ ଅଛି । ଆପଣ ସ୍ପଞ୍ଜ ଦେଖିଛନ୍ତି ଏବଂ ମୁଁ ଯେଉଁ ବିଷୟ ବୁଝାଇବାକୁ ଯାଉଛି, ତାହା ଆପଣମାନେ ବୁଝିପାରିବେ । ଏହି ସ୍ପଞ୍ଜ-ପାହାଡ଼ ସାଗରର ଜଳ ଶୋଷଣ କରି-

ନେଲେ ଭଟ୍ଟାର ଉତ୍ପତ୍ତି ହୁଏ; କମେ ଦେବତାମାନେ ଅବତରଣ କରି ଏହି ପର୍ବତ ଉପରେ ନୃତ୍ୟ ଆରମ୍ଭ କଲେ ସେମାନଙ୍କର ଦେହଭାରରେ ନିକ୍ଷେପିତ ହୋଇ ଜଳ ବାହାରି ଯିବାରୁ ଜୁଆରର ଉତ୍ପତ୍ତି ହୁଏ । ମହାଶୟଗଣ, ଏହା ହିଁ ଜୁଆର-ଭଟ୍ଟାର କାରଣ । ଏହି କାରଣ କିପରି ସରଳ ଓ ଯୁକ୍ତିସଙ୍ଗତ, ତାହା ସହଜରେ ବୁଝି- ପାରିବେ । ଚନ୍ଦ୍ରର ଆକର୍ଷଣରେ ଜୁଆର-ଭଟ୍ଟା ହୁଏ ଶୁଣି ଯେଉଁମାନେ ପରିହାସ କରିଥିଲେ, ସ୍ୱର୍ଣ୍ଣ-ପାହାଡ଼ ଓ ତା' ଉପରେ ଦେବତାମାନଙ୍କର ନୃତ୍ୟ ବିଷୟ ଶୁଣିବାପରେ ସେମାନଙ୍କର ଆଉ କୌଣସି ସନ୍ଦେହ ରହିଲ ନାହିଁ । ଦେବତା ସେମାନଙ୍କ ପାଇଁ ସତ୍ୟ ବସ୍ତୁ, ଆଉ ସ୍ୱର୍ଣ୍ଣ ସେମାନେ ସ୍ୱଚକ୍ଷୁରେ ଦେଖିଛନ୍ତି । ଉଭୟର ମିଳିତ କ୍ରିୟା ଫଳରେ ଯେ ଜୁଆର-ଭଟ୍ଟା ହୋଇଥାଏ, ଏହା ଅଧିକ ସମ୍ଭବପର ।

'ଆରାମ'—ସତ୍ୟଲାଭର ପରିମାପକ ନୁହେଁ, ବସ୍ତୁତଃ ସତ୍ୟଲାଭ ଏହାର ଠିକ୍ ବିପରୀତ ଅବସ୍ଥା । ଯଦି କେହି ପ୍ରକୃତରେ ସତ୍ୟକୁ ଜାଣିବାକୁ ଇଚ୍ଛା କରନ୍ତି, ସେ ଯେପରି ଆରାମରେ ଆସକ୍ତ ନ ହୁଅନ୍ତି । ସମସ୍ତ ସୁଖଭୋଗର କାମନା ପରିତ୍ୟାଗ କରିବା କଠିନ, କିନ୍ତୁ ଜ୍ଞାନୀକୁ ଏହା ବର୍ଜ୍ଜନ କରିବାକୁ ହେବ । ଜ୍ଞାନୀ ବିଶୁଦ୍ଧଚିତ୍ତ ହୋଇ ସମସ୍ତ ବାସନା ତ୍ୟାଗ କରିବେ, ତାଙ୍କର ଦେହାତ୍ମବୁଦ୍ଧି ରହିବ ନାହିଁ— କେବଳ ସେତେବେଳେ ଉଚ୍ଚତର ସତ୍ୟ ତାଙ୍କ ହୃଦୟରେ ଉଦ୍ଭାସିତ ହେବ । ତ୍ୟାଗର ପ୍ରୟୋଜନ ଅଛି । ତ୍ୟାଗ ଯେ ଧର୍ମର ଅଙ୍ଗ ବୋଲି ଗଣ୍ୟ ହୋଇଛି, ତାହା ଏହି କ୍ଷୁଦ୍ର ସ୍ୱାର୍ଥଗୁଡ଼ିକର ବିସର୍ଜନର ଅନ୍ତର୍ନିହିତ ସତ୍ୟରୁ ଜାତ । ମିଥ୍ୟା ଅହଂଭାବର ବିସର୍ଜନଦ୍ୱାରା ଆମେମାନେ ଉଚ୍ଚତର 'ଅହଂ'-ଜ୍ଞାନ ଅର୍ଥାତ୍ ଆତ୍ମାନୁଭୂତି ଲାଭ କରିପାରୁ । ଦେବତାମାନଙ୍କର କ୍ରୋଧର ଉପଶମ ବା ପ୍ରସନ୍ନତା ପାଇଁ ଯେଉଁ ଫଳପ୍ରଦ ବଳି ପ୍ରଦତ୍ତ ହେଉଥିଲା, ତାହା ଆତ୍ମଜ୍ଞାନଲାଭର ଉପାୟ, ଅର୍ଥାତ୍ ଅଳୀକ ଅହଙ୍କାର ବିସର୍ଜନର ଅସ୍ପଷ୍ଟ ଧାରଣା ମାତ୍ର । ଜ୍ଞାନୀ ଦେହରକ୍ଷା ପାଇଁ ଯତ୍ନ କରିବେ ନାହିଁ, ମନରେ ମଧ୍ୟ ଏହି ଇଚ୍ଛା ପୋଷଣ କରିବେ ନାହିଁ । ବିଶ୍ୱର ଧ୍ୱଂସ ହେଲେ ମଧ୍ୟ ଜ୍ଞାନୀ ସାହସର ସହିତ ସତ୍ୟ ଅନୁସରଣ କରିବେ । ଯେଉଁମାନେ ସାମୟିକ ଉତ୍ତେଜନା ପଶ୍ଚାତ୍ତରେ ଧାବମାନ ହୁଅନ୍ତି, ସେମାନେ ସତ୍ୟ ଅନୁସରଣ କରିପାରନ୍ତି ନାହିଁ । କେବଳ ଏହି ଜୀବନରେ ନୁହେଁ, ଶତ ଶତ ଜୀବନବ୍ୟାପୀ ଏହି ସାଧନା କରିବାକୁ ହେବ । ଅତି ଅଳ୍ପସଂଖ୍ୟକ ମନୁଷ୍ୟ ଅନ୍ତରର ଈଶ୍ୱରଙ୍କ ଉପଲବ୍ଧି କରିବାକୁ ସାହସ କରନ୍ତି—ସ୍ୱର୍ଗସୁଖ, ସାକାର ଈଶ୍ୱର-ଉପାସନା ଓ ଫଳାକାଙ୍କ୍ଷା ବିସର୍ଜନ କରିବାକୁ ସାହସୀ ହୁଅନ୍ତି । ଏହି ଜ୍ଞାନର ସାଧନା ନିକାଶେ ଦୃଢ଼ ସଂକଳ୍ପ ଆବଶ୍ୟକ; ସନ୍ଦେହରେ ଦୋଦୁଲ୍ୟମାନ ହେବା ମଧ୍ୟ ଅତ୍ୟନ୍ତ ଦୁର୍ବଳତାର ଲକ୍ଷଣ । ମନୁଷ୍ୟ ନିତ୍ୟ-ପୂର୍ଣ୍ଣ; ତାହା ନ ହେଲେ ପୂର୍ଣ୍ଣତା ଲାଭ କରିବା ପାଇଁ ସେ କିପରି ସମର୍ଥ ହୁଅନ୍ତା ? କିନ୍ତୁ ତାହାକୁ ଏହି ପୂର୍ଣ୍ଣତା ପ୍ରତ୍ୟକ୍ଷ କରିବାକୁ ହେବ । ମନୁଷ୍ୟ

ଯଦି କେବଳ ବାହ୍ୟ କାରଣଗୁଡ଼ିକର ଅଧୀନରେ ଥାଆନ୍ତା, ତାହା ହେଲେ ସେ କେବଳ ମରଣଶୀଳ ହୋଇ ରହନ୍ତା । ଯେଉଁମାନେ କୌଣସି ଅବସ୍ଥା ଉପରେ ନିର୍ଭରଶୀଳ ନୁହନ୍ତି, ସେମାନଙ୍କ ସମ୍ବନ୍ଧରେ ଅମୃତତ୍ୱ ପ୍ରଯୋଜ୍ୟ । ଆତ୍ମା ଉପରେ କୌଣସି ପ୍ରଭାବ ପଡ଼େ ନାହିଁ—ଏହି ଧାରଣା ସମ୍ପୂର୍ଣ୍ଣ ସତ୍ୟ; କିନ୍ତୁ ମନୁଷ୍ୟଙ୍କୁ ଆତ୍ମା ସହିତ ଏକ ହେବାକୁ ପଡ଼ିବ, ଦେହ ବା ମନ ସହିତ ନୁହେଁ । ମନୁଷ୍ୟ ଏହି ଜଗତର ଦ୍ରଷ୍ଟାମାତ୍ର—ଏହି ସତ୍ୟ ସେ ଜାଣିପାରିଲେ ହିଁ ନିଶ୍ଚିତ ଗତିଶୀଳ ଏହି ଜଗତକୁ ଉପଭୋଗ କରିପାରିବ । ଜ୍ଞାନୀ ନିଜକୁ କହୁଥାନ୍ତି, 'ମୁଁ ବିଶ୍ୱ, ମୁଁ ବ୍ରହ୍ମ' । ମନୁଷ୍ୟ ଯେତେବେଳେ ପ୍ରକୃତରେ ଏକ ଅଦ୍ୱିତୀୟ ପରମାତ୍ମା ସହିତ ଏକ ହୋଇଯାଏ, ସେତେବେଳେ ତାହା ପକ୍ଷରେ ସବୁ ସମ୍ଭବ ହୁଏ ଏବଂ ସକଳ ଜଡ଼ବସ୍ତୁ ତାହାର ଦାସ ହୋଇଯାଏ । ଶ୍ରୀରାମକୃଷ୍ଣ କହିଛନ୍ତି, 'ଯେପରି ଲହୁଣୀ ବାହାରକରି ଦୁଧରେ ବା ପାଣିରେ ରଖ, କୌଣସି ପଦାର୍ଥରେ ତାହା ମିଶିବ ନାହିଁ, ସେହିପରି ମନୁଷ୍ୟ ଥରେ ଆତ୍ମଜ୍ଞାନ ଲାଭ କଲେ ବିଷୟାସକ୍ତି ତାହାକୁ ଆଉ ସ୍ପର୍ଶ କରିପାରିବ ନାହିଁ ।' 'ବେଲୁନରୁ ଯେପରି ପୃଥିବୀର ସାମାନ୍ୟ ବୈଷମ୍ୟଗୁଡ଼ିକ ଦେଖାଯାଏ ନାହିଁ, ମନୁଷ୍ୟ ମଧ୍ୟ ଉଚ୍ଚ ଅବସ୍ଥା ଲାଭ କଲେ ଭଲମନ୍ଦ ଲୋକର ପାର୍ଥକ୍ୟ ଆଉ ଦେଖେ ନାହିଁ··· ।' 'ଯେପରି ପୋଡ଼ା କଳସକୁ ଆଉ କୌଣସି ଆକାର ଦିଆଯାଇପାରିବ ନାହିଁ, ସେହିପରି ଯେଉଁ ମନ ଥରେ ଈଶ୍ୱରଙ୍କୁ ସ୍ପର୍ଶ କରିଛି ଏବଂ ଅଗ୍ନିମନ୍ତ୍ରରେ ଦୀକ୍ଷିତ ହୋଇଛି, ତାହା ଅବିକାରୀ ହୋଇ ରହିଥିବ ।' ସଂସ୍କୃତରେ 'ଫିଲଜଫି' ଶବ୍ଦର ଅର୍ଥ 'ଶୁଦ୍ଧ ଦର୍ଶନ' ଏବଂ ଧର୍ମ ହେଉଛି ଫଳିତ ଦର୍ଶନଶାସ୍ତ୍ର । କେବଳ ତତ୍ତ୍ୱ-ମୂଳକ 'କଳ୍ପନାତ୍ମକ' ଦର୍ଶନ ଭାରତରେ ବିଶେଷ ସମାଦୃତ ହୁଏ ନାହିଁ; ସେଠାରେ ଭଜନାଳୟ, ଧର୍ମମତ ବା ଅତିନୈଷ୍ଠିକତା ନାହିଁ । କେବଳ ଦ୍ୱୈତବାଦୀ ବା ଅଦ୍ୱୈତବାଦୀ—ଏହି ଦୁଇଟି ପ୍ରଧାନ ବିଭାଗ ଅଛି । ଦ୍ୱୈତବାଦୀ କହନ୍ତି, 'ମୁକ୍ତିର ଉପାୟ କେବଳ ଭଗବତ୍-କୃପା । କାର୍ଯ୍ୟ-କାରଣ-ବିଧି ଥରେ ଗତିପ୍ରାପ୍ତ ହେଲେ ଆଉ ତାହାର ଉଲ୍ଲଙ୍ଘନ ନାହିଁ । ଏହି ବିଧାନାତୀତ ଏକମାତ୍ର ଈଶ୍ୱର କୃପା କରି ଆମମାନଙ୍କୁ ଏହି ବିଧାନକୁ ଭଙ୍ଗ କରିବାରେ ସହାୟତା କରନ୍ତି ।' ଅଦ୍ୱୈତବାଦୀ କହନ୍ତି, 'ଏହି ଜଡ଼ପ୍ରକୃତିର ଅନ୍ତରାଳରେ ଏପରି ଜଣେ ଅଛନ୍ତି, ଯେ ମୁକ୍ତ, ସକଳ ବିଧାନର ଅତୀତ, ସେହି ପୁରୁଷଙ୍କୁ ଲାଭ କରି ଆମେମାନେ ମୁକ୍ତ ହେବୁ । ଏହି ବନ୍ଧନହୀନତା ହିଁ ମୁକ୍ତି ।' ଦ୍ୱୈତବାଦ ମୁକ୍ତିର ଗୋଟିଏ ଦିଗ ମାତ୍ର, ଅଦ୍ୱୈତବାଦ ଜ୍ଞାନର ଶେଷ ସ୍ତରରେ ପହଞ୍ଚାଇ ଦିଏ । ପବିତ୍ର ହେବା ହିଁ ମୁକ୍ତିଲାଭର ଅତି ସହଜ ପଥ । ଆମେମାନେ ଯାହା ଅର୍ଜନ କରୁ, ତାହା ହିଁ ଆମମାନଙ୍କର ନିଜସ୍ୱ । କୌଣସି ଶାସ୍ତ୍ର-ପ୍ରମାଣ ବା ଧର୍ମବିଶ୍ୱାସ ଆମମାନଙ୍କୁ ରକ୍ଷା କରିପାରେ ନାହିଁ । ଯଦି ଜଣେ ଈଶ୍ୱର ଥାଆନ୍ତି, ତେବେ ସମସ୍ତେ ତାଙ୍କୁ ଲାଭକରିପାରିବେ । ଅଗ୍ନିର ଉତ୍ତାପ ସମ୍ବନ୍ଧରେ କାହାକୁ କହିବାକୁ ହୁଏ ନାହିଁ, ସମସ୍ତେ ତାହା ଅନୁଭବ କରିପାରନ୍ତି ।

ଈଶ୍ୱରଙ୍କ ସମ୍ବନ୍ଧରେ ମଧ୍ୟ ସେହିପରି । ଈଶ୍ୱର ସମସ୍ତଙ୍କର ବୋଧ-ଗମ୍ୟ । ପ୍ରତୀଚ୍ୟ-ବାସୀମାନଙ୍କର 'ପାପ' ସମ୍ବନ୍ଧରେ ଯେପରି ଧାରଣା, ହିନ୍ଦୁମାନେ ସେହି ଭାବରେ ପାପର ଅସ୍ତିତ୍ୱ ସ୍ୱୀକାର କରନ୍ତି ନାହିଁ । କୁକାର୍ଯ୍ୟ 'ପାପ' ନୁହେଁ, କୁକାର୍ଯ୍ୟଦ୍ୱାରା ଆମେମାନେ କୌଣସି ଶାସକ ଈଶ୍ୱରଙ୍କର ବିରାଗ-ଭାଜନ ନ ହୋଇ କେବଳ ନିଜର ଅନିଷ୍ଟ କରିଥାଉ ଏବଂ ସେଥିପାଇଁ ଆମମାନଙ୍କୁ ନିଶ୍ଚୟ ଦଣ୍ଡ ଭୋଗ କରିବାକୁ ହେବ । ଅଗ୍ନିରେ ହାତ ପୂରାଇବା ପାପ ନୁହେଁ, କିନ୍ତୁ ଯେ ଏହିପରି କରେ, ସେ ନିଶ୍ଚୟ ପାପୀପରି ଯନ୍ତ୍ରଣା ଭୋଗ କରିବ । ସବୁ କର୍ମର କିଛି ଫଳ ଅଛି ଏବଂ 'ପ୍ରତ୍ୟେକ କର୍ମର ଫଳ କର୍ତ୍ତା ନିକଟକୁ ଫେରିଆସେ ।' ତ୍ରିତ୍ୱବାଦ (Trinitarianism), ଏକତ୍ୱବାଦ (Unitarianism) ଅପେକ୍ଷା ଉନ୍ନତ; (ଏହି ଏକତ୍ୱବାଦ ହିଁ ଦ୍ୱୈତବାଦ—ଅର୍ଥାତ୍ ଈଶ୍ୱର ଓ ଜୀବ ନିତ୍ୟ ପୃଥକ୍) । 'ଆମେମାନେ ସମସ୍ତେ ଈଶ୍ୱରଙ୍କ ସନ୍ତାନ'—ଏହି ଜ୍ଞାନ ହେଲେ ବୁଝାଯିବ ଧର୍ମରେ ଉନ୍ନତିର ପ୍ରଥମ ସୋପାନ ଆରମ୍ଭ ହୋଇଛି; ଏକତ୍ୱରେ ଉପନୀତ ହେଲେ, ଅର୍ଥାତ୍ ଯେତେବେଳେ ଆମେମାନେ ବ୍ରହ୍ମ ସହିତ ଅଭିନ୍ନତା ଉପଲବ୍ଧି କରୁ, ସେତେବେଳେ ଚରମ ଉନ୍ନତି ହୋଇଛି ବୋଲି ବୁଝିବାକୁ ହେବ ।

( ୪ )

ଶରୀର କାହିଁକି ଚିରସ୍ଥାୟୀ ହୋଇପାରେ ନାହିଁ ?—ଏହି ପ୍ରଶ୍ନ ହିଁ ତର୍କ-ସଙ୍ଗତ ନୁହେଁ, କାରଣ କେତେଗୁଡ଼ିଏ ପରିଣାମୀ ଓ ଅସ୍ଥାୟୀ ମୂଳ ପଦାର୍ଥର ସମବାୟକୁ 'ଶରୀର' ଆଖ୍ୟା ଦିଆଯାଇଥାଏ । ଯେତେବେଳେ ଆମେମାନେ ଆଉ ପରିବର୍ତ୍ତନର ମଧ୍ୟଦେଇ ଯିବୁ ନାହିଁ, ସେତେବେଳେ ତଥାକଥିତ ଶରୀର ରହିବ ନାହିଁ । ଦେଶ-କାଳ-ନିମିତ୍ତର ଅତୀତ ପଦାର୍ଥ ଜଡ଼ ହୋଇ ରହିବ ନାହିଁ । ଦେଶ ଓ କାଳ କେବଳ ଆମମାନଙ୍କ ମଧ୍ୟରେ ବିଦ୍ୟମାନ, କିନ୍ତୁ ଆମେମାନେ ସେହି ଅବିନାଶୀ ସତ୍ତା । ସମସ୍ତ ସାକାର ବସ୍ତୁ ହିଁ କ୍ଷଣଭଙ୍ଗୁର, ଏଥିପାଇଁ ସବୁ ଧର୍ମ କହେ, 'ଈଶ୍ୱର ନିରାକାର' । ଗ୍ରୀକୋବ୍ୟାକ୍‌ଟ୍ରିୟାନ୍ ରାଜା ମେନାନ୍ଦର ଖ୍ରୀ: ପୂ: ୧୫୦ରେ ଜଣେ ବୌଦ୍ଧ ପରିବ୍ରାଜକ ସନ୍ନ୍ୟାସୀଙ୍କଦ୍ୱାରା ବୌଦ୍ଧଧର୍ମରେ ଦୀକ୍ଷିତ ହୋଇଥିଲେ ଏବଂ ତାଙ୍କର ନାମ ହୋଇ-ଥିଲା 'ମିଲନ୍ଦ' । ସେ ତାଙ୍କର ଉପଦେଷ୍ଟା ଯୁବକ ସନ୍ନ୍ୟାସୀଙ୍କୁ ପଚାରିଲେ 'ବୁଦ୍ଧଙ୍କ ପରି ସିଦ୍ଧ ପୁରୁଷମାନେ କଅଣ ଭ୍ରାନ୍ତ ହୋଇପାରନ୍ତି ବା ଭୁଲ କରିପାରନ୍ତି ?' ଯୁବକ ସନ୍ନ୍ୟାସୀ ଉତ୍ତର ଦେଲେ, 'ସିଦ୍ଧ ବ୍ୟକ୍ତି ତାଙ୍କର ଅଭିଜ୍ଞତାର ବାହାରେ ସାମାନ୍ୟ ବିଷୟଗୁଡ଼ିକ ସମ୍ବନ୍ଧରେ ଅଜ୍ଞ ହୋଇପାରନ୍ତି, କିନ୍ତୁ ଅନ୍ତର୍ଦୃଷ୍ଟିବଳରେ ସେ ଯାହା ଉପଲବ୍ଧି କରିଛନ୍ତି, ସେ ସମ୍ବନ୍ଧରେ ତାଙ୍କର ଭ୍ରାନ୍ତି କେବେହେଲେ ସମ୍ଭବ ନୁହେଁ । ସେ ଇହକାଳରେ ଏହି ଜଗତରେ ସିଦ୍ଧ ପୁରୁଷ । ସେ ବିଶ୍ୱର

ସାରତତ୍ତ୍ୱ ଓ ଗୂଢ଼ ରହସ୍ୟ ସମ୍ବନ୍ଧରେ ପରିଜ୍ଞାତ ଅଛନ୍ତି, କିନ୍ତୁ ଦେଶ ଓ କାଳ ଆଶ୍ରୟରେ ଏହି ସାରସତ୍ତା ଯେଉଁ ନାନା ବାହ୍ୟ ବୈଚିତ୍ର୍ୟ ମଧ୍ୟଦେଇ ପ୍ରକାଶ ପାଉଛି, ତାହା ଜାଣି ନ ପାରନ୍ତି । ତାଙ୍କର ମୃତ୍ତିକାଜ୍ଞାନ ଜନ୍ମିଛି, କିନ୍ତୁ ଏହି ମୃତ୍ତିକା ଯେଉଁ ଯେଉଁ ଆକାର ଧାରଣ କରିପାରେ, ସେଗୁଡ଼ିକର ଅଭିଜ୍ଞତା ତାଙ୍କର ନାହିଁ । ସିଦ୍ଧ ପୁରୁଷ ଆତ୍ମାକୁ ଜାଣିଛନ୍ତି, କିନ୍ତୁ ଆତ୍ମାର ସମସ୍ତ ପ୍ରତିରୂପ ଓ ଅଭିବ୍ୟକ୍ତିର ଜ୍ଞାନ ତାଙ୍କର ହୋଇ ନାହିଁ ।' ଆମ ପରି ଆପେକ୍ଷିକ ଜ୍ଞାନ ଲାଭ କରିବାର ଶକ୍ତି ତାଙ୍କର ଅଛି, ଯଦିଓ ଅସୀମ କ୍ଷମତା ବଳରେ ସେ ଏହି ଜ୍ଞାନ ଆହୁରି ଅଧିକ ଶୀଘ୍ର ଲାଭ କରିପାରନ୍ତି । ସମ୍ପୂର୍ଣ୍ଣ ବଶୀଭୂତ ମନର ପ୍ରଚଣ୍ଡ 'ଅନୁସନ୍ଧାନରଶ୍ମି' କୌଣସି ପଦାର୍ଥରେ ନିକ୍ଷିପ୍ତ ହେଲେ ତାହା ଶୀଘ୍ର ଆୟତ୍ତ ହେବ । ଏହା ବୁଝିବା ଅତ୍ୟାବଶ୍ୟକ; କାରଣ ଏହାଦ୍ୱାରା ଜଣେ ବୁଦ୍ଧ ବା ଜଣେ ଖ୍ରୀଷ୍ଟ କିପରି ସାଧାରଣ ଜାଗତିକ ବ୍ୟାବହାରିକ ଜ୍ଞାନରେ ଅନଭିଜ୍ଞ ଥିଲେ, ସେସମ୍ବନ୍ଧରେ ଯେଉଁ ନିରର୍ଥକ ବ୍ୟାଖ୍ୟା କରାଯାଏ ସେଥିରୁ ନିଷ୍କୃତି ମିଳେ । ଶିଷ୍ୟମାନେ ଭୁଲ ଭାବରେ ସେମାନଙ୍କର ଉପଦେଶ ଲିପିବଦ୍ଧ କରିଛନ୍ତି—ଏହିପରି ଦୋଷ ଦେବା ଉଚିତ ହେବ ନାହିଁ । ଶିଷ୍ୟମାନଙ୍କ ବର୍ଣ୍ଣିତ ବାଣୀରୁ ଗୋଟିଏ ସତ୍ୟ, ଅପରଟି ଅସତ୍ୟ—ଏପରି କହିବା ମଧ୍ୟ ଭୁଲ । ସମୁଦାୟ ବିବରଣକୁ ମାନି ନିଅ ନତୁବା ପରିତ୍ୟାଗ କର । ଅସତ୍ୟରୁ ସତ୍ୟକୁ କିପରି ବାଛିବା ?

ଯାହା ଥରେ ଘଟିଛି, ପୁନର୍ବାର ତାହା ଘଟିପାରେ । ଯଦି କେହି କେବେ ପୂର୍ଣ୍ଣତା ଲାଭ କରିଥାଆନ୍ତି, ଆମେମାନେ ମଧ୍ୟ ତାହା ଲାଭ କରିପାରିବା । ଏହି ପୃଥିବୀରେ ଓ ଏହି ଶରୀରରେ ପୂର୍ଣ୍ଣ ହୋଇ ନ ପାରିଲେ ସ୍ୱର୍ଗ ବା ଯେକୌଣସି ଉନ୍ନତ ଅବସ୍ଥା କଳ୍ପନା କରନା କାହିଁକି, କୌଣସି ଅବସ୍ଥାରେ ତୁମେ ଏହି ପୂର୍ଣ୍ଣତା ଲାଭ କରିପାରିବ ନାହିଁ । ଯୀଶୁ ଯଦି ସିଦ୍ଧ ପୁରୁଷ ନ ହୋଇଥାନ୍ତେ, ତେବେ ତାଙ୍କ ନାମରେ ପ୍ରଚାରିତ ଧର୍ମ ଭୂମିସାତ୍ ହୋଇଥାଆନ୍ତା ଏବଂ ସେ ସିଦ୍ଧ ହୋଇ-ଥିଲେ ଆମେମାନେ ମଧ୍ୟ ସିଦ୍ଧ ହୋଇପାରିବା । ଆମେମାନେ ଯେଉଁ ଅର୍ଥରେ 'ଜାଣିବା' ବୁଝୁଁ, ସେହି ଅର୍ଥରେ ସିଦ୍ଧ ପୁରୁଷ ବିଚାର କରନ୍ତି ନାହିଁ ବା 'ଜାଣନ୍ତି ନାହିଁ'; ଯେହେତୁ ଆମମାନଙ୍କର ଜ୍ଞାନ ତୁଳନାତ୍ମକ ଏବଂ ପରମତତ୍ତ୍ୱ ସମ୍ବନ୍ଧରେ କୌଣସି ତୁଳନା ବା ଶ୍ରେଣୀବିଭାଗ କରିବା ସମ୍ଭବ ନୁହେଁ । ବିଚାରମୂଳକ ଜ୍ଞାନ ଅପେକ୍ଷା ସହଜ ଜ୍ଞାନ (Instinct) ଅଳ୍ପଭ୍ରମାତ୍ମକ, କିନ୍ତୁ ବିଚାର (Reason) ଅପେକ୍ଷାକୃତ ଉନ୍ନତ ଏବଂ ତାହା ସ୍ୱଜ୍ଞାରେ (Intuition) ପହଞ୍ଚାଇ ଦିଏ । ସ୍ୱଜ୍ଞା ଆହୁରି ଉନ୍ନତ । ଜ୍ଞାନ ସ୍ୱଜ୍ଞାର ଜନକ, ଯାହାକି ସହଜ ଜ୍ଞାନପରି ଅଭ୍ରାନ୍ତ, କିନ୍ତୁ ଆହୁରି ଉଚ୍ଚସ୍ତରର ।

ପ୍ରାଣୀ ଜଗତରେ ଅଭିବ୍ୟକ୍ତିର ତିନୋଟି ସ୍ତର ବିଦ୍ୟମାନ: (୧) ଅବଚେତନ—ଯନ୍ତ୍ରବତ୍ ଅଭ୍ରାନ୍ତ; (୨) ସଚେତନ—ବିଚାରମୟ, ଭ୍ରାନ୍ତ; (୩) ଅତିଚେତନ

ବାଡ଼ୁଷ୍ଵସ୍ଥ—ସ୍ଵଙ୍କ, ଅଭ୍ରାନ୍ତ । ଏହି ଅବସ୍ଥାଗୁଡ଼ିକ ଯଥାକ୍ରମେ ପଶୁ, ମନୁଷ୍ୟ ଓ ଈଶ୍ଵରଙ୍କଠାରେ ପ୍ରକାଶିତ । କାରଣ ଯେଉଁ ମନୁଷ୍ୟ ପୂର୍ଣ୍ଣତା ଲାଭ କରନ୍ତି, ବୋଧଶକ୍ତି ପ୍ରୟୋଗ ବ୍ୟତୀତ ତାଙ୍କର ଅନ୍ୟ କିଛି ନ ଥାଏ । ସେ ନିଜ ସକାଶେ କିଛି କାମନା ନ କରି ଜୀବର ମଙ୍ଗଳାର୍ଥେ ଜୀବନଧାରଣ କରନ୍ତି । ଯାହା କିଛି ଭେଦ ସୃଷ୍ଟି କରେ, ତାହା ହିଁ ନାସ୍ତିବାଚକ ବା ଅଭାବାତ୍ମକ, ଯାହା ଅସ୍ତିବାଚକ, ତାହା ହିଁ ବ୍ୟାପକ । ଯାହା ଆମମାନଙ୍କର ସାଧାରଣ ସମ୍ପତ୍ତି, ତାହା ହିଁ ସର୍ବାପେକ୍ଷା ବ୍ୟାପକ—ତାହା ହିଁ 'ସତ୍ତା' ।

'ପ୍ରାକୃତିକ ନିୟମ' ହେଉଛି ଜଗତର ପାରମ୍ପର୍ଯ୍ୟ ବ୍ୟାଖ୍ୟା କରିବାର ଗୋଟିଏ ମାନସିକ ସଂକ୍ଷିପ୍ତ ପ୍ରକ୍ରିୟା, କିନ୍ତୁ ବାସ୍ତବିକ ସତ୍ତା ଭାବରେ ଏହାର କୌଣସି ଅସ୍ତିତ୍ଵ ନାହିଁ । ଏହି ଜଗତ୍‌ପ୍ରପଞ୍ଚରେ ସଂଘଟିତ କେତେଗୁଡ଼ିଏ ଘଟଣା-ପରମ୍ପରା ପ୍ରକାଶ କରିବା ସକାଶେ ଆମେମାନେ 'ନିୟମ' ଶବ୍ଦ ବ୍ୟବହାର କରୁ । ଯାହାଙ୍କ ପାଖରେ ମସ୍ତକ ନତ କରିବାକୁ ହେବ, ଏପରି କୌଣସି ଅପରିହାର୍ଯ୍ୟ ବସ୍ତୁ ବା କୁସଂସ୍କାରରୂପରେ ଆମେମାନେ ଯେପରି ଏହି ନିୟମକୁ ଗଣ୍ୟ ନ କରୁ । ଭ୍ରାନ୍ତି ବସ୍ତୁରବୁଦ୍ଧିର ନିତ୍ୟସଙ୍ଗୀ, ତଥାପି ପ୍ରାଣପଣ ସଂଗ୍ରାମଦ୍ଵାରା ଭ୍ରାନ୍ତି-ଜୟର ପ୍ରଚେଷ୍ଟା ହିଁ ଆମମାନଙ୍କର ଦେବତ୍ଵ । ଆମମାନଙ୍କର ଦେହରୁ ଅନିଷ୍ଟକର ପଦାର୍ଥ ବାହାର କରି-ଦେବା ପାଇଁ ପ୍ରକୃତିର ଯେଉଁ ପ୍ରୟାସ, ତାହା ହିଁ ବ୍ୟାଧି । ପାପ ମଧ୍ୟ ସେହିପରି ଆମମାନଙ୍କର ଅନ୍ତର୍ନିହିତ ଦେବଭାବରୁ ପଶୁଭାବ ଦୂର କରିବାର ପ୍ରାଣପଣ ଚେଷ୍ଟା । ଦେବତ୍ଵରେ ଉନ୍ନୀତ ହେବା ପାଇଁ ଆମମାନଙ୍କୁ 'ପାପ' ଅର୍ଥାତ୍ ଭୁଲ କରିବାକୁ ହେବ ।

କାହାକୁ କୃପାଚକ୍ଷୁରେ ଦେଖ ନାହିଁ । ସମସ୍ତଙ୍କୁ ତୁମର ସମାନ କରି ଦେଖିବ । ଅସାମ୍ୟ—ଏହି ମୁଖ୍ୟ ପାପକୁ ଅନ୍ତରରୁ ପୋଛି ପକାଅ । ଆମେମାନେ ସମସ୍ତେ ସମାନ । 'ମୁଁ ଭଲ, ତୁମେ ମନ୍ଦ; ମୁଁ ତୁମକୁ ସଂଶୋଧନ କରିବାର ଚେଷ୍ଟା କରୁଛି'—ଏପରି ଭାବ ଯେପରି ଆମମାନଙ୍କ ମନରେ ଉଦିତ ନ ହୁଏ । ସମତ୍ଵ ହିଁ ମୁକ୍ତ ମନୁଷ୍ୟର ଲକ୍ଷଣ । ଯୀଶୁ ଘୃଣ୍ୟ ପାପୀମାନଙ୍କ ନିକଟକୁ ଯାଇ ସେମାନଙ୍କ ସଙ୍ଗରେ ବାସ କରୁଥିଲେ । ସେ କେବେ ହେଁ ଉଚ୍ଚ ବେଦୀରେ ବସି ନ ଥିଲେ । ପାପୀମାନେ ହିଁ କେବଳ ପାପ ଦେଖିପାରନ୍ତି । ମନୁଷ୍ୟକୁ ମନୁଷ୍ୟରୂପରେ ଦେଖ ନାହିଁ, ତା' ମଧ୍ୟରେ କେବଳ ଈଶ୍ଵରଙ୍କୁ ଦର୍ଶନ କର । ଆମେମାନେ ଆମମାନଙ୍କର ସ୍ଵର୍ଗ ସୃଷ୍ଟି କରୁ ଏବଂ ନରକକୁ ମଧ୍ୟ ସ୍ଵର୍ଗରେ ପରିଣତ କରିପାରୁ । ନରକରେ ହିଁ ପାପୀମାନଙ୍କୁ ଦେଖିବାକୁ ମିଳେ । ଯେତେଦିନ ଆମେମାନେ ଆମ ଆଖପାଖରେ ପାପୀମାନଙ୍କୁ ଦେଖୁ, ସେତେଦିନ ଆମେମାନେ ନିଜେ ନରକରେ ଅଛୁ । ଆତ୍ମା ଦେଶ-କାଳର ଅତୀତ । 'ମୁଁ ସଚ୍ଚିଦାନନ୍ଦ, ସୋଽହଂ'—ଏହା ଉପଲବ୍‌ଧି କର । ଜନ୍ମ-ମୃତ୍ୟୁ ଉଭୟ ଅବସ୍ଥାରେ ଆନନ୍ଦରେ ରହ, ଈଶ୍ଵରପ୍ରେମରେ ସଦା ମତ୍ତ ହୁଅ ।

ଦେହବନ୍ଧନରୁ ମୁକ୍ତ ହୁଅ । ଆମେମାନେ ଦେହର ଦାସ ହୋଇଛୁ, ଶୃଙ୍ଖଳକୁ ଆଲିଙ୍ଗନ କରିବାକୁ ଶିଖିଛୁ ଏବଂ ଦାସତ୍ୱକୁ ବରଣ କରିଛୁ । ଆମେମାନେ ଏତେଦୂର ଦାସ ହୋଇ ପଡ଼ିଛୁ ଯେ, ଏହି ଦେହ-ବନ୍ଧନକୁ ଚିରସ୍ଥାୟୀ କରିବାକୁ ଇଚ୍ଛା କରୁ ଏବଂ ଚିରକାଳ ଦେହବୁଦ୍ଧି ଘେନି ରହିବାକୁ ଇଚ୍ଛା କରୁ । ଦେହାତ୍ମବୁଦ୍ଧିକୁ ଯାକି ଧର ନାହିଁ । ବର୍ତ୍ତମାନ ଜୀବନ ପରି ଆଉ ଗୋଟିଏ ଭବୀ ଜୀବନର ଆକାଙ୍‌କ୍ଷା କର ନାହିଁ । ଏପରିକି ଅତି ପ୍ରିୟଜନଙ୍କର ଦେହକୁ ମଧ୍ୟ ଭଲପାଅ ନାହିଁ ବା ସେମାନଙ୍କର ଦେହ କାମନା କର ନାହିଁ । ଏହି ଜୀବନ ହିଁ ଆମମାନଙ୍କର ଶିକ୍ଷାଦାତା; ମୃତ୍ୟୁ ସେହି ଶିକ୍ଷାକୁ ନୂତନ ଭାବରେ ଆରମ୍ଭ କରିବାର ସୁବିଧା ମାତ୍ର । ଏହି ଦେହ ବିଦ୍ୟାଳୟର ଶିକ୍ଷକଙ୍କ ପରି । ଆତ୍ମହତ୍ୟା କେବଳ ନିର୍ବୋଧତା । ଏହା କେବଳ ଶିକ୍ଷକଙ୍କୁ ହତ୍ୟା କରିବା ଭଳି କାର୍ଯ୍ୟ । ପୁନର୍ବାର ଅନ୍ୟ ଦେହ ଧାରଣ କରିବାକୁ ହେବ, ସୁତରାଂ ଦେହାତ୍ମବୁଦ୍ଧିର ଅତୀତ ଅବସ୍ଥାରେ ଉନ୍ନୀତ ନ ହେଲେ ବାରମ୍ବାର ଦେହଧାରଣ ନିଶ୍ଚୟ କରିବାକୁ ହେବ । ସେଥିଯୋଗୁଁ ଗୋଟିଏ ଦେହକୁ ନଷ୍ଟ କଲେ ଅନ୍ୟଟିର ଆଶ୍ରୟ ଗ୍ରହଣ ବ୍ୟତୀତ ଗତ୍ୟନ୍ତର ନାହିଁ । ତଥାପି ଆମେମାନେ ଯେପରି ଦେହାତ୍ମବୁଦ୍ଧି ନ ରଖୁ, ଦେହଟିକୁ ଯେପରି କେବଳ ପୂର୍ଣ୍ଣତାଲାଭ କରିବାର ଯନ୍ତ୍ରସ୍ୱରୂପ ମନେକରୁ । ରାମଙ୍କର ଭକ୍ତ ହନୁମାନ ତାଙ୍କର ନିଜ ଅନୁଭୂତ ଏହି କେତୋଟି କଥାରେ ସଂକ୍ଷେପରେ କହିଛନ୍ତି, 'ହେ ପ୍ରଭୁ, ଯେତେବେଳେ ଦେହବୁଦ୍ଧି ଥାଏ, ସେତେବେଳେ ମୁଁ ତୁମଠାରୁ ସମ୍ପୂର୍ଣ୍ଣ ଭିନ୍ନ, ମୁଁ ତୁମର ଦାସ । ଯେତେବେଳେ ମୋର ଜୀବ-ବୁଦ୍ଧି ହୁଏ, ସେତେବେଳେ ମୁଁ ଜ୍ୟୋତିର୍ମୟ, ତୁମର ଅଂଶ, ଗୋଟିଏ ସ୍ଫୁଲିଙ୍ଗ ମାତ୍ର । କିନ୍ତୁ ଯେତେବେଳେ ଆତ୍ମବୁଦ୍ଧି ହୁଏ, ସେତେବେଳେ ମୁଁ ଏବଂ ତୁମେ ଏକ ।' ସେଥିଯୋଗୁଁ ଜ୍ଞାନୀ ଅନ୍ୟ କୌଣସି ଆକାଙ୍‌କ୍ଷା ନ କରି କେବଳ ଆତ୍ମାକୁ ଉପଲବ୍‌ଧି କରିବା ପାଇଁ ସଚେଷ୍ଟ ।

( ୭ )

ଚିନ୍ତା ଅତି ଗୁରୁତ୍ୱପୂର୍ଣ୍ଣ; କାରଣ 'ଯାଦୃଶୀ ଭାବନା ଯସ୍ୟ ସିଦ୍ଧିର୍ଭବତି ତାଦୃଶୀ'—ଯାହାର ଯେପରି ଚିନ୍ତା, ତାହାର ସିଦ୍ଧି ସେହିପରି । ଜଣେ ସାଧୁ ବୃକ୍ଷ ତଳେ ବସି ଲୋକମାନଙ୍କୁ ଧର୍ମୋପଦେଶ ଦେଉଥିଲେ । ସେ କେବଳ ଦୁଧ ଓ ଫଳମୂଳ ଆହାର କରି ଏବଂ ପ୍ରାଣାୟାମାଦି ଅଭ୍ୟାସ କରି ନିଜକୁ ଅତ୍ୟନ୍ତ ପବିତ୍ର ମନେ କରୁଥିଲେ । ସେହି ଗ୍ରାମରେ ଜଣେ ଚରିତ୍ରହୀନା ନାରୀ ବାସ କରୁଥିଲା । ସ୍ତ୍ରୀଲୋକଟି ଦୁଷ୍କାର୍ଯ୍ୟ ପାଇଁ ନରକକୁ ଯିବ—ଏହା ଭାବି ସାଧୁ ପ୍ରତ୍ୟହ ତାହା ନିକଟକୁ ଯାଇ ତାହାକୁ ସାବଧାନ କରିଦେଉଥିଲେ । ହତଭାଗିନୀ ତାହାର ଜୀବିକା ଉପାର୍ଜନର ଏକମାତ୍ର ପଥ ପରିବର୍ତ୍ତନ କରିବାକୁ ଅକ୍ଷମ ହୋଇ ସାଧୁ-କଥିତ ଭୟାନକ ପରିଣାମର ଚିନ୍ତାରେ ଶଙ୍କିତ ହୋଇ ରହୁଥିଲା । ନିରୁପାୟ ସ୍ତ୍ରୀଲୋକଟି କାନ୍ଦି

କାନ୍ଦି ଭଗବାନଙ୍କ ନିକଟରେ ପ୍ରାର୍ଥନା କରି କ୍ଷମାଭିକ୍ଷା କରୁଥିଲା । ଏହି ସାଧୁ ଓ ଭ୍ରଷ୍ଟା ସ୍ତ୍ରୀଲୋକଟିର ମୃତ୍ୟୁ ହେବା ପରେ ଦେବଦୂତମାନେ ଆସି ସେହି ସ୍ତ୍ରୀଲୋକକୁ ସ୍ୱର୍ଗକୁ ନେଇଗଲେ, ଆଉ ଯମଦୂତମାନେ ଆସି ସାଧୁର ଆତ୍ମା ଦାବୀ କଲେ । ସାଧୁ ଉଚ୍ଚସ୍ୱରରେ ପଚାରିଲେ, 'ଏ କଅଣ ? ମୁଁ କ'ଣ କଠୋର ସାଧୁ-ଜୀବନ ଯାପନ କରି ସମସ୍ତଙ୍କ ମଧ୍ୟରେ ଧର୍ମକଥା ପ୍ରଚାର କରି ନାହିଁ ? ମୁଁ କାହିଁକି ନରକକୁ ଯିବି, ଆଉ ଏହି ଭ୍ରଷ୍ଟା ସ୍ତ୍ରୀ-ଲୋକଟା ସ୍ୱର୍ଗକୁ ଯିବ ?' ଯମଦୂତମାନେ କହିଲେ, 'ସ୍ତ୍ରୀ-ଲୋକଟି ଦେହଦ୍ୱାରା ପାପକାର୍ଯ୍ୟ କରିବାକୁ ବାଧ୍ୟ ହେଉଥିଲେ ମଧ୍ୟ ତାର ମନ ସର୍ବଦା ଭଗବାନଙ୍କଠାରେ ନିବିଷ୍ଟ ଥିଲା ଏବଂ ସେ ମୁକ୍ତିକାମନା କରିଥିଲା । ସେହି ମୁକ୍ତି ସେ ବର୍ତ୍ତମାନ ଲାଭ କରିଛି । ଆଉ ତୁମେ ବାହାରେ ଧର୍ମ-କାର୍ଯ୍ୟ କରିଛ, କିନ୍ତୁ ତୁମର ମନ ଅପରର ପାପ-କର୍ମରେ ସର୍ବଦା ନିବିଷ୍ଟ ରହିଥିଲା । ତୁମେ କେବଳ ପାପ ଦେଖିଛ ଓ ପାପ ଚିନ୍ତା କରିଛ; ସୁତରାଂ ଯେଉଁଠାରେ କେବଳ ପାପ, ତୁମକୁ ସେହି ସ୍ଥାନକୁ ଯିବାକୁ ହେବ ।' ଏହି ଗଳ୍ପର ଶିକ୍ଷଣୀୟ ବିଷୟଟି ଅତି ସ୍ପଷ୍ଟ । ବାହ୍ୟ ଜୀବନଯାପନଦ୍ୱାରା କୌଣସି ଫଳ ହୁଏ ନାହିଁ । ହୃଦୟ ପବିତ୍ର ହେବା ଆବଶ୍ୟକ, ପବିତ୍ର ହୃଦୟ ପାପ ନ ଦେଖି କେବଳ ପୁଣ୍ୟ ଦେଖେ । ମାନବଜାତିର ଅଭିଭାବକ ଅଥବା ପାପୀତାପୀଙ୍କର ଉଦ୍ଧାରକର୍ତ୍ତା ସାଧୁ ରୂପରେ ପ୍ରକାଶିତ ହେବାର ଚେଷ୍ଟା କରିବା ଆମମାନଙ୍କ ପକ୍ଷରେ ଉଚିତ ନୁହେଁ । ତତ୍ପରିବର୍ତ୍ତେ ଆମେ ନିଜକୁ ପବିତ୍ର କରିବାକୁ ଚେଷ୍ଟା କରିବୁ ଏବଂ ଏହାଦ୍ୱାରା ଆମେମାନେ ଅପରର ଧର୍ମଲାଭରେ ସହାୟ ହୋଇପାରିବୁ ।

ପଦାର୍ଥବିଜ୍ଞାନ ଉଭୟ ପାର୍ଶ୍ୱରେ ଦର୍ଶନବିଦ୍ୟାଦ୍ୱାରା ସୀମାବଦ୍ଧ । ଯୁକ୍ତି ସମ୍ବନ୍ଧରେ ମଧ୍ୟ ସେହିପରି —ଏହାର ଆରମ୍ଭ ଅଯୁକ୍ତିରେ, ସମାପ୍ତି ମଧ୍ୟ ଅଯୁକ୍ତିରେ । ଅନୁଭୂତି-ରାଜ୍ୟର ଗଭୀର ପ୍ରଦେଶରେ ସନ୍ଧାନ କଲେ ଅନୁଭୂତିର ଅତୀତ ଗୋଟିଏ ସ୍ତରରେ ଆମେମାନେ ଉପନୀତ ହେବୁ । ଯୁକ୍ତି ବାସ୍ତବିକ ସଞ୍ଚିତ ଓ ଶ୍ରେଣୀବଦ୍ଧ ଅନୁଭୂତି, ଏହା ସ୍ମୃତିଦ୍ୱାରା ସୁରକ୍ଷିତ । ଇନ୍ଦ୍ରିୟାନୁଭୂତିର ବାହାରେ ଆମେମାନେ ଆଉ କିଛି କଳ୍ପନା ବା ବିଚାର କରିପାରୁ ନାହିଁ । ଯୁକ୍ତି ବା ବିଚାରର ଅତୀତ କିଛି ଇନ୍ଦ୍ରିୟ-ଜ୍ଞାନର ବିଷୟ ହୋଇପାରେ ନାହିଁ । ବିଚାରଶକ୍ତି ଯେ ସୀମାବଦ୍ଧ ତାହା ଆମେମାନେ ବୁଝିପାରୁ, ତଥାପି ଏହା ଆମମାନଙ୍କୁ ଏପରି ଗୋଟିଏ ସ୍ତରକୁ ନେଇଯାଏ, ଯେଉଁଠାରେ ଆମେମାନେ ଗୋଟିଏ ଇନ୍ଦ୍ରିୟାତୀତ ଅବସ୍ଥାର ଆଭାସ ପାଇଥାଉ । ତା'ପରେ ପ୍ରଶ୍ନ ହୋଇପାରେ: ମନୁଷ୍ୟର ଏପରି କୌଣସି ଉପାୟ ଅଛି କି, ଯାହା ସାହାଯ୍ୟରେ ସେ ବିଚାର ବା ଯୁକ୍ତିର ଅତୀତ ଅବସ୍ଥା ଲାଭ କରିବାକୁ ସମର୍ଥ ? ଏହା ସମ୍ଭବ ଯେ ଯୁକ୍ତିର ଅତୀତ ଅବସ୍ଥା ଲାଭକରିବାର ଶକ୍ତି ମନୁଷ୍ୟର ଅଛି । ଋଷିମାନେ ପ୍ରକୃତରେ ଏହି ଶକ୍ତି ସବୁକାଳେ ଦେଖାଇଛନ୍ତି; କିନ୍ତୁ ଅଧ୍ୟାତ୍ମଭାବ ଏବଂ ଅନୁଭୂତିକୁ ସ୍ୱଭାବତଃ ଯୁକ୍ତିର ଭାଷାରେ ରୂପାନ୍ତରିତ କରିବା ଅସମ୍ଭବ । ଆଉ ଏହି ଋଷିମାନେ

ସେମାନଙ୍କର ପ୍ରତ୍ୟକ୍ଷାନୁଭୂତ ଆଧ୍ୟାତ୍ମିକ ଭାବସମୂହ ଅନ୍ୟକୁ ଜ୍ଞାପନ କରିବାରେ ଅକ୍ଷମତା ସ୍ୱୀକାର କରିଛନ୍ତି । ନିଶ୍ଚୟ ସେମାନେ ଭାଷାରେ କିଛି ପ୍ରକାଶ କରିପାରନ୍ତି ନାହିଁ; ଅତଏବ ଏତିକି ମାତ୍ର କୁହାଯାଇପାରେ ଯେ, ଏଗୁଡ଼ିକ ସେମାନଙ୍କର ପ୍ରତ୍ୟକ୍ଷ ଅନୁଭୂତି ଏବଂ ସମସ୍ତଙ୍କର ଅଧିଗମ୍ୟ । କେବଳ ଏହି ଭାବରେ ଅନୁଭୂତିଗୁଡ଼ିକ ଜାଣିହୁଏ; କିନ୍ତୁ କେବେହେଲେ ଭାଷାରେ ପ୍ରକାଶ କରିହୁଏ ନାହିଁ । ଯେଉଁ ବିଜ୍ଞାନ ମନୁଷ୍ୟର ଅତୀନ୍ଦ୍ରିୟ ସତ୍ତାର ମାଧ୍ୟମରେ ପ୍ରକୃତିର ଅତୀତ ସତ୍ତାକୁ ବୁଝିବାକୁ ଇଚ୍ଛା କରେ, ତାହା ହିଁ ଧର୍ମ । ମନୁଷ୍ୟ ବିଷୟରେ ଆମେମାନେ ଅଦ୍ୟାବଧି ଅଳ୍ପମାତ୍ରାରେ ଜାଣିଛୁ, ସେଥିପାଇଁ ବିଶ୍ୱଜଗତ ସମ୍ବନ୍ଧରେ ମଧ୍ୟ ଅଳ୍ପ ଜାଣୁ; ମନୁଷ୍ୟ ବିଷୟରେ ଆହୁରି ଅଧିକ ଜାଣିପାରିଲେ ବିଶ୍ୱ ସମ୍ବନ୍ଧରେ ମଧ୍ୟ ସମ୍ଭବତଃ ଅଧିକତର ଜ୍ଞାନ ଲାଭ କରିବୁ । ମନୁଷ୍ୟ ସର୍ବବସ୍ତୁର ସଂକ୍ଷିପ୍ତ ଆଧାର, ସମସ୍ତ ଜ୍ଞାନ ମନୁଷ୍ୟ ମଧ୍ୟରେ ଅଛି । ଏହି ବିଶ୍ୱଜଗତର ଯେତିକି ଆମମାନଙ୍କର ଇନ୍ଦ୍ରିୟଗ୍ରାହ୍ୟ, ସେତିକିର କାରଣ ଆମେମାନେ ନିର୍ଦ୍ଧାରଣ କରିପାରୁ, ମୂଳତତ୍ତ୍ୱର କୌଣସି କାରଣ ନିର୍ଦ୍ଧାରଣ କରିବାକୁ ଆମେମାନେ ଅସମର୍ଥ । କୌଣସି ବିଷୟର କାରଣ ନିର୍ଦ୍ଧାରଣ କରିବା ଅର୍ଥ—ତାହାକୁ କେବଳ ଶ୍ରେଣୀବଦ୍ଧ କରିବା ଏବଂ ମନର କ୍ଷୁଦ୍ର କକ୍ଷରେ ତାହାକୁ ପୂରାଇ ରଖିବା । ଗୋଟିଏ ନୂତନ ବିଷୟ ପାଇବା ମାତ୍ରକେ ଆମେମାନେ ତାହାକୁ ସଙ୍ଗେ ସଙ୍ଗେ ପୂର୍ବରୁ ବିଦ୍ୟମାନ ଗୋଟିଏ ଶ୍ରେଣୀର ଅନ୍ତର୍ଭୁକ୍ତ କରିବାକୁ ଚେଷ୍ଟା କରୁ, ଏହି ଚେଷ୍ଟାକୁ ବିଚାରବୁଦ୍ଧି ବୋଲାଯାଏ । ଏହି ବିଷୟଟିକୁ କୌଣସି ଗୋଟିଏ ଶ୍ରେଣୀରେ ଅନ୍ତର୍ଭୁକ୍ତ କରିପାରିଲେ କେତେକ ପରିମାଣରେ ମାନସିକ ତୃପ୍ତି ଲାଭ ହୁଏ, କିନ୍ତୁ ଏହି ଶ୍ରେଣୀବିଭାଗଦ୍ୱାରା ଆମେମାନେ ଇନ୍ଦ୍ରିୟଗ୍ରାହ୍ୟ ଅବସ୍ଥାକୁ ଅତିକ୍ରମ କରିପାରୁ ନାହିଁ । ପ୍ରାଚୀନ ଯୁଗ ଏ ବିଷୟରେ ସଗୌରବ ସାକ୍ଷ୍ୟ ଦେଉଛି ଯେ ମନୁଷ୍ୟ ଇନ୍ଦ୍ରିୟାତୀତ ଅବସ୍ଥା ଲାଭ କରିପାରେ । ପାଞ୍ଚହଜାର ବର୍ଷ ପୂର୍ବେ ଉପନିଷଦ୍ ଘୋଷଣା କରିଛନ୍ତି ଯେ, ଇନ୍ଦ୍ରିୟଦ୍ୱାରା ଈଶ୍ୱରଙ୍କୁ କେବେହେଲେ ଉପଲବ୍ଧି କରାଯାଏ ନାହିଁ । ଆଧୁନିକ ଅଜ୍ଞେୟବାଦ ଏପର୍ଯ୍ୟନ୍ତ ଏକମତ, କିନ୍ତୁ ବେଦ ନେତିବାଚକ ଦିଗ ଅତିକ୍ରମ କରି ସ୍ପଷ୍ଟ ଭାଷାରେ ବ୍ୟକ୍ତ କରିଛନ୍ତି ଯେ, ମନୁଷ୍ୟ ଇନ୍ଦ୍ରିୟାବଦ୍ଧ ସ୍ତୂପୀକୃତ ବରଫ ପରି ଏହି ଜଡ଼-ଜଗତକୁ ଅତିକ୍ରମ କରିପାରେ ଏବଂ ଅତିକ୍ରମ ମଧ୍ୟ କରିଥାଏ । ସେ ଯେପରି ଏହି ବରଫରାଶିର କୌଣସି ସ୍ଥାନରେ ଗୋଟିଏ ଛିଦ୍ର ଆବିଷ୍କାର କରିପାରେ ଏବଂ ତା' ମଧ୍ୟଦେଇ ଅଖଣ୍ଡ ଜୀବନ-ସମୁଦ୍ରରେ ପହଞ୍ଚିପାରେ । ଏହି ଭାବରେ ସେ ଇନ୍ଦ୍ରିୟଗ୍ରାହ୍ୟ ଜଗତ ଅତିକ୍ରମ କରି ତାହାର ଯଥାର୍ଥ ସ୍ୱରୂପ ଉପଲବ୍ଧି କରିପାରେ ।

ଇନ୍ଦ୍ରିୟଲବ୍ଧ ଜ୍ଞାନକୁ କେବେହେଁ ଜ୍ଞାନ କୁହାଯାଏ ନାହିଁ । ଆମେମାନେ ବ୍ରହ୍ମକୁ ଜାଣିପାରୁ ନାହିଁ; ଆମେମାନେ ହିଁ ବ୍ରହ୍ମ; ଅଂଶ ନୋହୁଁ, ପୂର୍ଣ୍ଣବ୍ରହ୍ମ । ଯାହାର ବିସ୍ତାର ନାହିଁ ତାହା କେବେହେଁ ବିଭାଜ୍ୟ ନୁହେ । ଆମେମାନେ ଦେଖିବାକୁ ପାଉ ସୂର୍ଯ୍ୟ ଏକ, ବହୁ ନୁହେଁ; ତେବେ ସୁଦ୍ଧା ସୂର୍ଯ୍ୟରଶ୍ମି ଯେପରି ଲକ୍ଷ ଲକ୍ଷ ଶିଶିର-

ବିନ୍ଦ୍ ମଧ୍ୟରେ ପ୍ରତିଫଳିତ ଦେଖାଯାଏ, ସେହିପରି ଏହି ପ୍ରଶାସ୍ତମାନ ବୈଚିତ୍ର୍ୟ କେବଳ ଦେଶକାଳ ମଧ୍ୟରେ ପ୍ରତିବିମ୍ବିତ । ଜ୍ଞାନରେ ଉପନୀତ ହେଲେ ବୈଚିତ୍ର୍ୟ ଅପସରି ଯାଇ କେବଳ ଏକତ୍ୱ ହିଁ ଅନୁଭୂତ ହୁଏ । ଏହି ଅବସ୍ଥାରେ କର୍ତ୍ତା-କର୍ମ, ଜ୍ଞାନ-ଜ୍ଞାତା-ଜ୍ଞେୟ, ମୁଁ ତୁମେ-ସେ—କିଛି ରହେ ନାହିଁ । ଗୋଟିଏ ଅଦ୍ୱିତୀୟ ନିର୍ବିଶେଷ ସତ୍ତା ମାତ୍ର ବିଦ୍ୟମାନ ଥାଏ । ସର୍ବଦା ଆମେମାନେ ଏହି ଅବସ୍ଥାରେ ଅଛୁ, ଥରେ ମାତ୍ର ମୁକ୍ତ ହେଲେ ସଦାମୁକ୍ତ । ମନୁଷ୍ୟ କାର୍ଯ୍ୟ-କାରଣ ନିୟମଦ୍ୱାରା ବଦ୍ଧ ନୁହେଁ । ସୁଖ-ଦୁଃଖ ମନୁଷ୍ୟ ମଧ୍ୟରେ ନାହିଁ, ସୁଖ-ଦୁଃଖ ସଞ୍ଚରଣଶୀଳ ମେଘପରି । ମେଘ ସୂର୍ଯ୍ୟକୁ ଆବୃତ କଲେ ଛାୟା ପଡ଼େ । ସୂର୍ଯ୍ୟ ସ୍ଥିର, ମେଘ ହିଁ ସଞ୍ଚରଣଶୀଳ; ମନୁଷ୍ୟର ସୁଖ-ଦୁଃଖ ସେହିପରି । ମନୁଷ୍ୟର ଜନ୍ମ ନାହିଁ, ମୃତ୍ୟୁ ନାହିଁ; ମନୁଷ୍ୟ ଦେଶକାଳର ଅତୀତ । ଏହି ଭାବଗୁଡ଼ିକ ମନର ଚିନ୍ତା ମାତ୍ର, କିନ୍ତୁ ଏଗୁଡ଼ିକ ବାସ୍ତବ ସତ୍ତା ବୋଲି ଆମେ ଭ୍ରମରେ ଭାବିଥାଉ ଏବଂ ଆବୃତ ସେହି ମହିମାନ୍ୱିତ ସତ୍ୟକୁ ଦେଖିବାକୁ ପାଉ ନାହିଁ । ଆମେମାନେ ଆମର ଚିନ୍ତାପଦ୍ଧତିକୁ 'କାଳ' କହୁ, କିନ୍ତୁ ଆମେମାନେ ନିଜେ ଶାଶ୍ୱତ 'ବର୍ତ୍ତମାନ କାଳ' । ଭଲ-ମନ୍ଦ ଆମମାନଙ୍କ ସମ୍ବନ୍ଧରେ ଆରୋପିତ ଅବସ୍ଥା ମାତ୍ର । ଗୋଟିକୁ ଛାଡ଼ି ଅନ୍ୟଟି ମିଳେ ନାହିଁ, କାରଣ ଗୋଟିକ ବ୍ୟତୀତ ଅନ୍ୟଟିର ଅର୍ଥ ବା ଅସ୍ତିତ୍ୱ ନାହିଁ । ଯେତେଦିନ ଆମେମାନେ ଦ୍ୱୈତଭାବ ଗ୍ରହଣ କରି ଜୀବାତ୍ମା ଓ ପରମାତ୍ମାକୁ ପୃଥକ୍ ଭାବିବା, ସେତେଦିନ ଆମେମାନେ ଭଲ-ମନ୍ଦ ଦେଖିବା । କେନ୍ଦ୍ରସ୍ଥଳରେ ଉପନୀତ ହେବା ମାତ୍ରକେ, ପରମାତ୍ମା ସହିତ ଏକ ହୋଇ ଆମେମାନେ ଇନ୍ଦ୍ରିୟର ମୋହରୁ ଅବ୍ୟାହତି ପାଇବା । ଏହି ବାସନାଜ୍ୱର—ଏହି ଅସ୍ୱସ୍ତିକର ଅବିରାମ ପ୍ରବଳ ପିପାସା ଯେତେବେଳେ ଚିରକାଳ ପାଇଁ ନିବୃତ୍ତ ହେବ, କେବଳ ସେତିକିବେଳେ ଆମେ ଭଲ-ମନ୍ଦରୁ ଅବ୍ୟାହତି ପାଇବା, କାରଣ ସେତେବେଳେ ଆମେମାନେ ଏ ଦୁହିଁଙ୍କୁ ଅତିକ୍ରମ କରିଯିବା । ଅଗ୍ନିରେ ଘୃତାହୁତି ପ୍ରଦାନ କଲେ ଅଗ୍ନି ଯେପରି ଅଧିକ ପ୍ରଜ୍ୱଳିତ ହୁଏ, ଉପଭୋଗଦ୍ୱାରା କାମ ମଧ୍ୟ ସେହିପରି ବୃଦ୍ଧି ପାଏ ମାତ୍ର ।

ଚକ କେନ୍ଦ୍ରର ଯେତିକି ଦୂରରେ ଥାଏ, ସେତିକି ଅଧିକ ଦ୍ରୁତଗତିରେ ଘୂରେ । କେନ୍ଦ୍ରାଭିମୁଖୀ ହୁଅ । କାମନାକୁ ଦମନ କର, ତାହାକୁ ନିର୍ମୂଳ କର । ମିଥ୍ୟା 'ଅହଂ'ଭାବ ଦୂର କଲେ ଆମମାନଙ୍କର ଦୃଷ୍ଟି ପରିଷ୍କାର ହେବ ଏବଂ ତାହାହେଲେ ଆମେ ଈଶ୍ୱର-ଦର୍ଶନ କରିବା । ଯେଉଁ ଅବସ୍ଥାରେ ଉପନୀତ ହୋଇ ଆମେ ପ୍ରକୃତ ସ୍ୱରୂପରେ ଦୃଢ଼ପ୍ରତିଷ୍ଠିତ ହେବା, ତାହା କେବଳ ଇହଲୋକ ଏବଂ ପରଲୋକର ଭୋଗ-ବାସନା ତ୍ୟାଗ କରିବାଦ୍ୱାରା ଲାଭ କରାଯାଏ । କୌଣସି ବିଷୟରେ ଆକାଙ୍କ୍ଷା ଥିଲେ, ଆମେମାନେ ବାସନାର ଦାସ ବୋଲି ବୁଝିବାକୁ ହେବ । ମୁହୂର୍ତ୍ତିକ ପାଇଁ ସମ୍ପୂର୍ଣ୍ଣଭାବରେ ବାସନାତ୍ୟାଗ କର, ଦେଖିବ କୁହୁଡ଼ି ଚାଲିଯାଇଛି । ମନୁଷ୍ୟ ଯେତେବେଳେ ନିଜେ ସବୁ, ସେତେବେଳେ ତାହାର ବାସନା ବା ଆଉ କ'ଣ ? ସର୍ବସ୍ୱ

ତ୍ୟାଗ କର ଆତ୍ମତୁଷ୍ଟ ଓ ଆତ୍ମାରାମ ହେବା ହିଁ ଜ୍ଞାନଯୋଗର ରହସ୍ୟ । 'ନାସ୍ତି' କହିଲେ 'ନାସ୍ତି'-ଭାବ ଲାଭ କରିବ; 'ଅସ୍ତି' କହିଲେ 'ଅସ୍ତି'-ଭାବ ପାଇବ । ଅନ୍ତରସ୍ଥାର ଅର୍ଚ୍ଚନା କର, ଅନ୍ୟ କିଛିର ଅସ୍ତିତ୍ୱ ନାହିଁ; ଯାହା ଆମମାନଙ୍କୁ ବାନ୍ଧି ରଖିଛି, ତାହା ମାୟା—ଭ୍ରାନ୍ତି ।

( ୭ )

ବିଶ୍ୱରେ ସବୁ ଆତ୍ମା-ସାପେକ୍ଷ, କିନ୍ତୁ ଆତ୍ମା ସମ୍ପୂର୍ଣ୍ଣ ନିରପେକ୍ଷ । 'ଆମେମାନେ ଆତ୍ମା'—ଏହା ଜାଣିଲେ ଆମମାନଙ୍କର ମୁକ୍ତି ହେବ । ମରଣଶୀଳ ଜୀବଭାବରେ ଆମେମାନେ ମୁକ୍ତ ନୋହୁଁ, କେବେହେଁ ହୋଇପାରୁ ନାହିଁ । ମୁକ୍ତ ମରଣଶୀଳତା— ସ୍ୱବିରୋଧୀ ଶବ୍ଦ, କାରଣ ମରଣଶୀଳତା ପରିଣାମୀ ଏବଂ କେବଳ ଅପରିଣାମୀ ହିଁ ମୁକ୍ତିଲାଭ କରିପାରେ । କେବଳ ଆତ୍ମା ମୁକ୍ତ ଏବଂ ଆତ୍ମା ହିଁ ଆମମାନଙ୍କର ପ୍ରକୃତ ସତ୍ତା । ମୁକ୍ତି ପାଇଁ ଅନ୍ତରରେ ଏହି ଆକାଙ୍‌କ୍ଷା ଆମେମାନେ ଅନୁଭବ କରୁ । ସମସ୍ତ ମତବାଦ ଓ ସମସ୍ତ ବିଶ୍ୱାସ ସତ୍ତ୍ୱେ ଆମେମାନେ ଏହା ଜାଣୁ ଏବଂ ଆମର ପ୍ରତ୍ୟେକ କାର୍ଯ୍ୟରେ ତାହା ପ୍ରମାଣିତ ହେଉଛି । ଇଚ୍ଛାଶକ୍ତି ସ୍ୱାଧୀନ ନୁହେଁ, ଏହାର ପ୍ରତୀୟ-ମାନ ସ୍ୱାଧୀନତା ପ୍ରକୃତ ସତ୍ତାର ପ୍ରତିଛାୟାମାତ୍ର । ଏହି ଜଗତ ଯଦି ଅସୀମ କାର୍ଯ୍ୟକାରଣ-ଶୃଙ୍ଖଳ ହୋଇଥାନ୍ତା, ମନୁଷ୍ୟ କେଉଁଠାରେ ଛିଡ଼ା ହୋଇ କାହାକୁ ସାହାଯ୍ୟ କରନ୍ତା ? ଉଦ୍ଧାରକର୍ତ୍ତାଙ୍କର ଛିଡ଼ା ହେବା ପାଇଁ ଗୋଟିଏ ସ୍ଥାନ ଆବଶ୍ୟକ, ନ ହେଲେ ଖର ଜଳସ୍ରୋତରେ ଭାସମାନ ବ୍ୟକ୍ତିକୁ ରକ୍ଷା କରିବା କିପରି ସମ୍ଭବ ହେବ ? ଯେଉଁ ଧର୍ମୋନ୍ମାଦ ନିଜକୁ ସାମାନ୍ୟ କୀଟ ବୋଲି କହେ, ସେ ମଧ୍ୟ ଭାବେ ଯେ ସେ ସନ୍ତପଥରେ ଚାଲିଛି । କୀଟ ମଧ୍ୟରେ ସେ ସାଧୁ (ହେବାର ସମ୍ଭାବନା) ଦର୍ଶନ କରୁଛି ।

ମାନବ-ଜୀବନର ଲକ୍ଷ୍ୟ ବା ଉଦ୍ଦେଶ୍ୟ ଦୁଇଟି—ଯଥାର୍ଥ ଜ୍ଞାନ (ବିଜ୍ଞାନ) ଓ ଆନନ୍ଦ । ମୁକ୍ତି ବ୍ୟତୀତ ଏହି ଦୁଇଟି ଲାଭ କରିବା ଅସମ୍ଭବ । ଏହି ଦୁଇଟି ସମସ୍ତ ଜୀବନର ସ୍ପର୍ଶମଣି । ନିତ୍ୟ ଏକତ୍ୱକୁ ଏପରି ଗଭୀର ଭାବରେ ଅନୁଭବ କରିବା ଉଚିତ ଯେପରି ଆମେ ସମସ୍ତ ଦୁଃଖୀଙ୍କ ପାଇଁ କାନ୍ଦିବୁ; ଆମେମାନେ ବୋଧ କରିବୁ— ଆମେମାନେ ହିଁ ଦୁଃଖ ପାଉଛୁ । ଆତ୍ମୋତ୍ସର୍ଗ ଚିରନ୍ତନ ନୀତି, ଆତ୍ମପ୍ରତିଷ୍ଠା ନୁହେଁ । ସବୁ ଯେତେବେଳେ ଏକ, ସେତେବେଳେ କାହାକୁ ପ୍ରତିଷ୍ଠାକରିବ ? ସବୁ ପ୍ରେମମୟ, 'ଅଧିକାର' ବୋଲି କିଛି ନାହିଁ । ଯୀଶୁଙ୍କ ପ୍ରଚାରିତ ମହାନ୍ ଉପଦେଶ ଅନୁସାରେ ଜୀବନଯାପନ କରାଯାଇ ନାହିଁ; ତାଙ୍କର ନୀତି ଅନୁସରଣ କରି ଦେଖ, ଜଗତର ଉଦ୍ଧାର ହୁଏ କି ନାହିଁ । ବିପରୀତ ନୀତି ହିଁ ଜଗତର ଅନିଷ୍ଟ କରିଛି । ସ୍ୱାର୍ଥପରତା ନୁହେଁ, ନିଃସ୍ୱାର୍ଥତା ହିଁ ଏହି ପ୍ରଶ୍ନର ସମାଧାନ କରିପାରେ । ଅଧିକାରର ଭାବ ଏକ ସୀମାବଦ୍ଧ ଭାବ; 'ମୋର' 'ତୁମର' ବୋଲି ବାସ୍ତବିକ କିଛି ନାହିଁ । କାରଣ 'ମୁଁ

ତୁମେ, ତୁମେ ମୁଁ !' ଆମମାନଙ୍କର ଦାୟିତ୍ୱ ଅଛି, 'ଅଧିକାର' ନାହିଁ । 'ମୁଁ ଜନ୍' 'ମୁଁ ମେରି' ନ କହି 'ମୁଁ ବିଶ୍ୱ' କହିବା ଉଚିତ । ଏହି ସୀମାବଦ୍ଧ ଭାବଗୁଡ଼ିକ ଭ୍ରାନ୍ତ ଏବଂ ଆମମାନଙ୍କୁ ବାନ୍ଧି କରି ରଖିଛି । 'ମୁଁ ଜନ୍'—ଏହି ଚିନ୍ତା ମନ ମଧ୍ୟରେ ଉଦିତ ହେବା ମାତ୍ରେ ଯେପରି ମୁଁ କେତେଗୁଡ଼ିଏ ବାସ୍ତବ ଅଧିକାର ଚାହେଁ ଏବଂ କହୁଥାଏ 'ମୁଁ' ଓ 'ମୋର' ଏବଂ କ୍ରମାଗତ ନୂତନ ପାର୍ଥକ୍ୟ ସୃଷ୍ଟି କରୁଥାଏ । ଏହିପରି ନୂତନ ପାର୍ଥକ୍ୟ ସହିତ ଆମମାନଙ୍କର ଦାସତ୍ୱ ବା ବନ୍ଧନ ବଢ଼ୁଥାଏ ଏବଂ ଆମେମାନେ ସେହି ସର୍ବଗତ ଅଖଣ୍ଡ ଅନନ୍ତ ଅଭେଦ ସତ୍ତାଠାରୁ କ୍ରମଶଃ ଦୂରକୁ ଚାଲିଯାଉ । ଏକମାତ୍ର ଅଦ୍ୱିତୀୟ ପୁରୁଷ ଅଛନ୍ତି, ଆମେମାନେ ପ୍ରତ୍ୟେକେ ତାହା । ଅଭେଦ-ଜ୍ଞାନ ହିଁ ପ୍ରେମ ଓ ଭୟଶୂନ୍ୟତା; ଭେଦଜ୍ଞାନ ଘୃଣା ଓ ଭୀତି ଆଡ଼କୁ ଟାଣିନିଏ । ଅଭେଦ-ଭାବ—ଏକତ୍ୱ ହିଁ ସମସ୍ତ ପ୍ରୟୋଜନ ତୁଲାଇ ଦିଏ । ଅନ୍ୟ-ମାନଙ୍କୁ ଛାଡ଼ିଦେଇ ଆମେମାନେ କ୍ଷୁଦ୍ର ବେଷ୍ଟନୀ ମଧ୍ୟରେ ଆବଦ୍ଧ ରହିବାକୁ ଇଚ୍ଛା କରୁ, କିନ୍ତୁ ଊର୍ଦ୍ଧ୍ୱରେ—ଆକାଶରେ ଆମେମାନେ ତାହା କରିପାରିବା ନାହିଁ । ସାମ୍ପ୍ରଦାୟିକ ଧର୍ମ ଏହିପରି ଆଚରଣ କରି କହୁଥାଏ—ଏକମାତ୍ର ଏହି ପଥରେ ମୁକ୍ତି ମିଳିବ, ଅନ୍ୟାନ୍ୟ ପଥଗୁଡ଼ିକ ଭୁଲ୍ । ଆମମାନଙ୍କର ଜୀବନର ଉଦ୍ଦେଶ୍ୟ—ଏହି କ୍ଷୁଦ୍ର ପରିସରଗୁଡ଼ିକୁ ଲୋପ କରି ତାହାର ସୀମାରେଖାକୁ ବଢ଼ାଇବା, ଯେପରିକି ସବୁ ଧର୍ମ ଈଶ୍ୱରଙ୍କ ନିକଟରେ ପହଞ୍ଚିପାରିବେ । ଏହି ଅକିଞ୍ଚନ କ୍ଷୁଦ୍ର ସ୍ୱାର୍ଥକୁ ବଳି ଦେବାକୁ ହେବ । ଏହା ହେଉଛି ସେହି ସତ୍ୟ ଯାହାକି ନବ ଜୀବନରେ, ଦୀକ୍ଷାଲାଭ, 'ପୁରାତନ ମନୁଷ୍ୟ'ର ମୃତ୍ୟୁ, ନୂତନର ଜନ୍ମ, ମିଥ୍ୟା ଅହମିକାର ନାଶ, ବିଶ୍ୱର ଏକମାତ୍ର ସତ୍ତା ସେହି ଆତ୍ମାର ଅନୁଭୂତି ପ୍ରଭୃତିରେ ସଙ୍କେତିତ ।

ବେଦର ଦୁଇଟି ପ୍ରଧାନ ବିଭାଗ—କର୍ମକାଣ୍ଡ ଅର୍ଥାତ୍ କ୍ରିୟାକର୍ମ-ବିଷୟକ ଅଂଶ ଏବଂ ଜ୍ଞାନକାଣ୍ଡ ଅର୍ଥାତ୍ ଶୁଦ୍ଧ ଜ୍ଞାନଲାଭ-ବିଷୟକ ଅଂଶ । ବେଦରେ ଧର୍ମ-ଭାବର କ୍ରମୋନ୍ନତିର ଧାରା ଆମେମାନେ ଲକ୍ଷ୍ୟ କରୁ । ଏହାର କାରଣ ଏହି ଯେ, ଯେତେବେଳେ ଉଚ୍ଚତର ସତ୍ୟର ଉପଲବ୍ଧି ହେଲା, ସେତେବେଳେ ସେଠାରେ ପହଞ୍ଚିବାର ସୋପାନସ୍ୱରୂପ ନିମ୍ନତର ସତ୍ୟର ପ୍ରତୀତି ରକ୍ଷିତ ହୋଇଥିଲା । ନିମ୍ନତର ସତ୍ୟର ପ୍ରତୀତି ରକ୍ଷା କରିବାର କାରଣ ଏହି ଯେ—ଋଷିମାନେ ବୁଝିଥିଲେ, ସୃଷ୍ଟି ନିତ୍ୟ ହୋଇଥିବାରୁ ଜ୍ଞାନର ପ୍ରଥମ ସୋପାନ ଆବଶ୍ୟକ କରୁଥିବା ଦଳେ ଲୋକ ସର୍ବଦା ରହିବେ ଏବଂ ସର୍ବୋଚ୍ଚ ଦାର୍ଶନିକ ଜ୍ଞାନର ଦ୍ୱାର ସମସ୍ତଙ୍କ ନିକଟରେ ଉନ୍ମୁକ୍ତ ରହିଥିଲେ ମଧ୍ୟ ତାହା କେବେହେଲେ ସମସ୍ତଙ୍କର ବୋଧଗମ୍ୟ ହେବାର ନୁହେଁ । ପ୍ରାୟ ଅନ୍ୟାନ୍ୟ ସମସ୍ତ ଧର୍ମରେ କେବଳ ସତ୍ୟର ଶ୍ରେଷ୍ଠ ଅନୁଭୂତିଟି ରକ୍ଷିତ ହୋଇଛି । ଫଳତଃ ପୂର୍ବ ଭାବଗୁଡ଼ିକ ବିଲୁପ୍ତ ହୋଇଛି ଏବଂ ନୂତନ ଭାବ-ଗୁଡ଼ିକ କେବଳ ଅଳ୍ପସଂଖ୍ୟକ ଲୋକଙ୍କର ବୋଧଗମ୍ୟ ହୋଇଛି ଓ କ୍ରମଶଃ ବହୁ-ଲୋକଙ୍କ ନିକଟରେ ଅର୍ଥହୀନ ହୋଇଯାଇଛି । ଆମେମାନେ ଦେଖୁ ଏହି କୁଫଳ

ପ୍ରାଚୀନ ରୀତିନୀତି ଓ ଐତିହ୍ୟଗୁଡ଼ିକର ବିରୋଧରେ ଉଦ୍ଧତଭାବରେ ବିଦ୍ରୋହ ଘୋଷଣା କରିଛି । ଆଧୁନିକ ମନୁଷ୍ୟ ଏହି ପ୍ରାଚୀନ ମତବାଦଗୁଡ଼ିକୁ ଗ୍ରହଣ କରିବା ପରିବର୍ତ୍ତେ କାହିଁକି ସେମାନେ ଏଗୁଡ଼ିକୁ ଗ୍ରହଣ କରିବେ, ତାହାର କାରଣ ଦର୍ଶାଇବା ପାଇଁ ସ୍ପର୍ଦ୍ଧାର ସହିତ ଦାବି କରୁଛନ୍ତି । ଆଧୁନିକ ଖ୍ରୀଷ୍ଟଧର୍ମର ଅଧିକାଂଶ ମତବାଦ ପ୍ରାଚୀନ ବିଶ୍ୱାସ ଓ ରୀତିନୀତିଗୁଡ଼ିକ ଉପରେ ନୂତନ ନାମ ଓ ଅର୍ଥର ପ୍ରୟୋଗ ମାତ୍ର । ଯଦି ପ୍ରାଚୀନ ମୂଳସୂତ୍ରଗୁଡ଼ିକ ରକ୍ଷିତ ହୋଇଥାଆନ୍ତା ଏବଂ ପରିବର୍ତ୍ତନର କାରଣଗୁଡ଼ିକ ସ୍ପଷ୍ଟଭାବରେ ବ୍ୟାଖ୍ୟାତ ହୋଇଥାଆନ୍ତା, ତେବେ ଅନେକ ବିଷୟ ସୁବୋଧ ହୋଇପାରିଥାଆନ୍ତା । ବେଦରେ ପ୍ରାଚୀନ ଭାବଗୁଡ଼ିକ ରକ୍ଷିତ ହୋଇଛି; ଏହି କାରଣରୁ ସେଗୁଡ଼ିକର ବ୍ୟାଖ୍ୟା କରିବା ପାଇଁ ଏବଂ ଉପସ୍ଥିତିର କାରଣ ଦର୍ଶାଇବା ପାଇଁ ବିପୁଳ ଭାଷ୍ୟର ପ୍ରଣୟନ ଆବଶ୍ୟକ ହୋଇଛି । ପ୍ରାଚୀନ ମତଗୁଡ଼ିକ ନିରର୍ଥକ ହେଲା ପରେ ମଧ୍ୟ ସେଗୁଡ଼ିକୁ ଦୃଢ଼ଭାବରେ ଗ୍ରହଣ କରିଥିବା ଯୋଗୁଁ କୁସଂସ୍କାରର ମଧ୍ୟ ସୃଷ୍ଟି ହୋଇଛି । ଅନେକ ଆନୁଷ୍ଠାନିକ କ୍ରିୟା-କର୍ମରେ ଅଧୁନା-ବିସ୍ମୃତ ଭାଷାରେ ମନ୍ତ୍ରଗୁଡ଼ିକ ଉଚ୍ଚାରିତ ହୋଇଆସୁଛି; ବର୍ତ୍ତମାନ ଆଉ ଏ ମନ୍ତ୍ରଗୁଡ଼ିକର କୌଣସି ପ୍ରକୃତ ଅର୍ଥ ମିଳେ ନାହିଁ । ଖ୍ରୀଷ୍ଟଜନ୍ମର ବହୁପୂର୍ବରୁ ବିବର୍ତ୍ତିବାଦ ବେଦରେ ସ୍ଥାନ ପାଇଛି, କିନ୍ତୁ ଡାରୁଇନ ଏହି ମତବାଦଟିକୁ ସତ୍ୟ ବୋଲି ସ୍ୱୀକାର ନ କରିବା ପର୍ଯ୍ୟନ୍ତ ଏହା ହିନ୍ଦୁମାନଙ୍କର ଗୋଟିଏ କୁସଂସ୍କାରରୂପେ ପରିଗଣିତ ହେଉଥିଲା ।

ପ୍ରାର୍ଥନା ଓ ଉପାସନାର ବାହ୍ୟ-ରୀତିନୀତିଗୁଡ଼ିକ କର୍ମକାଣ୍ଡର ଅନ୍ତର୍ଗତ । ନିଃସ୍ୱାର୍ଥ ଭାବରେ ଅନୁଷ୍ଠିତ ହେଲେ ଏବଂ କେବଳ ବାହ୍ୟ ଆଡ଼ମ୍ବରରେ ପର୍ଯ୍ୟବସିତ ହେବାକୁ ନ ଦେଲେ ଏଗୁଡ଼ିକ କଲ୍ୟାଣପ୍ରଦ । ଏଗୁଡ଼ିକ ଚିତ୍ତକୁ ଶୁଦ୍ଧ କରେ । କର୍ମ-ଯୋଗୀ ଇଚ୍ଛା କରନ୍ତି, ପ୍ରତ୍ୟେକେ ତାଙ୍କ ପୂର୍ବରୁ ମୁକ୍ତିଲାଭ କରନ୍ତୁ । ଅନ୍ୟକୁ ମୁକ୍ତ ହେବାରେ ସାହାଯ୍ୟ କରିବା ହିଁ ତାଙ୍କର ଏକମାତ୍ର ମୁକ୍ତି । 'କୃଷ୍ଣଭକ୍ତମାନଙ୍କର ସେବା ହିଁ ତାଙ୍କର ଶ୍ରେଷ୍ଠ ଉପାସନା ।' ଜଣେ ମହାପୁରୁଷ କହିଛନ୍ତି, 'ସମଗ୍ର ଜଗତର ପାପ ଗ୍ରହଣ କରି ମୋତେ ନର୍କକୁ ଯିବାକୁ ଦିଅ, କିନ୍ତୁ ଜଗତର ପରିତ୍ରାଣ ହେଉ ।' ଏହି ଭାବର ପ୍ରକୃତ ଉପାସନା ଆତ୍ମୋତ୍ସର୍ଗରେ ପରିଣତ ହୁଏ । କଥିତ ଅଛି, ଜଣେ ମହାଜ୍ଞାନୀ ତାଙ୍କର ବହୁଦିନର ବିଶ୍ୱସ୍ତ କୁକୁରଟି ଯେପରି ସ୍ୱର୍ଗକୁ ଯାଇପାରିବ, ସେଥିପାଇଁ ନିଜର ପୁଣ୍ୟ ସ୍ୱେଚ୍ଛାରେ କୁକୁରକୁ ଦାନ କରି ସାନନ୍ଦରେ ନର୍କକୁ ଯିବା ପାଇଁ ଉଦ୍ୟତ ହୋଇଥିଲେ ।

ବେଦର ଜ୍ଞାନକାଣ୍ଡ ଶିକ୍ଷା ଦିଏ ଯେ, ଜ୍ଞାନ ହିଁ ଏକମାତ୍ର ପରିତ୍ରାତା; ଏହାର ଅର୍ଥ, ମୁକ୍ତିଲାଭ ନ କରିବା ପର୍ଯ୍ୟନ୍ତ ଜ୍ଞାନକୁ ଆଶ୍ରୟ କରି ରହିବାକୁ ହେବ । ଜ୍ଞାନ ହିଁ ପ୍ରଥମ ଲକ୍ଷ୍ୟ, ଅର୍ଥାତ୍ ଜ୍ଞାତା ନିଜକୁ ଜାଣିବା । ଏକମାତ୍ର କର୍ତ୍ତା ଆତ୍ମା ନିଜକୁ ପ୍ରକାଶ କରି ଜାଣିବାକୁ ଚେଷ୍ଟା କରନ୍ତି । ଦର୍ପଣ ଯେତେ ସ୍ୱଚ୍ଛ ହେବ,

ପ୍ରତିବିମ୍ବ ସେତେ ସ୍ପଷ୍ଟ ହେବ । ଏହିପରି ମନୁଷ୍ୟ ମଧ୍ୟ ଶ୍ରେଷ୍ଠ ଦର୍ପଣ; ତାହାର ଅନ୍ତଃକରଣ ଯେତେ ବେଶୀ ଶୁଦ୍ଧ ହେବ, ତା' ମଧ୍ୟରେ ଈଶ୍ୱର ସେତେ ବେଶୀ ପ୍ରତିବିମ୍ବିତ ହେବେ । ମନୁଷ୍ୟ ନିଜକୁ ଈଶ୍ୱରଙ୍କଠାରୁ ପୃଥକ୍ ବୋଲି ଭାବ ଏବଂ ଦେହାତ୍ମବୁଦ୍ଧି ଆଣି ଭ୍ରମରେ ପତିତ ହୁଏ । ମାୟାରୁ ଏହି ଭ୍ରମର ଉତ୍ପତ୍ତି । ମାୟା ଠିକ୍ ଭ୍ରାନ୍ତି ନୁହେଁ; ଯେଉଁ ବସ୍ତୁ ପ୍ରକୃତରେ ଯାହା, ତାହାକୁ ସେହିପରି ନ ଦେଖି ଅନ୍ୟ ଭାବରେ ଦେଖିବାକୁ 'ମାୟା' କହନ୍ତି । ଏହି ଦେହାତ୍ମବୁଦ୍ଧିରୁ ଭେଦ, ଭେଦରୁ ଦ୍ୱନ୍ଦ୍ୱ ଓ ଦ୍ୱେଷର ଉତ୍ପତ୍ତି ହୁଏ । ଏହି ଭେଦବୁଦ୍ଧି ଯେତେଦିନ ଥିବ, ସେତେଦିନ ଆମେମାନେ ସୁଖୀ ହୋଇପାରିବା ନାହିଁ । ଜ୍ଞାନୀ କହନ୍ତି—ଅଜ୍ଞାନ ଓ ଭେଦ-ଦୃଷ୍ଟି ସବୁ ଦୁଃଖର ଦୁଇଟି କାରଣ । ସଂସାରରେ ଆଘାତ ଉପରେ ଆଘାତ ପାଇ ମନୁଷ୍ୟ ମୁକ୍ତି ପାଇଁ ସଜାଗ ହୁଏ ଏବଂ ଜନ୍ମ-ମୃତ୍ୟୁର ଭୀଷଣ ଆବର୍ତ୍ତନରୁ ପରିତ୍ରାଣ ପାଇବାର ଉପାୟ ଖୋଜି ଜ୍ଞାନର ପଥ ଆଶ୍ରୟ କରେ ଏବଂ ସ୍ୱ-ସ୍ୱରୂପ ଉପଲବ୍ଧି କରି ମୁକ୍ତ ହୁଏ । ମୁକ୍ତିଲାଭ ପରେ ମନୁଷ୍ୟ ସଂସାରକୁ ଗୋଟିଏ ପ୍ରକାଣ୍ଡ ଯନ୍ତ୍ରରୂପେ ଦେଖେ ଏବଂ ନିଜର ହାତଟି ଯନ୍ତ୍ରର ଚକ୍ର ମଧ୍ୟରେ ଯେପରି ନ ପଡ଼େ ସେ-ବିଷୟରେ ସାବଧାନ ହୁଏ । ଏହି ଭାବରେ ମୁକ୍ତ ପୁରୁଷର କର୍ମନିବୃତ୍ତି ହୁଏ । କେଉଁ ଶକ୍ତି ମୁକ୍ତ ପୁରୁଷକୁ କର୍ମରେ ଆବଦ୍ଧ କରିପାରେ ? ସେ ଲୋକର ହିତ କରନ୍ତି, କାରଣ ଏହା ତାଙ୍କର ପ୍ରକୃତି, କୌଣସି କଳ୍ପିତ କର୍ତ୍ତବ୍ୟର ପ୍ରେରଣାରେ ନୁହେଁ । ଯେଉଁମାନେ ଇନ୍ଦ୍ରିୟର ଦାସ, ସେମାନଙ୍କ ସମ୍ବନ୍ଧରେ ଏକଥା ପ୍ରଯୋଜ୍ୟ ନୁହେଁ । ନିକୃଷ୍ଟ ଅହମିକା ଯେ ଅତିକ୍ରମ କରିଛନ୍ତି, ତାଙ୍କ ପାଇଁ ଏହି ମୁକ୍ତି—ସେ ଆତ୍ମାରେ ପ୍ରତିଷ୍ଠିତ—କୌଣସି ନିୟମର ଅଧୀନ ନୁହନ୍ତି, ସେ ମୁକ୍ତ ଏବଂ ସିଦ୍ଧ । ସେ ପ୍ରାଚୀନ କୁସଂସ୍କାରଗୁଡ଼ିକୁ ଅତିକ୍ରମ କରି ସଂସାରଚକ୍ରର ବାହାରକୁ ଯାଇଛନ୍ତି । ପ୍ରକୃତି ଆମ-ମାନଙ୍କର ନିଜର ଦର୍ପଣସ୍ୱରୂପ । ମନୁଷ୍ୟର କର୍ମଶକ୍ତିର ସୀମା ଅଛି, କିନ୍ତୁ ବାସନା ଅସୀମ, ସେଥିପାଇଁ ଅମେମାନେ କର୍ମବିମୁଖ ହୋଇ ଅପରର କର୍ମଶକ୍ତିକୁ କାର୍ଯ୍ୟରେ ଲଗାଇ ସେମାନଙ୍କର ଶ୍ରମର ଫଳ ଭୋଗ କରିବାକୁ ସଚେଷ୍ଟ ହେଉ । କାର୍ଯ୍ୟ ସକାଶେ ଯନ୍ତ୍ର ଆବିଷ୍କାରଦ୍ୱାରା କେବେହେଲେ ମନୁଷ୍ୟର ଶ୍ରୀବୃଦ୍ଧି ହୁଏ ନାହିଁ, କାରଣ ଆମେ ବାସନାର ପରିତୃପ୍ତି କରିବାକୁ ଯାଇ ଅଧିକ ବାସନା ସୃଷ୍ଟି କରୁ; ଆମମାନଙ୍କର ଆକାଙ୍କ୍ଷା ନିଃଶେଷିତ ନ ହୋଇ ଉତ୍ତରୋତ୍ତର ବୃଦ୍ଧି ପାଏ । ଅତୃପ୍ତ ବାସନାସହ ମରିଲେ ବାସନା-ପରିତୃପ୍ତିର ବୃଥା ଅନ୍ୱେଷଣରେ ବାରମ୍ବାର ଜନ୍ମ-ଗ୍ରହଣ କରିବାକୁ ହୁଏ । ହିନ୍ଦୁମାନେ କହନ୍ତି, 'ମନୁଷ୍ୟ-ଶରୀର ଧାରଣ କରିବା ପୂର୍ବରୁ ଆମମାନଙ୍କୁ ଅଶୀ-ଲକ୍ଷ ଯୋନି ପରିଭ୍ରମଣ କରିବାକୁ ହୋଇଛି ।' ବାସନା ନାଶ କରି ତାହା ହାତରୁ ପରିତ୍ରାଣ ପାଅ—ଏହା ହିଁ ଜ୍ଞାନର କଥା । ଏହା ହିଁ ଏକମାତ୍ର ପନ୍ଥା । ସବୁ କାର୍ଯ୍ୟକାରଣ-ସମ୍ବନ୍ଧ ଦୂର କରି ଆତ୍ମାକୁ ଉପଲବ୍ଧି କର । ଏକମାତ୍ର ମୁକ୍ତି ହିଁ ଯଥାର୍ଥ ନୈତିକତା ଦେଇପାରେ । କେବଳ କାର୍ଯ୍ୟ-କାରଣ-

ଶୃଙ୍ଖଳା ଅନନ୍ତକାଳ ରହିଲେ ନିର୍ବାଣଲାଭ ଅସମ୍ଭବ ହୁଅନ୍ତା । ଏହି କାର୍ଯ୍ୟକାରଣ-ଶୃଙ୍ଖଳରେ ଆବଦ୍ଧ ମିଥ୍ୟା 'ଅହଂ'ର ନାଶ ହିଁ ନିର୍ବାଣ । କାର୍ଯ୍ୟ-କାରଣର ଅତୀତ ହେବା ହିଁ ମୁକ୍ତି । ଆମମାନଙ୍କର ଯଥାର୍ଥ ସ୍ୱରୂପ ସତ୍ ଓ ମୁକ୍ତ । ଆମେମାନେ ଶୁଦ୍ଧ ସତ୍ତ୍ୱ, ଅସତ୍ ହେବା ବା ଅନ୍ୟାୟ କର୍ମ କରିବା ଆମମାନଙ୍କର ସ୍ୱଭାବବିରୁଦ୍ଧ । ଯେତେବେଳେ ଆମେମାନେ ଚକ୍ଷୁ ବା ମନଦ୍ୱାରା ଈଶ୍ୱରଙ୍କ ସମ୍ବନ୍ଧରେ ଜ୍ଞାନଲାଭ କରୁ, ସେତେବେଳେ 'ଏହା' ବା 'ତାହା' ସଂଜ୍ଞାଦ୍ୱାରା ତାହାଙ୍କୁ ଅଭିହିତ କରୁ; କିନ୍ତୁ ବାସ୍ତବିକ ସେ ଏକ—ସମସ୍ତ ବୈଚିତ୍ର୍ୟ ତାଙ୍କର ବିଷୟରେ ଆମମାନଙ୍କର ବ୍ୟାଖ୍ୟା । ଆମେମାନେ ପରିବର୍ତ୍ତିତ ନ ହୋଇ ଆମମାନଙ୍କର ଯଥାର୍ଥ ସ୍ୱରୂପକୁ ଜାଣିପାରୁ । ଅଜ୍ଞାନ ଓ ଅସାମ୍ୟ ସମସ୍ତ ଦୁଃଖର କାରଣ—ବୁଦ୍ଧଙ୍କର ଏହି ସଂକ୍ଷିପ୍ତ ସାର-କଥା ବୈଦାନ୍ତିକମାନେ ଗ୍ରହଣ କରିଛନ୍ତି । କାରଣ ଏହା ହିଁ ଶ୍ରେଷ୍ଠ ଆବିଷ୍କାର ଓ ଏହି ମାନବଶ୍ରେଷ୍ଠଙ୍କର ବିସ୍ମୟକର ପ୍ରଜ୍ଞାର ନିଦର୍ଶନ । ଆସନ୍ତୁ, ଆମେମାନେ ସାହସୀ ଓ ଅକପଟ ହେବା; ତେବେ ଆନ୍ତରିକ ଶ୍ରଦ୍ଧା ଯେନି ଯେକୌଣସି ପଥ ଆମେ ଅବଲମ୍ବନ କରୁନା କାହିଁକି, ସେଥିରେ ହିଁ ମୁକ୍ତିରୂପକ ଲକ୍ଷ୍ୟରେ ପହଞ୍ଚିବା । ଶିଙ୍ଖଳର ପରସ୍ପର ସଂଯୋଜକ ଖଣ୍ଡଗୁଡ଼ିକର ଗୋଟିଏ ହାତକୁ ଆସିଲେ କ୍ରମଶଃ ଗୋଟି ଗୋଟି ହୋଇ ସମଗ୍ର ଶୃଙ୍ଖଳ ହସ୍ତଗତ ହେବ । ମୂଳରେ ଜଳସେଚନ କଲେ ସମଗ୍ର ବୃକ୍ଷ ସିଞ୍ଚିତ ହେବ । ପ୍ରତି ପତ୍ରରେ ଜଳସିଞ୍ଚନଦ୍ୱାରା କେବଳ ସମୟ ନଷ୍ଟ ହେବ, ଉପକାର କିଛି ମାତ୍ର ହେବ ନାହିଁ । ଅନ୍ୟ ଭାବରେ କହିଲେ କହିବାକୁ ହେବ, ଈଶ୍ୱରଙ୍କୁ ଲାଭ କରିବାର ଚେଷ୍ଟା କର, ତାଙ୍କୁ ଲାଭ କଲେ ଆମେମାନେ ସବୁ ପାଇଲୁ । ଗୀର୍ଜା, ଧର୍ମମତ, ପୂଜାପଦ୍ଧତି—ଏଗୁଡ଼ିକ ଧର୍ମର ଅପରିଣତ ଚାରା ଗଛକୁ ରକ୍ଷା କରିବା ପାଇଁ ବାଡ଼ ମାତ୍ର; କିନ୍ତୁ ପରେ ଯେପରି ଚାରା ଗଛଟି ମହୀରୁହ ହୋଇପାରିବ, ସେଥିପାଇଁ ଏହିଗୁଡ଼ିକ ଉଠାଇ ଦେବାକୁ ହେବ । ସୁତରାଂ ବିଭିନ୍ନ ଧର୍ମସମ୍ପ୍ରଦାୟ, ବାଇବେଲ, ବେଦ, ଶାସ୍ତ୍ର ଏହି ଧର୍ମରୂପକ ଚାରା ଗଛର କୁଣ୍ଡପରି; କିନ୍ତୁ ଚାରା ଗଛଟିକୁ ବାହାରକୁ ଯାଇ ବିସ୍ତାରଲାଭ କରିବାକୁ ହେବ ।

ଆମେମାନେ ଏହି ପୃଥିବୀ, ସୂର୍ଯ୍ୟଲୋକ, ନକ୍ଷତ୍ରଲୋକ—ସବୁଲୋକର ଅନ୍ତର୍ଗତ, ଏହା ଆମେମାନେ ସମଭାବରେ ଅନୁଭବ କରିବାକୁ ଶିଖିବା । ଆତ୍ମା ଦେଶ ଓ କାଳର ଅତୀତ; ଦୃଷ୍ଟିସମ୍ପନ୍ନ ସମସ୍ତ ଚକ୍ଷୁ ମୋର ଚକ୍ଷୁ, ଈଶ୍ୱରଙ୍କର ଗୁଣଗାନରେ ରତ ସମସ୍ତ ମୁଖ ମୋର ମୁଖ, ପ୍ରତ୍ୟେକ ପାପୀ ମଧ୍ୟ ମୁଁ । ଆମେମାନେ କୌଣସି-ଠାରେ ବଦ୍ଧ ନୋହୁଁ, ଆମେମାନେ ବିଦେହ । ଏହି ବିଶ୍ୱ ଆମମାନଙ୍କର ଦେହ । ଆମେମାନେ ସ୍ୱଚ୍ଛ ସ୍ଫଟିକପରି ସମସ୍ତ ବସ୍ତୁକୁ ପ୍ରତିବିମ୍ବିତ କରୁଛୁ, କିନ୍ତୁ ସର୍ବଦା ଆମେମାନେ ସେହି ଏକ ହୋଇ ରହିଛୁ । ଆମେମାନେ ଯାଦୁକର, ଇଚ୍ଛାନୁଯାୟୀ ବାଡ଼ି ବୁଲାଇ ଆମ ସମ୍ମୁଖରେ ନାନା ଦୃଶ୍ୟ ସୃଷ୍ଟି କରୁଛୁ; କିନ୍ତୁ ଆମମାନଙ୍କୁ ଏହି-ସବୁ ଦୃଶ୍ୟ-ପ୍ରପଞ୍ଚର ଅନ୍ତରାଳକୁ ଯାଇ ଆତ୍ମଜ୍ଞାନ ଲାଭ କରିବାକୁ ହେବ । ଏହି

ବିଶ୍ୱ-କେଟଲି ମଧ୍ୟରେ ଥିବା ଫୁଟନ୍ତ ପାଣିପରି ପ୍ରଥମେ ଗୋଟିଏ, ତା'ପରେ ଆଉ ଗୋଟିଏ, ତା'ପରେ ବହୁ ବୁଦ୍‌ବୁଦର ସୃଷ୍ଟି ହୋଇ ଅବଶେଷରେ ସବୁ ଜଳ ଏକାଥରକେ ଫୁଟି ଉଠି ବାଷ୍ପାକାରରେ ଉଡ଼ିଯିବ । ପ୍ରଥମେ ମହାନ୍ ଆଚାର୍ଯ୍ୟଗଣ ବୁଦ୍‌ବୁଦପରି ଏଠାରେ ଜଣେ, ସେଠାରେ ଜଣେ ଆବିର୍ଭୂତ ହୋଇଛନ୍ତି; ଅବଶେଷରେ ସମସ୍ତ ପ୍ରାଣୀ ବୁଦ୍‌ବୁଦରେ ପରିଣତ ହୋଇ ପରିତ୍ରାଣ ଲାଭ କରିବେ । ଚିର ନବୀନ ସୃଷ୍ଟି ନୂତନ ଜଳ ଆଣି ବାରମ୍ବାର ଏହି ନିୟମରେ ଚାଲିଥିବ । ପୃଥିବୀରେ ଏପର୍ଯ୍ୟନ୍ତ ଯେତେଗୁଡ଼ିଏ ବୁଦ୍‌ବୁଦର ଆବିର୍ଭାବ ହୋଇଛି, ବୁଦ୍ଧ ଓ ଯୀଶୁ ଏମାନଙ୍କ ମଧ୍ୟରେ ମହତ୍ତମ ବୁଦ୍‌ବୁଦ । ସେମାନେ ଶ୍ରେଷ୍ଠ ପୁରୁଷ ଥିଲେ, ସ୍ୱୟଂ ମୁକ୍ତ ହୋଇ ଅପରକୁ ମୁକ୍ତ ହେବାରେ ସହାୟତା କରିଛନ୍ତି । ସେମାନଙ୍କ ମଧ୍ୟରୁ କେହି ନିଖୁଣ ନ ଥିଲେ, କିନ୍ତୁ ସେମାନଙ୍କର ଗୁଣଦ୍ୱାରା ସେମାନଙ୍କୁ ବିଚାର କରିବାକୁ ହେବ, ଦୋଷଦ୍ୱାରା ନୁହେଁ । ଖ୍ରୀଷ୍ଟ ପୂର୍ଣ୍ଣତାର ସର୍ବୋଚ୍ଚ ଆଦର୍ଶରେ ପହଞ୍ଚିପାରି ନାହାନ୍ତି, କାରଣ ସେ ସର୍ବଦା ନିଜର ପ୍ରଚାରିତ ଅତି ଉଚ୍ଚ ଆଦର୍ଶ ଅନୁଯାୟୀ ଜୀବନଯାପନ କରିନାହାନ୍ତି ଏବଂ ସର୍ବୋପରି ସ୍ତ୍ରୀଜାତିକୁ ପୁରୁଷର ସମାନ ଅଧିକାର ଦେଇ ନାହାନ୍ତି । ସ୍ତ୍ରୀଜାତି ତାଙ୍କ ସକାଶେ ଅନେକ କିଛି କରିଥିଲେ ସୁଦ୍ଧା, ସେ ତାଙ୍କ ମଧ୍ୟରେ ଜଣକୁ ସୁଦ୍ଧା ଧର୍ମପ୍ରଚାରକ କରିନାହାନ୍ତି । ସେମିଟିକ୍-ବଂଶରେ ତାଙ୍କର ଜନ୍ମ ଏହାର ନିଃସନ୍ଦେହ କାରଣ । ମହାନୁଭବ ଆର୍ଯ୍ୟଗଣ ଏବଂ ଅନ୍ୟମାନଙ୍କ ମଧ୍ୟରେ ବୁଦ୍ଧ ହିଁ ନାରୀକୁ ପୁରୁଷର ସମାନ ଅଧିକାର ଦେଇଛନ୍ତି । ଆର୍ଯ୍ୟମାନଙ୍କ ନିକଟରେ ଧର୍ମ ବିଷୟରେ ସ୍ତ୍ରୀ-ପୁରୁଷ ବିଚାର ନ ଥିଲା । ବେଦ ଓ ଉପନିଷଦ୍‌ରେ ନାରୀମାନେ ମଧ୍ୟ ଶ୍ରେଷ୍ଠ ସତ୍ୟର ପ୍ରବକ୍ତା ଥିଲେ ଏବଂ ପୁରୁଷମାନଙ୍କ ସହିତ ସମଭାବରେ ପୂଜା ପାଉଥିଲେ ।

( ୮ )

ସୁଖ ଓ ଦୁଃଖ ଦୁହେଁ ଶୃଙ୍ଖଳ, ଗୋଟିଏ ସୁନାର, ଅପରଟି ଲୁହାର; ଆମମାନଙ୍କର ବନ୍ଧନ ଘଟାଇବାକୁ ଏବଂ ସ୍ୱରୂପର ଉପଲବ୍ଧିରୁ ନିବୃତ୍ତ କରିବାକୁ ଦୁହିଁଙ୍କର ଶକ୍ତି ସମାନ । ଆତ୍ମା ସୁଖ-ଦୁଃଖ ଦୁଇର ଅତୀତ । ଏହି ସୁଖ-ଦୁଃଖ ଅବସ୍ଥା ମାତ୍ର ଏବଂ ଉଭୟ ପରିବର୍ତ୍ତନଶୀଳ । ଆତ୍ମାର ପ୍ରକୃତ ନିତ୍ୟ ଆନନ୍ଦ ଓ ଶାନ୍ତି । ଏହି ଆନନ୍ଦ ଓ ଶାନ୍ତିର ଅବସ୍ଥା ଆମମାନଙ୍କୁ ନୂତନ ଭାବରେ ଲାଭ କରିବାକୁ ହେବ ନାହିଁ, ଏହା ଆମମାନଙ୍କର ଅଧିଗତ । ଦୃଷ୍ଟିର ମଳିନତା ଧୋଇଦେଲେ ତାହା ପ୍ରତ୍ୟକ୍ଷ କରିପାରିବା । ଆମେମାନେ ସତତ ଆତ୍ମାରେ ଅଧିଷ୍ଠିତ ଥିବୁ ଓ ସମ୍ପୂର୍ଣ୍ଣ ପ୍ରଶାନ୍ତି ସହିତ ଏହି ପରିବର୍ତ୍ତନଶୀଳ ବିଶ୍ୱପଟ ଦର୍ଶନ କରିବୁ । ଏ ବିଶ୍ୱବ୍ୟାପାର କେବଳ ପିଲାଖେଳ—ଏହା ଯେପରି ଆମମାନଙ୍କର ଚିତ୍ତର ପ୍ରଶାନ୍ତି ନଷ୍ଟ କରି ନ ପାରେ । ମନ ଯଦି ସ୍ତୁତିରେ ତୁଷ୍ଟ ହୁଏ, ତାହା ନିନ୍ଦାରେ ବ୍ୟଥିତ ହେବ । ଇନ୍ଦ୍ରିୟର ସୁଖ ଏପରିକି ମନର ସୁଖ ମଧ୍ୟ କ୍ଷଣସ୍ଥାୟୀ, କିନ୍ତୁ ବାହ୍ୟଜଗତନିରପେକ୍ଷ

ଯଥାର୍ଥ ବିମଳ ସୁଖ ଆମମାନଙ୍କର ଅନ୍ତରରେ ଅଛି । ଏହି ଆତ୍ମାର ଆନନ୍ଦ ହିଁ ପୃଥିବୀରେ 'ଧର୍ମ' ନାମରେ ଅଭିହିତ । ଆମମାନଙ୍କର ଅନ୍ତରରେ ଯେତେ ବେଶୀ ଆନନ୍ଦ, ଆମେମାନେ ସେତେ ବେଶୀ ଧାର୍ମିକ । ସୁଖ ପାଇଁ ଯେପରି ଆମେମାନେ ଜଗତ ଆଡ଼କୁ ନ ଚାହୁଁ ।

କେତେଜଣ ଗରିବ କେଉଟୁଣୀ ପ୍ରବଳ ଝଡ଼ର ସମ୍ମୁଖୀନ ହେବାରୁ ଜଣେ ଧନୀର ଉଦ୍ୟାନଗୃହରେ ଆଶ୍ରୟ ଗ୍ରହଣ କଲେ । ଧନୀ ସେମାନଙ୍କୁ ସାଦର ଅଭ୍ୟର୍ଥନା କରି ଆହାର କରାଇଲେ ଏବଂ ମନୋହର ପୁଷ୍ପସୌରଭରେ ଆମୋଦିତ ଗୋଟିଏ ଗ୍ରୀଷ୍ମାବାସରେ ସେମାନଙ୍କର ବିଶ୍ରାମର ସ୍ଥାନ ନିର୍ଦ୍ଦେଶ କରିଦେଲେ । କେଉଟୁଣୀମାନେ ଏହି ସୁବାସିତ ଉଦ୍ୟାନରେ ଶୟନକଲେ, ମାତ୍ର ସେମାନଙ୍କର ନିଦ୍ରା ହେଲା ନାହିଁ । ସେମାନେ ଯେପରି ଆକାଙ୍କ୍ଷିତ କୌଣସି ବିଷୟରୁ ବଞ୍ଚିତ ହୋଇଛନ୍ତି, ତାହା ଫେରି ନ ପାଇବା ପର୍ଯ୍ୟନ୍ତ ସୁସ୍ଥବୋଧ କରୁ ନ ଥିଲେ । ଅବଶେଷରେ ସେମାନଙ୍କ ମଧ୍ୟରୁ ଜଣେ ଉଠିଯାଇ ଯେଉଁଠାରେ ମାଛର ପାଛିଆଗୁଡ଼ିକ ରଖାଯାଇଥିଲା, ସେଠାରୁ ସେଗୁଡ଼ିକୁ ଘରକୁ ଆଣିଲା । ସେତେବେଳେ ସେହି ଚିରାଭ୍ୟସ୍ତ ଗନ୍ଧ ପାଇବାମାତ୍ରେ ସମସ୍ତେ ଗଭୀର ନିଦ୍ରାରେ ଅଭିଭୂତ ହେଲେ ।

ଆମମାନଙ୍କ ନିକଟରେ ଏହି ଜଗତ ଯେପରି ସେହି ମାଛ-ପାଛିଆପରି ନ ହୁଏ; ଆମେମାନେ ଯେପରି ସୁଖ ପାଇଁ ଏହା ଉପରେ ନିର୍ଭର ନ କରୁ । ଏହାର ଅର୍ଥ ତାମସିକ ଅର୍ଥାତ୍ ତିନିଗୁଣ ମଧ୍ୟରେ ଯେଉଁଟି ନିକୃଷ୍ଟ, ତାହାଦ୍ୱାରା ବଦ୍ଧ ହେବା । ଏହାର ଠିକ୍ ଉପର ସ୍ତରଟି 'ଅହଂ'-ସ୍ୱାବପୂର୍ଣ୍ଣ, ସେଠାରେ ସର୍ବଦା 'ମୁଁ'ର ପ୍ରକାଶ ଦେଖାଯାଏ । ଏହି ପ୍ରକୃତିର ଲୋକମାନେ ସମୟସମୟରେ ସତ୍କାର୍ଯ୍ୟ କରନ୍ତି ଏବଂ ଧାର୍ମିକ ହୁଅନ୍ତି; ଏମାନେ ରାଜସିକ ବା କର୍ମଠ ପ୍ରକୃତିର । ଅନ୍ତର୍ଦୃଷ୍ଟି-ସମ୍ପନ୍ନ ବା ସାତ୍ତ୍ୱିକ ପ୍ରକୃତିର ଲୋକମାନେ ଶ୍ରେଷ୍ଠ; ସେମାନେ କେବଳ ଆତ୍ମାରେ ବାସ କରନ୍ତି । ଏହି ତିନିପ୍ରକାର ଗୁଣ ଊଣା ଅଧିକେ ସମସ୍ତଙ୍କ ମଧ୍ୟରେ ଅଛି, ବିଭିନ୍ନ ସମୟରେ ବିଭିନ୍ନ ଗୁଣ ପ୍ରବଳ ହୋଇଥାଏ ମାତ୍ର । ରଜୋଗୁଣଦ୍ୱାରା ତମୋଗୁଣକୁ ଅଭିଭୂତ କରିବାର ଚେଷ୍ଟା କରିବାକୁ ହେବ ଏବଂ ପରେ ଦୁଇଟିକୁ ସତ୍ତ୍ୱଗୁଣରେ ନିମଜ୍ଜିତ କରିବାକୁ ହେବ ।

'ସୃଷ୍ଟି' ଅର୍ଥ ନୂତନ କିଛି ଗଢ଼ିବା ନୁହେଁ, ସାମ୍ୟଭାବ ଫେରି ପାଇବାର ଚେଷ୍ଟା । ଗୋଟିଏ ଜଳପାତ୍ରର ତଳଦେଶରେ ଖଣ୍ଡ ଖଣ୍ଡ ସୋଲ ନିକ୍ଷେପ କଲେ ସେଗୁଡ଼ିକ ସ୍ୱତନ୍ତ୍ରଭାବରେ ଓ ଏକ ସଙ୍ଗରେ ସବେଗରେ ଉପର ଆଡ଼କୁ ଉତ୍ଥିତ ହୁଅନ୍ତି । ସବୁ ସୋଲ ଉପରକୁ ଉଠି ସାମ୍ୟଭାବ ଲାଭ କଲେ ଗତି ବା ଜୀବନ-ସଂଗ୍ରାମ ସ୍ଥିର ହୋଇଯାଏ । ସୃଷ୍ଟି ବିଷୟରେ ମଧ୍ୟ ଏହିପରି । ସମଭୂରେ ପହଞ୍ଚିଲେ ଅସ୍ଥିର ଭାବଗୁଡ଼ିକ ନିବୃତ୍ତ ହୁଅନ୍ତି ଏବଂ ତଥାକଥିତ ଜୀବନ-ଯୁଦ୍ଧର ପରିସମାପ୍ତି ଘଟେ । ଜୀବନ ସହିତ ମନ୍ଦ ଲାଗିରହିଥିବ, କାରଣ ସାମ୍ୟଭାବ ଫେରି ଆସିଲେ ଜଗତ ଲୋପ

ପାଇଯିବ; ଯେହେତୁ ସାମ୍ୟ ଓ ଧ୍ୱଂସ ଏକ ବସ୍ତୁ । ଦୁଃଖଶୂନ୍ୟ ସୁଖ ବା ଅଶୁଭଶୂନ୍ୟ ଶୁଭ, କୌଣସି ସମୟରେ ସମ୍ଭବ ନୁହେଁ, କାରଣ ସାମ୍ୟଭାବର ଅଭାବ ହିଁ ଜୀବନ । ଆମେମାନେ ମୁକ୍ତି ଚାହୁଁ ; ଜୀବନ ବା ସୁଖ ବା ମଙ୍ଗଳ ଆମମାନଙ୍କର କାମ୍ୟ ନୁହେଁ । ସୃଷ୍ଟି ନିତ୍ୟ, ଏହାର ଆଦି ବା ଅନ୍ତ ନାହିଁ, ଏହା ଯେପରି ଅନନ୍ତ ହ୍ରଦର ବକ୍ଷରେ ଚିରଚଞ୍ଚଳ ତରଙ୍ଗପ୍ରବାହ । ଏହି ହ୍ରଦର ଅନେକ ସ୍ଥଳ ଅତଳସ୍ପର୍ଶୀ, ଅନେକ ସ୍ଥଳ ଶାନ୍ତ, କିନ୍ତୁ ସଦାସର୍ବଦା ତରଙ୍ଗଭଙ୍ଗ ଚାଲିଥାଏ । ସାମ୍ୟ ଅବସ୍ଥା ଲାଭ ସକାଶେ ସଂଗ୍ରାମ ଅନନ୍ତ । ଜୀବନ ଓ ମୃତ୍ୟୁ ଏକ ସତ୍ୟର ନାମାନ୍ତର ମାତ୍ର, ଏକ ମୁଦ୍ରାର ଦୁଇଟି ଦିଗ । ଦୁହେଁ ମାୟା—ଏହି ମୁହୂର୍ତ୍ତରେ ପ୍ରାଣଧାରଣର ଓ ପରମୁହୂର୍ତ୍ତରେ ପ୍ରାଣତ୍ୟାଗର ଦୁର୍ବୋଧ ଚେଷ୍ଟା । ଏ ସମସ୍ତର ଊର୍ଦ୍ଧ୍ୱରେ ଆତ୍ମା ହିଁ ଆମର ପ୍ରକୃତ ସ୍ୱରୂପ । ଆମେମାନେ ସୃଷ୍ଟି ମଧ୍ୟରେ ପ୍ରବେଶ କରୁ ଏବଂ ପରେ ଆମମାନଙ୍କ ସକାଶେ ତାହା ଜୀବନ୍ତ ଭାବ ଧାରଣ କରେ । ବିଷୟଗୁଡ଼ିକ ସ୍ୱୟଂ ପ୍ରାଣଶୂନ୍ୟ, ଆମେମାନେ ସେମାନଙ୍କର ପ୍ରାଣପ୍ରତିଷ୍ଠା କରୁ ଏବଂ ପରେ ଆମେମାନେ କେତେବେଳେ ବିଷୟ ଉପଭୋଗ କରୁ, ପୁଣି କେତେବେଳେ ମୂଢ଼ପରି ବିଷୟରୁ ସନ୍ତ୍ରସ୍ତଭାବରେ ପଳାୟନ କରୁ । ଏହି ଜଗତ ସତ୍ୟ ନୁହେଁ, ମିଥ୍ୟା ମଧ୍ୟ ନୁହେଁ—ସତ୍ୟର ଛାୟା ମାତ୍ର ।

କବି କହିଛନ୍ତି, 'କଳ୍ପନା ସତ୍ୟର ସୁନେଲି ଆଭାସ'; ଅନ୍ତର୍ଜଗତ ପ୍ରକୃତ ସତ୍ତା, ବହିର୍ଜଗତରୁ ଅନନ୍ତ ଗୁଣ ବଡ଼ । ବହିର୍ଜଗତ ପ୍ରକୃତ ସତ୍ତାର ଛାୟାମୟ ଅଭିକ୍ଷେପ । ରଜ୍ଜୁଦର୍ଶନ ସମୟରେ ସର୍ପଦର୍ଶନ ହୁଏ ନାହିଁ, ଆଉ ସର୍ପଦୃଷ୍ଟି ହେଲେ ରଜ୍ଜୁଦୃଷ୍ଟି ତିରୋହିତ ହୁଏ । ଏକ ସମୟରେ ରଜ୍ଜୁ ଓ ସର୍ପର ଜ୍ଞାନ ଅସମ୍ଭବ । ଠିକ୍ ସେହିପରି ଯେତେବେଳେ ଆମେମାନେ ଜଗତ ଦେଖୁ, ସେତେବେଳେ ଆତ୍ମାକୁ ଉପଲବ୍ଧି କରୁ ନାହିଁ—ଏହା କେବଳ ବୁଦ୍ଧିର ଧାରଣା ହୋଇ ରହେ । ବ୍ରହ୍ମାନୁଭୂତିରେ 'ଅହଂ'-ଜ୍ଞାନ ଓ ଜଗତ-ବୋଧ ଲୋପ ପାଏ । ଆଲୋକ କେବେ ଅନ୍ଧକାର ଜାଣେ ନାହିଁ, ଆଲୋକରେ ଅନ୍ଧକାର ନାହିଁ; (ବ୍ରହ୍ମ ବ୍ୟତୀତ କିଛି ନାହିଁ) ବ୍ରହ୍ମ ହିଁ ସବୁ । ଯେତେବେଳେ ଏକ ଈଶ୍ୱର ସ୍ୱୀକାର କରୁ, ସେତେବେଳେ ବୁଝିବାକୁ ହେବ—ପ୍ରକୃତପକ୍ଷରେ ଆତ୍ମାକୁ ନିଜଠାରୁ ପୃଥକ୍ କରିନେଇ ବାହାରେ ତାଙ୍କର ଅର୍ଚ୍ଚନା କରୁଛୁ; କିନ୍ତୁ ସର୍ବାବସ୍ଥାରେ ସେ ଆଉ କେହି ନୁହନ୍ତି—ଆମମାନଙ୍କର ଯଥାର୍ଥ ସ୍ୱରୂପ, ଏକ ଅଦ୍ୱିତୀୟ ପରମେଶ୍ୱର ।

ଯେଉଁଠାରେ ରହିଛୁ, ସେହିଠାରେ ରହିବା ପଶୁପ୍ରକୃତି । ଭଲକୁ ଗ୍ରହଣ ଓ ମନ୍ଦକୁ ବର୍ଜନ କରିବା ମନୁଷ୍ୟର ପ୍ରକୃତି; ଗ୍ରହଣ ବା ବର୍ଜନ ନ କରି ନିତ୍ୟାନନ୍ଦରେ ରହିବା ଦୈବୀ ପ୍ରକୃତି । ଆସନ୍ତୁ, ଆମେମାନେ ଦୈବୀ ପ୍ରକୃତି ଲାଭ କରିବା; ଆମମାନଙ୍କର ହୃଦୟକୁ ସମୁଦ୍ର ପରି ଉଦାର କରି ଅକିଞ୍ଚିତ୍କର ପାର୍ଥିବ ବସ୍ତୁଗୁଡ଼ିକର ଅତୀତ ହୋଇ ଜଗତକୁ କେବଳ ଚିତ୍ରପରି ଦେଖିବା । ସେତିକିବେଳେ କେବଳ ଆମେମାନେ ସମ୍ପୂର୍ଣ୍ଣ ଅନାସକ୍ତ ଭାବରେ ଜଗତକୁ ଉପଭୋଗ କରିପାରିବା ।

ଜଗତରେ କାହିଁକି ଭଲର ସନ୍ଧାନ କରୁଛ, ଏଠାରେ କ'ଣ ତାହା ମିଳିବ ? ସଂସାର ଯେତେ ଉତ୍କୃଷ୍ଟ ବସ୍ତୁ ହେଉ ପଛକେ, ଏହା ଗୋଳିଆ ପାଣିରେ ଖେଳୁଥିବା ଶିଶୁମାନଙ୍କର କେତୋଟି କାଚମାଳ ପାଇବା ପରି; ମାଳଗୁଡ଼ିକ ବାରମ୍ବାର ସେମାନଙ୍କ ହାତରୁ ପଡ଼ିଯାଏ—ପୁଣି ଅନୁସନ୍ଧାନ ଚାଲେ । ଅସୀମ ଶକ୍ତି ହିଁ ଧର୍ମ ଓ ଈଶ୍ୱର । ମୁକ୍ତ ଅବସ୍ଥାରେ ଆମେମାନେ କେବଳ ଆତ୍ମା, ମୁକ୍ତ ହେଲେ ଅମୃତତ୍ୱରେ ଆମେମାନେ ସ୍ଥିତ ହେଉ । ଈଶ୍ୱର ମଧ୍ୟ ମୁକ୍ତ ହେଲେ ହେଁ ଈଶ୍ୱର-ପଦବାଚ୍ୟ ।

'ଅହଂ'-ସୃଷ୍ଟ ସଂସାରର ବାସନା ତ୍ୟାଗ ନ କରିପାରିଲେ ଆମେମାନେ କେବେହେଁ ସ୍ୱର୍ଗରାଜ୍ୟରେ ପ୍ରବେଶ କରିପାରିବୁ ନାହିଁ; ଅତୀତରେ କେହି କେବେ ପାରିନାହିଁ, ଭବିଷ୍ୟତରେ ମଧ୍ୟ କଦାପି ପାରିବେ ନାହିଁ । ସଂସାର-ତ୍ୟାଗର ଅର୍ଥ ସମ୍ପୂର୍ଣ୍ଣଭାବରେ ଅହଂକୁ ଭୁଲିଯିବା, 'ଅହଂ'କୁ ଏକାବେଳକେ ବୋଧ ନ କରିବା, ଦେହରେ ବାସ କରି ମଧ୍ୟ ଦେହର ଅଧୀନ ନ ହେବା । ଏହି ଧୂର୍ତ୍ତ ଅହମିକାକୁ ସମ୍ପୂର୍ଣ୍ଣଭାବରେ ପୋଛିଦେବାକୁ ହେବ । ମାନବଜାତିର ହିତ କରିବାର ଶକ୍ତି କେବଳ ସେହି ନୀରବ କର୍ମୀମାନଙ୍କର ଅଛି, ଯେଉଁମାନେ ନିଜର ବ୍ୟକ୍ତିତ୍ୱ ସମ୍ପୂର୍ଣ୍ଣଭାବରେ ଭୁଲିଯାଇ ପରକୁ ଭଲ ପାଇବା ପାଇଁ ଜୀବନ ଧାରଣ କରନ୍ତି—ସେମାନେ କେବେ 'ମୁଁ, ମୋର' କହନ୍ତି ନାହିଁ; ଅନ୍ୟର ହିତସାଧନ କରିବାର ଯନ୍ତ୍ରସ୍ୱରୂପ ମାତ୍ର ହୋଇ ସେମାନେ ଧନ୍ୟ । ସେମାନେ ଈଶ୍ୱରଙ୍କ ସହିତ ସମ୍ପୂର୍ଣ୍ଣଭାବରେ ଏକ ହୋଇଛନ୍ତି । ସେମାନେ କିଛି ଆକାଙ୍‌କ୍ଷା କରନ୍ତି ନାହିଁ ବା ଜ୍ଞାତସାରରେ କୌଣସି କର୍ମ କରନ୍ତି ନାହିଁ । ସେମାନେ ପ୍ରକୃତରେ ଜୀବନ୍ମୁକ୍ତ—ସମ୍ପୂର୍ଣ୍ଣ ନିଷ୍କାମ, କ୍ଷୁଦ୍ର ବ୍ୟକ୍ତିତ୍ୱର ଅତୀତ, ଉଚ୍ଚାକାଙ୍‌କ୍ଷାବର୍ଜିତ, ସେମାନେ ବ୍ୟକ୍ତିତ୍ୱହୀନ ତତ୍ତ୍ୱମାତ୍ର । କ୍ଷୁଦ୍ର 'ମୁଁ'-କୁ ଯେତେ ଆମେ ଛାଡ଼ିବୁ, ସେତେ ଅଧିକ ଆମେମାନେ ଈଶ୍ୱରଭାବାପନ୍ନ ହେବୁ । କ୍ଷୁଦ୍ର 'ମୁଁ'କୁ ପରିତ୍ୟାଗ କଲେ ଆମମାନଙ୍କ ଅନ୍ତରକୁ ବୃହତ୍ 'ମୁଁ' ଆସିବ । ଯେତେବେଳେ ଆମମାନଙ୍କ ମନରୁ 'ଅହଂ'-ଭାବ ସମ୍ପୂର୍ଣ୍ଣ ଦୂର ହୁଏ, ସେତେବେଳେ ଆମେମାନେ ଉତ୍କୃଷ୍ଟ କର୍ମୀ ଓ ପ୍ରଭାବଶାଳୀ ବ୍ୟକ୍ତି ବୋଲି ଗଣ୍ୟ ହେଉ । ବାସନାଶୂନ୍ୟ ବ୍ୟକ୍ତି-ମାନଙ୍କର କର୍ମ ମହତ୍ ଫଳ ପ୍ରସବ କରେ । ଯେଉଁମାନେ ତୁମର ନିନ୍ଦା କରନ୍ତି, ସେମାନଙ୍କୁ ଆଶୀର୍ବାଦ କର; ଚିନ୍ତା କରି ଦେଖ, ତୁମର ମିଥ୍ୟା 'ଅହଂ' ଦୂର କରିବାକୁ ସାହାଯ୍ୟ କରି ନିନ୍ଦୁକମାନେ ତୁମର କି ମହତ୍ ଉପକାର କରୁଛନ୍ତି । ଯଥାର୍ଥ 'ମୁଁ'କୁ ଦୃଢ଼ଭାବରେ ଧରିଥାଅ, କେବଳ ସତ୍‌ଚିନ୍ତା କର, ଦେଖିବ ଧର୍ମପ୍ରଚାରକଙ୍କ ଅପେକ୍ଷା ତୁମେ ଅନେକ ବେଶୀ କାମ କରିପାରୁଛ । ପବିତ୍ରତା ଓ ନୀରବତାରୁ ମହାଶକ୍ତିମୟୀ ବାଣୀ ଆସେ ।

( ୯ )

ବ୍ୟକ୍ତିଭାବ କାର୍ଯ୍ୟତଃ ନିମ୍ନତର ଅବସ୍ଥା ବା ଅଧଃପତନ, କାରଣ ଭାବ କେବଳ

ଅକ୍ଷର ସାହାଯ୍ୟରେ ବ୍ୟକ୍ତ ହୁଏ । ସେଣ୍ଟ ପଲ୍ କହୁଛନ୍ତି, 'ଅକ୍ଷର ଭାବକୁ ନଷ୍ଟ କରେ ।'* ଅକ୍ଷର ମଧ୍ୟରେ ଜୀବନ ରହିପାରେ ନାହିଁ, ଅକ୍ଷର ଭାବର ପ୍ରତିବିମ୍ବ ମାତ୍ର । ତଥାପି ଭାବପ୍ରକାଶ ସକାଶେ ଭାବକୁ ଜଡ଼ଦ୍ୱାରା ଆବୃତ କରିବାକୁ ହେବ । ଆବରଣ ମଧ୍ୟରେ ଆମେମାନେ ପ୍ରକୃତ ସତ୍ୟ ଦେଖିବାକୁ ପାଉ ନାହିଁ, ଆବରଣକୁ ପ୍ରତୀକ ନ ଭାବି ଯଥାର୍ଥ ସତ୍ୟ ବୋଲି ଗ୍ରହଣ କରୁ । ଏହି ଭ୍ରମ ପ୍ରାୟ ସମସ୍ତଙ୍କର ହୁଏ । ପ୍ରତ୍ୟେକ ମହାନ୍ ଆଚାର୍ଯ୍ୟ ଏହା ଜାଣନ୍ତି ଏବଂ ସାବଧାନ ହୁଅନ୍ତି; କିନ୍ତୁ ଜନସାଧାରଣ ଅପ୍ରତ୍ୟକ୍ଷ ଅପେକ୍ଷା ପ୍ରତ୍ୟକ୍ଷର ପୂଜା କରିବାକୁ ବେଶୀ ଉନ୍ମୁଖ । ବ୍ୟକ୍ତିତ୍ୱର ପଛରେ ରହିଥିବା ତତ୍ତ୍ୱପ୍ରତି ଲୋକମାନଙ୍କର ଦୃଷ୍ଟି ଆକର୍ଷଣ କରିବା ଓ ସମୟୋପଯୋଗୀ ନୂତନଭାବ ଦେବା ସକାଶେ ମହାପୁରୁଷମାନଙ୍କର ଆବିର୍ଭାବ ହୋଇଥାଏ । ସତ୍ୟ ଚିରନ୍ତନ ଅପରିବର୍ତ୍ତନୀୟ, ଏହାକୁ କେବଳ ନୂତନ ଆକାରରେ ଉପସ୍ଥାପିତ କରାଯାଇପାରେ ଅଥବା ମାନବଜାତି ସେମାନଙ୍କର ଉନ୍ନତି ଅନୁସାରେ ଯେଉଁ ଭାବରେ ତାହା ଗ୍ରହଣ କରିପାରିବେ, ସେହି ଭାବରେ ସତ୍ୟର ପ୍ରକାଶ ହୋଇଥାଏ । ନାମ-ରୂପରୁ ମୁକ୍ତ ହେବା ହିଁ ଆମର ଲକ୍ଷ୍ୟ । ବିଶେଷତଃ ଯେତେବେଳେ ସୁସ୍ଥ-ଅସୁସ୍ଥ, ସୁନ୍ଦର-କୁତ୍ସିତ, କୌଣସି ପ୍ରକାର ଶରୀରଧାରଣର ପ୍ରୟୋଜନ ଆମେ ବୋଧ କରୁ ନାହିଁ, ସେତେବେଳେ ଆମମାନଙ୍କର ଏହି ସଂସାରବନ୍ଧନ ତୁଟିଯିବ । 'ଅନନ୍ତ ଉନ୍ନତି' ହେଲେ ଅନନ୍ତ ବନ୍ଧନ ମଧ୍ୟ ହେବ । ସମସ୍ତ ଭେଦଭାବ ଅତିକ୍ରମ କରି ଅନନ୍ତ ଅଭେଦଭାବ, ଏକତ୍ୱ ବା ବ୍ରହ୍ମଭାବ ଆମମାନଙ୍କୁ ଲାଭ କରିବାକୁ ହେବ । ଆତ୍ମା ସମସ୍ତ ବ୍ୟକ୍ତିତ୍ୱର ସମଷ୍ଟିଭାବ ଏବଂ ନିର୍ବିକାର ଓ 'ଏକମେବାଦ୍ୱିତୀୟମ୍' । ଆତ୍ମା ଜୀବନ ନୁହେଁ, କିନ୍ତୁ ସେ ଜୀବନ-ଧାରଣ କରିଥା'ନ୍ତି । ଆତ୍ମା ଜୀବନ-ମୃତ୍ୟୁ ଏବଂ ଶୁଭାଶୁଭର ଅତୀତ—ନିର୍ବିଶେଷ ଏକତ୍ୱ । ନରକ ମଧ୍ୟଦେଇ ସୁଦ୍ଧା ସତ୍ୟାନୁସନ୍ଧାନ କରିବାକୁ ସାହସୀ ହୁଅ । ନାମ-ରୂପ ବା ସବିଶେଷ ବସ୍ତୁ ସମ୍ବନ୍ଧରେ ମୁକ୍ତି ପ୍ରଯୋଜ୍ୟ ନୁହେଁ । 'ମୁଁ ଦେହଧାରୀ ହୋଇ ସୁଦ୍ଧା ମୁକ୍ତ' – ଏକଥା କୌଣସି ଦେହବାନ୍ ବ୍ୟକ୍ତି କହିପାରିବେ ନାହିଁ । ଦେହଭାବ ମନରୁ ଦୂର ନ ହେଲେ ମୁକ୍ତି ହେବ ନାହିଁ । ଆମମାନଙ୍କର ମୁକ୍ତି ଅନ୍ୟର କ୍ଳେଶର କାରଣ ହେଲେ ଆମେମାନେ ମୁକ୍ତ ନୋହୁଁ । ଆମେମାନେ ଯେପରି କାହାରି କ୍ଳେଶର କାରଣ ନ ହେଉ । ପ୍ରକୃତ ଅନୁଭୂତି ଏକ ହେଲେ ମଧ୍ୟ ଆପେକ୍ଷିକ ଅନୁଭୂତି ଅନେକ । ସମଗ୍ର ଜ୍ଞାନର ଉତ୍ସ ସମସ୍ତଙ୍କ ଭିତରେ ଅଛି—ପିପୀଲିକା ମଧ୍ୟରେ ଯେପରି ଶ୍ରେଷ୍ଠ ଦେବତାଙ୍କ ମଧ୍ୟରେ ସେହିପରି । ପ୍ରକୃତ ଧର୍ମ ଏକ, ସବୁ ଦ୍ୱନ୍ଦ୍ୱ କେବଳ ରୂପ, ପ୍ରତୀକ ଓ 'ଉଦାହରଣ'କୁ ନେଇ । ଚକ୍ଷୁଷ୍ମାନ୍ ପକ୍ଷରେ ସ୍ୱର୍ଗରାଜ୍ୟ ବା ସ୍ୱର୍ଣ୍ଣଯୁଗ ଚିର-କାଳ ବିଦ୍ୟମାନ । ବସ୍ତୁତଃ, ଆମମାନଙ୍କର ଆତ୍ମବିସ୍ମୃତି ଘଟିଥିବାରୁ ଆମେମାନେ ଜଗତକୁ ଅସ୍ତିତ୍ୱହୀନ ବୋଲି ମନେକରୁ । ମୂଢ଼ ! ଶୁଣୁନାହିଁକି, ତୁମର ହୃଦୟ

* 'the letter killeth.'—St. Paul, Corinth. 3, VI

ମଧ୍ୟରେ ସେହି ଅନାଦି ସଙ୍ଗୀତ—'ସଚ୍ଚିଦାନନ୍ଦ—ସୋଽହଂ, ସୋଽହଂ' ଅହରହ ଧ୍ୱନିତ ହେଉଛି ?

ଭ୍ରମମୂର୍ତ୍ତିର (phantasm) ସାହାଯ୍ୟ ବ୍ୟତୀତ ଚିନ୍ତା କରିବାର ଚେଷ୍ଟା ଆଉ ଅସମ୍ଭବକୁ ସମ୍ଭବ କରିବାର ଚେଷ୍ଟା ଏକ ପ୍ରକାର । ପ୍ରତ୍ୟେକ ଭାବର ଦୁଇଟି ଅଂଶ ଅଛି—ମାନସ ଓ ଶାବ୍ଦ । ଉଭୟ ଆମର ପ୍ରୟୋଜନ । ବିଜ୍ଞାନବାଦୀ (idealist) ବା ଜଡ଼ବାଦୀ—କେହି ହେଲେ ଜଗତ-ରହସ୍ୟର ନିରୂପଣରେ ସମର୍ଥ ନୁହନ୍ତି । ଏ ବିଷୟରେ ଭାବ ଓ ଅଭିବ୍ୟକ୍ତି ଉଭୟର ସାହାଯ୍ୟ ଗ୍ରହଣ କରିବାକୁ ହେବ । ଦର୍ପଣରେ ନିଜର ମୁହଁ ଦେଖିବା ପରି ଜଗତରୂପେ ପ୍ରକାଶିତ ବ୍ରହ୍ମର ପ୍ରତିବିମ୍ବ ହିଁ ଆମମାନଙ୍କର ଜ୍ଞାନର ବିଷୟ । ଅତଏବ କେହି ନିଜର ଆତ୍ମା ବା ବ୍ରହ୍ମକୁ ଜାଣିପାରନ୍ତି ନାହିଁ; କିନ୍ତୁ ପ୍ରତ୍ୟେକେ ସେହି ଆତ୍ମା । ଏହି ଆତ୍ମାକୁ ଜ୍ଞାନର ବିଷୟ କରିବା ପାଇଁ ସେହି ପ୍ରତିବିମ୍ବରୂପରେ ତାହାଙ୍କୁ ଦର୍ଶନ କରିବାକୁ ହେବ । ଦର୍ଶନାତୀତ ତତ୍ତ୍ୱର ଉଦାହରଣଗୁଡ଼ିକୁ ଦର୍ଶନ କରିବା ହିଁ ତଥାକଥିତ ପ୍ରତୀକ-ଉପାସନା; ଯେତେ ଦୂର ଅନୁମାନ କରାଯାଏ, ପ୍ରତୀକର ପ୍ରସାର ତାହା ଅପେକ୍ଷା ଅଧିକ ବ୍ୟାପକ ।

ଦାରୁ ଓ ଶିଳାରୁ ଆରମ୍ଭ କରି ଖ୍ରୀଷ୍ଟ ବା ବୁଦ୍ଧ ପ୍ରଭୃତି ମହାପୁରୁଷ ପର୍ଯ୍ୟନ୍ତ ଏହା ବ୍ୟାପ୍ତ । ସାକାରୋପାସନା ସମ୍ବନ୍ଧରେ ବୁଦ୍ଧଦେବଙ୍କର ଅତିଶୟ ବିରୁଦ୍ଧ ଭାବ ହେବାରୁ ଭାରତରେ ମୂର୍ତ୍ତିପୂଜାର ସୂତ୍ରପାତ ହୋଇଛି । ବେଦରେ ମୂର୍ତ୍ତିପୂଜାର ଉଲ୍ଲେଖ ନାହିଁ; ସ୍ରଷ୍ଟା ଓ ସଖାରୂପେ ଈଶ୍ୱରଙ୍କର ଅଭାବବୋଧର ପ୍ରତିକ୍ରିୟା ହେବାରୁ ଶ୍ରେଷ୍ଠ ଆଚାର୍ଯ୍ୟମାନଙ୍କର ମୂର୍ତ୍ତିକୁ ଈଶ୍ୱର-କଳ୍ପନା କରି ନିଆଯାଇଛି । ବୁଦ୍ଧଦେବ ଠିକ୍ ଏହି ଭାବରେ ମୂର୍ତ୍ତି-ଈଶ୍ୱରରୂପରେ ଲକ୍ଷ ଲକ୍ଷ ମନୁଷ୍ୟଙ୍କଦ୍ୱାରା ଅର୍ଚ୍ଚିତ ହେଉଛନ୍ତି । ହିଂସାମୂଳକ ସଂସ୍କାର-ଚେଷ୍ଟାଦ୍ୱାରା ପ୍ରକୃତ ସଂସ୍କାର ସର୍ବଦା ବାଧାପ୍ରାପ୍ତ ହୁଏ । ଅର୍ଚ୍ଚନାର ପ୍ରବୃତ୍ତି ପ୍ରତ୍ୟେକ ମନୁଷ୍ୟର ପ୍ରକୃତିଗତ; ଉଚ୍ଚତମ ଦାର୍ଶନିକତାର ସାହାଯ୍ୟରେ କେବଳ ଶୁଦ୍ଧ ଭାବମୟ ଅବସ୍ଥାରେ ଆରୋହଣ କରାଯାଏ । ତେଣୁ ପୂଜା କରିବା ସକାଶେ ମନୁଷ୍ୟ ତାହାର ଈଶ୍ୱରଙ୍କୁ ଅବଶ୍ୟ ବ୍ୟକ୍ତିଭାବାପନ୍ନ କରିବ । ପ୍ରତୀକ ଯେପରି ହେଉନା କାହିଁକି, ଏହାର ଅନ୍ତରାଳରେ ସ୍ୱୟଂ ଈଶ୍ୱର ଅଛନ୍ତି—ଏହି ଭାବରେ ମୂର୍ତ୍ତିପୂଜା ଅତି ଉତ୍ତମ, ପ୍ରତୀକଭାବରେ ନୁହେଁ ।

'ଶାସ୍ତ୍ରରେ ଅଛି'—କେବଳ ଏହି ବିଶ୍ୱାସର କୁସଂସ୍କାରରୁ ସର୍ବୋପରି ନିଜକୁ ମୁକ୍ତ କରିବାକୁ ହେବ । ବିଜ୍ଞାନ, ଧର୍ମ, ଦର୍ଶନ ପ୍ରଭୃତିକୁ କୌଣସି ଶାସ୍ତ୍ରର ଅନୁଶାସନ ମାନିନେବାକୁ ବାଧ୍ୟ କରିବା ଅତି ଭୀଷଣ ଅତ୍ୟାଚାର । ଶାସ୍ତ୍ରପୂଜା ନିକୃଷ୍ଟ କଣ୍ଢେଇ-ପୂଜା । କୌଣସି ଗର୍ବିତ ଓ ସ୍ୱାଧୀନଚିତ୍ତ ମୃଗ ତାହାର ଶାବକଟିକୁ ଗର୍ବ କରି କହୁଥିଲା , 'ମୋ ଆଡ଼କୁ ଅନାଇଁ ମୋର ଏହି ସୁଦୃଢ଼ ଶୃଙ୍ଗଦୁଇଟିକୁ ଦେଖ । ଏଥିରୁ ଗୋଟିକର ଆଘାତରେ ମୁଁ ମନୁଷ୍ୟକୁ ମାରିଦେଇପାରେ । ମୃଗ ହେବା କି ସୁଖର

ବିଷୟ !' ଠିକ୍ ସେହି ମୁହୂର୍ତ୍ତରେ ଶିକାରୀର ଭେରୀ ଶବ୍ଦ ଶୁଣିବାମାତ୍ରେ କୌଣସି ଦିଗକୁ ନ ଅନାଇଁ ମୃଗଟି ବେଗରେ ପଳାଇବାକୁ ଲାଗିଲା । ବିସ୍ମୟାବିଷ୍ଟ ଶାବକଟି ମଧ୍ୟ ତାହାର ପଛେ ପଛେ ଦୌଡ଼ିବାକୁ ଲାଗିଲା । ନିରାପଦ ସ୍ଥାନରେ ପହଞ୍ଚିବା ପରେ ଶାବକଟି ପଚାରିଲା, 'ତୁମେ ଏତେ ବଳଶାଳୀ ଓ ସାହସୀ, ତେବେ ମନୁଷ୍ୟର ଶବ୍ଦ ଶୁଣି ପଳାୟନ କଲ କାହିଁକି ?' ମୃଗ କହିଲା, 'ବତ୍ସ, ନିଜର ବଳ-ବିକ୍ରମରେ ଆସ୍ଥା ଥିଲେ ମଧ୍ୟ କାହିଁକି ଯେ ଏ ଶବ୍ଦ ଶୁଣିଲାମାତ୍ରେ ଇଚ୍ଛାରେ ହେଉ, ଅନିଚ୍ଛାରେ ହେଉ କ'ଣ ଗୋଟାଏ ଭୟର ଆବେଗରେ ପଳାଇବାକୁ ବାଧ୍ୟ ହୋଇପଡ଼େ—ତାହା ଜାଣେ ନାହିଁ ।' ଆମମାନଙ୍କର ଦଶା ମଧ୍ୟ ଏହିପରି । ଶାସ୍ତ୍ରନିବଦ୍ଧ ବିଧିର 'ଭେରୀ-ରବ' ଶ୍ରବଣମାତ୍ରେ ପ୍ରାଚୀନ ଅଭ୍ୟାସ ଓ ସଂସ୍କାରଗୁଡ଼ିକ ଯେପରି ଆମମାନଙ୍କୁ ବଶ କରେ ଏବଂ ଏହା ଜାଣିବା ପୂର୍ବରୁ ଆମେମାନେ ଯେପରି ଦୃଢ଼ ବନ୍ଧନରେ ଆବଦ୍ଧ ହୋଇ ଆମମାନଙ୍କର ଯଥାର୍ଥ ସ୍ୱରୂପ—ମୁକ୍ତ ଅବସ୍ଥା ବିସ୍ମୃତ ହେଉ ।

ଜ୍ଞାନ ଚିରନ୍ତନ । ଆଧ୍ୟାତ୍ମିକ ସତ୍ୟର ଆବିଷ୍କାରକଙ୍କୁ ଆମେମାନେ 'ପ୍ରତ୍ୟାଦିଷ୍ଟ' କହୁ ଏବଂ ସେ ଜଗତକୁ ଯାହା ଦାନ କରନ୍ତି, ତାହା ଐଶ୍ୱରିକ ବାଣୀ । କିନ୍ତୁ ଐଶ୍ୱରିକ ବାଣୀ ବା ପ୍ରତ୍ୟାଦେଶ ଚିରନ୍ତନ, ସୁତରାଂ ଏଥିରୁ ଗୋଟିକୁ ଚରମ ଭାବି ଅନ୍ଧଭାବରେ ଅନୁସରଣ କରିବା ଉଚିତ ନୁହେଁ । ଯେ ନିଜକୁ ଉପଯୁକ୍ତ ଆଧାର-ରୂପରେ ପ୍ରସ୍ତୁତ କରିଛନ୍ତି, ତାଙ୍କ ମଧ୍ୟରେ ଐଶ୍ୱରିକଭାବ ପ୍ରକାଶ ହେବ । ପୂର୍ଣ୍ଣ ପବିତ୍ରତା ସର୍ବାପେକ୍ଷା ଅଧିକ ପ୍ରୟୋଜନ, କାରଣ 'ଯେଉଁମାନଙ୍କର ହୃଦୟ ପବିତ୍ର, ସେମାନେ ଈଶ୍ୱରଙ୍କୁ ଦର୍ଶନ କରିବେ ।' ସମସ୍ତ ପ୍ରାଣୀଙ୍କ ମଧ୍ୟରେ ମନୁଷ୍ୟ ଶ୍ରେଷ୍ଠ ଜୀବ, ଏବଂ ଏହି ପୃଥିବୀ ହିଁ ଶ୍ରେଷ୍ଠ ସ୍ଥାନ, କାରଣ ଏହିଠାରେ ମନୁଷ୍ୟ ମୁକ୍ତିଲାଭ କରିବାକୁ ସମର୍ଥ । ମନୁଷ୍ୟ ହିଁ ଈଶ୍ୱରଙ୍କ ସମ୍ବନ୍ଧରେ ସର୍ବୋଚ୍ଚ କଳ୍ପନା । ଯେକୌଣସି ଗୁଣ ଈଶ୍ୱରଙ୍କଠାରେ ଆମେ ଅର୍ପଣ କରୁ, ସବୁ ଅଳ୍ପମାତ୍ରାରେ ମନୁଷ୍ୟଠାରେ ବିଦ୍ୟମାନ । ଯେତେବେଳେ ଉଚ୍ଚ ସ୍ତରକୁ ଆରୋହଣ କରୁ ଏବଂ ଏହି ଈଶ୍ୱର-ଧାରଣାର ମଧ୍ୟ ଅତୀତ ହେଉ, ସେତେବେଳେ ଦେହ, ମନ ଓ କଳ୍ପନାର ସୀମା ଲଙ୍ଘନ କରି ଆଉ ଆମେ ଏ ଜଗତକୁ ଦେଖିପାରୁ ନାହିଁ । ସେହି ପରମ ନିତ୍ୟଭାବରେ ଆରୂଢ଼ ହେଲେ ଆମର ପାର୍ଥିବ ସମ୍ବନ୍ଧ ରହେ ନାହିଁ; ସେତେବେଳେ ସବୁ ବିଷୟଶୂନ୍ୟ ବିଷୟୀରେ ପର୍ଯ୍ୟବସିତ ହୁଏ । ଅନୁଭବଗମ୍ୟ ଏହି ଜଗତରେ ମନୁଷ୍ୟ ଶ୍ରେଷ୍ଠ ସ୍ଥାନର ଅଧିକାରୀ । ଯେଉଁମାନେ ସମତ୍ୱ ବା ପୂର୍ଣ୍ଣତ୍ୱ ଲାଭ କରିଛନ୍ତି, ସେମାନେ 'ଈଶ୍ୱରଙ୍କ ସହିତ ବାସ କରନ୍ତି' ବୋଲି କଥିତ । 'ଆତ୍ମାଦ୍ୱାରା ଆତ୍ମାକୁ ହନନ' ହିଁ ଘୃଣା । ଅତଏବ ପ୍ରେମ ହିଁ ଜୀବନର ନୀତି । ଏ ଅବସ୍ଥାକୁ ଉନ୍ନୀତ ହେବା ହିଁ ପୂର୍ଣ୍ଣତ୍ୱ ଲାଭ କରିବା; କିନ୍ତୁ ଆମେମାନେ ଯେତେ ଅଧିକ ପୂର୍ଣ୍ଣତା ଆଡ଼କୁ ଅଗ୍ରସର ହେବା, ସେତେ ଅଧିକ ନୈଷ୍କର୍ମ୍ୟ ଲାଭ କରିବା । ସାତ୍ତ୍ୱିକ ବ୍ୟକ୍ତି ଏ ଜଗତକୁ ଶିଶୁଙ୍କର କ୍ରୀଡ଼ାକ୍ଷେତ୍ରପରି ଦେଖନ୍ତି, ଜାଣନ୍ତି ଏବଂ ଏ ବିଷୟରେ ବିଶେଷ ଚିନ୍ତା କରନ୍ତି ନାହିଁ । ଦୁଇଟି କୁକୁର-

ଛୁଆଙ୍କୁ ପରସ୍ପର ମରାମରି ଓ କାମୁଡ଼ାକାମୁଡ଼ି କରିବାର ଦେଖିଲେ ଆମେମାନେ ବିଶେଷ ବିସ୍ମିତ ହେଉ ନାହିଁ । ଆମେମାନେ ଜାଣୁ, ଏହା କୌଣସି ଗୁରୁତର ବିଷୟ ନୁହେଁ । ପୂର୍ଣ୍ଣ ମନୁଷ୍ୟ ଜାଣନ୍ତି ଏହି ସଂସାର ମାୟାର ଖେଳ । ଜୀବନକୁ ସେମାନେ ଧାର କହନ୍ତି । ବିରୁଦ୍ଧ ଶକ୍ତିଗୁଡ଼ିକର ଯେଉଁ କ୍ରିୟା ଆମମାନଙ୍କ ଉପରେ ଚାଲିଛି, ତାହାର ଫଳ ଏହି ଜୀବନ । ଜଡ଼ବାଦୀ କହନ୍ତି—ମୁକ୍ତିର କଥା ଭ୍ରମ ମାତ୍ର । ଆଦର୍ଶବାଦୀ କହନ୍ତି—ବନ୍ଧନର କଥା ସ୍ୱପ୍ନ ମାତ୍ର । ବେଦାନ୍ତ ପ୍ରଚାର କରେ—ଏକ ସମୟରେ ଆମେମାନେ ମୁକ୍ତ ଓ ବଦ୍ଧ । ଏହାର ଅର୍ଥ ଏହି ଯେ ଜାଗତିକ ସ୍ତରରେ ଆମେମାନେ କେବେହେଲେ ମୁକ୍ତ ନୋହୁଁ, କିନ୍ତୁ ଆଧ୍ୟାତ୍ମିକ ସ୍ତରରେ ଚିରମୁକ୍ତ । ଆତ୍ମା ମୁକ୍ତି ଓ ବନ୍ଧନର ଅତୀତ । ଆମେମାନେ ବ୍ରହ୍ମସ୍ୱରୂପ, ଆମେମାନେ ଇନ୍ଦ୍ରିୟାତୀତ, ଅବିନଶ୍ୱର ଜ୍ଞାନସ୍ୱରୂପ—ଆମେମାନେ ପରମାନନ୍ଦସ୍ୱରୂପ ।

# ହାର୍ଭାର୍ଡ ବିଶ୍ୱବିଦ୍ୟାଳୟରେ ବେଦାନ୍ତ

## ଆମେରିକାନ୍ ସଂସ୍କରଣର ଭୂମିକା

ଏହି ବକ୍ତୃତା ଓ ପରବର୍ତ୍ତୀ ଆଲୋଚନାଟି ସାଙ୍କେତିକ ଲିପିରେ ଗୃହୀତ ହୋଇଥିଲା । ଇଂଲଣ୍ଡକୁ ଯିବା ପୂର୍ବରୁ ସ୍ୱାମୀଜୀ ଏଗୁଡ଼ିକ ଥରେ ଦେଖି ଦେଇଥିଲେ; ଆଶା କରାଯାଏ, ସେଥିରେ କୌଣସି ଭୁଲ ନାହିଁ । ଅଧ୍ୟାପକ ଲ୍ୟାନ୍‌ମ୍ୟାନ୍ ଓ ଅଧ୍ୟାପକ ରାଇଟ୍ ଅନୁଗ୍ରହ କରି ସଂଶୋଧନରେ ସାହାଯ୍ୟ କରିଛନ୍ତି । ଆଲୋଚନାର ବିବୃତିରେ କେତୋଟି ପ୍ରଶ୍ନ ଅପରିହାର୍ଯ୍ୟଭାବେ ହଜିଯାଇଛି । ପ୍ରଥମ ଦୁଇଟି ଟୀକା ସ୍ୱାମୀଜୀ ନିଜେ ଯୋଗ କରିଛନ୍ତି । ମୂଳ ବକ୍ତୃତାରେ ହିନ୍ଦୁଶାସ୍ତ୍ରର ଉଦ୍ଧୃତଗୁଡ଼ିକ ସ୍ୱାମୀଜୀ ପ୍ରଥମେ ସଂସ୍କୃତରେ କହିଥିଲେ । ପରେ ଅନୁବାଦ କରି ଦେଇଥିଲେ । ଅନୁବାଦଗୁଡ଼ିକ ଯେଉଁ ଭାବରେ ସେ କରିଥିଲେ, ସେହି ଭାବରେ ଉଦ୍ଧାର କରାଯାଇଛି ।

ବକ୍ତୃତା ଓ ଆଲୋଚନା ପରେ ସନ୍ନିବେଶିତ ହୋଇଛି ୨୨ ଓ ୨୪ ମାର୍ଚ୍ଚ ଅପରାହ୍ଣରେ ହାର୍ଭାର୍ଡ ବିଶ୍ୱବିଦ୍ୟାଳୟର ଛାତ୍ରମାନଙ୍କ ପ୍ରଶ୍ନର ଉତ୍ତରରେ ପ୍ରଦତ୍ତ ସ୍ୱାମୀଜୀଙ୍କର କଥାଗୁଡ଼ିକ । ଉତ୍ତରଗୁଡ଼ିକ ସାଙ୍କେତିକଭାବରେ ଗୃହୀତ, କିନ୍ତୁ ପ୍ରଶ୍ନଗୁଡ଼ିକ ନୁହେଁ, କେତୋଟି ଅପ୍ରକାଶିତ ବକ୍ତୃତାର ବିଚ୍ଛିନ୍ନ ବିଚ୍ଛିନ୍ନ ଅଂଶ ମଧ୍ୟ ସଂଯୋଜିତ ହୋଇଛି । କେତେଗୁଡ଼ିଏ ଉତ୍ତର ଓ ନିର୍ବାଚିତ ଅଂଶର ବିଷୟବସ୍ତୁ ଏକ ହୋଇଥିଲେ ସୁଦ୍ଧା ବର୍ଣ୍ଣନାଭଙ୍ଗିର ବୈଚିତ୍ର୍ୟ ପାଇଁ ସେଗୁଡ଼ିକୁ ପ୍ରକାଶିତ କରାଯାଇଛି ।

ମାତ୍ର ଗୋଟିଏ ଭାଷଣରେ ବେଦାନ୍ତଦର୍ଶନର ଯଥୋପଯୁକ୍ତ ବ୍ୟାଖ୍ୟା ସମ୍ଭବ ନୁହେଁ । ଆଶା କରାଯାଏ, ପ୍ରାଚ୍ୟର ଜୀବନ ଓ ଚିନ୍ତା ବିଷୟରେ ଯେଉଁମାନେ ଆଗ୍ରହାନ୍ୱିତ, ସେମାନଙ୍କ ନିକଟରେ ଏହି ବକ୍ତୃତା, ଆଲୋଚନା ଓ ତତ୍ସହିତ ପ୍ରଶ୍ନୋତ୍ତର ଓ ନିର୍ବାଚିତ ଅଂଶଗୁଡ଼ିକ ଉପଯୋଗୀ ହେବ ।

J. P. F.
(ମିଷ୍ଟର ଫକ୍ସ)

# ବେଦାନ୍ତ-ଦର୍ଶନ

[ ୧୮୯୭ ଖ୍ରୀ: ମାର୍ଚ୍ଚ ୨୫ ତାରିଖ ଆମେରିକାର ଯୁକ୍ତରାଷ୍ଟ୍ରରେ ହାର୍ଭାର୍ଡ ବିଶ୍ୱବିଦ୍ୟାଳୟର ଗ୍ରାଜୁଏଟ୍ ଫିଲଜଫିକ୍ୟାଲ ସୋସାଇଟିରେ ପ୍ରଦତ୍ତ ବକ୍ତୃତା ]

ଆଜିକାଲି ଯାହାକୁ ସାଧାରଣଭାବରେ 'ବେଦାନ୍ତ-ଦର୍ଶନ' କୁହାଯାଏ, ଭାରତର ବିଭିନ୍ନ ଧର୍ମସମ୍ପ୍ରଦାୟଗୁଡ଼ିକର ସବୁ ମତ ତାହାର ଅନ୍ତର୍ଗତ । ସେଥିପାଇଁ ନାନାଭାବରେ ଏହାର ବ୍ୟାଖ୍ୟା କରାଯାଇଅଛି, ଏବଂ ମୋ ମତରେ କ୍ରମୋନ୍ନତିଧାରାରେ ତାହା ହୋଇଅଛି—ଦ୍ୱୈତବାଦରେ ସେଗୁଡ଼ିକର ଆରମ୍ଭ ଏବଂ ଅଦ୍ୱୈତବାଦରେ ପରିସମାପ୍ତି । ବେଦାନ୍ତର ଶବ୍ଦଗତ ଅର୍ଥ ବେଦର ଅନ୍ତ ବା ଶେଷ—ବେଦ ହିନ୍ଦୁମାନଙ୍କ ଶାସ୍ତ୍ର ।* ପାଶ୍ଚାତ୍ୟରେ କେବେ କେବେ 'ବେଦ' କହିଲେ ଏହାର ସ୍ତୋତ୍ର ଓ ଆନୁଷ୍ଠାନିକ ଅଂଶ ମାତ୍ର ବୁଝାଏ । କିନ୍ତୁ ବର୍ତ୍ତମାନ କାଳରେ ବେଦର ଏହି ଅଂଶର ବ୍ୟବହାର ପ୍ରାୟ ନାହିଁ କହିଲେ ଚଳେ; ଭାରତରେ ବର୍ତ୍ତମାନ 'ବେଦ' କହିଲେ ସାଧାରଣତଃ ବେଦାନ୍ତକୁ ହିଁ ବୁଝାଏ । ସବୁ ଭାଷ୍ୟକାର ଶାସ୍ତ୍ରୋକ୍ତି ଉଦ୍ଧୃତ କରିବା ସମୟରେ ତାହା ବେଦାନ୍ତରୁ ନେଇଥାଆନ୍ତି—ଏହା ହିଁ ନିୟମ; ଭାଷ୍ୟ-ମାନଙ୍କ ନିକଟରେ ବେଦାନ୍ତର ଆଉ ଗୋଟିଏ ବିଶେଷ ନାମ 'ଶ୍ରୁତି'।** 'ବେଦାନ୍ତ' ନାମରେ ପରିଚିତ ସବୁ ଗ୍ରନ୍ଥ ବେଦର କ୍ରିୟାକାଣ୍ଡ ପରେ ରଚିତ ହୋଇ ନାହିଁ ।

---

* ବେଦ ପ୍ରଧାନତଃ ଦୁଇଭାଗରେ ବିଭକ୍ତ, ଜ୍ଞାନକାଣ୍ଡ ଓ କର୍ମକାଣ୍ଡ । ପ୍ରସିଦ୍ଧ ସ୍ତୋତ୍ର ଓ କ୍ରିୟାନୁଷ୍ଠାନ ବିଧି ବା ବ୍ରାହ୍ମଣଗୁଡ଼ିକ କର୍ମକାଣ୍ଡର ଅନ୍ତର୍ଗତ । କ୍ରିୟାନୁଷ୍ଠାନ ବିଧିରୁ ସ୍ୱତନ୍ତ୍ର ଆଧ୍ୟାତ୍ମିକ ପ୍ରସଙ୍ଗ ବେଦର ଯେଉଁ ସବୁ ଅଂଶରେ ରହିଅଛି, ସେଗୁଡ଼ିକର ନାମ ଉପନିଷଦ୍ । ଉପନିଷଦ୍ ଜ୍ଞାନକାଣ୍ଡର ଅନ୍ତର୍ଗତ । ସବୁ ଉପନିଷଦ୍ ହିଁ ଯେ ବେଦର ସ୍ୱତନ୍ତ୍ର ଅଂଶରୂପରେ ରଚିତ, ତାହା ନୁହେଁ । ଏଥିରୁ କେତେଗୁଡ଼ିଏ ବ୍ରାହ୍ମଣ ଅଂଶର ମଝିରେ ମଝିରେ ବିକ୍ଷିପ୍ତ ହୋଇ ରହିଅଛି ଏବଂ ଅନ୍ତତଃ ଗୋଟିଏ ରହିଅଛି ସଂହିତାଂଶରେ । କେବେ କେବେ ବେଦର ଅନ୍ତର୍ଭୁକ୍ତ ନୁହେଁ, ଏପରି ଗ୍ରନ୍ଥକୁ ମଧ୍ୟ 'ଉପନିଷଦ୍' କୁହାଯାଏ—ଯଥା ଗୀତା । କିନ୍ତୁ ପ୍ରକୃତ ପକ୍ଷରେ ବେଦର ନାନା ସ୍ଥାନରେ ଯେଉଁସବୁ ଦାର୍ଶନିକ ତଥ୍ୟପୂର୍ଣ୍ଣ ଆଲୋଚନା ରହିଛି, ସେଗୁଡ଼ିକୁ ସାଧାରଣତଃ 'ଉପନିଷଦ୍' କୁହାଯାଏ । ଏହି ଆଲୋଚନାଗୁଡ଼ିକ ସଂଗୃହୀତ ହୋଇ 'ବେଦାନ୍ତ' ନାମରେ ଅଭିହିତ ହୋଇଅଛି ।

** 'ଶ୍ରୁତି'ର ଅର୍ଥ—ଯାହା ଶ୍ରୁତ ହୋଇଅଛି । 'ଶ୍ରୁତି' ଶବ୍ଦରେ ସମଗ୍ର ବୈଦିକ ସାହିତ୍ୟ ବୁଝାଇଲେ ମଧ୍ୟ ଭାଷ୍ୟକାରଗଣ ପ୍ରଧାନତଃ ଉପନିଷଦ୍ ଅର୍ଥରେ ହିଁ ଏହାର ପ୍ରୟୋଗ କରିଥାଆନ୍ତି ।

ଯେପରି 'ଈଶୋପନିଷଦ୍' ନାମକ ବେଦାନ୍ତ-ଗ୍ରନ୍ଥ ବେଦର ଅତି ପ୍ରାଚୀନ ଅଂଶ ଯଜୁର୍ବେଦର ଚତ୍ୱାରିଂଶତ୍ତମ ଅଧ୍ୟାୟରେ ରହିଅଛି । ବେଦର ବ୍ରାହ୍ମଣ ବା ଅନୁଷ୍ଠାନ-ମୂଳକ ଅଂଶରେ ମଧ୍ୟ ଅନ୍ୟ କେତେଖଣ୍ଡ ଉପନିଷଦ୍* ରହିଅଛି । ବାକି ଉପନିଷଦ୍-ଗୁଡ଼ିକ ସ୍ୱତନ୍ତ୍ର, ବେଦର ବ୍ରାହ୍ମଣ ବା ଅନ୍ୟ କୌଣସି ଅଂଶର ଅନ୍ତର୍ଭୁକ୍ତ ନୁହେଁ; କିନ୍ତୁ ସେଗୁଡ଼ିକ ଯେ ବେଦର ଅନ୍ୟ ଅଂଶରୁ ସମ୍ପୂର୍ଣ୍ଣ ସ୍ୱତନ୍ତ୍ର, ଏକଥା ଭାବିବାର କୌଣସି ହେତୁ ନାହିଁ, କାରଣ ଆମେମାନେ ଜାଣୁ, ଏଗୁଡ଼ିକ ମଧ୍ୟରୁ ଅନେକଗୁଡ଼ିଏ ଏକାବେଳକେ ନଷ୍ଟ ହୋଇଯାଇଅଛି ଏବଂ ବହୁ ବ୍ରାହ୍ମଣ-ଅଂଶ ଲୁପ୍ତ ମଧ୍ୟ ହୋଇ-ଅଛି । ସୁତରାଂ ଏହା ଖୁବ୍ ସମ୍ଭବ ଯେ, ଏହି ସ୍ୱତନ୍ତ୍ର ଉପନିଷଦ୍‌ଗୁଡ଼ିକ କେଉଁ କେଉଁ 'ବ୍ରାହ୍ମଣ'ର ଅନ୍ତର୍ଭୁକ୍ତ ଥିଲା, କାଳକ୍ରମେ ସେହି ବ୍ରାହ୍ମଣ-ଅଂଶଗୁଡ଼ିକ ଲୋପ ପାଇଯାଇଛି; କିନ୍ତୁ ଉପନିଷଦ୍‌ଗୁଡ଼ିକ ରହିଯାଇଛି । ଏହି ଉପନିଷଦ୍‌ଗୁଡ଼ିକ 'ଆରଣ୍ୟକ' ନାମରେ ମଧ୍ୟ ଅଭିହିତ ।

ତେଣୁ ବେଦାନ୍ତ ହିଁ କାର୍ଯ୍ୟତଃ ହିନ୍ଦୁମାନଙ୍କର ଶାସ୍ତ୍ରଗ୍ରନ୍ଥ, ଏବଂ ଭାରତୀୟ ଦର୍ଶନରେ ଯେତେଗୁଡ଼ିଏ ଆସ୍ତିକ ମତବାଦ ଅଛି ସେଥିରୁ ସବୁଗୁଡ଼ିକ ହିଁ ବେଦାନ୍ତକୁ ଭିତ୍ତିରୂପେ ଗ୍ରହଣ କରିଅଛନ୍ତି । ଏପରିକି ଉଦ୍ଦେଶ୍ୟ-ସିଦ୍ଧିର ଉପଯୋଗୀ ହେଲେ ବୌଦ୍ଧ ଏବଂ ଜୈନମାନେ ମଧ୍ୟ ପ୍ରମାଣ ପାଇଁ ବେଦାନ୍ତର ବାକ୍ୟ ଉଦ୍ଧୃତ କରନ୍ତି । ଭାରତର ସବୁ ଦାର୍ଶନିକ ମତବାଦ ବେଦକୁ ଭିତ୍ତି ବୋଲି ଦାବି କଲେ ମଧ୍ୟ ପ୍ରତ୍ୟେକ ମତ ଭିନ୍ନ ଭିନ୍ନ ନାମ ଗ୍ରହଣ କରିଅଛନ୍ତି । ସର୍ବଶେଷଟି ବ୍ୟାସଙ୍କର ମତ; ଏହା ପୂର୍ବବର୍ତ୍ତୀ ଅନ୍ୟାନ୍ୟ ଦାର୍ଶନିକ ମତଗୁଡ଼ିକ ଅପେକ୍ଷା ଅଧିକ ବେଦନିଷ୍ଠ; ଏବଂ ଏହା ସାଂଖ୍ୟ, ନ୍ୟାୟ ପ୍ରଭୃତି ପୂର୍ବବର୍ତ୍ତୀ ଦର୍ଶନଗୁଡ଼ିକ ସହିତ ବେଦାନ୍ତମତ-ଗୁଡ଼ିକର ସାମଞ୍ଜସ୍ୟ-ବିଧାନର ଚେଷ୍ଟା କରିଅଛି । ସେଥିପାଇଁ ବିଶେଷ ଭାବରେ ଏହାକୁ ହିଁ 'ବେଦାନ୍ତ-ଦର୍ଶନ' କୁହାଯାଏ; ବର୍ତ୍ତମାନ ଭାରତରେ 'ବ୍ୟାସ-ସୂତ୍ର'-ଗୁଡ଼ିକ ହିଁ ବେଦାନ୍ତ-ଦର୍ଶନର ଭିତ୍ତି । ବିଭିନ୍ନ ଭାଷ୍ୟକାରଗଣ ପୁଣି ଏହି ବ୍ୟାସସୂତ୍ର-ଗୁଡ଼ିକର ବିଭିନ୍ନ ରୂପରେ ବ୍ୟାଖ୍ୟା କରିଅଛନ୍ତି । ସାଧାରଣତଃ ଭାରତରେ

---

* କୁହାଯାଏ ଉପନିଷଦ୍‌ର ସଂଖ୍ୟା ଏକଶହ ଆଠ । ଏଗୁଡ଼ିକର ରଚନାକାଳ ନିଷ୍ପନ୍ନ କରି କୁହାଯାଏ ନାହିଁ । ତେବେ ଏ କଥା ନିଶ୍ଚିତ ଯେ, ଉପନିଷଦ୍ ବୌଦ୍ଧ ଯୁଗ ପୂର୍ବରୁ ରଚିତ । କେତେକ ଅପ୍ରଧାନ ଉପନିଷଦ୍‌ରେ ଅବଶ୍ୟ ପରବର୍ତ୍ତୀ ଯୁଗର ଘଟଣା ଓ ବିଷୟର ଉଲ୍ଲେଖ ରହିଅଛି; କିନ୍ତୁ ଏହାଦ୍ୱାରା ପ୍ରମାଣିତ ହୁଏ ନାହିଁ ଯେ ସେହି ଉପନିଷଦ୍‌ଗୁଡ଼ିକ ପରବର୍ତ୍ତୀ କାଳରେ ରଚିତ । ସଂସ୍କୃତ ସାହିତ୍ୟର ବହୁ କ୍ଷେତ୍ରରେ ଦେଖାଯାଏ ଯେ, ଗ୍ରନ୍ଥର ମୂଳ ଅଂଶ ବହୁ ପ୍ରାଚୀନ ହେଲେ ମଧ୍ୟ ତାହା ମଧ୍ୟରେ ପରବର୍ତ୍ତୀ କାଳର ବହୁ ଘଟଣା ଯୁକ୍ତ ହୋଇଅଛି; ସାମ୍ପ୍ରଦାୟିକ ବ୍ୟକ୍ତି-ମାନେ ନିଜ ନିଜ ସମ୍ପ୍ରଦାୟର ଗୌରବ ବଢ଼ାଇବା ପାଇଁ ଏହିପରି କରିଥାଆନ୍ତି ।

ବର୍ତ୍ତମାନ ତନ ଶ୍ରେଣୀର ଭାଷ୍ୟକାର* ଅଛନ୍ତ । ସେମାନଙ୍କର ବ୍ୟାଖ୍ୟାକୁ ଅବଲମ୍ବନ କର ତନୋଟି ଦାର୍ଶନକ ମତ ଓ ସମ୍ପ୍ରଦାୟ ଗଢ଼ି ଉଠିଅଛ—ପ୍ରଥମଟି ଦ୍ୱୈତ, ଦ୍ୱିତୀୟଟି ବଶିଷ୍ଟାଦ୍ୱୈତ ଏବଂ ତୃତୀୟଟି ଅଦ୍ୱୈତ । ଏମାନଙ୍କ ମଧ୍ୟରେ ଦ୍ୱୈତବାଦୀ ଓ ବଶିଷ୍ଟାଦ୍ୱୈତବାଦୀମାନଙ୍କର ସଂଖ୍ୟା ହିଁ ଭାରତରେ ସର୍ବାପେକ୍ଷା ବେଶୀ; ସେମାନଙ୍କ ତୁଳନାରେ ଅଦ୍ୱୈତବାଦୀଙ୍କର ସଂଖ୍ୟା ଅତ ଅଳ୍ପ । ଏହ ତନୋଟି ମତବାଦର ଭାବଧାରା ଆପଣମାନଙ୍କ ନକଟରେ ଉପସ୍ଥାପିତ କରବାର ଚେଷ୍ଟା କରବ; ତେବେ ଆରମ୍ଭ କରବା ପୂର୍ବରୁ ଗୋଟିଏ କଥା କହ ରଖେ—ସାଂଖ୍ୟ ଦର୍ଶନର ମନୋବଜ୍ଞାନ ଏ ତନୋଟି ମତବାଦର ସାଧାରଣ ମନୋବଜ୍ଞାନ ।

---

* ବ୍ୟାଖ୍ୟା ନାନା ଧରଣର ଅଛ; ଯେପର ଭାଷ୍ୟ, ଟିକା, ଟିପ୍ପଣୀ, ଚୂର୍ଣ୍ଣୀ ଇତ୍ୟାଦ । ଏଗୁଡ଼ିକ ମଧ୍ୟରୁ ଭାଷ୍ୟ ଛଡ଼ା ଆଉ ସବୁଗୁଡ଼ିକ ହିଁ ଗ୍ରନ୍ଥର ମୂଳ ପାଠର ଅଥବା ତଦନ୍ତର୍ଗତ କଠିନ ଶବ୍ଦର ସରଳାର୍ଥ । ଭାଷ୍ୟକୁ ଠିକ୍ ଶବ୍ଦାର୍ଥ-ବ୍ୟାଖ୍ୟା କୁହାଯାଏ ନାହିଁ, ମୂଳ ଗ୍ରନ୍ଥକୁ ଅବଲମ୍ବନ କର ଗୋଟିଏ ଦାର୍ଶନକ ମତବାଦ ବ୍ୟାଖ୍ୟା କରବା ହିଁ ଭାଷ୍ୟର ଉଦ୍ଦେଶ୍ୟ—କେବଳ ଶବ୍ଦାର୍ଥ-ପ୍ରକାଶ ନୁହେଁ । ଗୋଟିଏ ଦର୍ଶନ ସ୍ଥାପନ କରବା ଏହାର ଉଦ୍ଦେଶ୍ୟ । ଭାଷ୍ୟକାର ମୂଳ ଗ୍ରନ୍ଥର ବଷୟକୁ ନଜ ମତବାଦର ପ୍ରମାଣରୂପେ ଗ୍ରହଣ କର ସେହ ମତବାଦର ବସ୍ତାର କରନ୍ତ । ବେଦାନ୍ତ ଉପରେ ବହୁ ଭାଷ୍ୟାଦ ରଚତ ହୋଇଅଛ । ବ୍ୟାସ-ରଚତ ଦାର୍ଶନକ ସୂତ୍ରଗୁଡ଼ିକ (ବ୍ୟାସ-ସୂତ୍ର ବା ବେଦାନ୍ତ ସୂତ୍ର) ମଧ୍ୟରେ ହିଁ ବେଦାନ୍ତତତ୍ତ୍ୱସମୂହର ଶେଷ ଓ ଚରମ ପ୍ରକାଶ ଲାଭ କରଅଛ । ବ୍ୟାସ-ରଚତ ଉତ୍ତର-ମୀମାଂସା ନାମକ ଏହ ଗ୍ରନ୍ଥଖଣ୍ଡିକ ହିଁ ବେଦାନ୍ତ-ସିଦ୍ଧାନ୍ତର ପ୍ରାମାଣ୍ୟ ଗ୍ରନ୍ଥ—କେବଳ ବେଦାନ୍ତ କାହିଁକ, ସମଗ୍ର ହିନ୍ଦୁଶାସ୍ତ୍ରର ବକ୍ତବ୍ୟ ବୁଝିବାର ପ୍ରାମାଣ୍ୟ ଗ୍ରନ୍ଥ । ତେଣୁ ସର୍ବାଧିକ ବରୋଧୀ ସମ୍ପ୍ରଦାୟଗୁଡ଼ିକୁ ମଧ୍ୟ ବ୍ୟାସ-ସୂତ୍ର ଗ୍ରହଣ କରବାକୁ ପଡ଼ୁଛ ଏବଂ ତାହା ସହତ ନଜ ନଜ ଦାର୍ଶନକ ମତବାଦର ସାମଞ୍ଜସ୍ୟ-ବଧାନ କରବାକୁ ହୋଇଅଛ । ଅତ ପ୍ରାଚୀନ କାଳରେ ମଧ୍ୟ ବେଦାନ୍ତ-ଦର୍ଶନର ଭାଷ୍ୟକାରଗଣ ତନୋଟି ପ୍ରସିଦ୍ଧ ସମ୍ପ୍ରଦାୟରେ ବଭକ୍ତ ଥିଲେ— ଦ୍ୱୈତବାଦୀ, ବଶିଷ୍ଟାଦ୍ୱୈତବାଦୀ ଓ ଅଦ୍ୱୈତବାଦୀ । ପ୍ରାଚୀନ ଭାଷ୍ୟଗୁଡ଼ିକ ବୋଧହୁଏ ନଷ୍ଟ ହୋଇ ଯାଇଅଛ; କନ୍ତୁ ଆଧୁନକ କାଳରେ ବୁଦ୍ଧଙ୍କ ପରବର୍ତ୍ତୀ ଯୁଗର ଭାଷ୍ୟକାରମାନେ—ଶଙ୍କର, ରାମାନୁଜ ଓ ମଧ୍ୱ—ସେଗୁଡ଼ିକର ପୁନଃପ୍ରବର୍ତ୍ତନ କରଅଛନ୍ତ । ଶଙ୍କର ଅଦ୍ୱୈତବାଦର ପୁନଃପ୍ରବର୍ତ୍ତନ କଲେ, ରାମାନୁଜ କଲେ ପ୍ରାଚୀନ କାଳର ବୋଧାୟନଙ୍କର ବଶିଷ୍ଟାଦ୍ୱୈତବାଦର, ଆଉ ମଧ୍ୱ ଦ୍ୱୈତବାଦର । ଭାରତରେ ସମ୍ପ୍ରଦାୟଗୁଡ଼ିକ ମଧ୍ୟରେ ପ୍ରଭେଦ ପ୍ରଧାନତଃ ଦାର୍ଶନକ ବଷୟ ନେଇ; ଅନୁଷ୍ଠାନ-ପଦ୍ଧତରେ ପ୍ରଭେଦ ଅତ ସାମାନ୍ୟ, କାରଣ ଦର୍ଶନ ଓ ଧର୍ମର ଭିତ୍ତି ସମସ୍ତଙ୍କର ଏକ ।

ସାଂଖ୍ୟ ମନୋବିଜ୍ଞାନ ସହିତ ନ୍ୟାୟ ଓ ବୈଶେଷିକ ମନୋବିଜ୍ଞାନର ଯଥେଷ୍ଟ ସାମଞ୍ଜସ୍ୟ ରହିଅଛି, ବିରୋଧ କେବଳ କେତୋଟି ଅପ୍ରଧାନ ଚିନ୍ତାଧାରା ବିଷୟ ନେଇ ।

ତିନଗୋଟି ବିଷୟରେ ସବୁ ବେଦାନ୍ତବାଦୀ ଏକମତ; ସମସ୍ତେ ଈଶ୍ୱର, ବେଦ ଏବଂ କଳ୍ପରେ ବିଶ୍ୱାସୀ । ବେଦ କଥା ପୂର୍ବରୁ ଆଲୋଚିତ ହୋଇଅଛି । 'କଳ୍ପ' ସମ୍ବନ୍ଧରେ ବିଶ୍ୱାସ ଏହିପରି : ବିଶ୍ୱବ୍ରହ୍ମାଣ୍ଡରେ ଯେଉଁଠି ଯାହା କିଛି ଜଡ ପଦାର୍ଥ ଅଛି, ସେସବୁ 'ଆକାଶ' ନାମକ ଗୋଟିଏ ମୂଳ ପଦାର୍ଥରୁ ସୃଷ୍ଟ, ଏବଂ ସବୁ ଶକ୍ତି ହିଁ—ମାଧ୍ୟାକର୍ଷଣ, ଆକର୍ଷଣ ବା ବିକର୍ଷଣ, ଜୀବନୀଶକ୍ତି ବା ଯେକୌଣସି ଶକ୍ତି ହେଉନା କାହିଁକି, ସବୁ—'ପ୍ରାଣ' ନାମକ ଗୋଟିଏ ମୂଳ ଶକ୍ତିରୁ ଉଦ୍ଭୂତ । ଆକାଶ ଉପରେ ପ୍ରାଣର କ୍ରିୟା ଫଳରେ ଏହି ବିଶ୍ୱ ସୃଷ୍ଟ ବା ବହିଃପ୍ରକ୍ଷିପ୍ତ ବା ବହିଃନିଃସୃତ ହୋଇଛି । କଳ୍ପାରମ୍ଭରେ ଆକାଶ ଗତିହୀନ, ଅନଭିବ୍ୟକ୍ତ ଥାଏ । ତାହାପରେ ଏହା ଉପରେ ପ୍ରାଣର କ୍ରିୟା ଆରମ୍ଭ ହୁଏ । ଆଉ ପ୍ରାଣ ଯେତେ ବେଶୀ କ୍ରିୟାଶୀଳ ହୁଏ, ଆକାଶରୁ ସେତେ ବେଶୀ ଗ୍ରହ, ପ୍ରାଣୀ, ମନୁଷ୍ୟ, ନକ୍ଷତ୍ର ପ୍ରଭୃତି ସ୍ଥୂଳ ଓ ସ୍ଥୂଳତର ପଦାର୍ଥର ସୃଷ୍ଟି ହେଉଥାଏ । ଗଣନାତୀତ କାଳପରେ ଏହି ଅଭିବ୍ୟକ୍ତି ବନ୍ଦ ହୋଇଯାଏ ଏବଂ ବିଲୟ ଆରମ୍ଭ ହୁଏ; ପ୍ରତ୍ୟେକ ବସ୍ତୁ ସୂକ୍ଷ୍ମରୁ ସୂକ୍ଷ୍ମତର ବସ୍ତୁରେ ବିଲୀନ ହେଉ ହେଉ ପୁନରାୟ ମୂଳ ଆକାଶ ଓ ପ୍ରାଣରେ ପରିଣତ ହୁଏ । ସେତେବେଳେ ନୂତନ 'କଳ୍ପ' ଆରମ୍ଭ ହୁଏ । ପ୍ରାଣ ଏବଂ ଆକାଶ ଉପରେ ମଧ୍ୟ କିଛି ଅଛି । ଉଭୟଙ୍କୁ ବିରାଟ ମନ ବା 'ମହତ୍' ନାମକ ତୃତୀୟ ସତ୍ତାରେ ବିଲୀନ କରାଯାଇପାରେ । ବିରାଟ ମନ—ଆକାଶ ବା ପ୍ରାଣ ସୃଷ୍ଟି କରେ ନାହିଁ, ନିଜକୁ ହିଁ ପ୍ରାଣ ଓ ଆକାଶରେ ରୂପାନ୍ତରିତ କରେ ।

ବର୍ତ୍ତମାନ ମନ, ଆତ୍ମା ଓ ଈଶ୍ୱରଙ୍କ ବିଷୟରେ ବିଶ୍ୱାସ ନେଇ ଆମେମାନେ ଆଲୋଚନା କରିବୁ, ସର୍ବଜନଗ୍ରାହ୍ୟ ସାଂଖ୍ୟ-ମନସ୍ତତ୍ତ୍ୱ ଅନୁସାରେ ଅନୁଭୂତିକ୍ଷେତ୍ରରେ —ଯେପରି କିଛି ଦେଖିବା ସମୟରେ—ପ୍ରଥମେ ଦେଖିବାର ଯନ୍ତ୍ର ବା କରଣ ଚକ୍ଷୁ । ଚକ୍ଷୁ-ଯନ୍ତ୍ରର ପଛରେ ଦର୍ଶନର ଇନ୍ଦ୍ରିୟ—ଚକ୍ଷୁର ସ୍ନାୟୁ ଓ ସ୍ନାୟୁକେନ୍ଦ୍ର ରହିଅଛି; ଏଗୁଡ଼ିକ ବାହାରର ଯନ୍ତ୍ର ନୁହେଁ, କିନ୍ତୁ ଏଗୁଡ଼ିକ ଛଡ଼ା ଚକ୍ଷୁ ଦେଖିପାରିବ ନାହିଁ ।

---

* ତୁମମାନଙ୍କ ଇଂରେଜୀ ଭାଷାରେ 'କ୍ରିଏସନ୍' (creation—ସୃଷ୍ଟି) ଶବ୍ଦଟି ସଂସ୍କୃତ ଭାଷାର 'ପ୍ରକ୍ଷେପ' (projection) ଶବ୍ଦଟିର ଠିକ୍ ଅନୁରୂପ । କାରଣ ଭାରତରେ ଏପରି କୌଣସି ଧର୍ମସମ୍ପ୍ରଦାୟ ନାହିଁ, ଯେଉଁମାନେ 'ଶୂନ୍ୟ (ବା ଅସତ୍)-ରୁ ଜଗତ ସୃଷ୍ଟ ହୋଇଅଛି'—ପାଶ୍ଚାତ୍ୟର ଏହି ଧାରଣାକୁ ବିଶ୍ୱାସ କରନ୍ତି । ପୂର୍ବରୁ ବିଦ୍ୟମାନ କୌଣସି ସତ୍-ବସ୍ତୁର ପ୍ରକ୍ଷେପକୁ ହିଁ ଆମେମାନେ 'ସୃଷ୍ଟି' ବୋଲି ବୁଝୁ । (ସ୍ୱାମୀଜୀଙ୍କର 'ଆତ୍ମା'ନାମକ ବକ୍ତୃତାରୁ)

ଅନୁଭୂତି ପାଇଁ ଆହୁରି ମଧ୍ୟ କିଛିର ପ୍ରୟୋଜନ । ମନ ଥିବା ଆବଶ୍ୟକ ଏବଂ ଇନ୍ଦ୍ରିୟ ସହିତ ମନର ସଂଯୋଗ ମଧ୍ୟ ଆବଶ୍ୟକ । ଏହାଛଡ଼ା ମଧ୍ୟ ସଂବେଦନାକୁ ବୁଦ୍ଧିର ବା ମନର ପ୍ରତିକ୍ରିୟାଶୀଳ ନିଶ୍ଚୟାତ୍ମିକା ବୃତ୍ତି ନିକଟରେ ପହଞ୍ଚାଇ ଦେବା ଆବଶ୍ୟକ; ବୁଦ୍ଧି ନିକଟରୁ ପ୍ରତିକ୍ରିୟା ଆସିବା ସଙ୍ଗେ ସଙ୍ଗେ ବହିର୍ଜଗତ ପ୍ରତିଭାତ ହୁଏ ଏବଂ ଅହଂବୋଧ ମଧ୍ୟ ଜାଗ୍ରତ ହୁଏ । ତାହାପରେ ଆସେ ଇଚ୍ଛା; କିନ୍ତୁ ତଥାପି ସବୁ ହେଲା ନାହିଁ । ଯେପରି ଅବିଚ୍ଛିନ୍ନଭାବରେ ବିଚ୍ଛୁରିତ ଆଲୋକର ସ୍ପନ୍ଦନରେ ପ୍ରସ୍ଫୁଟ କେତୋଟି ଚିତ୍ରକୁ ନେଇ ଗୋଟିଏ ସଂପୂର୍ଣ୍ଣ ଚିତ୍ର ପାଇବାକୁ ହେଲେ, ସେଗୁଡ଼ିକର ପ୍ରତ୍ୟେକକୁ କୌଣସି ଏକ ସ୍ଥିର ବସ୍ତୁ ଉପରେ ନିକ୍ଷେପ କରିବାକୁ ହୁଏ, ସେହିପରି ମନର ପ୍ରତ୍ୟେକ ଭାବକୁ ମଧ୍ୟ ଏକତ୍ର କରି ଦେହ ଓ ମନର ତୁଳନାରେ ଯାହା ସ୍ଥିର, ସେହିପରି କୌଣସି ଗୋଟିଏ ପଦାର୍ଥ ଉପରେ ପ୍ରକ୍ଷେପ କରିବାକୁ ହେବ; ଏହି ସ୍ଥିର ପଦାର୍ଥଟି ଜୀବାତ୍ମା—ପୁରୁଷ ବା ଆତ୍ମା ।

ସାଂଖ୍ୟଦର୍ଶନ ମତରେ 'ବୁଦ୍ଧି' ନାମକ ମନର ପ୍ରତିକ୍ରିୟାଶୀଳ ଅବସ୍ଥାଟି ମହତ୍ ବା ବିରାଟ ମନର ପରିଣାମ, ରୂପାନ୍ତର ବା ଗୋଟିଏ ବିଶେଷ ଅଭିବ୍ୟକ୍ତି । ମହତ୍ ହିଁ ସ୍ପନ୍ଦନଶୀଳ ଚିନ୍ତାରେ ରୂପାନ୍ତରିତ ହୁଏ ଏବଂ ଏହାର ଗୋଟିଏ ଅଂଶ ପରିବର୍ତ୍ତିତ ହୋଇ ଇନ୍ଦ୍ରିୟ ହୁଏ, ଅନ୍ୟ ଅଂଶରେ ହୁଏ ସୂକ୍ଷ୍ମ ଭୂତ (ତନ୍ମାତ୍ର) । ଏହି ସମସ୍ତର ସମବାୟରେ ସମଗ୍ର ବିଶ୍ୱ ସୃଷ୍ଟ ହୁଏ । ସାଂଖ୍ୟଦର୍ଶନ ମତରେ ଏହି ମହତ୍ ପରେ ମଧ୍ୟ ଆଉ ଗୋଟିଏ ଅବସ୍ଥା ଅଛି, ଯାହାର ନାମ 'ଅବ୍ୟକ୍ତ' ବା ଅପ୍ରକାଶିତ; ସେଠାରେ ମନର ମଧ୍ୟ ପ୍ରକାଶ ନାହିଁ, କେବଳ କାରଣଗୁଡ଼ିକ ଥାଏ । ଏହି ଅବସ୍ଥାର ଆଉ ଗୋଟିଏ ନାମ 'ପ୍ରକୃତି' । ଏହି ପ୍ରକୃତିର ବାହାରେ ପ୍ରକୃତିରୁ ଚିର-ସ୍ୱତନ୍ତ୍ର ପୁରୁଷ ରହିଅଛନ୍ତି, ଯେ ହେଉଛନ୍ତି ସାଂଖ୍ୟର ନିର୍ଗୁଣ ସର୍ବବ୍ୟାପୀ ଆତ୍ମା । ପୁରୁଷ କର୍ତ୍ତା ନୁହନ୍ତି, ସାକ୍ଷୀ ମାତ୍ର । ପୁରୁଷକୁ ବୁଝାଇବା ପାଇଁ ସ୍ଫଟିକର ଉଦାହରଣ ଦିଆହୁଏ । ପୁରୁଷ ବର୍ଣ୍ଣହୀନ ସ୍ୱଚ୍ଛ ସ୍ଫଟିକ ସଦୃଶ; ଏହାର ସମ୍ମୁଖରେ ବିଭିନ୍ନ ବର୍ଣ୍ଣ ରଖିଲେ ଏହା ସେହିସବୁ ବର୍ଣ୍ଣରେ ରଞ୍ଜିତ ବୋଲି ମନେହୁଏ; କିନ୍ତୁ ପ୍ରକୃତପକ୍ଷରେ ସ୍ଫଟିକ ସେଥିରେ ରଞ୍ଜିତ ହୁଏ ନାହିଁ ।

ବେଦାନ୍ତବାଦୀମାନେ ସାଂଖ୍ୟର 'ପୁରୁଷ ଓ ପ୍ରକୃତି' ବିଷୟକ ମତ ଅସ୍ୱୀକାର କରନ୍ତି । ସେମାନଙ୍କ ମତରେ ଏ ଦୁଇଟି ତତ୍ତ୍ୱ ମଧ୍ୟରେ ଯେଉଁ ବିରାଟ ବ୍ୟବଧାନ ରହିଅଛି, ଗୋଟିଏ ସଂଯୋଗ-ସେତୁର ସାହାଯ୍ୟରେ ସେ ବ୍ୟବଧାନ ଦୂର କରିବାକୁ ହେବ । ମନେକର ସାଂଖ୍ୟମତ ପ୍ରକୃତିରେ ପହଞ୍ଚିଲ, କିନ୍ତୁ ପହଞ୍ଚିବା ମାତ୍ରକେ ପ୍ରକୃତିରୁ ସଂପୂର୍ଣ୍ଣ ସ୍ୱତନ୍ତ୍ର ପୁରୁଷ ନିକଟକୁ ଆସିବା ପାଇଁ ତାହାକୁ ତତ୍କ୍ଷଣାତ୍ ଏକ ଡିଆଁରେ ଅନ୍ୟ ପ୍ରାନ୍ତକୁ ଯିବାକୁ ହୁଏ । ତେବେ ସାଂଖ୍ୟ ମତରେ ଏହି ବିଭିନ୍ନ ବର୍ଣ୍ଣ-ଗୁଡ଼ିକ ସ୍ୱରୂପତଃ ବର୍ଣ୍ଣହୀନ ଆତ୍ମା ଉପରେ କ୍ରିୟାଶୀଳ ହେବାକୁ ସମର୍ଥ ହୁଅନ୍ତି କିପରି ? ସେଥିପାଇଁ ବେଦାନ୍ତବାଦୀମାନେ ପ୍ରଥମରୁ ନିଶ୍ଚୟ କରି କହନ୍ତି ଯେ, ଏହି

ଆତ୍ମା ଓ ଏହି ପ୍ରକୃତି ଏକ ।*

ଏପରିକି ଦ୍ୱୈତବେଦାନ୍ତବାଦୀମାନେ ମଧ୍ୟ ସ୍ୱୀକାର କରନ୍ତି, ଆତ୍ମା ବା ଈଶ୍ୱର ବିଶ୍ୱର କେବଳ ନିମିତ୍ତ-କାରଣ ନୁହନ୍ତି, ସେ ଉପାଦାନ-କାରଣ ମଧ୍ୟ; କିନ୍ତୁ ସେମାନଙ୍କ ନିକଟରେ ଏହା କେବଳ କଥା ମାତ୍ର, ପ୍ରାଣର କଥା ନୁହେଁ; କାରଣ ସେମାନେ ନିଜ ସିଦ୍ଧାନ୍ତକୁ ଏହିଭାବରେ ଏଡ଼େଇବାକୁ ଚାହାଁନ୍ତି; ସେମାନେ କହନ୍ତି: ବିଶ୍ୱରେ ତିନିଗୋଟି ସତ୍ତା ଅଛି—ଈଶ୍ୱର, ଜୀବ ଓ ପ୍ରକୃତି । ପ୍ରକୃତି ଓ ଜୀବ ଯେପରି ଈଶ୍ୱରଙ୍କର ଦେହ; ଏହି ଅର୍ଥରେ କୁହାଯାଇପାରେ ଯେ, ଈଶ୍ୱର ଓ ସମଗ୍ର ବିଶ୍ୱ ଏକ । କିନ୍ତୁ ଚିରକାଳ ଧରି ପ୍ରକୃତି ଓ ବିଭିନ୍ନ ଜୀବ ପରସ୍ପର ସ୍ୱତନ୍ତ୍ର ରହିଯାଆନ୍ତି । କେବଳ କଳ୍ପାରମ୍ଭରେ ସେମାନେ ଅଭିବ୍ୟକ୍ତ ହୁଅନ୍ତି ଏବଂ କଳ୍ପାନ୍ତରେ ସୂକ୍ଷ୍ମାବସ୍ଥା ପ୍ରାପ୍ତ ହୋଇ ବୀଜାକାରରେ ରହିବେ ।

ଅଦ୍ୱୈତବେଦାନ୍ତବାଦୀମାନେ ଜୀବ ବା ଆତ୍ମା ସମ୍ବନ୍ଧରେ ଏହି ମତବାଦ ଅଗ୍ରାହ୍ୟ କରନ୍ତି; ଏବଂ ଉପନିଷଦ୍‌ର ପ୍ରାୟ ସମଗ୍ର ଅଂଶ ସ୍ୱପକ୍ଷରେ ପାଇ ତାହାରି ଉପରେ ନିଜ ନିଜର ମତ ଗଢ଼ି ନେଇଛନ୍ତି । ସବୁ ଉପନିଷଦ୍‌ର ଏକମାତ୍ର କାର୍ଯ୍ୟ ଏହା ପ୍ରମାଣ କରିବା—'ଯେପରି ଖଣ୍ଡେ ମୃତ୍ତିକା ସମ୍ବନ୍ଧରେ ଜ୍ଞାନଲାଭ କଲେ ବିଶ୍ୱର ସମସ୍ତ ମୃତ୍ତିକା ଜଣାଯାଏ, ସେହିପରି ଏପରି କଅଣ ଅଛି, ଯାହା ଜାଣିଲେ ବିଶ୍ୱର ସବୁକିଛି ଜଣାଯାଏ ?'** ଅଦ୍ୱୈତବାଦୀର ଭାବ ହେଲା ସମଗ୍ର ବିଶ୍ୱକୁ ଏପରି ଗୋଟିଏ ସାଧାରଣ ତତ୍ତ୍ୱକୁ ନେଇଯିବା, ଯେଉଁ ତତ୍ତ୍ୱଟି ଯଥାର୍ଥ ବିଶ୍ୱର ସାମଗ୍ରିକ ସତ୍ତା । ସେମାନେ ଦାବୀ କରନ୍ତି—ସମଗ୍ର ବିଶ୍ୱରେ ଏକତ୍ୱ ରହିଅଛି ଏବଂ ଗୋଟିଏ ସତ୍ତା ନିଜକୁ ଏହିସବୁ ବିଭିନ୍ନ ରୂପରେ ବ୍ୟକ୍ତ କରୁଅଛନ୍ତି । ସାଂଖ୍ୟ ଯାହାକୁ ପ୍ରକୃତି କହେ, ଅଦ୍ୱୈତବାଦୀମାନେ ତାହାର ଅସ୍ତିତ୍ୱ ସ୍ୱୀକାର କରନ୍ତି, କିନ୍ତୁ କହନ୍ତି ଯେ, ପ୍ରକୃତି ଓ ଈଶ୍ୱର ଅଭିନ୍ନ । ଏହି ସତ୍ତା ବିଶ୍ୱ, ମନୁଷ୍ୟ, ଜୀବ ଏବଂ ଯାହା କିଛିର ଅସ୍ତିତ୍ୱ ଅଛି, ସେଥିରେ ରୂପାୟିତ ହୋଇଅଛନ୍ତି । ମନ ଓ ମହତ୍ତ୍ୱ ସେହି ଏକ

---

* ବେଦାନ୍ତ ଓ ସାଂଖ୍ୟଦର୍ଶନ ମଧ୍ୟରେ ପ୍ରଭେଦ ଅତି ସାମାନ୍ୟ । ସାଂଖ୍ୟର ପୁରୁଷ ହିଁ ବେଦାନ୍ତର ଈଶ୍ୱର ହୋଇଅଛନ୍ତି । ସବୁ ମତବାଦ ସାଂଖ୍ୟର ମନସ୍ତତ୍ତ୍ୱ ଗ୍ରହଣ କରିଥାଆନ୍ତି । ସାଂଖ୍ୟ ଏବଂ ବେଦାନ୍ତ ଉଭୟେ ଅସୀମ ଆତ୍ମାରେ ବିଶ୍ୱାସୀ; ପ୍ରଭେଦ କେବଳ ଏତିକି ଯେ, ସାଂଖ୍ୟ କହେ ଆତ୍ମା (ବା ପୁରୁଷ) ବହୁ । ସାଂଖ୍ୟ ମତରେ ଜଗତର ବ୍ୟାଖ୍ୟା ପାଇଁ ବାହାରର କୌଣସି କିଛିର ପ୍ରୟୋଜନ ନାହିଁ । ବୈଦାନ୍ତିକ ବିଶ୍ୱାସ କରନ୍ତି, କେବଳ ମାତ୍ର ଅଦ୍ୱିତୀୟ ଆତ୍ମା ରହିଅଛନ୍ତି, ସେ ବହୁରୂପରେ ପ୍ରତୀତ ହୁଅନ୍ତି । ସାଂଖ୍ୟ-ବିଶ୍ଳେଷଣ ଉପରେ ଆମମାନଙ୍କର ମତବାଦ ବେଦାନ୍ତ ପ୍ରତିଷ୍ଠିତ । (୧୮୯୬, ମାର୍ଚ୍ଚ ୨୪ ତାରିଖର କଥୋପକଥନରୁ)

* ଛାନ୍ଦୋଗ୍ୟ ଉପ., ୬।୧।୪; ମୁଣ୍ଡକ ଉପ., ୧।୩

'ସତ୍'ର ଅଭିବ୍ୟକ୍ତି ମାତ୍ର । ତେବେ ଏଥିରେ ଅସୁବିଧା ଏହି ଯେ, ଏହା ସର୍ବେଶ୍ୱର-ବାଦରେ ପରିଣତ ହୁଏ । ଯେଉଁ ବସ୍ତୁକୁ ସେମାନେ ଅପରିବର୍ତ୍ତନୀୟ 'ସତ୍' ବୋଲି ସ୍ୱୀକାର କରୁଛନ୍ତି—କାରଣ ଯାହା ଚରମ ସତ୍ୟ, ତାହାର ପରିବର୍ତ୍ତନ ନାହିଁ—ତାହା ଏହି ପରିବର୍ତ୍ତନୀୟ ଓ ବିନାଶଶୀଳ ପଦାର୍ଥରେ ରୂପାନ୍ତରିତ ହୁଏ କିପରି ?

ଏ ବିଷୟରେ ଅଦ୍ୱୈତବାଦୀମାନଙ୍କର ବିବର୍ତ୍ତବାଦ ବା ଆପାତ-ଅଭିବ୍ୟକ୍ତି-ବାଦ ବୋଲି ଗୋଟିଏ ମତ ଅଛି । ଦ୍ୱୈତବାଦୀ ଓ ସାଂଖ୍ୟବାଦୀମାନଙ୍କ ମତରେ ଏହି ବିଶ୍ୱର ସବୁକିଛି ମୂଳ ପ୍ରକୃତିର କ୍ରମିକ ବିକାଶ । କିଛିସଂଖ୍ୟକ ଅଦ୍ୱୈତବାଦୀ ଓ ଦ୍ୱୈତବାଦୀଙ୍କ ମତରେ ସମଗ୍ର ବିଶ୍ୱ ହିଁ ଈଶ୍ୱରଙ୍କଠାରୁ କ୍ରମଶଃ ଉଦ୍ଭୂତ ହୋଇ-ଅଛି । ଶଙ୍କରପନ୍ଥୀ ଖାଣ୍ଟି ଅଦ୍ୱୈତବାଦୀମାନଙ୍କ ମତରେ ସମଗ୍ର ବିଶ୍ୱ ବ୍ରହ୍ମଙ୍କଠାରୁ ବିକଶିତ ବୋଲି ପ୍ରତୀୟମାନ ହୁଏ ମାତ୍ର । ବ୍ରହ୍ମ ବିଶ୍ୱର ଉପାଦାନ କାରଣ, କିନ୍ତୁ ପ୍ରକୃତରେ ତାହା ନୁହେଁ, ଉପାଦାନ ବୋଲି ପ୍ରତୀତ ହୁଅନ୍ତି ମାତ୍ର । ଏ ବିଷୟରେ ରଜ୍ଜୁରେ ସର୍ପଭ୍ରମର ଉଦାହରଣ ପ୍ରସିଦ୍ଧ । ରଜ୍ଜୁକୁ ସର୍ପ ବୋଲି ମନେ ହୋଇଥିଲା ମାତ୍ର, ରଜ୍ଜୁ କଦାପି ହେଲେ ସର୍ପରେ ପରିଣତ ହୋଇ ନାହିଁ । ଠିକ୍ ସେହିପରି ଏହି ପ୍ରକାଶମାନ ସମଗ୍ର ବିଶ୍ୱ ସେହି ସତ୍-ସ୍ୱରୂପ; ଏଥିରେ କୌଣସି ପରିବର୍ତ୍ତନ ଘଟି ନାହିଁ, ଆମେମାନେ ଯେଉଁସବୁ ପରିବର୍ତ୍ତନ ଏଥିରେ ଦେଖୁ, ସେଗୁଡ଼ିକ ଆପାତ-ପ୍ରତୀୟମାନ । ଦେଶ, କାଳ ଓ ନିମିତ୍ତ ଏହି ପରିବର୍ତ୍ତନ ଘଟାଏ, ଅଥବା ମନୋବିଜ୍ଞାନର ଉଚ୍ଚତର ସାମାନ୍ୟୀକରଣ ଅନୁସାରେ କୁହାଯାଏ ଯେ, ନାମ ଓ ରୂପଦ୍ୱାରା ଏହା ଘଟେ । ନାମ ଓ ରୂପଦ୍ୱାରା ଆମେମାନେ ଗୋଟିଏ ପଦାର୍ଥକୁ ଅନ୍ୟଠାରୁ ପୃଥକ୍ ବୋଲି ବୁଝୁ । ନାମ ଓ ରୂପ ହିଁ ପାର୍ଥକ୍ୟର ସୃଷ୍ଟି କରେ । ବାସ୍ତବିକ ସବୁ ଏକ ଓ ଅଭେଦ ।

ପୁଣି ବେଦାନ୍ତବାଦୀମାନେ କହନ୍ତି, କେବଳ ଇନ୍ଦ୍ରିୟଗ୍ରାହ୍ୟ ଜଗତ ଏବଂ କେବଳ ବୁଦ୍ଧିଦ୍ୱାରା ଅଧିଗମ୍ୟ ଜଗତ—ଏପରି ଦୁଇଟି ବିଭିନ୍ନ ବସ୍ତୁ ସମକାଳୀନ ବିଦ୍ୟମାନ ନାହାନ୍ତି । ରଜ୍ଜୁ ସର୍ପରେ ପରିଣତ ହୋଇଅଛି ବୋଲି ମନେହୁଏ ମାତ୍ର, ଏହା ବାସ୍ତବ ପରିବର୍ତ୍ତନ ନୁହେଁ; ଯେତେବେଳେ ଭୁଲ ଭାଙ୍ଗିଯାଏ, ସେତେବେଳେ ସର୍ପ ଶୂନ୍ୟରେ ଲୀନ ହୁଏ; ମନୁଷ୍ୟ ଯେତେବେଳେ ଅଜ୍ଞାନ ମଧ୍ୟରେ ଥାଏ, ସେତେବେଳେ ସେ ସୃଷ୍ଟ ଜଗତ ହିଁ ଦେଖେ, ଈଶ୍ୱରଙ୍କୁ ଦେଖେ ନାହିଁ । ଯେତେବେଳେ ସେ ଈଶ୍ୱରଙ୍କୁ ଦେଖିବାକୁ ପାଏ, ସେତେବେଳେ ତାହା ନିକଟରେ ଜଗତ ଏକା-ବେଳକେ ଲୋପ ପାଏ । ଏହି ଭ୍ରମକୁ 'ଅବିଦ୍ୟା' ବା 'ମାୟା' କୁହାଯାଏ, ଏହା ହିଁ ଏହି ସୃଷ୍ଟିର କାରଣ । ଏହାର ପ୍ରଭାବରେ ଚରମ ସତ୍ୟକୁ, ଅପରିବର୍ତ୍ତନୀୟକୁ ଏହି ଦୃଶ୍ୟମାନ ଜଗତ ବୋଲି ଆମେମାନେ ମନେକରୁ । ଏହି ମାୟା ମହାଶୂନ୍ୟ ବା ଅସ୍ତିତ୍ୱହୀନ କିଛି ନୁହେଁ । ସତ୍ ନୁହେଁ, ଅସତ୍ ମଧ୍ୟ ନୁହେଁ—ଏହା ହିଁ ହେଲା ମାୟାର ସଂଜ୍ଞା; ଅର୍ଥାତ୍ ମାୟା ଅଛି—ଏ କଥା କୁହାଯାଏ ନାହିଁ । ପୁଣି ମାୟା

ନାହିଁ—ଏ କଥା ମଧ୍ୟ କୁହାଯାଏ ନାହିଁ । ଏକମାତ୍ର ଚରମ ସତ୍ୟକୁ 'ସତ୍' କୁହାଯାଇପାରେ; ସେହିଠାରୁ ଦେଖିଲେ ମାୟା ଅସତ୍, ମାୟାର ଅସ୍ତିତ୍ୱ ନାହିଁ । ମାୟା ଅସତ୍—ଏ କଥା ମଧ୍ୟ କୁହାଯାଏ ନାହିଁ, କାରଣ ତାହା ଯଦି ହୁଅନ୍ତା, ତେବେ ଏହା କଦାପି ହେଲେ ଜଗତ ସୃଷ୍ଟି କରିପାରି ନ ଥାନ୍ତା । ଫଳରେ ଏହା ଏପରି କିଛି, ଯାହା ସତ୍ ବା ଅସତ୍ କୌଣସିଟି ହିଁ ନୁହେଁ । ଏଥିପାଇଁ ବେଦାନ୍ତଦର୍ଶନରେ ଏହାକୁ 'ଅନିର୍ବଚନୀୟ' ଅର୍ଥାତ୍ ବାକ୍ୟଦ୍ୱାରା ପ୍ରକାଶ କରାଯାଏ ନାହିଁ—ଏପରି କୁହାଯାଇଅଛି ।

ଫଳତଃ ମାୟା ହିଁ ଏହି ବିଶ୍ୱର ଅସଲ କାରଣ । ବ୍ରହ୍ମ ବା ଈଶ୍ୱର ଯେଉଁ ଥିରେ ଉପାଦାନ ଦିଅନ୍ତି, ମାୟା ସେଥିରେ ଦିଏ ନାମ ଓ ରୂପ, ଏବଂ ବ୍ରହ୍ମ ହିଁ ଏହି ସବୁକିଛିରେ ରୂପାନ୍ତରିତ ହୋଇଅଛି ବୋଲି ପ୍ରତୀତ ହୁଏ । ସୁତରାଂ ଅଦ୍ୱୈତବାଦୀମାନଙ୍କ ନିକଟରେ ସ୍ୱତନ୍ତ୍ର ଜୀବାତ୍ମାର କୌଣସି ସ୍ଥାନ ନାହିଁ । ସେମାନଙ୍କ ମତରେ ଜୀବାତ୍ମା ମାୟାର ସୃଷ୍ଟି; ପ୍ରକୃତରେ ଜୀବାତ୍ମାର କୌଣସି (ପୃଥକ୍) ଅସ୍ତିତ୍ୱ ରହି ନ ପାରେ । ଯଦି ସର୍ବବ୍ୟାପୀ ଗୋଟିଏ ମାତ୍ର ସତ୍ତା ଥାଏ, ତେବେ ମୁଁ ଗୋଟିଏ ସତ୍ତା, ତୁମେ ଗୋଟିଏ ସତ୍ତା, ସେ ଆଉ ଗୋଟିଏ ସତ୍ତା--ଇତ୍ୟାଦି କିପରି ସମ୍ଭବ ? ଆମେମାନେ ସମସ୍ତେ ଏକ; ଦ୍ୱୈତଜ୍ଞାନ ହିଁ ଅନର୍ଥର ମୂଳ । ବିଶ୍ୱଠାରୁ ମୁଁ ପୃଥକ୍—ଏହି ବୋଧ ଯେଉଁ ମୁହୂର୍ତ୍ତରେ ହେବାକୁ ଆରମ୍ଭ କରେ, ସେହି ମୁହୂର୍ତ୍ତରେ ପ୍ରଥମେ ଆସେ ଭୟ ଏବଂ ତାହାପରେ ଆସେ ଦୁଃଖ । 'ଯେଉଁଠି ଜଣେ ଅନ୍ୟ ଜଣଙ୍କର କଥା ଶୁଣେ, ଜଣେ ଅପରକୁ ଦେଖେ, ତାହା ଅଳ୍ପ । ଯେଉଁଠି ଜଣେ ଅନ୍ୟର କଥା ଶୁଣେ ନାହିଁ, ଜଣେ ଅପରକୁ ଦେଖେ ନାହିଁ—ତାହା ଭୂମା, ତାହା ବ୍ରହ୍ମ । ସେହି ଭୂମାରେ ପରମ ସୁଖ, ଅଳ୍ପରେ ସୁଖ ନାହିଁ ।' ଛାନ୍ଦୋଗ୍ୟ ଉପ., ୭।୨୪।୧

ତେଣୁ ଅଦ୍ୱୈତଦର୍ଶନମତରେ ବସ୍ତୁର ଏହା ପୃଥକୀକରଣ—ଏହି ସୃଷ୍ଟି ଯେପରି ସାମୟିକ ଭାବରେ ମନୁଷ୍ୟର ଯଥାର୍ଥ ସ୍ୱରୂପକୁ ଘୋଡ଼ାଇ ରଖିଅଛି; କିନ୍ତୁ ପ୍ରକୃତପକ୍ଷରେ ସ୍ୱରୂପର ପରିବର୍ତ୍ତନ ଆଦୌ ଘଟି ନାହିଁ । ନିମ୍ନତମ କୀଟ ଏବଂ ଉଚ୍ଚତମ ମନୁଷ୍ୟ ମଧ୍ୟରେ ସେହି ଏକ ଈଶ୍ୱରୀୟ ସତ୍ତା ବିଦ୍ୟମାନ । କୀଟଦେହ ନିମ୍ନତମ ରୂପ, ଯେଉଁଠାରେ ଦେବତ୍ୱ ମାୟାଦ୍ୱାରା ଅନେକ ବେଶୀ ପରିମାଣରେ ଆବୃତ ରହିଅଛି; ଯେଉଁଠାରେ ଦେବତ୍ୱ ଉପରେ ଆବରଣ କ୍ଷୀଣତମ, ତାହା ହିଁ ଉଚ୍ଚତମ ରୂପ ବା ଦେହ । ସବୁକିଛିର ପଶ୍ଚାତ୍ତରେ ସେହି ଏକ ଦେବତ୍ୱ ହିଁ ବିରାଜମାନ; ଏହି ସତ୍ୟ ଅବଲମ୍ବନ କରି ନୀତିର ଭିତ୍ତି ଗଢ଼ିଉଠିଛି । ଅପରର ଅନିଷ୍ଟ କର ନାହିଁ; ପ୍ରତ୍ୟେକକୁ ନିଜ ଭଳି ଭଲ ପାଅ, କାରଣ ସମଗ୍ର ବିଶ୍ୱ ହିଁ ଏକ । ଅପରର ଅନିଷ୍ଟ କଲେ ନିଜର ଅନିଷ୍ଟ କରାହୁଏ; ଅନ୍ୟକୁ ଭଲ ପାଇଲେ ନିଜକୁ ହିଁ ଭଲ ପାଇବା ହୁଏ । ଏହି ସତ୍ୟରୁ ଅଦ୍ୱୈତ-ନୀତିର ମୂଳତତ୍ତ୍ୱର ଉଦ୍ଭବ; ଏହାକୁ ହିଁ ସଂକ୍ଷେପରେ କୁହାଯାଏ—ଆତ୍ମତ୍ୟାଗ ।

ଅଦ୍ୱୈତବାଦୀ କହେ, ଏହି କ୍ଷୁଦ୍ର-ବ୍ୟକ୍ତିତ୍ୱବୋଧ ହିଁ ମୋର ସବୁ ଅନର୍ଥର ମୂଳ କାରଣ । ଏହି ଅହଂ-ବୋଧ ମୋତେ ଅନ୍ୟଠାରୁ ପୃଥକ୍ କରି ରଖିଅଛି; ଏହା ଘୃଣା, ଦ୍ୱେଷ, ଦୁଃଖ, ସଂଗ୍ରାମ ଏବଂ ଆହୁରି ସବୁ ଅନର୍ଥର ସୃଷ୍ଟି କରେ । ଏହି ବୋଧରୁ ନିଷ୍କୃତି ପାଇଲେ ସବୁ ଦ୍ୱନ୍ଦ୍ୱର ଅବସାନ ହୁଏ, ସବୁ ଦୁଃଖ ଚାଲିଯାଏ । ସୁତରାଂ ଏହି ପୃଥକ୍ 'ମୁଁ'-ତ୍ୱ ବୋଧ ତ୍ୟାଗ କରିବାକୁ ହେବ । ନିମ୍ନତମ ଜୀବ ପାଇଁ ମଧ୍ୟ ପ୍ରାଣ ପର୍ଯ୍ୟନ୍ତ ବିସର୍ଜନ ଦେବାକୁ ସର୍ବଦା ପ୍ରସ୍ତୁତ ରହିବାକୁ ହେବ । ଯେତେବେଳେ କେହି ଗୋଟିଏ କ୍ଷୁଦ୍ର କୀଟ ପାଇଁ ଜୀବନ ପର୍ଯ୍ୟନ୍ତ ବିସର୍ଜନ ଦେବାକୁ ପ୍ରସ୍ତୁତ ହୁଏ, ବୁଝିବାକୁ ହେବ, ସେତେବେଳେ ସେ ଅଦ୍ୱୈତବାଦୀର କାମ୍ୟ ପୂର୍ଣ୍ଣତ୍ୱରେ ପହଞ୍ଚିଛି; ଯେଉଁ ମୁହୂର୍ତ୍ତରେ ସେ ଏହିଭଳିରେ ପ୍ରତିଷ୍ଠିତ ହୁଏ, ସେହି ମୁହୂର୍ତ୍ତରେ ତାହାର ସମ୍ମୁଖରୁ ମାୟାର ଆବରଣ ଅପସୃତ ହୁଏ, ସେ ଆତ୍ମସ୍ୱରୂପ ଉପଲବ୍ଧି କରେ । ଏହି ଜୀବନରେ ହିଁ ସେ ଅନୁଭବ କରିବ ଯେ, ସମଗ୍ର ବିଶ୍ୱ ସହିତ ସେ ଏକ । କିଛି କାଳ ପାଇଁ ଏହି ପରିଦୃଶ୍ୟମାନ ଜଗତ ଯେପରି ତାହା ନିକଟରୁ ଲୁପ୍ତ ହୋଇଯିବ, ଏବଂ ସେ ନିଜର ସ୍ୱରୂପ ପ୍ରତ୍ୟକ୍ଷ କରିବ । କିନ୍ତୁ ଯେତେଦିନଯାଏ ଦେହର କର୍ମ—ପ୍ରାରବ୍ଧ ଥାଏ, ସେତେଦିନ ତାହାକୁ ଦେହଧାରଣ କରି ରହିବାକୁ ହେବ ।

ଏହି ଅବସ୍ଥାକୁ—ଯେଉଁ ଅବସ୍ଥାରେ ମାୟାର ଆବରଣ ଅପସୃତ ହୋଇଅଛି ଅଥଚ ଶରୀର କିଛି କାଳ ପାଇଁ ରହିଥାଏ—ବେଦାନ୍ତବାଦୀମାନେ ତାହାକୁ 'ଜୀବନ୍ମୁକ୍ତ' ବୋଲି କହନ୍ତି । ଜଣେ ମରୀଚିକା ଦେଖି କିଛିଦିନ ବିଭ୍ରାନ୍ତ ହୁଏ, କିନ୍ତୁ ଯଦି ଦିନେ ସେହି ମରୀଚିକା ତାହା ନିକଟରେ ଅଦୃଶ୍ୟ ହୁଏ, ତାହାହେଲେ ପରଦିନ ବା କିଛି ଦିନ ପରେ ସମ୍ମୁଖରେ ପୁଣି ଏହି ମରୀଚିକାର ଆବିର୍ଭାବ ହେଲେ ମଧ୍ୟ ତାହା ଦେଖି ସେ କଦାପି ଆଉ ଭୁଲ କରିବ ନାହିଁ । ମରୀଚିକା-ଭ୍ରମ ପ୍ରଥମ ଥର ଦୂର ହେବା ପୂର୍ବରୁ ସେ ବ୍ୟକ୍ତି ବାସ୍ତବ ଓ ଭ୍ରାନ୍ତି ମଧ୍ୟରେ ପାର୍ଥକ୍ୟ କରିପାରୁ ନ ଥିଲି । କିନ୍ତୁ ମରୀଚିକା ଥରେ ଅଦୃଶ୍ୟ ହେଲେ, ଭୁଲ ଥରେ ଭାଙ୍ଗିଲେ, ଚକ୍ଷୁ ଓ ଇନ୍ଦ୍ରିୟ ଯେତେଦିନ କର୍ମକ୍ଷମ ଥିବ, ସେତେଦିନ ସେ ପୁଣି ମରୀଚିକା ଦେଖିବ, କିନ୍ତୁ ତାହାକୁ ବାସ୍ତବ ବୋଲି ଆଉ କଦାପି ହେଲେ ଭୁଲ କରିବ ନାହିଁ । ବାସ୍ତବ ଜଗତ୍ ଓ ମରୀଚିକା ମଧ୍ୟରେ ଯେଉଁ ସୂକ୍ଷ୍ମ ପାର୍ଥକ୍ୟ ରହିଛି, ତାହା ସେ ବୁଝିପାରିଛି, ମରୀଚିକା ଆଉ କଦାପି ହେଲେ ତାହାର ଭ୍ରାନ୍ତି ଜନ୍ମାଇପାରିବ ନାହିଁ । ସେହିପରି ବେଦାନ୍ତବାଦୀ ଯେତେବେଳେ ନିଜ ସ୍ୱରୂପ ପ୍ରତ୍ୟକ୍ଷ କରନ୍ତି, ସେତେବେଳେ ତାହାଙ୍କ ନିକଟରେ ସମଗ୍ର ଜଗତ ଲୁପ୍ତ ହୁଏ । ଜଗତ ପୁଣି ଫେରିଆସିବ, କିନ୍ତୁ ପୂର୍ବର ସେହି ଦୁଃଖମୟ ଜଗତରୂପରେ ନୁହେଁ—ଦୁଃଖର କାରାଗାର ସେତେବେଳେ ସଚ୍ଚିଦାନନ୍ଦରେ—ନିତ୍ୟ ସତ୍ତାରେ, ନିତ୍ୟ ଜ୍ଞାନରେ, ନିତ୍ୟ ଆନନ୍ଦରେ—ପର୍ଯ୍ୟବସିତ ହୋଇଯାଇଅଛି । ଏହି ଅବସ୍ଥା ଲଭ କରିବା ହିଁ ଅଦ୍ୱୈତବେଦାନ୍ତର ଲକ୍ଷ୍ୟ ।

# ପ୍ରଶ୍ନୋତ୍ତରରେ ଆଲୋଚନା

[ ୧୮୯୬ ଖ୍ରୀ: ମାର୍ଚ୍ଚ ୨୫ ତାରିଖରେ ହାର୍ଭାର୍ଡ ବିଶ୍ୱବିଦ୍ୟାଳୟରେ (ଆମେରିକା) ଗ୍ରାଜୁଏଟ୍ ଫିଲୋଜଫିକାଲ୍ ସୋସାଇଟିର ସଭାରେ ବେଦାନ୍ତ-ଦର୍ଶନ ସମ୍ବନ୍ଧରେ ବକ୍ତୃତା ପରେ ଶ୍ରୋତାମାନଙ୍କ ସହିତ ସ୍ୱାମୀଜୀଙ୍କର ନିମ୍ନଲିଖିତ ଆଲୋଚନା ହୋଇଥିଲା । ]

ପ୍ର—ଭାରତରେ ଦାର୍ଶନିକ ଚିନ୍ତା ବର୍ତ୍ତମାନ କିପରି କ୍ରିୟାଶୀଳ, ସେ ସମ୍ବନ୍ଧରେ କିଛି ଜାଣିବାକୁ ଇଚ୍ଛା କରୁଛି । ଏ ସମସ୍ତ ବିଷୟ ଆଜିକାଲି କିଛି କିଛି ଆଲୋଚିତ ହୋଇଥାଏ କି ?

ଉ—ପୂର୍ବରୁ କହିଛି, ଭାରତର ଅଧିକାଂଶ ଲୋକ ପ୍ରକୃତ ପକ୍ଷରେ ଦ୍ୱୈତ-ବାଦୀ । ଅଳ୍ପ ସଂଖ୍ୟକ ଅଦ୍ୱୈତବାଦୀ । ସେମାନଙ୍କର ପ୍ରଧାନ ଆଲୋଚନାର ବିଷୟ —ମାୟାବାଦ ଓ ଜୀବତତ୍ତ୍ୱ । ମୁଁ ଏ ଦେଶକୁ ଆସି ଦେଖିଲି, ଏଠାକାର ଶ୍ରମଜୀବୀ-ମାନେ ବର୍ତ୍ତମାନ ରାଜନୀତିକ ଅବସ୍ଥା ସହିତ ବିଶେଷ ପରିଚିତ, କିନ୍ତୁ ଯେତେବେଳେ ସେମାନଙ୍କୁ ପ୍ରଶ୍ନ କଲି, 'ଧର୍ମ କହିଲେ ତୁମେମାନେ କଅଣ ବୁଝ, ଅମୁକ ସମ୍ପ୍ରଦାୟର ଧର୍ମମତ କି ପ୍ରକାର ?'—ସେମାନେ କହିଲେ, 'ଆମେମାନେ ଜାଣୁନା, ତେବେ ଗୀର୍ଜାକୁ ଯାଉ ।' ଭାରତରେ କିନ୍ତୁ କୌଣସି କୃଷକକୁ ଯଦି କୁହାଯାଏ, 'ତୁମମାନଙ୍କର ଶାସନକର୍ତ୍ତା କିଏ ?'—ସେ କହିବ, 'ତାହା ଜାଣେ ନାହିଁ, କିନ୍ତୁ ଖଜଣା ଦେଇଥାଏ ।' କିନ୍ତୁ ଯଦି ତାହାକୁ ତାହାର ଧର୍ମର କଥା ପ୍ରଶ୍ନ କର ସେ ସାଙ୍ଗେ ସାଙ୍ଗେ ବୁଝାଇଦେବ—ସେ ଦ୍ୱୈତବାଦୀ ଏବଂ ସେ ମାୟା ଓ ଜୀବତତ୍ତ୍ୱ ସମ୍ବନ୍ଧରେ ତାହାର ଧାରଣା ବିସ୍ତାରିତ ଭାବରେ କହିବାକୁ ଲାଗିବ । ସେ ଲେଖାପଢ଼ା ଜାଣେ ନାହିଁ, କିନ୍ତୁ ଏସବୁ ସେ ସନ୍ନ୍ୟାସୀମାନଙ୍କଠାରୁ ଶିଖିଅଛି ଏବଂ ଏହିସବୁ ବିଷୟ ଆଲୋଚନା କରିବା ପାଇଁ ଖୁବ୍ ଭଲ ପାଏ । ସାରାଦିନ କାର୍ଯ୍ୟ ପରେ କୃଷକମାନେ ଗଛତଳେ ବସି ଏହିସବୁ ତତ୍ତ୍ୱ ଆଲୋଚନା କରିଥାଆନ୍ତି ।

ପ୍ର—'ନୈଷ୍ଠିକତା' କହିଲେ ହିନ୍ଦୁମାନେ କଅଣ ବୁଝନ୍ତି ?

ଉ—ବର୍ତ୍ତମାନ କାଳରେ ଖାଇବାପିଇବା ଓ ବିବାହ ସମ୍ବନ୍ଧରେ ଜାତିଗତ ବିଧିନିଷେଧଗୁଡ଼ିକ ମାନିବାକୁ ହିଁ 'ନୈଷ୍ଠିକତା' କହନ୍ତି । ହିନ୍ଦୁ ଯେକୌଣସି ମତରେ ବିଶ୍ୱାସ କରୁନା କାହିଁକି ସେଥିରେ କିଛି ଯାଏଆସେ ନାହିଁ । ଭାରତରେ କଦାପି ସଂଘବଦ୍ଧ ଧର୍ମମଣ୍ଡଳୀ ବା ଚର୍ଚ୍ଚ ନ ଥିଲା, ସୁତରାଂ ନୈଷ୍ଠିକ ବା ଖାଣ୍ଟି ହିନ୍ଦୁମତ ଗଠିତ ଓ ବିଧିବଦ୍ଧ କରିବା ପାଇଁ ଦଳେ ଲୋକ କୌଣସି କାଳରେ ନ ଥିଲେ । ସାଧାରଣତଃ ଆମେମାନେ କହିଥାଉ, ଯେଉଁମାନେ ବେଦବିଶ୍ୱାସୀ, ସେହିମାନେ ହିଁ ନୈଷ୍ଠିକ ବା

ଖାଣ୍ଟି ହିନ୍ଦୁ; କିନ୍ତୁ ପ୍ରକୃତ ପକ୍ଷରେ ଦେଖିବାକୁ ପାଉ, ଅଧିକାଂଶ ଦ୍ୱୈତବାଦୀମାନେ ବେଦ ଅପେକ୍ଷା ପୁରାଣକୁ ହିଁ ଅଧିକ ବିଶ୍ୱାସ କରିଥାଆନ୍ତି ।

ପ୍ର—ଆପଣମାନଙ୍କ ହିନ୍ଦୁଦର୍ଶନ ଗ୍ରୀକ୍‌ମାନଙ୍କର ଷ୍ଟୋଇକ୍ (Stoic)*ଦର୍ଶନ ଉପରେ କେତେଦୂର ପ୍ରଭାବ ବିସ୍ତାର କରିଥିଲା ?

ଉ—ଖୁବ୍ ସମ୍ଭବତଃ ଆଲେକ୍‌ଜାଣ୍ଡ୍ରିଆବାସୀମାନଙ୍କ ମାଧ୍ୟମରେ ହିନ୍ଦୁଦର୍ଶନ ଏହା ଉପରେ କିଛି ପ୍ରଭାବ ବିସ୍ତାର କରିଥିଲା । ପିଥାଗୋରାସ୍ ଯେ ସାଂଖ୍ୟମତଦ୍ୱାରା ପ୍ରଭାବିତ ହୋଇଥିଲେ, ଏପରି ସନ୍ଦେହ କରିବାର କାରଣ ଅଛି । ଯାହା ହେଉ, ଆମମାନଙ୍କର ଧାରଣା—ସାଂଖ୍ୟ ଦର୍ଶନ ହିଁ ବେଦ-ନିବଦ୍ଧ ଦାର୍ଶନିକ ତତ୍ତ୍ୱସମୂହକୁ ଯୁକ୍ତି-ବିଚାରଦ୍ୱାରା ସମନ୍ୱୟ କରିବାର ପ୍ରଥମ ଚେଷ୍ଟା । ଏପରିକି ବେଦରେ ମଧ୍ୟ 'କପିଳ' ନାମର ଉଲ୍ଲେଖ ଦେଖିବାକୁ ପାଉ; 'ଋଷିଂ ପ୍ରସୂତଂ କପିଳଂ ଯସ୍ତମଗ୍ରେ'[୧]—ଅର୍ଥାତ୍ ଯିଏ ପୂର୍ବରୁ ଜାତ, ସେହି କପିଳ ଋଷିଙ୍କୁ ଜ୍ଞାନରେ ପୂର୍ଣ୍ଣ କରିଥିଲେ !

ପ୍ର—ପାଶ୍ଚାତ୍ୟ ବିଜ୍ଞାନ ସହିତ ଏହି ମତର କଅଣ ବିରୋଧ ?

ଉ—କିଛିମାତ୍ର ବିରୋଧ ନାହିଁ, ବରଂ ଆମମାନଙ୍କ ସହିତ ପାଶ୍ଚାତ୍ୟବିଜ୍ଞାନର ସାମଞ୍ଜସ୍ୟ ଅଛି । ଆମମାନଙ୍କର ପରିଣାମବାଦ ଏବଂ ଆକାଶ ଓ ପ୍ରାଣତତ୍ତ୍ୱ ଠିକ୍ ଆପଣମାନଙ୍କ ଆଧୁନିକ ଦର୍ଶନର ସିଦ୍ଧାନ୍ତ ଭଳି । ଆପଣମାନଙ୍କ ପରିଣାମବାଦ ବା କ୍ରମବିକାଶ ଆମମାନଙ୍କର ଯୋଗ ଓ ସାଂଖ୍ୟ ଦର୍ଶନରେ ରହିଅଛି । ଯଥା, ପତଞ୍ଜଳି ପ୍ରକୃତିର ଆପୂରଣଦ୍ୱାରା ଏକ ଜାତିରୁ ଅନ୍ୟ ଜାତିରେ ପରିଣତ ହେବାର କଥା କହିଛନ୍ତି ।—'ଜାତ୍ୟନ୍ତର-ପରିଣାମଃ ପ୍ରକୃତ୍ୟାପୂରାତ୍ ।'[୨] ତେବେ ଏହାର କାରଣ ସମ୍ବନ୍ଧରେ ପତଞ୍ଜଳିଙ୍କ ସହିତ ପାଶ୍ଚାତ୍ୟବିଜ୍ଞାନର ମତଭେଦ ଅଛି । ତାଙ୍କ ପରିଣାମର ବ୍ୟାଖ୍ୟା ଆଧ୍ୟାତ୍ମିକ । ସେ କହନ୍ତି, କ୍ଷେତ୍ରରେ ଜଳସେଚନ ପାଇଁ କୃଷକକୁ ଯେପରି ନିକଟବର୍ତ୍ତୀ ଜଳାଶୟରୁ ଜଳାବରୋଧଟି କାଢ଼ିଦେବାକୁ ହୁଏ—'ନିମିତ୍ତମପ୍ରୟୋଜକଂ ପ୍ରକୃତୀନାଂ ବରଣଭେଦସ୍ତୁ ତତଃ କ୍ଷେତ୍ରିକବତ୍'[୩]—ସେହିପରି ସମସ୍ତ ମାନବ ପୂର୍ବରୁ ଅନନ୍ତ ଶକ୍ତିସମ୍ପନ୍ନ, କେବଳ ଏହିସବୁ ବିଭିନ୍ନ ଅବସ୍ଥାଚକ୍ରରୂପ ପ୍ରତିବନ୍ଧକ ବା ବାଧା ତାହାକୁ ବଦ୍ଧ କରି ରଖିଅଛି, ସେହିଗୁଡ଼ିକୁ ଘୁଞ୍ଚାଇ ଦେଲେ ତାହାର ସେହି ଅନନ୍ତ

* ଖ୍ରୀ: ପୂ: ୩୦୮ରେ ଗ୍ରୀକ୍ ଦାର୍ଶନିକ ଜେନୋଙ୍କ (Zeno) ଦ୍ୱାରା ଏହି ଦର୍ଶନ ପ୍ରଚାରିତ ହୁଏ । ଏହି ମତରେ ସୁଖ ବା ଦୁଃଖରେ, ଭଲମନ୍ଦରେ ସମଭାବାପନ୍ନ ହୋଇ ସହ୍ୟ କରିଯିବା ହିଁ ମାନବଜୀବନର ପରମପୁରୁଷାର୍ଥ ।

୧ ଶ୍ୱେତାଶ୍ୱତର ଉପ., ୫।୨

୨ ଯୋଗସୂତ୍ର, କୈବଲ୍ୟପାଦ, ୨।୩

୩ ଯୋଗସୂତ୍ର, କୈବଲ୍ୟପାଦ, ୩

ଶକ୍ତି ମହାବେଗରେ ବାହାର ହୋଇ ଅଭିବ୍ୟକ୍ତ ହୋଇଥାଏ । ଇତର ପ୍ରାଣୀ ଭିତରେ ମନୁଷ୍ୟ ଭାବ ଅବରୁଦ୍ଧ ରହିଅଛି; ଯେତେବେଳେ ସୁଯୋଗ ଉପସ୍ଥିତ ହୁଏ, ସେତିକିବେଳେ ସେ ମନୁଷ୍ୟରୂପରେ ଅଭିବ୍ୟକ୍ତ ହୁଏ । ପୁଣି ଯେବେ ଉପଯୁକ୍ତ ସୁଯୋଗ ଓ ଅବସର ଉପସ୍ଥିତ ହୁଏ, ସେତିକିବେଳେ ମାନବ ମଧ୍ୟରେ ଯେଉଁ ଈଶ୍ୱରତ୍ୱ ବର୍ତ୍ତିମାନ, ତାହା ଅଭିବ୍ୟକ୍ତ ହୁଏ । ସୁତରାଂ ଆଧୁନିକ ନୂତନ ମତବାଦ-ସମୂହ ସହିତ ଆମମାନଙ୍କର ବିବାଦ କରିବାର ବିଶେଷ କିଛି ନାହିଁ । ଦୃଷ୍ଟାନ୍ତସ୍ୱରୂପ ଦେଖନ୍ତୁ, ଇନ୍ଦ୍ରିୟଦ୍ୱାରା ଉପଲବ୍ଧି ବିଷୟରେ ସାଂଖ୍ୟ ମତ ସହିତ ଆଧୁନିକ ଶରୀର-ବିଜ୍ଞାନର (Physiology) ପାର୍ଥକ୍ୟ ଅତି ଅଳ୍ପ ।

ପ୍ର—କିନ୍ତୁ ଆପଣମାନଙ୍କର ଜ୍ଞାନାର୍ଜ୍ଜନର ପ୍ରଣାଳୀ କଅଣ ଭିନ୍ନ ?

ଉ—ହଁ, ଆମେମାନେ ଦାବୀ କରୁ, ମନର ଶକ୍ତିସମୂହକୁ ଏକମୁଖୀ କରିବା ହିଁ ଜ୍ଞାନଲାଭର ଏକମାତ୍ର ଉପାୟ । ବହିର୍ବିଜ୍ଞାନରେ ବାହ୍ୟ ବିଷୟରେ ମନକୁ ଏକାଗ୍ର କରିବାକୁ ହୁଏ—ଆଉ ଅନ୍ତର୍ବିଜ୍ଞାନରେ ମନର ଗତିକୁ ଆତ୍ମାଭିମୁଖୀ କରିବାକୁ ହୁଏ; ଆମେମାନେ ମନର ଏହି ଏକାଗ୍ରତାକୁ 'ଯୋଗ' ଆଖ୍ୟା ଦେଇଥାଉ ।

ପ୍ର—ଏକାଗ୍ର ଅବସ୍ଥାରେ କଅଣ ଏହି ସମସ୍ତ ତତ୍ତ୍ୱର ସତ୍ୟତା ସ୍ୱତଃସିଦ୍ଧ ହୋଇପଡ଼େ ?

ଉ—ଯୋଗୀମାନେ ଏହି ଏକାଗ୍ରତା-ଶକ୍ତିର ଫଳକୁ ଅତି ମହତ୍ତ୍ୱ ବୋଲି ବର୍ଣ୍ଣନା କରିଥାଆନ୍ତି । ସେମାନେ ଦାବୀ କରନ୍ତି, ମନର ଏକାଗ୍ରତାଦ୍ୱାରା ଜଗତର ପ୍ରତ୍ୟେକ ସତ୍ୟ—ବାହ୍ୟ ଓ ଆନ୍ତର ସକଳ ସତ୍ୟ—କରାମଲକବତ୍ ପ୍ରତ୍ୟକ୍ଷ ହୋଇଥାଏ ।

ପ୍ର—ଅଦ୍ୱୈତବାଦୀ ସୃଷ୍ଟିତତ୍ତ୍ୱ ସମ୍ବନ୍ଧରେ କଅଣ କହନ୍ତି ?

ଉ—ଅଦ୍ୱୈତବାଦୀ କହନ୍ତି: ଏହିସବୁ ସୃଷ୍ଟିତତ୍ତ୍ୱ ଓ ଅନ୍ୟାନ୍ୟ ଯାହା କିଛି ସବୁ ହିଁ ମାୟାର—ଏହି ଆପାତପ୍ରତୀୟମାନ ପ୍ରପଞ୍ଚର ଅନ୍ତର୍ଗତ । ପ୍ରକୃତପକ୍ଷରେ ଏମାନଙ୍କର ଅସ୍ତିତ୍ୱ ନାହିଁ । ତେବେ ଆମେମାନେ ଯେତେଦିନ ମାୟାବଦ୍ଧ, ସେତେଦିନ ଆମମାନଙ୍କୁ ଏହିସବୁ ଦୃଶ୍ୟ ଦେଖିବାକୁ ହୁଏ । ଏହି ଦୃଶ୍ୟ ଜଗତର ଘଟଣା-ବଳୀ କେତେଗୁଡ଼ିଏ ନିର୍ଦ୍ଦିଷ୍ଟ କ୍ରମ ଅନୁସାରେ ଘଟିଥାଏ । ସେମାନଙ୍କ ବାହାରେ ଆଉ କୌଣସି ନିୟମ ଓ କ୍ରମ ନାହିଁ, ସେଠାରେ କେବଳ ମୁକ୍ତି, ସ୍ୱାଧୀନତା ।

ପ୍ର—ଅଦ୍ୱୈତବାଦ କଅଣ ଦ୍ୱୈତବାଦର ବିରୋଧୀ ?

ଉ—ଉପନିଷଦ୍ ପ୍ରଣାଳୀବଦ୍ଧଭାବରେ ଲିଖିତ ନୁହେଁ ବୋଲି ଦାର୍ଶନିକ-ମାନେ ଯେତେବେଳେ କୌଣସି ମତବାଦ ଗଠନ କରିବାକୁ ଚାହିଁଛନ୍ତି, ସେତେ-ବେଳେ ସେମାନେ ଉପନିଷଦ୍ ମଧ୍ୟରୁ ନିଜ ନିଜର ଅଭିପ୍ରାୟ ଅନୁଯାୟୀ ଶ୍ରୁତିଗୁଡ଼ିକୁ ବାଛି ନେଇଅଛନ୍ତି । ସେହି କାରଣରୁ ଦାର୍ଶନିକମାନେ ଉପନିଷଦ୍‌କୁ ପ୍ରମାଣ ବୋଲି ଗ୍ରହଣ କରିଅଛନ୍ତି, ନତୁବା ସେମାନଙ୍କର ଦର୍ଶନର କୌଣସି ଭିତ୍ତି ରହି ନ ଥାନ୍ତା ।

ତଥାପି ପ୍ରକୃତ ପକ୍ଷରେ ଉପନିଷଦ୍ ମଧ୍ୟରେ ବିଭିନ୍ନ ଚିନ୍ତାପ୍ରଣାଳୀର ଭିତ୍ତି ଆମେ ଦେଖିବାକୁ ପାଉ । ଆମମାନଙ୍କର ସିଦ୍ଧାନ୍ତ ଏହି ଯେ, ଅଦ୍ୱୈତବାଦ ଦ୍ୱୈତବାଦର ବିରୋଧୀ ନୁହେଁ । ଆମେମାନେ କହୁଁ, ସତ୍ୟ ବା ଧର୍ମଲାଭର ତିନୋଟି ପ୍ରୟୋଜନୀୟ ସୋପାନ ମଧ୍ୟରେ ଦ୍ୱୈତବାଦ ଅନ୍ୟତମ ସୋପାନ ମାତ୍ର । ପ୍ରଥମଟି ଦ୍ୱୈତବାଦ । ତାହାପରେ ମନୁଷ୍ୟ ଆହୁରି ଉଚ୍ଚତର ଅବସ୍ଥାରେ ଉପସ୍ଥିତ ହୁଏ—ଏହା ବିଶିଷ୍ଟାଦ୍ୱୈତବାଦ । ଅବଶେଷରେ ସେ ଦେଖିବାକୁ ପାଏ, ସେ ବିଶ୍ୱ ସହିତ ଅଭିନ୍ନ । ସୁତରାଂ ଏହି ତିନୋଟି ମତ ପରସ୍ପରର ବିରୋଧୀ ନୁହନ୍ତି, ବରଂ ପରସ୍ପରର ପରିପୂରକ ।

ପ୍ର—ମାୟା ବା ଅଜ୍ଞାନ ଅଛି କାହିଁକି ?

ଉ—କାର୍ଯ୍ୟକାରଣ-ସଂଘାତର ସୀମା ବାହାରେ 'କାହିଁକି'—ଏହି ପ୍ରଶ୍ନ କରାଯାଇପାରେ ନାହିଁ । କେବଳ ମାୟା ଭିତରେ କୌଣସି ବସ୍ତୁ ସମ୍ବନ୍ଧରେ 'କାହିଁକି'—ଏପରି ପ୍ରଶ୍ନ କରାଯାଇପାରେ । ସୁତରାଂ ଆମେମାନେ କହୁ, ପ୍ରଶ୍ନଟିକୁ ଯୁକ୍ତିସଙ୍ଗତ ଭାବରେ ପ୍ରକାଶ କଲେ ଯାଇ ଆମେମାନେ ଏହାର ଉତ୍ତର ଦେବା । ତତ୍ପୂର୍ବରୁ ଉତ୍ତର ଦେବାର ଅଧିକାର ଆମମାନଙ୍କର ନାହିଁ ।

ପ୍ର—ସଗୁଣ ଈଶ୍ୱର କଅଣ ମାୟାର ଅନ୍ତର୍ଗତ ?

ଉ—ହଁ, ଏହି ସଗୁଣ ଈଶ୍ୱର ମାୟା ମଧ୍ୟଦେଇ ଦୃଷ୍ଟ ସେହି ନିର୍ଗୁଣ ବ୍ରହ୍ମ ବ୍ୟତୀତ ଆଉ କିଛି ନୁହନ୍ତି । ମାୟା ବା ପ୍ରକୃତିର ଅଧୀନ ହେଲେ ସେହି ନିର୍ଗୁଣ ବ୍ରହ୍ମଙ୍କୁ 'ଜୀବାତ୍ମା' କହୁ ଏବଂ ମାୟାଧୀଶ ବା ପ୍ରକୃତିର ନିୟନ୍ତାରୂପେ ସେହି ନିର୍ଗୁଣ ବ୍ରହ୍ମ ହିଁ ଈଶ୍ୱର ବା ସଗୁଣ ବ୍ରହ୍ମ । ଯଦି କୌଣସି ବ୍ୟକ୍ତି ସୂର୍ଯ୍ୟ ଦେଖିବା ପାଇଁ ଏଠାରୁ ଯାତ୍ରା କରେ, ସେ ପ୍ରଥମେ ସୂର୍ଯ୍ୟକୁ ଛୋଟ ଦେଖିବ; ଯେତେ ଦିନ ଅସଲ ସୂର୍ଯ୍ୟ ନିକଟରେ ନ ପହଞ୍ଚିଛି, ସେତେଦିନ ଏହାକୁ କ୍ରମଶଃ ବଢ଼ୁଥିବାର ଦେଖିବ । ଯେତେ ସେ ଅଗ୍ରସର ହେବ, ସେତେ ସେ ଭିନ୍ନ ଭିନ୍ନ ସୂର୍ଯ୍ୟ ଦେଖୁଛି ବୋଲି ମନେ କରିପାରେ, କିନ୍ତୁ ସେ ଯେ ଗୋଟିଏ ସୂର୍ଯ୍ୟକୁ ହିଁ ଦେଖୁଅଛି, ସେଥିରେ କୌଣସି ସନ୍ଦେହ ନାହିଁ । ଏହି ଭାବରେ ଆମେମାନେ ଯାହା କିଛି ଦେଖୁଅଛୁ ସବୁ ହିଁ ସେହି ନିର୍ଗୁଣ ବ୍ରହ୍ମସତ୍ତାର ବିଭିନ୍ନ ରୂପ ମାତ୍ର । ସୁତରାଂ ସେହି ହିସାବରେ ସେମାନେ ସତ୍ୟ । ଏମାନଙ୍କ ମଧ୍ୟରେ କୌଣସିଟି ମିଥ୍ୟା ନୁହେଁ, ତେବେ ଆମେମାନେ ଏତିକି କହିପାରୁ, ଏଗୁଡ଼ିକ ନିମ୍ନସ୍ତରର ଅବସ୍ଥାମାତ୍ର ।

ପ୍ର—ସେହି ପୂର୍ଣ୍ଣ ନିରପେକ୍ଷ ସତ୍ତାକୁ ଜାଣିବାର ବିଶେଷ ପ୍ରଣାଳୀ କଅଣ ?

ଉ—ଆମେମାନେ କହୁ, ଦୁଇଟି ପ୍ରଣାଳୀ ଅଛି । ଗୋଟିଏ ଇତି-ବାଚକ ପ୍ରବୃତ୍ତିମାର୍ଗ, ଅନ୍ୟଟି ନେତି-ବାଚକ ନିବୃତ୍ତିମାର୍ଗ । ପ୍ରଥମୋକ୍ତ ମାର୍ଗକୁ ସମଗ୍ର ଜଗତ ଅନୁସରଣ କରୁଅଛି—ଏହା ପ୍ରେମର ପଥ । ଯଦି ପ୍ରେମର ପରିଧି ଅନନ୍ତଗୁଣ ବଢ଼ାଇ ଦିଆଯାଏ, ତେବେ ଆମେ ସେହି ଏକ ସାର୍ବଜନୀନ ପ୍ରେମରେ ଉପନୀତ

ହେଉ । ଅନ୍ୟ ପଥ 'ନେତି, ନେତି'—ଅର୍ଥାତ୍ ଏହା ନୁହେଁ, ଏହା ନୁହେଁ—ଏହିପରି ସାଧନାଦ୍ୱାରା ଚିତ୍ତର ଯେଉଁ ଯେଉଁ ତରଙ୍ଗ ମନକୁ ବହିର୍ମୁଖୀ କରିବାକୁ ଚେଷ୍ଟା କରେ, ତାହାକୁ ନିବାରଣ କରିବାକୁ ହୁଏ । ପରିଶେଷରେ ମନର ଯେତେବେଳେ ମୃତ୍ୟୁ ହୁଏ, ସେତେବେଳେ ସତ୍ୟ ପ୍ରକାଶିତ ହୋଇଥାଏ । ଆମେମାନେ ଏହି ଅବସ୍ଥାକୁ ସମାଧି ବା ଜ୍ଞାନାତୀତ ଅବସ୍ଥା ବା ପୂର୍ଣ୍ଣଜ୍ଞାନର ଅବସ୍ଥା କହିଥାଉ ।

ପ୍ର—ଏହା ତାହା ହେଲେ କ'ଣ ବିଷୟୀକୁ (ଜ୍ଞାତା ବା ଦ୍ରଷ୍ଟାକୁ) ବିଷୟରେ (ଜ୍ଞେୟ ବା ଦୃଶ୍ୟରେ) ନିମଜ୍ଜିତ କରିବା ଭଳି ଅବସ୍ଥା ?

ଉ—ବିଷୟୀକୁ ବିଷୟରେ ନୁହେଁ, ବିଷୟକୁ ବିଷୟୀରେ ଲୀନ କରିବା । ବାସ୍ତବିକ ଏହି ଜଗତ ଲୋପ ପାଏ, କେବଳ 'ମୁଁ' ଥାଏ—ଏକମାତ୍ର 'ମୁଁ' ହିଁ ବର୍ତ୍ତିମାନ ରହେ ।

ପ୍ର—କେତେ ଜଣ ଜର୍ମାନ୍ ଦାର୍ଶନିକମାନଙ୍କ ମତ—ଭାରତର ଭକ୍ତିଭାବ ଖୁବ୍ ସମ୍ଭବତଃ ପାଶ୍ଚାତ୍ୟ-ପ୍ରଭାବର ଫଳ ।

ଉ—ମୁଁ ଏମାନଙ୍କ ସହିତ ଏକମତ ନୁହେଁ । ଏପରି ଅନୁମାନ ଭିତ୍ତିହୀନ । ଭାରତୀୟ ଭକ୍ତି ପାଶ୍ଚାତ୍ୟ ଭକ୍ତିପରି ନୁହେଁ । ଭକ୍ତି ସମ୍ବନ୍ଧରେ ଆମମାନଙ୍କର ମୁଖ୍ୟ ଧାରଣା ଏହି ଯେ, ଏଥିରେ ଭୟର ଭାବ ଆଦୌ ନାହିଁ—ଏଥିରେ କେବଳ ଭଗବାନଙ୍କୁ ଭଲ ପାଇବା ହେଉଛି ସାର କଥା ।

ଭୟରେ ଉପାସନା ହୁଏ ନାହିଁ, ପ୍ରଥମରୁ ଶେଷ ପର୍ଯ୍ୟନ୍ତ ସର୍ବଦା କେବଳ ଭଲପାଇବା ଭିତର ଦେଇ ଉପାସନା ସମ୍ଭବ । ଦ୍ୱିତୀୟତଃ ଏହିପରି ଅନୁମାନ ସମ୍ପୂର୍ଣ୍ଣ ଅନାବଶ୍ୟକ । ଭକ୍ତି ଅତି ପ୍ରାଚୀନ ଉପନିଷଦ୍‌ସମୂହରେ ମଧ୍ୟ ରହିଅଛି; ଏହି ଉପନିଷଦ୍‌ଗୁଡ଼ିକ ଖ୍ରୀଷ୍ଟିୟାନମାନଙ୍କର ବାଇବେଲ୍ ଅପେକ୍ଷା ଅଧିକ ପ୍ରାଚୀନ । ସଂହିତାରେ ମଧ୍ୟ ଭକ୍ତିର ବୀଜ ରହିଅଛି । 'ଭକ୍ତି' ଶବ୍ଦଟି ମଧ୍ୟ ପାଶ୍ଚାତ୍ୟ ଶବ୍ଦ ନୁହେଁ, ବେଦମନ୍ତ୍ରରେ ଉଲ୍ଲିଖିତ 'ଶ୍ରଦ୍ଧା' ଶବ୍ଦରୁ କ୍ରମଶଃ ଭକ୍ତିବାଦର ଉଦ୍‌ଭବ ହୋଇଥିଲା ।

ପ୍ର—ଖ୍ରୀଷ୍ଟଧର୍ମ ସମ୍ବନ୍ଧରେ ଭାରତବାସୀଙ୍କର କିପରି ଧାରଣା ?

ଉ—ଖୁବ୍ ଭଲ ଧାରଣା । ବେଦାନ୍ତ ସମସ୍ତଙ୍କୁ ଗ୍ରହଣ କରିଥାଏ । ଧର୍ମଶିକ୍ଷା ବିଷୟରେ ଅନ୍ୟାନ୍ୟ ଦେଶ ଅପେକ୍ଷା ଭାରତର ଗୋଟିଏ ବିଶେଷତ୍ୱ ଅଛି । ମନେ କରନ୍ତୁ, ମୋର ଗୋଟିଏ ପୁଅ ଅଛି । ମୁଁ ତାହାକୁ କୌଣସି ପ୍ରକାର ଧର୍ମମତ ଶିକ୍ଷା ଦେବି ନାହିଁ ତାହାକୁ ପ୍ରାଣାୟାମ ଶିଖାଇବି, ମନକୁ ଏକାଗ୍ର କରିବାକୁ ଶିଖାଇବି ଏବଂ ସାମାନ୍ୟ କିଛି ପ୍ରାର୍ଥନା ଶିଖାଇବି—ଆପଣମାନେ ପ୍ରାର୍ଥନା କହିଲେ ଯେପରି ବୁଝନ୍ତି, ସେପରି ନୁହେଁ । କେତେକ ପରିମାଣରେ ଏହି ଭାବର ପ୍ରାର୍ଥନା ଶିଖାଇବି: 'ଯେ ଏହି ଜଗତବ୍ରହ୍ମାଣ୍ଡକୁ ସୃଷ୍ଟି କରିଅଛନ୍ତି, ମୁଁ ତାହାଙ୍କୁ ଧ୍ୟାନ କରେ—ସେ ମୋର ମନକୁ ଜ୍ଞାନାଲୋକରେ ଆଲୋକିତ କରନ୍ତୁ ।' ତାହାର ଧର୍ମଶିକ୍ଷା ଏହିପରି

ଶୁଣିବ,* ତାହାପରେ ସେ ବିଭିନ୍ନ ମତାବଲମ୍ବୀ ଦାର୍ଶନିକ ଓ ଆଚାର୍ଯ୍ୟମାନଙ୍କର ମତ ଶୁଣୁଥିବ । ସେ ଏମାନଙ୍କ ମଧ୍ୟରେ ଯାହାର ମତ ସର୍ବାପେକ୍ଷା ଉପଯୋଗୀ ବୋଲି ମନେ କରିବ, ତାହାଙ୍କୁ ହିଁ ଗ୍ରହଣ କରିବ—ସେ ତାହାର ଗୁରୁ ହେବେ, ସେ ଶିଷ୍ୟ ହେବ । ସେ ତାଙ୍କୁ କହିବ, 'ଆପଣ ଯେଉଁ ଦର୍ଶନ ପ୍ରଚାର କରୁଛନ୍ତି ତାହା ହିଁ ସର୍ବୋତ୍କୃଷ୍ଟ, ଅତଏବ ଏହା ମୋତେ ଶିଖାଇ ଦିଅନ୍ତୁ ।' ଆମମାନଙ୍କର ମୂଳ କଥା ଏହି ଯେ, ଆପଣଙ୍କ ମତ ମୋର ଉପଯୋଗୀ ହୋଇ ନ ପାରେ, ପୁଣି ମୋର ମତ ଆପଣଙ୍କର ଉପଯୋଗୀ ହୋଇ ନ ପାରେ । ପ୍ରତ୍ୟେକର ସାଧନାପଥ ଭିନ୍ନ ଭିନ୍ନ । ମୋ କନ୍ୟାର ସାଧନପଥ ଏକପ୍ରକାର, ମୋର ପୁତ୍ରର ଅନ୍ୟ ପ୍ରକାର, ମୋର ପୁଣି ସମ୍ପୂର୍ଣ୍ଣ ଭିନ୍ନ ପ୍ରକାରର ହୋଇପାରେ । ସୁତରାଂ ପ୍ରତ୍ୟେକ ଇଷ୍ଟ ବା ନିର୍ବାଚିତ ପଥ ଭିନ୍ନ ହୋଇପାରେ—ଏବଂ ଏହି ସାଧନପଥକୁ ପ୍ରତ୍ୟେକେ ଗୋପନ କରିଥାଆନ୍ତି । ଏହି ପଥ ବିଷୟରେ ମୁଁ ଜାଣେ ଓ ମୋର ଗୁରୁ ଜାଣନ୍ତି, ଆଉ କାହାକୁ ହେଲେ ଆମେମାନେ ଏହା ଜଣାଉନାହିଁ; କାରଣ ଆମେମାନେ ଲୋକଙ୍କ ସହିତ ଅନର୍ଥକ ବିବାଦ କରିବାକୁ ଚାହୁଁ ନାହିଁ । ଏହା ଅପର ନିକଟରେ ପ୍ରକାଶ କଲେ ତାହାର କୌଣସି ଉପକାର ହେବ ନାହିଁ, କାରଣ ପ୍ରତ୍ୟେକଙ୍କୁ ନିଜ ନିଜର ପଥ ବାଛି-ନେବାକୁ ହେବ । ଏଥିପାଇଁ ସାଧାରଣଙ୍କ ନିକଟରେ କେବଳ ସର୍ବଜନ-ସମ୍ମତ ଦର୍ଶନ ଓ ସାଧନପ୍ରଣାଳୀ ଶିକ୍ଷା ଦିଆଯାଇପାରେ । ଗୋଟିଏ ଦୃଷ୍ଟାନ୍ତ ଦେଉଛି—ଅବଶ୍ୟ ଦୃଷ୍ଟାନ୍ତଟି ଶୁଣିଲେ ହସ ମାଡ଼ିବ । ଗୋଟିଏ ପାଦରେ ଛିଡ଼ାହୋଇ ରହିଲେ ହୁଏତ ମୋର ଉନ୍ନତି ହୋଇପାରେ । ଏହା ମୋ ପକ୍ଷରେ ଉପଯୋଗୀ ହେଲେ ମଧ୍ୟ ମୁଁ ଯଦି ସମସ୍ତଙ୍କୁ ଗୋଟିଏ ପାଦରେ ଛିଡ଼ା ହେବାକୁ ଉପଦେଶ ଦିଏ, ସେମାନେ ମୋ କଥା ଶୁଣି ହସିବେ । ମୁଁ ହୁଏତ ଦ୍ୱୈତବାଦୀ, ମୋର ସ୍ତ୍ରୀ ଅଦ୍ୱୈତବାଦୀ; ମୋର କୌଣସି ପୁତ୍ର ଇଚ୍ଛା କଲେ ଖ୍ରୀଷ୍ଟ, ବୁଦ୍ଧ ବା ମହମ୍ମଦଙ୍କର ଉପାସକ ହୋଇ ପାରେ, ସେ ତାହାର ଇଷ୍ଟ । ଅବଶ୍ୟ ତାହାକୁ ଜାତିଗତ ସାମାଜିକ ନିୟମ ପ୍ରତି-ପାଳନ କରିବାକୁ ହେବ ।

ପ୍ର—ହିନ୍ଦୁମାନେ ସମସ୍ତେ କଅଣ ଜାତିବିଭାଗରେ ବିଶ୍ୱାସୀ ?

ଉ—ବାଧ୍ୟ ହୋଇ ଜାତିଗତ ନିୟମ ମାନିବାକୁ ହୁଏ; ଆସ୍ଥା ନଥିଲେ ମଧ୍ୟ ସାମାଜିକ ନିୟମ ସେମାନଙ୍କୁ ମାନିବାକୁ ହୁଏ ।

ପ୍ର—ଏହି ପ୍ରାଣାୟାମ ଓ ଏକାଗ୍ରତାର ଅଭ୍ୟାସ କଅଣ ସମସ୍ତେ କରି-ଥାଆନ୍ତି ?

ଉ—ହଁ, ତେବେ କେହି କେହି ଅଳ୍ପ ଅଭ୍ୟାସ କରନ୍ତି—ଧର୍ମଶାସ୍ତ୍ରର ଆଦେଶ ଯେପରି ଲଙ୍ଘନ କରା ନ ହୁଏ । ଭାରତର ମନ୍ଦିରଗୁଡ଼ିକ ଏଠାକାର ଚର୍ଚ୍ଚ

---

* ଗାୟତ୍ରୀ ମନ୍ତ୍ରର ସରଳାର୍ଥ ।

ପର ନୁହେଁ । ଆଗାମୀ କାଲ ସମ୍ପ୍ରଦାୟ ମନ୍ଦିର ଅନ୍ତର୍ହିତ ହେଲେ ମଧ୍ୟ ଲୋକେ ଏହାର ଅଭାବ ବୋଧ କରିବେ ନାହିଁ । ସ୍ୱର୍ଗକାମ ବା ପୁତ୍ରକାମ ହୋଇ ଅଥବା ଅନ୍ୟ କିଛି ପାଇଁ ଲୋକେ ମନ୍ଦିର ନିର୍ମାଣ କରନ୍ତି । କେହି ହୁଏତ ଗୋଟିଏ ଖୁବ୍ ବଡ଼ ମନ୍ଦିର ପ୍ରତିଷ୍ଠା କରାଇଲେ ଏବଂ ପୂଜା ପାଇଁ କେତେଜଣ ପୁରୋହିତ ନିଯୁକ୍ତ କରିଦେଲେ, କିନ୍ତୁ ସେଠାକୁ ଯିବାର କୌଣସି ପ୍ରୟୋଜନ ନାହିଁ, କାରଣ ସମସ୍ତେ ନିଜ ନିଜର ପୂଜାପାଠ କରିଥାଆନ୍ତି । ପ୍ରତ୍ୟେକ ଘରେ ପୃଥକ୍ ଗୋଟିଏ ଘର ଥାଏ, ତାହାକୁ ଠାକୁରଘର ବା ପୂଜାଗୃହ କହନ୍ତି । ଦୀକ୍ଷା-ଗ୍ରହଣ ପରେ ପ୍ରତ୍ୟେକ ବାଳକ ବାଳିକାର କର୍ତ୍ତବ୍ୟ—ପ୍ରଥମେ ସ୍ନାନ କରି ପୂଜା କରିବା । ତାହାର ପୂଜା ବା ଉପାସନା ହେଲା—ପ୍ରାଣାୟାମ, ଧ୍ୟାନ ଏବଂ ବିଶେଷ ଗୋଟିଏ 'ନାମ' ଜପ କରିବା । ଆଉ ଗୋଟିଏ ବିଷୟ ପ୍ରତି ଲକ୍ଷ୍ୟ ରଖିବାକୁ ହୁଏ—ସାଧନ ସମୟରେ ଦେହ ସିଧା ରହିବ । ଆମମାନଙ୍କର ବିଶ୍ୱାସ—ମନର ଶକ୍ତିଦ୍ୱାରା ଶରୀରକୁ ସୁସ୍ଥ ରଖାଯାଇ-ପାରେ । ଜଣେ ଏହିପରି ପୂଜା କରି ଉଠିଗଲେ, ଆଉ ଜଣେ ଆସି ସେହି ଆସନରେ ବସି ପୂଜା କରିବାକୁ ଲାଗିଲେ—ସମସ୍ତେ ନିସ୍ତବ୍ଧ ଭାବରେ ନିଜ ନିଜର ପୂଜା କରି ଚାଲିଗଲେ । ସମୟ ସମୟରେ ଗୋଟିଏ ଘରେ ତିନି ଚାରିଜଣ ବସି ଉପାସନା କରନ୍ତି, କିନ୍ତୁ ପ୍ରତ୍ୟେକର ଉପାସନାପ୍ରଣାଳୀ ହୁଏତ ଭିନ୍ନ ଭିନ୍ନ । ଏହିପରି ପୂଜା ପ୍ରତ୍ୟହ ଅନ୍ତତଃ ଦୁଇଥର କରିବାକୁ ହୁଏ ।

ପ୍ର—ଆପଣ ଯେଉଁ ଅଦ୍ୱୈତ ଅବସ୍ଥା କଥା କହିଲେ, ତାହା କ'ଣ କେବଳ ଆଦର୍ଶ ମାତ୍ର, ନା କେହି ଏହି ଅବସ୍ଥା ପ୍ରକୃତରେ ଲାଭ କରିଅଛନ୍ତି ?

ଉ—ଆମେମାନେ କହୁ, ଏହା ପ୍ରତ୍ୟକ୍ଷ କରିହୁଏ—ଏହି ଅବସ୍ଥା ଉପଲବ୍ଧି କରିବାର ବିଷୟ । ଯଦି ଏହା କେବଳ କଥା ହୁଅନ୍ତା, ତେବେ ଏହାର ମୂଲ୍ୟ କିଛି ନୁହେଁ । ବେଦ ଏହି ତତ୍ତ୍ୱ ଉପଲବ୍ଧି କରିବା ପାଇଁ ତିନୋଟି ଉପାୟର କଥା କହନ୍ତି; ଶ୍ରବଣ, ମନନ, ନିଦିଧ୍ୟାସନ । ଏହି ଆତ୍ମତତ୍ତ୍ୱ ପ୍ରଥମେ ଶୁଣିବାକୁ ହେବ, ଶୁଣିବା ପରେ ଏହି ବିଷୟ ବିଚାର କରିବାକୁ ହେବ—ଯେପରି ଅନ୍ଧଭାବରେ ଏହା ବିଶ୍ୱାସ କରା ନ ହୁଏ—ବିଚାର କରି ଜାଣିଶୁଣି ଯେପରି ଏହା ବିଶ୍ୱାସ କରାହୁଏ, ଏହି ଭାବରେ ନିଜର ସ୍ୱରୂପ ବିଚାର କରି ଏହାର ଧ୍ୟାନରେ ନିଯୁକ୍ତ ହେବାକୁ ହେବ —ସେତେବେଳେ ଏହାର ସାକ୍ଷାତ୍ ଉପଲବ୍ଧି ହେବ । ଏହି ପ୍ରତ୍ୟକ୍ଷ ଉପଲବ୍ଧି ହିଁ ଯଥାର୍ଥ ଧର୍ମ । କେବଳ ବିଶ୍ୱାସ କରିବା ଧର୍ମର ଅଙ୍ଗ ନୁହେଁ । ଆମେମାନେ କହୁ, ଏହି ସମାଧି ବା ଜ୍ଞାନାତୀତ ଅବସ୍ଥା ହିଁ ଧର୍ମ ।

ପ୍ର—ଆପଣ ଯଦି କେବେ ଏହି ସମାଧି ଅବସ୍ଥା ଲାଭ କରନ୍ତି, ତେବେ ଆପଣ କଥଣ ଏହା ସମ୍ବନ୍ଧରେ କିଛି କହିପାରିବେ ?

ଉ—ନା, କିନ୍ତୁ ସମାଧି-ଅବସ୍ଥା ବା ପୂର୍ଣ୍ଣ ଜ୍ଞାନଭୂମି ଯେ ଜଣଙ୍କର ଲାଭ ହୋଇଅଛି, ତାହା ଆମେମାନେ ଜୀବନ ଉପରେ ଏହାର ଫଳାଫଳ ଦେଖି ଜାଣି-

ପାରୁ । ଜଣେ ମୂର୍ଖ ନିଦ୍ରିତ ହେଲ—ନିଦ୍ରାଭଙ୍ଗ ପରେ ସେ ଯେଉଁ ମୂର୍ଖକୁ ସେହି ମୂର୍ଖ ରହିବ, ହୁଏତ ଆହୁରି ଖରାପ ହୋଇପାରେ; କିନ୍ତୁ କେହି ସମାଧିସ୍ଥ ହେଲେ ସମାଧିଭଙ୍ଗ ପରେ ସେ ଜଣେ ତତ୍ତ୍ୱଜ୍ଞ ସାଧୁ ମହାପୁରୁଷ ହୁଏ । ସେଥିରୁ ବୁଝାଯାଏ, ଏହି ଦୁଇ ଅବସ୍ଥା କେତେଦୂର ଭିନ୍ନ ।

ପ୍ର—ମୁଁ ଅଧ୍ୟାପକଙ୍କ ପ୍ରଶ୍ନକୁ ଅନୁସରଣ କରି ଜାଣିବାକୁ ଚାହେଁ, ଆପଣ ଏପରି ଲୋକଙ୍କ ବିଷୟ ଜାଣନ୍ତି କି ନାହିଁ, ଯେଉଁମାନେ ଆତ୍ମ-ସମ୍ମୋହନ ତତ୍ତ୍ୱର (Self-hypnotism) କୌଣସି ପ୍ରକାର ଆଲୋଚନା କରିଅଛନ୍ତି ? ଅବଶ୍ୟ ପ୍ରାଚୀନ ଭାରତରେ ନିଶ୍ଚୟ ଏହି ବିଦ୍ୟାର ଖୁବ୍ ଚର୍ଚ୍ଚା ଥିଲା, ବର୍ତ୍ତମାନ ଆଉ ସେତେଟା ନାହିଁ । ମୁଁ ଜାଣିବାକୁ ଚାହେଁ, ଯେଉଁମାନେ ବର୍ତ୍ତମାନ ଏହାର ଚର୍ଚ୍ଚା କରନ୍ତି, ସେମାନେ ଏହି ତତ୍ତ୍ୱ ସମ୍ବନ୍ଧରେ କ'ଣ ମତବ୍ୟକ୍ତ କରିଅଛନ୍ତି ଏବଂ ଏହାର କିପରି ଅଭ୍ୟାସ ବା ସାଧନ ସେମାନେ କରିଅଛନ୍ତି ।

ଉ—ଆପଣମାନେ ପାଶ୍ଚାତ୍ୟ ଦେଶରେ ଯାହାକୁ ସମ୍ମୋହନ ବିଦ୍ୟା (hypnotism) କହନ୍ତି, ତାହା ପ୍ରକୃତ ଘଟଣାର ସାମାନ୍ୟ ଅଂଶ ମାତ୍ର । ହିନ୍ଦୁମାନେ ଏହାକୁ ଆତ୍ମସମ୍ମୋହନ-ଦୂରୀକରଣ (Self-de-hypnotization) କହନ୍ତି । ସେମାନେ କହନ୍ତି, ଆପଣମାନେ ତ ସମ୍ମୋହିତ (hypnotized) ହୋଇ ରହିଅଛନ୍ତି—ଏହି ସମ୍ମୋହିତ ଭାବକୁ ଦୂର କରିବାକୁ ହେବ, ବିଗତ-ମୋହ (de-hypnotized) ହେବାକୁ ପଡ଼ିବ ।

'ନ ତତ୍ର ସୂର୍ଯ୍ୟୋ ଭାତି ନ ଚନ୍ଦ୍ରତାରକମ୍ ନେମା ବିଦ୍ୟୁତୋ ଭାନ୍ତି କୁତୋଽୟମଗ୍ନିଃ ।
ତମେବ ଭାନ୍ତମନୁଭାତି ସର୍ବଂ ତସ୍ୟ ଭାସା ସର୍ବମିଦଂ ବିଭାତି ॥'*

—ସେଠାରେ ସୂର୍ଯ୍ୟ ପ୍ରକାଶ ପାଏନାହିଁ, ଚନ୍ଦ୍ର ତାରକା ମଧ୍ୟ ନୁହନ୍ତି, ବିଦ୍ୟୁତ୍ ମଧ୍ୟ ସେଠାରେ ପ୍ରକାଶ ପାଏ ନାହିଁ, ଏହି ସାମାନ୍ୟ ଅଗ୍ନିର କଥା ବା କ'ଣ ? ସେ ପ୍ରକାଶ ପାଉଛନ୍ତି ବୋଲି ସମୁଦାୟ ପ୍ରକାଶିତ ହେଉଅଛୁ ।

ଏହା ସମ୍ମୋହନ (hypnotization) ନୁହେଁ—ଏହା ମୋହ-ଦୂରୀକରଣ ବା ଅପସାରଣ (de-hypnotization) । ଆମେମାନେ କହୁଥାଉଁ, ଅନ୍ୟ ସବୁ ଧର୍ମ ଏହି ପ୍ରପଞ୍ଚର ସତ୍ୟତା ଶିକ୍ଷା ଦିଏ, ଅତଏବ ସେମାନେ ଏକପ୍ରକାର ସମ୍ମୋହନ ପ୍ରୟୋଗ କରୁଅଛନ୍ତି । କେବଳ ଅଦ୍ୱୈତବାଦୀମାନେ ସମ୍ମୋହିତ ହେବାକୁ ଚାହାଁନ୍ତି ନାହିଁ । ଏକମାତ୍ର ଅଦ୍ୱୈତବାଦୀମାନେ ବୁଝିଥାଆନ୍ତି ଯେ, ଦ୍ୱୈତବାଦରୁ ସମ୍ମୋହନ ବା ମୋହ ଆସିଥାଏ । ତେଣୁ ଅଦ୍ୱୈତବାଦୀ କହନ୍ତି, ବେଦକୁ ଫୋପାଡ଼ି ଦିଅ, ସଗୁଣ ଈଶ୍ୱରଙ୍କୁ ମଧ୍ୟ ଫିଙ୍ଗି ଦିଅ, ଏହି ଜଗଦ୍‌ବ୍ରହ୍ମାଣ୍ଡକୁ ମଧ୍ୟ ଫିଙ୍ଗି ଦିଅ, ଏପରକି ତୁମର ଦେହ-ମନକୁ ମଧ୍ୟ ଫିଙ୍ଗି ଦିଅ—କିଛି ହେଲେ

* କଠ ଉପ., ୨।୨।୧୦; ଶ୍ୱେ.ଉ., ୬।୧୪; ମୁ.ଉ., ୨।୨।୧୦

ଯେପରି ନ ରହେ, ତେବେ ଯାଇଁ ତୁମେ ସମ୍ପୂର୍ଣ୍ଣ ମୋହମୁକ୍ତ ହେବ ।

'ଯତୋ ବାଚୋ ନିବର୍ତ୍ତନ୍ତେ ଅପ୍ରାପ୍ୟ ମନସା ସହ ।
ଆନନ୍ଦଂ ବ୍ରହ୍ମଣୋ ବିଦ୍ୱାନ୍ ନ ବିଭେତି କୁତଶ୍ଚନ ॥' *

—ମନ ସହିତ ବାକ୍ୟ ତାହାଙ୍କୁ ନ ପାଇ ଯେଉଁଠାରୁ ଫେରିଆସେ, ସେହି ବ୍ରହ୍ମଙ୍କର ଆନନ୍ଦକୁ ଜାଣି ଆଉ କୌଣସି ଭୟ ରହେ ନାହିଁ । ଏହା ହିଁ ମୋହ ଅପସାରଣ ।

'ନ ପୁଣ୍ୟଂ ନ ପାପଂ ନ ସୌଖ୍ୟଂ ନ ଦୁଃଖଂ
ନ ମନ୍ତ୍ରୋ ନ ତୀର୍ଥଂ ନ ବେଦା ନ ଯଜ୍ଞାଃ ।
ଅହଂ ଭୋଜନଂ ନୈବ ଭୋଜ୍ୟଂ ନ ଭୋକ୍ତା
ଚିଦାନନ୍ଦରୂପଃ ଶିବୋଽହଂ ଶିବୋଽହଂ ॥'**

—ମୋର ପୁଣ୍ୟ ନାହିଁ, ପାପ ନାହିଁ, ସୁଖ ନାହିଁ, ଦୁଃଖ ନାହିଁ; ମୋର ମନ୍ତ୍ର, ତୀର୍ଥ, ବେଦ ବା ଯଜ୍ଞ କିଛି ନାହିଁ; ମୁଁ ଭୋଜନ, ଭୋଜ୍ୟ ବା ଭୋକ୍ତା କିଛି ହେଲେ ନୁହେଁ । ମୁଁ ଚିଦାନନ୍ଦରୂପ ଶିବ—ମୁଁ ଶିବ (ମଙ୍ଗଳସ୍ୱରୂପ) ।

ଆମେମାନେ ସମ୍ମୋହନ-ବିଦ୍ୟାର ସମୁଦାୟ ତତ୍ତ୍ୱ ଅବଗତ ଅଛୁ । ଆମ-ମାନଙ୍କର ଯେଉଁ ମନସ୍ତତ୍ତ୍ୱ-ବିଦ୍ୟା ଅଛି, ତାହା ପାଶ୍ଚାତ୍ୟ ଦେଶ ଏବେ ଜାଣିବାକୁ ଆରମ୍ଭ କରିଅଛି; ତେବେ ଦୁଃଖର ବିଷୟ—ଏପର୍ଯ୍ୟନ୍ତ ସୁଦ୍ଧା ସମ୍ପୂର୍ଣ୍ଣ ଜାଣିପାରି ନାହିଁ ।

ପ୍ର—ଆପଣମାନେ 'ଆତିବାହିକ ଦେହ' (astral body) କାହାକୁ କହନ୍ତି ?

ଉ—ଆମେମାନେ ଏହାକୁ ଲିଙ୍ଗ-ଶରୀର କହିଥାଉଁ । ଯେତେବେଳେ ଏହି ଦେହର ପତନ ହୁଏ, ସେତେବେଳେ ଅନ୍ୟ କୌଣସି ଦେହପରିଗ୍ରହ କିପରି ହୁଏ ? ଶକ୍ତି କଦାପି ଜଡ଼ ପଦାର୍ଥ ବ୍ୟତୀତ ରହି ନ ପାରେ, ସୁତରାଂ ସିଦ୍ଧାନ୍ତ ଏହି ଯେ, ଦେହତ୍ୟାଗ ପରେ ସୂକ୍ଷ୍ମତତ୍ତ୍ୱର କିୟଦଂଶ ଆମମାନଙ୍କ ସହିତ ରହିଯାଏ । ଅଭ୍ୟନ୍ତରବର୍ତ୍ତୀ ଇନ୍ଦ୍ରିୟଗଣ ଏହି ସୂକ୍ଷ୍ମଭୂତର ସାହାଯ୍ୟ ନେଇ ଆଉ ଗୋଟିଏ ଦେହ ଗଠନ କରୁଥାଆନ୍ତି । କାରଣ ସମସ୍ତେ ନିଜ ନିଜ ଦେହ ଗଠନ କରୁଛନ୍ତି; ଆମର ମନ ହିଁ ଶରୀର ଗଠନ କରିଥାଏ । ଯଦି ମୁଁ ସାଧୁ ହୁଏ, ତେବେ ମୋର ମସ୍ତିଷ୍କ ଜ୍ଞାନୀ ସାଧୁର ମସ୍ତିଷ୍କରେ ପରିଣତ ହେବ । ଆଉ ଯୋଗୀମାନେ କହନ୍ତି, ଏହି ଜୀବନରେ ହିଁ ସେମାନେ ନିଜ ଦେହକୁ ଦେବଦେହରେ ପରିଣତ କରିପାରନ୍ତି ।

ଯୋଗୀମାନେ ଅନେକ ଅଦ୍ଭୁତ ବ୍ୟାପାର ଦେଖାଇଥାଆନ୍ତି । ଗଣି ଗଣି ମତବାଦ ଅପେକ୍ଷା ସାମାନ୍ୟ ଅଭ୍ୟାସର ମୂଲ୍ୟ ଅନେକ ଅଧିକ । ସୁତରାଂ ମୁଁ ନିଜେ

---

* ତୈତ୍ତି. ଉପ., ୨।୯

** ନିର୍ବାଣଷଟ୍କମ୍—ଶଙ୍କରାଚାର୍ଯ୍ୟ

ସବୁ କଥା ଦେଖି ନାହିଁ ବୋଲି ସେଗୁଡ଼ିକ ମିଥ୍ୟା, ଏ କଥା କହିବାର ଅଧିକାର ମୋର ନାହିଁ । ଯୋଗୀମାନଙ୍କ ଗ୍ରନ୍ଥରେ ଅଛି, ଅଭ୍ୟାସଦ୍ୱାରା ବିସ୍ମୟକର ଫଳ ମିଳେ । ନିୟମିତ ଅଭ୍ୟାସଦ୍ୱାରା ଅତି ଅଳ୍ପକାଳ ଭିତରେ କିଛି କିଛି ଫଳ ମିଳେ—ସେଥିରୁ ଜାଣିହୁଏ, ଏହା ମିଥ୍ୟା ନୁହେଁ । ବିଭିନ୍ନ ଶାସ୍ତ୍ରରେ ଯେଉଁସବୁ ଅଲୌକିକ ବ୍ୟାପାରର ଉଲ୍ଲେଖ ଅଛି, ଯୋଗୀମାନେ ସେଗୁଡ଼ିକର ବ୍ୟାଖ୍ୟା ବୈଜ୍ଞାନିକଭାବରେ କରିଥାଆନ୍ତି । ପ୍ରଶ୍ନ ଏହି : ପ୍ରତ୍ୟେକ ଜାତି ଭିତରେ ଏହିସବୁ ଅଲୌକିକ କାର୍ଯ୍ୟର ବିବରଣ ଲିପିବଦ୍ଧ ହୋଇ ରହିଅଛି କିପରି ? ଯିଏ କହେ—ଏ ସମୁଦାୟ ମିଥ୍ୟା, ଏଗୁଡ଼ିକର ବ୍ୟାଖ୍ୟାର କୌଣସି ପ୍ରୟୋଜନ ନାହିଁ—ତାହାକୁ ଯୁକ୍ତିବାଦୀ ବା ବିଚାରପରାୟଣ କୁହାଯାଇ ନ ପାରେ । ଯେତେଦିନ ନା ସେଗୁଡ଼ିକୁ ଭୁଲ ବୋଲି ଆପଣ ପ୍ରମାଣ କରିପାରୁଛନ୍ତି, ସେତେଦିନ ସେଗୁଡ଼ିକୁ ଅସ୍ୱୀକାର କରିବାର ଅଧିକାର ଆପଣଙ୍କର ନାହିଁ । ଆପଣଙ୍କୁ ପ୍ରମାଣ କରିବାକୁ ହେବ ଯେ, ଏଗୁଡ଼ିକର କୌଣସି ଭିତ୍ତି ନାହିଁ, ତେବେ ଯାଇ ଆପଣ ଏଗୁଡ଼ିକୁ ଅସ୍ୱୀକାର କରିବାର ଅଧିକାରୀ ହେବେ । କିନ୍ତୁ ତାହା ତ ଆପଣମାନେ କରିନାହାନ୍ତି । ଅନ୍ୟ ଦିଗରେ ଯୋଗୀମାନେ କହୁଛନ୍ତି, ସେଗୁଡ଼ିକ ବାସ୍ତବିକ ଅଲୌକିକ ବ୍ୟାପାର ନୁହେଁ, ସେମାନେ ବର୍ତ୍ତମାନ ମଧ୍ୟ ଏସବୁ କରିପାରନ୍ତି ବୋଲି ଦାବୀ କରନ୍ତି । ଭାରତରେ ଆଜି ପର୍ଯ୍ୟନ୍ତ ଅନେକ ଅଦ୍ଭୁତ ବ୍ୟାପାର ସାଧିତ ହୋଇଅଛି; କିନ୍ତୁ ଏଥିରୁ କୌଣସିଟି ହିଁ ଅପ୍ରାକୃତ ଶକ୍ତିଦ୍ୱାରା ସାଧିତ ହୋଇ ନାହିଁ । ଏହି ବିଷୟରେ ଅନେକ ଗ୍ରନ୍ଥ ଅଛି । କେବଳ ମନସ୍ତତ୍ତ୍ୱ-ଆଲୋଚନାର ବୈଜ୍ଞାନିକ ଚେଷ୍ଟା ବ୍ୟତୀତ ଯଦି ଏ ବିଷୟରେ ଆଉ କିଛି ସାଧିତ ନ ହୋଇଥାଏ, ତେବେ ଏହାର ସମୁଦାୟ ଗୌରବ ଯୋଗୀମାନଙ୍କର ପ୍ରାପ୍ୟ ।

ପ୍ର—ଯୋଗୀମାନେ କ'ଣ କ'ଣ ଦେଖାଇପାରନ୍ତି, ତାହାର କୌଣସି ଦୃଷ୍ଟାନ୍ତ ଦେଇପାରିବେ କି ?

ଉ—ଅନ୍ୟାନ୍ୟ ବିଜ୍ଞାନର ଚର୍ଚ୍ଚା କରିବାକୁ ହେଲେ ଯେତେଟା ବିଶ୍ୱାସର ପ୍ରୟୋଜନ ହୁଏ, ଯୋଗୀ ତାହାଙ୍କର ଯୋଗବିଦ୍ୟା ଉପରେ ତାହା ଅପେକ୍ଷା ଅଧିକ ବିଶ୍ୱାସ କରିବାକୁ କହନ୍ତି ନାହିଁ । କୌଣସି ବିଷୟ ଗ୍ରହଣ କରି ତାହା ପରୀକ୍ଷା କରିବା ପାଇଁ ଲୋକେ ଯେତେଟା ବିଶ୍ୱାସ କରିଥାଆନ୍ତି, ଯୋଗୀ ତାହା ଅପେକ୍ଷା ଅଧିକ ବିଶ୍ୱାସ କରିବାକୁ କହନ୍ତି ନାହିଁ । ଯୋଗୀର ଆଦର୍ଶ ଅତି ଉଚ୍ଚ । ମନର ଶକ୍ତିଦ୍ୱାରା ଯେଉଁସବୁ ବ୍ୟାପାର ସାଧିତ ହୋଇପାରେ, ସେଥିରୁ ନିମ୍ନତର ବିଷୟଗୁଡ଼ିକ ମୁଁ ଦେଖିଅଛି । ସୁତରାଂ ଉଚ୍ଚତର ବ୍ୟାପାରଗୁଡ଼ିକ ଯେ ହୋଇପାରେ, ଏ ବିଷୟରେ ଅବିଶ୍ୱାସ କରିବାର ଅଧିକାର ମୋର ନାହିଁ । ଯୋଗୀର ଆଦର୍ଶ—ସର୍ବଜ୍ଞତା ଓ ସର୍ବଶକ୍ତିମତ୍ତାର ସହାୟତାରେ ଶାଶ୍ୱତ ଶାନ୍ତି ଓ ପ୍ରେମର ଅଧିକାରୀ ହେବା । ମୁଁ ଜଣେ ଯୋଗୀଙ୍କୁ ଜାଣେ, ତାହାଙ୍କୁ ଗୋଖର ସାପ କାମୁଡ଼ିଥିଲା । ଦଂଶନମାତ୍ରେ ସେ ଅଚୈତନ୍ୟ ହୋଇ ତଳେ ପଡ଼ିଗଲେ, ସନ୍ଧ୍ୟା ସମୟରେ ତାଙ୍କର ପୁଣି ଚୈତନ୍ୟ

ହେଲା । ଯେତେବେଳେ ତାହାଙ୍କୁ ପଚରାଗଲା, 'କ'ଣ ହୋଇଥିଲା ?' ସେ କହିଲେ, 'ମୋର ପ୍ରିୟତମଙ୍କ ନିକଟରୁ ଦୂତ ଆସିଥିଲା ।' ଏହି ଯୋଗୀଙ୍କର* ସମୁଦାୟ ଘୃଣା କ୍ରୋଧ ଓ ହିଂସାର ଭାବ ଏକାବେଳକେ ଦଗ୍ଧ ହୋଇଯାଇଅଛି । କିଛି ହେଲେ ତାହାଙ୍କୁ ପ୍ରତିହିଂସାରେ ପ୍ରବୃତ୍ତ କରି ନ ପାରେ । ସେ ସର୍ବଦା ଅନନ୍ତ ପ୍ରେମସ୍ୱରୂପ ହୋଇ ରହିଅଛନ୍ତି, ପ୍ରେମର ଶକ୍ତିରେ ସେ ସର୍ବଶକ୍ତିମାନ । ଏହିପରି ବ୍ୟକ୍ତି ହିଁ ଯଥାର୍ଥ ଯୋଗୀ । ଆଉ ଏହିସବୁ ଅଲୌକିକ ଶକ୍ତିର ପ୍ରକାଶ ଗୌଣମାତ୍ର । ଏଗୁଡ଼ିକୁ ଲାଭ କରିବା ଯୋଗୀର ପ୍ରକୃତ ଲକ୍ଷ୍ୟ ନୁହେଁ । ଯୋଗୀମାନେ କହନ୍ତି, ଯୋଗୀ ବ୍ୟତୀତ ଅନ୍ୟ ସମସ୍ତେ ଦାସ—ଖାଦ୍ୟର ଦାସ, ବାୟୁର ଦାସ, ନିଜ ସ୍ତ୍ରୀର ଦାସ, ନିଜ ପୁତ୍ର-କନ୍ୟାଙ୍କର ଦାସ, ଟଙ୍କାର ଦାସ, ସ୍ୱଦେଶୀମାନଙ୍କର ଦାସ, ନାମଯଶର ଦାସ ଏବଂ ଏହି ଜଗତରେ ସହସ୍ର ସହସ୍ର ବିଷୟର ଦାସ । ଯେଉଁ ବ୍ୟକ୍ତି ଏସବୁ ବନ୍ଧନର କୌଣସିଟିରେ ଆବଦ୍ଧ ନୁହେଁ, ସେ ଯଥାର୍ଥ ମନୁଷ୍ୟ, ଯଥାର୍ଥ ଯୋଗୀ ।

'ଇହୈବ ତୈର୍ଜିତଃ ସର୍ଗୋ ଯେଷାଂ ସାମ୍ୟେ ସ୍ଥିତଂ ମନଃ ।
ନିର୍ଦ୍ଦୋଷଂ ହି ସମଂ ବ୍ରହ୍ମ ତସ୍ମାଦ୍ ବ୍ରହ୍ମଣି ତେ ସ୍ଥିତାଃ ॥'**

—ଏହିଠାରେ ହିଁ ସେମାନେ ସଂସାରକୁ ଜୟ କରିଅଛନ୍ତି, ଯେଉଁମାନଙ୍କର ମନ ସାମ୍ୟଭାବରେ ଅବସ୍ଥିତ । ଯେହେତୁ ବ୍ରହ୍ମ ନିର୍ଦ୍ଦୋଷ ଓ ସମଭାବାପନ୍ନ ସେହେତୁ ସେମାନେ ବ୍ରହ୍ମରେ ଅବସ୍ଥିତ ।

ପ୍ର—ଯୋଗୀମାନେ କ'ଣ ଜାତିଭେଦକୁ ଗୋଟିଏ ବିଶେଷ ପ୍ରୟୋଜନୀୟ ବିଷୟ ବୋଲି ସ୍ୱୀକାର କରିଥାଆନ୍ତି ?

ଉ—ନା, ଜାତିବିଭାଗ ଅପରିଣତ ମନର ଶିକ୍ଷାଳୟ ମାତ୍ର ।

ପ୍ର—ଏହି ଅତିଚେତନ ଭାବ (ସମାଧିତତ୍ତ୍ୱ) ସହିତ ଭାରତର ଗ୍ରୀଷ୍ମର କ'ଣ କୌଣସି ସମ୍ବନ୍ଧ ନାହିଁ ?

ଉ—କୌଣସି ସମ୍ବନ୍ଧ ଅଛି ବୋଲି ମୋର ମନେହୁଏ ନାହିଁ । କାରଣ, ସମୁଦ୍ର-ପୃଷ୍ଠର ପନ୍ଦରହଜାର ଫୁଟ ଉପରେ—ପ୍ରାୟ ମେରୁପ୍ରଦେଶର ଆବହାଓଆରେ—ହିମାଳୟ ପର୍ବତରେ ଏହି ଯୋଗବିଦ୍ୟାର ଉଦ୍ଭବ ହୋଇଥିଲା ।

ପ୍ର—ଥଣ୍ଡା ଜଳବାୟୁରେ ରହି କ'ଣ ଯୋଗରେ ସିଦ୍ଧିଲାଭ କରିବା ସମ୍ଭବ ?

ଉ—ଖୁବ୍ ସମ୍ଭବ । ପୃଥିବୀ ମଧ୍ୟରେ ଏହାକୁ ଯେପରି କାର୍ଯ୍ୟରେ ପରିଣତ କରିବା ସମ୍ଭବ, ଅନ୍ୟଠାରେ ସେପରି ସମ୍ଭବ ନୁହେଁ । ଆମେମାନେ କହୁ, ଆପଣମାନେ ସମସ୍ତେ ଜନ୍ମରୁ ବୈଦାନ୍ତିକ । ଜୀବନର ପ୍ରତି ମୁହୂର୍ତ୍ତିରେ ଆପଣମାନେ ଜାଗତିକ ସକଳ ବସ୍ତୁ ସହିତ ନିଜ ନିଜର ଏକତ୍ୱ ଘୋଷଣା କରୁଅଛନ୍ତି । ଯେତେବେଳେ ଆପଣମାନଙ୍କ ହୃଦୟ ସମଗ୍ର ଜଗତର କଲ୍ୟାଣ ପାଇଁ ଧାବିତ ହୁଏ, ସେତେ-

* ପଓହାରି ବାବା
** ଗୀତା, ୫।୧୯

ବେଲେ ଆପଣମାନେ ଅଜ୍ଞାତସାରରେ ବାସ୍ତବିକ ବେଦାନ୍ତବାଦୀ । ଆପଣମାନେ ନୀତି-ପରାୟଣ, କିନ୍ତୁ କାହିଁକି ନୀତିପରାୟଣ, ତାହା ଜାଣନ୍ତି ନାହିଁ । ବେଦାନ୍ତ-ଦର୍ଶନ ନୀତିତତ୍ତ୍ୱର ବିଶ୍ଳେଷଣ କରି ମନୁଷ୍ୟକୁ ଜ୍ଞାନତଃ ନୀତିପରାୟଣ ହେବାକୁ ଶିଖାଇଅଛି । ବେଦାନ୍ତ ସକଳ ଧର୍ମର ସାର ।

ପ୍ର—ଆପଣ କଅଣ କହନ୍ତି ଯେ, ଆମମାନଙ୍କ—ପାଶ୍ଚାତ୍ୟ ଜାତିମାନଙ୍କ ଭିତରେ ଏପରି ଗୋଟିଏ ଅସାମାଜିକ ଭାବ ଅଛି, ଯାହା ଆମମାନଙ୍କୁ ବହୁତ୍ୱବାଦୀ (pluralistic) କରିଅଛି ? ପ୍ରାଚ୍ୟଦେଶୀୟ ଲୋକେ କଅଣ ଆମମାନଙ୍କ ଅପେକ୍ଷା ଅଧିକତର ସହାନୁଭୂତିସମ୍ପନ୍ନ ?

ଉ—ମୋ ମତରେ ପାଶ୍ଚାତ୍ୟ ଜାତି ଅଧିକତର ନିଷ୍ଠୁର-ସ୍ୱଭାବ । ପ୍ରାଚ୍ୟ-ଦେଶୀୟ ବ୍ୟକ୍ତିଗଣ ଅଧିକତର କରୁଣାସମ୍ପନ୍ନ । କିନ୍ତୁ ତାହାର କାରଣ କେବଳ ଏହି ଯେ, ଆପଣମାନଙ୍କର ସଭ୍ୟତା ଖୁବ ଆଧୁନିକ । କୌଣସି ସ୍ୱଭାବ ପ୍ରତି ଦୟା-ଶୀଳ ହେବା ସମୟସାପେକ୍ଷ । ଆପଣମାନଙ୍କର ଶକ୍ତି ଯଥେଷ୍ଟ, କିନ୍ତୁ ଶକ୍ତି-ସଂଗ୍ରହ ଯେଉଁ ପରିମାଣରେ ଚାଲିଅଛି, ସେହି ପରିମାଣରେ ହୃଦୟର ଶିକ୍ଷା ହେଉ ନାହିଁ, ବିଶେଷତଃ ମନଃସଂଯମର ଶକ୍ତି ମଧ୍ୟ ଖୁବ୍ ଅଳ୍ପ ପରିମାଣରେ ଅନୁଶୀଳନ କରାଯାଉ-ଅଛି । ଆପଣମାନଙ୍କୁ ସାଧୁ ଓ ଧୀରପ୍ରକୃତି କରାଇବାକୁ ଅନେକ ସମୟ ଲାଗିବ । କିନ୍ତୁ ଭାରତର ପ୍ରତ୍ୟେକ ରକ୍ତବିନ୍ଦୁରେ ଏହି ଭାବ ପ୍ରବାହିତ । ଯଦି ମୁଁ ଭାରତର କୌଣସି ଗ୍ରାମକୁ ଯାଇ ସେଠାକାର ଲୋକଙ୍କୁ ରାଜନୀତି ଶିଖାଇବାକୁ ଚାହେଁ, ସେମାନେ ବୁଝିବେ ନାହିଁ; କିନ୍ତୁ ଯଦି ସେମାନଙ୍କୁ ବେଦାନ୍ତ ଉପଦେଶ ଦିଏ, ସେମାନେ ତତ୍‌କ୍ଷଣାତ୍ କହିବେ, 'ହଁ ସ୍ୱାମିନ, ଆପଣ ଠିକ୍ କହୁଛନ୍ତି ।' ଆଜି ପର୍ଯ୍ୟନ୍ତ ଭାରତର ସର୍ବତ୍ର ସେହି ବୈରାଗ୍ୟ ବା ଅନାସକ୍ତିର ଭାବ ଦେଖିବାକୁ ମିଳେ । ଆମେମାନେ ଖୁବ୍ ପତିତ, କିନ୍ତୁ ବର୍ତ୍ତମାନ ମଧ୍ୟ ବୈରାଗ୍ୟର ପ୍ରଭାବ ଏତେ ଅଧିକ ଯେ, ରାଜ-ରାଜୁଡ଼ା ପର୍ଯ୍ୟନ୍ତ ରାଜ୍ୟତ୍ୟାଗ କରି ବିନା ସମ୍ବଳରେ ଦେଶର ଚାରିଆଡ଼େ ଘୂରି ବୁଲନ୍ତି ।

କୌଣସି କୌଣସି ସ୍ଥାନରେ ସାଧାରଣ ଗ୍ରାମ୍ୟ-ବାଳିକା ମଧ୍ୟ ଚରଖାରେ ସୂତା କାଟି କାଟି କହୁଥାଏ: ମୋତେ ଦ୍ୱୈତବାଦର କଥା କୁହ ନାହିଁ; ମୋର ଚରଖା 'ସୋଽହଂ, ସୋଽହଂ—ମୁଁ ସେହି ବ୍ରହ୍ମ, ମୁଁ ସେହି ବ୍ରହ୍ମ' କହୁଅଛି । ଏମାନଙ୍କ ସହିତ କଥା କହନ୍ତୁ, ଏବଂ ପଚାରନ୍ତୁ: 'ତୁମେମାନେ ଏହିପରି କହୁଥାଅ, ଅଥଚ ଏହି ପଥରଟାକୁ ପ୍ରଣାମ କର କାହିଁକି ?' ସେମାନେ କହିବେ, 'ଆପଣମାନେ ଧର୍ମ କହିଲେ କେବଳ ମତବାଦ ବୁଝିଥାଆନ୍ତି, କିନ୍ତୁ ଆମେମାନେ ଧର୍ମ କହିଲେ ବୁଝୁ—ପ୍ରତ୍ୟକ୍ଷ ଅନୁଭୂତି ।' ସେମାନଙ୍କ ମଧ୍ୟରେ କେହି ହୁଏତ କହିଉଠିବେ, 'ମୁଁ ସେତିକିବେଳେ ଯଥାର୍ଥ ବେଦାନ୍ତବାଦୀ ହେବି, ଯେତେବେଳେ ମୋ ସମ୍ମୁଖରୁ ସମଗ୍ର ଜଗତ ଅନ୍ତର୍ହିତ ହେବ ଏବଂ ମୁଁ ସତ୍ୟଦର୍ଶନ କରିବି । ଯେତେଦିନ ପର୍ଯ୍ୟନ୍ତ

ତାହା ନ ହୋଇଛ ସେତେଦିନଯାଏ ମୋ ସହିତ ସାଧାରଣ ଅଜ୍ଞ ବ୍ୟକ୍ତିର କୌଣସି ପ୍ରଭେଦ ନାହିଁ । ସେଥିପାଇଁ ମୁଁ ଏହିସବୁ ପ୍ରସ୍ତରମୂର୍ତ୍ତିର ଉପାସନା କରୁଅଛି, ମନ୍ଦିରକୁ ଯାଉଅଛି, ଯେପରିକି ମୋର ପ୍ରତ୍ୟକ୍ଷାନୁଭୂତି ହୁଏ । ମୁଁ ବେଦାନ୍ତ ଶ୍ରବଣ କରିଅଛି ସତ୍ୟ, କିନ୍ତୁ ମୁଁ ସେହି ବେଦାନ୍ତ-ପ୍ରତିପାଦ୍ୟ ଆତ୍ମତତ୍ତ୍ୱକୁ ପ୍ରତ୍ୟକ୍ଷ ଅନୁଭବ କରିବାକୁ ଚାହେଁ ।'

'ବାଗ୍‌ବୈଖରୀ ଶବ୍ଦଝରି ଶାସ୍ତ୍ରବ୍ୟାଖ୍ୟାନକୌଶଳମ୍ ।
ବୈଦୁଷ୍ୟଂ ବିଦୁଷାଂ ତଦ୍ୱଦ୍‌ଭୁକ୍ତୟେ ନ ତୁ ମୁକ୍ତୟେ ॥'*

—ଅନର୍ଗଳ ସଦ୍‌ବାକ୍ୟ ଯୋଜନା, ଶାସ୍ତ୍ରବ୍ୟାଖ୍ୟା କରିବାର ବିଭିନ୍ନ କୌଶଳ—ଏସବୁ କେବଳ ପଣ୍ଡିତମାନଙ୍କର ଆମୋଦ ପାଇଁ, ଏହାଦ୍ୱାରା ମୁକ୍ତି-ଲାଭର କୌଣସି ସମ୍ଭାବନା ନାହିଁ ।

ଯଦି ଆମେମାନେ ବ୍ରହ୍ମସାକ୍ଷାତ୍ କରିପାରୁ, ତେବେ ଯାଇ ମୁକ୍ତିଲାଭ ହେବ ।

ପ୍ର—ଆଧ୍ୟାତ୍ମିକ ବିଷୟରେ ସର୍ବସାଧାରଣଙ୍କର ଏହି ସ୍ୱାଧୀନତା ସହିତ ଜାତିଭେଦ ପ୍ରଥାର କଅଣ ସାମଞ୍ଜସ୍ୟ ଅଛି ?

ଉ—କଦାପି ନାହିଁ । ଲୋକେ କହିଥାଆନ୍ତି, ଜାତିଭେଦ ରହିବା ଉଚିତ ନୁହେଁ । ଏପରିକି ଯେଉଁମାନେ ବିଭିନ୍ନ ଜାତିଭୁକ୍ତ, ସେମାନେ ମଧ୍ୟ କହନ୍ତି, ଜାତି-ବିଭାଗ ଖୁବ୍ ଉଚ୍ଚକୋଟୀର ଜିନିଷ ନୁହେଁ । କିନ୍ତୁ ସେମାନେ କହନ୍ତି, ଆମମାନଙ୍କୁ ଏହା ଅପେକ୍ଷା ଉତ୍ତମ ଅନ୍ୟ କୌଣସି ଜିନିଷ ଦିଅ, ଆମେମାନେ ଏହାକୁ ଛାଡ଼ି-ଦେବୁ । ସେମାନେ କହନ୍ତି, ତୁମେମାନେ ଏହା ବଦଳରେ ଆମମାନଙ୍କୁ କଅଣ ଦେବ ? ଜାତିଭେଦ କେଉଁଠାରେ ନାହିଁ ? ତୁମେମାନେ ମଧ୍ୟ ତୁମମାନଙ୍କ ଦେଶରେ କ୍ରମାଗତ ଏହିପରି ଗୋଟିଏ ଜାତିବିଭାଗ ଗଢ଼ିବାକୁ ଚେଷ୍ଟା କରୁଅଛ । କୌଣସି ବ୍ୟକ୍ତି କିଛି ଅର୍ଥ ସଂଗ୍ରହ କରିପାରିଲେ କହେ, 'କେତେ ଶହ ଧନୀମାନଙ୍କ ମଧ୍ୟରେ ମୁଁ ଜଣେ ।' ଆମେମାନେ କେବଳ ଗୋଟିଏ ସ୍ଥାୟୀ ଜାତିବିଭାଗ ଗଠନ କରିବାକୁ ସମର୍ଥ ହୋଇଅଛୁ, ଅନ୍ୟମାନେ ଏଥିପାଇଁ ଚେଷ୍ଟା କରୁଅଛନ୍ତି; କିନ୍ତୁ ସଫଳ ହେଉ-ନାହାନ୍ତି । ଆମମାନଙ୍କ ସମାଜରେ ଅବଶ୍ୟ ଯଥେଷ୍ଟ କୁସଂସ୍କାର ଓ ମନ୍ଦ ଜିନିଷ ଅଛି । ଆପଣମାନଙ୍କର କୁସଂସ୍କାର ଓ ମନ୍ଦ ଜିନିଷଗୁଡ଼ିକ ଆମ ଦେଶରେ ଚଳାଇ ଦେଇପାରିଲେ କଅଣ ସବୁ ଠିକ୍ ହୋଇଯିବ ? ଜାତିଭେଦ ଅଛି ବୋଲି ତ ଏହି ତିରିଶକୋଟି ଲୋକ ବର୍ତ୍ତମାନ ମଧ୍ୟ ଖାଇବା ପାଇଁ ମୁଠାଏ ଅନ୍ନ ପାଉଛନ୍ତି । ଅବଶ୍ୟ ନୀତି ଦୃଷ୍ଟିରୁ ଏହା ଯେ ଅସମ୍ପୂର୍ଣ୍ଣ, ସେଥିରେ କୌଣସି ସନ୍ଦେହ ନାହିଁ । କିନ୍ତୁ ଏହି ଜାତିବିଭାଗ ନ ଥିଲେ ଆପଣମାନେ ପଢ଼ିବା ପାଇଁ ଖଣ୍ଡେ ସଂସ୍କୃତ ବହି ମଧ୍ୟ ପାଇ ନଥାନ୍ତେ । ଏହି ଜାତିବିଭାଗଦ୍ୱାରା ଏପରି ଗୋଟିଏ ଦୃଢ଼ ପ୍ରାଚୀର ସୃଷ୍ଟି ହୋଇଥିଲା

* ବିବେକଚୂଡ଼ାମଣି, ୬୦—ଶଙ୍କରାଚାର୍ଯ୍ୟ

ଯେ, ତାହା ଉପରେ ବହୁଶତାବ୍ଦୀର ଶତ ତରଙ୍ଗାଘାତ ଆସିଛି, ଅଥଚ କୌଣସି ମତେ ଏହାକୁ ଭାଙ୍ଗିପାର ନାହିଁ ! ବର୍ତ୍ତମାନ ମଧ୍ୟ ସେହି ପ୍ରୟୋଜନ ଦୂର ହୋଇ ନାହିଁ, ସେଥିପାଇଁ ଜାତିଭେଦ ବର୍ତ୍ତମାନ ମଧ୍ୟ ରହିଅଛି । ସାତଶହବର୍ଷ ପୂର୍ବେ ଯେପରି ଜାତିବିଭାଗ ଥିଲା, ବର୍ତ୍ତମାନ ଆଉ ସେପରି ନାହିଁ । ଯେତେ ଏହା ଉପରେ ଆଘାତ ଲଗିଛି, ସେତିକି ଏହା ଦୃଢ଼ତର ଆକାର ଧାରଣ କରିଅଛି । ଏହା କଅଣ ଲକ୍ଷ୍ୟ କରିଛନ୍ତି ଯେ, ଏକମାତ୍ର ଭାରତ ପରରାଷ୍ଟ୍ର-ବିଜୟ ପାଇଁ ଦେଶ ବାହାରକୁ ଯାଇ ନାହିଁ ? ମହାମତି ସମ୍ରାଟ ଅଶୋକ କହିଯାଇଛନ୍ତି ଯେ, ତାଙ୍କର ଉତ୍ତରାଧିକାରୀମାନେ କେହି ଯେପରି ପରରାଷ୍ଟ୍ର ବିଜୟର ଚେଷ୍ଟା ନ କରନ୍ତି । ଯଦି ଅପର ଜାତି ଆମମାନଙ୍କ ନିକଟକୁ ଶିକ୍ଷକ ପଠାଇବାକୁ ଚାହେଁ, ପଠାଉ, କିନ୍ତୁ ସେମାନେ ଯେପରି ଆମମାନଙ୍କୁ ବାସ୍ତବିକ ସାହାଯ୍ୟ କରନ୍ତି, ଆମମାନଙ୍କର ଜାତୀୟ ସମ୍ପତ୍ତି ରୂପ ଧର୍ମଭାବର ଅନିଷ୍ଟ ସାଧନ ନ କରନ୍ତି । ଏହିସବୁ ବିଭିନ୍ନ ଜାତି ହିନ୍ଦୁଜାତିକୁ ଜୟ କରିବାକୁ ଆସିଲେ କାହିଁକି ? ହିନ୍ଦୁମାନେ କଅଣ ଅନ୍ୟ ଜାତିର କୌଣସି ଅନିଷ୍ଟ କରିଥିଲେ ? ସେମାନେ ଯେତେଦୂର ସାଧ୍ୟ ଜଗତର ଉପକାର କରିଥିଲେ । ସେମାନେ ଜଗତକୁ ବିଜ୍ଞାନ, ଦର୍ଶନ ଓ ଧର୍ମ ଶିଖାଇଥିଲେ ଏବଂ ପୃଥିବୀର ଅନେକ ଅସଭ୍ୟ ଜାତିକୁ ସଭ୍ୟ କରିଥିଲେ । କିନ୍ତୁ ସେମାନେ ପ୍ରତିଦାନରେ ପାଇଥିଲେ କେବଳ ହତ୍ୟା, ଅତ୍ୟାଚାର ଓ 'ଅବିଶ୍ୱାସୀ ବଦମାସ୍' ଆଖ୍ୟା । ବର୍ତ୍ତମାନ କାଳରେ ମଧ୍ୟ ପାଶ୍ଚାତ୍ୟ ବ୍ୟକ୍ତିମାନଙ୍କ ଲିଖିତ ଭାରତ ସମ୍ବନ୍ଧରେ ଗ୍ରନ୍ଥାବଳୀ ଏବଂ ଭାରତ-ଭ୍ରମଣକାରୀମାନଙ୍କ ଲିଖିତ ଗଳ୍ପଗୁଡ଼ିକ ପଢ଼ନ୍ତୁ; କେଉଁ ଅନିଷ୍ଟର ପ୍ରତିଶୋଧ ନେବା ପାଇଁ ଭାରତବାସୀମାନଙ୍କ ଉପରେ ଏବେ ସୁଦ୍ଧା ଏପରି କଟୁବାକ୍ୟ ବର୍ଷଣ କରା-ହୋଇଥାଏ ?

ପ୍ର—ସଭ୍ୟତା ସମ୍ବନ୍ଧରେ ବୈଦାନ୍ତିକ ଧାରଣା କିପରି ?

ଉ—ଆପଣମାନେ ଦାର୍ଶନିକ; ଆପଣମାନଙ୍କ ମତରେ ତୋଡ଼ାଏ ଟଙ୍କା ପାଇଁ ମନୁଷ୍ୟ ମନୁଷ୍ୟ ମଧ୍ୟରେ କେବେହେଲେ ପ୍ରଭେଦ ହୋଇ ନ ପାରେ । ଏହି-ସବୁ କଳ-କାରଖାନା ଓ ଜଡ଼-ବିଜ୍ଞାନର ମୂଲ୍ୟ କ'ଣ ? ଏଗୁଡ଼ିକର ଗୋଟିଏ ମାତ୍ର ଫଳ ଏହି ଯେ, ଏମାନେ ଜ୍ଞାନର ବିସ୍ତାର କରିଥାଆନ୍ତି । ଆପଣମାନେ ଅଭାବ ବା ଦାରିଦ୍ର୍ୟ-ସମସ୍ୟା ପୂରଣ କରିପାର ନାହାନ୍ତି, ବରଂ ଅଭାବର ମାତ୍ରା ଆହୁରି ବଢ଼ାଇ-ଛନ୍ତି । କଳକବଜାରେ କେବେହେଲେ ଦାରିଦ୍ର୍ୟ-ସମସ୍ୟାର ସମାଧାନ ହୋଇ ନ ପାରେ । ଏମାନଙ୍କଦ୍ୱାରା କେବଳ ସଂଗ୍ରାମ ବଢ଼ିଥାଏ, ପ୍ରତିଯୋଗିତା ତୀବ୍ରତର ହୋଇଥାଏ । ଜଡ଼-ପ୍ରକୃତିର କଅଣ କୌଣସି ସ୍ୱତନ୍ତ୍ର ମୂଲ୍ୟ ଅଛି ? କୌଣସି ବ୍ୟକ୍ତି ଯଦି ତାର ଦେଇ ତଡ଼ିତ୍ ପ୍ରବାହ ଚଳାଇପାରେ, ଆପଣମାନେ ତା'ର ସ୍ମୃତିଚିହ୍ନ ସ୍ଥାପନ କରିବାକୁ ଉଦ୍ୟୋଗୀ ହୁଅନ୍ତି କାହିଁକି ? ପ୍ରକୃତି କ'ଣ ଲକ୍ଷ ଲକ୍ଷ ଥର ଏହି ବ୍ୟାପାର ସାଧନ କରୁନାହିଁ ? ପ୍ରକୃତିରେ କ'ଣ ପୂର୍ବରୁ ଏସବୁ ବିଦ୍ୟମାନ ନାହିଁ ?

ଏଥିରୁ ଆପଣଙ୍କର କଅଣ ଲାଭ ହେଲା ? ପ୍ରକୃତରେ ଏହା ତ ପୂର୍ବରୁ ରହିଅଛି । ତତ୍ତ୍ୱପ୍ରବାହର ଏକମାତ୍ର ମୂଲ୍ୟ ଏହି ଯେ, ଏହା ଆମମାନଙ୍କର ଉନ୍ନତି-ସାଧନ କରେ । ଏହି ଜଗତଟା ଗୋଟିଏ ବ୍ୟାୟାମଶାଳା ସଦୃଶ; ଏଠାରେ ଜୀବାତ୍ମା କର୍ମ-ଦ୍ୱାରା ଉତ୍କର୍ଷ ସାଧନ କରୁଅଛି ଏବଂ ଏହି ଉତ୍କର୍ଷ-ସାଧନଦ୍ୱାରା ଆମେମାନେ ଦେବତା ହେଉ । ସୁତରାଂ କେଉଁ ବିଷୟରେ ଭଗବାନଙ୍କର କେତେଟା ପ୍ରକାଶ ତାହା ଜାଣି ପ୍ରତ୍ୟେକ ବିଷୟର ମୂଲ୍ୟ ବା ସାରବତ୍ତା ନିର୍ଦ୍ଧାରଣ କରିବାକୁ ହେବ । ମନୁଷ୍ୟ ମଧ୍ୟରେ ଈଶ୍ୱରତ୍ୱର ଏହି ପ୍ରକାଶ ହିଁ ସଭ୍ୟତା ।

ପ୍ର—ବୌଦ୍ଧମାନଙ୍କର କଅଣ କୌଣସି ଜାତି-ବିଭାଗ ଅଛି ?

ଉ—ବୌଦ୍ଧମାନଙ୍କର କୌଣସି ଜାତିବିଭାଗ ନ ଥିଲା । ଭାରତରେ ବୌଦ୍ଧ-ମାନଙ୍କ ସଂଖ୍ୟା ଅତି ଅଳ୍ପ । ବୁଦ୍ଧ ଜଣେ ସମାଜ-ସଂସ୍କାରକ ଥିଲେ । ମୁଁ ବୌଦ୍ଧ-ଦେଶସମୂହରେ ଦେଖିଛି, ସେଠାରେ ଜାତିବିଭାଗ ସୃଷ୍ଟି କରିବା ପାଇଁ ପ୍ରବଳ ଚେଷ୍ଟା ସତ୍ତ୍ୱେ ଏହା ସଫଳ ହୋଇନାହିଁ । ବୌଦ୍ଧମାନଙ୍କର ଜାତିବିଭାଗ କାର୍ଯ୍ୟତଃ କିଛି ନୁହେଁ, କିନ୍ତୁ ସେମାନେ ନିଜକୁ ଉଚ୍ଚଜାତି ବୋଲି ଗର୍ବ କରିଥାଆନ୍ତି ।

ବୁଦ୍ଧ ଅନ୍ୟତମ ବେଦାନ୍ତବାଦୀ ସନ୍ନ୍ୟାସୀ ଥିଲେ । କେବଳ ସେ ଗୋଟିଏ ନୂତନ ସମ୍ପ୍ରଦାୟ ସ୍ଥାପନ କରିଥିଲେ, ଯେପରି ଆଜିକାଲି ହୋଇଥାଏ । ଯେଉଁସବୁ ଭାବ ବର୍ତ୍ତମାନ ବୌଦ୍ଧଧର୍ମ ବୋଲି ଅଭିହିତ, ସେଗୁଡ଼ିକ ତାଙ୍କର ନିଜସ୍ୱ ନୁହେଁ । ସେଗୁଡ଼ିକ ଅତି ପ୍ରାଚୀନ । ସେ ଜଣେ ମହାପୁରୁଷ ଥିଲେ ଏବଂ ଭାବଗୁଡ଼ିକ ମଧ୍ୟରେ ଶକ୍ତି-ସଞ୍ଚାର କରିଥିଲେ । ବୌଦ୍ଧଧର୍ମର ନୂତନତ୍ୱ ଏହାର ସାମାଜିକ ଭାଗ । ବ୍ରାହ୍ମଣ ଓ କ୍ଷତ୍ରିୟମାନେ ଚିରଦିନ ଆମ ସମାଜରେ ଆଚାର୍ଯ୍ୟର ଆସନ ଅଧିକାର କରି ଆସି-ଅଛନ୍ତି; ଅଧିକାଂଶ ଉପନିଷଦ୍ କ୍ଷତ୍ରିୟମାନଙ୍କଦ୍ୱାରା ଲିଖିତ ଏବଂ ବେଦର କର୍ମକାଣ୍ଡ ବ୍ରାହ୍ମଣମାନଙ୍କର କୀର୍ତ୍ତି । ସମଗ୍ର ଭାରତରେ ଯେଉଁମାନେ ମହାନ୍ ଆଚାର୍ଯ୍ୟ ହୋଇ-ଛନ୍ତି, ସେମାନଙ୍କ ମଧ୍ୟରେ ଅନେକେ କ୍ଷତ୍ରିୟ ଥିଲେ; ସେମାନଙ୍କର ଉପଦେଶ ମଧ୍ୟ ଉଦାର ଓ ସାର୍ବଜନୀନ; କିନ୍ତୁ ଦୁଇଜଣଙ୍କ ବ୍ୟତୀତ ବ୍ରାହ୍ମଣ ଆଚାର୍ଯ୍ୟଗଣ ଅନୁଦାର-ଭାବାପନ୍ନ । ଭଗବାନଙ୍କର ଅବତାର ବୋଲି ପୂଜିତ ରାମ, କୃଷ୍ଣ ଓ ବୁଦ୍ଧ—ଏମାନେ ସମସ୍ତେ କ୍ଷତ୍ରିୟ ଥିଲେ ।

ପ୍ର—ସମ୍ପ୍ରଦାୟ, ଅନୁଷ୍ଠାନ ଓ ଶାସ୍ତ୍ର କ'ଣ ତତ୍ତ୍ୱସାକ୍ଷାତ୍କାରର ସହାୟକ ?

ଉ—ତତ୍ତ୍ୱ-ସାକ୍ଷାତ୍କାର ହେଲେ ମନୁଷ୍ୟ ସବୁ ଛାଡ଼ିଦିଏ । ସମ୍ପ୍ରଦାୟ, ଅନୁଷ୍ଠାନ ଓ ଶାସ୍ତ୍ର ଯେତେଦୂର ସେହି ଅବସ୍ଥାରେ ପହଞ୍ଚିବାରେ ସାହାଯ୍ୟ କରନ୍ତି, ସେତେଦୂର ଏମାନଙ୍କର ଉପକାରିତା ଅଛି । କିନ୍ତୁ ଯେତେବେଳେ ଏହି ସାହାଯ୍ୟ ନ ମିଳେ, ସେତେବେଳେ ଏମାନଙ୍କର ପରିବର୍ତ୍ତନ ସାଧନ କରିବାକୁ ହେବ ।

'ନ ବୁଦ୍ଧିଭେଦଂ ଜନୟେଦଜ୍ଞାନାଂ କର୍ମସଙ୍ଗିନାମ୍ ।

ଯୋଜୟେତ୍ ସର୍ବକର୍ମାଣି ବିଦ୍ୱାନ୍ ଯୁକ୍ତଃ ସମାଚରନ୍ ॥'*
'ସକ୍ତାଃ କର୍ମଣ୍ୟବିଦ୍ୱାଂସୋ ଯଥା କୁର୍ବନ୍ତି ଭାରତ ।
କୁର୍ଯାଦ୍ ବିଦ୍ୱାନ୍ ତଥାସକ୍ତଶ୍ଚିକୀର୍ଷୁର୍ଲୋକସଂଗ୍ରହମ୍ ॥'**

—ଜ୍ଞାନୀ ବ୍ୟକ୍ତି ଅଜ୍ଞାନୀମାନଙ୍କ ଅବସ୍ଥା ପ୍ରତି ଘୃଣା ପ୍ରଦର୍ଶନ କରିବେ ନାହିଁ, କିମ୍ବା ସେମାନଙ୍କର ନିଜ ନିଜର ସାଧନ-ପ୍ରଣାଳୀରେ ତାଙ୍କର ବିଶ୍ୱାସ ନଷ୍ଟ କରିବେ ନାହିଁ । ସେମାନେ ଯଥାର୍ଥ ଭାବରେ ତାଙ୍କୁ ପରିଚାଳିତ କରିବେ, ଏବଂ ସେ ସ୍ୱୟଂ ଯେଉଁ ଅବସ୍ଥାରେ ଅଛନ୍ତି, ସେହି ଅବସ୍ଥାରେ ପହଞ୍ଚିବାର ପଥ ପ୍ରଦର୍ଶନ କରିବେ ।

ପ୍ର—'ମୁଁ'-ତ୍ୱ ଓ 'ଗୃହସଂଗୀତ'—ବେଦାନ୍ତ କିପରି ବ୍ୟାଖ୍ୟା କରିଥାଏ ?

ଉ—ପ୍ରକୃତ 'ମୁଁ'-ତ୍ୱ ସେହି ପୂର୍ଣ୍ଣବ୍ରହ୍ମ—ମାୟାଦ୍ୱାରା ଏହା ପୃଥକ୍ ପୃଥକ୍ ବ୍ୟକ୍ତିର ଆକାର ଧାରଣ କରିଅଛି । ଆପାତତଃ ଏହିପରି ବୋଧ ହେଉଅଛି ମାତ୍ର, ପ୍ରକୃତ ପକ୍ଷରେ ଏହା ସର୍ବଦା ସେହି ପୂର୍ଣ୍ଣବ୍ରହ୍ମସ୍ୱରୂପ । ପ୍ରକୃତ ପକ୍ଷରେ ଏକ ସତ୍ତା ବର୍ତ୍ତମାନ—ମାୟାଦ୍ୱାରା ଏହା ବିଭିନ୍ନ ରୂପରେ ପ୍ରତୀୟମାନ ହେଉଅଛି । ମାୟା-ଦ୍ୱାରା ଏହିପରି ଭେଦବୋଧ ହୋଇଅଛି । କିନ୍ତୁ ଏହି ମାୟା ଭିତରେ ମଧ୍ୟ ସର୍ବଦା ସେହି 'ଏକ' ଆଡ଼କୁ ଫିରିବାର ଚେଷ୍ଟା ରହିଅଛି । ପ୍ରତ୍ୟେକ ଜାତିର ଗୃହସଂଗୀତ ଭିତରେ ଏହି ଚେଷ୍ଟା ଅଭିବ୍ୟକ୍ତ ହୋଇଅଛି, କାରଣ ଏହା ଜୀବାତ୍ମାର ପ୍ରକୃତିଗତ ପ୍ରୟୋଜନ । ଏହିପରି ଚେଷ୍ଟାଦ୍ୱାରା ସେ ସେହି ଏକତ୍ୱ ଲାଭ କରୁଅଛି ଏବଂ ଏକତ୍ୱ-ଲାଭର ଏହି ଚେଷ୍ଟାକୁ ହିଁ ଆମେମାନେ ଗୃହସଂଗୀତ କହିଥାଉଁ । ଅତଏବ ଆମେ-ମାନେ ସର୍ବଦା ନୀତିପରାୟଣ ହେବା ଉଚିତ ।

ପ୍ର—ଗୃହସଂଗୀତର ଅଧିକାଂଶ କ'ଣ ବିଭିନ୍ନ ବ୍ୟକ୍ତିର ସମ୍ବନ୍ଧ ନେଇ ବ୍ୟାପୃତ ନୁହେଁ ?

ଉ—ଗୃହସଂଗୀତ ଏହା ହିଁ । ପୂର୍ଣ୍ଣବ୍ରହ୍ମ କେବେହେଲେ ମାୟାର ଗଣ୍ଡି ଭିତରକୁ ଆସିପାରନ୍ତି ନାହିଁ ।

ପ୍ର—ଆପଣ କହନ୍ତି, 'ମୁଁ ହିଁ ସେହି ପୂର୍ଣ୍ଣବ୍ରହ୍ମ'; ମୁଁ ଆପଣଙ୍କୁ ପ୍ରଶ୍ନ କରିବାକୁ ଯାଉଥିଲି, ଏହି 'ମୁଁ'ର ଜ୍ଞାନ ଅଛି କି ନାହିଁ ?

ଉ—'ମୁଁ'—ସେହି ପୂର୍ଣ୍ଣବ୍ରହ୍ମର ପ୍ରକାଶ ମାତ୍ର । ଏହି ବ୍ୟକ୍ତ ଅବସ୍ଥାରେ ସେଥିରେ ଯେଉଁ ପ୍ରକାଶ-ଶକ୍ତି କାର୍ଯ୍ୟ କରେ, ତାହାକୁ ହିଁ ଆମେମାନେ 'ଜ୍ଞାନ' କହୁ । ଅତଏବ ସେହି ପୂର୍ଣ୍ଣବ୍ରହ୍ମଙ୍କର ଜ୍ଞାନସ୍ୱରୂପରେ 'ଜ୍ଞାନ' ଶବ୍ଦର ପ୍ରୟୋଗ ଯଥାଯଥ ନୁହେଁ; କାରଣ ପୂର୍ଣ୍ଣାବସ୍ଥା ଆପେକ୍ଷିକ ଜ୍ଞାନର ଅତୀତ ।

ପ୍ର—ଆପେକ୍ଷିକ ଜ୍ଞାନ କ'ଣ ପୂର୍ଣ୍ଣ ଜ୍ଞାନର ଅନ୍ତର୍ଗତ ?

* ଗୀତା, ୩।୨୬
** ଗୀତା, ୩।୨୫

ଉ—ହଁ, ଏକ ଦୃଷ୍ଟିରେ ଆପେକ୍ଷିକ ଜ୍ଞାନକୁ ପୂର୍ଣ୍ଣ ଜ୍ଞାନର ଅନ୍ତର୍ଗତ କୁହାଯାଇପାରେ । ଯେପରି ଗୋଟିଏ ମୋହର ଭଙ୍ଗାଇ ସେଥିରୁ ପଇସା, ସୁକି, ଦୋଅଣି, ଟଙ୍କା ପ୍ରଭୃତି ସବୁପ୍ରକାର ମୁଦ୍ରା ପ୍ରସ୍ତୁତ କରିହୁଏ, ସେହିପରି ସେହି ପୂର୍ଣ୍ଣ ଅବସ୍ଥାରୁ ସବୁପ୍ରକାର ଜ୍ଞାନ ଲାଭ କରାଯାଇପାରେ । ଏହା ଅତିଚେତନ, ଜ୍ଞାନାତୀତ ବା ପୂର୍ଣ୍ଣଜ୍ଞାନାବସ୍ଥା—ସାଧାରଣ ଜ୍ଞାନ ଓ ଅଜ୍ଞାନ ଉଭୟେ ଏହାର ଅନ୍ତର୍ଗତ । ଯେଉଁ ବ୍ୟକ୍ତି ଏହି ଅବସ୍ଥାଲାଭ କରନ୍ତି, ଆମମାନଙ୍କର ପରିଚିତ 'ଜ୍ଞାନାବସ୍ଥା' ମଧ୍ୟ ତାଙ୍କର ଥାଏ । ଯେତେବେଳେ ସେ ଜ୍ଞାନର ଏହି ଅବସ୍ଥା, ଅର୍ଥାତ୍ ଆମମାନଙ୍କର ସାଧାରଣ ଜ୍ଞାନାବସ୍ଥା ଅନୁଭବ କରିବାକୁ ଇଚ୍ଛା କରନ୍ତି, ସେତେବେଳେ ତାଙ୍କୁ ଗୋଟିଏ ପାହାଚ ଓହ୍ଲାଇ ଆସିବାକୁ ହୁଏ । ଏହି ସାଧାରଣ ଜ୍ଞାନ ଗୋଟିଏ ନିମ୍ନତର ଅବସ୍ଥା—ମାୟା ଭିତରେ ହିଁ କେବଳ ଏହିପରି ଜ୍ଞାନ ହେବା ସମ୍ଭବ ।

## ପ୍ରଶ୍ନୋତ୍ତର ଓ ଆଲୋଚନାର ଅଂଶ

[ ୧୮୯୬ ଖ୍ରୀଷ୍ଟାବ୍ଦ ୨୨ ଓ ୨୪ ମାର୍ଚ୍ଚ ହାର୍ଭାର୍ଡ଼ ବିଶ୍ୱବିଦ୍ୟାଳୟର ଗ୍ରାଜୁଏଟ୍‌ମାନଙ୍କର ଅପରାହ୍ଣ ବୈଠକରେ ହୋଇଥିବା ପ୍ରଶ୍ନୋତ୍ତରରୁ ଗୃହୀତ । ସ୍ୱାମୀଜୀଙ୍କ ଅପ୍ରକାଶିତ ବକ୍ତୃତା ଓ ଆଲୋଚନାରୁ ମଧ୍ୟ କେତେକାଂଶ ସଂଯୋଜିତ ହୋଇଅଛି । ]

୧ । ବେଦର ଯେତିକି ଅଂଶ ଯୁକ୍ତି ବିଚାରସମ୍ମତ, ବ୍ୟକ୍ତିଗତ ଭାବେ ମୁଁ ସେତିକି ମାତ୍ର ଗ୍ରହଣ କରେ । ବେଦର କୌଣସି କୌଣସି ଅଂଶ ସ୍ପଷ୍ଟ ଭାବରେ ପରସ୍ପର-ବିରୋଧୀ । ବେଦସମୂହ ପାଶ୍ଚାତ୍ୟ ଅର୍ଥରେ 'ପ୍ରତ୍ୟାଦିଷ୍ଟ' ନୁହେଁ, ସେଗୁଡ଼ିକ ଜ୍ଞାନସମଷ୍ଟି ବୋଲି ସର୍ବଜ୍ଞାନ । ଏହି ଜ୍ଞାନ କଳ୍ପାରମ୍ଭ ହେଲେ ଆତ୍ମପ୍ରକାଶ କରେ ଏବଂ କଳ୍ପ ଶେଷ ହେଲେ ଅବ୍ୟକ୍ତ ହୁଏ । ଯେତେବେଳେ କଳ୍ପ ପୁନଃପ୍ରକାଶିତ ହୁଏ, ସେହି ଜ୍ଞାନ ମଧ୍ୟ କଳ୍ପ ସହିତ ପ୍ରକାଶିତ ହୁଏ । ଏତେଦୂରଯାଏ ତତ୍ତ୍ୱଟି ଠିକ୍ ଅଛି । କିନ୍ତୁ କେବଳ ବେଦ-ନାମକ ଶାସ୍ତ୍ରଗ୍ରନ୍ଥଗୁଡ଼ିକରେ ଏହିସବୁ ଜ୍ଞାନ ଅଛି—ଏ କଥା ଯୁକ୍ତିଯୁକ୍ତ ନୁହେଁ । ମନୁ କହିଛନ୍ତି, ବେଦର ଯେଉଁ ଅଂଶ ଯୁକ୍ତି-ବିଚାରସମ୍ମତ ସେହି ଅଂଶ ହିଁ ବେଦ, ବାକିତକ ନୁହେଁ । ଆମର ଅଧିକାଂଶ ଦାର୍ଶନିକଗଣ ଏହି ମତପୋଷଣ କରନ୍ତି ।

୨ । ଅଦ୍ୱୈତ-ଦର୍ଶନ ବିରୋଧରେ ଯାବତୀୟ ସମାଲୋଚନା ଏହି କେତୋଟି କଥାରେ କୁହାଯାଏ : ଏହି ଦର୍ଶନ ଇନ୍ଦ୍ରିୟଭୋଗର ସହାୟକ ନୁହେଁ । ଆମେ ଆନନ୍ଦ ସହକାରେ ଏହା ସ୍ୱୀକାର କରୁ ।

୩ । ବେଦାନ୍ତମତର ଆରମ୍ଭ ପ୍ରଚଣ୍ଡ ଦୁଃଖବାଦରୁ ଏବଂ ସମାପ୍ତି ହୁଏ ପ୍ରକୃତ ଆଶାବାଦରେ । ଆମେ ଇନ୍ଦ୍ରିୟ-କେନ୍ଦ୍ରିକ ଆଶାବାଦ ଅସ୍ୱୀକାର କରୁ, କିନ୍ତୁ ଅତୀନ୍ଦ୍ରିୟ ସତ୍ୟ-କେନ୍ଦ୍ରିକ ଆଶାବାଦ ସ୍ୱୀକାର କରିଥାଉ । ଆମେ ବିଶ୍ୱାସ କରୁ ଯେ, ପ୍ରକୃତ ସୁଖ ଇନ୍ଦ୍ରିୟ-ସମ୍ଭୋଗରେ ନାହିଁ; ତାହା କେବଳ ଅତୀନ୍ଦ୍ରିୟ ଅବସ୍ଥାରେ ଅଛି ଏବଂ ସମସ୍ତଙ୍କ ମଧ୍ୟରେ ସେହି ପ୍ରକୃତ ସୁଖ ରହିଛି । ସଂସାରରେ ଆମେ ଯେଉଁ ଧରଣର ଆଶାବାଦ ଲକ୍ଷ୍ୟ କରୁ, ତାହା ଇନ୍ଦ୍ରିୟ-କେନ୍ଦ୍ରିକ ଓ ତାହା ମନୁଷ୍ୟକୁ ବିନାଶ ଦିଗକୁ ନେଇଯାଏ ।

୪ । ଦର୍ଶନଶାସ୍ତ୍ରରେ ଆତ୍ମତ୍ୟାଗର ଗୁରୁତ୍ୱ ସର୍ବାଧିକ । ଏହି ତ୍ୟାଗର ଅର୍ଥ ଆମମାନଙ୍କ ଯଥାର୍ଥ ସ୍ୱରୂପକୁ ସ୍ୱୀକାର କରିବା । ଇନ୍ଦ୍ରିୟଗ୍ରାହ୍ୟ ଜଗତକୁ ଅସ୍ୱୀକାର କରେ ବୋଲି ଏହି ତ୍ୟାଗ ଦୁଃଖବାଦାତ୍ମକ, କିନ୍ତୁ ପ୍ରକୃତ ଜଗତକୁ ଗ୍ରହଣ କରିଥିବାରୁ ଏହା ଆଶାବାଦୀ ।

୫ । ପୃଥିବୀର ଧର୍ମଗ୍ରନ୍ଥଗୁଡ଼ିକ ମଧ୍ୟରୁ ଏକମାତ୍ର ବେଦ ହିଁ ଘୋଷଣା କରେ ଯେ ବେଦାଧ୍ୟୟନ ମଧ୍ୟ ଗୌଣ । ସେହି ବିଦ୍ୟା ହେଲା ପରାବିଦ୍ୟା, ଯାହାଦ୍ୱାରା ଆମେ ଅକ୍ଷର ବା ବ୍ରହ୍ମଙ୍କୁ ଉପଲବ୍ଧି କରିଥାଉ ।* ସେହି ବିଦ୍ୟା କେବଳ ବେଦପାଠରେ ସୀମାବଦ୍ଧ ନୁହେଁ, କେବଳ ବିଶ୍ୱାସ ବା ବିଚାର ନୁହେଁ—ଏହା ଅତୀନ୍ଦ୍ରିୟ ଅନୁଭୂତି ବା ସମାଧି ।

୬ । **ମାୟାର କାରଣ କ'ଣ ?**—ଗତ ତିନିହଜାର ବର୍ଷ ଧରି ଏହି ପ୍ରଶ୍ନଟି ଜିଜ୍ଞାସିତ ହେଉଅଛି । ଏହାର ଏକମାତ୍ର ଉତ୍ତର : ଯେତେବେଳେ ଯୁକ୍ତିସଙ୍ଗତ ଭାବରେ ପ୍ରଶ୍ନଟି ଉତ୍ଥାପିତ ହେବ, ସେତେବେଳେ ଯାଇ ଆମେ ଏହାର ଉତ୍ତର ଦେବୁ । ପ୍ରଶ୍ନଟି ସ୍ୱବିରୋଧୀ । ଆମର ବକ୍ତବ୍ୟ ଏହି ଯେ, ପରଂବ୍ରହ୍ମ ସ୍ୱୟଂ ଆପେକ୍ଷିକ ଜଗତରେ ପରିଣତ ହୋଇଛନ୍ତି । ସେହି ନିତ୍ୟମୁକ୍ତ ବ୍ରହ୍ମ ମାୟାକୁ ଅବଲମ୍ବନ କରି ଆପାତଦୃଷ୍ଟିରୁ କାର୍ଯ୍ୟକାରଣରେ ବଦ୍ଧ ହୋଇଛନ୍ତି । ଯେତେବେଳେ ସ୍ୱୀକାର କରାଯାଇଅଛି ଯେ, ବ୍ରହ୍ମ ନିତ୍ୟମୁକ୍ତ, ସେତେବେଳେ ଏହା ସ୍ୱତଃସିଦ୍ଧ ଯେ, ପରଂବ୍ରହ୍ମ ନିଷ୍କ୍ରିୟ । ବ୍ରହ୍ମ କାରଣାତୀତ । ଏହାର ଅର୍ଥ—ବ୍ରହ୍ମ ବ୍ୟତୀତ ଅନ୍ୟ କିଛି ବ୍ରହ୍ମଙ୍କ ଉପରେ କ୍ରିୟା କରି ନ ପାରେ । ପ୍ରଥମତଃ ବ୍ରହ୍ମ ଯଦି କାରଣାତୀତ ହୁଅନ୍ତି, ତେବେ ଅନ୍ୟ କିଛି ତାଙ୍କ ଉପରେ କ୍ରିୟା କରି ନ ପାରେ । ନିତ୍ୟମୁକ୍ତ ବ୍ରହ୍ମ ଦେଶ, କାଳ ଓ ନିମିତ୍ତର ଊର୍ଦ୍ଧ୍ୱରେ । ଏହା ସ୍ୱୀକାର କଲେ ପ୍ରଶ୍ନଟି ହେବ : ଯାହାର କୌଣସି କାରଣ ନାହିଁ, ତାହାର ପୁଣି କାରଣ କ'ଣ ହୋଇପାରେ ? ତାହା କିପରି ଭାବରେ ପରିବର୍ତ୍ତିତ ହେଲା ? କାର୍ଯ୍ୟକାରଣରୂପକ ଜଗତରେ ହିଁ ଏପରି ପ୍ରଶ୍ନ ସମ୍ଭବ । ତୁମେ କିନ୍ତୁ ଏ ପ୍ରଶ୍ନ କରିବାକୁ ଇଚ୍ଛୁକ । ଯେତେବେଳେ ପରଂବ୍ରହ୍ମ କାର୍ଯ୍ୟକାରଣାତ୍ମକ

---

* ମୁଣ୍ଡକ ଉପ., ୧।୧।୫

ଜଗତକୁ ରୂପାନ୍ତରିତ ହୁଅନ୍ତି ଏବଂ ଦେଶ-କାଳ-ନିମିତ୍ତର ଆବିର୍ଭାବ ହୁଏ, ସେତିକିବେଳେ କେବଳ ଏ ପ୍ରଶ୍ନ କରାଯାଇପାରେ । ଆମେ ଏତିକି ମାତ୍ର କହିପାରୁ ଯେ, ଅବିଦ୍ୟା ହିଁ ଭ୍ରମ ସୃଷ୍ଟି କରେ । ବ୍ରହ୍ମଙ୍କ ଉପରେ କୌଣସି କ୍ରିୟା ସମ୍ଭବ ନୁହେଁ—ତେଣୁ ଏ ପ୍ରଶ୍ନ ଅର୍ଥହୀନ ।

ଆମେ ଜାଣୁନା ବା ଆମେ ଅଜ୍ଞ, ତାହା ନୁହେଁ; ବ୍ରହ୍ମ ଜ୍ଞାନର ଅତୀତ ଏବଂ ତାଙ୍କୁ ଜ୍ଞାନ-ରାଜ୍ୟକୁ ଆଣିହୁଏ ନାହିଁ । 'ମୁଁ ଜାଣେ ନାହିଁ'—ଏହି କଥାକୁ ଦୁଇଟି ଅର୍ଥରେ ବ୍ୟବହାର କରାହୁଏ । ଏକ ଦୃଷ୍ଟିରୁ ଏହାର ଅର୍ଥ ଏହି ଯେ, ଆମେ ଜ୍ଞାନର ନିମ୍ନ ସ୍ତରରେ ଅଛୁ ଏବଂ ଏହାର ଅନ୍ୟ ଅର୍ଥ ହେଲା, ଏହି ବସ୍ତୁ ଜ୍ଞାନର ଊର୍ଦ୍ଧ୍ୱରେ ଅବସ୍ଥିତ । ରଞ୍ଜନରଶ୍ମି ବର୍ତ୍ତମାନ ସୁବିଦିତ; ଏହାର କାରଣ ସମ୍ବନ୍ଧରେ ବିମତ ଅଛି, କିନ୍ତୁ ଆମେ ନିଶ୍ଚୟ ଦିନେ ଏହାର କାରଣ ଜାଣିପାରିବୁ । ରଞ୍ଜନରଶ୍ମି ସମ୍ବନ୍ଧରେ ଆମେ କହିପାରୁ ଯେ, ଏହାର କାରଣ ଆମକୁ ଜଣା ନାହିଁ । କିନ୍ତୁ ବ୍ରହ୍ମଙ୍କୁ ଆମେ ଜାଣିପାରୁ ନାହିଁ । ରଞ୍ଜନରଶ୍ମି ବିଷୟରେ ଏବେ ସୁଦ୍ଧା ଆମେ କିଛି ଜାଣି-ନାହୁଁ —ଯଦିଓ ତାହା ଜ୍ଞାନର ଅନ୍ତର୍ଗତ । କିନ୍ତୁ ବ୍ରହ୍ମ ପରୋକ୍ଷ ଜ୍ଞାନର ଏତେ ଊର୍ଦ୍ଧ୍ୱରେ ଯେ, ସେ କେବେହେଲେ ଜ୍ଞେୟ ହୋଇ ନ ପାରନ୍ତି । ଜ୍ଞାତା କ'ଣ ଜ୍ଞେୟ ହୋଇପାରନ୍ତି ?[୧] ତୁମେ ସର୍ବଦା ପୂର୍ଣ୍ଣ; ତୁମେ ନିଜକୁ ବିଷୟୀଭୂତ କରିପାରିବ ନାହିଁ । ଅମୃତତ୍ୱ ପ୍ରମାଣ କରିବା ପାଇଁ ଏହି ଯୁକ୍ତି ଆମ ଦାର୍ଶନିକମାନେ ବ୍ୟବହାର କରନ୍ତି : ଯଦି ମୁଁ ଚିନ୍ତା କରିବାକୁ ଚେଷ୍ଟା କରେ ଯେ, ମୁଁ ମୃତଦେହ ପଡ଼ି ରହିଛି, ତେବେ ମୋତେ କ'ଣ କଳ୍ପନା କରିବାକୁ ହେବ ? ମୁଁ ଛିଡ଼ାହୋଇ ନିଜକୁ ଦେଖି-ଅଛି ଯେ, ଗୋଟିଏ 'ମୃତ ଦେହ' ପଡ଼ିଛି । ଅତଏବ ମୁଁ ନିଜକୁ ମୋ ଦର୍ଶନର ବିଷୟୀଭୂତ କରିପାରିବି ନାହିଁ ।

୭ । **କ୍ରମବିକାଶ :** ଆକାଶ ଓ ପ୍ରାଣର ସ୍ଥୂଳ ବିକାଶରେ ଅଭିକ୍ଷେପ ଓ ସେମାନଙ୍କର ସୂକ୍ଷ୍ମ ଅବସ୍ଥାକୁ ପ୍ରତ୍ୟାବର୍ତ୍ତନ—ଏହି ବିଷୟରେ ଭାରତୀୟ ଚିନ୍ତା ଓ ଆଧୁନିକ ବିଜ୍ଞାନ ମଧ୍ୟରେ ଅନେକ ସାଦୃଶ୍ୟ ଅଛି । ଆଧୁନିକ ବିଜ୍ଞାନରେ କୌଣସି ପଦାର୍ଥର ଅଭିବ୍ୟକ୍ତି ସମ୍ବନ୍ଧରେ ଯେପରି ନିଜସ୍ୱ ମତ ଅଛି, ଯୋଗୀମାନଙ୍କର ମଧ୍ୟ ସେହିପରି ଅଛି । କିନ୍ତୁ ମୋ ମତରେ, ଯୋଗୀମାନଙ୍କ ଅଭିବ୍ୟକ୍ତିର ବ୍ୟାଖ୍ୟା ଅଧିକ-ତର ଯୁକ୍ତିସଙ୍ଗତ । 'ପ୍ରକୃତିର ଆପୂରଣଦ୍ୱାରା ଗୋଟିଏ ପ୍ରଜାତି ଅନ୍ୟ ପ୍ରଜାତିରେ ପରିଣତ ହୁଏ ।'[୨] ମୂଳ ଭାବଟି ହେଉଛି—ଆମେ ଗୋଟିଏ ପ୍ରଜାତିରୁ ଅନ୍ୟ ପ୍ରଜାତିରେ ପରିଣତ ହେଉଅଛୁ ଏବଂ ମନୁଷ୍ୟ ହିଁ ଶ୍ରେଷ୍ଠ ପ୍ରଜାତି । 'କୃଷୀ ଭୂମିସିଞ୍ଚନ କରିବା'ର ଉପମାଦ୍ୱାରା ପତଞ୍ଜଳି ପ୍ରକୃତିର ଆପୂରଣ ବ୍ୟାଖ୍ୟା କରିଛନ୍ତି ।[୩] ଆମର

---

୧ ବୃହଦାରଣ୍ୟକ ଉପ., ୨।୪।୧୪; ୪।୧୫

୨ ଜାତ୍ୟନ୍ତରପରିଣାମଃ ପ୍ରକୃତ୍ୟାପୂରାତ୍ ।—ଯୋଗସୂତ୍ର, କୈବଲ୍ୟପାଦ, ୨

୩ ନିମିତ୍ତମପ୍ରୟୋଜକଂ ପ୍ରକୃତୀନାଂ ବରଣଭେଦସ୍ତୁ ତତଃ କ୍ଷେତ୍ରିକବତ୍ ।—''୩

ଶିକ୍ଷା ଓ ପ୍ରଗତିର ଏକମାତ୍ର ଲକ୍ଷ୍ୟ ହେଉଛି ଅନ୍ତରାୟଗୁଡ଼ିକୁ ଅପସାରିତ କରିବା, ଯେପରିକି ଆପେ ଈଶ୍ୱରତ୍ୱ ବିକଶିତ ହେବ । ଏହାଦ୍ୱାରା କିନ୍ତୁ ଜୀବନ-ସଂଗ୍ରାମର ମତବାଦ ଖଣ୍ଡିତ ହୁଏ । ଜୀବନରେ ଦୁଃଖକର ଅଭିଜ୍ଞତାଗୁଡ଼ିକ ଆସିଥାଏ ଓ ଏଗୁଡ଼ିକୁ ପୂର୍ଣ୍ଣଭାବରେ ଅପସାରିତ କରାଯାଏ । କ୍ରମବିକାଶ ପାଇଁ ଅଭିଜ୍ଞତାର ପ୍ରୟୋଜନ ନାହିଁ । ଏଗୁଡ଼ିକ ନ ଥିଲେ ମଧ୍ୟ ଆମମାନଙ୍କର ଅଗ୍ରଗତି ହେବ, କାରଣ ବସ୍ତୁର ସ୍ୱଭାବ ହେଲା ବିକଶିତ ହେବା । ଗତିବେଗ ବା ପ୍ରେରଣ (momentum) ବାହାରୁ ନୁହେଁ, ବରଂ ଭିତରୁ ଆସିଥାଏ । ପ୍ରତ୍ୟେକ ଜୀବାତ୍ମା ଭିତରେ ପୂର୍ବରୁ ହିଁ କୁଣ୍ଡଳୀକୃତ ହୋଇ ସାର୍ବଜନୀନ ଅଭିଜ୍ଞତାର ସମଷ୍ଟି ରହିଛି ଓ ଏହିସବୁ ଅଭିଜ୍ଞତା ମଧ୍ୟରୁ ଯେଉଁଗୁଡ଼ିକ ପ୍ରକାଶର ଅନୁକୂଳ ପରିସ୍ଥିତି ପାଇବ, ସେହିଗୁଡ଼ିକ ହିଁ ପ୍ରକାଶିତ ହେବ ।

ସୁତରାଂ ବାହାରର ବସ୍ତୁଗୁଡ଼ିକ ଆମମାନଙ୍କ ପାଇଁ ପ୍ରୟୋଜନୀୟ ଆବେଷ୍ଟନୀ ମାତ୍ର ପ୍ରସ୍ତୁତ କରିଥାଏ । ଯେଉଁ ସକଳ ପ୍ରତିଯୋଗିତା, ସଂଗ୍ରାମ ଏବଂ ଅଶୁଭ ଆମେ ଦେଖିଥାଉ, ସେଗୁଡ଼ିକ କ୍ରମସଂକୋଚନର ଫଳ ବା କାରଣ ନୁହେଁ । ସେଗୁଡ଼ିକ ଆମ ଜୀବନରେ ଆସିଥାଏ । ସେଗୁଡ଼ିକ ନ ଥିଲେ ମଧ୍ୟ ମନୁଷ୍ୟ ଅଗ୍ରସର ହେବ ଓ ନିଜ ଦେବଭାବ ବିକଶିତ କରିବ । କାରଣ ଦେବଭାବ ଆପେ ପ୍ରକାଶିତ ହୋଇଥାଏ । ପ୍ରତିଯୋଗିତାର ଭୟାବହ ମତବାଦ ତୁଳନାରେ ଏହି ଭାବଟି ଅତି ଆଶାପ୍ରଦ ବୋଲି ମନେହୁଏ । ମୁଁ ଯେତେ ଇତିହାସ ଅଧ୍ୟୟନ କରେ, ମୋର ସେତିକି ମନେହୁଏ ଯେ ପ୍ରତିଯୋଗିତାର ଭାବ ଠିକ୍ ନୁହେଁ । କେହି କେହି କହନ୍ତି ଯେ, ମନୁଷ୍ୟ ଯଦି ଯୁଦ୍ଧ ନ କରନ୍ତା, ତେବେ ସେ ଉନ୍ନତି କରିପାରନ୍ତା ନାହିଁ । ମୁଁ ମଧ୍ୟ ସେହିପରି ଚିନ୍ତା କରୁଥିଲି, କିନ୍ତୁ ବର୍ତ୍ତମାନ ଦେଖୁଛି ଯେ, ପ୍ରତ୍ୟେକ ଯୁଦ୍ଧ ମନୁଷ୍ୟର ଉନ୍ନତିକୁ ସାହାଯ୍ୟ କରିବା ପରିବର୍ତ୍ତେ ପଚାଶ ବର୍ଷ ପଛାଇ ଦେଉଛି । ଏପରି ସମୟ ନିଶ୍ଚୟ ଆସିବ, ଯେତେବେଳେ ମନୁଷ୍ୟ ନୂତନ ଆଲୋକରେ ଇତିହାସ ଅଧ୍ୟୟନ କରିବ ଏବଂ ଦେଖିବ ଯେ, ପ୍ରତିଯୋଗିତା (ପ୍ରଗତିର) କାରଣ କିମ୍ବା କାର୍ଯ୍ୟ ନୁହେଁ । ପ୍ରତିଯୋଗିତା ରାସ୍ତାର ଗୋଟିଏ ଦୃଶ୍ୟ ମାତ୍ର, କ୍ରମବିକାଶ ପାଇଁ ଏହାର କୌଣସି ପ୍ରୟୋଜନ ନାହିଁ ।

ମୋ ମତରେ ପତଞ୍ଜଳିଙ୍କ ସିଦ୍ଧାନ୍ତ ଠିକ୍, ଯାହା ବିଚାରଶୀଳ ମନୁଷ୍ୟ ଗ୍ରହଣ କରିପାରେ । ଆଧୁନିକ ମତବାଦ କେପରି ଅନର୍ଥ ସୃଷ୍ଟି କରିଛି ! ଏହି ଚିନ୍ତାପଦ୍ଧତି ଅନୁସାରେ ପ୍ରତ୍ୟେକ ଦୁଷ୍ଟ ବ୍ୟକ୍ତି ଯେପରି ଦୁଷ୍ଟ ହେବା ପାଇଁ ଅନୁମତି ପତ୍ର ପାଇ-ଛନ୍ତି । ଏ ଦେଶରେ (ଯୁକ୍ତରାଷ୍ଟ୍ରରେ) ଏପରି ପଦାର୍ଥବିଜ୍ଞାନୀଙ୍କୁ ମୁଁ ଦେଖିଛି, ଯେଉଁ-ମାନେ କହନ୍ତି, ସବୁ ଅପରାଧୀମାନଙ୍କୁ ନିର୍ମୂଳଭାବରେ ଧ୍ୱଂସ କରିଦେବାକୁ ହେବ; କାରଣ ସମାଜରୁ ଅପରାଧପ୍ରବଣତା ଦୂର କରିବାର ଏହା ହିଁ ଏକମାତ୍ର ଉପାୟ ।

ପରିସ୍ଥିତି ଅବଶ୍ୟ ବାଧା ଦେଇଥାଏ, କିନ୍ତୁ ପ୍ରଗତି ପାଇଁ ତାହା ପ୍ରୟୋଜନୀୟ ନୁହେଁ । ପ୍ରତିଯୋଗିତାରୁ ସର୍ବାପେକ୍ଷା ଭୟାବହ ଫଳ ଏହି ଯେ, ଜଣେ ହୁଏତ

ପାରିପାର୍ଶ୍ୱିକ ଅବସ୍ଥା ଜୟ କରିଛ, କିନ୍ତୁ ତା'ର ଜୟର ଅର୍ଥ ହଜାର ହଜାର ବ୍ୟକ୍ତିଙ୍କର ପରାଜୟ ଓ ଦୁଃଖ । ସୁତରାଂ ଏହାକୁ ଖୁବ୍ ଅଧିକ ହେଲେ ମନ୍ଦ ଭିତରେ ଭଲ କୁହାଯାଇପାରେ । ଏହା ଜଣକର ସହାୟକ, କିନ୍ତୁ ବହୁ ଲୋକଙ୍କର ପ୍ରତି-ବନ୍ଧକ । ତେଣୁ ଏହା କେବେହେଲେ କଲ୍ୟାଣକର ହୋଇ ନ ପାରେ । ପତଞ୍ଜଳି କହନ୍ତି, ଆମର ଅଜ୍ଞାନତାରୁ ଏହିସବୁ ସଂଗ୍ରାମ ଏବେ ଯୁଦ୍ଧ ରହିଅଛି । ସଂଗ୍ରାମ ମନୁଷ୍ୟର କ୍ରମବିକାଶ ପାଇଁ ଆବଶ୍ୟକ ନୁହେଁ, ଅଥବା ତାହାର ଅଙ୍ଗ ମଧ୍ୟ ନୁହେଁ । ଆମର ଅସହିଷ୍ଣୁତା ହିଁ ସଂଗ୍ରାମ ସୃଷ୍ଟି କରେ । ଗୋଟିଏ ନୂତନ ପଥ ସୃଷ୍ଟି କରି-ବାର ଧୈର୍ଯ୍ୟ ଆମମାନଙ୍କର ନାହିଁ । ଉଦାହରଣସ୍ୱରୂପ : ଗୋଟିଏ ନାଟ୍ୟଶାଳାରେ ନିଆଁ ଲାଗିଛି; ଅଳ୍ପ କେତେଜଣ ମାତ୍ର ବାହାର ଆସିଲେ ଏବଂ ଅବଶିଷ୍ଟ ସମସ୍ତେ ବାହାରକୁ ଯିବାର ଚେଷ୍ଟାରେ ଦଳାଦଳି ହେଲେ । ଗୃହଟିକୁ ରକ୍ଷା କରିବା ପାଇଁ, ଅଥବା ଯେଉଁ ଦୁଇତିନିଜଣ ପଳାଇ ଯାଇଛନ୍ତି ସେମାନଙ୍କ ପାଇଁ ଏତେ ତରବର ହେବାର ପ୍ରୟୋଜନ ନ ଥିଲା । ଯଦି ସମସ୍ତେ ଧୀରେ ଧୀରେ ବାହାର ଯିବାକୁ ଚେଷ୍ଟା କରନ୍ତି, ତେବେ ଜଣେ ହେଲେ ଆହତ ହୋଇ ନ ଥାଆନ୍ତେ । ଆମ ଜୀବନରେ ଏହିପରି ସବୁ ଘଟଣା ଘଟିଥାଏ । ଆମ ପାଇଁ ଦ୍ୱାର ଉନ୍ମୁକ୍ତ ରହିଅଛି । ପ୍ରତିଯୋଗିତା ଓ ସଂଗ୍ରାମ ବ୍ୟତୀତ ଆମେ ସମସ୍ତେ ବାହାରକୁ ଯାଇପାରୁ, ତଥାପି ଆମେମାନେ ସଂଗ୍ରାମ କରିଥାଉ । ଆମର ଅଜ୍ଞାନ ଓ ଅଧୈର୍ଯ୍ୟରୁ ଆମେ ଏହି ସଂଗ୍ରାମ ସୃଷ୍ଟି କରୁ । ଆମେ ଅତ୍ୟନ୍ତ ବ୍ୟସ୍ତତା ମଧ୍ୟରେ ବାସ କରୁ । କିନ୍ତୁ ନିଜକୁ ଶାନ୍ତ ରଖିବା ଏବଂ ସ୍ୱାବଲମ୍ବୀ ହେବା ଭିତରେ ଶକ୍ତିର ସର୍ବଶ୍ରେଷ୍ଠ ପ୍ରକାଶ ହୋଇଥାଏ ।

୮ । ପ୍ରତ୍ୟେକ ଜୀବ ଗୋଟିଏ ବୃତ୍ତ ଭଳି । ବୃତ୍ତର କେନ୍ଦ୍ର ଶରୀରରେ ଅବସ୍ଥିତ ଏବଂ କାର୍ଯ୍ୟ କରିବାର ଶକ୍ତି ସେହିଠାରେ ପ୍ରକାଶିତ ହୋଇଥାଏ । ତୁମେ ସର୍ବତ୍ର ବିଦ୍ୟମାନ—ଯଦିଓ ତୁମେ ମନେକର ଯେ ତୁମେ ଗୋଟିଏ ବିନ୍ଦୁରେ କେନ୍ଦ୍ରୀଭୂତ । ସେହି କେନ୍ଦ୍ରଟି କେତେଗୁଡ଼ିଏ ଜଡ଼କଣାକୁ ସଂଗ୍ରହ କରି ନିଜକୁ ପ୍ରକାଶ କରିବା ପାଇଁ ଗୋଟିଏ ଯନ୍ତ୍ର ନିର୍ମାଣ କରିଅଛି । ଯାହା ମାଧ୍ୟମରେ ଆତ୍ମା ନିଜକୁ ପ୍ରକାଶ କରୁଅଛି, ତାହାକୁ ହିଁ ଶରୀର କହନ୍ତି । ତୁମେ ସର୍ବତ୍ର ବିରାଜମାନ । ଯେତେବେଳେ ଏହି ଦେହ ବା ଯନ୍ତ୍ର ତୁମର ଉଦ୍ଦେଶ୍ୟ ସାଧନ କରିପାରିବ ନାହିଁ, ସେତେବେଳେ କେନ୍ଦ୍ରଟି ଅପସାରିତ ହୋଇ ଅନ୍ୟାନ୍ୟ ସୂକ୍ଷ୍ମ ବା ସ୍ଥୂଳ ଜଡ଼କଣାଗୁଡ଼ିକୁ ସଂଗ୍ରହ କରିବ ଏବଂ ସେଗୁଡ଼ିକ ମାଧ୍ୟମରେ କାର୍ଯ୍ୟ କରିବ । ଏହା ହିଁ ହେଉଛି ଜୀବ ବା ମନୁଷ୍ୟ; ତେବେ ଈଶ୍ୱର କ'ଣ ? ଈଶ୍ୱର ଯେପରି ଗୋଟିଏ ବୃତ୍ତ, ଯାହାର ପରିଧିର କୌଣସି ସୀମା ନାହିଁ ଓ କେନ୍ଦ୍ର ସର୍ବତ୍ର ବିଦ୍ୟମାନ । ଏହି ବୃତ୍ତର ପ୍ରତ୍ୟେକ ବିନ୍ଦୁ ଜୀବନ୍ତ, ସଚେତନ, ସକ୍ରିୟ ଏବଂ ସମଭାବରେ କାର୍ଯ୍ୟ କରୁଛି । ଜୀବ କ୍ଷେତ୍ରରେ କେବଳ ଗୋଟିଏ ବିନ୍ଦୁ ଚେତନାମୟ ଏବଂ ସେହି ବିନ୍ଦୁଟି ଆଗକୁ ଓ ପଛକୁ ଆନ୍ଦୋଳିତ ହୁଏ ।

ଆତ୍ମା ଗୋଟିଏ ବୃତ୍ତସଦୃଶ, ଯାହାର ପରିଧି ସୀମାହୀନ, କିନ୍ତୁ କେନ୍ଦ୍ର

କୌଣସି ଗୋଟିଏ ଦେହରେ ଅବସ୍ଥିତ । ମୃତ୍ୟୁ କେବଳ ଏହି କେନ୍ଦ୍ରର ସାମାନ୍ୟ ପରିବର୍ତ୍ତନ । ଈଶ୍ୱର ଗୋଟିଏ ବୃତ୍ତ ପରି, ଯାହାର ପରିଧିର ସୀମା ନାହିଁ, କିନ୍ତୁ କେନ୍ଦ୍ର ସର୍ବତ୍ର ଅବସ୍ଥିତ । ଆମେ ଯେତେବେଳେ ସୀମାବଦ୍ଧ ଦେହର ଏହି କେନ୍ଦ୍ରର ବାହାରକୁ ଆସିପାରିବା, ସେତେବେଳେ ଆମର ଯଥାର୍ଥ ସ୍ୱରୂପ ବା ଈଶ୍ୱରଙ୍କୁ ଉପଲବ୍ଧି କରିପାରିବା ।

୯ । ପ୍ରତ୍ୟେକ ଆତ୍ମାରେ ଦେବତ୍ୱ ଅନ୍ତର୍ନିହିତ । ବାହ୍ୟ ଓ ଅନ୍ତଃ ପ୍ରକୃତିକୁ ନିୟନ୍ତ୍ରିତ କରି ଏହି ଅନ୍ତର୍ନିହିତ ଦେବତ୍ୱର ବିକାଶ ସାଧନ କରିବା ହିଁ ମନୁଷ୍ୟ-ଜୀବନର ଲକ୍ଷ୍ୟ । କର୍ମ, ଭକ୍ତି, ଯୋଗ ଓ ଜ୍ଞାନ—ଏମାନଙ୍କ ମଧ୍ୟରୁ ଯେକୌଣସି ଗୋଟିକୁ ଅବଲମ୍ବନ କରି ଅଥବା ଏକାଧିକ ବା ସବୁଗୁଡ଼ିକ ସାହାଯ୍ୟରେ ଅନ୍ତ-ର୍ନିହିତ ଦେବତ୍ୱ ବିକାଶ କର ଓ ମୁକ୍ତ ହୁଅ । ଏହା ହିଁ ଧର୍ମର ସାରକଥା । ମତ-ବାଦ, ବଦ୍ଧ-ଧାରଣା, ଆଚାର-ଅନୁଷ୍ଠାନ, ଶାସ୍ତ୍ର, ମନ୍ଦିର ବା ପଦ୍ଧତି—ଏଗୁଡ଼ିକ ଧର୍ମର ଗୌଣ ଅଙ୍ଗମାତ୍ର ।

୧୦ । ଧର୍ମବିଷୟକ କୌଣସି ବିଶେଷ ମତରେ ବିଶ୍ୱାସ ନ ଥିବା ହିଁ ଜ୍ଞାନ; କିନ୍ତୁ ଏ କଥାର ଅର୍ଥ ଏହା ନୁହେଁ ଯେ, ଜ୍ଞାନର କୌଣସି ଧର୍ମମତ ସହିତ ବିରୋଧ ଅଛି । ଜ୍ଞାନର ଅର୍ଥ—ଧର୍ମମତର ଊର୍ଦ୍ଧ୍ୱରେ ଏକ ଉଚ୍ଚ ଅବସ୍ଥା ଆମେ ଲାଭ କରିଛୁ । ଜ୍ଞାନୀ (ଅର୍ଥାତ୍ ଯଥାର୍ଥ ଦାର୍ଶନିକ) କିଛି ଧ୍ୱଂସ କରିବାକୁ ଇଚ୍ଛା କରନ୍ତି ନାହିଁ, ବରଂ ସମସ୍ତଙ୍କୁ ସାହାଯ୍ୟ କରିବାକୁ ଚେଷ୍ଟା କରନ୍ତି । ନଦୀଗୁଡ଼ିକ ଯେପରି ସେମାନଙ୍କର ଜଳଧାରା ସାଗରକୁ ବହନ କରି ନେଇଯାଆନ୍ତି, ଏବଂ ସେଠାରେ ଏକ ହୋଇଯାଆନ୍ତି, ସେହିପରି ସକଳ ଧର୍ମମତର ଗତି ଜ୍ଞାନ ଅଭିମୁଖରେ ଓ ସେହିଠାରେ ପହଞ୍ଚି ସେମାନେ ଏକୀଭୂତ ହୁଅନ୍ତି ।

ଜ୍ଞାନଯୋଗ ସଂସାର ତ୍ୟାଗ କରିବାକୁ ଶିକ୍ଷା ଦିଏ, କିନ୍ତୁ ହତାଶାର ମନୋଭାବ ନେଇ ସଂସାର ଛାଡ଼ିବାକୁ କହେ ନାହିଁ । ତ୍ୟାଗର ପ୍ରକୃତ ପରୀକ୍ଷା ହେଉଛି, ସଂସାରରେ ରହି ସୁଦ୍ଧା ସଂସାରୀ ନ ହେବା ।

୧୧ । ବେଦାନ୍ତୀ କହନ୍ତି : ମନୁଷ୍ୟର ଜନ୍ମ ନାହିଁ, ମୃତ୍ୟୁ ନାହିଁ; ମନୁଷ୍ୟ ସ୍ୱର୍ଗକୁ ମଧ୍ୟ ଯାଏ ନାହିଁ । ଆତ୍ମା ସମ୍ପର୍କରେ ପୁନର୍ଜନ୍ମପ୍ରସଙ୍ଗ ପ୍ରକୃତରେ ଯେପରି ଗୋଟିଏ ପୌରାଣିକ କାହାଣୀ । ଖଣ୍ଡିଏ ପୁସ୍ତକର ପୃଷ୍ଠା ଓଲଟାଇବାର ଉଦାହରଣ ନିଆଯାଉ । ପୁସ୍ତକର ବିଷୟବସ୍ତୁ ହିଁ କ୍ରମବିକଶିତ ହୁଏ । ମନୁଷ୍ୟ ନୁହେଁ । ଆତ୍ମା ସର୍ବତ୍ର ବିଦ୍ୟମାନ, ସୁତରାଂ ତାହାର ଯିବାଆସିବା ନିରର୍ଥକ । ଏହି ଜନ୍ମ-ମୃତ୍ୟୁ ପ୍ରକୃତି ଅନ୍ତର୍ଗତ ପରିବର୍ତ୍ତନ ମାତ୍ର । ଏଗୁଡ଼ିକୁ ଆମେ ନିଜର ପରିବର୍ତ୍ତନ ବୋଲି ଭାବି ଭୁଲ କରିଥାଉ ।

୧୨ । ପୁନର୍ଜନ୍ମ ପ୍ରକୃତିର କ୍ରମବିକାଶ ଏବଂ ଅନ୍ତର୍ନିହିତ ଦେବତ୍ୱର ଅଭି-ବ୍ୟକ୍ତି ।

୧୩ । ବେଦାନ୍ତ କହେ : ଅତୀତର ଭିତ୍ତି ଉପରେ ଏହି ଜୀବନ ଗଠିତ ଏବଂ ଯେତେବେଳେ ଆମେ ଆମର ସମଗ୍ର ଅତୀତକୁ ଦେଖିପାରିବୁ, ସେତେବେଳେ ଆମେ ମୁକ୍ତ ହେବୁ । ମୁମୁକ୍ଷତ୍ୱ ବା ମୁକ୍ତ ହେବାର ଇଚ୍ଛା ଶୈଶବରୁ ଧର୍ମଭାବର ଆକାର ଧାରଣ କରେ । କେତେଟା ବର୍ଷ ଭିତରେ ସକଳ ତତ୍ତ୍ୱ ତାହା ନିକଟରେ ସ୍ପଷ୍ଟ ହୋଇଯାଏ । ଏହି ଦେହ ତ୍ୟାଗ କରି ପରବର୍ତ୍ତୀ ଜୀବନ ପାଇଁ ଅପେକ୍ଷମାଣ ଜୀବାତ୍ମା ପ୍ରାକୃତିକ ଜଗତରେ ହିଁ ବାସ କରୁଥାଏ ।

୧୪ । ମୁକ୍ତ ମନୁଷ୍ୟ ନିକଟରେ ଏହି ମୁକ୍ତି-ସଂଗ୍ରାମର ମୂଲ୍ୟ କିଛି ନାହିଁ । କିନ୍ତୁ ଆମ ନିକଟରେ ଏହାର ଅର୍ଥ ଅଛି, କାରଣ ନାମ ଏବଂ ରୂପ ହିଁ ତ ଜଗତ ସୃଷ୍ଟି କରିଥାଏ ।

୧୫ । ପ୍ରଥମରୁ ହିଁ ସମସ୍ତ ଜ୍ଞାନ ଆମ ଭିତରେ ସଞ୍ଚିତ ଥାଏ—ଏହାର ବ୍ୟତିକ୍ରମ ଅସମ୍ଭବ । ଯଦି ଆମେ ସାଗରର କ୍ଷୁଦ୍ର କ୍ଷୁଦ୍ର ତରଙ୍ଗ ଭଳି ହେଉ, ତେବେ ସେହି ସାଗର ନିଶ୍ଚୟ ଅଲକ୍ଷ୍ୟରେ ସମସ୍ତଙ୍କ ପଶ୍ଚାତ୍ତରେ ରହିଅଛି ।

୧୬ । (ଗୀତାର) ଏହି କେତୋଟି କଥାରେ ଆତ୍ମାର ସ୍ୱରୂପ ବର୍ଣ୍ଣନା କରି-ଯାଏ; ଏହି ଆତ୍ମାକୁ ତରବାରି ଛେଦନ କରିପାରେ ନାହିଁ, ବର୍ଚ୍ଛା ଭେଦ କରି-ପାରେ ନାହିଁ, ଅଗ୍ନି ଦଗ୍ଧ କରିପାରେ ନାହିଁ, ଜଳ ତାହାକୁ ଦ୍ରବୀଭୂତ କରିପାରେ ନାହିଁ । ଆତ୍ମା ଅବିନାଶୀ ଓ ସର୍ବତ୍ର ବିଦ୍ୟମାନ, ସୁତରାଂ ଆତ୍ମା ପାଇଁ ଶୋକ କର ନାହିଁ ।

୧୭ । ଆମେ ବିଶ୍ୱାସ କରୁ, ଜଣେ ମନ୍ଦ ଲୋକ ମଧ୍ୟ ଭବିଷ୍ୟତରେ ଭଲ ହେବ । ମୂଳତତ୍ତ୍ୱ ହେଲା—ସମସ୍ତଙ୍କ ଶାଶ୍ୱତ-ମୁକ୍ତି ପାଇଁ ସଂଗ୍ରାମ କରିବାକୁ ହେବ । ମୁକ୍ତିଲାଭର ଇଚ୍ଛା ବ୍ୟତୀତ ଅନ୍ୟ ସମସ୍ତ ବାସନା ଭ୍ରାନ୍ତିଜନକ । ବେଦାନ୍ତମତରେ ପ୍ରତ୍ୟେକ ଶୁଭ କର୍ମ ମନୁଷ୍ୟର ମୁକ୍ତଭାବକୁ ପ୍ରକାଶିତ କରେ ।

ପୃଥିବୀରେ ଏପରି ଗୋଟିଏ ସମୟ ଆସିବ, ଯେତେବେଳେ ଅଶୁଭ ସମ୍ପୂର୍ଣ୍ଣ-ଭାବେ ଅନ୍ତର୍ହିତ ହେବ—ଏହା ମୁଁ ବିଶ୍ୱାସ କରେ ନାହିଁ । ତାହା କିପରି ହେବ ? ନଦୀ ବହି ଚାଲିଛି—ଗୋଟିଏ ଦିଗକୁ ଜଳରାଶି ବହି ଚାଲିଛି, ଅନ୍ୟ ଦିଗରୁ ପୁଣି ଜଳରାଶି ଆସି ପହଞ୍ଚୁଛି ।

୧୮ । ବେଦାନ୍ତ କହେ : ତୁମେ ସ୍ୱରୂପତଃ ଶୁଦ୍ଧ ଓ ପୂର୍ଣ୍ଣ । ତୁମର ସ୍ୱଭାବ ଶୁଭ ଓ ଅଶୁଭର ଅତୀତ ଗୋଟିଏ ଅବସ୍ଥା । ଏହି ଅବସ୍ଥା ଶୁଭ ଅପେକ୍ଷା ଉଚ୍ଚତର । ମନ୍ଦ ଅପେକ୍ଷା ଭଲ ଏହି ଅବସ୍ଥାରୁ ଅଳ୍ପ ବିଚ୍ୟୁତ ।

ପାପ ବା ଅଶୁଭ ସମ୍ପର୍କରେ ଆମର କୌଣସି ମତବାଦ ନାହିଁ । ଆମେ ଏହାକୁ ଅଜ୍ଞାନ କହୁ ।

୧୯ । ମନୁଷ୍ୟ ସହିତ ବ୍ୟାବହାରିକ ସମ୍ପର୍କ, ନୀତିଶାସ୍ତ୍ର ଇତ୍ୟାଦି—ସବୁ ହେଲା ଜାଗତିକ ବ୍ୟାପାର । ସତ୍ୟ ବିଷୟରେ ନିଶ୍ଚିତଭାବରେ କୁହାଯାଏ : ତାଙ୍କ

ସମ୍ପର୍କରେ ଆମେ କହୁଥାଉ, ସେ ସତ୍‌ସ୍ୱରୂପ, ଚିତ୍‌ସ୍ୱରୂପ ଓ ଆନନ୍ଦସ୍ୱରୂପ; ଈଶ୍ୱରଙ୍କ ଉପରେ ଅଜ୍ଞାନ କେବେହେଲେ ଆରୋପିତ କରିବ ନାହିଁ । ଚିନ୍ତା ବା ବାକ୍ୟଦ୍ୱାରା ପ୍ରକାଶ କରିବାର ସକଳ ପ୍ରୟାସ ସେହି ପରଂବ୍ରହ୍ମଙ୍କୁ ଗୋଟିଏ ଜାଗତିକ ବସ୍ତୁରେ ମାତ୍ର ପରିଣତ କରିଥାଏ । ଏହାଦ୍ୱାରା ବ୍ରହ୍ମଭାବର ବୈଶିଷ୍ଟ୍ୟ କ୍ଷୁଣ୍ଣ ହୁଏ ।

୨୦ । ଗୋଟିଏ କଥା ମନେ ରଖିବାକୁ ହେବ, ଇନ୍ଦ୍ରିୟ-ଜଗତ ସମ୍ବନ୍ଧରେ ଏପରି କଥା ଜୋର୍ ଦେଇ କହିବା ଚଳେ ନାହିଁ । କାରଣ ତୁମେ ଯଦି ଇନ୍ଦ୍ରିୟାନୁଭୂତିର ସ୍ତରରେ ରହି କୁହ ଯେ, 'ମୁଁ ଈଶ୍ୱର', ତେବେ ଅନ୍ୟାୟ କର୍ମରୁ କିଏ ତୁମକୁ ନିବୃତ୍ତ କରିବ ? ସୁତରାଂ ତୁମର ଦେବତ୍ୱବିଷୟକ ଦୃଢ଼ ଘୋଷଣା କେବଳ ପାରମାର୍ଥିକ ସ୍ତରରେ ପ୍ରଯୋଜ୍ୟ । ମୁଁ ଯଦି ଈଶ୍ୱର ହୁଏ, ଯେବେ ମୁଁ ଇନ୍ଦ୍ରିୟ-ପ୍ରବୃତ୍ତିର ବହୁ ଊର୍ଦ୍ଧ୍ୱରେ । ସୁତରାଂ କୌଣସି ଅନ୍ୟାୟ କାର୍ଯ୍ୟ ମୁଁ କରି ନ ପାରେ । ନୈତିକତା ଅବଶ୍ୟ ମନୁଷ୍ୟର ଲକ୍ଷ୍ୟ ନୁହେଁ, ତେବେ ଏହି ମୁକ୍ତଭାବ ଲାଭ କରିବାର ଏହା ଉପାୟ ମାତ୍ର । ବେଦାନ୍ତମତରେ 'ଯୋଗ' ମନୁଷ୍ୟର ଏହି ଦେବତ୍ୱ (ବ୍ରହ୍ମତ୍ୱ) ଅନୁଭବ କରିବାର ଗୋଟିଏ ଉପାୟ ମାତ୍ର । ବେଦାନ୍ତ କହେ, ଅନ୍ତର୍ନିହିତ ମୁକ୍ତ-ଭାବ ଅନୁଭବ କଲେ ଏହି ଦେବତ୍ୱକୁ ଅନୁଭବ କରାଯାଏ । ଯାହା କିଛି ବାଧା ଦିଏ, ସବୁ ଦୂରୀଭୂତ ହୁଏ । ଧାର୍ମିକ ଆଚରଣ ଓ ନୀତିଶାସ୍ତ୍ର ପ୍ରଭୃତି ନିଜନିଜ ଆସନ ଯଥା-ସ୍ଥାନରେ କରିନେବେ ।

୨୧ । ବେଦାନ୍ତରେ ସାଧନାର ସ୍ଥାନ ଅଛି, ଭୟର ସ୍ଥାନ ନାହିଁ । ସବୁ ଭୟ ସେତେବେଳେ ଚାଲିଯିବ, ଯେତେବେଳେ ତୁମ ତୁମର ସ୍ୱରୂପ ଦୃଢ଼ଭାବରେ ଘୋଷଣା କରିବ । ଯଦି ନିଜକୁ ବଦ୍ଧ ବୋଲି ମନେକର, ତେବେ ବଦ୍ଧ ହୋଇ ରହିବ ଏବଂ ମୁକ୍ତ ବୋଲି ମନେ କଲେ ମୁକ୍ତ ହୋଇଯିବ ।

୨୨ । ମାୟିକ ଜଗତରେ ଆମେ ମୁକ୍ତିର ଯେଉଁ ଭାବ ଅନୁଭବ କରୁ, ତାହା ଆଭାସ ମାତ୍ର—ଯଥାର୍ଥ ମୁକ୍ତି ନୁହେଁ ।

୨୩ । ପ୍ରକୃତପକ୍ଷରେ ଜଡ଼, ମନ ଓ ଆତ୍ମାରେ କୌଣସି ଭେଦ ନାହିଁ । ଏଗୁଡ଼ିକ ଗୋଟିଏ ବସ୍ତୁକୁ ଅନୁଭବ କରିବାର ବିଭିନ୍ନ ଢଙ୍ଗ ମାତ୍ର । ପଞ୍ଚଜ୍ଞାନେନ୍ଦ୍ରିୟ-ଦ୍ୱାରା ଦେଖିଲେ ଏହି ଜଗତ ଜଡ଼ବସ୍ତୁ ବୋଲି ମନେହୁଏ; ଦୁଷ୍ଟ ଲୋକ ନିକଟରେ ଜଗତ ନରକ, ସତ୍ ଲୋକ ନିକଟରେ ସ୍ୱର୍ଗ, ପୁଣି ଜ୍ଞାନୀଙ୍କ ନିକଟରେ ଏହା ଈଶ୍ୱର-ରୂପେ ଅନୁଭୂତ ହୁଏ ।

୨୪ । ବେଦାନ୍ତ ମନୁଷ୍ୟର ଯୁକ୍ତି-ବିଚାରକୁ ଅନେକ ପରିମାଣରେ ସ୍ୱୀକାର କରେ—ଯଦିଓ ଏହି ମତରେ ବୁଦ୍ଧି ଅପେକ୍ଷା ଉଚ୍ଚତର ଆଉରି କିଛି ଅଛି; କିନ୍ତୁ ସେଠାରେ ପହଞ୍ଚିବାର ପଥ କେବଳ ବୁଦ୍ଧି ଭିତର ଦେଇ ।

୨୫ । ମନର ଚିନ୍ତାଗୁଡ଼ିକୁ (ଚିତ୍ତବୃତ୍ତି) ରୋଧ କରିପାରିଲେ ଆମେ ବୁଝି-ପାରିବା, ଆମେ ଚିନ୍ତାର ଊର୍ଦ୍ଧ୍ୱରେ । 'ନେତି, ନେତି' କହି ଆମେ ଏ ଅବସ୍ଥାରେ

ପହଞ୍ଚିପାରୁ । 'ନେତି ନେତି' ବିଚାରଦ୍ୱାରା ବ୍ୟାବହାରିକ ଜଗତ ଲୋପ ହେଲେ ଯାହା ରହେ, ତାହା ହିଁ ଆମର ଯଥାର୍ଥ ସ୍ୱରୂପ । ଯଥାର୍ଥ ସ୍ୱରୂପକୁ କେବେହେଲେ ବ୍ୟକ୍ତ କରାଯାଏ ନାହିଁ—ପ୍ରକାଶ କରାଯାଏ ନାହିଁ, କାରଣ ପ୍ରକାଶ କରିବାକୁ ଯିବା ମାତ୍ରେ ଇଚ୍ଛାର ଉତ୍ପତ୍ତି ହେବ ।

୨୭ । ଏହା ଠିକ୍ ଯେ, ଆମ୍ଭେ (ଚିନ୍ତାର) ଗୋଟିଏ ପ୍ରଣାଳୀ ସୃଷ୍ଟି କରୁ; କିନ୍ତୁ କୌଣସି ପ୍ରଣାଳୀ ଯେ ପୂର୍ଣ୍ଣ ନୁହେଁ, ତାହା ସ୍ୱୀକାର କରିବାକୁ ହେବ, କାରଣ ସତ୍ୟ ସକଳ ପ୍ରଣାଳୀର ଅତୀତ ବସ୍ତୁ । ଏହା ସହିତ ଅନ୍ୟାନ୍ୟ ପ୍ରଣାଳୀର ତୁଳନା କରିବା ପାଇଁ ଆମେ ପ୍ରସ୍ତୁତ ଏବଂ ଆଲୋଚନାଦ୍ୱାରା ଏ କଥା ମଧ୍ୟ ପ୍ରମାଣିତ ହେବ ଯେ, ଏହି ପ୍ରଣାଳୀ ସର୍ବାପେକ୍ଷା ଯୁକ୍ତିସମ୍ମତ; ତଥାପି ଏ ପ୍ରଣାଳୀ ମଧ୍ୟ ପୂର୍ଣ୍ଣ ନୁହେଁ, କାରଣ ବିଚାର କେବେହେଲେ ପୂର୍ଣ୍ଣ ହୋଇପାରେ ନାହିଁ । ଯାହା ହେଉ, ଜ୍ଞାନ-ଯୋଗ ହିଁ ମାନବୀୟ ଅନୁଭୂତି ମଧ୍ୟରେ ସର୍ବାପେକ୍ଷା ଯୁକ୍ତିସମ୍ମତ ଉପାୟ ।

ଏ କଥା ଆଂଶିକଭାବରେ ସତ୍ୟ ଯେ, କୌଣସି ଗୋଟିଏ ପଦ୍ଧତି ନିଜର ଭିତ୍ତି ସୁଦୃଢ଼ କରିବା ପାଇଁ ପ୍ରସାରଶୀଳ ହେବ । କିନ୍ତୁ ଅନ୍ୟ କୌଣସି ଚିନ୍ତାପ୍ରଣାଳୀ ବେଦାନ୍ତ ଭଳି ଏତେ ଅଧିକ ବିସ୍ତାର ଲାଭ କରି ନାହିଁ । ଏବେ ମଧ୍ୟ ବ୍ୟକ୍ତିଗତ ସଂସ୍ପର୍ଶ ମାଧ୍ୟମରେ ଶିକ୍ଷାଲାଭ ଅତିଶୟ କାର୍ଯ୍ୟକାରୀ ହୋଇଥାଏ । ବହୁ ଗ୍ରନ୍ଥପାଠ କରିବାଦ୍ୱାରା ପ୍ରକୃତ ମନୁଷ୍ୟ ତିଆରି ହୁଏ ନାହିଁ । ଯେଉଁମାନେ ପ୍ରକୃତ ମନୁଷ୍ୟ ହୋଇଛନ୍ତି, ସେମାନେ ବ୍ୟକ୍ତିଗତ ସଂସ୍ପର୍ଶ ପାଇ ବଡ଼ ହୋଇଛନ୍ତି । ପ୍ରକୃତ ମନୁଷ୍ୟ-ମାନଙ୍କର ସଂଖ୍ୟା ଅତି ଅଳ୍ପ, କିନ୍ତୁ ସେମାନଙ୍କ ସଂଖ୍ୟା ବଢ଼ିବ । ତଥାପି ଏ କଥା କେହି ବିଶ୍ୱାସ କରିବେ ନାହିଁ ଯେ—ଏପରି ସମୟ ଆସିବ, ଯେତେବେଳେ ଆମେ ସମସ୍ତେ ଦାର୍ଶନିକ ହୋଇଯିବା । ଏ କଥା ଆମେ ବିଶ୍ୱାସ କରୁନାହିଁ ଯେ, ଏପରି ଏକ ସମୟ ଆସିବ, ଯେତେବେଳେ ପୃଥିବୀରେ କେବଳ ସୁଖ ରହିବ, କୌଣସି ଦୁଃଖ ରହିବ ନାହିଁ ।

୨୭ । ବେଦାନ୍ତଦର୍ଶନ ହିଁ ବୌଦ୍ଧ ଧର୍ମ ଓ ଭାରତର ଅନ୍ୟାନ୍ୟ ଦର୍ଶନ-ଗୁଡ଼ିକର ଭିତ୍ତି । କିନ୍ତୁ ଆଧୁନିକ ଅଦ୍ୱୈତବାଦୀମାନେ ବୌଦ୍ଧମାନଙ୍କର ଅନେକ-ଗୁଡ଼ିଏ ସିଦ୍ଧାନ୍ତକୁ ଗ୍ରହଣ କରିଛନ୍ତି । ଅବଶ୍ୟ ନିଷ୍ଠାବାନ ହିନ୍ଦୁଗଣ କେବେହେଲେ ତାହା ସ୍ୱୀକାର କରିବେ ନାହିଁ, କାରଣ ସେମାନଙ୍କ ମତରେ ବୌଦ୍ଧମାନେ ବିରୁଦ୍ଧ-ବାଦୀ । କିନ୍ତୁ ସମଗ୍ର ଅଦ୍ୱୈତବାଦକୁ ସମ୍ପ୍ରସାରିତ କରି ବିରୁଦ୍ଧବାଦୀମାନଙ୍କୁ ଏହାର ଅନ୍ତର୍ଭୁକ୍ତ କରିବାର ଗୋଟିଏ ପ୍ରଚେଷ୍ଟା ସଚେତନ ଭାବରେ ଚାଲିଛି ।

୨୮ । ବୌଦ୍ଧଧର୍ମ ସହିତ ବେଦାନ୍ତର କୌଣସି ବିରୋଧ ନାହିଁ । ସକଳ ମତର ସମନ୍ୱୟ-ସାଧନ ବେଦାନ୍ତର ଭାବ । ଉତ୍ତରଦେଶୀୟ (ମହାଯାନ) ବୌଦ୍ଧ-ଗଣଙ୍କ ସହିତ ଆମର କୌଣସି ବିରୋଧ ନାହିଁ । କିନ୍ତୁ ବ୍ରହ୍ମଦେଶ, ଶ୍ୟାମ ଓ ଦକ୍ଷିଣାଂଶର (ହୀନଯାନ) ବୌଦ୍ଧଗଣଙ୍କ ମତରେ ଏହି ବ୍ୟାବହାରିକ ଜଗତ ପ୍ରକୃତରେ

ଅଛୁ ଏବଂ ସେମାନେ ପ୍ରଶ୍ନ କରନ୍ତି, 'ଏହି ଜଗତ ବ୍ୟତୀତ ଏକ ପାରମାର୍ଥିକ ଜଗତ ସୃଷ୍ଟି କରିବାର ଆମର କି ଅଧିକାର ଅଛି ?' ବେଦାନ୍ତର ଉତ୍ତର ହେଉଛି—ଏହି ବିବୃତି ଭ୍ରମାତ୍ମକ । କାରଣ ବେଦାନ୍ତ ବିବାଦ କରି କହେ ନାହିଁ ଯେ, ପାରମାର୍ଥିକ ଜଗତ ଓ ବ୍ୟାବହାରିକ ଜଗତ ଭିନ୍ନ ଭିନ୍ନ । ବେଦାନ୍ତ ମତରେ ସତ୍ୟ ଏକ, ତାହା ଇନ୍ଦ୍ରିୟ ମାଧ୍ୟମରେ ବ୍ୟାବହାରିକ ଜଗତ ବୋଲି ପ୍ରତୀୟମାନ ହୁଏ, କିନ୍ତୁ ଏହା ପ୍ରକୃତରେ ସର୍ବଦା ପାରମାର୍ଥିକ । ଯେ ରଜ୍ଜୁ ଦେଖେ, ସେ ସର୍ପକୁ ଦେଖେ ନାହିଁ । ହୁଏତ ରଜ୍ଜୁ ଦେଖିବ ନଚେତ୍ ସର୍ପ । ଏକ ସମୟରେ ଦୁଇଟି ଦେଖିବା ସମ୍ଭବ ନୁହେଁ । ସୁତରାଂ ଆମେ ଦୁଇଟି ଜଗତର ଅସ୍ତିତ୍ୱ ସ୍ୱୀକାର କରୁ—ଏହି ମତବାଦ ସମ୍ପର୍କରେ ବୌଦ୍ଧମାନଙ୍କର ବିବୃତି ସମ୍ପୂର୍ଣ୍ଣ ଅମୂଳକ । ସେମାନେ କହିପାରନ୍ତି ଯେ, ଜଗତ ଇନ୍ଦ୍ରିୟଗ୍ରାହ୍ୟ; କିନ୍ତୁ ଏହାକୁ ପାରମାର୍ଥିକ କହିବାର ଅନ୍ୟମାନଙ୍କର କୌଣସି ଅଧିକାର ନାହିଁ—ଏପରି କହିବାର ଅଧିକାର ସେମାନଙ୍କର ନାହିଁ ।

୨୯ । **ଇଚ୍ଛାଶକ୍ତି** : ବୌଦ୍ଧଧର୍ମ ଏହି ବ୍ୟାବହାରିକ ଜଗତକୁ ଛାଡ଼େ ନାହିଁ । ଏହି ମତ ଅନୁସାରେ ବ୍ୟାବହାରିକ ଜଗତରେ ତୃଷ୍ଣା (ବାସନା) ବିଦ୍ୟମାନ, ଏବଂ ଏହି ତୃଷ୍ଣା ହିଁ ସକଳ ସୃଷ୍ଟି କରୁଅଛି । ଆଧୁନିକ ବୈଦାନ୍ତିକଗଣ ଏକଥା ଆଦୌ ସ୍ୱୀକାର କରନ୍ତି ନାହିଁ । ଆମେ କହୁ, କିଛି ଗୋଟାଏ ଅଛି । ତାହା ଇଚ୍ଛା (ବାସନା) ରୂପେ ପ୍ରତିଭାତ ହେଉଅଛି । ବାସନା ସୃଷ୍ଟ ପଦାର୍ଥ—ଯୌଗିକ, ମୌଳିକ ନୁହେଁ । ବାହ୍ୟ ବିଷୟ ନ ଥିଲେ କୌଣସି ବାସନାର ସୃଷ୍ଟି ହୋଇ ନ ପାରେ । ସୁତରାଂ ଏହା ସ୍ପଷ୍ଟ ଯେ, ବାସନା ହିଁ ଜଗତ ସୃଷ୍ଟି କରିଛି—ଏ ମତ ଅସମ୍ଭବ । କିପରି ତାହା ହେବ ? ବାହ୍ୟ ବିଷୟର ପ୍ରେରଣା ବ୍ୟତୀତ ତୁମେ କଣ କେବେ ଇଚ୍ଛା ବା ବାସନାର ଅସ୍ତିତ୍ୱ ବୋଧ କରିଅଛ ? ପ୍ରେରଣା ବ୍ୟତୀତ ଅଥବା ଆଧୁନିକ ଦାର୍ଶନିକ ପରିଭାଷାରେ ସ୍ନାୟବିକ ଉତ୍ତେଜନା ବ୍ୟତୀତ କୌଣସି ବାସନାର ଉଦ୍ରେକ ହୁଏ ନାହିଁ । ଇଚ୍ଛା ବା ବାସନା ମସ୍ତିଷ୍କର ଏକପ୍ରକାର ପ୍ରତିକ୍ରିୟା ମାତ୍ର—ସାଂଖ୍ୟଦାର୍ଶନିକମାନଙ୍କ ମତରେ ଏହା ହିଁ 'ବୁଦ୍ଧି' । ଏହି ପ୍ରତିକ୍ରିୟା କ୍ରିୟାସାପେକ୍ଷ୍ୟ ଏବଂ କ୍ରିୟା ମାନିଲେ ବାହ୍ୟ ଜଗତର ଅସ୍ତିତ୍ୱ ସ୍ୱୀକାର କରିବାକୁ ପଡ଼େ । ସୁତରାଂ ବହିର୍ଜଗତର ଅସ୍ତିତ୍ୱ ନ ଥିଲେ ଇଚ୍ଛା ମଧ୍ୟ ରହିପାରେ ନାହିଁ, ତଥାପି ତୁମମାନଙ୍କ ମତ ଅନୁସାରେ ବାସନା ହିଁ ଜଗତ ସୃଷ୍ଟି କରିଅଛି । ବାସନା କିଏ ସୃଷ୍ଟି କରେ ? ଯେଉଁଠାରେ ବାସନା, ସେହିଠାରେ ଜଗତ । ଯେଉଁ ପ୍ରେରଣା ଜଗତ ସୃଷ୍ଟି କରିଅଛି, ସେହି ପ୍ରେରଣାରୁ ଏହି ସୃଷ୍ଟି-ବୈଚିତ୍ର୍ୟର ଅନ୍ୟତମ ବାସନା ମଧ୍ୟ ଜାତ । କିନ୍ତୁ ଦର୍ଶନ ଏଠାରେ କ୍ଷାନ୍ତ ହୁଏ ନାହିଁ । ବାସନା ବା ଇଚ୍ଛା ସମ୍ପୂର୍ଣ୍ଣ ବ୍ୟକ୍ତିଗତ, ସୁତରାଂ ଆମେ ଶୋପେନ୍‌ହାଓ୍ୱାରଙ୍କ ସହିତ ଆଦୌ ଏକମତ ହୋଇପାରୁ ନାହିଁ । ଇଚ୍ଛା ଗୋଟିଏ ଯୌଗିକ ସୃଷ୍ଟି—ଅନ୍ତଃ ଓ ବାହ୍ୟ ମିଶ୍ରଣରେ ଉତ୍ପନ୍ନ । ମନେକର କୌଣସି ବ୍ୟକ୍ତି ଜ୍ଞାନେନ୍ଦ୍ରିୟବର୍ଜିତ ହୋଇ ଜନ୍ମଗ୍ରହଣ କରିଅଛି—ଅତଏବ ତାହାର କୌଣସି ଇଚ୍ଛା ରହିପାରେ ନାହିଁ । ଇଚ୍ଛାର

ବିକାଶ ପାଇଁ ପ୍ରଥମତଃ କୌଣସି ବାହ୍ୟବସ୍ତୁ ଥିବା ଦରକାର । ତା'ପରେ ଭିତର ମସ୍ତିଷ୍କ କିଛି ଶକ୍ତି ସଂଗ୍ରହ କରିଥାଏ । ସୁତରାଂ ଇଚ୍ଛା ଏହି କାରଣରୁ ବା ଅନ୍ୟାନ୍ୟ ବସ୍ତୁ ଭଳି ଗୋଟିଏ ଯୌଗିକ ପଦାର୍ଥ । ଏହି ସକଳ ଜର୍ମାନ ଦାର୍ଶନିକମାନଙ୍କର ଇଚ୍ଛା-ବିଷୟକ ମତବାଦ ସହିତ ଆମେ ଆଦୌ ଏକମତ ନୋହୁଁ । ଇଚ୍ଛା ସ୍ୱୟଂ ବ୍ୟାବହାରିକ, ସୁତରାଂ ତାହା ପରମ ସତ୍ୟ ହୋଇ ନ ପାରେ । ବାସନା ବା ଇଚ୍ଛା ବହୁ ପ୍ରକ୍ଷେପ ମଧ୍ୟରୁ ଅନ୍ୟତମ । ଏପରି ଗୋଟିଏ କିଛି ଅଛି, ଯାହା ଇଚ୍ଛା ନୁହେଁ, କିନ୍ତୁ ନିଜକୁ ଇଚ୍ଛାରୂପରେ ପ୍ରକାଶ କରୁଅଛି—ଏହି ମୁଁ ବୁଝିପାରୁଛି, କିନ୍ତୁ ଇଚ୍ଛା ସର୍ବଶକ୍ତିମାନ ହୋଇ ନିଜକୁ ପ୍ରକାଶ କରୁଅଛି—ଏହା ବୁଝିପାରୁ ନାହିଁ; କାରଣ ଆମେ ଜଗତଠାରୁ ପୃଥକ୍ କୌଣସି ଇଚ୍ଛାର ଅସ୍ତିତ୍ୱ କଳ୍ପନା ମଧ୍ୟ କରିପାରୁ ନାହିଁ । ଯେତେବେଳେ ସେହି ମୁକ୍ତ ସତ୍ତା ଇଚ୍ଛାରୂପେ ପ୍ରକାଶିତ ହୁଏ, ତାହା କେବଳ ଦେଶକାଳନିମିତ୍ତଦ୍ୱାରା ହୋଇଥାଏ । ଦାର୍ଶନିକ କାଣ୍ଟଙ୍କ ବ୍ୟାଖ୍ୟା ଗ୍ରହଣ କଲେ ଦେଖିବ ଯେ, ଦେଶ, କାଳ ଓ ନିମିତ୍ତ ମଧ୍ୟରେ ହିଁ ଇଚ୍ଛା ବିଦ୍ୟମାନ । ତେବେ ଏହା ପରମ ସତ୍ୟ ହେବ କିପରି ? କାଳଦ୍ୱାରା ସୀମିତ ନ ହୋଇ କେହି ଇଚ୍ଛା କରିପାରେ ନାହିଁ ।

୩୦ । କେବଳ ବ୍ରହ୍ମ ଯେ ଏକମାତ୍ର ସତ୍ୟ ବସ୍ତୁ—ଏହି ସିଦ୍ଧାନ୍ତରେ ଉପନୀତ ହେବାର ଇଙ୍ଗିତ ଦେଇପାରିଲେ ମଧ୍ୟ ଇନ୍ଦ୍ରିୟଦ୍ୱାରା ଆମେ ତାହା ପରୀକ୍ଷା କରିପାରିବୁ ନାହିଁ । ଉଦାହରଣସ୍ୱରୂପ ଏହି ଏକତ୍ୱ ସମସ୍ତ ବସ୍ତୁରେ ପରିବ୍ୟାପ୍ତ ହୋଇଅଛି । ମାନବବୁଦ୍ଧିପ୍ରସୂତ ସାମାନ୍ୟୀକରଣ ପଦ୍ଧତିକୁ ଉଦାହରଣସ୍ୱରୂପ ନେଲେ ସବୁପ୍ରକାରର ବିଭିନ୍ନତା ନାମ ଓ ରୂପରୁ ସୃଷ୍ଟ । ତଥାପି ଯେତେବେଳେ ଆମେ ଏହି ନାମରୂପକୁ ଧରିବାକୁ ଯାଇ, ପୃଥକ୍‌ଭାବରେ ବୁଝିବାକୁ ଇଚ୍ଛା କରୁ, ସେତେବେଳେ ଦେଖି, ଏଗୁଡ଼ିକର କୌଣସି ଅସ୍ତିତ୍ୱ ନାହିଁ । ନାମ, ରୂପ ବା କାରଣକୁ ପୃଥକ୍‌ଭାବରେ ଆମେ କେବେହେଲେ ଦେଖିପାରିବା ନାହିଁ । ତେଣୁ ଏହି ଜଗତ୍‌ପ୍ରପଞ୍ଚରୂପକ ମାୟା ବ୍ରହ୍ମ-ସତ୍ତା ଉପରେ ନିର୍ଭରଶୀଳ; ବ୍ରହ୍ମ ବ୍ୟତୀତ ତାହାର କୌଣସି ଅସ୍ତିତ୍ୱ ନାହିଁ । ଦୃଷ୍ଟାନ୍ତସ୍ୱରୂପ ସାଗର-ତରଙ୍ଗକୁ ନିଆଯାଉ । ଯେତେବେଳଯାଏ ନିର୍ଦ୍ଦିଷ୍ଟ ପରିମାଣର ଜଳ ତରଙ୍ଗାକାରରେ ଥାଏ, ସେପର୍ଯ୍ୟନ୍ତ ତରଙ୍ଗର ଅସ୍ତିତ୍ୱ ରହିବ, କିନ୍ତୁ ଯେତେବେଳେ (ଜଳରାଶିର) ଏହି ଆକାର ମିଳାଇଯାଏ, ସେତେବେଳେ କେବଳ ସମୁଦ୍ର ହିଁ ରହିବ । ସମଗ୍ର ଜଳରାଶି ତରଙ୍ଗ ଉପରେ ନିର୍ଭରଶୀଳ ନୁହେଁ । ସାଗର ସର୍ବଦା ବିଦ୍ୟମାନ, କେବଳ (ମଝିରେ ମଝିରେ) ତରଙ୍ଗର ଆକୃତି ରହେ ନାହିଁ ।

୩୧ । ସତ୍ୟ ବସ୍ତୁ ଏକ । ମନ ସେହି ଏକକୁ ବହୁରୂପେ ପ୍ରତୀତ କରୁଅଛି । ଯେତେବେଳେ ଆମେ ବିଭିନ୍ନତା ଅନୁଭବ କରୁ, ସେତେବେଳେ ଏକତ୍ୱର ବୋଧ ରହେ ନାହିଁ । ଆଉ ଯେତେବେଳେ ଏକତ୍ୱକୁ ଉପଲବ୍ଧି କରୁ, ସେତେ-

ବେଳେ ବିଭିନ୍ନତା ଲୋପ ପାଏ । ଠିକ୍ ଯେପରି ଦୈନନ୍ଦିନ ଜୀବନରେ ଆମ୍ଭେ ଯେତେବେଳେ ଏକତ୍ୱକୁ ଅନୁଭବ କରୁ, ସେତେବେଳେ ବିଭିନ୍ନତାକୁ ଅନୁଭବ କରୁନାହିଁ । ଆମେମାନେ ସମସ୍ତେ ଏକତ୍ୱରୁ ଯାତ୍ରା ଆରମ୍ଭ କରିଥାଉ । ପ୍ରଥମ ଅବସ୍ଥାରେ ଜଣେ ଚୀନଦେଶୀୟ ଲୋକ ଯେତେବେଳେ ଆମେରିକାବାସୀମାନଙ୍କୁ ଦେଖେ, ସେ ସେମାନଙ୍କର ଆକୃତିଗତ କୌଣସି ପାର୍ଥକ୍ୟ ବୁଝିପାରେ ନାହିଁ । ତୁମେମାନେ ମଧ୍ୟ (ଆମେରିକାବାସୀମାନେ) ଚୀନଦେଶୀୟମାନଙ୍କ ଭିତରେ କୌଣସି ପାର୍ଥକ୍ୟ ବୁଝିପାରିବ ନାହିଁ ।

୩୨ । ମନ ଯେକୌଣସି ପଦାର୍ଥକୁ ଜ୍ଞାନର ବିଷୟ କରିପାରେ । ଯେଉଁ ସବୁ ପଦାର୍ଥ ବିଶେଷ ଧର୍ମ ବା ଗୁଣସମ୍ପନ୍ନ, ସେଗୁଡ଼ିକ ଜ୍ଞାତ କିମ୍ବା ଜ୍ଞେୟ ଏହି ଦୁଇ ପର୍ଯ୍ୟାୟରେ ପଡ଼ିବେ । ଯାହାର କୌଣସି ଧର୍ମ ବା ଗୁଣ ନାହିଁ, ତାହା ଅଜ୍ଞେୟ । ମନେକର, 'କ' ନାମକ କୌଣସି ଅଜ୍ଞାତ ଓ ଅଜ୍ଞେୟ ବହିର୍ଜଗତ ଅଛି । ଯେତେବେଳେ ମୁଁ ଏହି ବହିର୍ଜଗତ ପ୍ରତି ଦୃଷ୍ଟି ଦେବି, ସେତେବେଳେ ଏହା 'କ' + ମନ । ଯେତେବେଳେ ମୁଁ ଜଗତ କ'ଣ ଜାଣିବାକୁ ଇଚ୍ଛା କରିବି, ସେତେବେଳେ ଜ୍ଞାନର ତିନି-ଚତୁର୍ଥାଂଶ ଉପାଦାନ ମୋର ମନ । ଅନ୍ତର୍ଜଗତ ହେବ 'ଖ' + ମନ, ଏବଂ ବହିର୍ଜଗତ 'କ' + ମନ । ଅନ୍ତର୍ଜଗତ ଓ ବହିର୍ଜଗତ ମଧ୍ୟରେ ଯେଉଁ ପାର୍ଥକ୍ୟ ତାହା ମନର ସୃଷ୍ଟି, ବାକି ସବୁ ଅଜ୍ଞାତ ଓ ଅଜ୍ଞେୟ । ଏହା ଜ୍ଞାନର ଅତୀତ ଏବଂ ଯାହା କିଛି ଜ୍ଞାନର ଅତୀତ, ତାହାର ବିଭାଜନ ବା ପୃଥକୀକରଣ ଅସମ୍ଭବ । ସୁତରାଂ ବାହାରର 'କ' ଓ ଭିତରର 'ଖ' ଏକ ବସ୍ତୁ । ଅତଏବ ସତ୍ୟବସ୍ତୁ ଏକ ।

୩୩ । ମାୟା-ଆବରଣ ମଧ୍ୟଦେଇ ଦୃଷ୍ଟ ପରବ୍ରହ୍ମ ହିଁ ବ୍ୟକ୍ତିଭାବାପନ୍ନ ଈଶ୍ୱର । ଯେତେବେଳେ ପଞ୍ଚେନ୍ଦ୍ରିୟଦ୍ୱାରା ଆମେ ତାଙ୍କୁ ଧରିବାକୁ ଇଚ୍ଛା କରୁ, ସେତେବେଳେ ତାହାଙ୍କୁ ବ୍ୟକ୍ତିଭାବାପନ୍ନ ସାକାରରୂପରେ ଦେଖୁ । ଆତ୍ମାକୁ କେବେହେଲେ ଜ୍ଞାନର ବିଷୟ କରିଯାଏ ନାହିଁ । ଜ୍ଞାତା କିପରି ନିଜକୁ ଜାଣିବେ ? କିନ୍ତୁ ଆତ୍ମା ଯେପରି ଗୋଟିଏ ଛାୟା ପ୍ରକ୍ଷେପ କରିଥାଆନ୍ତି—ଏହି ଛାୟାପାତକୁ ହିଁ ଜ୍ଞାନର ବିଷୟୀକରଣ (objectification) କୁହାଯାଇପାରେ । ଏହି ଛାୟା-ତତ୍ତ୍ୱର ଚରମ ପ୍ରକାଶ ପରମାତ୍ମାଙ୍କର ନିଜେ ନିଜକୁ ଜାଣିବାର ଚେଷ୍ଟାକୁ ଆମେ ବ୍ୟକ୍ତି-ଭାବାପନ୍ନ ସାକାର ଈଶ୍ୱର କହୁ । ଆତ୍ମା ହିଁ ଶାଶ୍ୱତ ଜ୍ଞାତା (subject) । ଆମ୍ଭେ ସର୍ବଦା ଆତ୍ମାକୁ ଜ୍ଞାନର ବିଷୟ କରିବା ପାଇଁ ସଂଗ୍ରାମ କରୁଅଛୁ । ପୁନଶ୍ଚ ଏହି ସଂଗ୍ରାମରୁ ବିଶ୍ୱଜଗତର ଉତ୍ପତ୍ତି ହୋଇଅଛି, ଏବଂ ଯାହାକୁ ଆମେ ଜଡ଼ ବସ୍ତୁ ଓ ଅନ୍ୟ ଅନେକ ନାମରେ ଅଭିହିତ କରୁ—ଏହି ସବୁର ଉତ୍ପତ୍ତି ହୋଇଅଛି । ଏହା ଆମର ଦୁର୍ବଳ ପ୍ରଚେଷ୍ଟାର ଫଳ । ଆତ୍ମାର ସର୍ବୋଚ୍ଚ ପ୍ରକାଶ ବ୍ୟକ୍ତିଭାବାପନ୍ନ ସାକାର ଈଶ୍ୱର । ଏହି ବିଷୟୀକରଣ ଆମର ସ୍ୱରୂପ-ପ୍ରକାଶ ନିମିତ୍ତ ଏକ ପ୍ରଚେଷ୍ଟା । ସାଂଖ୍ୟ ମତରେ ପ୍ରକୃତି ପୁରୁଷକୁ ଏହି ସମସ୍ତ ଅଭିଜ୍ଞତା ଭିତର ଦେଇ ନେଇ

ଯାଉଛି, ଏବଂ ଯେତେବେଳେ ପୁରୁଷର ଯଥାର୍ଥ ଅଭିଜ୍ଞତା ହୁଏ, ସେତେବେଳେ ସେ ତାହାର ସ୍ୱରୂପ ବୁଝିପାରେ । ଅଦ୍ୱୈତ-ବେଦାନ୍ତ ମତରେ ଆତ୍ମା ନିଜକୁ ପ୍ରକାଶ କରିବା ପାଇଁ ଚେଷ୍ଟା କରୁଛନ୍ତି । ଦୀର୍ଘ ସାଧନା ପରେ ଆତ୍ମା ଦେଖନ୍ତି ଯେ, ଜ୍ଞାତା (ବିଷୟୀ—subject) ସର୍ବଦା ଜ୍ଞାତା ହୋଇ ରହିବେ ଏବଂ ସେତେବେଳେ ଅନାସକ୍ତି ଆରମ୍ଭ ହୁଏ ଏବଂ ଅବଶେଷରେ ଆତ୍ମା ମୁକ୍ତ ହୁଅନ୍ତି ।

କୌଣସି ବ୍ୟକ୍ତି ଯେତେବେଳେ ପୂର୍ଣ୍ଣତା ଲାଭ କରନ୍ତି, ସେତେବେଳେ ସେ ବ୍ୟକ୍ତିଭାବାପନ୍ନ ଈଶ୍ୱର ହୁଅନ୍ତି । 'ମୁଁ ଓ ମୋର ପିତା ଏକ' । ସେ ଜାଣିପାରନ୍ତି ଯେ, ବ୍ରହ୍ମଙ୍କ ସହିତ ସେ ଏକ ଏବଂ ସାକାର ଈଶ୍ୱରଙ୍କ ଭଳି ସେ ନିଜକୁ ଅଭିକ୍ଷେପ କରନ୍ତି, ଯେପରି କେବେ କେବେ ରାଜା ମଧ୍ୟ ପିତୁଳା ନେଇ ଖେଳିଥାଆନ୍ତି ।

୩୪ । କଳ୍ପନା ମନୁଷ୍ୟର ବନ୍ଧନ ଛିନ୍ନ କରିବାରେ ସାହାଯ୍ୟ କରେ । ସମଗ୍ର ବିଶ୍ୱ ଗୋଟିଏ କଳ୍ପନା । ଏକ ଧରଣର କଳ୍ପନା ଅନ୍ୟ ଧରଣର କଳ୍ପନାର ଅବସାନ ଘଟାଇପାରେ । ଜଗତରେ ପାପ ଅଛି, ଦୁଃଖ ଓ ମୃତ୍ୟୁ ଅଛି—ଏପରି କଳ୍ପନା ଭୟଙ୍କର । ତୁମେ ପବିତ୍ର, ଈଶ୍ୱର ସତ୍ୟ, ଜଗତରେ କୌଣସି ଦୁଃଖ ନାହିଁ —ଏପରି ଚିନ୍ତା ଶୁଭ ଏବଂ ଆମ ବନ୍ଧନ ଦୂର କରିବାରେ ସାହାଯ୍ୟ କରିଥାଏ । ମାନବମନର ଉଚ୍ଚତମ କଳ୍ପନା—ବ୍ୟକ୍ତିଭାବାପନ୍ନ ଈଶ୍ୱରଭାବ ଶୃଙ୍ଖଳକୁ ସମ୍ପୂର୍ଣ୍ଣ ଭାବରେ ଛିନ୍ନ କରିପାରେ ।

୩୫ । ପରମ ଆନନ୍ଦର ମୁହୂର୍ତ୍ତ ଆମ ଜୀବନରେ କେବେ କେବେ ଆସି ଉପସ୍ଥିତ ହୁଏ, ସେତେବେଳେ ଆମେ ଆନନ୍ଦ ବ୍ୟତୀତ ଅନ୍ୟ କିଛି ଜାଣୁନାହିଁ । ସେ ଭାବ ଚାଲିଯାଏ; ପୁଣି ବିଶ୍ୱବ୍ରହ୍ମାଣ୍ଡର ବୈଚିତ୍ର୍ୟ ଚକ୍ଷୁ ସମ୍ମୁଖରେ ଆବର୍ତ୍ତିତ ହେଉଥାଏ । କିନ୍ତୁ ଆମେ ଜାଣୁ, ସବୁକିଛିର ଆଧାରରୂପେ ଅବସ୍ଥିତ ଈଶ୍ୱରସତ୍ତା ଉପରେ ଏହି ବିଚିତ୍ର କାରୁକାର୍ଯ୍ୟ ।

ବେଦାନ୍ତ ଶିକ୍ଷା ଦିଏ—ଏହି ମୁହୂର୍ତ୍ତରେ ନିର୍ବାଣଲାଭ କରାଯାଏ; ଏହି ଅବସ୍ଥାପ୍ରାପ୍ତି ପାଇଁ ଆମକୁ ମୃତ୍ୟୁ ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ହେବ ନାହିଁ । ନିର୍ବାଣ ଆତ୍ମସ୍ୱରୂପର ଉପଲବ୍ଧି—ମୁହୂର୍ତ୍ତେ ପାଇଁ ମଧ୍ୟ ଯଦି କେହି ଏହି ତତ୍ତ୍ୱ ଉପଲବ୍ଧି କରେ, ତେବେ ସେ ଆଉ ବ୍ୟକ୍ତିତ୍ୱର ମରୀଚିକାରେ ଆଦୌ ବିଭ୍ରାନ୍ତ ହେବ ନାହିଁ । ଚକ୍ଷୁ ଥିଲେ ଆପାତପ୍ରତୀୟମାନ ଜଗତ ଦେଖିବାକୁ ହିଁ ହେବ । କିନ୍ତୁ ଜଗତ କ'ଣ, ସର୍ବଦା ଆମର ସେହି ବୋଧ ଥାଏ, କାରଣ ଆମେ ଏହାର ପ୍ରକୃତ ସ୍ୱରୂପକୁ ବୁଝି-ପାରୁଛୁ । (ମାୟାର) ଆବରଣ ଅପରିଣାମୀ ଆତ୍ମାକୁ ଘୋଡ଼ାଇ ରଖିଅଛି । ଆବରଣ ଅପସାରିତ ହେଲେ ଅନ୍ତରସ୍ଥ ଆତ୍ମା ପ୍ରକାଶିତ ହେବେ । ଯାହା କିଛି ପରିବର୍ତ୍ତନ, ତାହା କେବଳ ସେହି ଆବରଣ ଉପରେ ଘଟୁଅଛି । ମହାପୁରୁଷମାନଙ୍କ ଅନ୍ତରରେ ଏହି ଆବରଣ ଅତି କ୍ଷୀଣ, ସତ୍ୟ ତା' ଭିତର ଦେଇ ସ୍ପଷ୍ଟଭାବେ ଉଦ୍ଭାସିତ ହୁଏ । କିନ୍ତୁ ଜଣେ ପାପୀର ଏହି ଆବରଣ ମୋଟା । ଏହି ଆବରଣ ଭିତରେ ଯେଉଁ ଆତ୍ମା

ଅଛନ୍ତି, ସେ ଆମ ଦୃଷ୍ଟିର ବାହାରେ । ଯେତେବେଳେ ଆବରଣ ସମ୍ପୂର୍ଣ୍ଣରୂପେ ଅପସାରିତ ହୁଏ, ସେତେବେଳେ ଆମେ ବୁଝିପାରୁ ଯେ, ଏହି ଆବରଣ କେବେ ନ ଥିଲା, ଏବଂ ଆମେ ସର୍ବଦା ଆତ୍ମା ଥିଲୁ । ସେତେବେଳେ ଏହି ଆବରଣ କଥା ମଧ୍ୟ ଆମେ ଭୁଲିଯାଉ ।

୩୭ । ଆମ ଜୀବନର ଦୁଇଟି ବିଶିଷ୍ଟ ଧାରା ହେଲା : ପ୍ରଥମତଃ ଯିଏ ତାହାର ପ୍ରକୃତ ସ୍ୱରୂପକୁ ଜାଣିଅଛି, ସେ କେବେହେଲେ ଜାଗତିକ ବସ୍ତୁଦ୍ୱାରା ବିଚଳିତ ହେବ ନାହିଁ, ଦ୍ୱିତୀୟତଃ କେବଳ ସେହି ବ୍ୟକ୍ତି ଜଗତର କଲ୍ୟାଣ କରିପାରେ, ଯେ ଅନ୍ୟମାନଙ୍କର ହିତ କରିବାର ପ୍ରକୃତ ଉଦ୍ଦେଶ୍ୟ ବୁଝିପାରିଛି । କାରଣ ଆତ୍ମା ଏକ । ଏହା 'ଅହଂଭାବ' ନୁହେଁ, କାରଣ ସେଥିରୁ ଭେଦବୁଦ୍ଧି ଆସିବ । ଏହା ଅହଂଶୂନ୍ୟତା । ବିଶ୍ୱାତ୍ମାର ସମଷ୍ଟିବୋଧ ହିଁ ସେତେବେଳେ ରହିବ, ବ୍ୟକ୍ତିକେନ୍ଦ୍ରିକ (ବ୍ୟଷ୍ଟି-) ଭାବ ନୁହେଁ । ପ୍ରେମ ଓ ସହାନୁଭୂତି ପ୍ରତି କ୍ଷେତ୍ରରେ ଏହି ବିଶ୍ୱାତ୍ମଭାବକୁ ହିଁ ପ୍ରମାଣ କରିଥାଏ । 'ନାହଂ, ତୁହୁଁ'—ମୁଁ ନୁହେଁ, ତୁମେ । ଅନ୍ୟକୁ ମୁଁ ସାହାଯ୍ୟ କରେ, କାରଣ, ମୁଁ ତା' ମଧ୍ୟରେ ଏବଂ ସେ ମୋ ମଧ୍ୟରେ ବିଦ୍ୟମାନ । ଏହି ତତ୍ତ୍ୱଟି ଦାର୍ଶନିକ ଭାଷାରେ ଏପରି ପ୍ରକାଶ କରାଯାଏ । କେବଳ ବେଦାନ୍ତବାଦୀମାନେ ନିଃସଙ୍କୋଚଭାବରେ ଅନ୍ୟ ପାଇଁ ନିଜ ଜୀବନ ବଳି ଦେଇପାରନ୍ତି; କାରଣ ସେ ଜାଣନ୍ତି ତାଙ୍କର ମୃତ୍ୟୁ ନାହିଁ । ଯେତେଦିନଯାଏ ପୃଥିବୀରେ ଗୋଟିଏ ମାତ୍ର କୀଟ ଜୀବିତ ଥିବ, ସେପର୍ଯ୍ୟନ୍ତ ସେ ମଧ୍ୟ ଥିବେ, ଯେତେଦିନଯାଏ ଜଣେ ସୁଦ୍ଧା ଆହାର ଗ୍ରହଣ କରେ, ସେତେଦିନ ସେ ମଧ୍ୟ ଆହାର କରନ୍ତି । ସୁତରାଂ ସେ ଲୋକ-କଲ୍ୟାଣାର୍ଥେ କାର୍ଯ୍ୟ କରିଯାଆନ୍ତି, ଶରୀରକୁ ଯତ୍ନ ନେବାର କଥା ସେ କଦାପି ଚିନ୍ତା କରନ୍ତି ନାହିଁ । ସାଧକ ଯେତେବେଳେ ଆତ୍ମତ୍ୟାଗର ଏହି ସ୍ତରକୁ ଉନ୍ନୀତ ହୁଅନ୍ତି, ସେତେବେଳେ ସେ ସକଳ ନୈତିକ ନିୟମର ଊର୍ଦ୍ଧ୍ୱକୁ—ସକଳ ବିଧିନିଷେଧର ଊର୍ଦ୍ଧ୍ୱକୁ ଚାଲିଯାଆନ୍ତି । 'ସେ ବିଦ୍ୟାବିନୟସମ୍ପନ୍ନ ବ୍ରାହ୍ମଣ, ଗାଈ, କୁକୁର ଏବଂ ଅତି ଦୁଃଖପୂର୍ଣ୍ଣ ସ୍ଥାନରେ ଶ୍ରୋତ୍ରିୟ ବ୍ରାହ୍ମଣ, ଗାଈ, କୁକୁର ବା ଦୁଃଖପୂର୍ଣ୍ଣ ସ୍ଥାନ ଦେଖନ୍ତି ନାହିଁ; ବରଂ ସମସ୍ତଙ୍କ ଭିତରେ ସେ ଈଶ୍ୱରଙ୍କର ପ୍ରକାଶ ଦେଖନ୍ତି । ସେ ହିଁ ଏକମାତ୍ର ସୁଖୀ, ଯିଏ ଏହି ଜୀବନରେ ଏହି ସାମ୍ୟଭାବ ଲାଭ କରିଛନ୍ତି, ସେ ସ୍ୱର୍ଗାଦି ଲୋକ (ସଂସାର) ଜୟ କରିଛନ୍ତି । ଈଶ୍ୱର ପବିତ୍ର, ସୁତରାଂ ଏପରି ବ୍ୟକ୍ତି ଈଶ୍ୱରଙ୍କ ମଧ୍ୟରେ ଅବସ୍ଥାନ କରନ୍ତି ।'[୧] ଯୀଶୁ କହିଥିଲେ, 'ଏବ୍ରାହମ୍‌ଙ୍କ ପୂର୍ବେ ମୁଁ ଥିଲି । ଏହାର ଅର୍ଥ ଏହି ଯେ, ଏମାନେ ନିତ୍ୟମୁକ୍ତ ଆତ୍ମା । ଅତୀତ କର୍ମଫଳ ହେତୁ ବାଧ୍ୟ ହୋଇ ନାଜାରେଥର ଯୀଶୁ ମାନବଦେହ ଧାରଣ କରି ନାହାନ୍ତି, ସେ କେବଳ ଲୋକକଲ୍ୟାଣ ପାଇଁ ଜନ୍ମଗ୍ରହଣ କରିଛନ୍ତି । ମନୁଷ୍ୟ ମୁକ୍ତ ହେଲେ ସ୍ତବ୍ଧ ବା ଜଡ଼ବତ୍ ହୋଇଯାଏ ନାହିଁ; ସେ ଅନ୍ୟାନ୍ୟ ପ୍ରାଣୀମାନଙ୍କ ଅପେକ୍ଷା ଅଧିକ କ୍ରିୟାଶୀଳ ହୁଅନ୍ତି । କାରଣ ଅନ୍ୟ ସମସ୍ତେ

---

୧ ତୁଳନୀୟ, ଗୀତା, ୫।୧୮-୧୯

ବାଧ୍ୟ ହୋଇ କାମ କରନ୍ତି । କେବଳ ମୁକ୍ତ ପୁରୁଷ ସ୍ୱାଧୀନଭାବରେ କର୍ମ କରନ୍ତି ।

୩୭ । **ବ୍ୟକ୍ତିତ୍ୱ :** ଆମେ ଯଦି ଈଶ୍ୱରଙ୍କ ସହିତ ଅଭିନ୍ନ ହେଉ, ତେବେ କ'ଣ ଆମର ବ୍ୟକ୍ତିତ୍ୱ ରହିବ ନାହିଁ ? ହଁ ରହିବ । ଆମମାନଙ୍କ ବ୍ୟକ୍ତିତ୍ୱ ହିଁ ଈଶ୍ୱର । ବର୍ତ୍ତମାନ ତୁମେ ଯାହା ଅଛ, ତାହା ବ୍ୟକ୍ତିତ୍ୱ ନୁହେଁ, ତେବେ ତୁମେ ବ୍ୟକ୍ତିତ୍ୱ ଦିଗକୁ ଅଗ୍ରସର ହେଉଅଛ । 'ବ୍ୟକ୍ତିତ୍ୱ' ଶବ୍ଦର ଅର୍ଥ—ଯାହାକୁ ବିଭକ୍ତ କରାଯାଏ ନାହିଁ । ଏହି ମୁହୂର୍ତ୍ତରେ ତୁମେ ଏକପ୍ରକାର ଚିନ୍ତା କରୁଅଛ, ପରମୁହୂର୍ତ୍ତରେ ଅନ୍ୟ ଭାବରେ, ପୁଣି ଦୁଇଘଣ୍ଟା ପରେ ଆଉ ଏକ ଭାବରେ । ଯାହା ପରିବର୍ତ୍ତନୀୟ ନୁହେଁ, ତାହା ହିଁ ବ୍ୟକ୍ତିତ୍ୱ—ସବୁକିଛିର ଅତୀତ—ଅପରିବର୍ତ୍ତନୀୟ । ଚିରକାଳ ଏକ ଅବସ୍ଥାରେ ଆବଦ୍ଧ ରହିବା ଅତି ଭୟାବହ ବ୍ୟାପାର, କାରଣ ତା'ହେଲେ ଯେଉଁ ବ୍ୟକ୍ତି ଚୋର ସେ ଚିରକାଳ ଚୋର ରହିବ, ଆଉ ଯେ ଅଭଦ୍ର ସେ ଅଭଦ୍ର ହୋଇ ରହିବ । ଗୋଟିଏ ଶିଶୁ ମରିଗଲେ ତାହାକୁ ଚିରକାଳ ଶିଶୁରୂପେ ରହିବାକୁ ହେବ । ଯାହାର କେବେହେଲେ ପରିବର୍ତ୍ତନ ହୁଏ ନାହିଁ କିମ୍ବା ହେବ ନାହିଁ, ତାହା ହିଁ ପ୍ରକୃତ ବ୍ୟକ୍ତିତ୍ୱ—ଏବଂ ତାହା ହିଁ ଆମର ଅନ୍ତର୍ଯାମୀ ଭଗବାନ ।

୩୮ । ଈଶ୍ୱର ଯୁକ୍ତିବିଚାର କରନ୍ତି ନାହିଁ । କୌଣସି ବିଷୟ ତୁମର ଜଣା ଥିଲେ ତୁମେ ଯୁକ୍ତି କରିବ କାହିଁକି ? କେତେଗୁଡ଼ିଏ ତଥ୍ୟ ପାଇବା ପାଇଁ ଆମକୁ କୀଟ ଭଳି ମନ୍ଥର ଗତିରେ ଅଗ୍ରସର ହେବାକୁ ପଡ଼ିବ । ଯାଉ ଯାଉ ଝିଣ୍ଟି ପଡ଼ିଲେ ସବୁ କିଛି ଓଲଟପାଲଟ ହୋଇଯିବ—ଏହା ଦୁର୍ବଳତାର ଚିହ୍ନ । ଆତ୍ମା ପ୍ରତିଫଳିତ ହୁଅନ୍ତି ମନରେ ଓ ପ୍ରତ୍ୟେକ ବସ୍ତୁରେ । ଆତ୍ମାର ଜ୍ୟୋତି ହିଁ ମନକୁ ଚେତନଶୀଳ କରେ । ଚୈତନ୍ୟର ପ୍ରକାଶ ସବୁ କିଛିରେ ଅଛି; ମନଗୁଡ଼ିକ କେତେଗୁଡ଼ିଏ ଦର୍ପଣ ମାତ୍ର । ଯାହାକୁ ତୁମେମାନେ ପ୍ରେମ, ଭୟ, ଘୃଣା, ପୁଣ୍ୟ ଓ ପାପ କହ, ସବୁ ଆତ୍ମାର ପ୍ରତିଫଳନ ମାତ୍ର । ଯେତେବେଳେ ପ୍ରତିଫଳକ ନିକୃଷ୍ଟ, ସେତେବେଳେ ପ୍ରତିଫଳନ ମଧ୍ୟ ମନ୍ଦ ହେବ ।

୩୯ । ଏକଦା ଆମେ ନିମ୍ନତର ଜୀବ ଥିଲୁ । ଆମେ ମନେକରୁ, ସେମାନେ ଆମ ଅପେକ୍ଷା ଭିନ୍ନ ପ୍ରକୃତିର । ମୁଁ ପାଶ୍ଚାତ୍ୟଦେଶର ଲୋକମାନଙ୍କ କହିବାର ଶୁଣି-ଅଛି, 'ଏ ଜଗତ ମୋ ପାଇଁ ସୃଷ୍ଟ ।' ଯଦି ବାଘଗୁଡ଼ିକ ବହି ଲେଖିପାରୁଥାଆନ୍ତେ, ସେମାନେ ଲେଖନ୍ତେ : 'ମନୁଷ୍ୟ ଆମ ପାଇଁ ସୃଷ୍ଟ । ମନୁଷ୍ୟ ଘୋର ପାପୀ, କାରଣ ସେମାନେ ବାଘ ହାତୁଡ଼ରେ ସହଜରେ ପଡ଼ନ୍ତି ନାହିଁ ।' ଯେଉଁ କୀଟ ଆଜି ମାଟି ଉପରେ ଚାଲୁଛି, ସେ ମଧ୍ୟ ଭାବୀ ଈଶ୍ୱର ।

୪୦ । ପ୍ରକୃତିର ନିୟମ ଅନୁସାରେ ଚଳିବା ହିଁ ମୁକ୍ତି—ଏ ମତ ମୁଁ ସ୍ୱୀକାର କରେ ନାହିଁ । ଏହାର ଅର୍ଥ କ'ଣ ମୁଁ ବୁଝିପାରେ ନାହିଁ । ମାନବ-ପ୍ରଗତିର ଇତିହାସ ଆଲୋଚନା କଲେ ଦେଖାଯାଏ, ପ୍ରାକୃତିକ ନିୟମ ବିରୋଧରେ ଆଚରଣ କରି ମନୁଷ୍ୟ ପ୍ରଗତିଶୀଳ ହୋଇଅଛି ।

ଉଚ୍ଚତର ନିୟମଦ୍ୱାରା ନିମ୍ନତର ନିୟମକୁ ଜୟ କରାଯାଏ । କିନ୍ତୁ ସେଥିରେ ମଧ୍ୟ ଜୟେଚ୍ଛୁ ମନ ମୁକ୍ତିର ଚେଷ୍ଟା କରୁଅଛି ଏବଂ ଆମେ ଯେତେବେଳେ ବୁଝିଲୁ ଯେ ସଂଗ୍ରାମ ମଧ୍ୟ ପ୍ରାକୃତିକ ନିୟମଦ୍ୱାରା ସୀମିତ, ସେତେବେଳେ ତାହାକୁ ମଧ୍ୟ ଜୟ କରିବାର ଚେଷ୍ଟା ଆମେ କରିଥାଉ । ସୁତରାଂ ପ୍ରତି କ୍ଷେତ୍ରରେ ମୁକ୍ତି ହିଁ ହେଲା ଉଦ୍ଦେଶ୍ୟ । ବୃକ୍ଷ କେବେହେଲେ ନିୟମଲଙ୍ଘନ କରେ ନାହିଁ । ଗୋରୁ ଚୋରି କରିଥିବାର ମୁଁ କେବେ ଦେଖିନାହିଁ । ଶାମୁକା କେବେହେଲେ ମିଛ କଥା କହେ ନାହିଁ—ତଥାପି ସେମାନେ ମନୁଷ୍ୟ ଅପେକ୍ଷା ଉଚ୍ଚତର ନୁହନ୍ତି । ଏହି ଜୀବନ ମୁକ୍ତିର ଏକ ଶକ୍ତିଶାଳୀ ଘୋଷଣା ! ସାମାଜିକ କ୍ଷେତ୍ରରେ, ରାଜନୈତିକ କ୍ଷେତ୍ରରେ କିମ୍ବା ଆମ ଧର୍ମ ଜୀବନରେ ଏହି ନିୟମାନୁବର୍ତ୍ତିତାର ଆଧିକ୍ୟ ହେଲେ ଆମେ ଜଡ଼ରେ ପରିଣତ ହେବୁ । ନିୟମାଧିକ୍ୟ ମୃତ୍ୟୁର ଚିହ୍ନ । ଯେଉଁ ସମାଜରେ ନିୟମର ଆଧିକ୍ୟ ଦେଖା ଦିଏ, ତାହା ଶୀଘ୍ର ଲୋପ ପାଇବ । ଯଦି ତୁମେମାନେ ଭାରତବର୍ଷର ବୈଶିଷ୍ଟ୍ୟ ଆଲୋଚନା କର, ତେବେ ଦେଖିବ ଯେ ହିନ୍ଦୁଙ୍କ ଭଳି ଅନ୍ୟ କୌଣସି ଜାତିରେ ଏତେ ଅଧିକ ନିୟମ ପ୍ରଚଳିତ ନାହିଁ, ତେଣୁ ଜାତିଗତଭାବେ ହିନ୍ଦୁମାନଙ୍କର ମୃତ୍ୟୁ ଘଟିଛି । କିନ୍ତୁ ହିନ୍ଦୁମାନଙ୍କର ଗୋଟିଏ ବିଶେଷ ଭାବ ହେଉଛି, ସେମାନେ କେବେହେଲେ ଧର୍ମ ବିଷୟରେ କୌଣସି ମତବାଦ ବା ମତାନ୍ଧତା ସୃଷ୍ଟି କରିନାହାନ୍ତି, ଫଳରେ (ସେମାନଙ୍କ) ଧର୍ମର ସର୍ବାଧିକ ପରିପୁଷ୍ଟି ସାଧିତ ହୋଇ-ଅଛି । ଚିରନ୍ତନ-ନିୟମାନୁବର୍ତ୍ତିତା ମୁକ୍ତ ହୋଇ ନ ପାରେ । କାରଣ ଚିରନ୍ତନକୁ ନିୟମାନୁବର୍ତ୍ତୀ କରିବାର ଅର୍ଥ ହେଲା ତାହାକୁ ସଙ୍କୁଚିତ କରିବା ।

୪୧ । ଭଗବାନଙ୍କର କୌଣସି ଉଦ୍ଦେଶ୍ୟ ନାହିଁ; କାରଣ ତାଙ୍କର ଯଦି କୌଣସି ଉଦ୍ଦେଶ୍ୟ ଥାଆନ୍ତା, ତେବେ ସେ ଗୋଟିଏ ବୃକ୍ଷ ଅପେକ୍ଷା ଉତ୍କୃଷ୍ଟ ହୋଇ ନ ଥାନ୍ତେ । ତାଙ୍କର ଉଦ୍ଦେଶ୍ୟ କାହିଁକି ରହିବ ? ଯଦି ତାଙ୍କର ଉଦ୍ଦେଶ୍ୟ ଥାଆନ୍ତା, ତେବେ ସେ ସେହି ଉଦ୍ଦେଶ୍ୟରେ ବଦ୍ଧ ହୋଇଥାଆନ୍ତେ । ମନେକର, ଜଣେ ଗୋଟିଏ ଗାଲିଚା ବୁଣୁଛି, ଅର୍ଥାତ୍ ସେ ଗୋଟିଏ ମହତ୍ତର ଭାବକୁ ରୂପ ପ୍ରଦାନ କରୁଛି । ଭଗବାନ ନିଜକୁ ଖାପଖୁଆଇ ଚଳିବେ ଏପରି ଭାବ କେଉଁଠି ? ସମ୍ରାଟଗଣ ଯେପରି କେବେ କେବେ ପିତୁଳା ନେଇ ଖେଳନ୍ତି, ସେହିପରି ଈଶ୍ୱର ମଧ୍ୟ ଏହି ପ୍ରକୃତି ସହିତ ଖେଳୁଛନ୍ତି, ଏବଂ ଆମେ ଏହାକୁ ହିଁ ନିୟମ କହୁ, କାରଣ ଏହାର ଗୋଟିଏ କ୍ଷୁଦ୍ର ଅଂଶ—ଯାହା ଶୃଙ୍ଖଳିତଭାବେ ଚାଲିଛି—କେବଳ ତାହାକୁ ହିଁ ଦେଖିଥାଉ । ନିୟମ ସମ୍ପର୍କରେ ଆମର ସମସ୍ତ ଧାରଣା ଏହି କ୍ଷୁଦ୍ର ଅଂଶ ଭିତରେ ସୀମାବଦ୍ଧ । ନିୟମ ଅନନ୍ତ—ଅର୍ଥାତ୍ ଅନନ୍ତକାଳ ଧରି ପ୍ରସ୍ତର ପଡ଼ୁଥିବ—ଏହା ସତ୍ୟ ନୁହେଁ । ଯଦି ଯୁକ୍ତି ଅଭିଜ୍ଞତା ଉପରେ ପ୍ରତିଷ୍ଠିତ ହୁଏ, ତେବେ ପଚିଶ ଲକ୍ଷ ବର୍ଷ ପୂର୍ବେ ପ୍ରସ୍ତର ପଡ଼ୁଥିବାର କିଏ ଦେଖିଛି ? ସୁତରାଂ ନିୟମ ମନୁଷ୍ୟର ସ୍ୱଭାବ-ଗତ ବସ୍ତୁ ନୁହେଁ । ମନୁଷ୍ୟ ସମ୍ବନ୍ଧରେ ବିଜ୍ଞାନସମ୍ମତ ସିଦ୍ଧାନ୍ତ ହେଲା, ଆମର

ଯେଉଁଠାରୁ ଆରମ୍ଭ, ସେହିଠାରେ ହିଁ ଶେଷ । କାର୍ଯ୍ୟତଃ ଆମେ ନିୟମର ବାହାରକୁ କ୍ରମଶଃ ଗୁଲିଛୁ ଏବଂ ପରିଶେଷରେ ସମଗ୍ର ଜୀବନର ଅଭିଜ୍ଞତା ନେଇ ସମ୍ପୂର୍ଣ୍ଣଭାବରେ ନିୟମାତୀତ ହେଉ । ଈଶ୍ୱର ଅର୍ଥାତ୍ ମୁକ୍ତ ଅବସ୍ଥାରୁ ଆମର ଆରମ୍ଭ, ପୁଣି ଈଶ୍ୱର ବା ମୁକ୍ତ ଅବସ୍ଥାରେ ହିଁ ଆମର ପରିସମାପ୍ତି । ନିୟମଗୁଡ଼ିକ ଆମ ପଥରେ ରହିଛି ଏବଂ ଏହିସବୁ ନିୟମ ଭିତର ଦେଇ ଆମକୁ ଯିବାକୁ ପଡ଼ିବ । ବେଦାନ୍ତ ମୁକ୍ତିର ଏକ ନିର୍ଭୀକ ଘୋଷଣା । ନିୟମ ବେଦାନ୍ତବାଦୀଙ୍କୁ ଭୀତ କରେ । ଏହି ଚିରନ୍ତନ ନିୟମ ତାଙ୍କ ନିକଟରେ ଅତି ଭୟାବହ କଥା, କାରଣ ତାହାହେଲେ ମୁକ୍ତିର ପଥ ଅବରୁଦ୍ଧ ହେବ । ଯଦି ଏପରି ଏକ ଚିରନ୍ତନ ନିୟମରେ ସେ ବଦ୍ଧ ହୁଅନ୍ତି, ତେବେ ମନୁଷ୍ୟ ଓ ଖଣ୍ଡିଏ ତୃଣ ମଧ୍ୟରେ ପାର୍ଥକ୍ୟ କେଉଁଠି ? ନିୟମର ବସ୍ତୁ-ନିରପେକ୍ଷ ଭାବରେ ଆମର ବିଶ୍ୱାସ ନାହିଁ ।

୪୨ । ଆମେ କହିଥାଉ ଯେ, ମୁକ୍ତିଲାଭ ପାଇଁ ଆମକୁ ଚେଷ୍ଟା କରିବାକୁ ହିଁ ହେବ । ସେହି ମୁକ୍ତ ହିଁ ହେଲେ ଈଶ୍ୱର । ସେହି ଆନନ୍ଦକୁ ହିଁ ମନୁଷ୍ୟ ସର୍ବଦା ଉପ-ଭୋଗ କରିଥାଏ । ଯେତେବେଳେ କେହି ଅସୀମ ଆନନ୍ଦ ପାଇବାକୁ ଚେଷ୍ଟା କରେ, ସେତେବେଳେ ସେ ବସ୍ତୁରେ ସେହି ଆନନ୍ଦର କଣିକା ମାତ୍ର ପାଇଥାଏ । ଈଶ୍ୱରଙ୍କ-ଠାରେ ସାଧକ ଯେଉଁ ଆନନ୍ଦ ଲାଭ କରେ, ଚୋର କିର ଚୋର ମଧ୍ୟ ସେହି ଆନନ୍ଦ ପାଇଥାଏ—ଯଦିଓ ତାହା ଆନନ୍ଦର କଣିକା ମାତ୍ର ଏବଂ ତାହା ଦୁଃଖ ସହିତ ମିଶ୍ରିତ । ଯଥାର୍ଥ ଆନନ୍ଦ ହିଁ ଭଗବାନ, ପ୍ରେମ ହିଁ ଭଗବାନ, ମୁକ୍ତି ହିଁ ଭଗବାନ । ଯାହା ମନୁଷ୍ୟକୁ ବଦ୍ଧ କରେ, ତାହା ଭଗବାନ ନୁହେଁ ।

୪୩ । ଯଥାର୍ଥ ସତ୍ୟ ଅବ୍ୟକ୍ତ, ପ୍ରକାଶଶୂନ୍ୟ । ଆମେ ଧାରଣା କରିପାରୁ ନାହିଁ, କାରଣ ଧାରଣା କରିବାକୁ ହେଲେ ମନଦ୍ୱାରା ତାହା କରିବାକୁ ହେବ, କିନ୍ତୁ ମନ ଗୋଟିଏ ବ୍ୟକ୍ତ ପଦାର୍ଥ । ପ୍ରକୃତ ସତ୍ତାର ମହିମା ଏହି ଯେ, ତାହା ଧାରଣା-ତୀତ, ମନର ଅଗୋଚର । ଆମମାନଙ୍କୁ ମନେ ରଖିବାକୁ ହେବ ଯେ, ତୀବ୍ରତମ ଓ କ୍ଷୀଣତମ ଆଲୋକସ୍ପନ୍ଦନ ଆମେ ଦେଖିପାରୁ ନାହିଁ, ସେଗୁଡ଼ିକ ଗୋଟିଏ ସତ୍ତାର ବିପରୀତ ପ୍ରାନ୍ତ । ଏପରି କେତେଗୁଡ଼ିଏ ଜିନିଷ ଅଛି, ଯାହା ଆମର ଅଜ୍ଞାତ, କିନ୍ତୁ ସେଗୁଡ଼ିକୁ ଆମେ ଚାହିଁଲେ ଜାଣିପାରିବୁ । କେବଳ ଅଜ୍ଞାନ ହେତୁ ତାହା ଆମେ ଜାଣିପାରୁ ନାହିଁ । ପୁଣି ଏପରି କେତେକ ବସ୍ତୁ ଅଛି, ଯେଉଁଗୁଡ଼ିକ ଆମେ କେବେ ଜାଣିପାରିବୁ ନାହିଁ, କାରଣ ସେଗୁଡ଼ିକ ଆମ ଜ୍ଞାନର ସର୍ବୋଚ୍ଚ ସ୍ପନ୍ଦନ ଅପେକ୍ଷା ଉଚ୍ଚ ପର୍ଯ୍ୟାୟର । ଆମେ ସର୍ବଦା ହିଁ ସେହି ଶାଶ୍ୱତ ସନାତନ ସତ୍ତା ଯଦିଓ ତାହା ଆମର ଅଜ୍ଞାତ, କାରଣ ତାହା ଜ୍ଞାନାତୀତ । ଧାରଣା ବା ଚିନ୍ତାର ସସୀମତ୍ୱ ତାହାର ଅସ୍ତିତ୍ୱର ଭିତ୍ତି । ଉଦାହରଣସ୍ୱରୂପ, ଯଦିଓ 'ମୁଁ'ତ୍ୱ ଅପେକ୍ଷା ନିଶ୍ଚିତତର ମୋର କିଛି ନାହିଁ, ତଥାପି ଶରୀର ଓ ମନ, ସୁଖୀ ବା ଦୁଃଖୀ, ପୁରୁଷ ବା ସ୍ତ୍ରୀରୂପେ କେବଳ ମୁଁ ତାହାର ଧାରଣା କରିପାରେ । ଯେତେବେଳେ ମୁଁ ନିଜ ଯଥାର୍ଥ

ସ୍ୱରୂପର ଧାରଣା କରିବାକୁ ଚେଷ୍ଟା କରେ, ସେତେବେଳେ ସ୍ୱରୂପକୁ ଶରୀର ବା ମନର ସ୍ତରକୁ ଆଣିବାକୁ ମୁଁ ବାଧ୍ୟ ହୁଏ, ଯଦିଓ ମୁଁ ମୋର ସ୍ୱରୂପ ସମ୍ବନ୍ଧରେ ନିଶ୍ଚିତ । 'ପ୍ରିୟେ, ପତି ପାଇଁ କେହି ପତିକୁ ଭଲ ପାଏ ନାହିଁ, ଭଲ ପାଇବାର କାରଣ ତା' ମଧ୍ୟରେ ଆତ୍ମା ରହିଛନ୍ତି । କେବଳ ଆତ୍ମା ମାଧ୍ୟମରେ ହିଁ ପତ୍ନୀ ପତିଙ୍କୁ ଭଲପାଏ । ପ୍ରିୟେ, ପତ୍ନୀଙ୍କ ପାଇଁ କେହି ପତ୍ନୀଙ୍କୁ ଭଲ ପାଏ ନାହିଁ, କେବଳ ଆତ୍ମା ମାଧ୍ୟମରେ ହିଁ ଆମେ ଭଲ ପାଇଥାଉ ।'* ଏହି ଆତ୍ମସତ୍ତା ହିଁ ଯେ ଏକମାତ୍ର ବସ୍ତୁ, ତାହା ଆମେ ଜାଣୁ, କାରଣ ଆତ୍ମାରେ ଏବଂ ଆତ୍ମା ମଧ୍ୟଦେଇ ଆମେ ସମସ୍ତ ବସ୍ତୁ ଉପଲବ୍ଧି କରିଥାଉ । ତଥାପି ଆମେ ଏହା ସମ୍ବନ୍ଧରେ ଧାରଣା କରିପାରୁ ନାହିଁ । ଜ୍ଞାତାକୁ ଆମେ କିପରି ଜାଣିବୁ ? ଯଦି ଆମେ ଜ୍ଞାତାଙ୍କୁ ଜାଣିପାରନ୍ତୁ, ତେବେ ସେ ଆଉ ଜ୍ଞାତା କିପରି ହେବେ, ସେ ସେତେବେଳେ ଜ୍ଞେୟ ହୋଇଯିବେ ।

୪୪ । ପୁରୁଣା ସଂସ୍କାରଗୁଡ଼ିକ ଦୂର କରିବା ପାଇଁ ଯୁକ୍ତି-ବିଚାରର ପ୍ରୟୋଜନ ରହିଛି । ପୁନଶ୍ଚ ସଂସ୍କାରଗୁଡ଼ିକ ବିଦୂରିତ ହେଲେ ଯାହା ରହେ, ତାହା ହିଁ ବେଦାନ୍ତ । ଗୋଟିଏ ସୁନ୍ଦର କବିତାରେ ଋଷି ଜନକୁ ସମ୍ବୋଧନ କରି କହିଛନ୍ତି, 'ବନ୍ଧୁ, ତୁମେ କାହିଁକି କାନ୍ଦୁଛ ? ତୁମର କୌଣସି ଭୟ ନାହିଁ, ତୁମର ମରଣ ନାହିଁ । କାହିଁକି ତୁମେ କାନ୍ଦୁଛ ? ତୁମର କୌଣସି ଦୁଃଖ ନାହିଁ, କାରଣ ନୀଳ ଅନନ୍ତ ଆକାଶ ପରି ତୁମେ ଅପରିଣାମୀ । ନାନା ବର୍ଣ୍ଣର ମେଘଗୁଡ଼ିକ ଆକାଶ-କୋଡ଼ରେ କିଛିକାଳ ପାଇଁ ବର୍ଣ୍ଣଚ୍ଛଟା ବିକିରଣ କରି ମିଳେଇଯାଆନ୍ତି—କିନ୍ତୁ ଆକାଶ ଯାହା ଥିଲା, ତାହା ହିଁ ରହେ । ତୁମକୁ କେବଳ ଏହି ଅଜ୍ଞାନରୂପ ମେଘକୁ ଅପସାରିତ କରିବାକୁ ହେବ ।'** କେବଳ ଜଳର ଗତିରୋଧକାରୀ କବାଟଗୁଡ଼ିକୁ ଖୋଲି ଦେବାକୁ ହେବ ଏବଂ ପଥ ପରିଷ୍କାର କରିବାକୁ ହେବ । ଜଳରାଶି ସ୍ୱଭାବ ଅନୁଯାୟୀ ପ୍ରବେଶ କରିବ ଏବଂ ଖାତଗୁଡ଼ିକ ପୂରଣ କରିବ, କାରଣ ଜଳରାଶି ସେଠାରେ ପୂର୍ବରୁ ହିଁ ବିଦ୍ୟମାନ ।

୪୫ । ମନୁଷ୍ୟ ଚେତନ ଓ ଅଚେତନର ମିଶ୍ରଣ । ଚେତନସ୍ତରକୁ ଅତିକ୍ରମ କରିବାର ସମ୍ଭାବନା ମଧ୍ୟ ତାହାର ଅଛି । କେବଳ ସେତିକିବେଳେ ଆମେ ମନୁଷ୍ୟପଦବାଚ୍ୟ ହେବା, ଯେତେବେଳେ ଆମେ ଯୁକ୍ତି-ବିଚାରର ଅତୀତକୁ ଯାଇ-ପାରିବା । 'ଉଚ୍ଚତର' ବା 'ନିମ୍ନତର' ଇତ୍ୟାଦି କଥା କେବଳ ବ୍ୟାବହାରିକ ଜଗତ-ରେ ପ୍ରୟୋଗ କରାଯାଏ । କିନ୍ତୁ ପାରମାର୍ଥିକ ଜଗତ ସମ୍ବନ୍ଧରେ ଏପରି କହିବା ସ୍ୱବିରୋଧୀ, କାରଣ ସେଠାରେ କୌଣସି ଭେଦ ନାହିଁ । ବ୍ୟାବହାରିକ ଜଗତରେ ବିକାଶର ଚରମ ଅଭିବ୍ୟକ୍ତି ମନୁଷ୍ୟତ୍ୱ । ବେଦାନ୍ତିକ କହନ୍ତି, ମନୁଷ୍ୟ ଦେବତା

* ବୃହଦାରଣ୍ୟକ ଉପ., ୨।୪।୫

** ତୁଳନୀୟ : ଅବଧୂତଗୀତା, ୩।୩୪

ଅପେକ୍ଷା ଉଚ୍ଚତର । ଦେବତାମାନେ ମରଣଶୀଳ—ସେମାନଙ୍କୁ ମନୁଷ୍ୟ ହୋଇ ଜାତ ହେବାକୁ ପଡ଼ିବ । ଦେବତାମାନେ ମଧ୍ୟ ମାନବଶରୀର ମାଧ୍ୟମରେ ମୁକ୍ତିହିଁ ଲାଭ କରିପାରନ୍ତି ।

୪୬ । ମୁକ୍ତି ମନୁଷ୍ୟର କରତଳଗତ, କିନ୍ତୁ ଏହି ତତ୍ତ୍ୱ ଆବିଷ୍କାର କରିବାକୁ ହେବ । ମନୁଷ୍ୟ ମୁକ୍ତ, କିନ୍ତୁ ପ୍ରତି ମୁହୂର୍ତ୍ତରେ ସେ ତାହା ଭୁଲିଯାଏ । ଏହି ସତ୍ୟକୁ ଜ୍ଞାତସାରରେ ବା ଅଜ୍ଞାତସାରରେ ଆବିଷ୍କାର କରିବା ହିଁ ମନୁଷ୍ୟର ସମଗ୍ର ଜୀବନ-ପ୍ରଚେଷ୍ଟା । ଜ୍ଞାନୀ ଓ ଅଜ୍ଞାନୀ ମଧ୍ୟରେ ପାର୍ଥକ୍ୟ ଏତକ ଯେ, ଜ୍ଞାନୀ ଜ୍ଞାତସାରରେ ଯାହା କରନ୍ତି, ଅଜ୍ଞାନୀ ତାହା ଅଜ୍ଞାତସାରରେ କରନ୍ତି । ସମସ୍ତେ ମୁକ୍ତି ପାଇଁ ସଂଗ୍ରାମ କରୁଛନ୍ତି—ପରମାଣୁଠାରୁ ଆରମ୍ଭ କରି ନକ୍ଷତ୍ରମଣ୍ଡଳ ପର୍ଯ୍ୟନ୍ତ । ଅଜ୍ଞାନୀ ଗୋଟିଏ ନିର୍ଦ୍ଦିଷ୍ଟ ସୀମା ମଧ୍ୟରେ ମୁକ୍ତି ପାଇଲେ ସନ୍ତୁଷ୍ଟ ହୁଏ—କ୍ଷୁଧା ଓ ତୃଷ୍ଣାର ବନ୍ଧନରୁ ମୁକ୍ତ ହେଲେ ସେ ଆନନ୍ଦିତ ହୁଏ, କିନ୍ତୁ ଜ୍ଞାନୀ ଏହାଠାରୁ ପ୍ରବଳତର ବନ୍ଧନ ଛିନ୍ନ କରିବାକୁ ଚାହାଁନ୍ତି । ସେ ରେଡ୍ ଇଣ୍ଡିଆନ୍‌ମାନଙ୍କର ସ୍ୱାଧୀନତାକୁ ମୁକ୍ତି ବୋଲି ମନେ କରନ୍ତି ନାହିଁ ।

୪୭ । ହିନ୍ଦୁ ଦାର୍ଶନିକମାନଙ୍କ ମତରେ ମୁକ୍ତି ହିଁ ଆମର ଚରମ ଲକ୍ଷ୍ୟ । ଜ୍ଞାନ ଲକ୍ଷ୍ୟ ହୋଇ ନ ପାରେ, କାରଣ ଜ୍ଞାନ ଯୌଗିକ ପଦାର୍ଥ । ଜ୍ଞାନ ଶକ୍ତି ଓ ମୁକ୍ତିର ମିଶ୍ରଣ । ଏକମାତ୍ର ମୁକ୍ତି ହିଁ ଆମମାନଙ୍କର କାମ୍ୟ । କେବଳ ମୁକ୍ତି ପାଇଁ ମନୁଷ୍ୟ ଚେଷ୍ଟା କରି ଚାଲିଛି । କେବଳ ଶକ୍ତିରୁ ଜ୍ଞାନଲାଭ ହୁଏ ନାହିଁ । ଉଦାହରଣ-ସ୍ୱରୂପ, ଜଣେ ବୈଜ୍ଞାନିକ ବୈଦ୍ୟୁତିକ ତରଙ୍ଗକୁ ଏକମାଇଲ ଦୂରକୁ ପ୍ରେରଣ କରି-ପାରନ୍ତି, କିନ୍ତୁ ପ୍ରକୃତି ଏହାକୁ ଅସୀମ ଦୂରତ୍ୱକୁ ପଠାଇପାରେ । ତା'ହେଲେ କ'ଣ ଆମେ ପ୍ରକୃତିର ପୂଜା କରିବା ? ନିୟମ ଆମର କାମ୍ୟ ନୁହେଁ, ନିୟମ ଭଙ୍ଗ କରି-ବାର ଶକ୍ତି ପ୍ରୟୋଜନ । ଆମେ ନିୟମାତୀତ ହେବାକୁ ଚାହୁଁ । ଯଦି ତୁମେ ନିୟମ-ବଦ୍ଧ ହୁଅ, ତା'ହେଲେ ମେଞ୍ଚାଏ କାଦୁଅ ସଦୃଶ ହେବ । ବର୍ତ୍ତମାନ ତୁମେ ନିୟମା-ତୀତ କି ନୁହଁ—ଏହା ଆମର ପ୍ରଶ୍ନ ନୁହେଁ, କିନ୍ତୁ ଆମର ଯଥାର୍ଥ ସତ୍ତା ଯେ ନିୟମା-ତୀତ, ଏହି ଭାବକୁ ଭିତ୍ତି କରି ମାନବପ୍ରକୃତିର ଇତିହାସ ରଚିତ । ଉଦାହରଣସ୍ୱରୂପ, ଜଣେ ଲୋକ ଅରଣ୍ୟରେ ବାସ କରେ, ସେ କୌଣସି ଶିକ୍ଷାଲାଭ କରିନାହିଁ । ସେ ଦିନେ ଦେଖିଲା ଯେ ଗୋଟିଏ ପଥର ପଡ଼ୁଛି । ଏହା ଏକ ପ୍ରାକୃତିକ ଘଟଣା; କିନ୍ତୁ ସେ ମନେ କରୁଛି ଏହା ହିଁ ମୁକ୍ତି । କାରଣ, ସେ ଭାବେ ଯେ ପଥରଟାର ଆତ୍ମା ଅଛି, ଯାହା ସ୍ୱଭାବତଃ ମୁକ୍ତ । କିନ୍ତୁ ଯେତେବେଳେ ସେ ଜାଣିବ ଯେ, ପଥରଟା ତଳେ ପଡ଼ିବା ପାଇଁ ବାଧ୍ୟ, ସେତେବେଳେ ସେ କହିବ, ଏହା ପ୍ରକୃତି—ଏହା ଯାନ୍ତ୍ରିକ କର୍ମ । ମୁଁ ଚାହିଁଲେ ରାସ୍ତାକୁ ଯାଇପାରେ କିମ୍ବା ନ ପାରେ । ଏହି ସ୍ୱାତନ୍ତ୍ର୍ୟ ହିଁ ମୋର ମହିମା । କିନ୍ତୁ ଯେତେବେଳେ ମୁଁ ନିଶ୍ଚିତରୂପେ ଜାଣିବି ଯେ, ମୋତେ ସେଠାକୁ ଯିବାକୁ ହେବ, ସେତେବେଳେ ମୁଁ ନିଜ ସ୍ୱାତନ୍ତ୍ର୍ୟ ତ୍ୟାଗ କରି ଗୋଟିଏ

ଯନ୍ତ୍ରରେ ପରିଣତ ହେବ । ଅନନ୍ତ ଶକ୍ତି ଥିବା ସତ୍ତ୍ୱେ ପ୍ରକୃତି ଗୋଟିଏ ଯନ୍ତ୍ରମାତ୍ର; ମୁକ୍ତି ହିଁ ଚେତନ ଜୀବର ମୂଳ ଉପାଦାନ । ବେଦାନ୍ତମତରେ ଅରଣ୍ୟରେ ରହୁଥିବା ମନୁଷ୍ୟର ଭାବ ଠିକ୍, ତାହାର ଦୃଷ୍ଟିଭଙ୍ଗୀ ମଧ୍ୟ ଠିକ୍, କିନ୍ତୁ ବ୍ୟାଖ୍ୟା ଭୁଲ୍ । ସେ ଏହି ପ୍ରକୃତିକୁ ସ୍ୱାଧୀନ ମନେକରେ, ନିୟମଦ୍ୱାରା ପରିଚାଳିତ ବୋଲି ଭାବେ ନାହିଁ । ଯାବତୀୟ ମାନବ-ଅଭିଜ୍ଞତା ପରେ ଆମେ ମଧ୍ୟ ଠିକ୍ ଏହି ଭାବରେ ଚିନ୍ତା କରିବା —ଯଦିଓ ଦାର୍ଶନିକ ଦୃଷ୍ଟିଭଙ୍ଗୀରୁ । ଉଦାହରଣସ୍ୱରୂପ, ମୁଁ ରାସ୍ତାକୁ ଯିବାକୁ ଚାହେଁ । ସେଥିପାଇଁ ଇଚ୍ଛା-ଶକ୍ତିର ଅନୁପ୍ରେରଣା ମଧ୍ୟ ପାଇଲି, କିନ୍ତୁ ଗଲି ନାହିଁ । ଯିବାର ଇଚ୍ଛା ଓ ରାସ୍ତାକୁ ଯିବା—ଏହି ଦୁଇଟିର ମଧ୍ୟବର୍ତ୍ତୀ ସମୟରେ ମୁଁ ଏକଭାବରେ କାର୍ଯ୍ୟ କରି ଚାଲିଛି । କର୍ମର ଏହି ଏକରୂପତାକୁ ଆମେ ନିୟମ କହୁଥାଉ । ମୁଁ ଦେଖୁଛି, ମୋ କର୍ମର ଏହି ସମାନତା ମଝିରେ ମଝିରେ ବ୍ୟାହତ ହୁଏ; ସୁତରାଂ ମୋର କର୍ମ ନିୟମାବଦ୍ଧ ନୁହେଁ । ମୁଁ ସ୍ୱାଧୀନଭାବେ କାର୍ଯ୍ୟ କରେ । ମୁଁ ପାଞ୍ଚମିନିଟ ସମୟ ରାସ୍ତାରେ ଚାଲିଲି । କିନ୍ତୁ ଚାଲିବା ପୂର୍ବରୁ ଇଚ୍ଛାଶକ୍ତି ମୋତେ ଚାଲିବା ପାଇଁ ପ୍ରବୃତ୍ତି ଦେଇଛି । ତେଣୁ ମନୁଷ୍ୟ ମନେକରେ—ସେ ସ୍ୱାଧୀନ, କାରଣ ତା'ର ସମସ୍ତ କର୍ମକୁ କ୍ଷୁଦ୍ର କ୍ଷୁଦ୍ର କାଳରେ ବିଭକ୍ତ କରାଯାଏ । ସମୟର ଏହି କ୍ଷୁଦ୍ର କ୍ଷୁଦ୍ର ଅଂଶଗୁଡ଼ିକରେ ଏକରୂପତା ଥିଲେ ସୁଦ୍ଧା ଏହାର ବାହାରେ ଏହି ସାମ୍ୟର ଅଭାବ ରହିଛି ଏବଂ ଏହି ଅନୈକ୍ୟବୋଧରେ ମନୁଷ୍ୟର ମୁକ୍ତଭାବ ନିହିତ । ପ୍ରକୃତରେ ଆମେ ଦୀର୍ଘକାଳସ୍ଥାୟୀ ଏକରୂପତା ଦେଖିବାକୁ ପାଉ, କିନ୍ତୁ ଏହାର ପ୍ରାରମ୍ଭରେ ଓ ଶେଷରେ ମୁକ୍ତିର ପ୍ରେରଣା ରହିଛି । ଆଦରେ ମୁକ୍ତ ହେବାର ଏହି ପ୍ରେରଣା, ତାହା ହିଁ ବର୍ତ୍ତମାନ ଆବର୍ତ୍ତିତ ହେଉଅଛି । କିନ୍ତୁ ଏହି ଆବର୍ତ୍ତନର କାଳ ଆମ ତୁଳନାରେ ଅତି ଦୀର୍ଘ । ଦାର୍ଶନିକ ରୀତି ଅନୁଯାୟୀ ବିଶ୍ଳେଷଣ କଲେ ଆମେ ଦେଖିବାକୁ ପାଉ, ଆମେ ମୁକ୍ତ ନୋହୁଁ । କିନ୍ତୁ ଏହି ଚେତନା ଆମର ସର୍ବଦା ରହିଛି ଯେ, 'ମୁଁ ମୁକ୍ତ' । ଏପରି ପରସ୍ପରବିରୋଧୀ-ଭାବ କିପରି ଆସେ, ଏହା ଆମକୁ ବ୍ୟାଖ୍ୟା କରିବାକୁ ହେବ । ଆମମାନଙ୍କର ଦୁଇଟି ବୃତ୍ତି ଅଛି । ବିଚାରବୁଦ୍ଧି କହେ, ଆମର ସମସ୍ତ କାର୍ଯ୍ୟର ପଶ୍ଚାତ୍‌ରେ କାରଣ ଅଛି । ଅଥଚ ପ୍ରତ୍ୟେକ କାର୍ଯ୍ୟର ପ୍ରେରଣା ସହିତ ଆମେ ଆମର ମୁକ୍ତଭାବ ଘୋଷଣା କରୁଛୁ । ବେଦାନ୍ତର ମୀମାଂସା ହେଉଛି, ଆମମାନଙ୍କ ମଧ୍ୟରେ ମୁକ୍ତଭାବ ରହିଛି—କାରଣ ଆତ୍ମା ପ୍ରକୃତରେ ମୁକ୍ତ, କିନ୍ତୁ ଆତ୍ମାର କ୍ରିୟା ଯେଉଁ ଶରୀର ଓ ମନକୁ ଆଶ୍ରୟ କରି ପ୍ରକାଶିତ ହେଉଛି, ସେହି ଶରୀର ଓ ମନ ମୁକ୍ତ ନୁହେଁ ।

୪୮ । ଯେଉଁ ମୁହୂର୍ତ୍ତରେ ଆମେ ପ୍ରତିକ୍ରିୟା କରୁ, ସେହି ମୁହୂର୍ତ୍ତରେ ଆମେ ଦାସରେ ପରିଣତ ହେଉ । କେହି ଆମ ଉପରେ ଦୋଷାରୋପ କଲେ ସଙ୍ଗେ ସଙ୍ଗେ ମୋ ଭିତରେ କ୍ରୋଧ-ରୂପକ ପ୍ରତିକ୍ରିୟା ହୁଏ । ଲୋକଟି ଯେଉଁ ସାମାନ୍ୟ ଆନ୍ଦୋଳନ ସୃଷ୍ଟି କଲା, ତାହା ମୋତେ ଦାସରେ ପରିଣତ କରିଛି । ସୁତରାଂ ଆମମାନଙ୍କୁ

ଆମର ମୁକ୍ତସ୍ୱଭାବ ପ୍ରକାଶ କରିବାକୁ ହେବ । ଯେଉଁମାନେ ଶ୍ରେଷ୍ଠ ବ୍ରାହ୍ମଣ, ପଣ୍ଡିତ, ନିମ୍ନତର ପ୍ରାଣୀ ବା ମାନବସମାଜର ଅତ୍ୟନ୍ତ ଘୃଣିତ, ସେମାନଙ୍କ ମଧ୍ୟରେ ମନୁଷ୍ୟ, ମୁନି ବା ଜନ୍ତୁ ଦେଖନ୍ତି ନାହିଁ, ବରଂ ସମସ୍ତଙ୍କ ମଧ୍ୟରେ ଭଗବାନଙ୍କୁ ଦେଖନ୍ତି, ସେମାନେ ଜ୍ଞାନୀ । ଇହଜୀବନରେ ସେମାନେ ସ୍ୱର୍ଗ (ସଂସାର) ଜୟ କରିଛନ୍ତି ଏବଂ ସାମ୍ୟରେ ଦୃଢ଼ଭାବରେ ପ୍ରତିଷ୍ଠିତ ହୋଇଛନ୍ତି । ଭଗବାନ ଶୁଦ୍ଧ ଓ ସର୍ବତ୍ର ସମ-ଭାବାପନ୍ନ । ଏପରି ଜ୍ଞାନୀ ସାକ୍ଷାତ୍ ଦେହଧାରୀ ଈଶ୍ୱର-ତୁଲ୍ୟ ।* ଏହି ଲକ୍ଷ୍ୟ ଆଡ଼କୁ ଆମେ ଚାଲିଅଛୁ ଏବଂ ମନୁଷ୍ୟର ବିଭିନ୍ନ ଉପାସନାପଦ୍ଧତି ଓ ପ୍ରତ୍ୟେକ କର୍ମ ଏହି ଲକ୍ଷ୍ୟସ୍ଥଳରେ ପହଞ୍ଚିବାର ଗୋଟିଏ ଗୋଟିଏ ପଥ ମାତ୍ର । ଯେଉଁ ଲୋକ ଅର୍ଥ ଚାହେଁ, ସେ ମଧ୍ୟ ମୁକ୍ତି ପାଇଁ ଚେଷ୍ଟା କରୁଅଛି—ଦାରିଦ୍ର୍ୟର ବନ୍ଧନରୁ ମୁକ୍ତିର କାମନା କରୁଅଛି । ମନୁଷ୍ୟର ପ୍ରତ୍ୟେକ କର୍ମ ହିଁ ଉପାସନା, କାରଣ ସର୍ବତ୍ର ମୁକ୍ତିଲାଭର ଭାବ ପ୍ରକଟିତ, ଏବଂ ପ୍ରତ୍ୟେକ କର୍ମ ପ୍ରତ୍ୟକ୍ଷ ବା ପରୋକ୍ଷଭାବରେ ମୁକ୍ତି-ଅଭିମୁଖୀ । ଯେଉଁ ସକଳ କାର୍ଯ୍ୟ ମୁକ୍ତି-ପଥରେ ବାଧାସ୍ୱରୂପ, ସେଗୁଡ଼ିକୁ ପରିହାର କରିବାକୁ ହେବ । ଜ୍ଞାତ ବା ଅଜ୍ଞାତସାରରେ ସମଗ୍ର ବିଶ୍ୱ ଭଗବାନଙ୍କର ଉପାସନା କରୁଅଛି । ଯେତେବେଳେ କେହି ଭଗବାନଙ୍କୁ ନିନ୍ଦା କରେ, ସେ ଜାଣେ ନାହିଁ ଯେ, ତାହା ମଧ୍ୟ ତାଙ୍କର ପୂଜା, କାରଣ ଯେଉଁମାନେ ଭଗବାନଙ୍କର ନିନ୍ଦା କରୁଛନ୍ତି, ସେମାନେ ମଧ୍ୟ ମୁକ୍ତି ପାଇଁ ସଂଗ୍ରାମରତ । ସେମାନେ ଜାଣନ୍ତି ନାହିଁ ଯେ, କୌଣସି ବିଷୟରେ ପ୍ରତିକ୍ରିୟାଶୀଳ ହୋଇ ସେମାନେ ସେହି ବିଷୟରେ ଦାସ ହୋଇଯାଇଛନ୍ତି । ପ୍ରତି-ରୋଧ ସତ୍ତ୍ୱେ ତାହା ବିରୋଧରେ ଆଘାତ କରିବା ସହଜ ନୁହେଁ ।

୪୯ । ଯଦି ଆମେ ଆମର ସୀମାବଦ୍ଧ ବିଶ୍ୱାସରୁ ମୁକ୍ତ ହୋଇପାରନ୍ତୁ, ତେବେ ଏହି ମୁହୂର୍ତ୍ତରେ ସର୍ବଶକ୍ତିମାନ ହେବା ଆମ ପକ୍ଷରେ ସମ୍ଭବ ହୁଅନ୍ତା । ଏହା କେବଳ ସମୟର ପ୍ରଶ୍ନ । ତେଣୁ ଆତ୍ମାର ଶକ୍ତି ପ୍ରୟୋଗ କର ଓ ସମୟକୁ ସଂକ୍ଷିପ୍ତ କର । ସେହି ଅଧ୍ୟାପକଙ୍କ କଥା ସ୍ମରଣ କର, ଯେ ମର୍ମରପ୍ରସ୍ତରର ଗଠନରହସ୍ୟ ଆୟତ୍ତ କରି ବାରବର୍ଷରେ ମର୍ମର ପ୍ରସ୍ତୁତ କରିଥିଲେ, ଯଦିଓ ପ୍ରକୃତିକୁ ଏହା କରିବା ପାଇଁ ସହସ୍ର ସହସ୍ର ବର୍ଷ ଲାଗିଥିଲା ।

---

* ଗୀତା ୫।୧୮-୧୯

# ତଥ୍ୟପଞ୍ଜୀ

## ଦର୍ଶନ ଓ ଦାର୍ଶନିକମାନଙ୍କର ପରିଚୟ

( ୧ )

[ ଜ୍ଞାନଯୋଗରେ ଯେଉଁ ପାଶ୍ଚାତ୍ୟ ମନୀଷୀଙ୍କ କଥା ବାରମ୍ବାର ଉଲ୍ଲିଖିତ ହୋଇଅଛି, ସେମାନଙ୍କର ସଂକ୍ଷିପ୍ତ ପରିଚୟ ଏଠାରେ ଲିପିବଦ୍ଧ ହେଲା—ଉପାଧି ଓ ନାମର କ୍ରମାନୁସାରେ । ]

କୋଁତେ—August Comte (୧୭୯୮-୧୮୫୭) ଫରାସୀ ଦାର୍ଶନିକ । ତାଙ୍କ ରଚନାସମୂହ ମଧ୍ୟରେ ସର୍ବାପେକ୍ଷା ଉଲ୍ଲେଖଯୋଗ୍ୟ ବହି Course of Positive Philosophy (୧୮୩୦-୪୨) ।

କୋଁତେଙ୍କୁ ପ୍ରତ୍ୟକ୍ଷବାଦର (Positivism) ସ୍ରଷ୍ଟା କୁହାଯାଏ । ସେ ଫରାସୀ ସଂଶୟବାଦର (French Scepticism) ଅନ୍ୟତମ ଧାରକ । ସଂଶୟବାଦରେ ଯେଉଁ ନିର୍ଦ୍ଦିଷ୍ଟ (Positive) ଜ୍ଞାନର ସ୍ଥାନ ଅଛି, ଏହା ହିଁ ତାହାର ମୂଳ ପ୍ରତିପାଦ୍ୟ ବିଷୟ । ତାଙ୍କ ମତ—ଦର୍ଶନରେ ଅଧିବିଦ୍ୟାର (Metaphysics) କୌଣସି ସ୍ଥାନ ନାହିଁ । ବିଜ୍ଞାନର ସିଦ୍ଧାନ୍ତଗୁଡ଼ିକ ସମ୍ବନ୍ଧରେ ସମାଲୋଚନାମୂଳକ ବ୍ୟାଖ୍ୟା କରିବା ହିଁ ଦାର୍ଶନିକଙ୍କର କାର୍ଯ୍ୟ । ପ୍ରଚଳିତ ପ୍ରଥା ଅନୁସାରେ ଈଶ୍ୱର-କୈନ୍ଦ୍ରିକ ଧର୍ମମତ ବିରୋଧରେ ସେ ତାଙ୍କର ଦର୍ଶନ ରଚନା କରିଛନ୍ତି । ଏହା ମାନବତାବାଦ (Humanism) ଉପରେ ପ୍ରତିଷ୍ଠିତ ।

ଜେମ୍‌ସ୍—William James (୧୮୪୨-୧୯୧୦) ମାର୍କିନଦେଶୀୟ ଦାର୍ଶନିକ । ତାଙ୍କର ପ୍ରଧାନ ରଚନାଗୁଡ଼ିକ ମଧ୍ୟରୁ ଉଲ୍ଲେଖଯୋଗ୍ୟ—The Principles of Psychology (୧୮୯୦), The Will to Believe (୧୮୯୭), Varieties of Religious Experience (୧୯୦୨), A Pluralistic Universe (୧୯୦୯), The Meaning of Truth (୧୯୦୯) ଇତ୍ୟାଦି ।

ଇଂଲଣ୍ଡର ଦାର୍ଶନିକ ହ୍ୟୁମ୍‌ଙ୍କ ପ୍ରଭାବ ଜେମ୍‌ସ୍‌ଙ୍କ ଦର୍ଶନ ଉପରେ ଅତି ସ୍ପଷ୍ଟ । ସତ୍ୟର ପ୍ରକୃତି ଓ ପରୀକ୍ଷା ବିଷୟରେ ଜେମ୍‌ସ୍ ପ୍ରୟୋଗବାଦରେ (Pragmatism) ବିଶ୍ୱାସ କରନ୍ତି ଏବଂ ସେ ଏହି ମତବାଦର ସ୍ରଷ୍ଟା । ସତ୍ୟର ପ୍ରକୃତି ଓ ତାହାର ଜ୍ଞାନରୁ ଆମ ଜୀବନରେ କି ଉପଯୋଗିତା ଏହା ଜେମସ୍‌ଙ୍କ ଦର୍ଶନରେ ବିଶେଷ ଗୁରୁତ୍ୱ ଲାଭ କରିଛି । ଜୈବିକ ପ୍ରୟୋଜନ ବ୍ୟତୀତ ଅନ୍ୟ କିଛି ସତ୍ୟ

ବୋଲି ସ୍ୱୀକାର କରାଯାଏ ନାହିଁ । ତାଙ୍କର Pragmatism (୧୯୦୭) ନାମକ ଗ୍ରନ୍ଥରେ ସେ ସ୍ୱାମୀ ବିବେକାନନ୍ଦ କଥା ଉଲ୍ଲେଖ କରିଛନ୍ତି ।

ଟିଣ୍ଡାଲ୍—John Tyndall (୧୮୩୦-୯୩) ଇଂରେଜ ପଦାର୍ଥବିଜ୍ଞାନୀ । ତାଙ୍କ ଉଲ୍ଲେଖଯୋଗ୍ୟ ଗ୍ରନ୍ଥସମୂହ ମଧ୍ୟରେ—The Glaciers of the Alps (୧୮୬୦), Heat as a Mode of Motion (୧୮୬୩) ଇତ୍ୟାଦି ।

ସେ Royal Institutionରେ ପ୍ରାକୃତିକ-ଦର୍ଶନର ଅଧ୍ୟାପକ ନିଯୁକ୍ତ ହୋଇଥିଲେ (୧୮୫୩) । ତାପ-ସଂକ୍ରାନ୍ତ ବହୁବିଧ ମୌଳିକ ଗବେଷଣା ସେ କରିଛନ୍ତି । ବାୟୁମଣ୍ଡଳ ଓ ଆଲୋକର ପରିକ୍ରମା ସମ୍ବନ୍ଧରେ ମଧ୍ୟ ସେ ଅନେକ ଗବେଷଣା କରିଛନ୍ତି ।

ଡୟସନ୍—Paul Deussen (୧୮୪୫-୧୯୧୯) ଜର୍ମାନ ଦାର୍ଶନିକ । Elements of Metaphysics ତାଙ୍କ ରଚନାସମୂହ ମଧ୍ୟରେ ଉଲ୍ଲେଖଯୋଗ୍ୟ । ବେଦାନ୍ତଶାସ୍ତ୍ର ଉପରେ ତାଙ୍କର ଦୁଇଟି ରଚନା ମିଳେ—ଗୋଟିଏ 'ବେଦାନ୍ତଦର୍ଶନ' ସମ୍ବନ୍ଧରେ (୧୮୮୩), ଅନ୍ୟଟି 'ବେଦାନ୍ତସୂତ୍ର' ସମ୍ବନ୍ଧରେ (୧୮୮୭) । ହିନ୍ଦୁଦର୍ଶନ —ବିଶେଷଭାବେ ବେଦାନ୍ତଦର୍ଶନ ପ୍ରତି ତାଙ୍କର ଗଭୀର ଅନୁରାଗ ଥିଲା । ସଂସ୍କୃତ ଭାଷା ଓ ସାହିତ୍ୟରେ ତାଙ୍କର ପାଣ୍ଡିତ୍ୟ ଅସାଧାରଣ ।

ଡାର୍‌ଉଇନ୍—Charles Robert Darwin (୧୮୦୯-୮୨) ଇଂରେଜ ବୈଜ୍ଞାନିକ । ତାଙ୍କ ରଚନାସମୂହ ମଧ୍ୟରେ ଉଲ୍ଲେଖଯୋଗ୍ୟ—On the Origin of Species by means of Natural Selection or the Preservation of the Favoured Races in the Struggle for Life (୧୮୫୯), The variation of Animals and Plants under Domestication (୧୮୬୮) ଇତ୍ୟାଦି ।

ଡାର୍‌ଉଇନଙ୍କ କ୍ରମବିକାଶବାଦ ବିଖ୍ୟାତ । ତାଙ୍କ ମତରେ ପ୍ରାକୃତିକ ନିର୍ବାଚନ (Natural Selection) କ୍ରମବିକାଶବାଦର ମୂଳ କଥା । ସେ ଯୋଗ୍ୟତମ ପ୍ରାଣୀର ବଞ୍ଚିବା ଅଧିକାର ଉପରେ (Survival of the fittest) ବିଶେଷ ଗୁରୁତ୍ୱ ଆରୋପ କରିଛନ୍ତି । ତାଙ୍କ ମତରେ କ୍ରମବିକାଶବାଦ ଗୋଟିଏ ଯାନ୍ତ୍ରିକ ପ୍ରକ୍ରିୟା ।

ପିଥାଗୋରସ—Pythagoras(ଖ୍ରୀ:ପୂ: ୬୦୦-୫୧୦) ଗ୍ରୀକ୍ ଦାର୍ଶନିକ । ତାଙ୍କର କୌଣସି ରଚନା ମିଳେ ନାହିଁ । ପିଥାଗୋରୀୟ ସମ୍ପ୍ରଦାୟରୁ ତାଙ୍କ ମତବାଦ ବିଷୟରେ କିଛି କିଛି ଜଣାଯାଏ ।

ପିଥାଗୋରସଙ୍କୁ ଗ୍ରୀକ୍ ଦର୍ଶନର ଇଟାଲୀୟ ଶାଖାର ପ୍ରତିଷ୍ଠାତାରୂପେ ବର୍ଣ୍ଣନା କରାଯାଏ । ସେ ପୁନର୍ଜନ୍ମବାଦରେ (Transmigration of souls) ବିଶ୍ୱାସୀ । ସଂଖ୍ୟାତତ୍ତ୍ୱ (Numbers) ଉପରେ ଅନେକ ଗବେଷଣା କରିଛନ୍ତି,

ଏଥିରୁ ଚରମ ସତ୍ୟର (Ultimate Reality) ସ୍ୱରୂପ ନିର୍ଣ୍ଣୟ ବିଷୟରେ ଇଙ୍ଗିତ ମିଳିଥାଏ ବୋଲି ସେ ବିଶ୍ୱାସ କରନ୍ତି ।

ପ୍ଲେଟୋ—Plato (ଖ୍ରୀ: ପୂ: ୪୨୭-୩୪୭) ପ୍ରାଚୀନ ଗ୍ରୀକ୍ ଦାର୍ଶନିକ । ତାଙ୍କର ଉଲ୍ଲେଖଯୋଗ୍ୟ ରଚନା—Apology, Crito, The Republic, Spmposium, Phaedo, Pheadrus, Meno ଇତ୍ୟାଦି ।

ସ୍ୱନାମଧନ୍ୟ ପ୍ରାଚୀନ ଦାର୍ଶନିକ ସକ୍ରେଟିସ ପ୍ଲେଟୋଙ୍କ ଶିକ୍ଷାଗୁରୁ । ପ୍ଲେଟୋ ଦର୍ଶନରେ ସକ୍ରେଟିସଙ୍କ ପ୍ରଭାବ ଉଲ୍ଲେଖଯୋଗ୍ୟ । ଦର୍ଶନ ସହିତ ଗଣିତଶାସ୍ତ୍ରର ଯେ ଘନିଷ୍ଠ ସମ୍ବନ୍ଧ ଅଛି, ତାହା ପ୍ଲେଟୋ ସର୍ବପ୍ରଥମେ ତାଙ୍କ ଦର୍ଶନ ମାଧ୍ୟମରେ ପ୍ରମାଣ କରିଥିଲେ । ସଙ୍ଗୀତ ଓ ସ୍ୱାସ୍ଥ୍ୟଚର୍ଚ୍ଚା ଦର୍ଶନର ଗୋଟିଏ ଅପରିହାର୍ଯ୍ୟ ବିଷୟ ବୋଲି ସେ ଉଲ୍ଲେଖ କରିଛନ୍ତି । ସେ କହିଛନ୍ତି, ପ୍ରଜ୍ଞା (reason) ହିଁ ଆତ୍ମାର (soul) ପ୍ରକୃତ ରୂପ । ପ୍ରଜ୍ଞାରୂପକ ଆତ୍ମା ଦେହ ସହିତ ଯୁକ୍ତ ହେଲେ କାମନା ଓ ଅନ୍ୟାନ୍ୟ ବୃତ୍ତିର ଉତ୍ପତ୍ତି ହୋଇଥାଏ । ପୁଣି ଦେହ ବିନଷ୍ଟ ହେଲେ ସେଗୁଡ଼ିକର ଲୋପ ହୁଏ । ଆତ୍ମା ଅବିନଶ୍ୱର ଏବଂ ତାହାକୁ ଜାଣିବା ହିଁ ହେଲା ପ୍ରକୃତ ଜ୍ଞାନ (wisdom) ।

ଫିକ୍‌ଟେ—Johann Gottilieb Fichte (୧୭୬୨-୧୮୧୪) ଜର୍ମାନ ଦାର୍ଶନିକ । ତାଙ୍କ ରଚନାସମୂହ ମଧ୍ୟରେ ଉଲ୍ଲେଖଯୋଗ୍ୟ—Essay toward a Critique of All Revelation (୧୭୯୨), Introduction to the Science of Knowledge, The Natural Right, Science of Ethics (୧୭୯୬-୯୮) ଇତ୍ୟାଦି ।

ଫିକ୍‌ଟେ କାଣ୍ଟଙ୍କ ମତବାଦଦ୍ୱାରା ବିଶେଷ ପ୍ରଭାବିତ । ଜ୍ଞାନର ଉପାଦ୍ଧ ଓ ସ୍ୱରୂପ ସମ୍ବନ୍ଧରେ ସେ ବୈଜ୍ଞାନିକ ଆଲୋଚନା କରିଛନ୍ତି । ବୈଜ୍ଞାନିକ ତତ୍ତ୍ୱର (Scientific knowledge) ମୂଳସୂତ୍ରକୁ ଭିତ୍ତି କରି ସେ ନୀତିଶାସ୍ତ୍ର ଓ ସମାଜତତ୍ତ୍ୱ ଉପରେ ଗ୍ରନ୍ଥ ରଚନା କରିଛନ୍ତି । ତାଙ୍କ ମତରେ ଜୀବାତ୍ମା ମଧ୍ୟରେ ସକ୍ରିୟ (active) ଓ ନିଷ୍କ୍ରିୟ (Passive) ଦୁଇଟି ସ୍ତର ଅଛି । ମନ ବା ଅହଂ (Ego) ଚରମ ତତ୍ତ୍ୱ । ନୈତିକ ଜୀବନର ପରିପୂର୍ଣ୍ଣତା ପାଇଁ ଅହଂ ନିଜକୁ ବସ୍ତୁରୂପେ ବିକ୍ଷିପ୍ତ କରେ ।

ବେନ୍ଥାମ—Jermy Bentham (୧୭୪୮-୧୮୩୨) ଇଂରେଜ ଦାର୍ଶନିକ । ତାଙ୍କର ରଚନାସମୂହ ମଧ୍ୟରେ ଉଲ୍ଲେଖଯୋଗ୍ୟ—Introduction to the Principles of Morals and Legislation (୧୮୮୯), Deontology (୧୮୩୪) ଇତ୍ୟାଦି ।

ପ୍ରାଚୀନ ଦାର୍ଶନିକ ଏପିକିଉରସ (Epicurus)ଙ୍କର ମତବାଦକୁ ଯଥାଯଥ ସଂସ୍କାର କରି ନୂତନ ଭାବଧାରାରେ ପରିପୁଷ୍ଟ କରିଅଛନ୍ତି । ନୀତିଶାସ୍ତ୍ରଜ୍ଞ ବୋଲି

ବେନ୍ଥାମ ଅଧିକ ପରିଚିତ । ସୁଖୀ ହେବାର ଚେଷ୍ଟା ମଧ୍ୟରେ ସେ ନୀତିଶାସ୍ତ୍ରର ପ୍ରୟୋଜନ ଆବିଷ୍କାର କରିଛନ୍ତି । ତାଙ୍କ ମତରେ ସାର୍ବଜନୀନ ସୁଖ ଅର୍ଥାତ୍ ସର୍ବାଧିକ ମନୁଷ୍ୟଙ୍କର ସର୍ବାଧିକ ସୁଖ (greatest happiness of the greatest number) ମନୁଷ୍ୟଙ୍କୁ ଚରମ ମୁକ୍ତିଲାଭ କରିବାରେ ସାହାଯ୍ୟ କରେ । ଏହି ସାର୍ବଜନୀନ ସୁଖ ଯେତେ ଅଧିକ ଏବଂ ଦୀର୍ଘସ୍ଥାୟୀ ହେବ, ସେତିକି ତାର ନୈତିକ ମୂଲ୍ୟ ବୃଦ୍ଧି ପାଇବ ।

ମିଲ୍—John Stuart Mill (୧୮୦୬-୭୩) ଇଂରେଜ ଦାର୍ଶନିକ । ତାଙ୍କ ରଚନାସମୂହ ମଧ୍ୟରେ ଉଲ୍ଲେଖଯୋଗ୍ୟ ରଚନା—System of Logic (୧୮୪୩), Utilitarianism (୧୮୬୩), An Examination of William Hamilton's Philosophy (୧୮୬୫) ଇତ୍ୟାଦି ।

ଜନ୍ ଷ୍ଟୁଆର୍ଟ ମିଲ୍ ତାଙ୍କ ପିତା ଜେମସ୍ ମିଲ୍ଙ୍କ ଦାର୍ଶନିକ ମତବାଦଦ୍ୱାରା ବିଶେଷଭାବରେ ପ୍ରଭାବିତ । ଦାର୍ଶନିକ ହିସାବରେ ମିଲ୍ ଇନ୍ଦ୍ରିୟକୈନ୍ଦ୍ରିକ ଜ୍ଞାନ ଉପରେ ବିଶେଷ ଗୁରୁତ୍ୱ ଆରୋପ କରିଛନ୍ତି । ବୈଜ୍ଞାନିକ ଗବେଷଣାର ମୂଳ ପଦ୍ଧତି (Methodology of Sciences) ସମ୍ପର୍କରେ ଅନେକ ଆଲୋଚନା କରିଛନ୍ତି ।

ମ୍ୟାକ୍ସମୁଲାର—Friedrich Maximillian Muller (୧୮୨୨-୧୯୦୦) ବିଖ୍ୟାତ ଭାଷାତତ୍ତ୍ୱବିତ୍ ଜର୍ମାନ ପଣ୍ଡିତ । ତାଙ୍କ ରଚନାସମୂହ ମଧ୍ୟରେ ଉଲ୍ଲେଖଯୋଗ୍ୟ—History of Ancient Sanskrit Literature, Sacred Books of the East, Science of Language ଇତ୍ୟାଦି । ସଂସ୍କୃତ ଭାଷା ଉପରେ ତାଙ୍କର ଅଗାଧ ପାଣ୍ଡିତ୍ୟ ଥିଲା । ସେ ସାୟନାଚାର୍ଯ୍ୟଙ୍କ ଭାଷ୍ୟ ସମେତ ଋଗ୍‌ବେଦର ଗୋଟିଏ ସଂସ୍କରଣ ପ୍ରକାଶ କରିଛନ୍ତି । ଅକ୍ସଫୋର୍ଡ଼ ବିଶ୍ୱବିଦ୍ୟାଳୟରେ ଆଧୁନିକ ଭାଷାର ଅଧ୍ୟାପକ ନିଯୁକ୍ତ ହୋଇଥିଲେ ।

ମ୍ୟାସ୍‌ପେରୋ—Sir Gaston Camille Charles Maspero (୧୮୪୬-୧୯୧୬) ଫରାସୀ ମିଶରତତ୍ତ୍ୱବିତ୍ (Egyptologist) । ସେ ପ୍ରାଚୀନ ଇତିହାସ ସମ୍ପର୍କରେ ଅନେକ ପ୍ରାମାଣ୍ୟ ଗ୍ରନ୍ଥ ରଚନା କରିଛନ୍ତି ।

ଲେସୀଙ୍ଗ୍—G. E. Lessing (୧୭୨୯-୮୧) ଜର୍ମାନ ଦାର୍ଶନିକ ଓ ସାହିତ୍ୟିକ । ତାଙ୍କର ଉଲ୍ଲେଖଯୋଗ୍ୟ ରଚନା—Collected Works (in 6 volumes, ୧୭୫୩-୫୫), Letters upon Current Literature (୧୭୫୮) । ସେ ଦାର୍ଶନିକ ସ୍ପିନୋଜାଙ୍କର ସର୍ବେଶ୍ୱରବାଦ (Pantheism) ଏବଂ ଲାଇବ୍‌ନିଜ୍‌ଙ୍କ ବ୍ୟକ୍ତି-ସ୍ୱାତନ୍ତ୍ର୍ୟବାଦର ( Individualism ) ସମନ୍ୱୟ ସାଧନ କରିଛନ୍ତି । ପରବର୍ତ୍ତୀ କାଳରେ କବି ଗେଟେ ଏବଂ ଶିଲର୍ ଯେଉଁ ଭାବଧାରା ସାହାଯ୍ୟରେ ସାହିତ୍ୟ-ଜଗତ ସମୃଦ୍ଧ କରିଥିଲେ, ଲେସୀଙ୍ଗ୍ ତାହାର ସୂଚନା

ଦେଇଛନ୍ତି ।

ଶୋପେନ୍‌ହାଓଆର—Arthur Schopenhauer (୧୭୮୮-୧୮୬୦) ଜର୍ମାନ ଦାର୍ଶନିକ । ତାଙ୍କ ରଚନାସମୂହ ମଧ୍ୟରେ ଉଲ୍ଲେଖଯୋଗ୍ୟ—On Sight and Colours (୧୮୧୬), The World as Will and Idea (୧୮୧୯), The Two Fundamental Problems of Ethics (୧୮୪୧) ଇତ୍ୟାଦି ।

ଶୋପେନ୍‌ହାଓଆର୍ ନୈରାଶ୍ୟବାଦୀ ଦାର୍ଶନିକ । ତାଙ୍କ ମତରେ ଅଚେତନ ଇଚ୍ଛା ହିଁ (Will) ଆତ୍ମା । ଏହି ଇଚ୍ଛା ମାଧ୍ୟମରେ ଅନ୍ୟାନ୍ୟ ମାନସିକ କ୍ରିୟାଗୁଡ଼ିକ ସୁସମ୍ବନ୍ଧ ଓ ପରିପୁଷ୍ଟ ହୋଇଥାଏ । ଏହି ପରିଦୃଶ୍ୟମାନ ଜଗତ ଆମ ଇଚ୍ଛାର ବହିଃପ୍ରକାଶ ମାତ୍ର ।

ସ୍ପେନ୍‌ସର—Herbert Spencer (୧୮୨୦-୧୯୦୩) ଇଂରେଜ ଦାର୍ଶନିକ । ଉଲ୍ଲେଖଯୋଗ୍ୟ ରଚନା—Principles of Psychology ( ୮୫୫), First Principles (୧୮୬୨), Principles of Biology (୧୮୬୪-୬୭), Principles of Ethics (୧୮୭୯), Principles of Sociology (୧୮୭୬) ପ୍ରଭୃତି ।

ହର୍ବର୍ଟ ସ୍ପେନ୍‌ସର୍ ଅଜ୍ଞେୟବାଦରେ (Agnosticism) ବିଶ୍ୱାସୀ । ସେ First Principles ନାମକ ଗ୍ରନ୍ଥରେ ଏହି ମତବାଦର ଅବତାରଣା କରିଛନ୍ତି । ତାଙ୍କ ମତରେ ଏହି ପରିଦୃଶ୍ୟମାନ ଜଗତର ପ୍ରଥମ ଓ ପ୍ରଧାନ କାରଣ ବିଷୟରେ ସ୍ପଷ୍ଟଭାବରେ କିଛି କହିବା ସମ୍ଭବ ନୁହେଁ । ଏହାକୁ ସେ ଅଜ୍ଞାତ ଓ ଅଜ୍ଞେୟ (unknown and unknowable) ବୋଲି ବର୍ଣ୍ଣନା କରିଛନ୍ତି ।

ହକ୍‌ସଲି—Thomas Henry Huxley (୧୮୨୫-୯୫) ଇଂରେଜ ପ୍ରାଣୀତତ୍ତ୍ୱବିଦ୍ । ତାଙ୍କ ରଚନାସମୂହ ମଧ୍ୟରେ ସର୍ବାପେକ୍ଷା ଉଲ୍ଲେଖଯୋଗ୍ୟ—On the Anatomy and Affinities of the Family of Medusae, The Origin of Species (୧୮୫୯), Man's Place in Nature (୧୮୬୩) ।

ହକ୍‌ସଲି ପ୍ରଥମ ଜୀବନରେ ଚିକିତ୍ସକରୂପେ ରାଜକୀୟ ନୌବିଭାଗରେ ଯୋଗଦାନ କରିଥିଲେ (୧୮୪୬) । ପରେ ଜଳଜ ଜୀବଦେହ ସମ୍ପର୍କୀୟ ଗବେଷଣାରେ ସେ ମନଃସଂଯୋଗ କରିଥିଲେ । ଜୀବନର ଶେଷ ଦଶବର୍ଷ ସେ ଦାର୍ଶନିକ ଏବଂ ଧର୍ମୀୟ ସମସ୍ୟାସମୂହରେ ଆତ୍ମନିୟୋଗ କରିଥିଲେ । ଦାର୍ଶନିକ ଅପେକ୍ଷା ବୈଜ୍ଞାନିକ ହିସାବରେ ସେ ଅଧିକ ପରିଚିତ ।

ହିଉମ୍—David Hume (୧୭୧୧-୭୬) ଇଂରେଜ ଦାର୍ଶନିକ । ପ୍ରଧାନ ରଚନାଗୁଡ଼ିକ ମଧ୍ୟରେ ଉଲ୍ଲେଖଯୋଗ୍ୟ—Treatise on Human

Nature (୧୭୩୪-୩୭); Enquiry Concerning Human Understanding (୧୭୪୮); An Enquiry Concerning Principles of Morals (୧୭୫୧) ଇତ୍ୟାଦି ।

ତାଙ୍କ ଦର୍ଶନ ପ୍ରତ୍ୟକ୍ଷବାଦ (Empiricism) ବୋଲି ପରିଚିତ । ସେ ଜଣେ ସଂଶୟବାଦୀ ଦାର୍ଶନିକ । ସେ ତାଙ୍କ ପୂର୍ବବର୍ତ୍ତୀ ଦାର୍ଶନିକ ଲକ୍ (John Locke) ଏବଂ ବର୍କଲିଙ୍କ (Bishop Berkeley) ମତକୁ କେତେକାଂଶରେ ସଂଶୋଧିତ କରିଛନ୍ତି । ପ୍ରଚଳିତ କାର୍ଯ୍ୟକାରଣବାଦକୁ ହ୍ୟୁମ୍ ଅସ୍ୱୀକାର କରିଛନ୍ତି ।

**ହେକେଲ୍**—Karl Haeckel (୧୮୩୪-୧୯୧୯) ଜର୍ମାନ୍ ବୈଜ୍ଞାନିକ । ତାଙ୍କର ପ୍ରଧାନ ରଚନାସମୂହ ମଧ୍ୟରୁ ବିଶେଷଭାବରେ ଉଲ୍ଲେଖଯୋଗ୍ୟ —Die Radiolarien (୧୮୬୨), Deep Sea Medusae (୧୮୮୨) ।

ସେ ଡାରଉଇନଙ୍କ ମତ ଅନେକାଂଶରେ ଗ୍ରହଣ କରିଛନ୍ତି ଏବଂ ତା' ସହିତ ଜର୍ମାନ୍ ବୈଜ୍ଞାନିକ ଓକେନ୍‌ଙ୍କ (Oken) ମତବାଦଗୁଡ଼ିକର ସମନ୍ୱୟ ସାଧନ କରିଛନ୍ତି । ଜର୍ମାନୀରେ ଡାରଉଇନଙ୍କ ମତବାଦ ସାଧାରଣ ଲୋକମାନଙ୍କ ଉପଯୋଗୀ କରି ପ୍ରଚାର କରିବା ବିଷୟରେ ସେ ବିଶେଷ ଅଗ୍ରଣୀ ଥିଲେ । ସେ ଜଡ଼ବାଦମୂଳକ ଏକତ୍ୱବାଦରେ (Materialistic Monism) ବିଶ୍ୱାସୀ, ଯାହାକୁ ବିରୋଧୀ ପକ୍ଷ ତୀବ୍ରଭାବରେ ସମାଲୋଚନା କରିଥାଆନ୍ତି ।

**ହେଗେଲ୍**—Georg Wilhelm Friedrich Hegel (୧୭୭୦-୧୮୩୧) ଜର୍ମାନ୍ ଦାର୍ଶନିକ । ତାଙ୍କର ପ୍ରଧାନ ରଚନାଗୁଡ଼ିକ ମଧ୍ୟରେ ଉଲ୍ଲେଖ ଯୋଗ୍ୟ—Phenomenology of Spirit (୧୮୦୭); Logic (୧୮୧୨), The Outlines of the Philosophy of Right (୧୮୨୧) ଇତ୍ୟାଦି ।

ହେଗେଲ୍‌ଙ୍କ ମତବାଦକୁ 'ବିଜ୍ଞାନବାଦ' ଅଥବା 'ପରମଚେତନବାଦ' ବୋଲି ବର୍ଣ୍ଣନା କରାଯାଇଅଛି । ହେଗେଲ୍‌ଙ୍କ ମତରେ ସର୍ବୋଚ୍ଚ ଚେତନ ସତ୍ତା (Absolute) ସମଗ୍ର ବିଶ୍ୱର ଅନ୍ତର୍ନିହିତ ସତ୍ୟ । ଚିନ୍ତା ବା ପ୍ରଜ୍ଞା ଏହାର ସ୍ୱରୂପ । ଗତିଶୀଳତା ହିଁ ଏହାର ପ୍ରଧାନ ଲକ୍ଷଣ । ଦାର୍ଶନିକ ତତ୍ତ୍ୱର ଭିତ୍ତିରେ ହେଗେଲ୍ ଧର୍ମ ଶିଳ୍ପ ଓ ବିଜ୍ଞାନର ସମନ୍ୱୟ ସାଧନ କରିଛନ୍ତି । ହେଗେଲ୍‌ଙ୍କ ମତରେ ଏହା ମଧ୍ୟରେ ଆମେ ସତ୍ୟ, ଶିବ ଓ ସୁନ୍ଦରର ସାର୍ଥକ ଅଭିବ୍ୟକ୍ତି ଦେଖୁ । ନ୍ୟସ୍ତ, ପ୍ରତିନ୍ୟସ୍ତ ଓ ସମନ୍ୱୟ (Thesis-Antithesis-Synthesis)—ଏହି ତ୍ରିବିଧ ନିୟମ ଭିତର ଦେଇ ଏହାର ଅଭିବ୍ୟକ୍ତି ହୋଇଥାଏ ।

**ହେରୋଡୋଟସ**—Herodotus (ଖ୍ରୀ: ପୂ: ୪୮୫-୪୨୫) ଗ୍ରୀକ୍ ଐତିହାସିକ । ତାଙ୍କ ରଚନାସମୂହ ମଧ୍ୟରେ ସର୍ବାପେକ୍ଷା ଉଲ୍ଲେଖଯୋଗ୍ୟ— History । ଏହି ଗ୍ରନ୍ଥ ରଚନା କରି ହେରୋଡୋଟସ 'ଇତିହାସର ଜନକ' ଆଖ୍ୟା ଲାଭ କରିଛନ୍ତି ।

ହାରିସନ୍—Frederick Harrison (୧୮୩୧-୧୯୨୩) ଅକ୍ସ-ଫୋର୍ଡରେ ଶିକ୍ଷାଲାଭ କରି କିଛୁକାଳ ଶିକ୍ଷକତା କରିବା ପରେ ସେ ଆଇନ ଓ ରାଜନୀତିରେ ଯୋଗ ଦିଅନ୍ତି । ଧର୍ମ ବିଷୟରେ ସେ ଜଣେ ଦୃଷ୍ଟବାଦୀ (Positivist) ଏବଂ ରାଜନୀତିରେ ଉଦାରପନ୍ଥୀ (Liberal) ଥିଲେ । ଅନେକ ପତ୍ରିକାରେ ଧର୍ମ ଓ ରାଜନୀତି ବିଷୟରେ ତାଙ୍କର ସୁଚିନ୍ତିତ ଓ ସୁଲିଖିତ ଅଭିମତ ମିଳେ । ତାଙ୍କ ଲିଖିତ ରଚନାସମୂହ ମଧ୍ୟରେ ଉଲ୍ଲେଖଯୋଗ୍ୟ --The Meaning of History, Order and Progress, Lectures on Education, Byzantine History.

( ୨ )

[ପ୍ରାଚ୍ୟ ବା ଭାରତୀୟ ଦର୍ଶନ ପ୍ରଧାନତଃ ଦୁଇଭାଗରେ ବିଭକ୍ତ —ବୈଦିକ (ଷଡ଼୍‌ଦର୍ଶନ) ଏବଂ ଅବୈଦିକ (ନାସ୍ତିକ ଦର୍ଶନ)]

**ଷଡ଼୍‌ଦର୍ଶନର ସଂକ୍ଷିପ୍ତ ପରିଚୟ** : ନ୍ୟାୟ, ବୈଶେଷିକ, ସାଂଖ୍ୟ, ଯୋଗ, ପୂର୍ବ-ମୀମାଂସା ଓ ବେଦାନ୍ତ (ଉତ୍ତର-ମୀମାଂସା)—ଭାରତୀୟ ଦର୍ଶନର ଏହି ଛଅଟି ଶାଖା ଏକତ୍ର ଷଡ଼୍‌ଦର୍ଶନ ନାମରେ ଅଭିହିତ । ଏହି ଛଅଟି ଦର୍ଶନରୁ ପ୍ରତ୍ୟେକଟି ଆସ୍ତିକ ଅର୍ଥାତ୍ ଏଗୁଡ଼ିକରେ ବେଦର ପ୍ରାମାଣ୍ୟ ସ୍ୱୀକୃତ ହୋଇଅଛି ।

(୧) ନ୍ୟାୟ ଓ ବୈଶେଷିକ : ନ୍ୟାୟଦର୍ଶନ ଓ ବୈଶେଷିକ ଦର୍ଶନ ଏହି ଉଭୟ ଦର୍ଶନକୁ ଏକତ୍ର 'ନ୍ୟାୟ-ବୈଶେଷିକ' କୁହାଯାଇଥାଏ । ନ୍ୟାୟଦର୍ଶନର ପ୍ରଣେତା ମହର୍ଷି ଗୌତମ ଏବଂ ବୈଶେଷିକ ଦର୍ଶନର ପ୍ରଣେତା କଣାଦ ।

ନ୍ୟାୟଦର୍ଶନର ସର୍ବାପେକ୍ଷା ଉଲ୍ଲେଖଯୋଗ୍ୟ ଗ୍ରନ୍ଥ ଗୌତମଙ୍କ ପ୍ରଣୀତ 'ନ୍ୟାୟସୂତ୍ର' ଏବଂ ବୈଶେଷିକଦର୍ଶନରେ କଣାଦଙ୍କ 'ବୈଶେଷିକ-ସୂତ୍ର' । ବାତ୍ସ୍ୟା-ୟନ ନ୍ୟାୟସୂତ୍ରର ଭାଷ୍ୟ ରଚନା କରିଛନ୍ତି (ଚତୁର୍ଥ ଶତକରେ) । ବୈଶେଷିକ-ସୂତ୍ରକୁ ବ୍ୟାଖ୍ୟା ନ କରି ମଧ୍ୟ ପ୍ରଶସ୍ତପାଦ ଏହାର ଭାଷ୍ୟ ରଚନା କରିଛନ୍ତି (ପଞ୍ଚମ ଶତକରେ) । ଏହା ବ୍ୟତୀତ ନ୍ୟାୟ-ବୈଶେଷିକ ଦର୍ଶନର ପ୍ରକରଣ-ଗ୍ରନ୍ଥ ବିଶ୍ୱନାଥ ନ୍ୟାୟପଞ୍ଚାନନଙ୍କ 'ଭାଷା-ପରିଚ୍ଛେଦ' ମଧ୍ୟ ରହିଛି । ନ୍ୟାୟଦର୍ଶନକୁ ଭିତ୍ତି କରି ରଚିତ ଉଦୟନଙ୍କ 'କୁସୁମାଞ୍ଜଳି' ଅତି ପ୍ରାଚୀନ ଏବଂ ଉଲ୍ଲେଖଯୋଗ୍ୟ ଗ୍ରନ୍ଥ ।

ବୈଶେଷିକ-ଦର୍ଶନ ନ୍ୟାୟଦର୍ଶନ ଅପେକ୍ଷା ପ୍ରାଚୀନ ଏବଂ ଏହି ଦୁଇଟି ଦର୍ଶନ ପୃଥକ୍ ଭାବରେ ରଚିତ ହୋଇଥିଲା । କିନ୍ତୁ ଉଭୟଙ୍କ ମୂଳ ପ୍ରତିପାଦ୍ୟ ବିଷୟ ଏକ ହେବାରୁ ପରବର୍ତ୍ତୀ କାଳରେ ଏଗୁଡ଼ିକ ଏକତ୍ର ଆଲୋଚିତ ହୋଇଥାଏ । ଏହି ଦର୍ଶନ ଦୁଇଟି ବସ୍ତୁତନ୍ତ୍ରବାଦୀ । ପୁନଶ୍ଚ ଏହି ଦୁଇଟି ଦର୍ଶନରେ ବହୁତତ୍ତ୍ୱବାଦ ସ୍ୱୀକୃତ । ବୈଶେଷିକ ଦର୍ଶନରେ ସପ୍ତ-ପଦାର୍ଥ ଏବଂ ପରମାଣୁବାଦ ସାହାଯ୍ୟରେ ସମଗ୍ର ଜଗତସୃଷ୍ଟିର ବ୍ୟାଖ୍ୟା କରାଯାଇଅଛି । ଏହା ନ୍ୟାୟଦର୍ଶନରେ ମଧ୍ୟ

ସ୍ୱୀକୃତ ।

ନ୍ୟାୟଦର୍ଶନର ବୈଶିଷ୍ଟ୍ୟ ଏହି ଯେ, ପ୍ରମାଣଭାଗ ଏଥିରେ ମୁଖ୍ୟ ସ୍ଥାନ ଲାଭ କରିଅଛି । ନ୍ୟାୟ ଓ ବୈଶେଷିକ ଏହି ଉଭୟ ଦର୍ଶନରେ ଈଶ୍ୱରଙ୍କ ଅସ୍ତିତ୍ୱ ସ୍ୱୀକୃତ ଓ ପ୍ରମାଣିତ ହୋଇଅଛି । 'ନ୍ୟାୟ' ଅର୍ଥରେ ଆମେ ଯୁକ୍ତିତର୍କ ବୁଝୁ । ବିଚାର-ବିଶ୍ଳେଷଣ ଉପରେ ଗୁରୁତ୍ୱ ଦିଆଯାଇଛି ବୋଲି ଏହି ଦର୍ଶନର ନାମ 'ନ୍ୟାୟ ଦର୍ଶନ' ।

'ବୈଶେଷିକ' ଶବ୍ଦଟି 'ବିଶେଷ'ରୁ ଉଦ୍ଭୂତ । 'ବିଶେଷ' ଅର୍ଥରେ ନିତ୍ୟଦ୍ରବ୍ୟ-ସମୂହର ପରସ୍ପର-ଭେଦକ ଏକ ନିତ୍ୟପଦାର୍ଥକୁ ବୁଝାଏ । ବୈଶେଷିକ ଦର୍ଶନରେ ଆମେ ଦେଖୁ, ସମଗ୍ର ବିଶ୍ୱର ମୂଳତତ୍ତ୍ୱ ସମ୍ପର୍କରେ ଐକ୍ୟ ଅପେକ୍ଷା ବୈଚିତ୍ର୍ୟ ଉପରେ ଗୁରୁତ୍ୱ ଦିଆଯାଇଛି । 'ବିଶେଷ' ନାମକ ପଦାର୍ଥକୁ ସ୍ୱୀକାର କରାଯାଏ ବୋଲି ଏହି ଦର୍ଶନକୁ ବୈଶେଷିକ ଦର୍ଶନ କୁହାଯାଏ ।

(୬) ସାଂଖ୍ୟ ଓ ଯୋଗ : ସାଂଖ୍ୟଦର୍ଶନର ପ୍ରଣେତା ମହର୍ଷି କପିଳ ଏବଂ ଯୋଗଦର୍ଶନର ପ୍ରଣେତା ପତଞ୍ଜଳି । ସାଂଖ୍ୟଦର୍ଶନର ସର୍ବାପେକ୍ଷା ଉଲ୍ଲେଖଯୋଗ୍ୟ ଗ୍ରନ୍ଥ 'ସାଂଖ୍ୟକାରିକା' ଏବଂ କପିଳଙ୍କ 'ସାଂଖ୍ୟସୂତ୍ର' । ଯୋଗଦର୍ଶନରେ ପତଞ୍ଜଳି-କୃତ 'ଯୋଗସୂତ୍ର' ବିଶେଷ ଉଲ୍ଲେଖଯୋଗ୍ୟ । ଏହା ବ୍ୟତୀତ ବ୍ୟାସ-କୃତ 'ଯୋଗ-ଭାଷ୍ୟ' ଏବଂ ବିଜ୍ଞାନଭିକ୍ଷୁ-କୃତ 'ଯୋଗ-ବାର୍ତ୍ତିକ', ବାଚସ୍ପତି-କୃତ 'ତତ୍ତ୍ୱବୈଶାରଦୀ' ଉଲ୍ଲେଖଯୋଗ୍ୟ ।

ସାଂଖ୍ୟଦର୍ଶନର ନାମକରଣ ସମ୍ପର୍କରେ ବିଭିନ୍ନ ମତ ରହିଅଛି । କାହାର କାହାର ମତରେ 'ସାଂଖ୍ୟ' ଶବ୍ଦର ଅର୍ଥ 'ସମ୍ୟକ୍ ଜ୍ଞାନ', ପୁଣି ଅନ୍ୟମାନଙ୍କ ମତରେ ଏଥିରେ ପ୍ରକୃତର ଚତୁର୍ବିଂଶତିସଂଖ୍ୟକ ତତ୍ତ୍ୱ ରହିଅଛି ବୋଲି ଏହାର ନାମ ସାଂଖ୍ୟ-ଦର୍ଶନ ।

ଯୋଗ-ଦର୍ଶନରେ ଅଷ୍ଟାଙ୍ଗଯୋଗ ସାହାଯ୍ୟରେ ମୋକ୍ଷ ବା ସମାଧି-ଲାଭର ପନ୍ଥା ବର୍ଣ୍ଣିତ ହୋଇଅଛି । ଯୋଗସାଧନା ଉପରେ ପ୍ରାଧାନ୍ୟ ଦିଆଯାଇଅଛି ବୋଲି ଏହାକୁ 'ଯୋଗଦର୍ଶନ' କୁହାଯାଇଥାଏ ।

ସାଂଖ୍ୟ ଓ ଯୋଗ ଏହି ଉଭୟ ଦର୍ଶନରେ ଦ୍ୱୈତବାଦ ସ୍ୱୀକୃତ; (ପୁରୁଷ ସହିତ) ପଞ୍ଚବିଂଶତି ତତ୍ତ୍ୱ ସାହାଯ୍ୟରେ ଜଗତର ସୃଷ୍ଟି ଓ ପ୍ରଳୟ ବ୍ୟାଖ୍ୟା କରାଯାଇଅଛି । ଏହି ଦୁଇଟି ଦର୍ଶନ ମଧ୍ୟରେ ଏକମାତ୍ର ପାର୍ଥକ୍ୟ— ସାଂଖ୍ୟ-ଦର୍ଶନରେ ଈଶ୍ୱର ସ୍ୱୀକୃତ ନୁହଁନ୍ତି, କିନ୍ତୁ ଯୋଗଦର୍ଶନରେ ଜ୍ଞାନୀ ଗୁରୁରୂପେ ଈଶ୍ୱର ସ୍ୱୀକୃତ । ଅନ୍ୟାନ୍ୟ ବିଷୟରେ ଏହି ଦୁଇଟି ଦର୍ଶନ ସମାନ ବୋଲି ଯୋଗଦର୍ଶନକୁ 'ସେଶ୍ୱର ସାଂଖ୍ୟ' ନାମରେ ଅଭିହିତ କରାଯାଇଥାଏ । [୧ମ ଖଣ୍ଡ ତଥ୍ୟପଞ୍ଜୀ ଦ୍ରଷ୍ଟବ୍ୟ]

(ଗ) ପୂର୍ବମୀମାଂସା ଓ ଉତ୍ତରମୀମାଂସା : ପୂର୍ବମୀମାଂସାସୂତ୍ରର ପ୍ରଣେତା

ଜୈମିନି ଏବଂ ଉତ୍ତରମୀମାଂସା ବା ବେଦାନ୍ତସୂତ୍ରର ପ୍ରଣେତା ବ୍ୟାସଦେବ । ଜୈମିନିଙ୍କ ମୀମାଂସାସୂତ୍ର ଉପରେ ଶବରସ୍ୱାମୀ ଭାଷ୍ୟ ଏବଂ ଭାଷ୍ୟ ଉପରେ କୁମାରିଲ ବାର୍ତ୍ତିକ ଓ ପ୍ରଭାକର ବୃହତୀଟୀକା ପ୍ରଭୃତି ରଚନା କରିଛନ୍ତି । ଆଚାର୍ଯ୍ୟ ଶଙ୍କର, ରାମାନୁଜ ପ୍ରଭୃତି ବ୍ୟାସଙ୍କ ବେଦାନ୍ତସୂତ୍ର ଉପରେ ଭାଷ୍ୟ ରଚନା କରିଅଛନ୍ତି ।

'ମୀମାଂସା' ଶବ୍ଦର ଅର୍ଥ ହେଲା ସତ୍‌ବସ୍ତୁର ଓ ସମସ୍ୟାର ସମାଧାନ । ପୂର୍ବ-ମୀମାଂସା ଓ ଉତ୍ତରମୀମାଂସା—ଏହି ଉଭୟ ଦର୍ଶନରେ ଜାଗତିକ ଦୁଃଖସମୂହ ଅବସାନ କରିବାର ଉପାୟ ଆଲୋଚିତ ହୋଇଅଛି । ଏହି ଉଭୟ ଦର୍ଶନରେ ବେଦର ସ୍ୱତଃପ୍ରାମାଣ୍ୟ-ପ୍ରଭାବ ବିଶେଷଭାବେ ସ୍ୱୀକୃତ । କିନ୍ତୁ ପୂର୍ବମୀମାଂସାରେ ବେଦର ପୂର୍ବଭାଗ କର୍ମକାଣ୍ଡ ଅର୍ଥାତ୍ ବେଦବିହିତ ଯାଗଯଜ୍ଞାନୁଷ୍ଠାନ ଉପରେ ପ୍ରାଧାନ୍ୟ ଆରୋପିତ ହୋଇଅଛି । ପ୍ରାଚୀନ ମୀମାଂସକଗଣ କହିଛନ୍ତି, ବେଦବିହିତ ଯାଗଯଜ୍ଞାଦିର ଅନୁଷ୍ଠାନଦ୍ୱାରା ସ୍ୱର୍ଗପ୍ରାପ୍ତି ହୁଏ, ଏବଂ ପରବର୍ତ୍ତୀ କାଳର ମୀମାଂସକ-ମାନଙ୍କ ମତ—ନିଷ୍କାମ କର୍ମ ଓ ଆତ୍ମଜ୍ଞାନଦ୍ୱାରା ମୋକ୍ଷଲାଭ ହୁଏ । ବେଦସମୂହର ପୂର୍ବଭାଗ ଅର୍ଥାତ୍ କର୍ମକାଣ୍ଡ ଉପରେ ପ୍ରାଧାନ୍ୟ ଆରୋପ କରିବା ଯୋଗୁ ଏହି ମୀମାଂସା ଦର୍ଶନକୁ 'ପୂର୍ବମୀମାଂସା' କୁହାଯାଇଥାଏ । ଅପରପକ୍ଷରେ ଉତ୍ତରମୀମାଂସା ଦର୍ଶନରେ ବେଦର ଉତ୍ତରଭାଗ ବା ଜ୍ଞାନକାଣ୍ଡକୁ ପ୍ରାଧାନ୍ୟ ଦିଆଯାଇଅଛି । ଆତ୍ମାନୁଭୂତି ଏହି ଦର୍ଶନର ମୂଳ ପ୍ରତିପାଦ୍ୟ ବିଷୟ । ଏହି ଦର୍ଶନକୁ 'ବେଦାନ୍ତ ଦର୍ଶନ' କୁହାଯାଇଛି, କାରଣ ଏହା ବେଦର ଶେଷଭାଗ ବା ଉପନିଷଦ୍ । ଉପନିଷଦ୍ ହିଁ ବେଦାନ୍ତ । ପୁଣି କାହାରି କାହାରି ମତରେ ବେଦର ସାରତତ୍ତ୍ୱ ଅର୍ଥାତ୍ ବ୍ରହ୍ମଙ୍କ ସ୍ୱରୂପ ବେଦାନ୍ତଦର୍ଶନରେ ଆଲୋଚିତ ହୋଇଅଛି ବୋଲି ଏହାକୁ ଏହି ନାମରେ ଅଭିହିତ କରାଯାଏ ।

ମୀମାଂସା-ଦର୍ଶନରେ ବେଦର ପ୍ରାମାଣ୍ୟ ପୂର୍ଣ୍ଣରୂପେ ସ୍ୱୀକୃତ ହୋଇଅଛି । ଏହି ମତରେ ବେଦ ଅପୌରୁଷେୟ ଓ ନିତ୍ୟ । ମୀମାଂସା-ଦର୍ଶନରେ ବୈଦିକ କର୍ମକାଣ୍ଡର ଅର୍ଥ ବିଚାର କରାହୋଇଅଛି; ବେଦାନ୍ତରେ ବେଦର ଜ୍ଞାନକାଣ୍ଡର ଅର୍ଥ ଆଲୋଚିତ ହୋଇଅଛି ।

ବେଦାନ୍ତଦର୍ଶନରେ ବ୍ରହ୍ମ ହିଁ ଏକମାତ୍ର ସତ୍ୟ ବୋଲି ସ୍ୱୀକୃତ । ଜୀବ, ଜଗତ ଓ ସୃଷ୍ଟି ବ୍ରହ୍ମରେ ଅଧିଷ୍ଠିତ । ଏହି ମତରେ ବ୍ରହ୍ମଜ୍ଞାନଲାଭ ହିଁ ମୋକ୍ଷଲାଭ ।

**ଅବୈଦିକ ନାସ୍ତିକ ଦର୍ଶନ :** ଚାର୍ବାକ, ଜୈନ ଓ ବୌଦ୍ଧ ଏହି ତିନୋଟି ଦର୍ଶନ ବେଦକୁ ଅସ୍ୱୀକାର କରନ୍ତି, ଏଗୁଡ଼ିକ ବେଦ-ବିରୋଧୀ, ତେଣୁ ଏଗୁଡ଼ିକୁ ନାସ୍ତିକ କୁହାଯାଏ ।

(୧) ଚାର୍ବାକଦର୍ଶନ : 'ଲୋକାୟତ ଦର୍ଶନ' ନାମରେ ମଧ୍ୟ ପରିଚିତ ଏହା ଜଡ଼ବାଦୀ ଓ ଦେହାତ୍ମବାଦୀ । କେହି କେହି 'ବୃହସ୍ପତିସୂତ୍ର'କୁ ଏହି ଦର୍ଶନର ମୂଳ କହନ୍ତି, ଏହି ଦର୍ଶନ ଉପରେ କୌଣସି ନିର୍ଭରଯୋଗ୍ୟ ତଥ୍ୟ ମିଳେ ନାହିଁ,

ଅନ୍ୟାନ୍ୟ ଗ୍ରନ୍ଥରେ ଏହାର କିଛି କିଛି ଉଦ୍ଧୃତ ମାତ୍ର ମିଳିଥାଏ । ଚାର୍ବାକ କୌଣସି ଋଷିଙ୍କ ନାମ କି ନୁହେଁ ତାହା ସନ୍ଦେହଜନକ । 'ଚାରୁ ବାକ୍ ଯସ୍ୟ'—ଏଥିରୁ 'ଚାର୍ବାକ' ଶବ୍ଦ ନିଷ୍ପନ୍ନ । 'ଚର୍ବ' ଧାତୁରୁ ଚର୍ବାକ ବା ଚାର୍ବାକ ଶବ୍ଦ ନିଷ୍ପନ୍ନ ହୁଏ ।

ଏହି ଦର୍ଶନର ଲକ୍ଷ୍ୟ ଇହଲୋକରେ ଉନ୍ନତି କରିବା । ସୁଖଭୋଗରେ ପରମପୁରୁଷାର୍ଥ ନିହିତ; 'ଦେହ-ମନ-ଇନ୍ଦ୍ରିୟ'-ବ୍ୟତିରିକ୍ତ ଆତ୍ମା ଏବଂ ପରଲୋକ ଅସ୍ୱୀକୃତ, ପ୍ରତ୍ୟକ୍ଷ ବ୍ୟତୀତ ଅନ୍ୟ କୌଣସି ପ୍ରମାଣ ନାହିଁ । ଆଧୁନିକ ଜଡ଼ବାଦୀଗଣ ମଧ୍ୟ ଅନେକାଂଶରେ ଏହିପରି ବିଚାର କରିଥାଆନ୍ତି ।

(୨) ଜୈନଦର୍ଶନ : ଋଷଭଦେବ ପ୍ରଭୃତି ଜିନଙ୍କଦ୍ୱାରା ପ୍ରବର୍ତ୍ତିତ ଓ ମହାବୀରଙ୍କଦ୍ୱାରା ପ୍ରଚାରିତ; 'ତତ୍ତ୍ୱାଧିଗମସୂତ୍ର' ମୂଳ ଗ୍ରନ୍ଥ । ଜୈନଦର୍ଶନ ଉପରେ ଗ୍ରନ୍ଥ ରଚିତ ହୋଇଅଛି, ଯାହା ବର୍ତ୍ତମାନ ମଧ୍ୟ ମିଳିଥାଏ । ଜୈନମାନଙ୍କର ଦୁଇଟି ସମ୍ପ୍ରଦାୟ ଅଛି—ଶ୍ୱେତାମ୍ବର ଓ ଦିଗମ୍ବର ।

ଜୈନଦର୍ଶନରେ ଆତ୍ମା ଦେହାତିରିକ୍ତ, କିନ୍ତୁ ଏହା ସାବୟବ, ଦେହ-ପରିମିତ, ସଂକୋଚବିକାଶଶୀଳ; ପାପ (ପାପ) କର୍ମଦ୍ୱାରା ଆତ୍ମା ଶରୀରରେ ବଦ୍ଧ ହୁଏ, ପୁଣ୍ୟ କର୍ମ (ସମ୍ୟକ୍ ଚରିତ)ଦ୍ୱାରା ମୁକ୍ତ ହୁଏ । ମୁକ୍ତ ହେଲେ ଆତ୍ମାର ଦେହ-ବନ୍ଧନ ଚାଲିଯାଏ, ଏବଂ ତାହାର ଊର୍ଦ୍ଧ୍ୱଲୋକକୁ ଗତି ହୋଇଥାଏ ।

(୩) ବୌଦ୍ଧଦର୍ଶନ : ତଥାଗତ ବୁଦ୍ଧଙ୍କଦ୍ୱାରା ପ୍ରଚାରିତ । ତାଙ୍କ ପୂର୍ବରୁ ମଧ୍ୟ ବୌଦ୍ଧମତ ଥିଲା; 'ତ୍ରିପିଟକ' ବୌଦ୍ଧମାନଙ୍କର ପ୍ରଧାନ ଗ୍ରନ୍ଥ । ବୌଦ୍ଧଦର୍ଶନ ପ୍ରଧାନ ଚାରୋଟି ମତରେ ବିଭକ୍ତ—ସୌତ୍ରାନ୍ତିକ, ବୈଭାଷିକ, ଯୋଗାଚାର ଓ ମାଧ୍ୟମିକ ବା ଶୂନ୍ୟବାଦ । ପ୍ରଥମ ତିନୋଟି ମତରେ ଆତ୍ମା କ୍ଷଣିକ ବିଜ୍ଞାନସ୍ୱରୂପ, ଶେଷ ମତରେ ଆତ୍ମା ଶୂନ୍ୟ । ମାଧ୍ୟମିକ ମତ ସହିତ ଅଦ୍ୱୈତ-ମତର ଅଳ୍ପ ସାଦୃଶ୍ୟ ଅଛି, ଯଦିଓ ଅଦ୍ୱୈତମତରେ ଆତ୍ମା ସତ୍‌ସ୍ୱରୂପ ।

## ସଂକ୍ଷିପ୍ତ ତଥ୍ୟ ଓ ଟୀକା

ପୃଷ୍ଠା, ପଙ୍କ୍ତି

୩ ୧୧ 'ଇନ୍ଦ୍ରୋ ମାୟାଭିଃ…'—ବୃହ. ଉପ., ୨।୫।୧୯

୩ ୨୦ 'ନୀହାରେଣ ପ୍ରାବୃତା…'—କୁହୁଡ଼ି ପରି ଅଜ୍ଞାନଦ୍ୱାରା ଆବୃତ ହୋଇ ଜୀବଗଣ ମନେ କରନ୍ତି, 'ଆମେ କର୍ତ୍ତା, ଆମେ ଭୋକ୍ତା,' ଇହଲୋକରେ ସୁଖଭୋଗ ଓ ପରଲୋକରେ ସ୍ୱର୍ଗଭୋଗ କରିବା ପାଇଁ ଯଜ୍ଞରେ ନାନାପ୍ରକାର ସ୍ତୋତ୍ର ଉଚ୍ଚାରଣ କରନ୍ତି ।

ପୃଷ୍ଠା, ପଙ୍କ୍ତି

୪ ୨ 'ମାୟାନ୍ତୁ ପ୍ରକୃତିଂ ବିଦ୍ୟାତ୍…'—ଶ୍ୱେତାଶ୍ୱ. ଉପ., ୪।୧୦

୫ ୪ 'ସେହି ସର୍ବବ୍ୟାପୀ ଜୀବନୀଶକ୍ତି'—ପ୍ରଶ୍ନ ଉପ., ୨।୫-୧୩

୫ ୧୧ 'ଜୀବ ଚନ୍ଦ୍ରଲୋକରୁ ପୃଥିବୀକୁ…।'—ବୃହ. ଉପ., ୧୬।୨।୧୬, ଛାନ୍ଦୋଗ୍ୟ ଉପ., ୫।୧୦।୪

୭ ୧୭-୧୮ ଲଳିତବିସ୍ତର : ମହାସଙ୍ଘିକ ସମ୍ପ୍ରଦାୟ-ସଂକଳିତ ବୁଦ୍ଧ-ଜୀବନୀ ।

୮ ୨୬ 'ସୁବର୍ଣ୍ଣଲୋମ' (Golden Fleece) : ଗ୍ରୀକ୍ ପୁରାଣର ଗଳ୍ପ —ଏଠାରେ ଅପ୍ରାପ୍ୟ ବା ଦୁଷ୍ପ୍ରାପ୍ୟ କୌଣସି ବସ୍ତୁର ଅନୁସନ୍ଧାନ ।

୨୫ ୧୨ 'ଏହି ଜଳପ୍ଲାବନର ଗଳ୍ପରେ'—ନୋୟା (Noah) ଗଳ୍ପ ପାଇଁ ଦ୍ରଷ୍ଟବ୍ୟ—O. T. Genesis, Ch. 7.

୩୭ ୧୯ 'ଜଣେ ଦିଗ୍‌ବିଜୟୀ ସମ୍ରାଟ ଥରେ ଭାରତବର୍ଷକୁ ଆଗମନ…' —ଏଠାରେ ଆଲେକ୍‌ଜାଣ୍ଡାରଙ୍କ କଥା କୁହାଯାଇଅଛି ।

୪୦ ୧୦ 'ହେ ସଖେ, କାହିଁକି ରୋଦନ କରୁଅଛ ?'—ତୁଳନୀୟ :

'କିଂ ନାମ ରୋଦଷି ସଖେ ନ ଚ ତେ ସ୍ୱରୂପମ୍
କିଂ ନାମ ରୋଦଷି ସଖେ ନ ଚ ତେ ବିରୂପମ୍ ।
କିଂ ନାମ ରୋଦଷି ସଖେ ନ ଚ ତେ ବୟାଂସି
ଜ୍ଞାନାମୃତଂ ସମରସଂ ଗଗନୋପମୋଽହମ୍ ॥'

ଅବଧୂତଗୀତା, ୩।୩୫

୪୨ ୧୬-୧୭ 'ହିନ୍ଦୁମାନେ ବିଶେଷ ପ୍ରତି ସେତେ ଦୃଷ୍ଟି ଦିଅନ୍ତି ନାହିଁ…' 'ଯଥା ଦୁନ୍ଦୁଭେର୍ହନ୍ୟମାନସ୍ୟ', ଦ୍ରଷ୍ଟବ୍ୟ—ବୃହ. ଉପ., ୨।୪୭-୧୧

୪୭ ୨୫ 'ଯେଉଁମାନେ ଅତ୍ୟନ୍ତ ଧାର୍ମିକ, ମୃତ୍ୟୁ ପରେ ସେମାନେ …' —ବୃହ. ଉପ., ୬।୨।୧୫, ଛାନ୍ଦୋଗ୍ୟ ଉପ., ୫।୧୦।୧-୨

୪୮ ୧୧-୧୨ 'ଯେଉଁମାନେ ଅତିଶୟ ଦୁର୍ବୃତ୍ତ, ସେମାନଙ୍କର ମୃତ୍ୟୁ ହେଲେ …' —ଛାନ୍ଦୋଗ୍ୟ ଉପ., ୫।୧୦।୭

୪୯ ୨୧ 'ଆଉ ଚନ୍ଦ୍ରଲୋକକୁ ଯାଇଥିବା ପଥକୁ ପିତୃଯାନ କୁହାଯାଏ'— ଛାନ୍ଦୋଗ୍ୟ ଉପ., ୫।୧୦।୩ ଓ ବୃହ., ଉପ., ୬।୨।୧୬

୫୦ ୮-୯ 'ଗୋଟିଏ ଜ୍ୱଳନ୍ତ ମଶାଲ୍'—ଅଲାତଚକ୍ର ଦୃଷ୍ଟାନ୍ତ, ମାଣ୍ଡୁକ୍ୟକାରିକା, ୪।୪୭

୫୮ ୯ 'ପ୍ରାକ୍ତନ କର୍ମର ବେଗ'—ସାଂଖ୍ୟକାରିକା ୬୭

ପୃଷ୍ଠା, ପଙ୍‌କ୍ତି

୭୨ ୨ ଟାଣ୍ଟାଲସ୍ : ଗ୍ରୀକ୍ ପୁରାଣରେ ଜିଉସଙ୍କ ପୁଅ । ଅମୃତ ଚୋରି କରିବା ଅପରାଧରେ ତାଙ୍କୁ ଶାସ୍ତି ଦିଆ ହୋଇଥିଲା—ହ୍ରଦରେ ସେ ଓଷ୍ଠ ପର୍ଯ୍ୟନ୍ତ ନିମଜ୍ଜିତ, କିନ୍ତୁ ଜଳପାନ କରିବାକୁ ଗଲାବେଳେ ଜଳ କମିଯାଏ; ଉପରେ ସୁନ୍ଦର ସୁନ୍ଦର ଫଳ ଝୁଲୁଥାଏ, ହାତ ବଢ଼ାଇଲେ ସେଗୁଡ଼ିକ ଉଠିଯାଆନ୍ତି—ଅତୃପ୍ତ ଓ ଅପୂରଣୀୟ ବାସନାର ଦୃଷ୍ଟାନ୍ତ ।

୮୭ ୩ 'ବୁଦ୍ଧଦେବ ବୋଧିବୃକ୍ଷ ତଳେ ବସି ଦୃଢ଼ସ୍ୱରରେ ଯାହା କହିଯାଇଥିଲେ'—'ଇହାସନେ ଶୁଷ୍ୟତୁ ମେ ଶରୀରମ୍' ଇତ୍ୟାଦି—ଲଳିତବିସ୍ତର ।

୮୯ ୨୧-୨୨ ମୋହନ ବଂଶୀବାଦକ : ଇଂରେଜ କବି ରବର୍ଟ ବ୍ରାଉନିଂଙ୍କ ରଚିତ 'The Pied Piper of Hamelin' କବିତା ସ୍ମରଣୀୟ ।

୧୦୯ ୧୭ 'ସେ ତାଙ୍କର ଅନ୍ତରଙ୍ଗ ଶିଷ୍ୟମାନଙ୍କୁ ଅତିଶ ସ୍ପଷ୍ଟଭାବରେ କହିଥିଲେ'—ଏ ବିଷୟରେ ୪୦୭ ପୃଷ୍ଠାରେ ୨୪-୨୯ ପଙ୍‌କ୍ତି ଦ୍ରଷ୍ଟବ୍ୟ ।

୧୧୧ ୧୨-୧୩ 'ଅସ୍ତି ନାସ୍ତି କିଛି ନ ଥିଲା—ନାସଦୀୟ ସୂକ୍ତ—ଋଗ୍‌ବେଦ ୧୦।୧୨୯।୧, 'ନାସଦାସୀନ୍ନୋ ସଦାସୀତ୍ତଦାନୀଂ' । ଦ୍ରଷ୍ଟବ୍ୟ —୧ମ ଖଣ୍ଡ ୨୨୫ ପୃଷ୍ଠା ।

୧୧୫ ୧୯ କଳ୍ପ : ପୁରାଣମତରେ ୪,୩୨,୦୦,୦୦,୦୦୦ ବର୍ଷରେ ବ୍ରହ୍ମାଙ୍କର ଗୋଟିଏ ଦିନ—ସୃଷ୍ଟି କାଳ । ଅନୁରୂପ କାଳରାତି, ଏହା ପ୍ରଳୟକାଳ । ଏହି ଦିନ ଓ ରାତ୍ରି ମିଶି ଗୋଟିଏ କଳ୍ପ ।

୧୧୯ ୩ ଉଦ୍ଦେଶ୍ୟବାଦ (Design Theory): ଜଗତର ସୃଷ୍ଟିକୌଶଳ ଦେଖି ଏହାର ପଶ୍ଚାତ୍‌ରେ ଯେ ଜଣେ ଜ୍ଞାନସମ୍ପନ୍ନ ବ୍ୟକ୍ତି ବା ଈଶ୍ୱର ଅଛନ୍ତି, ତାହା ବୁଝାଯାଏ—ଏହିପରି ମତବାଦ ।

୧୧୯ ୨୩-୨୪ 'ଆମେମାନେ ଈଶ୍ୱରଙ୍କଠାରୁ ଆସିଅଛୁ'—'ତସ୍ମାତ୍ ଚ ଦେବା ବହୁଧା ସମ୍ପ୍ରସୂତାଃ' ଇତ୍ୟାଦି, ମୁଣ୍ଡକ, ୨।୧।୭-୯

୧୨୧ ୧୦ 'ତୁମେ ପୁରୁଷ ତୁମେ ସ୍ତ୍ରୀ'—'ତ୍ୱଂ ସ୍ତ୍ରୀ ତ୍ୱଂ ପୁମାନସି', ଶ୍ୱେ. ଉପ., ୪।୪

୧୬୩ ୧୩ 'ଆମେରିକାର ଜଣେ ବିଖ୍ୟାତ ଅଜ୍ଞେୟବାଦୀ ବକ୍ତା'—ମିଃ ଇଙ୍ଗାରସୋଲ୍, ୧ମ ଖଣ୍ଡ ବ୍ୟକ୍ତି-ପରିଚୟ ଦ୍ରଷ୍ଟବ୍ୟ ।

ପୃଷ୍ଠା, ପଙ୍କ୍ତି

୧୮୭ ୨୭ 'ଶ୍ରେୟଃ' ଓ 'ପ୍ରେୟଃ : ଶ୍ରେୟଃ ଅର୍ଥାତ୍ ନିଃଶ୍ରେୟସ ବା ମୁକ୍ତି; ପ୍ରେୟଃ ଅର୍ଥାତ୍ ଭୋଗ୍ୟ ପ୍ରିୟ ବସ୍ତୁ । କଠ ଉପ., ୧।୨।୧

୧୮୯ ୩୦ 'ଧର୍ମୋପଦେଶ' : N. T. ମାଥ୍ୟୁ ୫-୭, ଲ୍ୟୁକ୍ ୬: ୨୦-୪୯

୧୯୪ ୧୩ 'ଓଁକାରର ଅତିଶୟ ମହିମା···'—ଓଁକାରତତ୍ତ୍ୱ, ମାଣ୍ଡୁକ୍ୟ ଉପ. ଦ୍ରଷ୍ଟବ୍ୟ ।

୨୧୦ ୨୦ ସ୍ୱାରାଜ୍ୟସିଦ୍ଧି : ଆଚାର୍ଯ୍ୟ ଶଙ୍କରଙ୍କ ଅନ୍ୟତମ ପ୍ରଧାନ ଶିଷ୍ୟ ସୁରେଶ୍ୱରାଚାର୍ଯ୍ୟକୃତ ବେଦାନ୍ତଗ୍ରନ୍ଥ ।

୨୩୩ ୩ 'ଜଡ଼ବିଜ୍ଞାନ ମଧ୍ୟ ଏହା ଘୋଷଣା କରୁଛି'—ଆଧୁନିକ ବିଜ୍ଞାନ ମତରେ ସମସ୍ତ ବସ୍ତୁ ହିଁ ବିଦ୍ୟୁତ୍‌ଶକ୍ତି (କଣା)ର ବିଭିନ୍ନ ସଂସ୍ଥାନ ।

୨୬୧ ୩ 'ଜ୍ଞାନଲାଭର ଦୁଇଟି ମୂଳସୂତ୍ର ଅଛି'—ତର୍କଶାସ୍ତ୍ରରେ ବ୍ୟବହୃତ । ଆରୋହ (Inductive) ଓ ଅବରୋହ (Deductive) ପଦ୍ଧତି ।

୨୬୩ ୪-୫ 'ଶୂନ୍ୟରୁ ସୃଷ୍ଟି···ଉପହାସ୍ୟର ବିଷୟ'—'Ex nihilo nihil fit' ଶୂନ୍ୟରୁ କେବଳ ଶୂନ୍ୟ ଆସିପାରେ; ଶୂନ୍ୟରୁ ପଦାର୍ଥ-ସୃଷ୍ଟି କୌଣସି ଦର୍ଶନ ସ୍ୱୀକାର କରେ ନାହିଁ । ସ୍ମରଣୀୟ : 'ସଦେବ ସୌମ୍ୟ ଇଦମଗ୍ର ଆସୀତ୍'

୨୭୩ ୧୯-୨୦ 'ପ୍ରାଚୀନ ବୌଦ୍ଧମାନେ ଏପ୍ରକାର ଜୀବାତ୍ମାକୁ ସ୍ୱୀକାର କରିବାର···' —ବୁଦ୍ଧପ୍ରଦତ୍ତ ଶିକ୍ଷାରୁ ବୌଦ୍ଧଦର୍ଶନରେ 'ଅନାତ୍ମାବାଦ'ର ସୂତ୍ରପାତ ।

୩୦୩ ୧୨ 'ବେଦରେ···ଊର୍ଣ୍ଣନାଭ ଯେପରି'—ମୁଣ୍ଡକ ଉପ., ୧।୧।୭

୩୦୪ ୧୧-୧୨ 'ଜ୍ୱଳନ୍ତ ଅଗ୍ନିରୁ ··· ଲକ୍ଷ ସ୍ଫୁଲିଙ୍ଗ'—ମୁଣ୍ଡକ ଉପ., ୨।୧।୧

୩୧୧ ୪ 'ଯେତେବେଳେ ହୃଦୟର ସମସ୍ତ କାମନା ପରାଭୂତ ହେବ'—'ଯଦା ସର୍ବେ ପ୍ରମୁଚ୍ୟନ୍ତେ କାମାଃ ଯେଽସ୍ୟ ହୃଦି ଶ୍ରିତାଃ···' ଇତ୍ୟାଦି । କଠ ଉପ., ୨।୩।୧୪

୩୨୩ ୨୯ 'ନେଫେସ୍' ଅଥବା 'ରୁୟାଖ୍' : ହିବ୍ରୁ ଭାଷାରେ ଆତ୍ମାର ପ୍ରତିଶବ୍ଦ 'ନେଫେସ' (nephesh, naphsha, nefs = breath) ବହୁ ଅର୍ଥ-ପରିବର୍ତ୍ତନ ମଧ୍ୟ ଦେଇ ଯାଇଛି; ପ୍ରଥମତଃ ଏହାର ଅର୍ଥ ଥିଲା 'ବାୟୁ' ବା 'ପ୍ରାଣବାୟୁ' । ଆତ୍ମାର ଆଉ ଗୋଟିଏ ପ୍ରତିଶବ୍ଦ 'ରୁୟା' (ruah = spirit), ତାହାର ମୂଳ ଅର୍ଥ ପ୍ରବଳ ବାୟୁ (wind) ।

| ପୃଷ୍ଠା | ପଙ୍କ୍ତି | |
|---|---|---|
| ୩୨୬ | ୧୮ | 'ଇଷ୍ଟାର' ଅଥବା ଇଷ୍ଟାରଭ : ୬ଷ୍ଠ ଖଣ୍ଡ ଦ୍ରଷ୍ଟବ୍ୟ । |
| ୩୨୯ | ୭ | 'ଓସିରସ୍' ବା ଅସିରସ୍ : ୬ଷ୍ଠ ଖଣ୍ଡ ଦ୍ରଷ୍ଟବ୍ୟ । |
| ୩୩୦ | ୨ | 'ଏପୁଲସ୍ୟାସ୍' (Epuleius) ୧୨୫ ? ଖ୍ରୀ:) ରୋମୀୟ ଲେଖକ ଓ ଦାର୍ଶନିକ; ପ୍ରାଚ୍ୟ ଦେଶସମୂହ ଭ୍ରମଣ କରି ସେ ଜ୍ଞାନ ଆହରଣ କରିଥିଲେ । |
| ୩୩୪ | ୧୪-୧୫ | 'ଜଗତରୂପକ ଯନ୍ତ୍ରର ନିର୍ମାତା' (Deus ex Machina): ପ୍ରାଚୀନ ଗ୍ରୀସ୍‌ରେ ନାଟ୍ୟାନୁଷ୍ଠାନମାନଙ୍କରେ ଅଭିନୟ ସଂକ୍ରାନ୍ତ ଅସୁବିଧାର ସୃଷ୍ଟି ହେଲେ ମଞ୍ଚରେ ଈଶ୍ୱରଙ୍କ ଅବତାରଣା କରି ଅସୁବିଧା ଦୂର କରିବାର ପ୍ରଥା ପ୍ରଚଳିତ ଥିଲା । ଦର୍ଶନ କ୍ଷେତ୍ରରେ ଶବ୍ଦଟିର ଅର୍ଥ—କୌଣସି କଷ୍ଟକର କଳ୍ପନା ବା ଅସଙ୍ଗତ କଳ୍ପନା । ତଥ୍ୟଗତ ଅସୁବିଧା ହେଲେ ଦାର୍ଶନିକମାନେ ଯେଉଁ ଈଶ୍ୱରକଳ୍ପନା କରି ସେହି ଅସୁବିଧା ଦୂରକରିବାକୁ ଚେଷ୍ଟା କରୁଥିଲେ, ତାହାକୁ 'Deus ex Machina' କୁହାଯାଏ । |
| ୩୪୪ | ୨୪ | 'ସମସ୍ତ ପ୍ରକ୍ରିୟା ନିଶ୍ଚୟ ଅନ୍ୟ କାହାଦ୍ୱାରା ନିୟନ୍ତ୍ରିତ'— 'ସଂହତାନାଂ ପରାର୍ଥତ୍ୱାତ୍...'—ସାଂଖ୍ୟକାରିକା ୧୯।୨୦ |
| ୩୪୭ | ୧୪ | 'ସେହି ଶାଶ୍ୱତ ପୁରୁଷ ନିଃଶ୍ୱାସରେ...'—ବୃହ. ଉପ., ୨।୪।୯ |
| ୩୬୩ | ୨୦ | 'ଦୁଇଟି ପକ୍ଷୀ ଗୋଟିଏ ବୃକ୍ଷରେ...'—ମୁଣ୍ଡକ ଉପ., ୩।୧।୧ |
| ୩୮୬ | ୨୬ | 'ଜ୍ଞାନଲାଭର ସୋପାନଶ୍ରେଣୀ'—ବିବେକଚୂଡ଼ାମଣି (୧୮-୩୨) ଦ୍ରଷ୍ଟବ୍ୟ । |
| ୩୯୧ | ୨ | ସୋଲନ୍ ଓ କ୍ରିସାସ୍ : ସୋଲନ୍ (ଖ୍ରୀ:ପୂ: ୭-୬ ଶତକ) ଏଥେନ୍ସର ବିଖ୍ୟାତ ଜ୍ଞାନୀ ଓ ରାଜନୀତିବିଦ୍; କ୍ରିସାସ୍ (ଖ୍ରୀ:ପୂ: ୬ ଶତକ) ଲିଡ଼ିଆର ଧନୀ ରାଜା । ପାରସ୍ୟରାଜ ସାଇରସ୍‌ଙ୍କ ନିକଟରେ ପରାଜିତ ହୋଇଥିଲେ । |
| ୪୧୭ | ୨୫ | ମିନେଣ୍ଡାର, ମିଲିନ୍ଦ : ପାଲି ସାହିତ୍ୟର ବିଖ୍ୟାତ 'ମିଲିନ୍ଦପନ୍‌ହ' ଦ୍ରଷ୍ଟବ୍ୟ । |
| ୪୫୬ | ୨୦ | 'ଲିଙ୍ଗଶରୀର' : ସପ୍ତଦଶ-ଅବୟବ-ବିଶିଷ୍ଟ ସୂକ୍ଷ୍ମ ଶରୀର । 'ପଞ୍ଚଦଶୀ' ତତ୍ତ୍ୱବିବେକପ୍ରକରଣ ବା 'ପଞ୍ଚୀକରଣ'—ଏହାର ସୁରେଶ୍ୱରାଚାର୍ଯ୍ୟକୃତ ବାର୍ତ୍ତିକ ଦ୍ରଷ୍ଟବ୍ୟ । |
| ୪୫୬ | ୩୦-୩୧ | 'ଜଣେ ଯୋଗୀ'—ପଓହାରିବାବା, ୮ମ ଖଣ୍ଡରେ ପ୍ରବନ୍ଧ ଦ୍ରଷ୍ଟବ୍ୟ । |

# ନିର୍ଦ୍ଦେଶିକା